ଗୋଟିଏ ଗୋଟିଏ ସଫଳ ଆତ୍ମକାହାଣୀ ନୈର୍ବ୍ୟକ୍ତିକ ହୋଇଯାଇ ବେଳେବେଳେ ଗୋଟିଏ ପାରଂପରିକ ଜନପଦର, ଅଜଣା ଅଶୁଣା ଅନୁଷ୍ଠାନଟିଏର, ନୂଆ ନୂଆ ଆଧୁନିକ ପୋଷାକ ପିନ୍ଧୁଥିବା ସହରର; ଏଭଳିକି ଅନ୍ୟଗୋଟିଏ ଅପାଶୋରା ବର୍ତ୍ତିଳ ଚରିତ୍ରର ଆତ୍ମକାହାଣୀରେ ରୂପାନ୍ତରିତ ହୋଇଯାଏ ଏବଂ ବ୍ୟକ୍ତି ସରହଦରୁ ଉତୁରିପଡ଼ି ତାହା ଗୋଟିଏ ସଂପର୍କିତ ସମାଜର ଦସ୍ତାବିଜରେ ପରିଣତ ହୋଇଯାଏ । ଦିନନାଥ ପାଠୀଙ୍କ ରଚିତ ଆତ୍ମକାହାଣୀଗୁଡ଼ିକ ଏହି ପର୍ଯ୍ୟାୟର ସାହିତ୍ୟ, ଜଣେ ଓଡ଼ିଆ ଚିତ୍ରକାରର ସଂଘର୍ଷମୟ ଜୀବନର ନିଛକ କଥା । ବର୍ଣ୍ଣାଢ଼୍ୟ ଅନୁଭବର ଚିତ୍ରଭାଷାରେ ଓଡ଼ିଆ ସାହିତ୍ୟକୁ ମହକାଇ ଦେଉଥିବା ଅନନ୍ୟ ଉପସ୍ଥାପନା ।



Digitized by srujanika@gmail.com

ଆମେ ଫେରିଯିବୁ
ଉଦୟାଚଳର କୀର୍ତ୍ତିତ ଉହକୁ
ଯେଉଁଠି ଅସ୍ମିତାର ଖିଅଟିଏ
ଏବେବି ହାତଠାରି ଡାକେ ।

କଳାଯାତ୍ରା
ସେଠୁ ପୁଣି ଆରମ୍ଭିବୁ ।
ଆମର ମନର ଗବାକ୍ଷଦେଇ
ଭରିଯିବ ବିଶ୍ୱକଳାର ମହକ ।

ଆମେସବୁ ସମର୍ପିତ ସତ୍ତା
କଲେଜଟିଏ ଗଢୁଛୁ
ଉଦୟଗିରି ପାହାଡ଼ର
ଐତିହ୍ୟ କୋଳରେ ।



Digitized by srujanika@gmail.com

ଜଣେ ଓଡ଼ିଆ ଚିତ୍ରକାରଙ୍କ ଜୀବନ କାହାଣୀ-୫

# କଲେଜଟିଏ ଗଢ଼ିବାର ବେଳ

ଦିନନାଥ ପାଠୀ



ଦିବ୍ୟ ପ୍ରକାଶନୀ
ଭୁବନେଶ୍ୱର

Digitized by srujanika@gmail.com

ଜଣେ ଓଡ଼ିଆ ଚିତ୍ରକାରଙ୍କ ଜୀବନ କାହାଣୀ-୫

# କଲେଜଟିଏ ଗଢ଼ିବାର ବେଳ

ଦିନନାଥ ପାଠୀ

ପ୍ରଥମ ପ୍ରକାଶ : ୨୦୧୩

© ଲେଖକ

ପ୍ରଚ୍ଛଦ ପରିକଳ୍ପନା : ସୌଭାଗ୍ୟ ପାଠୀ

ଡି.ଟି.ପି : ରାଜକିଶୋର ସାହୁ ଓ କନକ ମଞ୍ଜରୀ ସାହୁ

ମୁଦ୍ରକ : ଦିବ୍ୟ ମୁଦ୍ରଣୀ, ସାମନ୍ତରାୟପୁର

ଭୁବନେଶ୍ୱର ୭୫୧୦୦୨

ପ୍ରକାଶକ : ଦିବ୍ୟ ପ୍ରକାଶନୀ

ଭୁବନେଶ୍ୱର ୭୫୧୦୦୨

ମୂଲ୍ୟ : ₹ ୪୦୦/- (ଚାରିଶହ ଟଙ୍କା ମାତ୍ର)

**Autobiography of an Odia Painter-5**

**Collegetie Gadhibara Bela**

Dinanath Pathy

First Published : 2013

© Auther

Jacket Concept : Soubhagya Pathy

D.T.P. Rajkishore Sahoo and Kanak Manjari Sahoo

Printer :Divya Mudrani

Samantarapur, Bhubaneswar-751002

Publisher Divya Prakashani

Samantarapur, Bhubaneswar-751002

Price : ₹400/- (Rupees Four hundred only)

*Digitized by srujanika@gmail.com*

ଦୀର୍ଘ ଗୋଟିଏ ଦଶନ୍ଧିରୁ ଊର୍ଦ୍ଧ୍ୱସମୟ ଧରି ଶ୍ରମ,
ସମ୍ବଳ, ସମୟ ଓ ସାମର୍ଥ୍ୟ ଲଗେଇ ଯେଉଁମାନେ
କଲେଜଟିକୁ ଗଢ଼ିଛନ୍ତି ସେମାନଙ୍କ ପାଇଁ ଏ ବହି ।

Digitized by srujanika@gmail.com

**ସାତଖଣ୍ଡ ବହିରେ ଜଣେ ଓଡ଼ିଆ ଚିତ୍ରକାରଙ୍କ ଜୀବନ କାହାଣୀ**

**ପ୍ରକାଶିତ**

ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ୧୯୯୦

ପୁଞ୍ଜିକୟାଁର ଫକୀର ୨୦୦୪

ଚିଲିକା ପାଣିରେ ଛାଇ ୨୦୦୫

ରୂପଜୀବୀର ଡାଏରୀ ୨୦୦୯

କଲେଜଟିଏ ଗଢ଼ିବାର ବେଳ ୨୦୧୩

**ଅପ୍ରକାଶିତ**

ନୂଆଦିଲ୍ଲୀର କଳାମଠ

ବନାରସରେ ବାନପ୍ରସ୍ଥ

Digitized by srujanika@gmail.com

**ଦିନନାଥ ପାଠୀ** ଭାରତୀୟ ସାଂପ୍ରତିକ ଚିତ୍ରକଳା ଜଗତର ଜଣେ ଅଗ୍ରଣୀ ଚିତ୍ରକାର, କୃତବିଦ୍ୟ କଳା ଐତିହାସିକ ଏବଂ ଓଡ଼ିଆ ଭାଷାର ସୃଜନଶୀଳ ଲେଖକ। ଜଳରଙ୍ଗ ଚିତ୍ର ଶ୍ରୀରାଧା ପାଇଁ ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକ ୧୯୮୮, ତୈଳଚିତ୍ର ବ୍ୟାଘ୍ର ଓ ପଦ୍ମବନ ପାଇଁ ଚୀନ ସରକାରଙ୍କ ସୃଜନ ସମ୍ମାନ୧୯୯୮, ଫସଲ ଅମଳର ସଂଗୀତ ପାଇଁ କଲିକତା ଫାଇନ୍ ଆର୍ଟ ଏକାଡେମୀ ସ୍ୱର୍ଣ୍ଣପଦକ ୧୯୬୩, ମୋ ଗାଁର ଦୃଶ୍ୟ ପାଇଁ ରାଜ୍ୟ ଲଳିତକଳା ଏକାଡେମୀ ପୁରସ୍କାର ୧୯୬୨, ଚିତ୍ର ଗବେଷଣା ପାଇଁ ଜବାହରଲାଲ ନେହେରୁ ସ୍ମୃତି ଫେଲୋସିପ୍ ୧୯୯୬, ଏ.ଏଲ୍.ବାସମ ସ୍ମୃତି ପୁରସ୍କାର ୧୯୮୬, ସାହିତ୍ୟ ରଚନା ପାଇଁ ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ୧୯୯୬, କଳିଙ୍ଗ ସାହିତ୍ୟ ସମାଜର ଭଞ୍ଜ ପ୍ରତିଭା ସମ୍ମାନ ୨୦୦୦, ଉତ୍କଳ ସାହିତ୍ୟ ସମାଜର ଉପନ୍ୟାସ ସମ୍ମାନ ୨୦୦୬ ତଥା ଅନ୍ୟାନ୍ୟ ସ୍ୱୀକୃତି । ଡକ୍ଟର ପାଠୀ କଳା କ୍ଷେତ୍ରରେ ଆମ ରାଜ୍ୟ ତଥା ଦେଶର ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀ ମଣ୍ଡନ କରି ଜାତୀୟ ଲଳିତକଳା ଏକାଡେମୀର ସଚିବ ପଦରୁ ଅବ୍ୟାହତି ନେଇ ବନାରସସ୍ଥିତ ଏଲିସ୍ ବୋନର ଗବେଷଣା ସଂସ୍ଥାର ନିର୍ଦ୍ଦେଶକ ଭାବେ ଅବସ୍ଥାପିତ । ଇଂରାଜୀ, ଜର୍ମାନ, ହିନ୍ଦୀ ଓ ଓଡ଼ିଆ ଭାଷାରେ ଷାଠିଏରୁ ଊର୍ଦ୍ଧ୍ୱ ବହି ଦେଶ ଓ ବିଦେଶରେ ପ୍ରକାଶିତ । ତାଙ୍କ ରଚିତ ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ଗୃହୀତ । ଲେଖାରେ ରେଖାର ଅନ୍ତଃସ୍ୱର ତାଙ୍କ ସାହିତ୍ୟ ରଚନାର ବିଶେଷତ୍ୱ । ପ୍ରଥମ ପୁଲକ ଭାବେ ତାଙ୍କର ଚାରୋଟି ଚିତ୍ରୋପନ୍ୟାସ, ସାଯୋନାରା ୧୯୯୮ ପୁନର୍ନବା ୧୯୯୯ ଶ୍ଳୋକଛନ୍ଦ ୨୦୦୧ ଓ ଗଙ୍ଗାବତରଣ ୨୦୦୨ ଓଡ଼ିଆ ଭାଷା ସାହିତ୍ୟରେ ଅନନ୍ୟ ସ୍ୱାକ୍ଷର ବହନ କରେ । ତାଙ୍କ ରଚିତ ଜଣେ ଓଡ଼ିଆ ଚିତ୍ରକାରର ଜୀବନ କାହାଣୀ ଓଡ଼ିଆ ଭାଷାରେ ପ୍ରଥମ ସ୍ତବକ । ସେ ବହୁ ଜାତୀୟ ତଥା ଅନ୍ତର୍ଜାତୀୟ କଳା ପ୍ରକଳ୍ପର ରଚୟିତା । ସୁଇଡେନ୍ ଓ ପ୍ରାକ୍ତନ ସୋଭିଏତ ସଂଘରେ ଭାରତ ଉତ୍ସବର କମିଶନର ଓ କଳିଙ୍ଗ ବାଲିଯାତ୍ରାର ଡିଜାଇନର ଭାବେ ଯଶର ଅଧିକାରୀ । ଜଣେ ସଫଳ କଳା ସଂଗଠକ ଓ କଳା ପ୍ରଶାସକ। ଭୁବନେଶ୍ୱରସ୍ଥିତ ସରକାରୀ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ପ୍ରତିଷ୍ଠାତା ଅଧ୍ୟକ୍ଷ ଭାବେ ଚିତ୍ରକଳା ଶିକ୍ଷାକ୍ଷେତ୍ରରେ ବହୁ ନୂତନ ପ୍ରୟାସର ରୂପାୟନ ।

Digitized by srujanika@gmail.com

# ଅଭିମତ

ତୁର୍କୀର ବିଖ୍ୟାତ ଔପନ୍ୟାସିକ ଓର୍‌ହାନ୍ ପାମୁକ୍ ତାଙ୍କ ଆତ୍ମଜୀବନୀ **'ଇସ୍ତାନ୍‌ବୁଲ'**ରେ ଲେଖିଛନ୍ତି ଯେ ତାଙ୍କ ନିଜ ଜୀବନର କାହାଣୀ ଧୀରେ ଧୀରେ ଗୋଟିଏ ସହରର କାହାଣୀରେ ପରିଣତ ହୋଇଯାଇଛି । ଦିନନାଥ ପାଠୀଙ୍କର ଚାରିଟି ଯାକ ଆତ୍ମଜୀବନୀ କ୍ଷେତ୍ରରେ ଏଇ କଥାଟି ସତ ବୋଲି ମନେ ହୁଏ । **'ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ'**ର ମୁଖ୍ୟ ଚରିତ୍ର ସମୟର ଚାପରେ ବଦଳି ଯାଉଥିବା ଗୋଟିଏ ଛୋଟିଆ ଗାଉଁଲି ସହରର ପ୍ରତିଭୂରେ ବଦଳି ଯାଇଛି । **'ଚିଲିକାପାଣିରେ ଛାଇ'** ଖାଲି କଳାଛାତ୍ର ଦିନନାଥଙ୍କର ଅନୁଭୂତିର ସମାହାର ନୁହେଁ, ଖଲ୍ଲିକୋଟର ଗୋଟିଏ ମନଲୋଭା ଚିତ୍ର । ସେହିପରି **'ରୂପଜୀବୀର ଡାଏରୀ'**ରେ ଚିତ୍ରଶିଳ୍ପୀ ଦିନନାଥ ବଞ୍ଚିବା ପାଇଁ ଘୋର ସଂଘର୍ଷର କାହାଣୀ କହୁ କହୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରର ଗଳିକନ୍ଦି, ଅଫିସ୍, କଲୋନୀ ଗୁଡ଼ିକୁ ଜୀବନ୍ତ ଚରିତ୍ର ଭାବରେ ରୂପାନ୍ତରିତ କରିଦେଇଛନ୍ତି ।

**'କଲେଜଟିଏ ଗଢ଼ିବାର ବେଳ'**ରେ ବି ଏହା ଘଟିଛି । କ୍ଷମତାର କେନ୍ଦ୍ରବିନ୍ଦୁ ହେଲେ ବି କଟକ ପରି ଭୁବନେଶ୍ୱର ଏପର୍ଯ୍ୟନ୍ତ ଏକ କାହାଣୀମୟ ସହର ହୋଇପାରିନାହିଁ । ଗଳ୍ପ ଓ ଉପନ୍ୟାସଗୁଡ଼ିକରେ ଗୋଟିଏ ଜୀବନ୍ତ ପଟ୍ଟଭୂମି ଭାବରେ ଏହା ଚିତ୍ରିତ ହୋଇପାରିନାହିଁ । ସତେ ଯେପରି କବିର କଳ୍ପନା ଏହି ସହରରେ ଶ୍ୱାସରୁଦ୍ଧ ହୋଇପଡ଼ିଛି । ଦିନନାଥ କିନ୍ତୁ ତାଙ୍କର ଆତ୍ମଜୀବନୀରେ ଏହି ଅମଲା ଅଧ୍ୟୁଷିତ, ଆବେଗହୀନ ଜଣାପଡୁଥିବା ସହରଟିରେ କଳାର ଗୋଟିଏ ଅନୁଷ୍ଠାନ କିପରି ଗଢ଼ିଉଠିଛି ତା'ର ମର୍ମସ୍ପର୍ଶୀ କାହାଣୀ କହିଛନ୍ତି । ଏହି କାହାଣୀର ଚରିତ୍ର ଖାଲି ଚିତ୍ରକର, ଭାସ୍କର ବା କଳାଶିକ୍ଷକ ନୁହଁନ୍ତି : ରାଜାରାଣୀ ମନ୍ଦିର ପାଖର ଭଡ଼ାଘର, କଳ୍ପନାଛକ, ମ୍ୟୁଜିୟମ୍, ଖଣ୍ଡଗିରି ପାଖରେ ଖୋଲା ହୋଇଥିବା ବି.କେ କଲେଜର କୋଠାଘର ବି ଏ କାହାଣୀର ଚରିତ୍ର । ଭୁବନେଶ୍ୱରକୁ କାହାଣୀମୟ କରିବାରେ, କଳାକାରମାନଙ୍କ ସ୍ୱପ୍ନରେ ରଙ୍ଗବୋଳି ଯାଦୁକରୀ ସ୍ପର୍ଶ ଦେବା **'କଲେଜଟିଏ ଗଢ଼ିବାର ବେଳ'**ର ସବୁଠାରୁ ବଡ଼ ସଫଳତା ।

**ଯତୀନ୍ଦ୍ର କୁମାର ନାୟକ**
ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ

Digitized by srujanika@gmail.com

## ସ୍ମୃତିର ପାଖୁଡ଼ା



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

# ୧ . ପୂର୍ବରଙ୍ଗ

ଏଇ କିଛିଦିନ ତଳେ ବି.କେ.ଆର୍ଟ୍ କଲେଜର ମୋ ପୁରୁଣା ସହକର୍ମୀ ଚିତ୍ରଶିଳ୍ପୀ ଶିବ ପାଣିଗ୍ରାହୀ ଟେଲିଫୋନ କରି ମୋତେ ପରାମର୍ଶଟିଏ ଦେବାକୁ ଚାହିଁଲେ । ତାଙ୍କ ବକ୍ତବ୍ୟର ନିର୍ଯ୍ୟାସ ମୋ ପାଇଁ ସଂପୂର୍ଣ୍ଣଭାବେ ନିରୁତ୍ସାହଜନକ ଥିଲା ଯଦିଚ ସିଏ ମୋତେ ଉତ୍ସାହିତ କରିବା ପାଇଁ ମନରେ ପାଞ୍ଚୁଥିଲେ । ତାଙ୍କ ଗାଁ ପିଲା ଯତା (ଯତୀନ ଦାସ) ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ନିଜ ନାଁରେ ଯିମିତି ସେଣ୍ଟରଟିଏ ଗଢ଼ିଛି ମୁଁ ସିମିତି ହୁଏତ ମୋ ନାଁରେ ଆଖିଦୃଶିଆ କିଛି ଗୋଟିଏ କରିପକାଏ ତା ହେଲେ ଏ ମର ସଂସାରରେ ଅମର ହେଇ ରହିବାର ରାହାଟିଏ ମୋ ପାଇଁ ମଧ୍ୟ ଖୋଲିଯିବ । ଏଭଳି ଅବାଗିଆ ପ୍ରସ୍ତାବର ଅନ୍ତତଃ ଦୁଇତିନୋଟି ଖିଅ ମୋ ପାଖରେ ଆପେ ଆପେ ବାରି ହେଇ ପଡୁଥିଲା । ଶିବ ପାଣିଗ୍ରାହୀ ତାଙ୍କ ଗାଁ ପିଲାର ବାହାଦୁରି ମୋ ଆଗରେ ବଖାଣି ଦେଇ ହୁଏତ ମୋତେ କଦର୍ଥନା କରିଦେବା ପାଇଁ ଚାହୁଁଥିଲେ । ପୁଣି ହୁଏତ ମୁଁ ଆଗଭଳି ସଂଗଠନ ମାମଲାରେ ପାରିଉଠି ପାରିବି କି ନାହିଁ ତା'ର ଗୋଟିଏ ଅନୁସନ୍ଧିତ୍ସୁ ଭାବ ତାଙ୍କ କଥାରେ ଜଡ଼େଇ ହେଇ ରହିଥିଲା । ସିଏ କିନ୍ତୁ ନିଜେ କ'ଣ କହି ନିଜ ପୌରୁଷକୁ ବିଡ଼ମ୍ବିତ କରୁଛନ୍ତି ସେତକ ହେଜି ପାରୁନଥିଲେ । ଅଧ୍ୟାପକ ପାଣିଗ୍ରାହୀ ସ୍ୱପ୍ନରେ ସୁଦ୍ଧା କଳନା କରିପାରୁ ନଥିଲେ ଯେ ହୁଏତ ଆଉ କିଏ ଜଣେ ଯତୀନଙ୍କ ଭଳି ବା ତାଙ୍କଠାରୁ ବଳିପଡ଼ି ଭୁବନେଶ୍ୱରରେ ଆର୍ଟ ସେଣ୍ଟରଟିଏ ଗଢ଼ିପାରନ୍ତି । ଅତ୍ୟନ୍ତ ଉତ୍ସାହପ୍ରଦ ଘଟଣା ଯେ ଆମ କଲେଜର ପ୍ରାକ୍ତନ ଛାତ୍ର ଜଗନ୍ନାଥ ପଣ୍ଡା ଏବେ ଭୁବନେଶ୍ୱରଠାରେ ସରକାରୀ ଘରଟିଏ ପାଇ ଆର୍ଟ ସେଣ୍ଟରଟିଏ ଖୋଲିଛନ୍ତି ।

ଆପଣମାନେ ଅନୁମାନ କରିପାରୁଥିବେ ମୋ ଉତ୍ତର ପାଣିଗ୍ରାହୀଙ୍କ ପାଇଁ ନିଶ୍ଚୟ ଅଖଞ୍ଜ ଲାଗିଥିବ । ଦୀର୍ଘ ଗୋଟିଏ ଦଶନ୍ଧି ଧରି ଶ୍ରମ, ସମ୍ବଳ, ସମୟ ଓ ସାମର୍ଥ୍ୟ ଲଗେଇ ନିଜ ହାତରେ ଗଢ଼ିଥିବା ଅନୁଷ୍ଠାନ କଥା ସିଏ କ'ଣ ଏତେ ଶୀଘ୍ର ଭୁଲି ଗଲେ ! ଚାରାଟି ବଡ଼ ହେଇ ଶାଖା ପ୍ରଶାଖା ମେଲିଲାଣି । ଶାଖା ପ୍ରଶାଖା ଘନ କଅଁଳ ସବୁଜ ପଲ୍ଲବରେ ଛାଇ ହେଇଗଲାଣି । ପ୍ରସାରିତ ଡ଼ାଳମାନଙ୍କର ଅଗିରେ ଫୁଲ ଫୁଟିବାର ଉପକ୍ରମ ହେଲାଣି । ଏବେ ଗଛକୁ ବୟସ ପଚିଶି । ଛନଛନ ଯୁବା ବୟସ । ଫଳ ଧରିବା ଆଉ ବିଳମ୍ବ ନାହିଁ । ନିଜ ସନ୍ତାନର ଏଭଳି ଏକ ବର୍ଣ୍ଣିଳ ସମ୍ଭାବନାରେ ମୁଁ ବିଭୋର ହେଉଥିବା ବେଳେ ଶିବଙ୍କର ପରାମର୍ଶ ଅଯାଚିତ, ଅବାଞ୍ଛିତ ଏବଂ ଅସଂଲଗ୍ନ ମାନସିକତାର ପରିପ୍ରକାଶ ଭଳି

Digitized by srujanika@gmail.com

ଲାଗିଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ସିନା ରାଜନୈତିକ ଦୂରଭିସନ୍ଧି ରଖି କଲେଜଟିକୁ ବିଭୂତି କାନୁନ୍‌ଗୋଙ୍କ ନାଁରେ ନାମିତ କରିଦେଲେ, ତାହା ଏ ରାଜ୍ୟର ବହୁ ଯଶଧର ଶିଳ୍ପୀଙ୍କ ଅମ୍ଳାନ ସ୍ମୃତିକୁ ଉପହାସ କରୁଥିଲା । କୁଆଡ଼େ ଗଲେ ଶରତଚନ୍ଦ୍ର ଦେବ, ଗୋପାଳ ଚରଣ କାନୁନ୍‌ଗୋ, ବିପିନ ବିହାରୀ ଚୌଧୁରୀ, ବିମ୍ବାଧର ବର୍ମା । ସବୁ କଥା ଏମିତି କ'ଣ ରାଜନୀତିର ଘୂର୍ଣ୍ଣି ଭିତରେ ପରାହତ । ମୁଁ କିନ୍ତୁ ସ୍ପର୍ଦ୍ଧାର ସହିତ ଏବେ ବି ଉଦ୍‌ଘୋଷଣା କରିପାରେ ଏ କଲେଜ ଆମର, ମୋର ।

ଦିବଂଗତ ବରିଷ୍ଠ ଶିଳ୍ପୀ ବିନୋଦ ରାଉତରାୟ ତାସଲ୍ୟ କରି ଦିନନାଥ ପାଠୀ କଲେଜ କହୁଥିବା ହୁଏତ ସତ । ବି.କା. (ଓଡ଼ିଆରେ ବିଭୂତି କାନୁନ୍‌ଗୋ) ନ କହି ଦି.ପା. (ଦିନନାଥ ପାଠୀ) କହିଥିଲେ କ'ଣ ବା ପ୍ରଳୟ ହୋଇଯାଉଥିଲା । ଆମ ଦେଶର ପ୍ରାୟ ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ପୁଣି ତ ଏଭଳି ପ୍ରତୀକାତ୍ମକ ଅଥଚ ଅର୍ଥହୀନ ବର୍ଣ୍ଣମାନଙ୍କରେ ସମାହିତ ହୋଇଯାଇ ସେମାନଙ୍କ ମୌଳିକ ଦ୍ୟୁତି ଓ ବ୍ୟାପ୍ତି ହରେଇ ବସନ୍ତି । ଯିଏ ନିଜ ପିଠିରେ ଚାଙ୍ଗୁଡ଼ା ବୋହି ବଡ଼ଦେଉଳ ଗଢ଼ିଥାଏ ସିଏ ଇନ୍ଦ୍ରଦ୍ୟୁମ୍ନ ପୋଖରୀର କୂର୍ମ ଦଶା ଭୋଗେ । ଏହାହିଁ ତ ଉତ୍କଳୀୟ ପରମ୍ପରା । ଏଥିରେ କ୍ଷୋଭ କାହୁଁ ଅଇଲା । ଦେଉଳର ମୁଣ୍ଡି ମାରିଦେଇ ଧର୍ମପଦ ଆତ୍ମହତ୍ୟା କରେ । ଅବଶ୍ୟ ଆଶ୍ୱାସନାର ବିଷୟ ଲଳିତ କଳା ଏକାଡେମୀ ସେଇ ଧର୍ମପଦକୁ ଶ୍ରେଷ୍ଠ କଳାକାରର ସମ୍ମାନ ଦେଇ ଶୈଳ୍ପିକ ଦୈନ୍ୟତାକୁ ବାରମ୍ବାର ଉଜ୍ଜିବୀତ କରି ରଖିଛି । ଗନ୍ଧର୍ବଙ୍କ ଦେଶରେ କଳାର ବେପାରୀମାନେ ରାଜୁତି କରନ୍ତି । ନୀଳାଭ ଦିଗନ୍ତ ଅଦିନ କୁହୁଡ଼ି ଭିତରେ ହଜିଗଲା ଭଳି ଲାଗେ । ମୋତେ ଟେଲିଫୋନ କଲାବେଳେ ବିଗତ ଦିନର ବରିଷ୍ଠ ଅଧ୍ୟାପକ ଶିବ ପାଣିଗ୍ରାହୀ ମହାନଦୀ ବିହାରର ଧୂମକୁଣ୍ଡଳୀ ଭିତରେ ହୁଏତ ଅଣନିଃଶ୍ୱାସୀ ହୋଇପଡୁଥିଲେ ।

ଆଉ ଗୋଟିଏ ଅଭାବନୀୟ, ଲଜ୍ଜାଜନକ ପରିସ୍ଥିତି ମୁଁ କଲେଜ ଛାଡ଼ିବା ପରେ ପରେ ହିଁ ଘଟିଥିଲା । ମୁଁ କଲେଜ ଛାଡ଼ିଲାପରେ ଅଧକ୍ଷ ଦାୟିତ୍ୱ ମୁଣ୍ଡେଇଥିବା ଚନ୍ଦ୍ରମଣି ବିଶ୍ୱାଳ ମହାବିଦ୍ୟାଳୟର ବାର୍ଷିକ ଚିତ୍ରପ୍ରଦର୍ଶନୀ ପୁସ୍ତିକାରେ ମୋ ସଂପର୍କରେ ଅତ୍ୟନ୍ତ ରୁଚିହୀନ ମନ୍ତବ୍ୟ ପ୍ରକାଶ କଲେ । ମନେହେଲା ଅନେକ ଦିନର ସଂଚିତ ଆକ୍ରୋଶ ବେଳଉଣ୍ଡି ଅଜାଡି ହୋଇଗଲା । ଏହି ଲେଖାର ସୁରାକ ପାଇ ମୁଁ ସଂସ୍କୃତି ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତିଙ୍କ ପାଖେ ଫେରାଦ ହୋଇଥିଲି ଓ ଲେଖାଟି ନ ଛପାଯାଉ ବୋଲି ନିର୍ଦ୍ଦେଶକ ମହାଶୟଙ୍କୁ ଅନୁରୋଧ କରିଥିଲି । ନିଜ ଜାତି ସିନା ଗଲା ପେଟ ପୂରି ନଥିଲା । କଲେଜର ମୋର କୌଣସି ପୁରୁଣା ସହକର୍ମୀ ଏ ଲେଖା ବିରୁଦ୍ଧରେ ପ୍ରତିବାଦ କରିନଥିଲେ । ପରେ ଶୁଣିବାକୁ ମିଳିଲା ସଂସ୍କୃତି ବିଭାଗର ସଚିବ ରାଜେନ୍ଦ୍ର କିଶୋର ପଣ୍ଡା ସଭାମଞ୍ଚ ଉପରୁ ଅଧକ୍ଷଙ୍କ ଏଭଳି ଅଶାଳୀନ ମନ୍ତବ୍ୟ ପାଇଁ ନିଜର ଅସନ୍ତୋଷ ବ୍ୟକ୍ତ କରିଥିଲେ । ମନେହେଲା କିଏ ଜଣେ ଚିହ୍ନରା ଲୋକଟିଏ ଅଛି ।

Digitized by srujanika@gmail.com

କୂପରେ କହିହେବ, ଯେ ପକ୍ଷୀ ଉଡ଼େ ଯେତେଦୂର ସେ ଜାଣେ ତହିଁର ବେଭାର। ମୁଁ କଲେଜ ସହିତ ଏଭଳି ଭାବେ ଜଡ଼ିଯାଇଥିଲି ଯେ ବିଶ୍ୱର ଯେଉଁ ଦେଶ, ଯେଉଁ ବିଶ୍ୱବିଦ୍ୟାଳୟ, ଯେଉଁ ସଂଗ୍ରହାଳୟ ଓ ଚିତ୍ରବୀଥିକୁ ଯାଉଥିଲି କଲେଜ ମୋ ପାଖେ ପାଖେ ଛାଇ ଭଳି ରହୁଥିଲା। କଲେଜ ଓ ମୋର ଅସ୍ମିତା ଏକାକାର ହୋଇଯାଇଥିଲା। ମୁଁ ଯେତିକି ଚଳଚଞ୍ଚଳ ଥିଲି, ମୋ ସହକର୍ମୀମାନେ ସେତିକି କର୍ମଠ ଓ ଉଦାରବନ୍ତ ଥିଲେ। ଲାଗୁଥିଲା ସେମାନେ ହେଜୁଥିଲେ, ଘେନୁଥିଲେ ଓ କଲେଜର ଉନ୍ନତିରେ କୁରୁଳି ଉଠୁଥିଲେ। ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ବାତାବରଣ ଓ ବି.କେ.ର ଆବହାୱା ଭିତରେ ଆକାଶପାତାଳ ଫରକ ଥିଲା। ଏଣୁ ଖଲ୍ଲିକୋଟର ମାନସିକତାରେ ରହି ବି.କେ.କୁ ତଉଲୁଥିଲେ ଅନ୍ତର୍ଦାହରେ ସନ୍ତୁଳି ହେବାକୁ ହେଉଥିଲା। ଯେଉଁମାନେ ଅସୂୟାର ବିଷଜ୍ୱାଳାରେ ଆଉଟୁପାଉଟୁ ହେଉଥିଲେ ସେମାନଙ୍କ ମୁହଁରୁ ଏଭଳି ଅନୁଦାର ବାକ୍ୟ ସ୍ଫୁରଣ ହେବାରେ ଅବ୍ୟୟ ନଥିଲା।

କିନ୍ତୁ ବେଶ୍ କିଛିଦିନ ପରେ ସେହି ଅଧ୍ୟକ୍ଷ ମହାଶୟଙ୍କ ଆକ୍ଷେପର କେତୋଟି ଧାଡ଼ି ମୋତେ ଅତି ଅଦ୍ଭୁତ ଭାବେ ଆମୋଦିତ କରିଥିଲା। ସେ ଯେଉଁ ବାକ୍ୟଗୁଡିକୁ ମୋତେ ତାଚ୍ଛଲ୍ୟ କରିବା ପାଇଁ ବ୍ୟବହାର କରିଥିଲେ ତାହା ମୋ ଅନୁଭୂତିର ଓ କାର୍ଯ୍ୟଦକ୍ଷତାର ବ୍ୟାପକତାକୁ ସୂଚେଇ ଦେଉଥିଲା। ସେହି ଅଧ୍ୟକ୍ଷ ବନ୍ଧୁ ସଂଗ୍ରହାଳୟର ଚାରୁ ଓ କାରୁକଳା କ୍ୟୁରେଟର୍ ପଦବୀର ମର୍ଯ୍ୟାଦା ବୁଝିନଥିଲେ। ସେ ବୁଝିନଥିଲେ କଲିକତାର କଳା ବିଦ୍ୟାଳୟ କାହିଁକି ଇଣ୍ଡିଆନ୍ ମ୍ୟୁଜିୟମ୍‌ର ଅଂଶବିଶେଷ ଥିଲା, କାହିଁକି ଆଶୁତୋଷ ମ୍ୟୁଜିୟମ୍‌ର କ୍ୟୁରେଟର୍ ଦେବ ପ୍ରସାଦ ଘୋଷଙ୍କୁ ପ୍ରଫେସର୍ ପଦବୀ ଦିଆଯାଇଥିଲା। ବିଦେଶରେ ମ୍ୟୁଜିୟମ୍ କ୍ୟୁରେଟର୍‌ମାନଙ୍କୁ ପ୍ରଫେସର୍ ପାହ୍ୟା ଦିଆଯିବା ଏକ ସାଧାରଣ ଘଟଣା। ଏଠିତ ଧୁଆମୂଳା ଅଧୁଆମୂଳା ସବୁ ସମାନ। କଲେଜରେ ମୁଁ ଅଧ୍ୟକ୍ଷ ଭାବେ ଯୋଗଦେବା ଆଗରୁ ଓଡ଼ିଶା ପର୍ଯ୍ୟଟନ ନିଗମର ପ୍ରକାଶନ ଓ ପ୍ରଚାର ବିଭାଗର ଡିଭିଜନାଲ୍ ମ୍ୟାନେଜର୍ ଭାବେ କାର୍ଯ୍ୟ କରୁଥିଲି। ବିଭିନ୍ନ ପର୍ଯ୍ୟଟନ ପୁସ୍ତିକା ଡିଜାଇନ୍ କରିବା, ପୋଷ୍ଟର୍, କ୍ୟାଲେଣ୍ଡର୍, ଲିଫ୍‌ଲେଟ୍, ବ୍ରୋସିଅର୍, ଫୋଲ୍‌ଡ଼ର୍ ପ୍ରଭୃତିର ନକ୍‌ସା ପ୍ରସ୍ତୁତ କରିବା ଓ ସେଗୁଡ଼ିକୁ ସୁନ୍ଦର ଭାବେ ଓଡ଼ିଶା ବାହାରୁ ଛପେଇ ଆଣିବା; ଜାତୀୟ ଓ ଆନ୍ତର୍ଜାତୀୟ ପର୍ଯ୍ୟଟନ ପ୍ରଦର୍ଶନୀରେ ଭାଗନେଇ ଓଡ଼ିଶାର ପ୍ରତିନିଧିତ୍ୱ କରିବା ଥିଲା ଡିଭିଜନାଲ୍ ମ୍ୟାନେଜରଙ୍କ କାମ। ଚିତ୍ର ମହାବିଦ୍ୟାଳୟର କମର୍‌ସିଆଲ୍ ଆର୍ଟ ବା ଆପ୍ଲାଇଡ୍ ଆର୍ଟ୍ ବିଭାଗରେ ଏହି ବିଦ୍ୟା ଆହରଣ ପାଇଁ ଶିକ୍ଷା ଦିଆଯାଏ। ସେହି ଅଧ୍ୟକ୍ଷ ମହାଶୟ ଯେଉଁ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟ କରୁଥିଲେ ସେହି ମହାବିଦ୍ୟାଳୟ ଏ ଅବଧି କୌଣସି ଗୋଟିଏ ହେଲେ ଉଲ୍ଲେଖନୀୟ ଡିଜାଇନ୍ ପ୍ରସ୍ତୁତ କରିଥିବାର ନଜିର ନାହିଁ। ତେଣୁ ସେଭଳି ଜଣେ କୂପମଣ୍ଡୁକ ସାଗରର ବିଭବ ଓ ବ୍ୟାପାର

Digitized by srujanika@gmail.com

ସଂପର୍କରେ ଅବଧାରଣା କରି ନ ପାରିବା ସ୍ୱାଭାବିକ । ତାଙ୍କ ଲେଖାରେ ଭରି ରହିଥିବା ବିରୋଧାଭାଷ ଯାହା ମୋତେ ଉପହସିତ କରିବାପାଇଁ ଉଦ୍ଦିଷ୍ଟ ତାହା ତାଙ୍କ ଅସୂୟା ପ୍ରଣୋଦିତ ମୌଳବାଦସଂପନ୍ନ ଆଭିମୁଖ୍ୟକୁ ବ୍ୟାହତ କରୁଥିଲା । ଯେଉଁମାନେ ଏକ ବିଶୃଙ୍ଖଳିତ ଶିକ୍ଷାୟତନର ସର୍ବନିମ୍ନ ପାହାଚରୁ ଶୀର୍ଷକୁ ଉଠିବାର ଯନ୍ତ୍ରଣା ଓ ଅସହାୟତାକୁ ଶିକ୍ଷାଦାନର ବା ଶୈକ୍ଷିକ ଉତ୍କର୍ଷର ମାପକାଠି ବୋଲି ଧରିନିଅନ୍ତି, ସେମାନେ ସ୍ୱଚ୍ଛନ୍ଦ ଚିତ୍ରାଭ୍ୟାସର ଓ ବିସ୍ତାରିତ ଚିତ୍ରାନୁଭବର ମହନୀୟ ପରମ୍ପରାକୁ ହେଜି ପାରନ୍ତି ନାହିଁ ।

ପୁଣି ଅଧକ୍ଷ ବିଶ୍ୱାଳ ମହାଶୟ ଆହୁରି ଲେଖିଥିଲେ ଯେ ମୁଁ ଦେଶର ଓ ବିଦେଶର ବହୁ ବଡ଼ ବଡ଼ କଳାନୁଷ୍ଠାନର ପାଠ୍ୟକ୍ରମକୁ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟରେ ସ୍ଥାନ ଦେଇଥିବାରୁ ଏବଂ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ବଡ଼ ବଡ଼ ପ୍ରକଳ୍ପକୁ ପାଠ୍ୟକ୍ରମର ଅଂଶବିଶେଷ ଭାବେ ବିବେଚିତ କରିଦେଇଥିବାରୁ ତାହା ଛାତ୍ର ଛାତ୍ରୀଙ୍କ ଶିକ୍ଷା ଆହରଣ କରିବାରେ ବାଧା ଉପୁଜାଉ ଥିଲା । ଆଉ କୁଆଡ଼େ ମୋର ସହକର୍ମୀମାନେ ଏସବୁ ନୂଆ ନୂଆ କାର୍ଯ୍ୟକ୍ରମକୁ ହୃଦୟଙ୍ଗମ କରିପାରୁ ନଥିଲେ । ଅବଶ୍ୟ ମୋ ସଂପର୍କରେ ତାଙ୍କରି ଆକଳନ ପାଠକଙ୍କ ମନରେ କୌତୂହଳ ଜନ୍ମେଇବା ସ୍ୱାଭାବିକ ।

ଏହି ଅଭିଯୋଗ ସଂପର୍କୀୟ ସମସ୍ୟାଟି କଲେଜ ଗଢ଼ିବା ଦାୟିତ୍ୱରେ ଥିବା ବ୍ୟକ୍ତିର ନିଜସ୍ୱ ଅଭିରୁଚି ଓ ଦୂରଦୃଷ୍ଟି ଉପରେ ନିର୍ଭର କରେ । ଶିକ୍ଷାର ଆୟତନ କଲେଜର ଚାରିକାନ୍ଥ ମଧରେ ସୀମିତ ନୁହେଁ । ପୁଣି ତାହା ଯଦି କଳାଶିକ୍ଷା ହୋଇଥାଏ ତାହାହେଲେ ତାର ବ୍ୟାପକତା ଫ୍ରାନ୍‌ସ୍‌ର ଲସ୍‌କସ୍ ଗୁହାର ପ୍ରାଗୈତିହାସିକ ଚିତ୍ରଠାରୁ ଓଡ଼ିଶାର ସୀତାବିଞ୍ଜି ଭିତିଚିତ୍ର ଯାଏଁ ଅନୁଭୂତ ହୁଏ । ଯିଏ ଜୀବନରେ ଲସ୍‌କସ୍ କିମ୍ବା ସୀତାବିଞ୍ଜି ମଧ ଦେଖିନି ତାକୁ ଚିତ୍ରକଳାର ସବୁ ବିଦ୍ୟା ଅଜଣା, ଅଡୁଆ ଓ ଅବୋଧ ମନେହେବ ।

ମୋ ପାଇଁ ବିଦ୍ୟା ଆହରଣର ସୀମା ଚିଲିକା ଠାରୁ ବୈତରଣୀ ମଧରେ ସୀମିତ ନଥିଲା । ମୋ ସ୍ୱପ୍ନର ଦିଗନ୍ତ କାହିଁ କେଉଁ ଆଡ଼କୁ ଲମ୍ବିଯାଇଥିଲା । ବି.କେ. କଲେଜରେ ବାରମାସେ ତେର ପର୍ବ ଲାଗିରହୁଥିଲା । କଞ୍ଚନାଛକର ଅନତିଦୂରରେ କଲେଜଟି ଗୋଟିଏ ଭଡ଼ାଘରେ ଚାଲୁଥିଲା ଏଣୁ ମନେ ହେଉଥିଲା ଗୋଟିଏ ବେସରକାରୀ କଲେଜ । ସନ୍ଦେହ ହେଉଥିଲା ଏମିତି ଭାବରେ ରାତି ଦିନ ଖୋଲାମେଲାରେ କ'ଣ ଓଡ଼ିଶା ସରକାରଙ୍କ ଡିଗ୍ରୀକଲେଜ ଚାଲିପାରେ ? କିଏ କିଏ ତାଚ୍ଛଲ୍ୟ କରି କହୁଥିଲେ ଦିନନାଥ ପାଠୀ କଲେଜ । ମୁଁ ମନେ ମନେ ଖୁସି ହେଉଥିଲି ସରକାରଙ୍କ ଧନରେ ନିଜ ନାଁରେ କଲେଜଟି ଗଢ଼ିଦେଇ ପାରିଲି । ଲୋକେ ସାଇନ୍‌ବୋର୍ଡ଼ରେ ପଢୁଥିଲେ ବିଭୂତି କାନୁନ୍‌ଗୋ, ବି.କା. ବା ଇଂରାଜୀରେ ବି.କେ. କିନ୍ତୁ କାହିଁକି କେଜାଣି ପରତ ଯାଉନଥିଲେ । ଆମେ ସରକାରଙ୍କ ବିଭିନ୍ନ ଶିଳ୍ପ ପ୍ରକଳ୍ପ ହାତକୁ ନେଇ କାର୍ଯ୍ୟକାରୀ କରୁଥିଲୁ ଏଣୁ କିଛି ଖଲ୍ଲିକୋଟିଆ ଶିଳ୍ପୀ ବନ୍ଧୁ କହୁଥିଲେ ବିକା କିଣା କଲେଜ ।

Digitized by srujanika@gmail.com

ଆମବେଳେ ଆର୍ଟ୍ କଲେଜର ପ୍ରିନ୍‌ସପାଲ୍ କହିଲେ ନିଜକୁ ଓଡ଼ିଶାର ଚିଫ୍ ସେକ୍ରେଟାରୀ ଭଳି ଲାଗୁଥିଲା । ଆମେ ପ୍ରିନ୍‌ସପାଲ୍ ଭାବେ ଚିକିଟି ରାଜପୁତ୍ର ଲଣ୍ଡନ ଫେରନ୍ତା ସାହେବ ଦେଉଙ୍କ ଥାଟବାଟ ଦେଖିଛୁ । ଚେହେରା ଯିମିତି ଆଦବ କାଏଦା ସିମିତି । ମୁଁ ଯେବେ ବିଭୂତି କାନୁନ୍‌ଗୋ ଆର୍ଟ୍ କଲେଜର ପ୍ରିନ୍‌ସ୍‌ପାଲ୍ ହେଇ ଯୋଗଦେଲି ମୋତେ କିମିତି କିମିତି ଆସକତିଆ ଲାଗିଲା । ନର୍ଭସ୍ ନହେଇ ମନକୁ ଦୃଢ଼କଲି । ମନେପଡିଲେ ପର୍ସି ବ୍ରାଉନ୍, ଅବନୀନ୍ଦ୍ର, ନନ୍ଦଲାଲ୍, ଦେବୀପ୍ରସାଦ ରାୟଚୌଧୁରୀ ଆଉ ସାହେବ ଦେଉ । କାହାନ୍ତି ସେ ସବୁ, ଗଗନର ତାରା ଆଉ ମୁଁ ଫୁଲିକୟାଁ ଫକୀରଙ୍କ କନିଷ୍ଠପୁତ୍ର ଖଲ୍ଲିକୋଟ ଫେରନ୍ତା ଅଧମ ଦିନନାଥ । ଅବଶ୍ୟ ନାଁ ଆଗରେ ଡକ୍ଟରଟିଏ ଯୋଡ଼ିହେଇଯାଇ ଗୋଟିଏ ମର୍ଯ୍ୟାଦାବନ୍ତ ସ୍ତରକୁ ମୋତେ ନେଇ ଆସିଥିଲା ।

ଭୁବନେଶ୍ୱରରେ ବିଗତ ଶତାବ୍ଦୀର ଅଶି ଦଶକର ପ୍ରାରମ୍ଭରେ ପ୍ରତିଷ୍ଠିତ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟ ବିଭିନ୍ନ ରାଜ୍ୟର ରାଜଧାନୀ ମାନଙ୍କରେ ଖୋଲା ଯାଇଥିବା ଆର୍ଟ୍ କଲେଜମାନଙ୍କ ମଧ୍ୟରେ ନବୀନତମ ଥିଲା । ଏଣୁ କଲିକତା, ବମ୍ବେ, ଦିଲ୍ଲୀ, ମାନ୍ଦ୍ରାଜ ପ୍ରଭୃତି ସହରର ପ୍ରସିଦ୍ଧ କଳା ଅନୁଷ୍ଠାନମାନଙ୍କରୁ ଅନେକ କିଛି ଶିଖିବାର ଯଦିଚ ଥିଲା ତଥାପି ସେମାନଙ୍କ ଶିକ୍ଷାପଦ୍ଧତିରେ ରହିଯାଇଥିବା ଅଭାବବୋଧକୁ ସୁଧାରିବାର ସୁଯୋଗ ମଧ୍ୟ ଥିଲା । ବି.କେ. କଲେଜ କିଭଳି ଅତ୍ୟାଧୁନିକ ଶୈକ୍ଷିକ ଭାବଧାରାର ଅଗ୍ରଣି ଅନୁଷ୍ଠାନଟିଏ ହୋଇ ପାରିବ ତା'ର ଗୋଟିଏ ପରିକଳ୍ପନା ମୁଁ କରିଦେଇଥିଲି । କପିଳା ବାତ୍ସାୟନ, ବ୍ରଜେନ୍ଦ୍ରନାଥ ଗୋସ୍ୱାମୀ, ଏବରହାର୍ଡ୍ ଫିସର୍, ମାଇଲୋ. ସି. ବିଚ୍, ମାରୁକ୍ ତାରାପୋରେ, ବାଲାନ୍ ନାମ୍ବିଆର୍, ହାକୁ ଶାହା ପ୍ରଭୃତି ଦେଶ ଓ ବିଦେଶର ବରିଷ୍ଠ ଶିଳ୍ପୀ ଓ କଳାଐତିହାସିକ ଯେଉଁ ସବୁ ପରାମର୍ଶ ଦେଇଥିଲେ, ମୋରି ପରିକଳ୍ପନାରେ ତାହାସବୁ ସ୍ଥାନ ପାଇଥିଲା । ମୋର ବଦ୍ଧମୂଳ ଧାରଣା ଥିଲା ଯେ ଚିତ୍ରକଳା ଅନୁଷ୍ଠାନର ଅବରୁଦ୍ଧ କୋଠରି ମଧ୍ୟରେ ଆହୃତ ଜ୍ଞାନ ପର୍ଯ୍ୟାପ୍ତ ନୁହେଁ । ସତୁରି ଦଶକରେ ଭୁବନେଶ୍ୱରରେ ବେସରକାରୀ ସ୍ତରରେ ଚିତ୍ରମ୍ କଳାବିଦ୍ୟାଳୟ ଗଢ଼ିଲା ବେଳଠୁ ଆମେ ଏଭଳି ଆଭିମୁଖ୍ୟକୁ ପାଠ୍ୟକ୍ରମ ମଧ୍ୟରେ ସ୍ଥାନ ଦେଇଥିଲୁ । ଚିତ୍ରମ୍ ସିଲାବସ୍ ପୁସ୍ତିକାର ଅଗ୍ରଲେଖରେ ମୁଁ ଏହି ଉଦାର ଭୂମିକାକୁ ସ୍ପଷ୍ଟ କରିଦେଇଥିଲି । ଏଣୁ କଳା ବିଦ୍ୟାଳୟର ବିଶ୍ୱସ୍ତରୀୟ ପାଠ୍ୟକ୍ରମ ଓ ଆଧୁନିକ ଶିକ୍ଷାପ୍ରଣାଳୀ ସଂପର୍କରେ ମୋ ପରବର୍ତ୍ତୀ ଅଧ୍ୟକ୍ଷ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କର ଟିପ୍ପଣୀ ହୁଏତ ତାଙ୍କ ପାଇଁ ସ୍ୱାଭାବିକ ଥିଲା ।

ମୋ ପରବର୍ତ୍ତୀ ଅଧ୍ୟକ୍ଷ ତାଙ୍କ ଲେଖା ମାଧ୍ୟମରେ ମୋତେ ଏ ଦେଶର ସ୍ଥିତି ସଂପର୍କରେ ସଚେତନ କରିଦେବା ପାଇଁ ଚାହିଁଥିଲେ । ସେ କହିବା ପାଇଁ ଚାହୁଁଥିଲେ, ହେ ବନ୍ଧୁ ! ଓଡ଼ିଶା ରାଜ୍ୟ ପାଇଁ ତମର ବିଶ୍ୱସ୍ତରୀୟ ଚିନ୍ତା ଓ କାର୍ଯ୍ୟକ୍ରମର ଆଦୌ ଆବଶ୍ୟକତା ନାହିଁ । ଆମକୁ ଦେଖ, ଗଙ୍ଗାକୁ ଘୁଷୁରି ଗାଡ଼ିଆରେ ପରିଣତ କରିଦେବାର ଆମ କ୍ଷମତାକୁ ଆକଳନ

Digitized by srujanika@gmail.com

କର । ପରିତାପର ବିଷୟ ମୁଁ ଏଭଳି ବିଷକୁମ୍ଭପୟୋ ମୁଖୀୟ ବନ୍ଧୁମାନଙ୍କର ହିତୋପଦେଶ ପ୍ରତି ସମବେଦନା ପ୍ରକାଶ କରିପାରିଲିନି ।

ଏବେ ଆଚମ୍ବିତ ଲାଗିଲା ବନ୍ଧୁ ଅଧ୍ୟାପକ ଶିବ ପାଣିଗ୍ରାହୀଙ୍କ ହତାଶିଆ କଥା । ଯିଏ ଓଡ଼ିଶା ପାଇଁ କିଛି କରିବାର ଜୀବନରେ ସୁଯୋଗ ପାଇନି ସିଏ ଏବେ ଅନୁଷ୍ଠାନ ଗଢୁ, ସେଣ୍ଟର୍ କରୁ । ତମେ ତ କଲେଜ ଗଢ଼ିବାରେ ଦାୟୀ ରହିଥିଲ, କାନ୍ଧରେ କେତେ ପଥର ବୋହିଛ, କେତେ ନା କେତେଥର ନିହାଣମୂନର ଧାର ମାଖୁନା ହୋଇଛି । ଜୀବନର ବଳକାଦିନତକ ସେହି ସ୍ୱପ୍ନରେ ସେହି ଗୌରବରେ ବଞ୍ଚ । ମନେରଖ ତମେ ଆମେ ଆମେ ସମସ୍ତେ ଏଭଳିକି ଚାକିରିର ସର୍ବନିମ୍ନ ପାହାଚରେ ରହିଥିବା ଅଶୋକ, ଫକୀର, ଭୁବନାନନ୍ଦ, ଭରତ ଓ ରେଣୁ ମଧ୍ୟ କଲେଜ ଗଢ଼ିବାରେ ସହଯୋଗୀ ଥିଲେ । ଆମ କଲେଜ ଆମେ ଗଢ଼ିଥିଲେ । ଏତେଶୀଘ୍ର ବିଶ୍ୱାସ ହରେଇ ଦିଅନି ବନ୍ଧୁ । ଏଇ ପୃଷ୍ଠାଗୁଡ଼ିକ ଲୁହରେ, ରକ୍ତରେ, ପଳାଶ ଫୁଲର ରଙ୍ଗରେ, ମଧୁମାଳତୀର ଗନ୍ଧରେ ଲେଖାହେଇଛି । ପୃଷ୍ଠାଗୁଡ଼ିକରେ ମୁଁ ସେଦିନମାନଙ୍କର କଥା, ବ୍ୟଥା, ଆନନ୍ଦ ଓ ଉଦ୍ଦାତ୍ତ ମୁହୂର୍ତ୍ତର କାହାଣୀ ଭରିଦେବା ପାଇଁ ଚେଷ୍ଟା କରିଛି । ଏହି ପୃଷ୍ଠାମାନଙ୍କରେ ଲିପିବଦ୍ଧ ଅଛି ଛାତ୍ରଛାତ୍ରୀ ଓ ସହକର୍ମୀମାନଙ୍କର ତ୍ୟାଗର ଓ ସ୍ନେହାନୁବନ୍ଧର ଋଣ ପରିଶୋଧର ଆସ୍ପୃହା ।

ଆମେ ଆମ ଛାତ୍ରଛାତ୍ରୀଙ୍କୁ ଯେଭଳି ଯେତିକି ତିଆରି ଥିଲୁ, ସେମାନେ ଆଉ ସେଇଠି ନାହାନ୍ତି । ଯେଉଁମାନେ ଜୀବନ ଯୁଦ୍ଧରେ ପାରିଉଠି ପାରିଲେନି ସେମାନେ ନିରବେଇଗଲେ । କିନ୍ତୁ କେଉଁଠି ବେଳେ ଅଧେ ଦେଖାହେଲେ ଆମେ ପୁରୁଣା ସ୍ମୃତିର ମାଦକତାରେ ମଜଗୁଲ ହେଇଯାଉ । ଲାଗେ ଉପରକୁ ସିନା ପଟାଟୋପ ନାହିଁ କିନ୍ତୁ ଶିଳ୍ପୀର ଦରଦ ହୃଦୟ ଓ ଆସକ୍ତ ପ୍ରାଣନେଇ ସେମାନେ ବଂଚିଛନ୍ତି । ଆଉ ଯେଉଁମାନେ ପ୍ରଶଂସା, ସମ୍ମାନ, ଅର୍ଥ ଓ ପ୍ରତିପତ୍ତିର ଶୀର୍ଷରେ ରାଜୁତି କରୁଛନ୍ତି ସେମାନେ ବି ବି.କେ. କଲେଜକୁ ଭୁଲି ନାହାନ୍ତି । ବି.କେ. କଲେଜ ମାନେ ଉଦୟଗିରି, ଖଣ୍ଡଗିରି ପାଦଦେଶର ଅଷ୍ଟଦଳ ପଦ୍ମମଣ୍ଡଳ ଉପରେ ଗଢ଼ି ଉଠିଥିବା ବିଶାଳ କୋଠାଘର ନୁହେଁ । କଳ୍ପନା ଛକର ସେହି ଭଡ଼ାଘର, ତାରୁଣ୍ୟର ଉତ୍ତାଳରେ ମହକି ଯାଇଥିବା ଅନ୍ତରଙ୍ଗ ପରିବେଶ ।

ଆମେ ଗଢ଼ିଥିବା କଲେଜ, ତିଆରିଥିବା ପାଠ୍ୟକ୍ରମ ସବୁ ଯିମିତି ପୁରୁଣା ହେଇଗଲାଣି । ସାଂପ୍ରତିକ ବିଶ୍ୱକଳାର ଧାରା କେଉଁଠୁ ଆସି କେଉଁଠି ପହଞ୍ଚିଗଲାଣି ତାହା ଆଉ ଆକଳନ କରିବା କଷ୍ଟ ହେଉଛି । ଆମ ଛାତ୍ରଛାତ୍ରୀମାନେ ଆମକୁ କାହିଁ କେତେ ପଛରେ ପକେଇ ଧନରେ, ମାନରେ, ନବୀନ ଉନ୍ମାଦନାରେ ବହୁ ଆଗକୁ ମାଡ଼ିଗଲେଣି । ଆଉ ଆଖି ପାଉନି । ସେଦିନର ବୟାଳିଶି ବର୍ଷର ଯୁବ ଅଧ୍ୟକ୍ଷ ଏବେ ସତୁରି ବର୍ଷର ବୃଦ୍ଧ । ଏବେ ସେହି ଅଧ୍ୟକ୍ଷ ଯିଏ ତାଙ୍କର ଛାତ୍ରଛାତ୍ରୀଙ୍କ ପ୍ରେମ ଓ ପରିଣୟର ସାକ୍ଷୀ ଥିଲେ ସିଏ

Digitized by srujanika@gmail.com

ଆଜି ଜେଜେ ଓ ଅଜାର ଭୂମିକାରେ । ପରିବର୍ତ୍ତନ ଅବଶ୍ୟମ୍ଭାବୀ ହେଲେ ବି ଅତ୍ୟନ୍ତ ରୋମାଞ୍ଚକର ଓ ସ୍ୱାଗତଯୋଗ୍ୟ ।

କଲେଜର ଅଧ୍ୟକ୍ଷଙ୍କ ଉପରେ କେତେକ ଛାତ୍ରଛାତ୍ରୀଙ୍କ ଏବଂ କତିପୟ ସହକର୍ମୀଙ୍କ ଅଭିଯୋଗ ତ ନୁହଁ ଅଭିମାନ ଓ କ୍ଷୋଭ । ମୁଁ ହୁଏତ କାହାକୁ ଛାତ୍ରାବସ୍ଥାରେ କଲେଜ ପୁରସ୍କାର ଦେଇନି । କେନ୍ଦ୍ର ଲଳିତ କଳା ଏକାଡେମୀର ବାର୍ଷିକ ଚିତ୍ରପ୍ରଦର୍ଶନୀରେ ହୁଏତ ଆଉ କାହାର ଚିତ୍ର ବା ଭାସ୍କର୍ଯ୍ୟକୁ ନିର୍ବାଚିତ ବା ପୁରସ୍କୃତ କରିବାରେ ସାହାଯ୍ୟ କରିନି । କିଏ ହୁଏତ କଲେଜରେ ଅଧ୍ୟାପକ ହୋଇପାରିଲେନି ବୋଲି ଏବେବି ତାଙ୍କ ଆକ୍ରୋଶର ଉଷ୍ଣତା କମିନି । ମୁଁ ହୁଏତ କୌଣସି ସାକ୍ଷାତକାରରେ ଏକସ୍‌ପାର୍ଟ ଥିଲି, ରାମକୁ ଚାକିରୀ ପାଇଁ ଯୋଗ୍ୟ ନ ବିଚାରି ଗୋବିନ୍ଦକୁ ଅଧିକା ନମ୍ବର ଦେଇଥିବାରୁ ରାମ ମୋ ଉପରେ ରାଗ ରଖିଛି । ଏଭଳି ଘଟଣାବଳୀର ତାଲିକା ସୁଦୀର୍ଘ । ହଁ କିଏ ଜଣେ ମୋର ଅତି ଅନ୍ତରଙ୍ଗ ହୋଇ ସୁଦ୍ଧା ଭାରତ ଉତ୍ସବ ପ୍ରକଳ୍ପରେ ବିଦେଶ ଯାଇପାରିଲେନି । ଆଉ ଅନ୍ୟଜଣେ ବନ୍ଧୁ ମହାବିଦ୍ୟାଳୟ ପାଇଥିବା ଶିଳ୍ପ କାମରୁ ଅଧଲାଏ ସୁଦ୍ଧା ପାଇପାରିଲେନି ଇତ୍ୟାଦି ଇତ୍ୟାଦି ।

ଫଳନ୍ତି ଗଛକୁ ହିଁ ସମସ୍ତେ ଢେଲା ମାରନ୍ତି । ଆଶା ଥାଏ ହୁଏତ ଫଳଟିଏ ଝଡ଼ିବ । ଥୋକେ ଶୀତଳ ଛାଇରେ ଆମୋଦିତ ହୋଇ ଫଳ ଆଶା ରଖି ନଥାନ୍ତି । ଗଛ ଏସବୁରେ ବିଚଳିତ ନୁହେଁ । ମୋର ଦୃଢ଼ଧାରଣା ଏସବୁ ଅଭିଯୋଗ, ଅଭିମାନ ସମୟ ସ୍ରୋତରେ କୁଆଡ଼େ ଉଭେଇଯିବ । କଥା ରହିଯିବ ଆମେ ସମସ୍ତେ ଏକାସାଙ୍ଗରେ କଲେଜ ଗଢ଼ିଥିଲେ । ତାହା ଥିଲା ଏକ ଭିନ୍ନ ସମୟ, ଏକ ଭିନ୍ନ ବେଳା । ତାହା ଆମ ପାଇଁ ଆଣିଦେଇଥିଲା ଏକ ଅପୂର୍ବ ସୁଯୋଗ । ମୋ ସହକର୍ମୀ ତଥା ଛାତ୍ରଛାତ୍ରୀଙ୍କର ଅକୁଣ୍ଠ ସାହାଯ୍ୟ, ସହଯୋଗ ଓ ସ୍ନେହ କେବେ ହେଲେ ଭୁଲିହେବନି । ଭୁଲି ନ ହେବାର ଏହା ଏକ ଦସ୍ତାବେଜ ।

ଏବେ କଲେଜ ଗଢ଼ିବାର ସ୍ମୃତି ରୋମନ୍ଥନ କଲେ ମନ ଅପାର ଆନନ୍ଦରେ ଭରିଯାଏ । ମନେହୁଏ ମୁଁ ଅଧ୍ୟକ୍ଷ ହେବାର ସୁଯୋଗ ପାଇଥିଲି ବୋଲି ବେଳେବେଳେ ମୋ ମନରେ ମଧ୍ୟ ଅଭିମାନର ଜୁଆର ଖେଳେ । କିନ୍ତୁ ସମସ୍ତଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିବା ଛଡ଼ା ଏବେ ମୋ ପାଖରେ ଅନ୍ୟ ସମ୍ବଳ ନାହିଁ ।

ଏଇଠି ଏହି ପୃଷ୍ଠାଗୁଡିକରେ ସେହି କୃତଜ୍ଞତାର ସନ୍ତକ ଲିପିବଦ୍ଧ ହୋଇଛି । ପୂର୍ବରଙ୍ଗର ପୃଷ୍ଠାତକ ପଢ଼ିସାରିଲେ ଶିବ ପାଣିଗ୍ରାହୀଙ୍କ ନିଶ୍ଚୟ ହୃଦ୍‌ବୋଧ ହେବ ଯେ ମୁଁ ମୋ ନାଁରେ ଆଉଗୋଟିଏ ଆର୍ଟ୍ ସେଣ୍ଟର୍ (ଦିପା ସେଣ୍ଟର୍ ଅଫ୍ ଆର୍ଟ) ଗଢ଼ିବାର ଆବଶ୍ୟକତା ନାହିଁ ।

Digitized by srujanika@gmail.com

## ୨. ପରିଯୋଜନା ଓ ପ୍ରତାରଣା

ସରକାର ଭୁବନେଶ୍ୱରରେ ଚାରୁକଳା ମହାବିଦ୍ୟାଳୟଟିଏ ଖୋଲିବା ପାଇଁ ମନସ୍ଥ କରି ଖଲ୍ଲିକୋଟ ଆର୍ଟ୍ କଲେଜର ସେତେବେଳର ଅଧ୍ୟକ୍ଷ ବିପ୍ରଚରଣ ମହାନ୍ତି ଓ ରାଜ୍ୟ ଲଳିତ କଳା ଏକାଡେମୀର ସଂପାଦକ ଜଗଦୀଶ ଚନ୍ଦ୍ର କାନୁନ୍‌ଗୋଙ୍କୁ ଦୁଇଟି ଚିଠି ଲେଖିଲେ । ଦୁଇଟିଯାକ ଚିଠିର ଉତ୍ତର ଅତ୍ୟନ୍ତ ନିରୁତ୍ସାହଜନକ ଥିଲା । ବିପ୍ରଚରଣ ସରକାରଙ୍କୁ ଦେଇଥିବା ଚିଠିରେ ଉଲ୍ଲେଖ ଥିଲା; ଗୋଟିଏ କଲେଜ ଖୋଲିବା ପାଇଁ ଦରକାର ଜଣେ ଅଧ୍ୟକ୍ଷ, ଚାରିଜଣ ଅଧ୍ୟାପକ, ଚାରୋଟି ଫ୍ରଡ୍ ଲାଇଟ୍ (ଫ୍ଲଡ୍ ବନାନ ଅଶୁଦ୍ଧ ହୋଇ ଫ୍ରଡ୍ ହୋଇଯାଇଥିଲା) ଆଉ ତିରିଶି ହଜାର ଟଙ୍କାର କନ୍‌ଟିଜେନ୍‌ସି । ଖଲ୍ଲିକୋଟର ଅଧ୍ୟକ୍ଷ, ଆମ ବିପ୍ର ସାର୍ ବୋଧହୁଏ ତାଙ୍କ ଅନୁଷ୍ଠାନର ଜନ୍ମଜାତକ ୧୯୫୭ ମସିହାର ଫାଇଲ୍ ଖୋଲି ଏହି ଦୁର୍ମୂଲ୍ୟ ତଥ୍ୟତକ ପାଇଥିଲେ । ଏ ଭିତରେ ପଚିଶି ଛବିଶି ବର୍ଷ ବିତିଯାଇଛି ଆଉ ମୁଦ୍ରାସ୍ଫୀତି କାହିଁ କେଉଁଠି ଆସି ପହଞ୍ଚିଯାଇଛି ତା'ର ହିସାବ ସିଏ ରଖି ନଥିଲେ । ଚାରିଜଣ ଅଧ୍ୟାପକ, ପୁଣି ମାନ୍ଧାତା ଅମଳର ଚାରୋଟି ବିଭାଗ ଯଥା ତୈଳଚିତ୍ର, ଭାରତୀୟ ଚିତ୍ରକଳା, ମୋଡେଲିଙ୍ଗ୍ ଓ ଭାସ୍କର୍ଯ୍ୟ ଏବଂ ବ୍ୟବସାୟିକ କଳା ବା କମରସିଆଲ୍ ଆର୍ଟ୍ ପାଇଁ ଉଦ୍ଦିଷ୍ଟ ଥିଲା । ଏକାଡେମୀରୁ ସରକାରଙ୍କ ନିକଟକୁ ଯେଉଁ ଚିଠି ଆସିଥିଲା ସେଥିରେ ଅନୁରୂପ ତ୍ରୁଟି ବିଚ୍ୟୁତି ଭରି ରହିଥିଲା ଏବଂ ଖାସ୍‌କରି ଅଧ୍ୟକ୍ଷଙ୍କ ଯୋଗ୍ୟତା ସଂପର୍କରେ ଯାହା ନିର୍ଧାର୍ଯ୍ୟ କରାଯାଇଥିଲା ତାହା ଦୁରଭିସନ୍ଧିମୂଳକ ଥିଲା । ଉଲ୍ଲେଖ ଥିଲା ଯିଏ ଅଧ୍ୟକ୍ଷ ପଦବୀ ପାଇଁ ବିବେଚିତ ହେବ ସିଏ ଶାନ୍ତିନିକେତନ କଳାଭବନରୁ ଡିପ୍ଲୋମା ପାସ୍ କରିଥିବ ଏବଂ ଲଣ୍ଡନର କୌଣସି ଗୋଟିଏ ଅନୁଷ୍ଠାନରେ ବର୍ଷେ ଉଚ୍ଚତର ତାଲିମ ପାଇଥିବ । ଏଭଳି ଯୋଗ୍ୟତାସଂପନ୍ନ ବ୍ୟକ୍ତି ଓଡ଼ିଶାରେ ଜଣେ ମାତ୍ର ଥିଲେ ଓ ସିଏ ହେଲେ ଅଜିତ କେଶରୀ ରାୟ । ଆମ ଅଜିତ ସାର୍ ସେତେବେଳକୁ ସରକାରୀ ଚାକିରିରୁ ଅବସର ନେଇ ରାଣୀହାଟ ସେବାସଦନରେ ରହୁଥିଲେ । ଏକାଡେମୀ କର୍ତ୍ତୃପକ୍ଷଙ୍କ ଆଭିମୁଖ୍ୟ ଖୁବ୍ ଉଚ୍ଚ ଦରର ଥିଲା କାରଣ ସେମାନେ ଜଣେ ଲଣ୍ଡନ ଫେରନ୍ତାଙ୍କୁ ଏହି ନୂଆ କଲେଜର ଅଧ୍ୟକ୍ଷ ଭାବରେ ଦେଖିବା ପାଇଁ ଚାହୁଁଥିଲେ ।

ଏଇତ ଗଲା ଭୁବନେଶ୍ୱରର କଥା, କଟକରେ ଆଉ ଅନ୍ୟପ୍ରକାରର ନାଟକଟିଏ ଅଭିନୀତ ହେଉଥିଲା । ବିଭୂତି କାନୁନ୍‌ଗୋ, ମୁରଲୀଧର ଟାଲି, ଅସିତ ମୁଖାର୍ଜୀ, ଶିବ

Digitized by srujanika@gmail.com

ପାଣିଗ୍ରାହୀ ଓଗେର ଚିତ୍ରଶିଳ୍ପୀମାନେ କଟକ ମହମ୍ମଦିଆ ବଜାରରେ ଗୋଟିଏ ପ୍ରାଇଭେଟ୍ ଆର୍ଟ୍ କଲେଜ ଖୋଲିଥିଲେ । ଆର୍ଟ୍ କଲେଜଟିଏ ଖୋଲି କଳାଶିକ୍ଷାର ବିକାଶ କରିବା ପାଇଁ ଓଡ଼ିଶାର ବହୁ ବଡ଼ ବଡ଼ ଶିଳ୍ପୀମାନେ ପ୍ରାୟତଃ ପ୍ରୟାସ କରି ଆସିଛନ୍ତି । ଏଭଳି ପ୍ରଚେଷ୍ଟାର ମୂଳଦୁଆ ପକେଇଥିଲେ ଶରତଚନ୍ଦ୍ର ଦେବ । ଆମେ ମଧ୍ୟ ଏଭଳି ଏକ ମହତ୍ ପରିଯୋଜନାରେ ଉଦ୍‌ବୁଦ୍ଧ ହେଇ ଭୁବନେଶ୍ୱରରେ ପ୍ରଥମ ବେସରକାରୀ ଚିତ୍ରକଳା ବିଦ୍ୟାଳୟ 'ଚିତ୍ରମ୍' ଆରମ୍ଭ କରିଥିଲୁ । 'ଆମେ' ଅର୍ଥାତ୍ ଅସୀମ ବସୁ, ଅସିତ ମୁଖାର୍ଜୀ, ଉଦୟ ନାରାୟଣ ଜେନା ଓ ମୁଁ ପ୍ରଭୃତି । କଳା ବିଦ୍ୟାଳୟର ନିଶା ଢ଼ଣା ଅଧିକେ ଅଧିକାଂଶ ଓଡ଼ିଆ ଶିଳ୍ପୀଙ୍କୁ ବିଭିନ୍ନ ସମୟରେ ଘାରିଛି । ଖଲ୍ଲିକୋଟଠାରେ କଳା ବିଦ୍ୟାଳୟ ପ୍ରତିଷ୍ଠା ହେବା ଆଗରୁ ମୁରଲୀଧର ଟାଲି, ଗୋପାଳଚରଣ କାନୁନ୍‌ଗୋ ପ୍ରମୁଖ କଟକରେ ଆର୍ଟ୍ ସ୍କୁଲ୍‌ଟିଏ ତିଆରି କରିବା ପାଇଁ ସମସ୍ତ ଯୋଗାଡ଼ କରି ପରବର୍ତ୍ତୀକାଳରେ ସେଥିରୁ କ୍ଷାନ୍ତ ରହିଥିଲେ । ଏଣୁ ମହମ୍ମଦିଆ ବଜାରର ଆର୍ଟ୍ ସ୍କୁଲ ଲାଗୁଥିଲା 'ମଙ୍ଗଳାଚରଣ' ପରର 'ଥାଇ' ନୃତ୍ୟ । ଏହି ସ୍କୁଲଟି ବିଭୂତି କାନୁନ୍‌ଗୋଙ୍କ ବ୍ଲକ୍ ତିଆରି କାରଖାନା ଘରେ ଅନୁଷ୍ଠିତ ହେଉଥାଏ । ବିଭୂତି ବାବୁଙ୍କର ସେଠି ଗୋଟିଏ ଜିଙ୍କ୍ ବ୍ଲକ୍ ପ୍ରସେସିଙ୍ଗ୍ ୟୁନିଟ୍ ଓ ଛାପାଖାନା ମଧ୍ୟ ଥାଏ । କଟକର ଗୁଣୀ, ମାନୀ, କବି, ସାହିତ୍ୟିକମାନେ ବହିରେ ବ୍ୟବହୃତ ବ୍ଲକ୍ ପାଇଁ ଏଠି ଗହଳ ଲଗାଉଥାନ୍ତି । ସେମାନଙ୍କ ମଧ୍ୟରେ ଥାଆନ୍ତି ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍‌ସ୍‌ର ସଂପାଦକ ଏବଂ ପରବର୍ତ୍ତୀ ସମୟରେ ପୌରୁଷ ପତ୍ରିକା ପ୍ରକାଶ କରୁଥିବା ଜାନକୀ ବଲ୍ଲଭ ପଟ୍ଟନାୟକ । ପୌରୁଷର ସଂପର୍କକୁ ନେଇ ବିଭୂତିବାବୁ ଓ ଜାନକୀବାବୁଙ୍କ ମଧ୍ୟରେ ଆତ୍ମୀୟତା ଗଢ଼ି ଉଠିଥାଏ । ପ୍ରେସ୍‌ବାଲାଙ୍କ ସହିତ ଲେଖକର ସଦା କୋଳାକୋଳି ଭାବରୁ ଏଭଳି ନିରନ୍ତରତା ସ୍ୱାଭାବିକ । ବିଭୂତିବାବୁ ଯଦିଚ ମୁରଲୀଧରଙ୍କ ଭଳି ଏତେ ଉଜ୍ଜ୍ୱଳ ପ୍ରତିଭାଧାରୀ ଶିଳ୍ପୀ ନଥିଲେ ତଥାପି ଛପାଛପି ଓ ପ୍ରେସ୍ ଜନିତ ବିଦ୍ୟାରେ ସେ ଧୁରନ୍ଧର ଥିଲେ । ଅସିତ ମୁଖାର୍ଜୀ, ବିଭୂତି କାନୁନ୍‌ଗୋ, ମୁରଲୀଧର ଟାଲି, ଶିବ ପାଣିଗ୍ରାହୀ ଓ ଆଡ୍‌ଭୋକେଟ ଗୋକୁଳିବାବୁ ପାଞ୍ଚାଳୀ ପ୍ରକାଶନ ସଂସ୍ଥାଟିଏ ଗଢ଼ି କେତୋଟି ଉଲ୍ଲେଖନୀୟ ବହି ପ୍ରକାଶ କରିଥିଲେ । ତା' ଭିତରେ 'ସଚିତ୍ର ରାମାୟଣ' ଓ 'ଦେବୀ ମହାତ୍ମ୍ୟ' ପ୍ରଧାନ । ଯେହେତୁ ସେମାନେ କଳା ଇତିହାସ ଗବେଷଣାର ଧାରା ସଂପର୍କରେ ଅବହିତ ନଥିଲେ ସେହେତୁ ତାଙ୍କ ମହମ୍ମଦିଆ ବଜାର କଳା ବିଦ୍ୟାଳୟରେ ଆଧୁନିକ ପରମ୍ପରାର ଶିଳ୍ପୀଙ୍କ ଦ୍ୱାରା ଅଙ୍କିତ ଚିତ୍ରକୁ ଆଧାର କରି ବହିଗୁଡିଏ ଛାପି ତାହା ପୁରାତନ ଚିତ୍ର ଅବଲମ୍ବନରେ ଅଙ୍କିତ ବୋଲି କହିବାରୁ ସେଥିରୁ ଐତିହାସିକ ମୂଲ୍ୟ ହଟି ଯାଇଥିଲା । ମୁରଲୀଧର ଟାଲି ତାଙ୍କର ଏକ ସମୟର ଛାତ୍ରୀ କଲିକତା ଫାଇନ୍ ଆର୍ଟ୍ ଏକାଡେମୀର ଅଧ୍ୟକ୍ଷା ଲେଡ଼ି ରାନୁ ମୁଖାର୍ଜୀଙ୍କ ସହାୟତାରେ କଲିକତାରେ ବହିରେ ଅନ୍ତର୍ଭୁକ୍ତ ଚିତ୍ରର

Digitized by srujanika@gmail.com

ପ୍ରଦର୍ଶନୀ ସାଙ୍ଗକୁ ବହି ବିକ୍ରୀର ଆୟୋଜନ କରି ମଧ୍ୟ ନିରୁତ୍ସାହିତ ହେଉଥିଲେ । ବିଭୂତି ବାବୁଙ୍କ କଳା ସମାଲୋଚକ ହେବା ନିଶା ସେତିକିରେ ପ୍ରଶମିତ ହେଇଯାଇଥିଲା । ତାଙ୍କ ଅନ୍ତେ ତାଙ୍କ ଜୋଗୁଁ ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର ଫଟୋଗ୍ରାଫର୍ ନଟବର ଦାସ ସଚିବ ଅଓ୍ୱଧ୍ ନାରାୟଣ ତିଓ୍ୱାରୀଙ୍କ ସୁପାରିଶରେ ବିଭୂତି ବାବୁଙ୍କ 'ସଚିତ୍ର ରାମାୟଣ ' ଓ 'ଦେବୀ ମହାତ୍ମ୍ୟ' ସରକାରୀ ବିଭାଗମାନଙ୍କରେ ବିକ୍ରୟ କରିବା ପାଇଁ ସକ୍ଷମ ହେଉଥିଲେ ।

ବିଭୂତି କାନୁନ୍‌ଗୋ ତାଙ୍କ ବନ୍ଧୁମାନଙ୍କ ତୁଳନାରେ ନିର୍ଲୋଭୀ ମଣିଷଟିଏ ଥିଲେ । ଏଣୁ ଓଡ଼ିଶାରେ ଚିତ୍ରକଳାର ବିକାଶ ପାଇଁ ଆବଶ୍ୟକୀୟ ଅଧିକାଂଶ ଅର୍ଥ ସେ ନିଜେ ବ୍ୟୟ କରୁଥିଲେ । ମହମ୍ମଦିଆ ଚିତ୍ରକଳା କଲେଜ ପାଇଁ ଚାରି ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ କରି ସର୍ବସ୍ୱାନ୍ତ ହେଲାପରେ ସେ ଇଲା ପଣ୍ଡାଙ୍କୁ ଅନୁରୋଧ କରି କଲେଜର ପରିଚାଳନା ଭାର ବହନ କରିବା ପାଇଁ ରାଜି କରେଇ ଦେଇଥିଲେ । ଏଣୁ ହୁଏତ ଇଲା ପଣ୍ଡା ନିଜ ପ୍ରଭାବ ବଳରେ କଲେଜଟିକୁ ସରକାରୀ କରେଇ ଦେଲେ ମୁରଲୀବାବୁ ଆଉ ଅଧ୍ୟକ୍ଷ ରହିପାରିବେନି ବୋଲି ଆଶଙ୍କା ହେବାରୁ ମୁରଲୀବାବୁ ଭିତିରିଆ ଇଲା ପଣ୍ଡାଙ୍କୁ କୁମନ୍ତ୍ରଣା ଦେଇ କଲେଜଠାରୁ ତାଙ୍କୁ ଦୂରେଇ ଦେଇଥିଲେ । ଶୁଣାଯାଉଥିଲା ଇଲାପଣ୍ଡା ତାଙ୍କ ଘର ପାଖାପାଖି ସତ୍ୟନଗର ଭିତରେ କଲେଜ ପାଇଁ ଘରଟିଏ ମଧ୍ୟ ଠିକଣା କରି ସାରିଥିଲେ ।

ମହମ୍ମଦିଆ ବଜାରର ବିଭୂତି ବାବୁଙ୍କ କଲେଜ ପରିଦର୍ଶନ କରି ସରକାରଙ୍କୁ ରିପୋର୍ଟ ଦେବା ପାଇଁ ମୋତେ ଥରେ ଦାୟିତ୍ୱ ଦିଆଯାଇଥିଲା । ମୁଁ ସେତେବେଳକୁ ଓ.ଟି.ଡି.ସି.ରେ ଚାକିରି କରୁଥାଏ । ହଠାତ୍ ସେମାନଙ୍କ କଲେଜରେ ପରିଦର୍ଶକ ଭୂମିକାରେ ମୋତେ ଦେଖି ଉଭୟ ବିଭୂତି ବାବୁ ଓ ମୁରଲୀ ବାବୁ ପ୍ରମାଦ ଗଣିଲେ । ସେମାନଙ୍କ ଆଶଙ୍କା ହେଲା ମୁଁ ହୁଏତ ତାଙ୍କ କଲେଜ ବିରୁଦ୍ଧରେ ସଂସ୍କୃତି ବିଭାଗକୁ ରିପୋର୍ଟ ଦେଇ ପ୍ରସ୍ତାବିତ ସରକାରୀ ଅନୁଦାନରୁ କଲେଜଟିକୁ ବଂଚିତ କରିଦେବି । ଆମେ ଉଭୟପକ୍ଷ କଲେଜର ରେକର୍ଡ଼ପତ୍ରର ଅବସ୍ଥା ଜାଣିଥିଲୁ । କଲେଜଟି ଅବ୍ୟବସ୍ଥା ଭିତରେ କଷ୍ଟେମଷ୍ଟେ ତିଷ୍ଠି ରହିଥିଲା । ସରକାରୀ ଅଫିସରେ ଏଠି ସେଠି ଚାକିରି କରୁଥିବା କିଛି ପିଲାଙ୍କ ନାଁ କଲେଜ ଉପସ୍ଥାନ ବହିରେ ଦରଜ କରାଯାଇଥିଲା । ମୋ ପ୍ରତି ବିଭୂତି ବାବୁଙ୍କ ସନ୍ଦେହ ଦୂର କରେଇ ଦେବା ପାଇଁ ମୋ ଆଡୁ ତାଙ୍କୁ ପଚାରିଲି, 'ଆଜ୍ଞା କ'ଣ ରିପୋର୍ଟ ଲେଖିବି କହନ୍ତୁ, ସତକଥା ଲେଖିଲେ ଆପଣ ଗ୍ରାଣ୍ଟ୍ ପାଇବେନି, ମିଛକଥା ଲେଖି ନିଜକୁ ଅଡୁଆରେ ପକେଇବା ପାଇଁ ଚାହୁଁନି ।' ମୁଁ ଆଗରୁ କହିଛି ବିଭୂତି ବାବୁ ସଦା ସିଧା ଲୋକ । ସିଏ ବି ଭୁଲ କରିବା ପାଇଁ ଚାହିଁଲେନି ଏବଂ ମୋ ବିବେଚନା ଉପରେ ତାଙ୍କ ନିଷ୍ପତ୍ତି ଛାଡ଼ି ଦେଲେ । ମହମ୍ମଦିଆ ଚିତ୍ରକଳା କଲେଜ ସରକାରୀ ସ୍ୱୀକୃତି ପାଇଲାନି ।

Digitized by srujanika@gmail.com

ଇଷ୍ଟର୍ଣ୍ଣ ଟାଇମ୍‌ସର ପ୍ରାକ୍ତନ ସଂପାଦକ ଜାନକୀ ବଲ୍ଲଭ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । ଏଣୁ ଜାନକୀ ବାବୁଙ୍କ ସରକାର ଉପରେ ବିଭୂତି ବାବୁଙ୍କ ମୂଳ ଭରସା ଥିଲା । କଲେଜ ପରିଦର୍ଶନ ଘଟଣାର କିଛି ମାସ ମଧ୍ୟରେ ବିଭୂତି କାନୁନ୍‌ଗୋଙ୍କ ମୃତ୍ୟୁ ହେଲା । ତାଙ୍କ ଶବସଂସ୍କାର ବେଳେ ମହାମ୍ମଦିଆ ଆର୍ଟ୍ କଲେଜର ଯେଉଁ କେତେଜଣ ଶିଳ୍ପୀ ଓ ଶୁଭେଚ୍ଛୁ ଶ୍ମଶାନରେ ଉପସ୍ଥିତ ଥିଲେ ସେମାନେ ଶପଥ ନେଇଥିଲେ ଯେ ଭୁବନେଶ୍ୱରରେ କଳା ମହାବିଦ୍ୟାଳୟ ପ୍ରତିଷ୍ଠା ହେଲେ ତାହା ବିଭୂତି ବାବୁଙ୍କ ନାଁରେ ହିଁ ନାମିତ ହେବ ।

ଭୁବନେଶ୍ୱରରେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସରକାର ନିଷ୍ପତ୍ତି ନେଲେ । ଅଗତ୍ୟାରେ ପଡ଼ି କଲେଜଟିକୁ କଟକରେ ପ୍ରତିଷ୍ଠା କରିପାରୁ ନଥିବାରୁ କଟକର ମୁଖିଆମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପୌରୁଷ ସଂପାଦନା ବେଳର ତାଙ୍କର ବନ୍ଧୁ ବିଭୂତି କାନୁନ୍‌ଗୋଙ୍କ ସ୍ମୃତିରେ ସରକାରୀ କଲେଜଟିକୁ ଉତ୍ସର୍ଗ କରିଦେଲେ । ପର୍ଯ୍ୟଟନ ନିଗମରେ ନାନା କାମରେ ମୁଁ ବ୍ୟସ୍ତ ରହୁଥିବାରୁ ସଂସ୍କୃତି ବିଭାଗରେ ଫାଇଲ୍‌ପତ୍ରରେ କ'ଣ ସବୁ ଘଟୁଛି, ତା'ର ଟେର ସହଜରେ ପାଇ ପାରୁନଥିଲି । କିଏ ଜଣେ ବନ୍ଧୁ ମୋତେ ଚେତେଇ ଦେଇ କହିଲେ, 'ଭୁବନେଶ୍ୱର ଆର୍ଟ୍ କଲେଜ ପାଇଁ ଘର ଖୋଜା ଆରମ୍ଭ ହେଲାଣି ଆପଣ ଏଠି କ'ଣ କରୁଛନ୍ତି ?' ମୋ ଚେତା ପଶିଲା । ଖବର ନେବାରୁ ଜଣାପଡିଲା ମ୍ୟୁଜିୟମ୍‌ର ଶ୍ୟାମସୁନ୍ଦର ପଟ୍ଟନାୟକ ଓ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଦୁର୍ଗାପ୍ରସାଦ ଦାସ ଖାରବେଳ ନଗରରେ ଘୁରାଫେରା କରି ଆର୍ଟ୍ କଲେଜ ପାଇଁ ଘର ଠାବ କରିସାରିଲେଣି । ବିଶିଷ୍ଟ ଓଡ଼ିଶୀ ନୃତ୍ୟାଙ୍ଗନା କୁଙ୍କୁମ ମହାନ୍ତି ସଂସ୍କୃତି ବିଭାଗର ନିର୍ଦ୍ଦେଶିକା । ମୁଁ ଚିତ୍ରଶିଳ୍ପୀ ନୁହେଁ, ଓ.ଟି.ଡି.ସି.ରେ ଗାଡି ଘୋଡ଼ା ହେପାଜତ କରେ ବୋଲି ମୋ ପ୍ରତିପକ୍ଷର ଲୋକ କୁଙ୍କୁମ ମହାନ୍ତିଙ୍କୁ ବୁଝେଇ ଦେଇଥାନ୍ତି । ଆମ ରାଜ୍ୟରେ ନାଚକୁ ଓ ଚିତ୍ରକଳାକୁ ସାତତାଳ ପ୍ରଭେଦ ବୋଲି ମୋ ସଂପର୍କରେ ଜାଣିବା ଓ ଖବର ରଖିବା ପାଇଁ ନିର୍ଦ୍ଦେଶିକାଙ୍କ ଆଗ୍ରହ ନଥାଏ । ସିଏ ତ ନାଚ କରନ୍ତି, ଅନ୍ୟମାନେ କିଏ କ'ଣ କରନ୍ତି ସେଥିରେ ତାଙ୍କ ଯାଏ କେତେ ଆସେ କେତେ ?

ସ୍କୁଟର୍ ଦୁର୍ଘଟଣାରେ ଆଘାତ ପାଇଲାପରେ, ଅଣ୍ଟା ଓ ପିଠିରେ ପ୍ଲାଷ୍ଟର୍ ବନ୍ଧା ହେଇ ମୁଁ ଶେଯରେ ପଡିଥାଏ । ଚଳପ୍ରଚଳ କରିବାରେ ପ୍ରତିବନ୍ଧକ ଥାଏ । ଏହି ମୌକାରେ ମ୍ୟୁଜିୟମ୍‌ର ମୋର ଜଣେ ଦି'ଜଣ ସହକର୍ମୀ ପ୍ରଚାର ଚଳେଇଥାନ୍ତି । 'ପାଠୀଟା ଗଲା, ସୁସ୍ଥ ହେଇ ଆଗଭଳି ପୁଣି ରାସ୍ତାରେ ଚଲାବୁଲା କଲାଭଳି ସମ୍ଭାବନା ଦେଖାଯାଉନି, ଆଉ ଚାକିରି କ'ଣ ବା କରିବ ?' ଘାଏଲା ସିଂହ ଭଳି ନିଜ ଗୁମ୍ଫା ଭିତରେ ଗର୍ଜିବା ଛଡ଼ା ମୋର ଅନ୍ୟ ଗତି ନଥାଏ । ସେତେବେଳର ସରକାରୀ ହିସାବରେ ସଂସ୍କୃତି ବିଭାଗରେ

Digitized by srujanika@gmail.com

ଚାକିରି କରୁଥିବା ଶିଳ୍ପୀମାନଙ୍କ ମଧ୍ୟରେ ମୁଁ ଥାଏ ବରିଷ୍ଠ । ଏଣୁ ଏଭଳି ଆକ୍ଷେପ ଓ କୁତ୍ସା ମୋତେ ବ୍ୟତିବ୍ୟସ୍ତ କରିଦେଉଥାଏ । ମୋର ଆଶଙ୍କା ହେଉଥାଏ, ଶୋଇଲା ପୁଅର ଭାଗ ନଥିଲା ଭଳି ମୁଁ ଅଖାଡ଼ାରେ ଥିବି ଆଉ ମୋର ନ୍ୟାଯ୍ୟ ଦାବିକୁ ଉପେକ୍ଷା କରି ହୁଏତ ସରକାର ତାଙ୍କ ସ୍ୱପ୍ନର କଳା ଅନୁଷ୍ଠାନଟିକୁ ମୋ ବିନା ଗଢ଼ି ଦେବେ । ମୁଁ ମୋ ମନକୁ ଦୃଢ଼କଲି । ନିଜକୁ ଭର୍ତ୍ସନା କଲାଭଳି କହିଲି, 'ରେ ଦିନନାଥ । ଶେଯରେ ଶୋଇ ରହିବାର ଏ ବେଳ ନୁହେଁ । ଦୁର୍ଘଟଣାଗ୍ରସ୍ତ ମେରୁଦଣ୍ଡକୁ ଯୋଡ଼ିଯାଡ଼ି ଉଠ ଆଉ ଜୀବନ ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ ।' ନିଜର ଯୋଗ୍ୟତା କୃତି ଅନୁଭୂତିର ତାଲିକାଟିଏ ପ୍ରସ୍ତୁତ କରେଇ କୁଙ୍କୁମ ମହାନ୍ତିଙ୍କ ବାନ୍ଧବୀ ସଂଯୁକ୍ତା ପାଣିଗ୍ରାହୀଙ୍କ ପାଖରେ ପହଞ୍ଚି ତାଙ୍କୁ ସବୁ ଅବ୍ୟାପାରର ଧାରାବିବରଣୀ ଦେଲି । ଏକାକିନୀ ଜୀବନସଂଗ୍ରାମରେ ଲଢୁଥିବା ସଂଯୁକ୍ତା ଆଉ ଜଣେ ସତୀର୍ଥର ବେଦନା ହେଜିଲେ । ତାଙ୍କ ମନ ଓ ପ୍ରାଣ ମୋ ପ୍ରତି ସହାନୁଭୂତିରେ ଭରିଗଲା । କୁଙ୍କୁମ ପାଖକୁ ସଂଗେ ସଂଗେ ଟେଲିଫୋନ୍ କଲେ । ପଚାରିଲେ, 'କିଲୋ ତୁ କ'ଣ ଆମ ଦିନନାଥ ବାବୁଙ୍କୁ ଜାଣିନୁ ? ସିଏ ପରା ଆମ ଭଳିଆ ଓଡ଼ିଶାର ଜଣେ ମୁଖିଆ ଶିଳ୍ପୀ । ତୁ ଯେଉଁ ବିଭାଗରେ ଅଛୁ ତା ତ ଗୋଟିଏ ଅଳପେଇସିଆ ଅଫିସ । ତୁ ଜାଣିବା ଶୁଣିବା ମଣିଷ ହେଇ ସେଇ ଲୋକଙ୍କ ପାଲାରେ ପଡ଼ନା । ମୁଁ ଦିନନାଥ ବାବୁଙ୍କୁ ପଠଉଛି । ତାଙ୍କ କଥା ନିଶ୍ଚୟ ବୁଝିବୁ ।' ବୟସରେ ମୋଠୁ କନିଷ୍ଠ ହେଲେ ବି ରଘୁନାଥ ଭାଇନାଙ୍କ ଧର୍ମପତ୍ନୀ ବୋଲି ମାନ୍ୟରେ ମୁଁ ସଂଯୁକ୍ତାଙ୍କୁ ନାନୀ ବୋଲି ଡାକୁଥିଲି । ସଂଯୁକ୍ତା ନାନୀଙ୍କ ଟେଲିଫୋନ୍ କାମ ଦେଲା । ତା ପରଦିନ ଦେହରେ ପ୍ଲାଷ୍ଟର୍ ବ୍ୟାଣ୍ଡେଜ୍ ଗୁଡିଆ ହେଇଥିବା ଅବସ୍ଥାରେ ମୁଁ ସଂସ୍କୃତି ନିର୍ଦ୍ଦେଶାଳୟରେ ପହଞ୍ଚିଲି । ବାରଣ୍ଡା ଦେଇ ଯାଉଥିବାବେଳେ ବିଭାଗର କିଛି ବନ୍ଧୁ ଅବିଶ୍ୱସନୀୟ ଭଙ୍ଗୀରେ ମୋତେ ଚାହିଁ ରହିଲେ । ସେମାନେ ହୁଏତ ସ୍ଥିର କରିପାରୁନଥିଲେ ମୁଁ ଛ'ନମ୍ବର ଡାକ୍ତରଖାନାରୁ ନା ଗରାବଡୁ ଶ୍ମଶାନରୁ ଉଠି ଆସିଚି । କିଏ କିଏ କହୁଥିବା କାନରେ ପଡୁଥିଲା, 'ବେ ଶଳା ଆସିଲାଣି, ଏଥର ସେମାନଙ୍କ ଯୋଜନା ଫସର ଫାଟିଯିବ । ଯେତେ ହେଲେ ସିଏ ସିନିଅର୍ । ତାକୁ ଅବଜ୍ଞା କରି ସରକାର କିଛି କରିପାରିବେନି । କୋର୍ଟ୍ କଚେରୀର ଭୟ ତ ପୁଣି ଅଛି ।'

ମୁଁ ଜର୍ଜ ସେଗାଲ୍‌ଙ୍କ ପ୍ଲାଷ୍ଟର୍ ବୋଳା ଭାସ୍କର୍ଯ୍ୟ ଭଳି ଦେଖାଯାଉଥିଲି । ଆମେରିକୀୟ ଭାସ୍କର ଜର୍ଜ ଜିଅନ୍ତା ମଣିଷମାନଙ୍କୁ ତାଙ୍କ ଚିତ୍ରଶାଳାରେ ଟେବୁଲ୍ ଉପରେ ଶୁଆଇ ସେମାନଙ୍କ ଦେହ ଉପରେ ପ୍ଲାଷ୍ଟର ମଣ୍ଡ ଢ଼ାଳି ଭାସ୍କର୍ଯ୍ୟ ମାନ ତିଆରି କରୁଥିଲେ ଏବଂ ଭାସ୍କର୍ଯ୍ୟମାନଙ୍କୁ ସତ ସତ ପରିବେଶ ମଧ୍ୟରେ ଥୋଇ ଦେଇ ବିସ୍ମୟ ସୃଷ୍ଟି କରୁଥିଲେ । ଏହି ଭାସ୍କର୍ଯ୍ୟର ଧାରା ପପ୍ ଆର୍ଟ୍‌ର ଅନ୍ତର୍ଭୁକ୍ତ ହୋଇ ଆଧୁନିକତାର ପରମ୍ପରାରେ ପରିଣତ ହେଇ ସାରିଥିଲା । କୁଙ୍କୁମ ମହାନ୍ତି ବିଶ୍ୱ ଭାସ୍କର୍ଯ୍ୟ ଧାରାର ଏତେ ଗହନ କଥା ସଂପର୍କରେ

Digitized by srujanika@gmail.com

ନିଶ୍ଚିତ ଭାବେ ସଚେତନ ନଥିଲେ । ସେ କୌତୂହଳୀ ହେଇ ଆଁ କରି ମୋତେ ଅନେଇ ରହିଲେ ।

ଜର୍ଜ ସେଗାଲ୍‌ଙ୍କ ଭାସ୍କର୍ଯ୍ୟଟି ଏଥର କଥା କହିବା ଆରମ୍ଭ କଲା । ଯମିତି ଦୋଷୀ ଜଣେ କାଠଗଡ଼ାରେ ଠିଆ ହେଇ କୈଫିୟତ ଦିଏ । 'ମୁଁ ଡକ୍ଟର ଦିନନାଥ ପାଠୀ, (ନାଁ ସହିତ ଡକ୍ଟର ଯୋଡ଼ିବାର ଆବଶ୍ୟକତା ଥିଲା ଯଦିଓ ତାହା ନିଜ ନାମ ସହିତ ଯୋଡ଼ି ନିଜେ ଉଚ୍ଚାରଣ କରିବା ସୌଜନ୍ୟ ବାହାରେ), ସର୍ବଭାରତୀୟ ମାନ୍ୟତା ପ୍ରାପ୍ତ ଜଣେ ଚିତ୍ରଶିଳ୍ପୀ । ଏହି ସଂସ୍କୃତି ବିଭାଗ ଅଧୀନରେ ଚାକିରି କରୁଥିବା ସବୁ ଶିଳ୍ପୀମାନଙ୍କ ଠାରୁ, ଏଭଳିକି ଖଲ୍ଲିକୋଟ ଆର୍ଟ୍‌କଲେଜର ଅଧ୍ୟକ୍ଷଙ୍କ ଠାରୁ ମଧ୍ୟ ବରିଷ୍ଠ । ମୁଁ ଶୁଣିବାକୁ ପାଇଲି ଭୁବନେଶ୍ୱରରେ ନୂଆକରି ଖୋଲା ଯାଉଥିବା ଚିତ୍ରକଳା ମହାବିଦ୍ୟାଳୟ ପାଇଁ ଆପଣ ଜଣେ ଅଧ୍ୟକ୍ଷ ଖୋଜୁଛନ୍ତି ।' ଏତକ କହିସାରି ତାଙ୍କ ହାତକୁ ମୋ ଜୀବନ ପଞ୍ଜିକା ବଢ଼େଇ ଦେଇ ଅନୁରୋଧ ଭଙ୍ଗିରେ କହିଲି, 'ଆପଣ ଦୟାକରି ମୋ କଥା ବିଚାରକୁ ନିଅନ୍ତୁ ।'

ସଂସ୍କୃତି ନିର୍ଦ୍ଦେଶିକାଙ୍କ ଅଫିସରେ ମୋ ଉପସ୍ଥିତି ଏମିତି ଅପ୍ରତ୍ୟାଶିତ ଥିଲା ଯେ ନିର୍ଦ୍ଦେଶିକା ମହାଶୟା ମୋର ଏଭଳି ଅପରୂପର କାରଣ ସଂପର୍କରେ କିଛି ପଚରା ଉଚୁରା ନ କରି ମୋ କଥାତକ ଧୈର୍ଯ୍ୟର ସହିତ ଶୁଣିଲେ । ଲାଗିଲା ସେ ମୋ କଥାର ଗୁରୁତ୍ୱ ବୁଝିଲେ । ଶେଷରେ ମନ୍ତବ୍ୟ ଦେଲେ, 'ସଂଯୁ କହିଛି ଆପଣ ଜଣେ ଭଲ ଆର୍ଟିଷ୍ଟ୍ । ମୋତେ ଏ ଅଫିସବାଲା କିନ୍ତୁ କହୁଥିଲେ ଆପଣ ଓଡ଼ିଶା ପର୍ଯ୍ୟଟନ ନିଗମରେ ଗାଡ଼ିମଟରେ ହେପାଜତ କରନ୍ତି ।'

Digitized by srujanika@gmail.com

# ୩.  ସହସ୍ର ବାହୁ ଅଧ୍ୟକ୍ଷ

ଓଡ଼ିଶା ପର୍ଯ୍ୟଟନ ନିଗମର ପରିଚାଳନା ନିର୍ଦ୍ଦେଶକ ଥାଆନ୍ତି ସୁବାସ ପାଣି । ସେ ପୁଣି ସରକାରରେ ଥାଆନ୍ତି ଅତିରିକ୍ତ ଶାସନ ସଚିବ । ଦିନେ ମୁଁ ଅଫିସରେ କ'ଣ ଗୋଟିଏ କାମରେ ବ୍ୟସ୍ତ ଥାଏ । ପରିଚାଳନା ନିର୍ଦ୍ଦେଶକ ମୋତେ ତାଙ୍କ ରୁମ୍‌କୁ ଡକେଇ ସ୍ନେହରେ କହିଲେ ଆସ ମୋ ସାଙ୍ଗରେ, ସେକ୍ରେଟେରିଏଟ୍ ଯିବା । ଆଜି ବି.କେ. ଆର୍ଟ୍ କଲେଜର ପ୍ରିନ୍‌ସ୍‌ପାଲ୍ ପୋଷ୍ଟ୍ ପାଇଁ ଡି.ପି.ସି. (ଡିପାର୍ଟ୍‌ମେଣ୍ଟାଲ୍ ପ୍ରମୋସନ୍ କମିଟି) ବସିବାର ଅଛି । ମୋତେ ତାଙ୍କ ପ୍ରସ୍ତାବଟି ନିହାତି କୌତୁକିଆ ଲାଗିଲା । ଛେଳିକି ପଚାରି କ'ଣ ମଙ୍ଗଳବାର କରାଯାଏ ? ମୁଁ ସାମାନ୍ୟ ଅପ୍ରତିଭ ହେଇ ତାଙ୍କୁ ଚାହିଁବାରୁ ସେ ତାଙ୍କ କଥା ପୁଣି ଦୋହରାଇଲେ । ମୁଁ କ'ଣ ଜାଣିନି କି ତମ କଥା ସେଠି ବିଚାର ହେବ । ସେଥିରେ କ'ଣ ହେଲା, ଚାଲ । ଏବେ ପରିଚାଳନା ନିର୍ଦ୍ଦେଶକଙ୍କ ପ୍ରସ୍ତାବଟି ଆଦେଶ ଭଳି ମୋତେ ମନେହେଲା । ମୁଁ ତାଙ୍କ ପଛେ ପଛେ ପୋର୍ଟିକୋରେ ଠିଆ ହେଇଥିବା ତାଙ୍କ ଗାଡ଼ି ପାଖକୁ ଗଲି । ସେତେବେଳର ଷ୍ଟାଇଲ୍ ଅନୁସାରେ ନିର୍ଦ୍ଦେଶକ ଡ୍ରାଇଭର୍ ପାଖ ସିଟ୍‌ରେ ବସିଲେ ଆଉ ମୁଁ ଗାଡ଼ିର ପଛସିଟ୍‌ରେ ଦାଖଲ ହେଲି । ମନେ ହେଉଥିଲା ନିର୍ଦ୍ଦେଶକ ଏବେ ପାର୍ଥ ସାରଥୀ ଭୂମିକାରେ ଏବଂ ମୁଁ  ବିନା ଗାଣ୍ଡିବରେ ପାର୍ଥ ଭୂମିକାରେ କୁରୁକ୍ଷେତ୍ର ଅଭିମୁଖେ  ବାହାରିଛୁ ।

ଆମେ ଦିହେଁ ଗାଡ଼ିରୁ ଓହ୍ଲେଇ ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀଙ୍କ ଦପ୍ତରରେ ପହଞ୍ଚିଲୁ । ସୁବାସ ପାଣି ଅଓ୍ୱଧ ନାରାୟଣଙ୍କ ସହିତ ମୋତେ ପରିଚୟ କରେଇବାର ଉପକ୍ରମ କରନ୍ତେ ତିଓ୍ୱାରୀ ସାହେବ ତାଙ୍କ ଚିରାଚରିତ ଢ଼ଙ୍ଗରେ ଆରମ୍ଭ କଲେ, ''ସୁବାସ ! ଆଇ ନୋ ପାଠୀ ଫର୍ ମୋର୍ ଦେନ୍ ଏ ଡିକେଡ୍ ।'' ତିଓ୍ୱାରୀ ସାହେବ ମୁଁ ପାଠୀଙ୍କୁ ଦଶନ୍ଧିଏରୁ ଅଧିକ କାଳ ଧରି ଜାଣିଛି କହିବାରୁ ସୁବାସ ପାଣି ସାମାନ୍ୟ ଥମିଲେ । ଅଫିସରେ ପଡ଼ିଥିବା ସୋଫା ଉପରେ ଉପବେଶନ କରିବା ପାଇଁ ମୋତେ କୁହାଗଲା । ତାପରେ ସେ ଦିହେଁ କ'ଣ ଅଫିସ ବ୍ୟାପାରରେ ମନୋନିବେଶ କଲେ । କିଛି ସମୟ ବିଳମ୍ବରେ ସଂସ୍କୃତି ନିର୍ଦ୍ଦେଶିକା କୁଙ୍କୁମ ମହାନ୍ତି ପହଞ୍ଚିବା ପରେ ଡି.ପି.ସି. ଆରମ୍ଭ ହେଲା । କିଛି ଆଲୋଚନା ନାହିଁ କି କିଛି ଭୂମିକା ନାହିଁ, ଫାଇଲ୍ ଖେଳେଇବା ବି ନାହିଁ, ସଚିବ ଡିକ୍‌ଟେସନ୍ ଦେବା

Digitized by srujanika@gmail.com

ପାଇଁ ତାଙ୍କ ଷ୍ଟେନୋଙ୍କୁ ଡାକିଲେ । ଷ୍ଟେନୋଙ୍କ ଜାଗାରେ ପ୍ରାଇଭେଟ୍ ସେକ୍ରେଟେରୀ ରାଉତବାବୁ ସର୍ଟ୍‌ହ୍ୟାଣ୍ଡ୍ ନୋଟ୍ ବୁକ୍ ନେଇ ପହଞ୍ଚିଲେ ।

ସଚିବଙ୍କ ଶ୍ରୁତି ଲିଖନ ଡାକିବା ଆରମ୍ଭ ହେଲା ଯାହାର ଓଡ଼ିଆ ତର୍ଜମା ହେଲା ଏପରି : ଆଜି ମୋ ଅଫିସରେ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦବୀ ପାଇଁ ମୋ ଅଧ୍ୟକ୍ଷତାରେ ଡି.ପି.ସି. ବସିଥିଲା । ସେଥିରେ ସଂସ୍କୃତି ବିଭାଗର ଅତିରିକ୍ତ ଶାସନ ସଚିବ ସୁବାସ ପାଣି ଓ ସଂସ୍କୃତି ନିର୍ଦ୍ଦେଶିକା କୁଙ୍କୁମ ମହାନ୍ତି ଉପସ୍ଥିତ ଥିଲେ । ବରିଷ୍ଠତା ଭିତ୍ତିରେ ଆମେ ସଂସ୍କୃତି ବିଭାଗର ଚାରିଜଣଙ୍କର କଥା ବିଚାରକୁ ନେଲୁ । ସେମାନେ ହେଲେ ଖଲ୍ଲିକୋଟ ଆର୍ଟ୍‌କଲେଜର ବର୍ତ୍ତମାନ ଅଧ୍ୟକ୍ଷ ଦାୟିତ୍ୱରେ ଥିବା ବିପ୍ରଚରଣ ମହାନ୍ତି, ଅଧ୍ୟାପକ ବିନୋଦ ରାଉତରାୟ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଶ୍ୟାମସୁନ୍ଦର ପଟ୍ଟନାୟକ ଓ ଓ.ଟି.ଡି.ସି.ରେ ଡେପୁଟେସନ୍‌ରେ ଥିବା ଦିନନାଥ ପାଠୀ । ସେମାନଙ୍କ ଯୋଗ୍ୟତା, କାର୍ଯ୍ୟ ଦକ୍ଷତା ଓ ଚରିତ୍ର ପଞ୍ଜିକା ବିଚାରକୁ ନିଆଗଲା । ଯଦିଓ ବିପ୍ରଚରଣ ମହାନ୍ତି ଦ୍ୱିତୀୟ ଶ୍ରେଣୀ ଗେଜେଟେଡ୍ ପଦବୀରେ ଅଧ୍ୟକ୍ଷ ଦାୟିତ୍ୱରେ ଅଛନ୍ତି ଓ ମଧୁସୂଦନ, ଗୋପବନ୍ଧୁଙ୍କ ଚମତ୍କାର ବ୍ରୋଞ୍ଜ୍ ପ୍ରତିମୂର୍ତ୍ତି ନିର୍ମାଣ କରି ପ୍ରଶସ୍ତି ଲାଭ କରିଛନ୍ତି କିନ୍ତୁ ଯୋଗ୍ୟତା ଓ ସିନିଅରଟିକୁ ବିଚାରକୁ ନେଲେ ଶ୍ରୀ ମହାନ୍ତି ଏହି ପୋଷ୍ଟ୍ ପାଇଁ ଉପଯୁକ୍ତ ମନେ ହେଉନାହାନ୍ତି । ଶ୍ରୀ ବିନୋଦ ରାଉତରାୟ ଶାନ୍ତିନିକେତନ କଳାଭବନରୁ କଳାଶିକ୍ଷା ଲାଭ କରିଛନ୍ତି । ସେ ଚିତ୍ରକଳା ଉପରେ କେତେକ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି । ତଥାପି ବରିଷ୍ଠତା ଭିତ୍ତିରେ ସେ ମଧ୍ୟ ଅଧ୍ୟକ୍ଷପଦ ପାଇଁ ଯୋଗ୍ୟ ମନେ ହେଉନାହାନ୍ତି । ଶ୍ୟାମସୁନ୍ଦର ପଟ୍ଟନାୟକ ମାତ୍ର ଏଇ ଅଳ୍ପଦିନ ହେଲା ଡିସ୍‌ପ୍ଲେ ବିଭାଗର କ୍ୟୁରେଟର୍ ପୋଷ୍ଟ୍‌କୁ ପଦୋନ୍ନତି ପାଇଛନ୍ତି । ଆଗରୁ ଦିନନାଥ ପାଠୀ କଳା ବିଭାଗର କ୍ୟୁରେଟର ଥିଲାବେଳେ ସେ ତାଙ୍କରି ଗ୍ୟାଲେରୀ ଆସିଷ୍ଟାଣ୍ଟ୍ ଭାବେ କାମ କରିଥିଲେ । ତାଙ୍କ ଯୋଗ୍ୟତା ମାତ୍ର ବି.ଏ. । ଏହି ଚାରିଜଣଙ୍କ ଭିତରୁ ଡକ୍ଟର ଦିନନାଥ ପାଠୀ ଚାକିରି କ୍ଷେତ୍ରରେ ସିନିଅର୍ । ଇତିହାସରେ ସ୍ନାତକୋତ୍ତର ଯୋଗ୍ୟତା ହାସଲ କରିବା ସହିତ କଳା ଇତିହାସରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପାଇଛନ୍ତି । ସିଏ ଜଣେ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରର ଚିତ୍ରଶିଳ୍ପୀ ଏବଂ ତାଙ୍କର କଳା ସଂପର୍କରେ ବହୁ ଗବେଷଣା ଗ୍ରନ୍ଥ ବିଦେଶରେ ପ୍ରକାଶ ପାଇଛି । ଏଣୁ ନୂତନ ଭାବେ ସରକାର ଆରମ୍ଭ କରୁଥିବା ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦବୀ ପାଇଁ ଡକ୍ଟର ଦିନନାଥ ପାଠୀ ହିଁ ଯୋଗ୍ୟ ମନେହୁଅନ୍ତି । ଆଜି ଡି.ପି.ସି.ରେ ଉପସ୍ଥିତ ସମସ୍ତ ସଭ୍ୟ ବିନା ଦ୍ୱିଧାରେ ଏ ପ୍ରସ୍ତାବକୁ ସମର୍ଥନ ଜଣାଉଛନ୍ତି ।

ମୁଁ ସୋଫାରେ ବସିଥାଏ । ଅନ୍ୟମନସ୍କ ରହିବାର ଯେତେ ଅଭିନୟ କଲେ ସୁଦ୍ଧା ମୋର ମନ ଓ ଧ୍ୟାନ ସେମାନଙ୍କ କଥା ଓ ବିଚାର ଠେ ନିବଦ୍ଧ ହେଇ ରହିଥାଏ ।

Digitized by srujanika@gmail.com

ଯୌବନରେ ପାଦ ଦେଇ ସାରିଥିବା ଝିଅଟିର ବିବାହ ପ୍ରସ୍ତାବ ନିଜ କାନରେ ପଡ଼ିଲେ ସିଏ ଯିମିତି ଉଲ୍ଲସିତ ହେଉଥାଏ, ମୋ ଅବସ୍ଥା ସେଭଳି ହେଉଥିଲା । ମୁଁ ଏକ ସମ୍ଭାବ୍ୟ ରମଣ ସୁଖରେ ମଜଗୁଲ ହେଇ ପଡୁଥିଲି । ମୋର ମନେ ହେଉଥିଲା ସେମାନେ ମୋତେ ଉଦ୍ଦୁବସ୍ତ୍ର କରି ମୋର ନିଟୋଳ ସ୍ତନ ଓ ଜଘନର ତାରିଫ୍ କରୁଛନ୍ତି । କିଏ ହୁଏତ ମୋ ନିତମ୍ବର ବେଢ଼ଣକୁ ଫିତା ଘେରେଇ ମାପୁଛି, ଆଉ ଅନ୍ୟ କିଏ ଜଣେ ମୋ ମୁଣ୍ଡର ନିଘଞ୍ଚ ଚଅଁରରେ ତା ପାପୁଲି ପହଁରେଇ ଆଣୁଛି । ଏବେ ସଚିବ ଅଓ୍ୱଧ୍ ନାରାୟଣ ନିଜ ଟେବୁଲ ପାଖକୁ ମୋତେ ଡାକିଲେ । ସଚିବଙ୍କ ପ୍ରାଇବେଟ୍ ସେକ୍ରେଟେରୀ ଡିକ୍‌ଟେସନ୍ ନେଇ ନିଜ ଟାଇପ୍ ରାଇଟର୍ ପାଖକୁ ବାହୁଡ଼ି ଗଲେଣି । ନିର୍ଦ୍ଦେଶିକା କୁଙ୍କୁମ ମହାନ୍ତି ମୋତେ କ'ଣ ଗୋଟିଏ ପଚାରିବେ ପଚାରିବେ ହେଇ ପଚାରିଦେଲେ । ଆଚ୍ଛା ପାଠୀ କହିଲ, ତମେ ତ ଏକଲା ଲୋକ, ଅଧ୍ୟାପକ ତ ନାହାନ୍ତି, ପାଖରେ କିରାଣି ବି ନାହାନ୍ତି, କଲେଜ ଚଳେଇବ କିମିତି ? ମୁଁ ତାଙ୍କୁ ଉତ୍ତର ଫେରେଇବା ଆଗରୁ ଅତିରିକ୍ତ ଶାସନ ସଚିବ ସୁବାସ ପାଣି ମୋ ସପକ୍ଷରେ ସଫେଇ ଦେଇ କହିଲେ ଆପଣ ଜଣେ ନର୍ତ୍ତକୀ ହେଇ ଯେଭଳି ମତ୍ସ୍ୟ, କୂର୍ମ, ବରାହ ପ୍ରଭୃତି ବିଭିନ୍ନ ଅବତାର ନାଚି ପାରୁଛନ୍ତି, ଦିନନାଥ ସେଭଳି ଅଧ୍ୟକ୍ଷ, ଅଧ୍ୟାପକ, କିରାଣି, ଚପରାସୀ, ସବୁ ଭୂମିକାରେ ଅଭିନୟ କରିପାରିବେ ।

ଡି.ପି.ସି. ପରଦିନ ନିର୍ଦ୍ଦେଶିକା କୁଙ୍କୁମ ମହାନ୍ତି ଖଲ୍ଲିକୋଟ କଳାବିଦ୍ୟାଳୟ ପରିଦର୍ଶନରେ ଯାଇ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ଭେଟିଲେ । କୁଙ୍କୁମ ଜଣେ ନିହାତି ବାବଦୁକ । ସେ ସେଠି ଡଗଡଗ ହେଇ ଡି.ପି.ସି.ର କଥାତକ କହିପକେଇଲେ । କଥାର ଯେଉଁ ଧାରଟି ସେମାନଙ୍କ ଛାତିରେ ଭୂଷି ହେଇଗଲା ତାହାହେଲା, 'ପାଠୀଟା ପ୍ରିନ୍‌ସପାଲ୍ ହେଇଗଲା ।'

ନିର୍ଦ୍ଦେଶିକା ଭୁବନେଶ୍ୱର ଫେରିଗଲା ପରେ ଅଧ୍ୟକ୍ଷ ହେବା ପାଇଁ ଆଶାୟୀ ବିନୋଦ ରାଉତରାୟ ଅଧ୍ୟାପକମାନଙ୍କର ସଭା ଡକେଇ ମୋର ସଂଭାବ୍ୟ ନିଯୁକ୍ତିକୁ ନେଇ କ୍ଷୋଭ ପ୍ରକାଶ କଲେ ଓ ତା ପରଦିନ ଭୁବନେଶ୍ୱର ଆସି ମୁଖ୍ୟମନ୍ତ୍ରୀଙ୍କୁ ଭେଟିବା ପାଇଁ ନିଷ୍ପତ୍ତି ନେଲେ । ଝଙ୍କାରରେ ପ୍ରକାଶିତ କବିତା ଓ ପ୍ରବନ୍ଧ ମାଧ୍ୟମରେ ମୁଖ୍ୟମନ୍ତ୍ରୀ ବିନୋଦ ରାଉତରାୟଙ୍କୁ ଜଣେ ସାହିତ୍ୟିକର ସମ୍ମାନ ଦେଉଥିଲେ । ଏହି ସଂପର୍କକୁ ଆୟୁଧ କରି ବିନୋଦବାବୁ ମୁଖ୍ୟମନ୍ତ୍ରୀଙ୍କ ବିଚାରଧାରାରେ ମୋ ବିରୁଦ୍ଧରେ ବିଷ ଭରି ଦେଲେ । ମୋର ହିତାକାଂକ୍ଷୀ ଅଧ୍ୟାପକ ଅନନ୍ତ ପଣ୍ଡା, ଯିଏ ସେତେବେଳକୁ ଭୁବନେଶ୍ୱର ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟରେ ଚାରୁ ଓ କାରୁକଳାର ସ୍ୱତନ୍ତ୍ର ଅଧିକାରୀ ଥିଲେ, ସିଏ ମଧ୍ୟ ପାଠୀ ମାରଣ ଯଜ୍ଞରେ ଘିଅ ଢାଳି ହୁତାଶନକୁ ଆହୁରି ଉତ୍‌ଖାତ କରେଇବାରେ ସାହାଯ୍ୟ କଲେ ।

Digitized by srujanika@gmail.com

ବିନୋଦ ବାବୁଙ୍କ ନେତୃତ୍ୱରେ ଖଲ୍ଲିକୋଟ କଳାବିଦ୍ୟାଳୟରୁ ଆସିଥିବା ଅଧ୍ୟାପକଙ୍କ ଗୁହାରି ଶୁଣି ମୁଖ୍ୟମନ୍ତ୍ରୀ ମୋ ନିଯୁକ୍ତି ଫାଇଲ୍ ଉପରେ କାର୍ଯ୍ୟାନୁଷ୍ଠାନ ନ କରିବା ପାଇଁ ସଂସ୍କୃତି ମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଲେ । ମୋ ଫାଇଲ୍ ସଂସ୍କୃତି ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ପାଖରେ ନିଷ୍କ୍ରିୟ ହୋଇ ପଡ଼ିରହିଲା ।

ମୋ ବିରୁଦ୍ଧରେ ବିଷୋଦ୍‌ଗାର ଏତିକିରେ ଥମି ନଥିଲା । ମୋତେ ସଂପୂର୍ଣ୍ଣ ଉଲଗ୍ନ କରିଦେଇ ରାଜଦାଣ୍ଡରେ ଲୋକହସା କରିବା ପାଇଁ ସେମାନେ ତାଙ୍କ ଯୋଜନାକୁ ଆହୁରି ପ୍ରସାରିତ କଲେ । ସେତେବେଳକୁ ବମ୍ବେରେ ପ୍ରକାଶିତ ଇଲଷ୍ଟ୍ରେଟେଡ୍ ୱିକ୍‌ଲିରେ କଂଗ୍ରେସ ନେତା ଶ୍ୟାମ ସୁନ୍ଦର ମହାପାତ୍ରଙ୍କ ଇଙ୍ଗିତରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବିରୁଦ୍ଧରେ ବହୁ ଅଶୋଭନୀୟ ପ୍ରସଙ୍ଗ ଥାଇ କୁତ୍ସାରଟନା ସମ୍ବଳିତ ଲେଖା ଓ ଫଟୋଗ୍ରାଫ୍ ପ୍ରକାଶ ପାଇଥାଏ । ଏହା ଓଡ଼ିଶା ଶାସନ ଉପରେ ତା'ର କରାଳ ଛାଇ ଆବୋରି ଦେଇଥାଏ ଏବଂ ମୁଖ୍ୟମନ୍ତ୍ରୀଙ୍କୁ ଚିନ୍ତାଗ୍ରସ୍ତ କରିଦେଇଥାଏ । ରାଜନୈତିକ ବିସ୍ଫୋରଣର ଏଭଳି ଏକ ସନ୍ଦିଗ୍ଧ ମୁହୂର୍ତ୍ତରେ କିଏ ଜଣେ ମୁଖ୍ୟମନ୍ତ୍ରୀଙ୍କ କାନରେ ପକେଇଦେଲା ଯେ ଦିନନାଥ ପାଠୀ ଶ୍ୟାମସୁନ୍ଦର ମହାପାତ୍ରଙ୍କ ଭିଣୋଇ । ବେଶ୍ ମୁଖ୍ୟମନ୍ତ୍ରୀଙ୍କ ଚିନ୍ତାଗ୍ରସ୍ତ ମନକୁ ବିଭ୍ରାନ୍ତ କରିବା ପାଇଁ ଏତକ ଥିଲା ଅମୋଘ ଅସ୍ତ୍ର ।

ଫାଇଲ୍ ନାଗଫାଶରୁ ଶୀଘ୍ର ମୁକୁଳୁ ନଥିବାରୁ ଚାକିରି ପାଇଁ ଟାକି ବସିଥିବା ଲୋକଟି ବ୍ୟସ୍ତ ହେବା ସ୍ୱାଭାବିକ । ମୁଁ ଫାଇଲ୍‌ର କୌଣସି ଟେର ନ ପାଇ ବିବ୍ରତ ଅବସ୍ଥାରେ ଥାଏ । ମ୍ୟୁଜିୟମ୍ ପୋଥି ବିଭାଗର କ୍ୟୁରେଟର୍ ପଣ୍ଡିତ ନୀଳମଣି ମିଶ୍ର ମୋ ମନକଥା ବିଝିବା ପାଇଁ ବିବ୍ରତ ରହୁଥିବାର କାରଣ ପଚାରିଲେ । ମୋଠୁ ସମସ୍ୟା ସଂପର୍କରେ ଅବଗତ ହେଲାପରେ ସେ ସମାଧାନର ପନ୍ଥାଟିଏ ବିଚାରିଲେ ।

ଆଗରୁ ସ୍ୱର୍ଗତଃ କେଦାରନାଥ ମହାପାତ୍ରଙ୍କ ଶ୍ରାଦ୍ଧବାର୍ଷିକୀ ପାଳିତ ହେବାକୁ ଥାଏ ଗବେଷଣା ପ୍ରତିଷ୍ଠାନରେ । ସିଏ ସଂସ୍କୃତି ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କୁ ଉତ୍ସବରେ ମୁଖ୍ୟ ଅତିଥି କରି ଡାକିଥାନ୍ତି । କେଦାରନାଥଙ୍କ କୃତି ଓ ଓଡ଼ିଶାର ପ୍ରତ୍ନତତ୍ତ୍ୱରେ ତାଙ୍କ ଭୂମିକା ସଂପର୍କରେ ଗୋଟିଏ ଭାଷଣ ପ୍ରସ୍ତୁତ କରି ଉପସ୍ଥାପନା କରିବା ପାଇଁ ମୋତେ ପରାମର୍ଶ ଦେଲେ । କେଦାରନାଥଙ୍କ ସଂପର୍କରେ ଭାଷଣ ମୋ ଅଧକ୍ଷ ନିଯୁକ୍ତି ଫାଇଲ୍ ଉପରେ କିଭଳି ପ୍ରଭାବ ବିସ୍ତାର କରିପାରିବ ତାହା ମୋ ମଗଜରେ ଜୁଟୁ ନଥିଲା । ପଣ୍ଡିତ ମିଶ୍ର ମୋ ହିତାକାଂକ୍ଷୀ, ଏଣୁ ତାଙ୍କରି ପ୍ରସ୍ତାବକୁ ଆଦେଶ ମାନି ମୁଁ ଭାଷଣ ପ୍ରସ୍ତୁତିରେ ଲାଗିଲି ।

ପୁରୁଣା ଭୁବନେଶ୍ୱର କ୍ଲବଘରେ ଶ୍ରାଦ୍ଧସଭା ଆୟୋଜିତ ହେଇଥାଏ । ମୁଁ ତ ଆଗରୁ ପ୍ରସ୍ତୁତ ହେଇଥାଏ, ଅନର୍ଗଳ ଭାଷଣଟିଏ ଦେଲି । ପଣ୍ଡିତ ମିଶ୍ରଙ୍କ ଖୁସି କହିଲେ ନ ସରେ ।

Digitized by srujanika@gmail.com

ମନ୍ତ୍ରୀ ମହୋଦୟ ମୋ ଉପରେ ପ୍ରୀତ ହେଇ ମୋ ସଂପର୍କରେ ମିଶ୍ରଙ୍କୁ ପଚାରି ବୁଝିଲେ । ଭଦ୍ରକରେ ପାଠ ପଢୁଥିବାବେଳେ ମନ୍ତ୍ରୀ ମିଶ୍ରେଙ୍କ ଛାତ୍ର ଥିଲେ । ଏହା ମୋତେ ଆଗରୁ ଜଣା ନଥିଲା । ଏଣୁ ମିଶ୍ରସାର୍ ମନ୍ତ୍ରୀଙ୍କୁ ଯାହା କହିଲେ, ସେଥିରେ ପ୍ରଭାବିତ ହୋଇ ମନ୍ତ୍ରୀ ତା' ପରଦିନ ତାଙ୍କ ଘରେ ଦେଖା କରିବା ପାଇଁ ମିଶ୍ରସାର୍‌ଙ୍କ ମାଧମରେ ମୋତେ ଜଣେଇଲେ । ତା'ପରଦିନ ସକାଳୁ ମନ୍ତ୍ରୀଙ୍କ କୋଠିରେ ମୁଁ ପହଞ୍ଚନ୍ତେ ସିଏ ଅତି ସ୍ନେହରେ ତାଙ୍କ ଶୋଇବା ବଖରାଯାଏଁ ମୋତେ ନେଇଗଲେ । ସୋଫାରେ ବସି ଚାରିଆଡ଼େ ଆଖି ବୁଲେଇ ଆଣୁ ଆଣୁ ମୁରଲୀଧର ଟାଲିଙ୍କ ହାତଅଙ୍କା ସମ୍ଭବତଃ ମନ୍ତ୍ରୀଙ୍କ ପିତା ଓ ମାତାଙ୍କ ଦୁଇଟି ତୈଳଚିତ୍ର ମୋ ଆଖିରେ ପଡିଲା । ମୋତେ ଲାଗିଲା ମୁରଲୀ ବାବୁ ଭୁବନେଶ୍ୱର ନୂଆ କଲେଜରେ ଅଧକ୍ଷ ନିଯୁକ୍ତି ହେଉଥିବା ଗୁଜବ ବୋଧହୁଏ ସଂପୂର୍ଣ୍ଣ ଉଡ଼ାଖବର ନୁହେଁ । ମୁଁ ମନ୍ତ୍ରୀଙ୍କ ଶୟନ କକ୍ଷରେ ପହଞ୍ଚିବା ଆଗରୁ ଟାଲି ମହାଶୟ ଖାଲି ଅନୁପ୍ରବେଶ କରିନାହାନ୍ତି, ଏଠି ସ୍ଥାୟୀ ଭାବେ ବସବାସ କରିବାର ସମସ୍ତ ବ୍ୟବସ୍ଥା କରିସାରିଛନ୍ତି ।

ମନ୍ତ୍ରୀ ମହୋଦୟ ମୋତେ ଦେଖି ଖୋଲା ହସଟିଏ ହସିଦେଇ ସ୍ୱାଗତ ଜଣେଇଲେ, ଆପଣ ପଣ୍ଡିତ ମିଶ୍ରଙ୍କୁ ସତ୍ତ୍ୱ ଏକଥା କାହିଁ ମୋତେ କେବେ କହିନାହାନ୍ତି । ଠିକ୍ ଅଛି ମୁଁ ଆପଣଙ୍କ ଫାଇଲ୍‌ଟି ଆଜି ହିଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠେଇ ଦେଉଛି ।

ଏ ଭିତରେ ମୋ ଦ୍ୱାରା ଲିଖିତ ସମାବେଶ ପତ୍ରିକାରେ ଅଧାପକ ଅନନ୍ତ ପଣ୍ଡାଙ୍କ ଜୀବନୀ ଆଲେଖ୍ୟ ପ୍ରକାଶ ପାଇଥିଲା । ସେ ଲେଖା ଆରମ୍ଭ ହେଇଥିଲା ଇର୍‌ଭିଙ୍ଗ୍ ଷ୍ଟୋନ୍‌ଙ୍କ କେତୋଟି ଶାଣିତ ବାକ୍ୟରୁ । ସେଥିରେ ଏଠି କିଛି ବାକ୍ୟ ଉଲ୍ଲେଖ କଲି । ''ଅନ୍ୟମାନଙ୍କ ଭଳି ଭିନ୍‌ସେଣ୍ଟ୍ ଭେଙ୍ଗଗ୍ ମଧ ପ୍ରେମାସକ୍ତ ହେବା ପାଇଁ, ପ୍ରସିଦ୍ଧି ଅର୍ଜନ କରିବା ପାଇଁ, ଏବଂ ଏକ ସଂପୂର୍ଣ୍ଣ ସୁସ୍ଥ ଜୀବନର ସୁଖ ପାଇବା ପାଇଁ ଚାହିଁଥିଲେ । କିନ୍ତୁ ତାଙ୍କ ଭିତରେ ଲୁକ୍କାୟିତ ଥିବା ଅସାଧାରଣ ସୃଜନ ରାକ୍ଷସ ସେଥିରେ ହସ୍ତକ୍ଷେପ କଲା ଏବଂ ତାଙ୍କୁ ଏକ ଅବିଶ୍ୱାସ୍ୟ ଧ୍ୱଂସ ମୁହଁକୁ ନେଇଗଲା । ଦାରିଦ୍ର୍ୟ, ବ୍ୟଭିଚାର, ଓ ଅପମାନ ତାଙ୍କ ଚିରସହଚର ହେଲା । ଲୋକେ ତାଙ୍କୁ ପାଗଳ କହି ତାଙ୍କ ଠାରୁ ଦୂରେଇ ଗଲେ । କିଏ ହେଲେ ତାଙ୍କ ଦୁଃଖଦ ସଙ୍ଗହୀନ ଜୀବନପ୍ରତି ଦରଦ ଦେଖେଇଲେ ନାହିଁ । ସେ ଭାର୍ଯ୍ୟାଟିଏ ପାଇବା ପାଇଁ ଆତୁର ହେଲେ କିନ୍ତୁ ତାଙ୍କୁ ସବୁ ବେଶ୍ୟା ହିଁ ମିଳିଲେ ।'' ସେ ଲେଖାଟି ସୁଧାଂଶୁ ମୋହନ ରାଉତରାୟ ବ୍ୟକ୍ତିଗତ ଭାବେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିଥିଲେ । ଦିନେ କବି କେ.ପି. ଦାସଙ୍କ ଉପସ୍ଥିତିରେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ବି.କେ. କଲେଜ କଥା ପଡୁ ପଡୁ ସୁଧାଂଶୁ ରାଉତରାୟ ଓ କେ.ପି.ଦାସ ମୁଁ ଅଧକ୍ଷ ପଦ ପାଇଁ ଯୋଗ୍ୟ ବ୍ୟକ୍ତି ବୋଲି ମନ୍ତବ୍ୟ ଦେଇଥିଲେ । ବୋଧହୁଏ ସେମାନଙ୍କ ମନ୍ତବ୍ୟ ମୁଖ୍ୟମନ୍ତ୍ରୀଙ୍କ ମନରେ ମୋ ସଂପର୍କରେ ଭାବାନ୍ତର ଘଟେଇବାରେ ସାହାଯ୍ୟ କରିଥିଲା । ସିଏ ହୁଏତ ସେତେବେଳକୁ ସଂସ୍କୃତି ମନ୍ତ୍ରୀଙ୍କ ସୁପାରିଶକୁ ଅପେକ୍ଷା କରୁଥିଲେ ।

Digitized by srujanika@gmail.com

# ୪. ଉଦ୍‌ଘାଟନ ଉତ୍ସବର ବିଡ଼ମ୍ବନା

ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବ କେନ୍ଦ୍ର ଲଳିତ କଳା ଏକାଡେମୀର ଆଞ୍ଚଳିକ କଳାକେନ୍ଦ୍ର ପାଇଁ ଉଦ୍ଦିଷ୍ଟ ଖାରବେଳ ନଗରର ଅଭିନ୍ନଚନ୍ଦ୍ର ହୋମିଓପ୍ୟାଥି କଲେଜ ପଛପଟ ଜାଗାରେ ଆୟୋଜିତ ହୋଇଥିଲା । ଓଡ଼ିଶାର ପରିକଳ୍ପିତ ପ୍ରମୁଖ ଆର୍ଟ୍ କଲେଜକୁ ଆଞ୍ଚଳିକ କଳାକେନ୍ଦ୍ର ସାଙ୍ଗରେ ଯୋଡ଼ିବାର କୌଣସି ଯଥାର୍ଥତା ନ ଥିଲା ଯଦିଓ ଚାରୁକଳା ମହାବିଦ୍ୟାଳୟ ଓ ଲଳିତ କଳା ଏକାଡେମୀର ସଂପର୍କ ଅଭେଦ୍ୟ । ମହାବିଦ୍ୟାଳୟର ପ୍ରଶିକ୍ଷଣମାନ ଏକାଡେମୀର ଗୁଣବତ୍ତାକୁ ଯାଥାର୍ଥ୍ୟରେ ପହୁଞ୍ଚେଇଥାଏ, ତଥାପି କେନ୍ଦ୍ର ସରକାରଙ୍କ ଧନ ଓ ଜନବଳ ଆଗରେ ଓଡ଼ିଶା ସରକାରଙ୍କ କଲେଜ ମଳିନ ପଡ଼ିଯିବାର ଆଶଙ୍କା ଥିବାରୁ ଏହି ଦୁଇ ଅନୁଷ୍ଠାନକୁ ଯଥାସମ୍ଭବ ପରସ୍ପରଠାରୁ ଦୂରରେ ରଖିବାର ଆବଶ୍ୟକତା ମୁଁ ଅନୁଭବ କରୁଥିଲି । ମୁଁ ମନେ ମନେ ବିଚାରୁଥିଲି କଲେଜ ତା'ର ଭିନ୍ନ ସ୍ୱରୂପରେ ଏକ ସ୍ୱତନ୍ତ୍ର ମଞ୍ଚରେ ଉଦ୍‌ଘାଟିତ ହେବ । ଆଞ୍ଚଳିକ କଳାକେନ୍ଦ୍ର ପାଇଁ ମିଳିଥିବା ଦୁଇଏକର ଜମିକୁ ଦୁଇଭାଗ କରି ଗୋଟକରେ କଳାକେନ୍ଦ୍ର ଆଉ ଗୋଟକରେ କଲେଜ ଘର ତିଆରି କରିବା ଥିଲା ସରକାରଙ୍କ ଯୋଜନା । ମୋତେ ଲାଗିଲା ଏହା ଢୋକେ ପିଇ ଦଣ୍ଡେ ଜିଇଁବା ନ୍ୟାୟ । ସରକାର ଏହି ଜମି ସଂପର୍କରେ ମୋ ମତାମତ ଚାହିଁବାରୁ ମୁଁ ସ୍ପଷ୍ଟ କରିଦେଇଥିଲି ଯେ ଏକରେ ଜାଗାରେ ଗୋଟିଏ କଳା ମହାବିଦ୍ୟାଳୟ ଗଢ଼ାଯାଇ ପାରେନା । ଏକେତ କଳା ମହାବିଦ୍ୟାଳୟର ବିସ୍ତାରିତ ପାଠ୍ୟକ୍ରମର ରୂପାୟନ ପାଇଁ ଏକରେ ଜାଗା ନିଅଣ୍ଟ ପଡ଼ିବ, ପୁଣି ଭବିଷ୍ୟତରେ ଗ୍ୟାଲେରୀ ଓ ଷ୍ଟୁଡିଓର ସୁବିଧା ସୁଯୋଗକୁ କେନ୍ଦ୍ର କରି ମହାବିଦ୍ୟାଳୟର ପିଲା ଓ କଳାକେନ୍ଦ୍ରର ଶିଳ୍ପୀଙ୍କ ମଧ୍ୟରେ କଳି ତକରାଳ ଅବଶ୍ୟମ୍ଭାବୀ ହୋଇପଡ଼ିବ । ସରକାରଙ୍କ କିମିତି ଚେତା ପଶିଲା କେଜାଣି ସଂସ୍କୃତି ବିଭାଗର କର୍ମକର୍ତ୍ତାମାନେ ଏଭଳି ଏକ ସୀମିତ ମାନସିକତାରୁ ନିବୃତ୍ତ ହୋଇ ବିକଳ୍ପ ଖୋଜିବାରେ ଲାଗିଲେ ।

କିନ୍ତୁ ଉଦ୍‌ଘାଟନ ଉତ୍ସବ ବେଳକୁ କଳାକେନ୍ଦ୍ରର ଦି'ଏକର ଜାଗା ଉପରେ ହିଁ ରାଜ୍ୟ ସଂସ୍କୃତି ବିଭାଗ ଆଶା ଓ ଭରସା ରଖିଥିଲେ । ସେଇଠି ହିଁ ଟେଣ୍ଟବାଲା କନାତ୍‌ର ଛାମୁଣ୍ଡିଆ ବାନ୍ଧିଲେ ଆଉ କାଠପଟା ପାରି ମଞ୍ଚ ଗଢ଼ିଲେ । ସେ ଦିନଥିଲା ୧୯୮୪

Digitized by srujanika@gmail.com

ମସିହାର ଜାନୁଆରୀ ୨୪ ତାରିଖ । ସେବେଳର ଭୁବନେଶ୍ୱରରେ ସିଲ୍‌କ୍ ସ୍କ୍ରୀନ୍ କହିଲେ ୱିଙ୍ଗ୍ କମାଣ୍ଡର୍ ବାବୁଲା ସେନାପତି । ତାଙ୍କ ପାଖରେ ଉଦ୍‌ଘାଟନ ଉତ୍ସବର ନିମନ୍ତ୍ରଣ ପତ୍ର ମୁଁ ଛପେଇ ଆଣିଲି । ଅଶିଏ ଦଶକର ପ୍ରାରମ୍ଭରେ କମ୍ପ୍ୟୁଟର୍‌ର ପ୍ରଚଳନ ମଧ୍ୟ ନଥିଲା । ବିଭିନ୍ନ ସାଇଜ୍ ଓ ଡିଜାଇନ୍‌ରେ ଛପା ହେଇଥିବା ଇଂଲିଶ ଅକ୍ଷରର ଗୋଟିଏ ନମୁନା ବହି ବାବୁଲା ସେନାପତିଙ୍କ ପାଖରେ ଥାଏ । ସେହି ବହିରୁ ପ୍ରଥମେ ନିଜ ମନ ମୁତାବକ ଅକ୍ଷରଗୁଡ଼ିକୁ ବାଛିବାକୁ ପଡ଼େ । ଅକ୍ଷରର ସାଇଜ୍ ଓ ଶୈଳୀ ନିର୍ଦ୍ଧାର୍ଯ୍ୟ ହୋଇଗଲାପରେ ବାବୁଲା ସେନାପତି ସେଗୁଡ଼ିକର ଫଟୋ ଉଠେଇ ବ୍ରୋମାଇଡ୍ ପ୍ରସ୍ତୁତ କରନ୍ତି । ବ୍ରୋମାଇଡ୍ ଶିଟ୍‌ରୁ ନିମନ୍ତ୍ରଣ ପତ୍ର ପାଇଁ ଆବଶ୍ୟକ ଅକ୍ଷରଗୁଡ଼ିକୁ ଗୋଟି ଗୋଟି କରି କାଟି ଅଲଗା କରନ୍ତି । ତାପରେ ସୁନାରୀ ଚିମୁଟା ସାହାଯ୍ୟରେ ଗହଣାରେ ଲତା ଡାଳି ଖଞ୍ଜିଲା ପରି ସେ ଅକ୍ଷର ବସେଇ ପାଠର ଧାଡ଼ି ପ୍ରସ୍ତୁତ କରନ୍ତି । ନିମନ୍ତ୍ରଣ ପତ୍ରର ନମୁନା ଠିକ୍ ହେଇସାରିଲା ପରେ ତାକୁ ପୁଣି ଥରେ ଫିଲ୍‌ମ୍‌କୁ ରୂପାନ୍ତରିତ କରି ସ୍କ୍ରୀନ ଉପରେ ଫଟୋ ପଦ୍ଧତିରେ ଅବିକଳ ଡିଜାଇନ୍‌ଟିକୁ ଉଠେଇ ନିଅନ୍ତି । ଅତିଥିଙ୍କ ହାତରେ ନିମନ୍ତ୍ରଣ ପତ୍ର ମିଳିଗଲା ପରେ ତା'ର ସୌନ୍ଦର୍ଯ୍ୟରେ ସେମାନେ ମୁଗ୍ଧ ହୁଅନ୍ତି ସିନା ଛାପିବା ପଛରେ ଯେଉଁ କିଟିମିଟିଆ ବ୍ୟବସ୍ଥାଟିଏ ଛପି ରହିଥାଏ, ସେ ସଂପର୍କରେ ସ୍ୱାଭାବିକ ଭାବେ ସେମାନେ ଅଜ୍ଞ ରହିଥାନ୍ତି ।

ସ୍କ୍ରୀନ୍‌ରେ ଛପେଇବା ପଦ୍ଧତି ଚାରୁକଳା ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ବିଷୟ । ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ଅଧ୍ୟାପକମାନଙ୍କୁ ଗ୍ରାଫିକ୍ କଳାର ଏହି ଲୋକପ୍ରିୟ ବିଭାଗଟି ବହୁଦିନ ଧରି ଅଜଣା ଥିଲା । ଭୁବନେଶ୍ୱରରେ ଅବସ୍ଥାନ କାଳରେ ସୂଚନା ଓ ଲୋକସଂପର୍କ ବିଭାଗ ତଥା ପର୍ଯ୍ୟଟନ ବିଭାଗର ବିଭିନ୍ନ ସରକାରୀ ବିଜ୍ଞାପନ କାର୍ଯ୍ୟ ପରିଚାଳନା ସହିତ ସଂପୃକ୍ତ ରହିବା ଫଳରେ ସିଲ୍‌କ୍ ସ୍କ୍ରୀନ୍ ସଂପର୍କରେ ମୋର ବିଧିବଦ୍ଧ ଧାରଣା ହେଇ ସାରିଥିଲା । ପରେ ଆମେ ପ୍ରଥମ କରି କଲେଜ ପାଠ୍ୟକ୍ରମରେ ତାକୁ ସ୍ଥାନ ଦେଲୁ । କିନ୍ତୁ ବାବୁଲା ସେନାପତି ଓଡ଼ିଶାରେ ସିଲ୍‌କ ସ୍କ୍ରୀନ୍‌ର ପ୍ରଥମ ପ୍ରବର୍ତ୍ତକ ହେଇ ରହିଲେ ।

ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବ ମୋ ପାଇଁ ଗୋଟିଏ ଅତ୍ୟନ୍ତ ଉତ୍ସାହଜନକ ଘଟଣା ଥିଲା । ସେତେବେଳକୁ ଅନ୍ୟ ଅଧ୍ୟାପକ ବନ୍ଧୁମାନେ କଲେଜରେ ଯୋଗ ଦେଇନଥାନ୍ତି । କଲେଜ କହିଲେ ପ୍ରଥମ କରି କଲେଜରେ ଆଡ୍‌ମିଶନ୍ ନେଇଥିବା କତିପୟ ଛାତ୍ର ଛାତ୍ରୀ, କିରାଣି, ପିଅନ ଓ ଚପରାସୀ ଏବଂ ଏମାନଙ୍କ ଦଳପତି ଭାବେ ମୁଁ ସହସ୍ରବାହୁ ଅଧ୍ୟକ୍ଷ । ଏଣୁ କଲେଜର ସମସ୍ତ ଜୁଆରିଆ ମୁହୂର୍ତ୍ତ ମାନଙ୍କର ମୁଁ ହିଁ ସାକ୍ଷୀ ଥିଲି । କଲେଜ ଉଦ୍‌ଘାଟନ ଉତ୍ସବରେ ଯେଉଁଭଳି ସବୁ ଅଘଟଣ ଘଟିଲା ତାହା ଜୁଆରିଆ ମୁହୂର୍ତ୍ତ ମାନଙ୍କରେ ନୈରାଶ୍ୟର-ଭଟ୍ଟା ଆଣି ଦେଇଥିଲା ଏବଂ ଏହି କଲେଜର ଅଧ୍ୟକ୍ଷ ଓ ଦାୟିତ୍ୱସଂପନ୍ନ କର୍ମକର୍ତ୍ତା ହେଇ ସୁଦ୍ଧା ମୋତେ ଅପମାନିତ ହେବାକୁ ହେଲା ।

Digitized by srujanika@gmail.com

ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଭୟ ଆଞ୍ଚଳିକ କଳାକେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ ଏବଂ ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟର ଆନୁଷ୍ଠାନିକ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟ ଅତିଥି ଥିଲେ । ତାଙ୍କ ସହିତ ସେତେବେଳର ସଂସ୍କୃତି ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ, କେନ୍ଦ୍ର ଲଳିତ କଳା ଏକାଡେମୀର ଅଧ୍ୟକ୍ଷ ପ୍ରଫେସର୍ କୃଷ୍ଣକାନ୍ତ ହେବର (ଶିଳ୍ପୀ ମହଲରେ କେ.କେ. ହେବର୍ ଭାବେ ବେଶି ପରିଚିତ), ରାଜ୍ୟ ସଂସ୍କୃତି ବିଭାଗର ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ ଓ ବିଭାଗୀୟ ନିର୍ଦ୍ଦେଶକ ସୁବାସ ପାଣି ସମ୍ମାନିତ ଅତିଥି ଭାବେ ଉଦ୍‌ଘାଟନ ମଞ୍ଚ ଉପରେ ବସିଥିଲେ । ଏମାନଙ୍କ ବ୍ୟତୀତ ଅସିତ ମୁଖାର୍ଜୀ ମଧ୍ୟ ଉଦ୍‌ଘାଟନ ଉତ୍ସବରେ ଅନ୍ୟତମ ସମ୍ମାନିତ ଅତିଥି ଭାବେ ନିମନ୍ତ୍ରିତ ହୋଇଥିଲେ ।

ଏ ଉଭୟ ଅନୁଷ୍ଠାନ ସହିତ ଅସିତ ମୁଖାର୍ଜୀ କୌଣସି ଭାବରେ ମଧ୍ୟ ସଂପୃକ୍ତ ନଥିଲେ । ଅଥଚ ତାଙ୍କର ମଞ୍ଚାରୋହଣ ମୋତେ ଅତିଥି ଚୟନର ଯଥାର୍ଥତା ପ୍ରତି ସନ୍ଦିହାନ କରିଦେଲା । ମୁଁ ଏଭଳି ଘଟିବାର କାରଣ ଖୋଜି ଖୋଜି ଅନୁମାନ କଲି ଯେ ଯେହେତୁ ମୁଖ୍ୟମନ୍ତ୍ରୀ କଟକ ମହମ୍ମଦିଆ ବଜାରର କଲେଜକୁ ବସ୍ତୁତଃ ଭୁବନେଶ୍ୱର ଉଠେଇ ନେଇ ଆସିଛନ୍ତି, ତେଣୁ କଲେଜ ସ୍ଥାନାନ୍ତରୀକରଣରୁ ଉଦ୍‌ଭୂତ କ୍ଷୋଭ, ଅସୂୟା ଓ ପ୍ରତିହିଂସାର ଉଷ୍ଣ ବାତାବରଣକୁ ପ୍ରଶମିତ କରିବା ପାଇଁ ସେହି କଲେଜର ପ୍ରାକ୍ତନ ଅଧ୍ୟାପକ ଅସିତ ମୁଖାର୍ଜୀଙ୍କୁ ମଞ୍ଚରେ ବସିବାର ସାମୟିକ ଗୌରବ ପ୍ରଦାନ କରି ଭୁବନେଶ୍ୱର କଲେଜ ଇତିହାସର ଅନ୍ୟତମ ସାକ୍ଷୀ କରିଦେଲେ । ଓଡ଼ିଶାରେ ସଦାକାଳେ ପ୍ରଚ୍ଛଦ ଶିଳ୍ପୀମାନଙ୍କର କାଟ୍‌ତି ବେଶି । ଅସିତ ମୁଖାର୍ଜୀ ନୂଆ କରି ପ୍ରକାଶ ପାଉଥିବା ଦୈନିକ ପତ୍ରିକା ସମ୍ବାଦର ଡିଜାଇନର୍ ମଧ୍ୟ ଥିଲେ । ସର୍ବୋପରି ମୁଖ୍ୟମନ୍ତ୍ରୀ ମୁଦ୍ରଣଶିଳ୍ପ, ବିଭୂତିବାବୁଙ୍କ ବ୍ଲକ୍ ତିଆରି କାରଖାନା ଓ ଅସିତ ମୁଖାର୍ଜୀଙ୍କ ଶିଳ୍ପରୂପମ୍ ଷ୍ଟୁଡିଓ ସହିତ ବେଶି ସଂପର୍କରେ ଆସିଥିବାରୁ ଅସିତ ବାବୁଙ୍କୁ ଶିଳ୍ପୀମାନଙ୍କର ପ୍ରତିନିଧି ବୋଲି ଭାବୁଥିଲେ । ହୁଏତ ଏଭଳି କେତେକ କାରଣରୁ ଅସିତ ମୁଖାର୍ଜୀ ସେଦିନ କଲେଜ ଉଦ୍‌ଘାଟନୀ ସଭାରେ ଅତିଥି ହେବାର ସୁଯୋଗ ପାଇଥିଲେ । ମୁଁ ଏହି ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱରେ ଥିବା ସତ୍ତ୍ୱେ ମୋତେ ସଭା ମଞ୍ଚରେ ବସିବାକୁ ସୁଯୋଗ ଦିଆଯାଇ ନଥିଲା ଏବଂ ଉଦ୍‌ଘାଟନ ଉତ୍ସବ ପାଇଁ ନିମନ୍ତ୍ରଣ ପତ୍ର ଛପେଇ ଆଣିବା ଛଡ଼ା ମୋର ଆଉ କୌଣସି ନିର୍ଦ୍ଦିଷ୍ଟ ଭୂମିକା ନଥିଲା ।

ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ ଓ ଆଇ.ଏ.ଏସ୍. ଅଫିସରମାନେ ସରକାରୀ ସଭାମାନଙ୍କରେ ଭାଷଣ ଦେବାକୁ ଥିଲେ ସେମାନଙ୍କ ଭାଷଣ ତଳୁ ଲେଖା ହୋଇ, ବିଭିନ୍ନ ବାଟ ଦେଇ ଉପରସ୍ତରରେ ପହଞ୍ଚୁଥିଲା । ଏହି ବ୍ୟବସ୍ଥା ଏବେବି ବଳବତ୍ତର ଅଛି । ସେହି ପରମ୍ପରାନୁସାରେ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ଘାଟନୀ ଭାଷଣଟିକୁ ମୁଁ ପ୍ରସ୍ତୁତ କରିଥିଲି । ଓଡ଼ିଶୀ କଳାର ଐତିହ୍ୟ, ଶିଳ୍ପୀମାନଙ୍କର ଅବଦାନ ଓ କଳାନଗରୀ ଭୁବନେଶ୍ୱରଠାରେ

Digitized by srujanika@gmail.com

କଳାମହାବିଦ୍ୟାଳୟ ପ୍ରତିଷ୍ଠା ହେବାର ଗୁରୁତ୍ୱ ଉପରେ ଆଲୋକପାତ କରି ମୁଖ୍ୟମନ୍ତ୍ରୀଙ୍କ ଭାଷଣଟିକୁ ସରସ ସୁନ୍ଦର କରିବା ପାଇଁ ଚେଷ୍ଟା କରିଥିଲି । ମୋ ମନ୍ତବ୍ୟ ଭିତରେ ବିଭୂତି କାନୁନ୍‌ଗୋଙ୍କୁ ଜଣେ ପ୍ରତିଷ୍ଠିତ ଗ୍ରାଫିକ୍ ଶିଳ୍ପୀ ଓ ଶିକ୍ଷାବିତ୍ ଭାବେ ଚିତ୍ରଣ କରିଥିଲି । ସରକାରଙ୍କ ଚାକିରିଆ ଭାବେ କେତେକ କଥା ଓ କାର୍ଯ୍ୟ ନିଜ ଇଚ୍ଛା ବିରୁଦ୍ଧରେ ମଧ୍ୟ କରିବାକୁ ହେଉଥାଏ । ସରକାରରେ ବଡ଼ବଡ଼ିଆଙ୍କ ମଗଜକୁ ପାଇଲାଭଳି ବେଳେବେଳେ ଅଭିନୟ କରିବାକୁ ହୋଇଥାଏ । ବିଭୂତି ବାବୁ ଜିଙ୍କ୍ ବ୍ଲକ୍ ତିଆରି ଓ ଛାପାର କେତୋଟି କୌଶଳ ଛଡ଼ା ଗ୍ରାଫିକ୍ କଳାର ଅନ୍ୟାନ୍ୟ ଶୈଳ୍ପିକ ବିଭବ ପ୍ରତି ସଂପୂର୍ଣ୍ଣ ଅଜ୍ଞ ଥିଲେ । ଏଣୁ ତାଙ୍କୁ ସେ ସମୟର ପ୍ରତିଷ୍ଠିତ ଗ୍ରାଫିକ୍ ଶିଳ୍ପୀ ତଥା ପ୍ରସିଦ୍ଧି ଲାଭ କରିଥିବା ଶାନ୍ତି ନିକେତନ କଳା ଭବନର ଅଧ୍ୟାପକ ସୋମନାଥ ହୋର, ସନତ କର, ବା ହାଇଦ୍ରାବାଦ୍ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ଲକ୍ଷ୍ମାଗୌଡ଼ ବା ଦିଲ୍ଲୀ କଲେଜର ଅଧ୍ୟାପିକା ଅନୁପମ ସୁଦ୍‌ଙ୍କ ସହିତ ତୁଳନୀୟ ବୋଲି କହିବାରେ କୌଣସି ଯଥାର୍ଥତା ନଥିଲା । ରାଜନୈତିକ ଦୃଷ୍ଟିକୋଣରୁ ବିଭୂତି ବାବୁଙ୍କୁ ସର୍ବୋଚ୍ଚ ଶିଳ୍ପୀର ସିଂହାସନରେ ବସେଇବାର ଆଭିମୁଖ୍ୟ ହୁଏତ ଠିକ୍ ଥିଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ବିଭୂତି ବାବୁଙ୍କ ସ୍ମୃତିରେ ମଧ୍ୟ ଚୂନଦାଗ ଦେଇ କଟା ଘା'କୁ ଅଧିକା ସଂକ୍ରମଣ କରିବା ପାଇଁ ଚାହୁଁ ନଥିଲେ । ଏଣୁ 'ବଚନେ କା ଦରିଦ୍ରତା' ନ୍ୟାୟରେ ସେ ବିଭୂତି ବାବୁଙ୍କ ଅବର୍ତ୍ତମାନରେ ତାଙ୍କ ସ୍ମୃତିପ୍ରତି ଶ୍ରଦ୍ଧା ଓ ସମ୍ମାନ ଜଣେଇବାର ସୁଯୋଗକୁ ହାତଛଡ଼ା କରିବା ପାଇଁ ଚାହିଁ ନଥିଲେ ।

ସରକାରୀ କାର୍ଯ୍ୟରେ ବ୍ୟସ୍ତରହି ମୁଖ୍ୟମନ୍ତ୍ରୀ ମୋ ଦ୍ୱାରା ଲିଖିତ ଭାଷଣଟି ଉପରେ ଆଖି ବୁଲେଇ ଆଣିବାର ସୁଯୋଗ ହୁଏତ ପାଇ ନଥିଲେ । ଏହା ସର୍ବଜନବିଦିତ ଯେ ମୁଖ୍ୟମନ୍ତ୍ରୀ ଜଣେ ପଣ୍ଡିତ ଓ ବିଚକ୍ଷଣ ରାଜନୀତିଜ୍ଞ ଏବଂ ଲିଖିତ ଭାଷଣ ବିନା ଓଜସ୍ୱିନୀ ବକ୍ତୃତା ଦେବାରେ ଧୁରନ୍ଧର । ମୁଖ୍ୟମନ୍ତ୍ରୀ ସେଦିନ ତାହାହିଁ କଲେ । କିନ୍ତୁ ତାଙ୍କ ଭାଷଣରେ ଯେଉଁ ଗୁରୁତର ପ୍ରମାଦ ରହିଲା, ତାହା ଅକ୍ଷମଣୀୟ । ସେଭଳି ଭୁଲ ଯଦି ମୋ ଭଳିଆ ଲୋକ ଜଣେ କରିଥାନ୍ତା, ତାହେଲେ ମଧ୍ୟଯୁଗୀୟ ରାଜନ୍ୟ ପରମ୍ପରା ଅନୁସାରେ ମୋର ଶିରଚ୍ଛେଦନ କରାଯାଇଥାନ୍ତା । ମୋତେ ଲାଗିଲା ମୁଁ ଶାସ୍ତି ପାଇବାରୁ ମୁକ୍ତି ପାଇଗଲି । ବେଳେବେଳେ ଅନ୍ୟର ଭୁଲ୍ ଯୋଗୁଁ ନିଜକୁ ସକୁଳି ହେଲାଭଳି ଲାଗେ ।

ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ ଉତ୍ସବରେ ଚମତ୍କାର ଭାଷଣଟିଏ ଦେଲେ । ୧୯୦୭ ମସିହାରେ ଉତ୍କଳ ସମ୍ମିଳନୀ ଉପଲକ୍ଷେ କବିବର ରାଧାନାଥ ରଚନା କରିଥିବା 'ଭାରତ ଗୀତିକା'ରୁ ଉଦ୍ଧୃତି ଦେଇ ସେ ତାଙ୍କ ମନ୍ତବ୍ୟକୁ ପୁଷ୍ଟ କରିଥିଲେ । ଭାରତ ହେଉଛି ଏହି ଧରଣୀର କଣ୍ଠଲତା ଏବଂ ଭାରତ ରୂପକ ପଦ୍ମଫୁଲର ଓଡ଼ିଶା ହେଉଛି ଏକ ପାଖୁଡ଼ା- 'ଭାରତ ପଙ୍କଜଦଳମିଦମୁତ୍କଳମଣ୍ଡଳମ୍' । ପୁଣି ଉତ୍କଳମଣି ଗୋପବନ୍ଧୁଙ୍କ ଉକ୍ତି, 'ଜଗତ

Digitized by srujanika@gmail.com

ସଲିଳେ ଭାରତ କମଳ, ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ' ପଦଟି ସେହି ପରିବେଶକୁ ସୁହାଇଲା ଭଳି ନୀଳାଚଳକୁ ଉତ୍କଳ ଜ୍ଞାନ କରି ନିଜ ପାଣ୍ଡିତ୍ୟରେ ସଭାଜନଙ୍କୁ ମୁଗ୍ଧ କରିଦେଇଥିଲେ । ଭାରତ କମଳ ମଧ୍ୟରେ ଓଡ଼ିଶା କେଶର ସଦୃଶ୍ୟ ଇତ୍ୟାଦି ଉପମା, ଉପମେୟ ଓ ରୂପକଙ୍କ ଓଡ଼ିଶାର ସ୍ୱାଭାବିକ ଗୌରବକୁ ସଭାଜନଙ୍କ ଆଗରେ ଦ୍ୱିଗୁଣିତ କରି ଦେଲା । କୋଣାର୍କର ଶିଳ୍ପଚାତୁରୀର ବର୍ଣ୍ଣନା, ପ୍ରଶଂସା ଓ ରୋମନ୍ଥନ ଓଡ଼ିଶାର ଶିଳ୍ପପରମ୍ପରାରେ ବିଶ୍ୱାସ ଆଣିଦେଲା । ଭାଷଣରେ ବଖାଣୁ ବଖାଣୁ ମୁଖ୍ୟମନ୍ତ୍ରୀ କହିଦେଲେ ଯେ ସେ ବିଭୂତି ବାବୁଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ତାଙ୍କ କଳାର ସେ ନିରଳସ ପୂଜାରୀ ଥିଲେ । ସେ ବିଭୂତି ବାବୁଙ୍କ ଶିଳ୍ପକଳାରେ ଉଦ୍‌ବୁଦ୍ଧ ହୋଇ ସଚିବାଳୟରେ ଥିବା ତାଙ୍କ ଅଫିସ୍‌ରୁମ୍‌ରେ ଟଙ୍ଗେଇବା ପାଇଁ ତାଙ୍କ ଦ୍ୱାରା କାଞ୍ଚିବିଜୟ ଚିତ୍ରଟିଏ କରେଇଥିଲେ ।

ସଭାଜନମାନେ ଘନ ଘନ କରତାଳି ଦେଇ ମୁଖ୍ୟମନ୍ତ୍ରୀଙ୍କ ଭାଷଣକୁ ସମର୍ଥନ ଜଣେଇଲେ । ଆଗକାଳରେ ରାଜାମହାରାଜାମାନେ କଳାର ପୃଷ୍ଠପୋଷକତା ପାଇଁ ଯେଉଁ ଆୟସ କରୁଥିଲେ, ଗଣତନ୍ତ୍ର ରାଷ୍ଟ୍ରରେ ଲୋକ ନିର୍ବାଚିତ ସରକାର ଓ ସରକାର ଚଳାଉଥିବା ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ଶିଳ୍ପ ଓ ଶିଳ୍ପୀଙ୍କୁ ପୃଷ୍ଠପୋଷକତା ପହୁଞ୍ଚେଇ ଦେଇ କଳା ଐତିହ୍ୟକୁ ବଂଚେଇ ରଖିଛନ୍ତି । ଏ କଥାଟି ସମସ୍ତଙ୍କ ମନକୁ ପାଇଲା । ମୁଁ ନା ସମସ୍ତଙ୍କ ଭଳି କରତାଳି ଦେଇ ପାରୁଥିଲି ନା ମୁହଁରେ କୃତଜ୍ଞତାର ଭଙ୍ଗି ପ୍ରକାଶ କରି ମୁଖ୍ୟମନ୍ତ୍ରୀଙ୍କ ଓଜସ୍ୱିନୀ ଭାଷଣକୁ ସମର୍ଥନ କରିପାରୁଥିଲି । ଠିଆ ହୋଇ ମୁଖ୍ୟମନ୍ତ୍ରୀଙ୍କ ବୃଥା ଆସ୍ଫାଳନର ପ୍ରତିବାଦ କରିବାକୁ ମୋ ସାହସ କୁଳଉ ନଥିଲା । ମୁଁ କିମିତି ବା କହିପାରିଥାନ୍ତି, ହେ ମାନ୍ୟବର ମୁଖ୍ୟମନ୍ତ୍ରୀ ମହୋଦୟ, ଆପଣଙ୍କ ଅଫିସ୍‌ରୁମ୍ କାନ୍ଥରେ ଯେଉଁ କାଞ୍ଚିବିଜୟ ଚିତ୍ରଟି ଟଙ୍ଗା ହୋଇଛି ସେଇଟି ବିଭୂତି କାନୁନ୍‌ଗୋଙ୍କ ଦ୍ୱାରା ଚିତ୍ରିତ ନୁହେଁ । ଶ୍ରୀମତୀ ନନ୍ଦିନୀ ଶତପଥୀ ଆପଣଙ୍କ ଆଗରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ତାଙ୍କ ନିର୍ଦ୍ଦେଶରେ ଏହି ଚିତ୍ରଟି ମୁଁ ପ୍ରସ୍ତୁତ କରିଥିଲି । ଏହି କାର୍ଯ୍ୟ ସଂପାଦନ କରିବା ପାଇଁ ମୁଁ ସରକାରୀ ତହବିଲରୁ ଆଠଶହ ବାସ୍ତରି ଟଙ୍କା ପାରିତୋଷିକ ଆକାରରେ ପାଇଛି । ଏହି ଚିତ୍ରର ଡାହାଣପଟ ତଳକୁ ପ୍ରାୟ ଫୁଟେ ଲମ୍ବର ଇଂରାଜୀ ଅକ୍ଷରରେ ମୋର ଦସ୍ତଖତଟିଏ ଅଛି । ମୁଖ୍ୟମନ୍ତ୍ରୀମାନେ କୌଣସି ବିଶିଷ୍ଟ ଅତିଥିଙ୍କ ସହିତ ସାକ୍ଷାତ ଆଲୋଚନା କଲାବେଳେ ଏହି ଛବି ଟଙ୍ଗା ହୋଇଥିବା କାନ୍ଥକଡ଼ର ସୋଫାରେ ଆସୀନ ହୁଅନ୍ତି । କାଞ୍ଚିବିଜୟ ଚିତ୍ରଟି ସେମାନଙ୍କ ମୁଣ୍ଡ ପଛରେ ଶୋଭା ପାଉଥାଏ ଏବଂ ମୋ ଦସ୍ତଖତଟି ସେମାନଙ୍କ ଡେବରିକାନ ପାଖାପାଖି ଚିତ୍ରାଞ୍ଚଳରେ ଝଟକୁ ଥାଏ । ଲୋକ ସଂପର୍କ ବିଭାଗ ଦ୍ୱାରା ପ୍ରକାଶ ପାଉଥିବା ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁରେ ଚଳନ୍ତିକା ସଂବାଦ ଚିତ୍ରରେ ଛପା ହେଲାବେଳେ ସେହି ଫଟୋଗ୍ରାଫ୍‌ରେ ମୋର ଦସ୍ତଖତଟି ମଧ୍ୟ ଜଳଜଳ ଦିଶୁଥାଏ ।

Digitized by srujanika@gmail.com

ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଫିସ୍ ଚୌକିରେ ବସି ଫାଇଲ୍ ଚାଷ କରୁଥିବା ବେଳେ ଏହି ଚିତ୍ରଟି ତାଙ୍କୁ ମୁହଁ କରି କାନ୍ଥରେ ଶୋଭା ପାଉଥାଏ ଓ କଳାଧଳା ଘୋଡ଼ାରେ ସବାର ହୋଇ ବଳଭଦ୍ର ଓ ଜଗନ୍ନାଥ ତାଙ୍କରି ଆଖିଆଗରେ କାଞ୍ଚିଆଡ଼େ ବିଜେ ହେଉଥାନ୍ତି । ଓଡ଼ିଶା ଦେଶର ଶାସନ ଭାର ତାଙ୍କୁ ଆକ୍ରାନ୍ତ କରି ରଖିଥିବାରୁ ସେ କଦବା କ୍ୱଚିତ୍ ମୋର କାଞ୍ଚିବିଜୟ ଚିତ୍ରଟିକୁ ଦେଖିଥିବେ । ତଥାପି ଏଭଳି ପ୍ରମାଦ ତାଙ୍କ ତୁଣ୍ଡରେ ଶୋଭା ପାଇଲାନି । ଏମିତିରେ ଦେଖିଲେ ବସ୍ତୁତଃ ଉଦ୍‌ଘାଟନ ଉତ୍ସବଟି ସଂପୂର୍ଣ୍ଣ ମୋର । ମୁଁ ଯେଉଁ ମହାବିଦ୍ୟାଳୟର ଅଧ୍ୟକ୍ଷ, ସେହି ମହାବିଦ୍ୟାଳୟର ସେ ଦିନ ଉଦ୍‌ଘାଟନ ଉତ୍ସବ ଥିଲା । ନିଜର ପାଟଖଣ୍ଡା ଓ କିରିଟୀ ରାବଣ ଅଭିନୟ କରୁଥିବା ଲୋକଟିକୁ ଉଧାର ଦେଇ ବଡ଼ଖେମଣ୍ଡି ଗଡ଼ର ଗଙ୍ଗରାଜା ଶ୍ରୀ ଶ୍ରୀ କୃପାମୟଦେବ ଅବ୍ୟବସ୍ଥିତ ଭାବେ ପିଟ୍‌ରେ ବସିଥିବା ଭଳି ମୁଁ ସଭା ମଝିରେ ନିଜକୁ ସଂପୂର୍ଣ୍ଣ ନିଃସହାୟ ମନେ କରୁଥିଲି ଏବଂ ଧର୍ଷିତ ହେଲାଭଳି ଅନୁଭବ କରୁଥିଲି ।

ଅନ୍ତତଃ ସଭାଶେଷରେ ଆନୁଷ୍ଠାନିକ ଭାବେ ଧନ୍ୟବାଦ ଦେବା କାର୍ଯ୍ୟଟି ଅଧ୍ୟକ୍ଷଙ୍କ ଭାଗ୍ୟରେ ଜୁଟିଥିଲେ ଅପମାନ କିଛିଟା ମେଣ୍ଟିଗଲା ଭଳି ଲାଗିଥାନ୍ତା । ମୁଁ ହୁଏତ ଧନ୍ୟବାଦ ଭାଷଣକୁ ଆଳକରି ମୋ ମନର କ୍ଷୋଭକୁ ପ୍ରଶମିତ କରିବା ପାଇଁ ସୁଯୋଗ ପାଇପାରିଥାନ୍ତି । ଉଦ୍‌ଘାଟନର ମାହେନ୍ଦ୍ର ବେଳାରେ ସିମିତି କିଛି ଘଟିବାର ନଥିଲା । ଭାଗ୍ୟର ବିଡ଼ମ୍ବନା ଘଟିଲେ ବେଳେବେଳେ ଏମିତି ହିଁ ହୁଏ । ପୁଅ ବାହାଘର ମୋର, ଅଥଚ ବେଦୀ ଉପରେ ପୁରୋଧା ହୋଇ ବସିଛନ୍ତି ଆମ ସାହିର ରାଜୁ ସାହୁକାର ।

Digitized by srujanika@gmail.com

# ୫. ଆଡ଼୍‌ହକ୍‌ରେ ଅଧ୍ୟାପକ

କନ୍ୟା ବୟଃପ୍ରାପ୍ତ ହେଲେ ବରଖୋଜା ପାଇଁ ବ୍ୟଗ୍ରତା ଯିମିତି ବଢ଼ିଯାଏ, ସିମିତି ଅଧ୍ୟାପକ ନିଯୁକ୍ତି ପାଇଁ ତନାଘନା ଆରମ୍ଭ ହେଲା । ଏବେ ନିଜକୁ ଯୋଗ୍ୟ ମନେ କରୁଥିବା ବଛାବଛା ଓଡ଼ିଆ ଶିଳ୍ପୀଙ୍କ ଆଖି କନ୍ୟାଟି ପାଖରେ ଲାଖି ରହିଲା । କାହା ଗଳାରେ କନ୍ୟା ବରଣମାଳା ଲମ୍ବେଇବ, ସେ ନେଇ ପୂର୍ବାନୁମାନ ସରଗରମ ହେଲା । କଲେଜରେ ମାତ୍ର ଚାରୋଟି ଅଧ୍ୟାପକ ଚାକିରି । ତୈଳଚିତ୍ର ବିଭାଗ, ଗ୍ରାଫିକ୍ କଳା ବିଭାଗ, କମର୍‌ସିଆଲ୍ ଆର୍ଟ୍ ବିଭାଗ ଏବଂ ଭାସ୍କର୍ଯ୍ୟ ଓ ମଡ଼େଲିଙ୍ଗ୍ ବିଭାଗ । କଲେଜର ଅଧ୍ୟକ୍ଷ ଭାବରେ ମଧ୍ୟ ଏହି ସ୍ୱୟମ୍ବରରେ ମୋର କୌଣସି କର୍ତ୍ତୃତ୍ୱ ନଥିଲା । ସରକାର ହେଲେ କଲେଜର ମା'ବାପ । ବିଶେଷ କରି ସରକାରଙ୍କ ବିଭିନ୍ନ ଅଫିସର୍ ଓ ସେମାନଙ୍କ ଅନ୍ୟାନ୍ୟ ବନ୍ଧୁ ତଥା ସଂପର୍କୀୟମାନେ ମଧ୍ୟବୟଃପ୍ରାପ୍ତ ଅନୂଢ଼ା କନ୍ୟା ପ୍ରତି ଦରଦ ପୋଷଣ କରୁଥିଲେ, ସୃଷ୍ଟି ହେଉଥିବା ଶୂନ୍ୟସ୍ଥାନଗୁଡ଼ିକ ପ୍ରତି ନିଘା ରଖିଥିଲେ । ମୁଁ ଅଧିଭୋକ୍ତା ଭୂମିକାରେ ରହି କେବଳ ଗ୍ରହଣ କରିବା ମୋ ଭାଗ୍ୟରେ ଲେଖାଥିଲା ।

ପ୍ରଥମ ଅନୁରୋଧ ଆସିଲା ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣିଙ୍କ ପାଖରୁ । ତେଲୁଗୁ ଦେଶର କିଛି ପଥର କାରିଗରଙ୍କୁ କୋଣାର୍କ ମନ୍ଦିରନିର୍ମାଣ କାମରେ ସଂପୃକ୍ତ କରିବା ପାଇଁ ଯେଭଳି ଲାଗୁଲା ନରସିଂହ ଦେବଙ୍କ ଶ୍ୱଶୁର ପାଣ୍ଡ୍ୟରାଜା ନିଜର ଜୋଇଁପୁଅଙ୍କୁ ଅନୁରୋଧ କରିଥିଲେ ସେଭଳି କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ନିରଞ୍ଜନ ପଣ୍ଡା ତାଙ୍କ ଅଧୀନରେ କାର୍ଯ୍ୟରତ ଶିଳ୍ପୀ ଚନ୍ଦ୍ର କୁମାର ସାମନ୍ତରାୟଙ୍କୁ ଭାସ୍କର୍ଯ୍ୟ ବିଭାଗରେ ନିଯୁକ୍ତି ଦେବା ପାଇଁ ନିଜ ଜୋଇଁପୁଅଙ୍କୁ କହିଲେ । ଚନ୍ଦ୍ରକୁମାର ଖଲ୍ଲିକୋଟ କଳା ବିଦ୍ୟାଳୟରେ ମୋ ତଳ କ୍ଲାସରେ ଅଧ୍ୟୟନ କରୁଥିଲେ ଓ ଗଞ୍ଜାମ ଛାତ୍ରାବାସରେ ମୋ ରୁମ୍ ପାଖାପାଖି ରହୁଥିଲେ । କଟକ ଦୋଳମୁଣ୍ଡେଇ ଛକରୁ ଯେଉଁ ରାସ୍ତାଟି ଜେଲ୍ ରୋଡ୍ ସାଙ୍ଗରେ ମିଶିଛି ସେଇ ରାସ୍ତାର ଡ଼େବିରି କଡ଼େ ତାଙ୍କ ପୈତୃକ ଘର । ଖଲ୍ଲିକୋଟରୁ ଚାରିବର୍ଷ ପାଠ ସାରି ଆସିବା ପରେ ସେ ନିଜ ଘର ସାମନା ଫାଟକରେ ଗୋଟିଏ ସୁଦୃଶ୍ୟ ନାମ ଫଳକ ଲଗେଇଥିଲେ । ତାଙ୍କର ଯୋଗ୍ୟତା ବିଜ୍ଞପିତ କରିବା ପାଇଁ ନାମଫଳକରେ ଯାହାସବୁ ଉଲ୍ଲେଖ କରିଥିଲେ ସେଥିରେ ଯେକୌଣସି ଶିଳ୍ପୀର ଆଖି ଖୋସି ହେଇଯିବ । ଖଲ୍ଲିକୋଟରୁ ଫେରିବା ପରେ ଏତେଶୀଘ୍ର, ଏତେଗୁଡ଼ିଏ ଡିଗ୍ରୀ, ଡିପ୍ଲୋମା ସେ କେଉଁଠୁ ଯୋଗାଡ଼

Digitized by srujanika@gmail.com

କଲେ ସେଥିନେଇ କେବଳ ମୁଁ ନୁହେଁ, ବହୁଲୋକଙ୍କ ମନରେ ସନ୍ଦେହ ଥିଲା । ଥରେ ମୁଁ ଚନ୍ଦ୍ରକୁମାରଙ୍କୁ ତାଙ୍କର ଏତେସବୁ ଯୋଗ୍ୟତା ସଂପର୍କରେ ପଚାରୁ ପଚାରୁ ପଚାରି ଦେଲି । ସେ କିନ୍ତୁ ଅତ୍ୟନ୍ତ ଆତ୍ମପ୍ରତ୍ୟୟ ସହିତ ତାଙ୍କ ଉତ୍ତରରେ ଯାହା ବଖାଣିଥିଲେ ସେଥିରେ ଯୌକ୍ତିକତା ଭରି ରହିଥିଲା । ତାଙ୍କ ଉତ୍ତର ଏଠି ଅବିକଳ ଉଦ୍ଧାର କରିପାରୁ ନଥିଲେ ମଧ୍ୟ ନିର୍ଯ୍ୟାସଟି ଏଭଳି- "ତମେ ଡିପ୍ଲୋମା ଇନ୍ ଫାଇନ୍ ଆର୍ଟସ୍‌କୁ ଡି.ଏଫ୍.ଏ. ଲେଖୁଛ । ମୁଁ ଡି.ଏଫ୍.ଏ. ସହିତ ଡି.ସି.ଏ. ମଧ୍ୟ ଲେଖୁଛି । ଡି.ସି.ଏ.ର ତର୍ଜମା ହେଲା, ଡିପ୍ଲୋମା ଇନ୍ କ୍ରାଫ୍‌ଟସ୍ ।" ଏକଥା ସତ ଯେ ଆମେ ପଢ଼ିଥିବା ଚାରିବର୍ଷର ପାଠ୍ୟକ୍ରମରେ ଆର୍ଟ ସହିତ କ୍ରାଫ୍‌ଟ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ଏହି ଉପରୋକ୍ତ ଦୁଇଟି ଉପାଧି ସହିତ ସିଏ ଯୋଡୁଥିଲେ ଏମ୍.ଏ. ଏବଂ ଏମ୍.ସି.ଏ. । ତାଙ୍କ ଜ୍ଞାନର ପରିସୀମା ଭିତରେ ଏହି ଦୁଇଟି ଲୋଭନୀୟ ପଦବୀର ଯାଥାର୍ଥତା ହେଲା ମାଷ୍ଟର୍ ଇନ୍ ଆର୍ଟସ୍ ଏବଂ ମାଷ୍ଟର୍ ଇନ୍ କ୍ରାଫ୍‌ଟସ୍ । ଏହି ଦୁଇଟି ଉପାଧି ସ୍ୱୟଂଭୂ । ସିଏ କଟକର ଜଣେ ନାମଜାଦା ମାଟିକାରିଗର ଥିଲେ । ମହିଷମର୍ଦ୍ଦିନୀ ଦୁର୍ଗା, ଈଶ୍ୱର ପାର୍ବତୀ ଠାରୁ ଆରମ୍ଭ କରି ଭାଲୁକୁଣୀ ଯାଏଁ ବିଭିନ୍ନ ମୂର୍ତ୍ତି ତାଙ୍କର ଦକ୍ଷ ଓ କୁଶଳୀ ହାତରୁ ଉତୁରି ପଡୁଥିଲେ । ଏଣୁ ସାହି ପୂଜାକମିଟିବାଲା ତାଙ୍କ ଶିଳ୍ପ କାମରେ ପ୍ରୀତ ହୋଇ ତାଙ୍କୁ ମାଷ୍ଟର୍ ଉପାଧି ପ୍ରଦାନ କରିଥିଲେ । ମାଷ୍ଟର୍ ଆର୍ଟସ୍‌ରେ ଓ ମାଷ୍ଟର୍ କ୍ରାଫ୍‌ଟସ୍‌ରେ । ଉପାଧି ଗୁଡିକର ସଠିକ୍ ବ୍ୟୁତ୍ପତ୍ତି ନ ଜାଣିଲେ ଚନ୍ଦ୍ରକୁମାରଙ୍କ ଯୋଗ୍ୟତାକୁ ନେଇ ସନ୍ଦେହ ରହିବା ସ୍ୱାଭାବିକ ।

ଚନ୍ଦ୍ରକୁମାରଙ୍କ ଅନ୍ୟାନ୍ୟ ବିଭୂତି ମଧ୍ୟରୁ ସବୁଠାରୁ ଉଲ୍ଲେଖନୀୟ ହେଲା ତାଙ୍କ ଲାମ୍ବି ସ୍କୁଟର୍ । ଶିଳ୍ପୀମାନଙ୍କ ମଧ୍ୟରେ ସେ ଥିଲେ ଓଡ଼ିଶାର ଦ୍ୱିତୀୟ ସ୍କୁଟରଧାରୀ । ପ୍ରଥମ ସ୍କୁଟର୍‌ଟି ଥିଲା ବଜାଜ୍ ଓ ତାହା ଥିଲା ଶିଳ୍ପୀ ବୈଷ୍ଣବ ସାମଲଙ୍କର । ସେତେବେଳେ ବ୍ୟାଙ୍କରେ ଡ଼ଲାର ଜମା ନ ଦେଲେ ବଜାଜ୍ ସ୍କୁଟର୍ ମିଳୁ ନଥିଲା । ଶିଳ୍ପୀମାନେ କୁହାକୁହି ହେଉଥିଲେ ବୈଷ୍ଣବ ବାବୁ ରବି ରାୟଙ୍କ ଦ୍ୱାରା ପରିଚାଳିତ ସୋସିଆଲିଷ୍ଟ ପାର୍ଟିର ଲୋକ ଓ ତାଙ୍କର ଘନିଷ୍ଠ ବନ୍ଧୁ ହେଇଥିବାରୁ ସହଜରେ ବଜାଜ୍‌ଟିଏ ପାଇଛନ୍ତି ।

ଚନ୍ଦ୍ରକୁମାରଙ୍କ ଲାମ୍ବିର ଆଗ ମଡ୍‌ଗାର୍ଡ଼ କଡ଼ରେ ଲମ୍ବା ଏରିଏଲ୍‌ଟିଏ ଲାଗିଥାଏ । ସେ ସ୍କୁଟର ଚଢ଼ି କଲେଜ ଆସିଲା ବେଳେ ଆର୍ମିର ମେଜର୍ ଜେନେରଲ୍ ଭଳି ବା କୌଣସି ଡିଟେକ୍‌ଟିଭ୍ ସଂସ୍ଥାର ମୁଖ୍ୟ ପ୍ରବନ୍ଧକ ଭଳି ଦେଖାଯାଉଥିଲେ । ତାଙ୍କ ସ୍କୁଟର୍ ଆସିଲେ ପରିବେଶ ହଲଚଲ ହେଇଯାଉଥିଲା । କିନ୍ତୁ ଏତେବଡ଼ ଯୋଗ୍ୟତାସଂପନ୍ନ ବ୍ୟକ୍ତିଙ୍କୁ ମୁଁ କଲେଜରେ ମୋ ସହକର୍ମୀ ଭାବେ ପସନ୍ଦ କରୁ ନଥିଲି । ନିର୍ଦ୍ଦେଶକ ମହାଶୟଙ୍କୁ ଏତେସବୁ ଗୁମର କଥା କହିବାର ଆବଶ୍ୟକତା ମୁଁ ଅନୁଭବ କରି ନଥିଲି । ତାଙ୍କ ଅନୁରୋଧକୁ ନିର୍ଦ୍ଦେଶ ଭାବି ଚନ୍ଦ୍ରକୁମାରଙ୍କୁ ଅଧ୍ୟାପକ ଭାବେ ବରଣ କରିଥିଲି । ନିର୍ଦ୍ଦେଶକ

Digitized by srujanika@gmail.com

ମହାଶୟଙ୍କ ଅନୁରୋଧକୁ ମୁଣ୍ଡପାତି ଗ୍ରହଣ କରିନେଲେ ହୁଏତ ସିଏ ମୋର କେତେକ ପରାମର୍ଶ ଶୁଣିବେ, ଏଇ ଲୋଭ ମଧ୍ୟ ମୋତେ ଆକ୍ରାନ୍ତ କରିଥିଲା ।

ଶିକ୍ଷୀମାନେ ମନେମନେ ବିଚାରୁଥିଲେ ସଂସ୍କୃତି ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ ଭଦ୍ରକର ବିଶିଷ୍ଟ ଶିଳ୍ପୀ ଅଶୋକ ମହାନ୍ତିଙ୍କୁ ଗ୍ରାଫିକ୍ ଅଧ୍ୟାପକ ଭାବେ ନିଶ୍ଚୟ ନିଯୁକ୍ତି ଦେବେ । ଅଶୋକ ମନ୍ତ୍ରୀମହାଶୟଙ୍କ ଖାସ୍ ଲୋକ । ଅଶୋକ ମଧ୍ୟ ଆଶାୟୀ ହେଇ ନିଧଡ଼କ ଥିଲେ । ଠିକ୍ ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସଂସ୍କୃତି ମନ୍ତ୍ରୀଙ୍କୁ ରାଜ୍ୟ ମନ୍ତ୍ରୀମଣ୍ଡଳରୁ ବିଦାୟ ନେବାକୁ ପଡ଼ିଲା । ରେଡ଼ିଓରୁ ଏ ସମ୍ବାଦ ପାଇ ସେଦିନ ସଂଧ୍ୟାରେ ମୁଁ ଡି.ଏନ୍.ରାଓଙ୍କ ସରକାରୀ କ୍ୱାର୍ଟର୍‌ରେ ପହଞ୍ଚି ଅଧ୍ୟାପକ ପଦବୀ ପାଇଁ ଶୀଘ୍ର ଦରଖାସ୍ତ କରିବାକୁ ତାଙ୍କୁ ତାଗିଦା ଦେଲି । ସିଏ ମୋ କଥାରେ ପ୍ରଥମେ ଆଚମ୍ବିତ ହେଇପଡ଼ିଲେ କିନ୍ତୁ ସେତକ କଥା ହିଁ ତାଙ୍କ ଜୀବନରେ ମୋଡ଼ ଆଣିଦେଲା । ଅଶୋକ ଜଣେ ଭଲ ଶିଳ୍ପୀ, କବି ଓ କଳା ସମାଲୋଚକ, କିନ୍ତୁ ପରିସ୍ଥିତିର ତାଡ଼ନାରେ ତାଙ୍କୁ ଅଧ୍ୟାପକ ଚାକିରି ହରେଇବାକୁ ପଡ଼ିଲା ଏବଂ ମୋ ପ୍ରତି ତାଙ୍କ ଅଭିମାନ ଏବେଯାଏଁ ଗଡ଼ିଆସୁଛି । ଅଶୋକ ସିନା ନିଜେ ଅଧ୍ୟାପକ ହେଇପାରିଲେନି କିନ୍ତୁ ନିଜ ପ୍ରଚେଷ୍ଟାରେ ଭଦ୍ରକରେ କଳା ମହାବିଦ୍ୟାଳୟଟିଏ ଗଢ଼ିଦେଇପାରିଲେ । ସିଏ ଚାହିଁଥିଲେ କେବଳ ଅଧ୍ୟାପକ ନୁହେଁ, ଅଧ୍ୟକ୍ଷ ମଧ୍ୟ ହେଇ ପାରିଥାନ୍ତେ କିନ୍ତୁ ଜଣେ ଦରଦୀ କବି ଓ ଶିଳ୍ପୀ ହେଇ ବଂଚିବା ପାଇଁ ମନସ୍ଥ କଲେ ।

ଡି.ଏନ୍.ରାଓ ଶିଳ୍ପୀ ସଂସଦ ଆନୁକୂଲ୍ୟରେ ପ୍ରତିଷ୍ଠିତ ଚିତ୍ରମ୍ କଳା ବିଦ୍ୟାଳୟରେ ମୋ ସହିତ ଅବୈତନିକ ଅଧ୍ୟାପକ ଭାବେ କାର୍ଯ୍ୟ କରୁଥିଲେ ଏବଂ ଅଗ୍ରଣୀ କଳା ସଂସ୍ଥା ୱାର୍କିଙ୍ଗ୍ ଆର୍ଟିଷ୍ଟ୍‌ସ୍ ଆସୋସିଏସନ୍‌ର ଜଣେ ସକ୍ରିୟ ସଭ୍ୟ ଭାବେ ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ । ଏ ଉଭୟ ସଂପର୍କ ମୋ ନିଷ୍ପତ୍ତିକୁ ପ୍ରଭାବିତ କରିଥିଲା । ଡି.ଏନ୍.ରାଓଙ୍କ ଶିଳ୍ପୀ ଜୀବନର ବିକାଶରେ ମୋର ନିର୍ଦ୍ଦିଷ୍ଟ ଭୂମିକା ଥିଲା । ଭୁବନେଶ୍ୱରରେ ସରକାରୀ କଲେଜ ପରିକଳ୍ପନା ହେବାର ବହୁ ଆଗରୁ ଘରୋଇ ଭାବେ ପରୀକ୍ଷା ଦେଇ ମାଟ୍ରିକ୍ୟୁଲେସନ୍ ସାର୍ଟିଫିକେଟ୍ ହାସଲ କରିବା ପାଇଁ ମୁଁ ଡି.ଏନ୍.ରାଓଙ୍କୁ ପ୍ରବର୍ତ୍ତେଇଥିଲି । ସେ ଦିନାକେତେ ମୋ ଅଶୋକ ନଗର ଭଡ଼ାଘରେ ରହି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । କିନ୍ତୁ ତାଙ୍କ ପ୍ରସ୍ତୁତିର ପୂର୍ଣ୍ଣଚ୍ଛେଦ ପଡ଼ି ନଥିଲା । ସରକାର ମୋ ପ୍ରସ୍ତାବରେ ରାଜି ହେଲେ ଏବଂ ଡି.ଏନ୍.ରାଓ ବି.ଜେ.ବି. କଲେଜ ଛାଡ଼ି ବି.କେ.ରେ ଯୋଗଦେଲେ ।

ଆମବେଳେ ଓଡ଼ିଶାରେ ବହୁ ଚିତ୍ରଶିଳ୍ପୀ, ନୃତ୍ୟଶିଳ୍ପୀ ଓ ସଂଗୀତଜ୍ଞ ମାନଙ୍କର ଯୋଗ୍ୟତା ସରକାରୀ ବ୍ୟବସ୍ଥା ସମ୍ମତ ନଥିଲା । ଅଧ୍ୟାପକ ହେବାପାଇଁ ସର୍ବନିମ୍ନ ସାଧାରଣ ଯୋଗ୍ୟତା ମଧ୍ୟ ଅଧିକାଂଶ ଶିଳ୍ପୀଙ୍କର ନଥିଲା । ସେମାନେ ହୁଏତ ନିଜ ବିଦ୍ୟାରେ ଧୁରନ୍ଧର ଥିଲେ କିନ୍ତୁ ଶିକ୍ଷାଗତ ଯୋଗ୍ୟତାର ବୈକଲ୍ୟ ସେମାନଙ୍କୁ ପ୍ରଶାସନିକ ବ୍ୟବସ୍ଥା ଭିତରେ

Digitized by srujanika@gmail.com

ଏକ ଅଭାବନୀୟ ପରିସ୍ଥିତି ଭିତରକୁ ଟାଣି ନେଉଥିଲା । ଏବେ ଶିଳ୍ପୀମାନେ ଅନାୟାସରେ ମାଟ୍ରିକ୍ୟୁଲେସନ୍ ବା ପ୍ଲସ୍ ଟୁ ପାସ କରିପାରୁଥିଲେ ମଧ୍ୟ ଶିକ୍ଷାଗତ ଦୈନ୍ୟ ସମଗ୍ର ଶିଳ୍ପୀସମାଜକୁ ଏକ ଉପହସିତ ଅବସ୍ଥାକୁ ନେଇଯାଉଛି । ଶାନ୍ତିନିକେତନର ବିଶ୍ୱବନ୍ଦିତ ଭାସ୍କର ରାମକିଙ୍କର ବେଜ୍‌ଙ୍କ ଠାରୁ ଆରମ୍ଭ କରି ଓଡ଼ିଶାର ସଂଗୀତ ମହାବିଦ୍ୟାଳୟର ଅଧ୍ୟାପକ ଦେବପ୍ରସାଦ ଦାସଙ୍କ ଯାଏଁ ଏହି ବୈକଲ୍ୟ ଧୂମକେତୁ ଭଳି ଲମ୍ବିଯାଇଥିଲା ।

ଶାନ୍ତିନିକେତନ କଳାଭବନର ପ୍ରଫେସର କେ.ଜି. ସୁବ୍ରମଣିୟନ୍ ପରିହାସ ଛଳରେ ଏହି ଶିକ୍ଷାଗତ ଯୋଗ୍ୟତା ନେଇ ମୋତେ କେତେକ ମଜ୍ଜାକଥା କହିଥିଲେ । ତାଙ୍କ କଥାତକ ଅମୃତ ବୋଲି ନା ଢ଼ୋକି ହେଉଥିଲା ନା ବିଷଭଳି ଫିଙ୍ଗି ହେଉଥିଲା । କେ.ଜି. ସୁବ୍ରମଣିୟନ୍ ମୋତେ କହିଥିଲେ, ''ଦିନନାଥ । ତମେ ବୋଧହୁଏ ଜାଣିଥିବ ମୁଁ କେରଳ କମ୍ୟୁନିଷ୍ଟ ପାର୍ଟିର ଜଣେ କର୍ମକର୍ତ୍ତା ଭାବେ ବହୁବର୍ଷ ଧରି ଅଣ୍ଡରଗ୍ରାଉଣ୍ଡ୍‌ରେ ରହି କାମ କରିଛି । ମୁଁ ସତରେ ମେଟ୍ରିକ୍ୟୁଲେସନ୍ ପାସ କରିଛି କି ନାହିଁ ମୋ ମନେ ବି ନାହିଁ । ଏବେ କପିଳା (ବାତ୍ସାୟନ) କହୁଛି ତମେ ପିଏଚ୍.ଡି. କର ନ ହେଲେ ପ୍ରଫେସର୍ ହେଇ ପାରିବ ନାହିଁ । ପ୍ରଫେସର୍ ନ ହେବି ପଛେ ଏବେ ଆଉ ପାଠ ପଢ଼ିବାର ଆଗ୍ରହ ନାହିଁ । ସୁବ୍ରମଣିୟନ୍ ଭାରତ ବର୍ଷର ଜଣେ ଦିଗଗଜ ଚିତ୍ରଶିଳ୍ପୀ ଏଣୁ ତାଙ୍କ କ୍ଷେତ୍ରରେ ପିଏଚ୍.ଡି.ର ବାଧ୍ୟବାଧକତା ଅମୂଳକ । କିନ୍ତୁ ଅନ୍ୟମାନେ ତ ଚିତ୍ରକଳାର ସୁବ୍ରମଣିୟନ୍ ନୁହନ୍ତି ଏଣୁ ଅତିକମ୍‌ରେ ମେଟ୍ରିକ୍ୟୁଲେସନ୍ ପାସ କରିବାକୁ ପଡ଼ିବ । ଓଡ଼ିଶାରେ ନା କଳାତ୍ମକ ଉତ୍କର୍ଷର ନା ଶିକ୍ଷାଗତ ଯୋଗ୍ୟତାର କିଛି ଅର୍ଥ ଅଛି । ଏହି ଧୂଆ ମୂଳା ଓ ଅଧୁଆ ମୂଳା ସବୁ ସମାନ ।

ଭୁବନେଶ୍ୱରରେ ଆର୍ଟ୍ କଲେଜ ପରିକଳ୍ପନା ହେବାର ଅନେକ ଦିନ ଆଗରୁ ମୁଁ ବଳଦେବ ମହାରଥୀଙ୍କୁ ଅଶୋକ ନଗର ଜୋତା ଦୋକାନ ପାଖ ଦୁର୍ଗା ପଣ୍ଡାଙ୍କ ଆର୍ଟେକ୍ସ୍ ଷ୍ଟୁଡ଼ିଓରେ ଭେଟିଥିଲି । ଦୁର୍ଗା ପଣ୍ଡା ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଫଟୋଗ୍ରାଫର୍ ଭାବେ ଚାକିରି କରୁଥିବାରୁ ମୋ ସହକର୍ମୀ ଥିଲେ ଏବଂ ସେ ସରକାରୀ ତଥା ବେସରକାରୀ ସ୍ତରରେ ବିଭିନ୍ନ ବିଜ୍ଞାପନ କାମ କରୁଥିଲେ । ବଳଦେବଙ୍କ ଚମତ୍କାର ହାତକାମରେ ମୁଁ ଆକୃଷ୍ଟ ହୋଇ ପଡିଥିଲି । ବନ୍ଧୁ ଦୁର୍ଗା ପଣ୍ଡା ବଳଦେବଙ୍କୁ ସାହାଯ୍ୟ କରିବା ପାଇଁ ମୋତେ ଅନୁରୋଧ କରିଥିଲେ । ବଳଦେବ ମହାରଥୀଙ୍କ ଶିଳ୍ପୀ ଜୀବନର ବିକାଶରେ ମୁଁ ଏକଦା ନିର୍ଣ୍ଣାୟକ ଭୂମିକାରେ ଥିଲି । ରାଜ୍ୟ ସୂଚନା ଓ ଲୋକସଂପର୍କ ବିଭାଗର ଚିତ୍ରଶିଳ୍ପୀ ପୋଷ୍ଟ୍ ପାଇଁ ବିଜ୍ଞାପନ ବାହାରିଲା । ବଳଦେବ ଚାକିରି ପାଇଁ ଦରଖାସ୍ତ କରିଥିଲେ । ବିଭାଗୀୟ ଉପନିର୍ଦ୍ଦେଶକ ଆର୍ତ୍ତତ୍ରାଣ ରାଉତ ମନେ ମନେ ବଳଦେବଙ୍କୁ ଜୋଇଁପୁଅ କରିବାର ଅଭିଳାଷ ରଖି ତାଙ୍କୁ ଚାକିରିରେ ନିଯୁକ୍ତି ଦେବା ପାଇଁ ସ୍ଥିର କରି ସାରିଥିଲେ । ସୂଚନା ଭବନ ଠାରେ ସାକ୍ଷାତକାର ଆୟୋଜିତ ହୋଇଥିଲା ଓ ମୁଁ ସେଥିରେ ଏକସ୍‌ପାର୍ଟ୍ ଥିଲି ଏବଂ କହିବା ବାହୁଲ୍ୟ ଯେ ବଳଦେବ ହିଁ ଚାକିରି ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

Digitized by srujanika@gmail.com

ମୁଁ ଭାବି ନେଇଥିଲି ଯେହେତୁ ବଳଦେବ ଭଲ ଛବି ଆଙ୍କି ପାରୁଛନ୍ତି, ସୁନ୍ଦର ଅକ୍ଷର ଲେଖି ପାରୁଛନ୍ତି, ସିଏ ନୂଆ କରି ଗଢ଼ା ହେଉଥିବା ଆର୍ଟ୍ କଲେଜର ଅଧ୍ୟାପକ ହେଲେ ଛାତ୍ରଛାତ୍ରୀଙ୍କର ଅଶେଷ ମଙ୍ଗଳ ହେବ । ତାଙ୍କୁ ଅଧ୍ୟାପକ ନିଯୁକ୍ତି ଦେବାକଥା ନିର୍ଦ୍ଦେଶକଙ୍କୁ ପ୍ରସ୍ତାବ ଦେବାରୁ ସେ ସହସା ସମ୍ମତି ଜଣେଇଲେ ଏବଂ ସରକାର ମଧ୍ୟ ତାଙ୍କ ନିଯୁକ୍ତି କାଏମ କରିଦେଲେ । ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଫଣିଭୂଷଣ ଦାସ ବଳଦେବ ଭଳି ଜଣେ କାର୍ଯ୍ୟଦକ୍ଷ ଶିଳ୍ପୀଙ୍କୁ ନିଜ ବିଭାଗରୁ ଅନ୍ତର କରିବା ପାଇଁ ମଙ୍ଗୁ ନଥିଲେ । ଫଣିବାବୁଙ୍କ ସହିତ ମୋର ଭଲ ସଂପର୍କ ଥାଏ ଏଣୁ ମୁଁ ମୋର ସମସ୍ତ ବୁଦ୍ଧି, ବିବେକ ଓ କୌଶଳ ପ୍ରୟୋଗ କରି ତାଙ୍କୁ ଲୋକ ସଂପର୍କ ବିଭାଗରୁ ଖସେଇ ଆଣିବାରେ ସମର୍ଥ ହେଲି ।

ଶେଷରେ ରହିଲା ତୈଳଚିତ୍ର ବିଭାଗର ଅଧ୍ୟାପକ ଚାକିରି । ଯଦିଓ ମୋର ଘନିଷ୍ଠ ବନ୍ଧୁ ଚନ୍ଦ୍ରଶେଖର ରାଓ ଏହି ଅଧ୍ୟାପକ ପଦବୀ ପାଇଁ ଯୋଗ୍ୟ ବ୍ୟକ୍ତି ଥିଲେ, ତଥାପି ତାଙ୍କର ଭାରତୀୟ କଳାରେ ସାର୍ଟିଫିକେଟ୍ ଥିବାରୁ ଭବିଷ୍ୟତରେ ଲୋକସେବା ଆୟୋଗ ପରୀକ୍ଷାରେ ଅଡୁଆ ଉପୁଜିବାର ସମ୍ଭାବନା ଥିଲା । ଏଣୁ ମୁଁ ଆମ କଲେଜରେ ତାଙ୍କ ନିଯୁକ୍ତିକୁ ନେଇ ଦୋ ଦୋ ପାଞ୍ଚ ହେଉଥିଲି । ମୁଁ ପୁଣି ଭାବୁଥିଲି ଯୁବଶିଳ୍ପୀ ରାମହରି ଜେନାଙ୍କୁ ଏ ବିଭାଗରେ ନିଯୁକ୍ତି ଦେଲେ ମନ୍ଦ ହୁଅନ୍ତାନି । ଶିବ ପାଣିଗ୍ରାହୀ ଆର୍ଟ୍ କଲେଜରେ ଅଧ୍ୟାପକ ହେବା ପାଇଁ ବ୍ୟଗ୍ର ଥିଲେ । ସେ ସରକାରରେ ନିଜର ପ୍ରଭାବ ବିସ୍ତାର କରି ବିଭିନ୍ନ ଅଫିସରଙ୍କ ମାଧ୍ୟମରେ ମୋ ପାଖରେ କଥା ପହଞ୍ଚାଉ ଥିଲେ । ଜଣେ ଭଲ ପ୍ରଚ୍ଛଦ ଶିଳ୍ପୀ ଭାବରେ ସେ ବେଶ୍ ନାଁ କମେଇ ଥିଲେ । କଟକରେ ରହିଲେ ବହି ପ୍ରକାଶନ ସହିତ ଜଣେ ଶିଳ୍ପୀ ଅବଲୀଳାକ୍ରମେ ସଂପୃକ୍ତ ହୋଇପଡ଼େ । ଶିବ ପାଣିଗ୍ରାହୀ ବହିର ଅଳଙ୍କରଣ କରୁଥିଲେ ମଧ୍ୟ ଆଧୁନିକ ଚିତ୍ରକଳାର ପରୀକ୍ଷା ନିରୀକ୍ଷାରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ଓଡ଼ିଶା ଲଳିତ କଳା ଏକାଡେମୀର ପ୍ରଥମ ଚିତ୍ର ପ୍ରଦର୍ଶନୀରେ ଶିବ ପାଣିଗ୍ରାହୀ ଆଧୁନିକ କଳା ପାଇଁ ପୁରସ୍କୃତ ହୋଇଥିଲେ ।

ମୋ ଅଧ୍ୟକ୍ଷ ନିଯୁକ୍ତି ଫାଇଲ୍ ସଂପର୍କରେ ବୁଝାଶୁଝା କରିବା ପାଇଁ ମୁଁ ଦିନେ ସଚିବାଳୟରେ ପହଞ୍ଚିଥାଏ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସଚିବ ସୁଧାଂଶୁ ଭୂଷଣ ମିଶ୍ରଙ୍କୁ ଦେଖା କରି ମୋ କଥା ପଚାରିବାରୁ ସେ ମୋତେ ଅତି ଆଦରରେ ତାଙ୍କ ଅଫିସ୍ ବାହାର ବାରଣ୍ଡାକୁ ବାଟ କଢ଼େଇ ନେଲେ ଓ ଖୁବ୍ ଆତ୍ମୀୟତାର ସହିତ ଅସଲ ମଞ୍ଜକଥାଟି କହିଦେଲେ । ''ଦିନନାଥ ! ଦେଖ ତମ ଅଧ୍ୟକ୍ଷ ନିଯୁକ୍ତି ଫାଇଲ୍ ମୋ ଟେବୁଲ ଉପରେ ଅଛି । ତମେ କଲେଜର ତୈଳଚିତ୍ର ବିଭାଗରେ ଶିବ ପାଣିଗ୍ରାହୀଙ୍କୁ ନିଯୁକ୍ତି ଦିଆଁଯାଉ ବୋଲି ସୁପାରିଶ କରି ପ୍ରସ୍ତାବଟିଏ ଆଣ । ମୁଁ ଦୁଇଟିଯାକ ଫାଇଲ୍ ଏକାଥରେ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଅର୍ଡ଼ର୍ କରେଇନେବି ।'' ସୁଧାଂଶୁ ମିଶ୍ରଙ୍କ ଠାରୁ ଏତକ ଗହନ କଥା ଶୁଣିଲାପରେ

Digitized by srujanika@gmail.com

ମୁଁ ପରିସ୍ଥିତିର ଜଟିଳତା ପ୍ରତି ସଚେତନ ହେଲି । ମୁଁ ଏବେ ଦୃଢ଼ ହେଲି ଯେ ଚନ୍ଦ୍ରଶେଖର ରାଓ କିମ୍ବା ରାମହରିଙ୍କ ନାଁ ସୁପାରିଶ କଲେ କୌଣସି ଫଳ ହେବନି । ଏଣୁ ଯଥାଶୀଘ୍ର ଶିବଙ୍କ ଫାଇଲ୍ ନେଇ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ପହଞ୍ଚିଲା ପରେ ଉଭୟ କାର୍ଯ୍ୟ ଯଥାଶୀଘ୍ର ସଂପାଦିତ ହୋଇଗଲା । ଏବେ ଚତୁର୍ଦ୍ଧା ମୂର୍ତ୍ତି ଯେଝା ଆସନରେ ଅଧିଷ୍ଠିତ ହେଲେ । ରଥଟଣା ହେବାକୁ ବାକି ରହିଲା ।

ପାଞ୍ଚ ଛଅ ମାସ ଯାଇଛି କି ନାହିଁ ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣି ବଦଳି ହୋଇଗଲେ । ଚନ୍ଦ୍ରକୁମାର ସାମନ୍ତରାୟଙ୍କୁ ନେଇ ମୁଁ ଆଗରୁ ଯାହା ଆଶଙ୍କା କରୁଥିଲି ତାହା ଘଟିବାକୁ ଗଲା । ଚନ୍ଦ୍ରକୁମାର ଏବେ ନିଜକୁ ଜଣେ ସୁପର୍ ପ୍ରିନ୍‌ସପାଲ୍ ଭଳି ମନେକଲେ ଓ ଛାତ୍ରଛାତ୍ରୀ ତଥା ଅନେକ ଅଧ୍ୟାପକଙ୍କୁ ମୋ ବିରୁଦ୍ଧରେ ମତେଇବା କାର୍ଯ୍ୟରେ ମନ ଦେଲେ । କଲେଜର ଦଶ ପନ୍ଦର ପିଲାଙ୍କୁ ଘରକୁ ଡ଼କେଇ କୁମନ୍ତ୍ରଣା ଦେବା ପାଇଁ ପଛେଇଲେ ନାହିଁ । ଏହା ଖଲ୍ଲିକୋଟ ରୋଗର ଲକ୍ଷଣ । ଆମେ ଖଲ୍ଲିକୋଟରେ ଅଧ୍ୟୟନ କରୁଥିବାବେଳେ କାହା ନା କାହା ବିରୁଦ୍ଧରେ ଦରଖାସ୍ତ ଲେଖିବା ଏକ ନିତିଦିନିଆ ଘଟଣା ଥିଲା । କଲେଜ ତ ବହୁ ଅଭାବ ଅସୁବିଧା ଭିତରେ ଆରମ୍ଭ ହୋଇଥିଲା ଏଣୁ ବୃଥାରେ ଅଭାବ ଅସୁବିଧାର ଦ୍ୱାହି ଦେଇ ସରକାରଙ୍କ ପାଖକୁ ଅଭିଯୋଗ ଭରା ଦରଖାସ୍ତ ଲେଖେଇଲେ । ମୁଁ ତାଙ୍କର ମୁଖ୍ୟ ଶରବ୍ୟ ହେଲି । ସୁଧାଂଶୁ ମୋହନ ରାଉତରାୟ ସଂସ୍କୃତି ବିଭାଗର ଉପଶାସନ ସଚିବ ଥିଲେ । ସେ ତାଙ୍କ ଅଫିସକୁ ମତେ ଡକେଇ ପିଲାଙ୍କ ଦରଖାସ୍ତଟି ଦେଖେଇଲେ । ପିଲାଙ୍କ ଅଭିଯୋଗ ଦରଖାସ୍ତରେ ଅଧ୍ୟାପକ ବଳଦେବଙ୍କ ସନ୍ତକଟି ଦେଖି ମୋତେ ଆଚମ୍ବିତ ଲାଗିଲା । ଯେଉଁ ଅଧ୍ୟାପକଙ୍କ ଉପରେ ମୁଁ ଷୋଳଣା ଭରସା କରିଥିଲି ଏବଂ ଯାହାଙ୍କୁ ଆଡ୍‌ହକ୍‌ରେ ନିଯୁକ୍ତି ଦେବା ପାଇଁ ମୋତେ ଘର୍ମାକ୍ତ ପ୍ରୟାସ କରିବାକୁ ପଡ଼ିଥିଲା ସିଏ ଏତେ ଶୀଘ୍ର ଏମିତି ଭାବେ ବଦଳିଯିବେ ମୋର ଏ ଧାରଣା ଇ ନଥିଲା ।

ମୁଁ ଦୃଢ଼ ହେଲି ବଳଦେବ ତ ସାଧାସିଧା ଲୋକ ଏହା ନିଶ୍ଚିତ ଚନ୍ଦ୍ରଗ୍ରହର ପ୍ରଭାବ । ଏଣୁ ପ୍ରଥମେ ଚନ୍ଦ୍ରକୁ ଆଟିକାରେ ପୁରେଇ ତାର ଜ୍ୟୋତ୍ସ୍ନା ତ ନୁହେଁ କାଳିମାକୁ ସଂପୂର୍ଣ୍ଣ ଧୋଇ ଦେବାକୁ ହେବ । ସୁଧାଂଶୁ ମୋହନ ରାଉତରାୟ ମୋ ପ୍ରସ୍ତାବରେ ସମ୍ମତି ପ୍ରକାଶ କଲେ । ଏବଂ ମୋ ସୁପାରିଶରେ ଚନ୍ଦ୍ରକୁମାର 'ପୁନର୍ମୂଷିକୋ ଭବ' ଅବସ୍ଥାକୁ ଫେରିଗଲେ । ତା'ପରେ ତାଙ୍କ ସ୍ଥାନରେ ଖଲ୍ଲିକୋଟ କଳାବିଦ୍ୟାଳୟର ଛାତ୍ର ଦେବରାଜ ସାହୁଙ୍କୁ ଅଧ୍ୟାପକ କରିବା ପାଇଁ ମୋ ପ୍ରସ୍ତାବକୁ ସରକାର ଗ୍ରହଣ କଲେ । ଦେବରାଜ ଖଲ୍ଲିକୋଟରେ ମୋର ସହପାଠୀ ଥିଲେ ଓ ସେ ଥିଲେ ଜଣେ ସମ୍ବେଦନଶୀଳ ଶିଳ୍ପୀ ଏବଂ ତାଙ୍କରି ନେତୃତ୍ୱରେ କଲେଜରେ ବହୁ ନୂଆ ନୂଆ ପ୍ରକଳ୍ପମାନ ରୂପ ନେଲା ।

Digitized by srujanika@gmail.com

# ୬. ହାତଗଣତା କର୍ମଚାରୀ

କଲେଜରେ କିରାଣି ନିଯୁକ୍ତି ଆଗରୁ କଲେଜର ଫାଇଲପତ୍ର ସଂସ୍କୃତି ନିର୍ଦ୍ଦେଶାଳୟର ବଡ଼ବାବୁ ନରସିଂହ ମିଶ୍ରଙ୍କ ହେପାଜତରେ ରହୁଥିଲା । ମିଶ୍ରେ ନୈଷ୍ଠିକ ବ୍ରାହ୍ମଣ; ଧୋତି ଓ ଫୁଲସାର୍ଟ୍ ପିନ୍ଧୁଥିଲେ ଏବଂ କପାଳରେ ତିଳକ ଧାରଣ କରୁଥିଲେ । ଗୋରା ଦେହ ଆଉ ଧାରୁଆ ମୁହଁ । ମିଶ୍ରେ ବଡ଼ ଜଞ୍ଜାଳୀ ଲୋକ । ତାଙ୍କ ପାଖରେ ତିନି ଚାରି ଗାଈ ପ୍ରତିପାଳିତ ହେଉଥିଲେ ଆଉ ପନ୍ଦର କୋଡ଼ିଏ ସାଇକେଲ ରିକ୍ସା ତାଙ୍କ ମାର୍ଫତରେ ରାଜଧାନୀ ରାସ୍ତାରେ ଆତଜାତ ହେଉଥିଲେ । କ୍ଷୀର ବିକିବା ଓ ରିକ୍ସାବାଲାଙ୍କଠୁ ଭଡ଼ା ଆଦାୟ କରିବାରେ ତାଙ୍କର ଅଧିକାଂଶ ସମୟ ଓ ଶ୍ରମ ବ୍ୟୟିତ ହେଉଥିଲା । ମିଶ୍ରେ କିନ୍ତୁ ରୋକ୍‌ଠୋକ୍ ଜବାବ ଦେବା ଲୋକ । ସିଏ ଥରେ ନିର୍ଦ୍ଦେଶାଳୟର ବଜେଟ୍ ସଂକ୍ରାନ୍ତୀୟ ମିଟିଙ୍ଗ୍‌ରେ କହୁକହୁ କହିଦେଲେ, ''ଆମେ ଏଠି ଦିନରାତି ଅଙ୍କ କଷାକଷି କରି ବଜେଟ୍ ତିଆରି କରୁଥିବୁ, ଆଉ ସରକାର ବିନା ବିଚାରରେ ଏଭଳି କାଟଛାଟ କରୁଥିବେ ଯେ, 'ଦାସେ ଅଇଲେ ମୂଳରୁ ଗା' ଭଳି ଆମେ ଆଉଥରେ ଅଣ୍ଡାଭାଙ୍ଗି ଅଙ୍କ ସଜାଡୁ ଥିବୁ । ସରକାର ଆମ ବଜେଟ୍‌ରେ କେତେଟଙ୍କା ଦେବେ ମୂଳରୁ ନିର୍ଧାର୍ଯ୍ୟ କରିଦେଲେ କାମ ଏତେ ଅଡୁଆ ହୁଅନ୍ତାନି ।'' ନିର୍ଦ୍ଦେଶକ ଟୋକା ଆଇ.ଏ.ଏସ୍ । କଡାକରି ଇଂରେଜୀରେ ଦି'ପଦ ଝାଡ଼ିଦେଲେ ଯେ ମିଶ୍ରେ ଛେପ ଢୋକିବାକୁ ତର ପାଇଲେନି ।

ଦିନେ ମୁଁ ସଂସ୍କୃତି ନିର୍ଦ୍ଦେଶାଳୟକୁ ଯାଇଛି ମିଶ୍ରେ ବଡ଼ ଶ୍ରଦ୍ଧାରେ ମୋ ପାଇଁ ଚାହା ଆଉ ମିଠାପାନ ମଗେଇଲେ । ମୁଁ ବିଚାରିଲି ଏଭଳି ଉଦାରତାରେ କିଛି ରହସ୍ୟ ଅଛି । ଆମ କଲେଜକୁ ଚାରୋଟି ପିଅନ ପୋଷ୍ଟ୍ ଆଉ ଗୋଟିଏ ଚୌକିଦାର-କମ୍-ସୁଇପର୍ ପୋଷ୍ଟ୍ ଦିଆଯାଇଥିବା ସରକାରୀ ନିର୍ଦ୍ଦେଶନାମାଟି ମୋତେ ଧରେଇ ଦେଇ ତାଙ୍କର ମାଗୁଣିଟି ଏଥର ବଖାଣିଦେଲେ । ତାଙ୍କ ଘରେ ଗଉଡ଼ ପିଲାଟେ ଅଛି । ତାଙ୍କ ଗାଁ ଆଡ଼ର ଗରିବ ଘରର ପିଲା, ଗରିବ ଘର, କିନ୍ତୁ କାମିକା । ସିଏ ସକାଳୁ ସଂଧ୍ୟା ମିଶ୍ରେଙ୍କ ଘରେ ଗାଈ ଦୁହୁଁଥିବାରୁ ମିଶ୍ରେ ତାକୁ ପିଅନ ପୋଷ୍ଟରେ ନ ରଖି କଲେଜର ଚୌକିଦାର କରିବା ପାଇଁ ଚାହୁଁଥିଲେ । ମିଶ୍ରେ ତାଙ୍କ ଆଡୁ ସଫେଇ ଦେଇ କହିଲେ ଗଉଡ଼ ହେଲେ ବି ପାଇଖାନା ସଫା କରିବା ପାଇଁ ତା'ର ଆପତ୍ତି ନାହିଁ । ପିଲାଟି କଲେଜରେ ଚୌକିଦାର ପୋଷ୍ଟ୍‌ରେ

Digitized by srujanika@gmail.com

ଚାକିରି ପାଇଲା । ତା ନାଁ ଭୁବନାନନ୍ଦ ଦାସ, ଡାକନାଁ ଭୁବନା । ଭୁବନା କଥା କହିଲାବେଳେ ପେଟରେ ଅଧା ଗୋଳେଇ ପକାଏ । କାଲର ମାଁ କାଲକଥା ବୁଝିପାରିଲା ଭଳି ମୁଁ ଆଉ ଆମ ଅଫିସ୍‌ରେ ଗଗନ ଓ ସୁବୁଦ୍ଧି ତା କଥାର ଟେର ବୁଝିପାରୁଥିଲେ । ଭୁବନା ଖୁବ୍ ବିଶ୍ୱସ୍ତ ଓ କଲେଜର ଚୌକିଦାର ଚାକିରି ତାକୁ ଏମିତି ସୁହେଇଲା ଯେ ସିଏ ଏବେ ଲକ୍ଷପତି ହେଇସାରିଛି । କଲେଜର ସମସ୍ତ ସହକର୍ମୀମାନଙ୍କ ଭିତରେ ସିଏ ହିଁ ପ୍ରଥମ ଏମ୍ବାସଡର୍ ଗାଡ଼ି କିଣିଲା ।

ବିଭୂତି କାନୁନ୍‌ଗୋଙ୍କ ମହମ୍ମଦିଆ ବଜାରର କଟକ କଳାମହାବିଦ୍ୟାଳୟରେ ଅଶୋକ ଦାସ ନାମକ ଖୋର୍ଦ୍ଧାପାଖ ଗାଁର ପିଲାଟିଏ ଚାକିରି କରୁଥାଏ । ସିଏ ଶୁଣିଲା କଟକରୁ ଭୁବନେଶ୍ୱର କଲେଜ ଉଠିଯିବ । ଘରୋଇ କଲେଜ ପୁଣି ସରକାରୀ ହେଇଯିବ । ଦିନନାଥ ପାଠୀ ନୂଆ କଲେଜର ଅଧ୍ୟକ୍ଷ ହେବେ । ସିଏ କୁଆଡୁ ଖବର ଯୋଗାଡ଼ କରି ଦିନେ ସତ୍ୟନଗରରେ ଥିବା ଓ.ଟି.ଡି.ସି. ଅଫିସ୍‌ରେ ପହଞ୍ଚିଲା । ମୁଁ ଆହୁରି ଓ.ଟି.ଡି.ସି. ଛାଡି ନଥାଏ । ମୋତେ ଅଫିସ୍‌ରେ ଦେଖାକରି ପଚାରିଲା, 'ସାର୍ ! ଦୀନବନ୍ଧୁ ପାଢ଼ୀ କାହାନ୍ତି ? ମୁଁ ତାଙ୍କୁ ଦେଖା କରିବାକୁ ଚାହୁଁଛି ?' ତାପରେ ସେ ଏକା ନିଃଶ୍ୱାସରେ ଡଗଡଗ ହେଇ ନିଜ ଆଡୁ କଟକ କଲେଜ କଥା, ବିଭୂତିବାବୁଙ୍କ କଥା କହିଗଲା । ମୋତେ ଦେଖାକରିବାର ତା'ର ଅଭିଳାଷ ସଂପର୍କରେ ଜାଣିବା ପାଇଁ ଆଉ ଅପେକ୍ଷା ରହିଲାନି । ମୁଁ ଟିକିଏ ଗମ୍ଭୀର ହେଇ ରହିବାର ଅଭିନୟ କରି ଉଦାସିଆ କଣ୍ଠରେ କହିଲି, ଦୁଃଖର କଥା ଦୀନବନ୍ଧୁ ପାଢ଼ୀଙ୍କ ଅଳ୍ପଦିନ ତଳେ କାଳ ହେଇଯାଇଛି । ମୁଁ ସିନା ପରିହାସ କରୁଥିଲି, କିନ୍ତୁ ବାସ୍ତବରେ ସେଠି ଦୀନବନ୍ଧୁ ପାଢୀ ବୋଲି କିଏ ନଥିଲେ । ବିଚରା ଅଶୋକ ମନ ଶୁଖେଇ ଅଫିସ୍‌ରୁ ବାହାରିଗଲା । ତାର ଆଖି ଛଳ ଛଳ ହେଇଉଠିଲା । ଅଫିସ୍ ବାହାରେ ସିଏ ନିଶ୍ଚୟ ବହେ କାନ୍ଦିଥିବ, ତା ଭାଗ୍ୟକୁ ନିନ୍ଦିଥିବ, ଧିକ୍କାରି ଥିବ । ସିଏ ହୁଏତ ପାନ କି ବିଡ଼ି ଖଣ୍ଡିଏ ଖାଇବା ପାଇଁ ଅଫିସ୍ ପାଖ କେବିନ୍‌ରେ ପହଞ୍ଚିଛି । ପାନ ଦୋକାନୀ ଅସହାୟ ମନେ ହେଉଥିବା 'ତାକୁ' ତା ସଂପର୍କରେ ପଚାରିଦେଇଛି । ଦୀନବନ୍ଧୁଙ୍କ ମୃତ୍ୟୁଖବର ଶୁଣି ପାନ ଦୋକାନୀ ଦୁଃଖ କରିବା ପରିବର୍ତ୍ତେ ହସିପକେଇ କହିଛି; ମୁଁ ତ ଆଜି ଦୀନବନ୍ଧୁବାବୁଙ୍କୁ ଅଫିସ୍ ଆସିବା ଦେଖିଛି । ତାଙ୍କର ପାଉଁଶିଆ ରଙ୍ଗର ଲାମ୍ବି ସ୍କୁଟରଟା ତ ଅଫିସ୍ ବାରଣ୍ଡାରେ ଥୁଆ ହେଇଛି । ତମେ ବୋଧହୁଏ ଠିକଣା ବାବୁଙ୍କୁ ଠିକଣା କଥା ପଚାରିନ ।'

ପାନ ଦୋକାନୀଠୁ ଗୋଟିଏ ନୂତନ ଦିଗନ୍ତର ଇସାରା ପାଇ ଅଶୋକ ଏଥର କିମିତି ଗୋଟିଏ ବିଶ୍ୱସନୀୟ ମୁଖ ଭଙ୍ଗୀରେ ଓଠରେ ସାମାନ୍ୟ ହସ ସାଉଁଟେଇ ଦେଇ ମୋ ପାଖରେ ପୁଣି ପହଞ୍ଚି ଟେବୁଲ କଡ଼େ ଠିଆହେଲା । ମୁଁ ତାକୁ ପଚାରିଲି, କିହୋ ବାବୁ ! ଅସଲ କଥା କ'ଣ ମାଲୁମ୍ ହେଇଗଲା ?' ମୋର ଏତକ ପ୍ରଶ୍ନରେ ତା ଓଠରେ ହସର ଲହଡ଼ି ଖେଳିଗଲା । ଆଉ ତାକୁ ଲାଗିଲା ନିଶ୍ଚିତ ଭାବେ କଲେଜରେ ତା'ର ପିଅନ

Digitized by srujanika@gmail.com

ଚାକିରି ଥିଆ । ଅଶୋକ ଚାକିରି ପାଇଗଲା ପରେ ମୋ ପ୍ରତି ଏତେ କୃତଜ୍ଞ ରହିଲା ଯେ ଏବେ ବି ସେ ଖୋର୍ଦ୍ଧା ନାଲି ଗାମୁଛା ଓ ଢ଼େଙ୍କିକୁଟା ଚୁଡ଼ା ବେଳେବେଳେ ମୋତେ ଶ୍ରଦ୍ଧାରେ ଭେଟିଦିଏ ।

ରେଣୁ ନାୟକ କନ୍ଧମାଳ ଅଞ୍ଚଳର ପଛୁଆ ବର୍ଗର ସ୍ତ୍ରୀଲୋକ । ତା' ସ୍ୱାମୀ କ୍ରୀଡ଼ା ବିଭାଗରେ ପିଅନ ଥାଏ । ସେମାନେ ନିର୍ଦ୍ଦେଶକଙ୍କ ଘରେ ରହି ବୋଲହାକ କରୁଥାନ୍ତି । ଏଣୁ ଖୋଦ୍ ରେଣୁକଥା ନେଇ ନିର୍ଦ୍ଦେଶକ ମୋତେ ଅନୁରୋଧ କଲେ । ଦିନା କେତେ ପରେ ରେଣୁ କଲେଜରେ ଚାକିରି ପାଇଲା । ମୁଁ ଭାବିଲି ସ୍ତ୍ରୀଲୋକଟିଏ କୁଆଡ଼େ ବା ଯିବ ନା ଡାକ ବାଣ୍ଟିପାରିବ ନା ଅଫିସ ବାହାର କାମ କରିପାରିବ । ଅଧ୍ୟକ୍ଷଙ୍କ ଅର୍ଦ୍ଦଳି ଭାବେ ରହିବା ପାଇଁ ନିର୍ଦ୍ଦେଶନାମା ଜାରି କରିଦେଲି । କଥା ଏଭଳି ହେଲା ଯେ ରେଣୁ ତା ପରିବାର ସହ ମୋ ଭାମଟାଙ୍ଗି ଆସ୍‌ବେସ୍‌ଟସ୍ ଘରେ କିଛିଦିନ ଭଡ଼ାରେ ରହିଲା ।

ରେଣୁ ନାୟକ ପରେ ଆସିଲା ଫକୀର ନାୟକ ପାଇଁ ଉପଶାସନ ସଚିବ ସୁଧାଂଶୁ ବାବୁଙ୍କ ଠାରୁ ଅନୁରୋଧ । ଏସବୁ ଚରିତ୍ରମାନେ ଗାଁ ଗହଳରୁ ଆସି ରାଜଧାନୀରେ ସରକାରୀ ଚାକିରି ଆଶା ନେଇ ବିଭିନ୍ନ ବାବୁମାନଙ୍କ ଘରେ ଥାକି ଯାଇଥାନ୍ତି । ବେଳକାଳ ଉଣ୍ଡି ବାବୁମାନେ ସେମାନଙ୍କୁ  ନଟ୍‌ବୋଲ୍‌ଟ ଭଳି ସରକାରୀ କଳର ବିଭିନ୍ନ ଅଂଶରେ ଖଂଜି ଦିଅନ୍ତି । ବେଳେବେଳେ ନଟ୍ ବୋଲ୍‌ଟ ଗୁଡ଼ିକ ଅନାୟାସରେ ଖାପ ଖାଇଯାଏ ତ ଆଉ ବେଳେ ଚାରିକଣିଆ ଗାତରେ ଗୋଲିଆ ସ୍କ୍ରୁଭଳି ସମଗ୍ର ଚାକିରି ଅବଧି ସେମାନେ ଅଖାଞ୍ଜ ଅବସ୍ଥାରେ ରହିଥାଆନ୍ତି । ଫକୀର କେନ୍ଦୁଝର ଜିଲ୍ଲାର ପଛୁଆ ବର୍ଗର ପିଲା, କିନ୍ତୁ ଖୁବ୍ କର୍ମଠ । ମୁଁ କଲେଜ ଛାଡ଼ିଲା ପରଠୁ ତା ସାଙ୍ଗରେ ଅବଶ୍ୟ ସୁଖରେ ହେଉ ବା ଦୁଃଖରେ ହେଉ ଆଉ କେବେ ଦେଖାହେଇନି ।

ଭୁବନ, ଅଶୋକ, ରେଣୁ ଆଉ ଫକୀର ମୋ ପାଇଁ ମନେହେଲେ ଚାରୋଟି ବେଦର ଚାରିଗୋଟି ମହାର୍ଘ ସାମଗ୍ରୀ, ଧରିନେବାକୁ ହେବ ଭଗବତ୍ କୃପାରୁ ପ୍ରାପ୍ତହେଲେ । ଚିତ୍ରକଳା ଓ ନାଟକ ତ ପଞ୍ଚମ ବେଦର କଥା । ମୁଁ ଏମିତି ଭାବୁଛି ପହଞ୍ଚିଲେ ଭରତ ମଙ୍ଗରାଜ । କାହାକୁ ଅବଲମ୍ବନ କରି ବା କାହା କାନ୍ଧରେ ସବାର ହେଇ ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟରେ ତା'ର ଆବିର୍ଭାବ ହେଲା, ସେ ସଠିକ ଘଟଣା ମୋର ମନେନାହିଁ । ଭରତ ମଙ୍ଗରାଜର ଲୋକପ୍ରିୟ ଡାକ ନାଁ  ହେଲା ନିରୋଳା 'ମଙ୍ଗରାଜ' । ସିଏ ଖଣ୍ଡଗିରି ପାଖ ଆଇଗିଣିଆ ଅଞ୍ଚଳର ଲୋକ । ଆତ୍ମଜୀବନୀରେ ଏ ପାଞ୍ଚଜଣ କଥା ପଢ଼ିଲାବେଳକୁ ମନେହେବ ସତେ ଯେଭଳି ସେମାନେ ଋତୁମାନଙ୍କ ପରି, ଗ୍ରୀଷ୍ମ ପରେ ବର୍ଷା, ବର୍ଷା ପରେ ଶରତ ଭଳି କାଳଖଣ୍ଡମାନଙ୍କୁ ମହକିତ କରି ଜଣକ ପରେ ଜଣେ ଉଭା ହୋଇଯାଇଛନ୍ତି । କିନ୍ତୁ ବାସ୍ତବରେ ଏ ସମସ୍ତ ଚତୁର୍ଥ ଶ୍ରେଣୀ କର୍ମଚାରୀ ଏମ୍‌ପ୍ଲଇମେଣ୍ଟ

Digitized by srujanika@gmail.com

ଏକ୍‌ସ୍‌ଚେଞ୍ଜ୍‌ର ପ୍ରାର୍ଥୀ ଭାବେ ସାକ୍ଷାତକାର ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଚାକିରି ଆଦେଶନାମା ପାଇଛନ୍ତି ।

ସେମାନେ ଚାକିରି ପାଇବା ସମ୍ବାଦ ବିଜୁଳି ବେଗରେ ସଂସ୍କୃତି ବିଭାଗର ତଳୁ ଉପରମୁଣ୍ଡ ଯାଏଁ ଖେଳି ଯାଇଛି ଏବଂ ସେମାନଙ୍କ ନିଯୁକ୍ତିକୁ କେନ୍ଦ୍ର କରି ବିଭିନ୍ନ ତର୍ଜମା ଆରମ୍ଭ ହେଇଯାଇଛି । ଦଳେ ଧରି ନେଇଛନ୍ତି ଯେ ଦିନନାଥ ପାଠୀ ପିଅନ ପିଛା ଅତି କମ୍‌ରେ ପନ୍ଦର କୋଡିଏ (ହଜାର) ଲେଖେଁ ପକେଇ ଦେଇ ରାତାରାତି ମାଲାମାଲ୍ ହେଇଯାଇଛି । ଆଉ ଦଳେ ପ୍ରସଙ୍ଗଟିକୁ ଆଉ ବାଗରେ ସଜାଡି ଭିନ୍ନ ମନ୍ତବ୍ୟ ଦେଇଛନ୍ତି । ପାଠୀ କ'ଣ ଏକା ମାରିଥିବ ? ସବୁତକ ତ ପୁଣି ତଳ ଉପର ହେଇ ଆତଯାତ ହେଉଛି । ଏଣୁ ପୁରା ଟଙ୍କା କୁଆଡୁ ଏକା ମାରିପାରିବ । ତମର ଅଧେକୁ ଆମର ଅଧେ, ରାଧେ ରାଧେ ହେଇଥିବ । ପାଠୀଟା ବଡ଼ କରପ୍‌ଟେଡ୍ ଲୋକ ।

ଏ ସମଗ୍ର ଘଟଣାଟି ଚର୍ବିତ ଚର୍ବଣ ହେଇ ଶେଷରେ ସଂପୂର୍ଣ୍ଣ ଏକ ଭିନ୍ନ ବାଗରେ ସଂସ୍କୃତି ବିଭାଗର ସର୍ବମୟ କର୍ତ୍ତା ସଚିବ ଅଓଧ ନାରାୟଣ ତିୱାରୀଙ୍କ କାନରେ ପଡିଛି । ସାକ୍ଷାତକାର ଓ ନିଯୁକ୍ତିପତ୍ର ପଠେଇବାର ପରଦିନ ସଚିବ ଏବଂ ତାଙ୍କ ଆଜ୍ଞାବହ ସଂସ୍କୃତି ବିଭାଗର ଉପନିର୍ଦ୍ଦେଶକ ଅର୍ଜୁନ ଯୋଷୀ ମୋତେ ଖୋଜି ଖୋଜି ପାନ୍ଥନିବାସରେ ପହଞ୍ଚିଛନ୍ତି । ମୋତେ ହାବୁଡରେ ପାଇଯାଇ ଅଫିସରିଆ ଢ଼ଙ୍ଗରେ ମୋ ଠାରୁ ମୌଖିକ କୈଫିୟତ ଦାବୀ କରିଛନ୍ତି- ମୁଁ କେଉଁ ଅଧିକାର ବଳରେ ତାଙ୍କ ଅନୁମତି ନ ନେଇ ସାକ୍ଷାତକାର ନେଲି ଓ ନିଯୁକ୍ତିପତ୍ର ପଠେଇଲି ? ସଚିବଙ୍କ କୃତ୍ରିମ ରାଗ ଠଉରେଇ ନପାରି ମୁଁ ସାମାନ୍ୟ ହଡ଼ବଡ଼େଇ ଗଲି । କିନ୍ତୁ ପରମୁହୂର୍ତ୍ତରେ ଧୈର୍ଯ୍ୟ ସଂଚୟ କରି ଖୁବ୍ ବିନମ୍ର ଭାବରେ କହିଲି, 'ସାର୍ ଏ ସାମାନ୍ୟ ଚତୁର୍ଥ ଶ୍ରେଣୀ ନିଯୁକ୍ତି ସଂକ୍ରାନ୍ତୀୟ ଫାଇଲ୍ ବିଭାଗୀୟ ସର୍ବୋଚ୍ଚ କର୍ତ୍ତାଙ୍କ ପାଖରେ ପହଞ୍ଚେ ନାହିଁ । କଲେଜର ଅଧକ୍ଷ ଏଥିପାଇଁ ଯଥେଷ୍ଟ । କୁଟାଖଣ୍ଡିକ ଦି'ଖଣ୍ଡ କରିବା ପାଇଁ କୁରାଢ଼ିର ପ୍ରୟୋଜନ ନିଶ୍ଚିତ ନାହିଁ ।' ମୋ କଥାର ମର୍ମବୁଝିବା ପାଇଁ ସଚିବଙ୍କୁ ବେଶି ସମୟ ଲାଗିଲା ନାହିଁ । ତଥାପି ହାକିମ ତ, ମୋ କଥାତକ ଏତେ ସହଜରେ କିମିତି ବା ଘେନି ଥାନ୍ତେ । ସେ ତାଗିଦା ଦେବା ଢ଼ଙ୍ଗରେ ଶୁଣେଇଲେ, 'ପାଠୀ ମନେରଖ, ଭବିଷ୍ୟତରେ ଏଭଳି ଭୁଲ କରିବନି । ମୋର ଅନୁମତି ବିନା କୌଣସି ନିଯୁକ୍ତି ଦେବା ଅପରାଧ ବିବେଚିତ ହେବ ।' ସଚିବଙ୍କ ଏଭଳି ତାଗିଦାର କୌଣସି ଗୁରୁତ୍ୱନାହିଁ ବୋଲି ଜାଣିପାରି ମଧ୍ୟ ଜଣେ କର୍ତ୍ତବ୍ୟନିଷ୍ଠ କର୍ମଚାରୀ ଭଳି ମୁଣ୍ଡପାତି ସହିନେଲି ।

ଏ ହେଲା ଚତୁର୍ଥଶ୍ରେଣୀ କର୍ମଚାରୀ ନିଯୁକ୍ତି ପ୍ରସଙ୍ଗର ଇତିକଥା ।

ଏବେ ଶୁଣିମା ହେଉ ତୃତୀୟ ଶ୍ରେଣୀ କର୍ମଚାରୀଙ୍କ ନିଯୁକ୍ତିର ହାଲଚାଲ୍ । ସବୁ ବିଭାଗ ଭଳି ଆମ ସଂସ୍କୃତିବିଭାଗରେ ମଧ ଟାଣୁଆ ଟାଣୁଆ କିରାଣିମାନେ ଅଫିସ ସାରା

Digitized by srujanika@gmail.com

ତାଲିବାନ୍‌ଙ୍କ ଭଳି ନିଜ ମାୟାଜାଲ ବିଛେଇ ରଖିଥାନ୍ତି । ସେମାନେ ବାସ୍ତବିକ କ୍ରାନ୍ତଦର୍ଶୀ । ସେମାନଙ୍କ ଚରିତ୍ରର ଦୁଇଟି ଦିଗ ଥାଏ । ଗୋଟିଏ ଚାରିତ୍ରିକ ଦିଗ ଉପର ହାକିମମାନଙ୍କ ଠେ ନତଜାନୁ ହୋଇ ନିଜ ଦୈନ୍ୟ ପ୍ରଦର୍ଶନ ପୂର୍ବକ ଅନୁକମ୍ପା ଭିକ୍ଷା କରୁଥିବା ସ୍ଥଳେ ଅନ୍ୟ ଦିଗଟି ସାଧାରଣ କଚେରୀ ସ୍ତରରେ ନିଜର ଟାଣପଣ ଦେଖେଇ ଅନ୍ୟମାନଙ୍କୁ ତ୍ରସ୍ତ ଅବସ୍ଥାରେ ରଖେ । ସେମାନେ ନିଜର ଭାଇବନ୍ଧୁଙ୍କୁ ବିଭିନ୍ନ ପଦବୀରେ କାନ୍ଥରେ ଇଟାଗଡ଼ ଖପେଇଲା ଭଳି ଖପେଇ ରଖିଥାନ୍ତି । ଆମ ବିଭାଗର ବଡ଼ବାବୁ ଗଙ୍ଗାଧର ମହାନ୍ତିଙ୍କ ଗୋଟିଏ ଜବରଦସ୍ତ ନେଟ୍‌ୱାର୍କ୍ ରହିଥାଏ । ସଚିବାଳୟରେ ତାଙ୍କ ଦପ୍ତର । ତାଙ୍କ ଚେର ସବୁ ଅଧସ୍ତନ ବିଭାଗରେ ମାଡ଼ିଯାଇଥାଏ । ଇନ୍ଦ୍ରଙ୍କ ବଜ୍ରବାଣ ଭଳି କିରାଣିମାନଙ୍କର ଅମୋଘ ଅସ୍ତ୍ର ହେଲା ତାଙ୍କ ଫାଇଲ୍ ନୋଟ୍ । ଗଙ୍ଗାଧର ବାବୁଙ୍କ ଫାଇଲ୍‌ନୋଟ ଖୁବ୍ ଟାଣୁଆ ଥିଲା । ଆଇ.ଏ.ଏସ୍. ଅଫିସର ମାନେ ମଧ୍ୟ ସେଥିରେ ହାତ ମାରିବାକୁ ସାହସ କରୁନଥିଲେ । ଅନ୍ୟବାଗରେ କହିଲେ ବଡ଼ ବଡ଼ ହାକିମ ମାନେ କିରାଣିଙ୍କ ଏ ସାମାନ୍ୟ ଲେଖାପ୍ରତି ସେତିକି ନିଘା ରଖୁ ନଥିଲେ ।

ମ୍ୟୁଜିୟମ୍‌ରେ ଚାକିରି କଲାଦିନଠୁଁ ଗଙ୍ଗାଧର ମହାନ୍ତିଙ୍କ ସଂଗେ ମୋ ସଂପର୍କ । ଏବଂ ସେହି ସଂପର୍କ ଘନିଷ୍ଠତାରେ ପହଞ୍ଚିଥାଏ । ଗଙ୍ଗାଧରଙ୍କ ଆତୁ ଅନୁରୋଧ ଏଥିର କଲେଜରେ ପହଞ୍ଚିଲା । ପ୍ରାର୍ଥୀ ହେଲେ ତାଙ୍କ ଦଦାପୁଅ ଭାଇ ଗଗନ, ଗଗନ ବିହାରୀ ମହାନ୍ତି । ଚାକିରୀ ହେଲା କଲେଜର ହେଡ୍‌କିରାଣି, ଅଧ୍ୟକ୍ଷଙ୍କ ତଳକୁ ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ପଦବୀ । ଗଗନ ରାଜ୍ୟ ସଂଗ୍ରହାଳୟରେ ମୋର ସହକର୍ମୀ ଥିଲେ । ତାଙ୍କ ଦୋଷ ଦୁର୍ବଳତା ମୁଁ ଭଲ ଭାବେ ଜାଣିଥାଏ । ମୁଁ ବିଚାରିଲି ଅଜଣା ଅଶୁଣା ଲୋକଟିଏ ଅପେକ୍ଷା ଚିହ୍ନାଟିଏ ହେଲେ ବିଶ୍ୱସ୍ତ ହେବ । କିନ୍ତୁ ମ୍ୟୁଜିୟମ୍‌ର ଅନେକ ବନ୍ଧୁ ଗଗନ କଲେଜର ହେଡ୍ କ୍ଲର୍କ୍ ହୁଅନ୍ତୁ ଚାହୁଁ ନଥିଲେ । ଗଙ୍ଗାଧରଙ୍କ ସହିତ ବନ୍ଧୁତା ଗଗନଙ୍କୁ ମ୍ୟୁଜିୟମ୍ ସେଲ୍‌ସ୍ ସେକ୍‌ସନ୍‌ରୁ ଉଠେଇ ଆଣି କଲେଜରେ ଅବସ୍ଥାପିତ କରେଇ ଦେଲା । ଗଗନ କିନ୍ତୁ ସବୁକଥା ସମ୍ଭାଳିନେଲେ ।

ହେଡ୍ କ୍ଲର୍କ୍ ନିଯୁକ୍ତି ପରେ ପାଳି ପଡିଲା ଜୁନିୟର୍ କ୍ଲର୍କ୍ ଓ ଟାଇପିଷ୍ଟ୍ ଚାକିରି । ଏଥିପାଇଁ ପ୍ରାର୍ଥୀ ଜଣକ ଗଗନଙ୍କ ଅନୁରୂପ ସଂସ୍କୃତି ବିଭାଗର ସଂପର୍କରୁ ଖସିଲେ । ଦିନେ ସଂଧ୍ୟାରେ ଡି.ଏନ୍.ରାଓ ଓ ମୁଁ କଚ୍ଛନାଛକ ରବି କେବିନ୍ ଆଗରେ ଚାହା ପିଇବା ପାଇଁ ଠିଆ ହେଇଛୁ, ଜୟନାରାୟଣ ସୁବୁଦ୍ଧିଙ୍କ ସାଙ୍ଗରେ ଭେଟ ହେଲା । ଜୟନାରାୟଣ ସଚିବାଳୟ ସଂସ୍କୃତି ବିଭାଗରେ ଗ୍ରେଡ୍‌ୱାନ୍ । ସଚ୍ଚୋଟ ଲୋକ । ଘର ଭଂଜନଗର । ମଳିଧୂଳିକୁ ଯିବାଲୋକ ନୁହଁନ୍ତି । ଭଂଜନଗର ଲୋକ ଦେଖି ମାଛ ଖେଳେଇରେ ଖଳଖାଳ ହେଲାଭଳି ଡି.ଏନ୍.ରାଓ ଖାଲି ଉଛୁଳିଲେ । ଆମେ ତିନିହେଁ ଚାହା ପିଉ ପିଉ ଜୟନାରାୟଣ

Digitized by srujanika@gmail.com

ଅସଲ ପ୍ରସଙ୍ଗଟି ଆରମ୍ଭ କଲେ । ତାଙ୍କ ପୁଅ ରାଜକୁମାର ବି.ଏ. ପାସ୍ କରି ଘରେ ବସିଛି । ଟିଉସନ୍ ପତ୍ର କରୁଛି । ଟାଇପ୍‌ରେ ବି ଟ୍ରେନିଙ୍ଗ୍ ନେଇଛି । ଭଲ ପିଲା । ଜୟନାରାୟଣ ନିଜର ଏକମାତ୍ର ପୁଅର ଯୋଗ୍ୟତା ସଂପର୍କରେ ଏତକ ବୟାନ ଦେଲାପରେ ମୋତେ ଅନେଇ କହିଲେ, 'ପାଠୀବାବୁ ଆପଣ ତ ଆମ ଆଡ଼ର ଲୋକ । ଆମ ପରିବାରର ଲୋକ ଭଳିଆ । ରାଜକୁମାର କଥା ଆପଣଙ୍କୁ ଲାଗିଲା ।' ମୁଁ ମୋର ପ୍ରତିକ୍ରିୟା ଜଣେଇବା ଆଗରୁ ଡି.ଏନ.ରାଓ ଆମ କଥାବାର୍ତ୍ତା ଭିତରକୁ ଝାମ୍ପ ଦେଲାଭଳି କହିଲେ, 'ସାର୍ ସୁବୁଦ୍ଧି ବାବୁ ଅତ୍ୟନ୍ତ ଭଲ ଲୋକ । ଆମ ସଂଗାତ ଆନ୍ନା ଲାଗିବେ । ରାଜକୁମାରଙ୍କୁ ଆମ କଲେଜରେ ରଖିଲେ ବଢ଼ିଆ ହୁଅନ୍ତା ।' ମୋର ଧାରଣା ହେଲା ଡି.ଏନ୍.ରାଓ ଓ ଜୟନାରାୟଣ ମୋତେ ଭେଟିବା ଆଗରୁ କ'ଣ କହିବେ ବୋଲି ଥରେ ଦି'ଥର ରିହର୍‌ସଲ୍ କରିଦେଇଛନ୍ତି । ଗଂଜାମ ଜିଲ୍ଲାରେ କୁମୁଟି ଜାତିର ଲୋକ ପ୍ରବଳ । ବେକାର ହେଇ ଘରେ ବସିବା ନ ହେଲେ ହାତ ପତେଇ ଭିକ୍ଷା ମାଗିବା ତାଙ୍କ ଜାତକରେ ନାହିଁ । ସେମାନେ ସଂଖ୍ୟାଲଘୁ ମାନସିକତାରେ ସଢୁଥାନ୍ତି ବୋଲି ରାଜକୁମାର, ରାଜଲକ୍ଷ୍ମୀ, ତେଜେଶ୍ୱର, ଭାନୁପ୍ରକାଶ ପ୍ରଭୃତି ତେଜସ୍ୱୀୟ ଓ ସଂଭ୍ରାନ୍ତ ନାଁ ମାନ ପସନ୍ଦ କରିଥାନ୍ତି ।

ରାଜକୁମାର ଅବଲୀଳାକ୍ରମେ ଆମ କଲେଜରେ ଯୋଗଦେଲେ । ଖୁବ୍ ଅଳ୍ପଦିନ ମଧ୍ୟରେ ସେ ସୁବୁଦ୍ଧିବାବୁ ବା ସୁବୁଦ୍ଧି ଭାବେ ସମସ୍ତଙ୍କ ପ୍ରିୟ ହେଇଗଲେ । ସୁବୁଦ୍ଧି ଅତ୍ୟନ୍ତ ବିଶ୍ୱସ୍ତ କର୍ମଚାରୀ । ଏବେ ସୁଦ୍ଧା ଆମ ସଂପର୍କ ଅତୁଟ ରହିଛି । ପୁଅର ଚାକିରି ହେଇଗଲେ ଜୟନାରାୟଣ ମୋତେ ଗୋଟିଏ ସଫାରୀ ସୁଟ୍ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ଥିଲେ । ହୁଏତ ସୁବିଧା ସୁଯୋଗ ପାଇନାହାନ୍ତି ବା ମୋତେ ସଫାରୀ ସୁଟ୍‌ରେ କେବେ ଦେଖିନାହାନ୍ତି ବୋଲି ତା ବଦଳରେ ଆଉ କ'ଣ ଦେଇହେବ ସେ ନିଷ୍ପତ୍ତି ନେଇପାରି ନାହାନ୍ତି ।

ଏବେ କଲେଜରେ ଚାରିଜଣ ଅଧ୍ୟାପକ, ଦୁଇଜଣ କିରାଣି, ଚାରିଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀ, ଜଣେ ଚଉକିଦାର ତଥା ଝାଡୁଦାର, ଏମିତି ହୋଇ ଏଗାର ଜଣ କର୍ମଚାରୀଙ୍କୁ ନେଇ କଲେଜ ଚଳେଇବାରେ ମୁଁ ମନ ଦେଲି ।

Digitized by srujanika@gmail.com

# ୭. ଭଡ଼ାଘରେ ଅୟମାରମ୍ଭ

କଲେଜ ପାଇଁ ଘର ଖୋଜିବାରେ ବେଶି ସମୟ ଦେବାକୁ ପଡ଼ିଲାନି । ମ୍ୟୁଜିୟମ୍‌ର ଅଧୀକ୍ଷକ ହରିଶ୍ଚନ୍ଦ୍ର ଦାସଙ୍କ ଘରଟି ଭଡ଼ାରେ ଲାଗି ନଥାଏ । ମୁଁ ମ୍ୟୁଜିୟମ୍‌ରେ କ୍ୟୁରେଟର୍ ହେଇ ଯୋଗଦେଲା ବେଳକୁ ଏହି ଘରଟି କିଣା ହେଇଥାଏ । ରାମଚନ୍ଦ୍ର ସମୁଦ୍ର ପାରହେଇ ଲଙ୍କାକୁ ଯିବାପାଇଁ ଯେଉଁ ସେତୁ ବାନ୍ଧିଥିଲେ ଓ ସେଥିରେ ବିଚରା ନେପୂର ମୂଷାର ଯେଭଳି ଭୂମିକାଟିଏ ଥିଲା, ଏ ଘର କିଣାରେ ମୋର ବି ସେଭଳି ସାମାନ୍ୟ ଅବଦାନଟିଏ ରହିଥିଲା । ମୁଁ ଏ ଘର ସଂପର୍କରେ ଆଗରୁ ସଚେତନ ମଧ୍ୟ ଥିଲି । ଟଙ୍କପାଣି ରୋଡ୍‌ରେ ଯାଇ ପାଣ୍ଡବନଗର ଭିତରେ ପଶିବା ଆଗରୁ ଡେବରି ପଟେ ହରିଶ୍ଚନ୍ଦ୍ରଙ୍କ ଘର । ଦି'ମହଲା କୋଠା, ପ୍ଲଟ ନଂ ୪୯୧୮ । କୋଠା ପଛରେ ପ୍ରଶସ୍ତ ବଗିଚା । ପ୍ରଥମ ମହଲାର ବଡ଼ ବଖରାଟିଏରେ କଲେଜର ଯାବତୀୟ, ସମାଗମ, ସଂଗୋଷ୍ଠୀ ଓ ସଭାମାନ ଅନୁଷ୍ଠିତ ହେଉଥିଲା । କଲେଜରେ ପଶୁ ପଶୁ ଅଧ୍ୟକ୍ଷଙ୍କ ଅଫିସ୍ । ଅଧ୍ୟକ୍ଷଙ୍କ ଅଫିସ୍ ଡାହାଣପଟେ କଲେଜର ଅଫିସ୍ ଓ ଡେବିରିପଟେ ଅଧ୍ୟାପକଙ୍କ କମନ୍ ରୁମ୍ । କଳା ମହାବିଦ୍ୟାଳୟମାନଙ୍କରେ ଅଧ୍ୟାପକମାନଙ୍କ ପାଇଁ କମନ୍ ରୁମ୍‌ର ଆବଶ୍ୟକତା ନଥାଏ । ଷ୍ଟୁଡିଓ ମାନଙ୍କରେ ଅଧ୍ୟାପକ, ଅଧ୍ୟାପିକାମାନେ ଯେଝା ଛାତ୍ରଛାତ୍ରୀଙ୍କୁ ନେଇ ଚିତ୍ର ଓ ଭାସ୍କର୍ଯ୍ୟ କାମରେ ବ୍ୟସ୍ତ ଥା'ନ୍ତି । ଟିକିଏ ତର ମିଳିଲେ ଚାହାପାଣି ପାଇଁ କେଣ୍ଟିନ୍‌ରେ ସମୟ ତକ ଖର୍ଚ୍ଚ କରନ୍ତି । ଏହି ଚାହାପର୍ବ କଲେଜ ଦୈନନ୍ଦିନୀର ଏକ ପ୍ରମୁଖ ଘଟଣା । ଅଧିକାଂଶ କଳା ମହାବିଦ୍ୟାଳୟର ବ୍ୟବସ୍ଥା ଏକାଭଳି । ଶାନ୍ତିନିକେତନର କଳା ଭବନରେ ଗୋଟିଏ ଫର୍ଚ୍ଚା ମଣ୍ଡପ ଅଛି । ତା' ନାଁ ହେଲା ଚାଚାଲ । ଚାଚାଲ ଚାରିପଟେ ବିଭିନ୍ନ ଷ୍ଟୁଡ଼ିଓ । ଟିକିଏ ସମୟ ପାଇଲେ ଅଧ୍ୟାପକ, ଅଧ୍ୟାପିକା ଏବଂ ଛାତ୍ରଛାତ୍ରୀମାନେ ଏଠାକୁ ଲେମ୍ବୁ ଚାହା ପାଇଁ ଗଡ଼ନ୍ତି । ଏଠି ପାଠରୁ ଶାଠ ଯାଏଁ, କଳାଭବନରୁ ଆରମ୍ଭ କରି ଲଣ୍ଡନ ଆମେରିକା ଯାଏଁ କଳା ଚର୍ଚ୍ଚା ଚାହା କପ୍‌ମାନଙ୍କରୁ ଉତୁରି ପଡ଼େ ।

ହରିଶବାବୁଙ୍କ ଗ୍ୟାରେଜ୍‌ଟିରେ ଅଧ୍ୟକ୍ଷଙ୍କ ଲାମ୍ବ୍ରେଟ୍ଟା ସ୍କୁଟର୍ ରହେ । ତା ସହିତ ରହେ ଅଧ୍ୟାପକ ଡି.ଏନ୍.ରାଓଙ୍କ ଲୁନା । ବାକିଜାଗା ପିଲାଙ୍କ ସାଇକେଲ୍‌ରେ ଭର୍ତ୍ତି ହେଇଯାଏ । କଲେଜରେ କିଛି ଉତ୍ସବ ମଉଚ୍ଛବ ଘଟିବାକୁ ଥିଲେ ଗ୍ୟାରେଜ୍‌ଟିକୁ ଖାଲି କରିବାକୁ ପଡ଼େ । ମୋର ମନେ ଅଛି ଉପର ମହଲାକୁ ଉଠିବାକୁ ସିମେଣ୍ଟର ଯେଉଁ ସିଡ଼ିଟି ଥିଲା ତାହା ଅସଂପୂର୍ଣ୍ଣ ଅବସ୍ଥାରେ

Digitized by srujanika@gmail.com

ଥିବାରୁ ମୁଁ ସଦାବେଳେ ଦୁର୍ଘଟଣାର ଆଶଙ୍କା କରୁଥିଲି । ଅଥଚ ଆମର ଦୁଇତିନିବର୍ଷର ରହଣି ଭିତରେ ସିମିତି କିଛି ଅଘଟଣ ଘଟି ନଥିଲା । ପୋର୍ଟିକୋ ଉପରର ବେଲ୍‌କୋନି କଲେଜ ଘରର ଅନ୍ୟ ଗୋଟିଏ ଆକର୍ଷଣୀୟ ପରିପାଟୀ ଥିଲା ।

ଘରଟିର ପାରିପାର୍ଶ୍ୱିକ ସ୍ଥିତିରେ କେତେଗୋଟିଏ ଉଲ୍ଲେଖନୀୟ ପ୍ରାଚୀନ ମନ୍ଦିର ଏବଂ କୋଠା ଏହାର ମହତ୍ତ୍ୱକୁ ଯଥେଷ୍ଟ ବଢ଼େଇ ଦେଇଥିଲା । କଲେଜର ପଡ଼ିଶା ଘରେ ବିଶିଷ୍ଟ ଓଡ଼ିଶୀ ନୃତ୍ୟାଙ୍ଗନା ସଂଯୁକ୍ତା ପାଣିଗ୍ରାହୀ ଏବଂ ତାଙ୍କ ସ୍ୱାମୀ ପଣ୍ଡିତ ରଘୁନାଥ ପାଣିଗ୍ରାହୀ ରହୁଥିଲେ । ସେମାନେ ପ୍ରାୟ ପ୍ରତ୍ୟହ ନୃତ୍ୟାଭ୍ୟାସ କରୁଥିଲେ । ରଘୁନାଥଙ୍କ ସୁଲଳିତ କଣ୍ଠସ୍ୱର ଏବଂ ସଂଯୁକ୍ତାଙ୍କ ନୃତ୍ୟପାଦର ଘୁଙ୍ଗୁର ନିକ୍ୱଣ ଚିତ୍ରକଳାର ସୃଜନବେଳାକୁ ଗରିମାମୟ କରିଦେଉଥିଲା । ଏହି ସଂଗୀତ ଓ ନୃତ୍ୟର ଅପୂର୍ବ ଝଙ୍କାର ଚିତ୍ର ଓ ଭାସ୍କର୍ଯ୍ୟର ମହନୀୟ ରୂପ-ବର୍ଣ୍ଣାଢ଼୍ୟକୁ ଉତ୍ତାଳ କରୁଥିଲା । ମୁଁ କଲେଜ ଜଂଜାଳରୁ ସାମାନ୍ୟ ମୁକ୍ତି ପାଇଲେ ସଂଯୁକ୍ତାଙ୍କ ନୃତ୍ୟଶାଳାରେ ପହଞ୍ଚି ଯାଉଥିଲି । ସେମାନଙ୍କ ସହିତ ମୋର ସଂପର୍କ ସେତେବେଳେ ବ୍ୟକ୍ତିଗତ ଓ ପାରିବାରିକ ସୀମିତତାରୁ ଉତୁରି ପଡ଼ି ସତୀର୍ଥର ଏକ ଆନୁଷ୍ଠାନିକ ସହୃଦୟତାରେ ପରିଣତ ହେଇ ଯାଇଥିଲା । ମୁଁ ଅନୁଭବ କରୁଥିଲି କଲେଜ ଘରର ଦକ୍ଷିଣ ପାଚେରୀର ସ୍ଥିତି ସଂପୂର୍ଣ୍ଣ ଗୌଣ ହେଇଯାଇ ଆମ ଚିତ୍ରଶାଳା ଓ ସଂଯୁକ୍ତାଙ୍କ ନୃତ୍ୟଶାଳା ସୃଜନ ପରିସରର ଗୋଟିଏ ଯଜ୍ଞବେଦୀ ହେଇଯାଉ । ଶାସ୍ତ୍ରକାରମାନେ ଋଷି ଓ ଜିଜ୍ଞାସୁ ମୁଖରେ ନୃତ୍ୟ ଓ ଚିତ୍ର ପରମ୍ପରାର ଐକ୍ୟତାନକୁ ଭିତ୍ତିକରି ଚମତ୍କାର ବୟାନଟିଏ ଦେଇଛନ୍ତି । ଜିଜ୍ଞାସୁ ନୃତ୍ୟଶିକ୍ଷା କରିବାର ଅଭିଳାଷ ପ୍ରକାଶ କରନ୍ତେ, ଋଷି ତାଙ୍କୁ ଚେତେଇ ଦେଇ କହୁଛନ୍ତି ''ହେ ବତ୍ସ ! ଚିତ୍ରାଭ୍ୟାସ ବିନା ନୃତ୍ୟରେ ପ୍ରବେଶ ସମ୍ଭବ ନୁହେଁ ।'' ମୁଁ କଲେଜରେ ଅଧ୍ୟାପନା କଲାବେଳେ ବେଳେବେଳେ କହିପକାଏ ଯେ ନୃତ୍ୟଛନ୍ଦର ଅବବୋଧ ବିନା ଚିତ୍ରରଚନା ସମ୍ଭବ ନୁହେଁ । ଚିତ୍ରରେ ଆବଶ୍ୟକ ହେଉଥିବା ତାଳ ଓ ମାନ ନୃତ୍ୟରୁ ହିଁ ମିଳିଥାଏ । କହିବା ବାହୁଲ୍ୟ ଯେ ଭାସ୍କର୍ଯ୍ୟ ଓ ଚିତ୍ରର ବିଭିନ୍ନ ରୂପକୁ ହିଁ ନୃତ୍ୟଶିଳ୍ପୀ ରୂପାୟିତ କରିଥାଏ । ଅନୁଷ୍ଠାନର ପ୍ରାରମ୍ଭିକ ଜୀବନରେ ଏଭଳି ଅପୂର୍ବ ସୁଯୋଗ ଶାନ୍ତିନିକେତନର କଳାଭବନ ବ୍ୟତିରେକ ଅନ୍ୟ କଳା ମହାବିଦ୍ୟାଳୟ ଭାଗ୍ୟରେ ଏଯାବତ୍ ଘଟିନାହିଁ । ଅବଶ୍ୟ ଜୟପୁରର ମହାରାଜା ବିକ୍ରମ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଆମ ପ୍ରଦେଶର ଅନ୍ୟତମ ପ୍ରାଚୀନ କଳା ମହାବିଦ୍ୟାଳୟରେ ଚିତ୍ରକଳା ସହିତ ନୃତ୍ୟ ଓ ସଂଗୀତ ଶିକ୍ଷାର ମଧ୍ୟ ବ୍ୟବସ୍ଥା ଥିଲା । ଚିତ୍ରକଳା ଓ ନୃତ୍ୟ-ସଂଗୀତକଳାକୁ ସମଭାବରେ ନିଜ ଚେତନାରେ ସଂଚରେଇ ସୃଜନ ବିଭାଗର ବିକାଶରେ ସହାୟକ କରେଇବାର ଆଦ୍ୟ ପରମ୍ପରାର ମହତ୍ତ୍ୱକୁ ଆମେ ଉପଲବ୍ଧି କରିପାରୁନେ ବୋଲି ଆମେ ସ୍ୱଚ୍ଛନ୍ଦ ଭାବେ ସୂକ୍ଷ୍ମତର କଳାତ୍ମକ ଅନୁଭବରେ ପହଞ୍ଚି ପାରୁନେ ।

କଲେଜର ଭଡ଼ାଘରେ ପହଞ୍ଚିବାକୁ ହେଲେ, ସ୍ୱଇଚ୍ଛାରେ ହେଉ ବା ବାଧ୍ୟବାଧକତାରେ ହେଉ ରାଜାରାଣୀ ମନ୍ଦିରର ଅନୁପମ ଶୋଭା ଆଖିରେ ଭାସି ଯାଉଥିଲା । କଲେଜର

Digitized by srujanika@gmail.com

ଅନତିଦୂରରେ ଥିଲା ଘନ ସବୁଜ ଗରାବନ୍ଧୁ ଆମ୍ରବୀଥି । ଏବେ ଅବଶ୍ୟ ସହରୀକରଣର ତାଡ଼ନାରେ ସେହି ଜାଗାରେ ଠିଆ ହୋଇଯାଇଛନ୍ତି ଧାଡ଼ି ଧାଡ଼ି ଇଟା ଓ ସିମେଣ୍ଟର ଏପାର୍ଟମେଣ୍ଟ । ଆଉ ଟିକିଏ ଆଗରେ ଦ୍ୱାଦଶ ଶତାବ୍ଦୀର ପଞ୍ଚାୟତନ ବ୍ରହ୍ମେଶ୍ୱର ମନ୍ଦିର, ଯାହା ଦେହରେ ଖୋଦିତ ହୋଇଛି ମନ୍ଦିରର ପ୍ରତିଷ୍ଠାତା କୋଳାବତୀଙ୍କ ନୃତ୍ୟଭଙ୍ଗୀର ପାଷାଣ ରିଲିଫ୍ । ଏହି ମନ୍ଦିରର ଅପର ପାର୍ଶ୍ୱରେ ଦର୍ଶକର ଚିନ୍ତାରାଜ୍ୟରେ ବିସ୍ମୟ ଭରିଦେଇ ଠିଆ ହୋଇ ରହିଥିଲା ଦୋପୁରିଆ ଭାସ୍କରେଶ୍ୱର ମନ୍ଦିର । ପ୍ରଖ୍ୟାତ ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହୁଥିଲେ ହିନ୍ଦୁରାଜାମାନେ ଗୋଟିଏ ଅଶୋକ ସ୍ତମ୍ଭର ଅଂଶାବଶେଷକୁ ଲିଙ୍ଗଭଳିଆ ମନ୍ଦିରରେ ସ୍ଥାପନା କରିଦେଇଛନ୍ତି । ଏଭଳି ସ୍ତମ୍ଭଟିକୁ ଗର୍ଭଗୃହରେ ସ୍ଥାନଦେବେ ବୋଲି ମନ୍ଦିରଟିକୁ ଦି'ମହଲା କରିବାକୁ ଏକରକମ ବାଧ୍ୟ ହୋଇଛନ୍ତି । ଲିଙ୍ଗରେ ପରିବର୍ତ୍ତିତ ଏହି ଅଶୋକ ସ୍ତମ୍ଭର ଚୂଡ଼ା– ସିଂହମୂର୍ତ୍ତିଟି ରାଜ୍ୟ ସଂଗ୍ରହାଳୟର ପ୍ରବେଶ ଦ୍ୱାରର ଡ଼ାହାଣପଟେ ରଖାହୋଇଛି । ଏହି ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ସଂପଦକୁ ଏକାଠି କରି ଦେଖିବାର ଆମେ ସୁଯୋଗ ପାଇନୁ । ବର୍ତ୍ତମାନ ଯେଉଁ ଅକ୍ଷୁର୍ଣ୍ଣ ଅଶୋକ ସ୍ତମ୍ଭଟି ସଂଗ୍ରହାଳୟ ବଗିଚାରେ ଶୋଭାପାଉଛି ତାହା ଆଧୁନିକ ହସ୍ତଶିଳ୍ପର ନମୁନା ମାତ୍ର, ପ୍ରତ୍ନତତ୍ତ୍ୱ ସହିତ କୌଣସି ସଂପର୍କ ନାହିଁ ।

ପୂର୍ବ ଦିଗରେ ଆଉ ଟିକିଏ ଆଗକୁ ଗଲେ ରାସ୍ତାକଡ଼େ ଠିଆ ହୋଇଥିବା ଚତୁର୍ଦ୍ଦଶ ଶତାବ୍ଦୀର କୀର୍ତ୍ତି ମେଘେଶ୍ୱର ମନ୍ଦିର । ଏକାମ୍ରକ୍ଷେତ୍ରର ପୂର୍ବସୀମା ମୋଟାମୋଟି ଏଇଠି ଶେଷ ହୋଇ ଯାଇଥିଲା । ଆଉ ଦୁଇଟି ଘର କଲେଜର ଶିକ୍ଷାୟତନ ଭିତରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ସେଥିରୁ ଗୋଟିଏ ହେଲା ଦିବାକର ମିଶ୍ରଙ୍କ ଗ୍ରାଫ୍‌ଟେକ୍ ପ୍ରେସ୍ ଓ ଅନ୍ୟଟି ହେଲା ଓଡ଼ିଶାର ପ୍ରଥମ ଆଇ.ସି.ଏସ୍. ନୀଳମଣି ସେନାପତିଙ୍କ ସୁରମ୍ୟ ଉଦ୍ୟାନ ଓ ତା'ରି ଭିତରେ ନିକାଞ୍ଚନରେ ଆତ୍ମପ୍ରତ୍ୟୟର ସହିତ ଠିଆ ହୋଇଥିବା ଦି'ମହଲା କୋଠା । ଖଲ୍ଲିକୋଟରୁ ସ୍ଥାନାନ୍ତରିତ କରିଆଣି କଳାବିଦ୍ୟାଳୟଟିକୁ ନୀଳମଣି ସେନାପତିଙ୍କ କୋଠାଘରେ ଅବସ୍ଥାପିତ କରିବା ପାଇଁ ଥରେ ଦି'ଥର ପ୍ରଚେଷ୍ଟା କରାଯାଇଥିଲା ସିନା ଫଳବତୀ ହୋଇପାରି ନଥିଲା । ଆମ କଲେଜ ଯଦିଓ ଭଡ଼ାଘରେ ଆରମ୍ଭ ହେଉଥିଲା, କିନ୍ତୁ ତା'ର ବୃହତ୍ତର ଆୟତନ ଭିତରେ ରାଜାରାଣୀ, ବ୍ରହ୍ମେଶ୍ୱର, ଭାସ୍କରେଶ୍ୱର ଓ ମେଘେଶ୍ୱର ମନ୍ଦିର, ଗ୍ରାଫ୍‌ଟେକ୍ ପ୍ରେସ୍, ନୀଳମଣି ସେନାପତିଙ୍କ ସୁରମ୍ୟ ଉଦ୍ୟାନ ଓ ଗରାବନ୍ଧୁ ଆମ୍ରବୀଥି ଅନ୍ତର୍ଭୁକ୍ତ ଥିଲା । ମୁଁ ଆହୁରି ପାଣ୍ଡବ ନଗରର ଗୁମ୍ଫା ଓ ମୁକ୍ତେଶ୍ୱର ମନ୍ଦିରକୁ ତା'ରି ଭିତରେ ସ୍ଥାନିତ କରିବା ପାଇଁ ଭୁଲିଯାଇଛି ।

ନାଲ୍‌କୋ ଅଫିସ୍‌ରେ ପଟ୍ଟନାୟକ ସାଙ୍ଗାର ମୋର ଜଣେ ଚିହ୍ନାପରତ ଲୋକଟିଏ ଅଛି, ବୋଧହୁଏ ନାଁ ତା'ର ପ୍ରତାପ ପଟ୍ଟନାୟକ । ପିଲାଲୋକ ହେଲେ ମଧ୍ୟ ସେ ମଜ୍ଜି କଥାଟେ ବରାବର କହେ । ତା'ରି ମତରେ ରାଜଧାନୀ ଭୁବନେଶ୍ୱରରେ ଚର୍ଚ୍ଚିତ ହେଉଥିବା

Digitized by srujanika@gmail.com

ପ୍ରତ୍ୟେକ ଆଖିଦୃଶିଆ ପ୍ରକଳ୍ପ ମନ୍ଦିରନଗରୀ ପୁରୁଣା ଭୁବନେଶ୍ୱରରୁ ହିଁ ଆରମ୍ଭ । ଏଇ ଯିମିତି ରାଜ୍ୟ ସଂଗ୍ରହାଳୟର କୋଠା, ରାମକୃଷ୍ଣ ମିଶନ୍‌ର ଆଶ୍ରମ ଓ ଗ୍ରନ୍ଥାଳୟ, ବିମାନ ବନ୍ଦର, ଏପାର୍ଟମେଣ୍ଟ୍ ଘରର ପରିକଳ୍ପନା ଓ ଶେଷରେ ଲିଙ୍ଗରାଜ ମନ୍ଦିରର ବିଦ୍ୟୁତୀକରଣ ମଧ୍ୟ । ପୁଣି ତା ସହିତ ଯୋଡ଼ିହେଇଯାଉଛି ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟ ।

ଆମର କଳାମହାବିଦ୍ୟାଳୟ ଯେ ଗୁମାସ୍ତାଙ୍କ ନଗରୀ ରାଜଧାନୀ ଭୁବନେଶ୍ୱରରୁ ଆରମ୍ଭ ହେଇନି, ଏଇଟା ଆଶ୍ୱାସନାର କଥା । ହାୱଡ଼ା-ମାନ୍ଦ୍ରାଜ ପୂର୍ବ ଦକ୍ଷିଣ ରେଲ୍‌ଲାଇନ୍ ଭୁବନେଶ୍ୱରକୁ ପୁରୁଣା ଓ ନୂଆରେ ଦି'ଭାଗ କରିଦେଇଛି । ଆମେ ସବୁବେଳେ ପୁରୁଣାର ମହକ ଭିତରେ ରହିଆସିଛୁ । ଏକାମ୍ରନଗରୀର ମନ୍ଦିରଗୁଡ଼ିକ ଯେଉଁଠି, ଆମ କଲେଜ ସେଇଠି । ପରବର୍ତ୍ତୀ ସମୟରେ ଆମେ ଏକାମ୍ର ନଗରୀରୁ ଗୋଡ଼ କାଢ଼ି ସିଧା ପହଞ୍ଚିଗଲୁ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଜୈନଗୁମ୍ଫା ପରିଶୋଭିତ ଉଦୟଗିରି ଓ ଖଣ୍ଡଗିରିର ପାଦଦେଶରେ ।

ଏବେ ଭୁବନେଶ୍ୱର ସହର ଦୁଇଭାଗରେ ନୁହେଁ, ତିନିଭାଗରେ ବିଭକ୍ତ ହେଇସାରିଛି । ଗୋଟିଏ ହେଲା ଏକାମ୍ରନଗରୀ, ଦ୍ୱିତୀୟଟି ହେଲା ଗୋଲାମନଗରୀ ଆଉ ତୃତୀୟଟି ହେଲା ଇନ୍‌ଫୋସିଟି । ଲାଗୁଛି ପ୍ରାଚୀନ ସଭ୍ୟତାଟି ଉପନିବେଶୀୟ ବିଷମତାକୁ ପାରିହେଇ ଆଧୁନିକତାର ଆଲୋକ ପାଇବା ପାଇଁ ଅସ୍ଥିର । ଗୋଲାମ ନଗରୀ କହିଲେ ପ୍ରଶାସନର ମଙ୍ଗ ଧରିଥିବା ଛୋଟବଡ଼ ହାକିମମାନେ ଲକ୍ଷିତ ହେବେ ବୋଲି କୁହାଯାଉଛି ମଧ୍ୟଭୁବନେଶ୍ୱର ।

ସରକାରୀ ଉଦ୍‌ଘାଟନ ଉତ୍ସବର ଦୈନ୍ୟ ମୋ ମନକୁ ଭାରାକ୍ରାନ୍ତ କରି ରଖିଥାଏ । ଏଣୁ ବିଦ୍ୟାରମ୍ଭର ଏକ ନୂଆ ଯୋଜନା କରି ବସିଲି ଯେଉଁଥିରେ କେବଳ ରହିବେ ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ । ମୋତେ ଲାଗୁଛି ସେତେବେଳକୁ ଅଧ୍ୟାପକମାନେ ମଧ୍ୟ କଲେଜରେ ଯୋଗଦେଇ ନଥାନ୍ତି । ଡକାହକାରେ ବିଦ୍ୟାରମ୍ଭକୁ ଆସିଥିଲେ ଶିବ ପାଣିଗ୍ରାହୀ ଓ ଡି.ଏନ୍.ରାଓ । ଶୁଭାରମ୍ଭର ଦିନଥିଲା ବସନ୍ତ ପଞ୍ଚମୀ । ବିଦ୍ୟାଦାତ୍ରୀ ସରସ୍ୱତୀଙ୍କୁ ଆବାହନ କରି ଆମେ ବିଦ୍ୟାରମ୍ଭ କରିଥିଲୁ । ସରସ୍ୱତୀଙ୍କ ପିତଳ ମୂର୍ତ୍ତି ଓ ପୂଜା ସରଞ୍ଜାମ ସଂଯୁକ୍ତାନୀଙ୍କ ଘରୁ ଆସିଥିଲା । ଉତ୍ସବର ପୁରୋଧା ଥିଲେ ରଘୁନାଥ ପାଣିଗ୍ରାହୀ ଓ ସଂଯୁକ୍ତା ପାଣିଗ୍ରାହୀ । ପୂଜାଶେଷରେ ରଘୁଭାଇନା ସରସ୍ୱତୀଙ୍କ ବନ୍ଦନାଟେ ଗାଇ ରଙ୍ଗରେ ରସ ଭରି ଦେଇଥିଲେ ।

Digitized by srujanika@gmail.com

# ୮. ମ୍ୟୁଜିୟମ୍ ବଗିଚାରେ ପ୍ରଥମ ପ୍ରବେଶିକା ପରୀକ୍ଷା

କଲେଜର ପ୍ରଥମ ପ୍ରବେଶିକା ପରୀକ୍ଷା ପାଇଁ ସଂସ୍କୃତି ନିର୍ଦ୍ଦେଶକ ତାଙ୍କ ତରଫରୁ ଖବରକାଗଜମାନଙ୍କରେ ବିଜ୍ଞାପନ ଦେଲେ । ମୋର ଯାହା ମନେ ପଡୁଛି ପ୍ରାୟ ଶହେ କୋଡ଼ିଏ ସରିକି ଆଶାୟୀ ପ୍ରାର୍ଥୀ ଦରଖାସ୍ତ ପକେଇଥିଲେ । ଏତେ ପିଲାଙ୍କୁ ଏକାଠି ବସେଇ ପରୀକ୍ଷା କରିବା ପାଇଁ କଲେଜରେ ହଲ୍ କୁଆଡୁ ଆସିବ ! କଲେଜର ନିଜସ୍ୱ ଘର ତ ନଥିଲା । ମ୍ୟୁଜିୟମ୍‌ର ଭିତରପଟ ବଗିଚାର ଲନ୍ ଉପଯୁକ୍ତ ହେବ ବୋଲି ମ୍ୟୁଜିୟମ୍ ଅଧକ୍ଷ ହରିଶ୍ଚନ୍ଦ୍ରଙ୍କୁ କହି ଠିକଣା କରିଦେଇଥିଲି । ନଭେମ୍ବର ମାସ ହେବ ବୋଧହୁଏ । ମ୍ୟୁଜିୟମ୍‌ର ବଗିଚା ଜାତିଜାତିକା ଫୁଲର ରଙ୍ଗରେ ବିଛେଇ ହେଇଥିଲା । ସଚରାଚର କଳାମହାବିଦ୍ୟାଳୟମାନଙ୍କରେ ପ୍ରବେଶିକା ପାଇଁ ଦୁଇଟି ବିଷୟରେ ପରୀକ୍ଷା ନିଆଯାଏ । ଗୋଟିଏ ହେଲା ଷ୍ଟଡି ବା ଅନୁକରଣରେ ଆଙ୍କିବା, ଅନ୍ୟଟି ମେମୋରି ବା କଳ୍ପନାପ୍ରସୂତ କୌଣସି ବିଷୟକୁ ରୂପଦେବା । ମୁଁ ମଧ୍ୟ ସେଭଳି ଦୁଇଟି ବିଷୟ ଆଙ୍କିବା ପାଇଁ ପ୍ରାର୍ଥୀଙ୍କୁ କହିଥିଲି । କଲେଜରେ ମୁଁ ତ ଏକୁଟିଆ, ଏଣୁ ମ୍ୟୁଜିୟମ୍‌ର କିଛି ବନ୍ଧୁଙ୍କ ପାଖରେ ସାହାଯ୍ୟ ପାଇଁ ହାତ ପତେଇଥାଏ । ସେମାନେ ମଧ୍ୟ ସେଦିନ ପରୀକ୍ଷାର୍ଥୀଙ୍କ ଗହଳରେ ଦାୟିତ୍ୱବାନ୍ ଅଧ୍ୟାପକଙ୍କ ଭୂମିକାରେ ନିଜ ନିଜକୁ ଆବିଷ୍କାର କରିବା ପାଇଁ ଆଗଭର ଥାଆନ୍ତି । ଏଣେ ମ୍ୟୁଜିୟମ୍‌ର ଅଧକ୍ଷ ଓ କ୍ୟୁରେଟର୍‌ମାନେ କୌତୂହଳୀ ହେଇ ମୋତେ ନିଘା କରିଥାନ୍ତି । ଏସବୁ ବ୍ୟାପାର ସେମାନଙ୍କ ପାଇଁ ନୂଆ ଲାଗୁଥାଏ । ପୁଣି ମୋ ନୂଆ ଅବତାରକୁ ଦେଖି ସେମାନେ ଯୁଗପତ୍ ବିସ୍ମୟାଭୂତ ହେଉଥାନ୍ତି । ମୁଁ ଯେ ଗୋଟିଏ ସଂପୂର୍ଣ୍ଣ ଅଣକ୍ୟୁରେଟରୀୟ ଭୂମିକାରେ ସତସତ ଅଭିନୟ କରିପାରୁଛି ଏବଂ ଦକ୍ଷତାର ସହିତ ତାହା ପରିଚାଳନା କରିପାରୁଛି ଏହା ସେମାନଙ୍କର ସହଜରେ ହଜମ ହେଉ ନଥାଏ । ମୁଁ ମନେ ମନେ ଖୁସୀ ହେଉଥିଲି ଯେ ସଂଗ୍ରହାଳୟରୁ ଯଥାର୍ଥ ଭାବେ କଳାମହାବିଦ୍ୟାଳୟଟି ରୂପ ନେଉଛି ଯିମିତି ପୁରୁଣା ମଂଜି ଭିତରୁ ଅଙ୍କୁରଟିଏର ଉଦ୍‌ଗମ ହୁଏ ।

ପ୍ରବେଶିକା ପରୀକ୍ଷାର କିଛି ଦିନ ଆଗରୁ ଅସିତ ମୁଖାର୍ଜୀଙ୍କ ସହିତ ଦୈବାତ୍ ମାଷ୍ଟରକ୍ୟାଣ୍ଟିନ୍ ଛକରେ ଦେଖା ହେଇଗଲା । ସେ ବୋଧହୁଏ 'ସମ୍ବାଦ' ଅଫିସ୍‌ର ଡିଜାଇନ୍ କାମ ଶେଷ କରି କଟକ ଫେରୁଥିଲେ । ସେ ମୋତେ ଅଟକାଇ କଲେଜରେ ହେବାକୁ ଥିବା ପ୍ରବେଶିକା ପରୀକ୍ଷା ସଂପର୍କରେ ଆଲୋଚନା କଲେ । କଟକ ମହମ୍ମଦିଆ ବଜାରର

Digitized by srujanika@gmail.com

କଲେଜଟିକୁ ସଂପୂର୍ଣ୍ଣ ଉଜୁଡ଼ାଇ ଦେଇ ଭୁବନେଶ୍ୱରଠାରେ ସରକାର ନୂଆ କଲେଜଟିଏ ଆରମ୍ଭ କରୁଥିବାରୁ ସେ ମନରେ ଆଘାତ ପାଇଥିଲେ । କଟକ କଲେଜଟିକୁ ସ୍ୱୀକୃତି ଦେଇଥିଲେ ମୁରଲୀଧର ଟାଲି ବା ସିଏ ଅଧକ୍ଷ ହେବେ ବୋଲି ସ୍ୱପ୍ନ ଦେଖୁଥିବା ବେଳେ ଏଭଳି ଦୁର୍ଘଟଣା ଘଟିଲା । ବହୁଦିନ ଆଗରୁ ଶିଳ୍ପୀ ସଂସଦ ଆନୁକୂଲ୍ୟରେ ଭୁବନେଶ୍ୱରଠାରେ ଆମେ ଯେଉଁ ଚିତ୍ରମ୍ କଳା ବିଦ୍ୟାଳୟ ଗଢ଼ିଥିଲୁ, ଅସିତ ମୁଖାର୍ଜୀ ସେଥିରେ ଅଧକ୍ଷ ଥିଲେ ଓ ମୁଁ ଚିତ୍ର ବିଭାଗର ଅଧାପକ ଥିଲି । ଏଣୁ ତାଙ୍କୁ ବୋଧ ହେଉଥିଲା ଯେ ପରବର୍ତ୍ତୀ କାଳରେ ଯେତେଯେତେ ସବୁ କଳା ବିଦ୍ୟାଳୟ ଓ ମହାବିଦ୍ୟାଳୟ ଗଠିତ ହେବ ସେ ସବୁଥିରେ ସିଏ ହିଁ ଅଧକ୍ଷ ରହିବେ । ମୁଁ ଭୁବନେଶ୍ୱର ସରକାରୀ କଳା ମହାବିଦ୍ୟାଳୟର ଅଧକ୍ଷ ହେଇଯିବା କଥାଟିକୁ ଅସିତ ମୁଖାର୍ଜୀ ଉଦାରତାର ସହିତ ଗ୍ରହଣ କରିପାରି ନଥିଲେ । କେବଳ ଅସିତବାବୁ ନୁହନ୍ତି, ମୁରଲୀଧର ଟାଲି ପ୍ରଭୃତି ବରିଷ୍ଠ ଶିଳ୍ପୀମାନେ ଭୁବନେଶ୍ୱର କଲେଜରେ ଅଧକ୍ଷ ହେବାପାଇଁ ନିଜକୁ ନିଜେ ପରିକଳ୍ପନା କରିସାରିଥିଲେ ଏବଂ ମୋର ନିଯୁକ୍ତି ସେମାନଙ୍କୁ ଯଥେଷ୍ଟ ମାନସିକ ଆଘାତ ଦେଇଥିଲା ।

କଟକ କଲେଜରେ ପ୍ରଥମ ଓ ଦ୍ୱିତୀୟ ବର୍ଷର ଅଧୟନ ସାରିଥିବା ପିଲାଙ୍କ ସମସ୍ୟାକୁ ନେଇ ହେଲା ମାଷ୍ଟରକ୍ୟାଣ୍ଟିନ୍‌ରେ ସେଦିନର ଆଲୋଚନା । ଦ୍ୱିତୀୟ ଓ ତୃତୀୟ ବର୍ଷରେ ସେହି ପିଲାଙ୍କୁ ଭୁବନେଶ୍ୱର କଲେଜରେ ଗ୍ରହଣ କରିବାକୁ କେନ୍ଦ୍ରକରି ଆଲୋଚନା ସରଗରମ ହେଇଉଠିଥିଲା । ମୁଁ ଯୁକ୍ତିଛଳରେ କହିଥିଲି, ''ଯେହେତୁ ଦୁଇଟି ପାଠ୍ୟକ୍ରମ ବା ସିଲାବସ୍‌ର କୌଣସି ସାମ୍ୟ ନାହିଁ ସେହେତୁ ସେମାନଙ୍କୁ ଦ୍ୱିତୀୟ ବା ତୃତୀୟ ବର୍ଷରେ ଗ୍ରହଣ କରାଯାଇ ପାରିବ ନାହିଁ । ପୁଣି ସରକାର କେବଳ ପ୍ରଥମ ବର୍ଷରେ ଛାତ୍ର ଗ୍ରହଣ କରିବା ପାଇଁ ଆଦେଶନାମା ଜାରି କରିଥିବାରୁ ମୁଁ ତାକୁ ଉଲ୍ଲଘଂନ କରି କିମିତି ଆପଣ କହୁଥିବା ପ୍ରକାରେ କଟକ କଲେଜର ପିଲାଙ୍କୁ ଉପର କ୍ଲାସରେ ଭର୍ତ୍ତି କରିପାରିବି ?'' ଅସିତ ମୁଖାର୍ଜୀ ମୋର କୌଣସି ଯୁକ୍ତି ସହୃଦୟତାର ସହିତ ଗ୍ରହଣ କରିବା ଅବସ୍ଥାରେ ନଥିଲେ । ମୁଁ ତାଙ୍କୁ ବୁଝେଇବାକୁ ଚେଷ୍ଟା କରିଥିଲି ଯେ ସରକାରଙ୍କ ନିର୍ଦ୍ଦିଷ୍ଟ ଆଦେଶ ବିନା ଗୋଟିଏ ବେସରକାରୀ କଲେଜର ପିଲାଙ୍କୁ ଆଉ ଗୋଟିଏ ସରକାରୀ କଲେଜରେ ଅବିଚାରିତ ଭାବେ ଗ୍ରହଣ କରିଦେବା ଯଥାର୍ଥ ହେବନାହିଁ । ଅସିତ ମୁଖାର୍ଜୀ ନିଜ ଜିଦ୍‌ରେ ଅଟଳ ରହିଲେ ଓ ଆମ ଆଲୋଚନାର ସହସା ପରିସମାପ୍ତିରେ ବନ୍ଧୁତାର ଆଭାସ ପାଇହେଲାନି । ଅସିତ ବାବୁ ରିକ୍ସାରେ ଚଢ଼ି ଷ୍ଟେସନ ଆଡ଼େ ଚାଲିଗଲାପରେ ମୁଁ ଉପଲବ୍ଧି କଲି ଯେ ରୋକ୍‌ଠୋକ୍ କରି ଏଭଳି କହିଦେବା ମୋ ପକ୍ଷେ ଉଚିତ ହେଲାନାହିଁ । ମୁଁ ଅଯଥା ତାଙ୍କ ମନକୁ ଆହୁରି ଭାରାକ୍ରାନ୍ତ କରିଦେଲି । ମୁଁ ହୁଏତ ଅବ୍ୟୟ ରଖି କଥାଟକ 'ସାପ ମରିବନି କି ବାଡ଼ି ଭାଙ୍ଗିବନି' ନ୍ୟାୟରେ କହିଥିଲେ ଚଳିଥାନ୍ତା । ମୁଁ ସବୁବେଳେ ଏଭଳି ରୋକ୍‌ଠୋକ୍ କଥା କହି ନିଜପାଇଁ ଅଡୁଆ ସୃଷ୍ଟି କରିଥାଏ ।

Digitized by srujanika@gmail.com

ଏଣୁ ପ୍ରବେଶିକା ପରୀକ୍ଷାରେ କଟକ କଲେଜ ପିଲାଙ୍କ ଆଡୁ କିଛି ଅପ୍ରୀତିକର ପରିସ୍ଥିତି ଉପୁଜିପାରେ ବୋଲି ମୁଁ ଆଶଙ୍କା କରୁଥିଲି। ଅବଶ୍ୟ ସିମିତି କିଛି ଘଟିଲାନି। କେବଳ ସାତ ଆଠଜଣ ପିଲା ପ୍ରଥମ ବର୍ଷରେ ଆଡ୍‌ମିଶନ୍ ନେବା ପାଇଁ ମୋତେ ଅନୁରୋଧ କରିଥିଲେ, ଯାହା ଯଥାର୍ଥ ଥିଲା ଏବଂ ସେମାନଙ୍କୁ ମୁଁ ଅତି ଆଦରର ସହିତ ଗ୍ରହଣ କରିନେଇଥିଲି। ମୋର ଏବେ ମନେହେଉଛି ଯେ, ଅସିତ ମୁଖାର୍ଜୀ ଗୋଟିଏ ନୀତିଗତ ବିଷୟ ନେଇ ମୋ ସହିତ ଅଯଥା ବାଦାନୁବାଦ ଲଗେଇଥିଲେ। ଏଥିରେ ଆମ ଦୁହିଙ୍କ ପ୍ରୌଢ଼ି ହିଁ ଆମକୁ ଘାରୁଥିଲା। ବାସ୍ତବତା ସଂପୂର୍ଣ୍ଣ ଭିନ୍ନ ଥିଲା। ଅସିତ ବାବୁ ଯେଉଁ ବିଦ୍ୟାଧ୍ୟାୟୀଙ୍କ କଥା କହୁଥିଲେ, ସେମାନେ କଟକ କଲେଜ ବନ୍ଦ ହେଇଯିବା ଖବର ଶୁଣି କଲେଜ ଆସିବା ଛାଡ଼ି ସାରିଥିଲେ। ଆଉ ଯେଉଁମାନେ ନିହାତି ପକ୍ଷେ ଚିତ୍ରକଳା ଅଧ୍ୟୟନ କରିବା ପାଇଁ ଚାହୁଁଥିଲେ ସେମାନେ ପ୍ରବେଶିକା ପରୀକ୍ଷାରେ ଉପସ୍ଥିତ ରହି ମୋ ଆଶଙ୍କାକୁ ଲାଘବ କରିଦେଇଥିଲେ।

ପ୍ରଥମ ପ୍ରବେଶିକା ପରୀକ୍ଷାରେ ମୁଁ ନିଜେ ପରୀକ୍ଷାର ସଂଚାଳକ, ପରୀକ୍ଷକ ଓ ବ୍ୟବସ୍ଥାପକ ଥିଲି। ମୁଁ ଏହି ପ୍ରବେଶିକା ପରୀକ୍ଷାକୁ ସାମାନ୍ୟ ପରୀକ୍ଷା ବୋଲି ଜ୍ଞାନ ନ କରି ଏହା କଲେଜ ଗଢ଼ଣର ପ୍ରଥମ ପୁନାଦିପଥର ବୋଲି ବିବେଚନା କରିଥିଲି। ମୁଁ ସ୍ୱପ୍ନ ଦେଖୁଥିଲି ଆଜିର ଛାତ୍ର ଓ ଛାତ୍ରୀମାନେ ହିଁ ଏହି କଲେଜର ଉଜ୍ଜ୍ୱଳ ଆମୁଖ ହେବେ। ଏମାନେ ହିଁ ଭବିଷ୍ୟତର ଛାତ୍ରଛାତ୍ରୀଙ୍କ ପାଇଁ ଗର୍ବ ଓ ଗୌରବର ଧ୍ୱଜା ବହନ କରିବେ। ପ୍ରଥମ ବ୍ୟାଚ୍‌ର ଛାତ୍ରଛାତ୍ରୀ ଭାବେ ସେଦିନର ପ୍ରବେଶିକା ପରୀକ୍ଷାରେ ଯେଉଁ ପଚାଶଜଣ ଉତ୍ତୀର୍ଣ୍ଣ ହେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ, ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଆର୍ତ୍ତବନ୍ଧୁ ରାଉତ, ଅସୀମ ବସୁଙ୍କ ଝିଅ ଅତସୀ ବସୁ, ବାପୁଜୀ ନଗରର ନମିତା ଆଚାର୍ଯ୍ୟ, ଅମର ଜେନା, ଅଧ୍ୟାପକ ଅନନ୍ତ ପଣ୍ଡାଙ୍କ ଭଣଜା ସଂଗ୍ରାମ କର, ଚିତ୍ର ବିଦ୍ୟାଳୟର ମୋର ଏକଦା ଛାତ୍ର କାଶୀନାଥ ସାହୁଙ୍କ ପୁଅ ରାଜେନ୍ଦ୍ର ନାରାୟଣ ସାହୁ, ଜଗଦୀଶ ପାଣିଙ୍କ ବଡ଼ବୋହୂ ମମତା, ରିନା ପୃଷ୍ଟି, ବିନୋଦ କର, ଅମିୟ ମଲ୍ଲିକ, ସୋମନାଥ ଭଟ୍ଟାରିଆ, ସୁଶାନ୍ତ ପଟ୍ଟନାୟକ, ସୁଜୟ ସ୍ୱାଇଁ, କଟକ ମହମ୍ମଦିଆ ବଜାର ଆର୍ଟ୍ କଲେଜର ରବି ବନିକ, ସୁଶାନ୍ତ ମହାନ୍ତି, ପ୍ରଦ୍ୟୁମ୍ନ ମହାନ୍ତି ଓ ସେମାନଙ୍କ ସହିତ ଓଡ଼ଗାଁ ଚିତ୍ରକାର ଘରର ଉମାଶଙ୍କର ଦାସ, କଟକର ଦୀପାଞ୍ଜଳି ମହାନ୍ତି, ଦିଲ୍ଲୀପ ଦାସ, ଡି.ବି.ରାଓ, ରାଜା, ଅଜୟ ପଣ୍ଡା, ଅଶ୍ୱିନୀ ମହନ୍ତ ଓ ଭୁବନେଶ୍ୱରର କମଳାକ୍ଷ କାନୁନ୍‌ଗୋ ପ୍ରଭୃତି।

କେବଳ ପ୍ରବେଶିକା ପରୀକ୍ଷା ବୋଲି ନୁହେଁ, ଚିତ୍ରକଳା ମହାବିଦ୍ୟାଳୟର ଯେକୌଣସି ପରୀକ୍ଷାରେ ପରୀକ୍ଷାଜନିତ ଭୟ ନଥାଏ। ଏହିସବୁ ପରୀକ୍ଷାରେ କପି ହେବାର ଆଶଙ୍କା ମୋଟେ ନାହିଁ। ହୁଏତ ସମସ୍ତେ ସମସ୍ତଙ୍କର କପି କରୁଥାନ୍ତି, ଅଥଚ ପରୀକ୍ଷା ବାଟରେ ପରୀକ୍ଷା ହେଉଥାଏ। ସେଦିନ ମ୍ୟୁଜିୟମ୍‌ର ଭିତର ଲନ୍ ମଝିରେ ଠିଆ ହେଇଥିବା

Digitized by srujanika@gmail.com

ନାୟିକାର ମାର୍ବଲ୍ ମୂର୍ତ୍ତିକୁ ଅନୁକରଣ କରିବା ପାଇଁ କୁହାଯାଇଥିଲା । ପିଲାଏ ମୂର୍ତ୍ତିଟିକୁ ଘେରିଯାଇ ଲନ୍ ଉପରେ ଡ୍ରଇଁ ବୋର୍ଡ଼ ନେଇ ଏକରକମ୍ ପେଟେଇ ପଡ଼ିଥିଲେ । ମୂର୍ତ୍ତିଟିର ଗୁରୁତ୍ୱକୁ ଉପଲବ୍ଧ କରେଇଦେବା ପାଇଁ ମୁଁ ମୋର ପ୍ରାରମ୍ଭିକ ସୂଚନାରେ ଜଣେଇ ଦେଇ ଦେଇଥିଲି ଯେ ମୂର୍ତ୍ତିଟି ପାରଳା ମହାରାଜାଙ୍କ ବୃନ୍ଦାବନ ଉପବନରୁ ଏଠିକି ଅଣାଯାଇଛି । ବ୍ରିଟିଶ୍ ସରକାରଙ୍କ ଅମଳରେ ବିଦେଶରେ ତିଆରି ଏଭଳି ମୂର୍ତ୍ତିମାନ ଘରେ, ବୈଠକଖାନାରେ ଓ ଉପବନରେ ସଜେଇବା ଆଧୁନିକ ଅଭିରୁଚିର ପରିଚାୟକ ଥିଲା ଓ ରାଜାରାଜୁଡ଼ାମାନେ ଏ ଦିଗରେ ଅଗ୍ରଣୀ ଥିଲେ । ବହୁତ ପିଲା ହୁଏତ ମାର୍ବଲ୍‌ର ଏମିତି ନିଖୁଣ ପ୍ରତିମୂର୍ତ୍ତିଟିଏ କେବେ ଆଗରୁ ଦେଖି ନଥିଲେ । କୁହାଯାଇଥିଲା ଯେ ଡ୍ରଇଁଟି କେବଳ ରେଖାରେ ହିଁ କରାଯିବ, ସେଥିରେ ଶେଡ଼ିଙ୍ଗ୍ ହେବନି, ଆଉ ରଙ୍ଗ ମଧ୍ୟ ଦିଆଯିବନି । ଡ୍ରଇଁଟି ଆଙ୍କିବାକୁ ସମୟ ସୀମା ଥିଲା ଘଣ୍ଟାଏ । ଦ୍ୱିତୀୟ ପ୍ରଶ୍ନ ପ୍ରାର୍ଥୀଙ୍କ ସଂପୂର୍ଣ୍ଣ ଇଚ୍ଛାଧୀନ ଥିଲା, ଯିଏ ଯାହା ଆଙ୍କିଲା । ପିଲାମାନେ ଆଙ୍କିଲାବେଳେ ସେମାନଙ୍କ ଭିତରେ ଥରେ ଘୂରି ଆସିଲେ, ସେମାନଙ୍କ ଶୈଳ୍ପିକ ଦକ୍ଷତା ଜଣାପଡ଼ିଯାଏ । ଜଣାପଡ଼ିଯାଏ କିଏ କେତେ ରୂପକୁ ଆପଣେଇ ପାରିଛି, ଆଉ କାହାର ରେଖା କେତେ ବିଶ୍ୱାସଯୋଗ୍ୟ ଓ ସାବଲୀଳ । ମୋଟାମୋଟି ଭାବେ ପ୍ରାର୍ଥୀଜଣକର ଦକ୍ଷତା ଆକଳନ କରିବା ପାଇଁ ରେଖା ହିଁ ଯଥେଷ୍ଟ ହେଇଥାଏ । ଏହା ସଂପୂର୍ଣ୍ଣ ବ୍ୟଞ୍ଜନ ଭକ୍ଷଣ ନୁହେଁ, ସାମାନ୍ୟ ଚାଖଣା, ତାହା ହିଁ ଯଥେଷ୍ଟ ।

ପିଲାଙ୍କର ସାର୍ଟିଫିକେଟ୍ ଯାଞ୍ଚ ଇତ୍ୟାଦି କରିବା ଏବଂ ମୌଖିକ ପରୀକ୍ଷା କରିବା ପାଇଁ ସେମାନଙ୍କୁ ମ୍ୟୁଜିୟମ୍ ହତାରେ ଥିବା କଳା ମଣ୍ଡପରେ ପହଞ୍ଚିବାକୁ କୁହାଗଲା । ମୌଖିକ ପରୀକ୍ଷାର ଉଦ୍ଦେଶ୍ୟ ହେଲା ପ୍ରାର୍ଥୀଟିକୁ ଆଉ ଅଧିକା ଜାଣିବା ଓ ତା'ର ମନ ବିଡ଼ିବା ଏବଂ ଶିଳ୍ପୀଟିଏ ହେବା ପାଇଁ ତା'ର କେତେ ଆଗ୍ରହ ଅଛି ତାକୁ ଠଉରେଇ ନେବା । ମେଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପାଇଥିବା ନମ୍ବର ଉପରେ ନିର୍ଭର କରି ସାଧାରଣତଃ ଯେଭଳି ପ୍ରାର୍ଥୀ ଚୟନ କରାଯାଇଥାଏ, ଚିତ୍ରକଳା ମହାବିଦ୍ୟାଳୟରେ ସେସବୁ ବ୍ୟବସ୍ଥା ନାହିଁ । ଆମବେଳେ ପ୍ରାର୍ଥୀଟିର ସାଧାରଣ ଯୋଗ୍ୟତାକୁ ମୋଟେ ବିଚାରକୁ ନିଆଯାଉ ନଥିଲା ଏଣୁ ଖଲ୍ଲିକୋଟ କଳାମହାବିଦ୍ୟାଳୟରେ ପ୍ରଥମ ବ୍ୟାଚ୍‌ରେ ଥୋଡ଼େ ସାତ ଆଠ ଶ୍ରେଣୀଯାଏଁ ପାଠ ପଢ଼ିଥିବା ପିଲା ଥିଲେ । ବହୁଦିନଯାଏଁ ଏଭଳି ବ୍ୟବସ୍ଥା ସେଠି ବଳବତ୍ତର ଥିଲା । ସାଧାରଣତଃ କୁହାଯାଉଥିଲା ଯାହାର ଚିତ୍ରବିଦ୍ୟାରେ ଦକ୍ଷତା ଥାଏ ତା'ର ପାଠପଢ଼ା ଶୂନ ହେଇଯାଏ । ଚିତ୍ରବିଦ୍ୟା ପାଠ ନୁହେଁ, ଶାଠ ବୋଲି ଏବେ ବି ବହୁଲୋକଙ୍କ ଧାରଣା ଅଛି । କିନ୍ତୁ କଳା ମହାବିଦ୍ୟାଳୟଗୁଡ଼ିକ ବିଶ୍ୱବିଦ୍ୟାଳୟ ସହିତ ନିବନ୍ଧିତ ହେଇଗଲା ପରେ ଚିତ୍ରଶିଳ୍ପୀ ହେବାକୁ ହେଲେ ଶାଠ ଯେଭଳି ଆବଶ୍ୟକ ପାଠ ସେଭଳି ଅପରିହାର୍ଯ୍ୟ ହେଇପଡ଼ିଛି ।

Digitized by srujanika@gmail.com

ଆମ କଲେଜର ପ୍ରଥମବର୍ଷ ପିଲାଙ୍କ ମଧ୍ୟରୁ ଅନେକେ ଶିଳ୍ପୀ ହିସାବରେ ଖ୍ୟାତି ଅର୍ଜନ କରିସାରିଛନ୍ତି । ଛାତ୍ରଛାତ୍ରୀଙ୍କ ଶୈଳ୍ପିକ ବିକାଶ ସଂପର୍କରେ ଚିତ୍ରକଳା ଅଧ୍ୟାପକମାନଙ୍କ ଗୋଟିଏ ଆନୁପାତିକ ହିସାବ ଅଛି । ତା'ହେଲା ଶହେରେ ଦଶ ପ୍ରତିଶତ । ଏଣୁ ପଚାଶରେ ପାଞ୍ଚ ହେଲେ ଉତ୍କର୍ଷର ସୀମା ଟିପିଗଲା, ଯଥେଷ୍ଟ ହେଲା କୁହାଯିବ । ଫାଷ୍ଟ୍ ବ୍ୟାଚ୍‌ର ଅଦ୍ୱୈତ ଗଡ଼ନାୟକ ଦିଲ୍ଲୀ କଳା ମହାବିଦ୍ୟାଳୟରେ ଭାସ୍କର୍ଯ୍ୟରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ଓଡ଼ିଶାର କଳାକ୍ଷେତ୍ରରେ ପ୍ରଥମ କମନ୍‌ୱେଲଥ୍ ସ୍କଲର୍ ଭାବେ ଲଣ୍ଡନ ପଢ଼ିବାକୁ ଗଲା । ତାକୁ ବିଦାୟ ଦେବା ପାଇଁ ମୁଁ ଦିଲ୍ଲୀରେ ଉପସ୍ଥିତ ଥିଲି । ମୁଁ ନା ସେତେବେଳକୁ ବିଭୂତି କାନୁନ୍‌ଗୋ କଲେଜର ଅଧ୍ୟକ୍ଷ ଥିଲି ନା ସିଏ ସେ କଲେଜର ଛାତ୍ର ଥିଲା । ଆମେ ସଂପର୍କର ପ୍ରାଗୈତିହାସିକତାରେ ଛନ୍ଦି ହୋଇଯାଇଥିଲୁ । ଗୁରୁ-ଶିଷ୍ୟର ଏକ ଅମ୍ଳାନ ପରମ୍ପରାଟି ପୁଣିଥରେ ଉଜ୍ଜୀବିତ ହେଇଯାଇଥିଲା । ଅଦ୍ୱୈତ ଏବେ ଭାରତବର୍ଷର ଜଣେ ପ୍ରତିଷ୍ଠିତ ଯୁବଭାସ୍କର ଏବଂ କିଟ୍ ବିଶ୍ୱବିଦ୍ୟାଳୟର କଳା ବିଭାଗର ପ୍ରଫେସର୍ । ନୂଆଦିଲ୍ଲୀର ମହାତ୍ମାଗାନ୍ଧି ସ୍ମୃତି ସଂଗ୍ରହାଳୟରେ ମହାତ୍ମାଗାନ୍ଧିଙ୍କ ଐତିହାସିକ ଦାଣ୍ଡିମାର୍ଚ୍ଚ୍‌ର କଥାବସ୍ତୁ ଉପରେ ଆଧାରିତ ପଥରରେ ଖୋଦେଇ ଯୌଥଭାସ୍କର୍ଯ୍ୟ ଏବଂ କିଟ୍ ବିଶ୍ୱବିଦ୍ୟାଳୟ ପରିସରରେ ସିଏ ରଚନା କରିଥିବା ଭାସ୍କର୍ଯ୍ୟ ଉଦ୍ୟାନ ବଳିଷ୍ଠ ଗଠନ ପରିପାଟୀର ସୂଚନା ଦିଏ । ଦାଣ୍ଡିମାର୍ଚ୍ଚ୍ ଭାସ୍କର୍ଯ୍ୟର ଶୈଳୀ ପ୍ରସିଦ୍ଧ ଭାସ୍କର ଦେବୀ ପ୍ରସାଦ ରାୟ ଚୌଧୁରୀଙ୍କ ରିଏଲିଷ୍ଟିକ୍ ଭାସ୍କର୍ଯ୍ୟ - ଦାଣ୍ଡିମାର୍ଚ୍ଚ ଠାରୁ ସଂପୂର୍ଣ୍ଣ ଭିନ୍ନ । ଆଧୁନିକତାର ଘନବାଦ ଅଦ୍ୱୈତଙ୍କ ଭାସ୍କର୍ଯ୍ୟର ସ୍ୱତନ୍ତ୍ର ସମ୍ବେଦନ । ଆମ କଲେଜରେ ପଢୁଥିବା ବେଳଠୁ ହିଁ ଅଦ୍ୱୈତ ଭାସ୍କର୍ଯ୍ୟ କଳାର ବିଶାଳତା ଓ ବିସ୍ମୟରେ ବିଶ୍ୱାସ କରୁଥିଲା ।

କଲେଜରେ ଛାତ୍ରଥିବା ଅବସ୍ଥାରୁ ଆର୍ତ୍ତବନ୍ଧୁ ରାଉତ ନିଜ ଶୈଳ୍ପିକ ପ୍ରତିଭାର ପରିଚୟ ଦେଇଥିଲା । ଅଲୋଡ଼ା ପ୍ଲାଷ୍ଟିକ ଖଣ୍ଡମାନଙ୍କୁ କିରୋସିନି ଦୀପରେ ତରଳେଇ ସେ ଅତି ଅଦ୍ଭୁତ ଟେକ୍ସଚର୍ ଥିବା ସୁନ୍ଦର ସୁନ୍ଦର ଭାସ୍କର୍ଯ୍ୟମାନ ଗଢୁଥିଲା । ଏହି ଭାସ୍କର୍ଯ୍ୟ ଗୁଡ଼ିକ କଳା, ଧୂସର, ପିଙ୍କ୍, ଧଳା ପ୍ରଭୃତି ରଙ୍ଗର ସମ୍ମିଶ୍ରଣରେ ଅତ୍ୟନ୍ତ ଜାନ୍ତବ ଭାବ ପ୍ରକଟ କରୁଥିଲା । ଏଭଳି ପରୀକ୍ଷା ନିରୀକ୍ଷା, ସମଗ୍ର ଓଡ଼ିଶାର କଳା କ୍ଷେତ୍ରରେ ନୂଆ ଥିଲା । ଖଲ୍ଲିକୋଟ ସରକାରୀ କଳା ମହାବିଦ୍ୟାଳୟରେ ଆମବେଳର ଅଧ୍ୟାପକ ଓ ସହପାଠୀମାନେ ଉପନିବେଶୀୟ ମାନସିକତାରେ ସନ୍ତୁଳି ହେଉଥିବାବେଳେ ଆର୍ତ୍ତବନ୍ଧୁ ବ୍ୟକ୍ତିଗତ ଭାବେ ସିମେଣ୍ଟ୍ ଓ ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍‌କୁ ପଛରେ ପକେଇ ପ୍ଲାଷ୍ଟିକ୍ ଭଳି ଏକ ସଂପୂର୍ଣ୍ଣ ଅଣପାରମ୍ପରିକ ବସ୍ତୁର ସାହାଯ୍ୟରେ ଭାସ୍କର୍ଯ୍ୟର ଅଭିନବ ପରିକଳ୍ପନା କରିପାରିଥିଲା । ପ୍ଲାଷ୍ଟିକ୍‌ରେ ତିଆରି ଭାସ୍କର୍ଯ୍ୟଗୁଡ଼ିକରେ ଶସ୍ତା ଉପଭୋକ୍ତା ମାନସିକତାର ସଂପୂର୍ଣ୍ଣ ପରିବର୍ତ୍ତନ ଘଟୁଥିବାରୁ ସେଗୁଡ଼ିକ କ୍ଲାସିକ୍ ଭାସ୍କର୍ଯ୍ୟ ଭଳି ଦେଖାଯାଉଥିଲା ଓ ହାଲୁକା ହେଇଥବା ହେତୁ ଶୂନ୍ୟରେ ଝୁଲେଇ ରଖିବା ସୁବିଧା ହେଉଥିଲା । ବିଶ୍ୱବିଖ୍ୟାତ ଭାସ୍କର ଜର୍ଜ୍

Digitized by srujanika@gmail.com

ବାସେଲଜ୍‌ଙ୍କ କୃତିଭଳି ବା କାଲଡ଼େରଙ୍କ ଝୁଲନ୍ତା ଭାସ୍କର୍ଯ୍ୟ ଭଳି ଏଗୁଡ଼ିକ ଉପରୁ ଝୁଲି ରହୁଥଲା । ଆମ କଲେଜରେ ଆର୍ତ୍ତ ଗଢ଼ିଥିବା ପ୍ଲାଷ୍ଟିକ୍ କୁଆର ମହିମା ବିସ୍ମରଣ ହେବାର ନୁହେଁ । ଏହା ଭୋପାଳସ୍ଥିତ ଭାରତ ଭବନରେ ଅନୁଷ୍ଠିତ ଦ୍ୱିବାର୍ଷିକ ବିଶ୍ୱକଳା ପ୍ରଦର୍ଶନୀରେ ପ୍ରଦର୍ଶିତ ହେଇ ପଚିଶି ହଜାର ଟଙ୍କାର ପୁରସ୍କାର ପାଇଥିଲା । ଏହି ପୁରସ୍କାରର ରାଶି ସେବେଳର ଜାତୀୟ ଲଳିତ କଳା ଏକାଡେମୀ ଦେଉଥିବା ପୁରସ୍କାର ଅର୍ଥଠାରୁ ମଧ୍ୟ ଅଧିକ ଥିଲା । ଆର୍ତ୍ତବନ୍ଧୁଙ୍କ ଦ୍ୱାରା ଅହମ୍ମଦାବାଦ ସନ୍ନିକଟ ଏକ ପାହାଡ଼ ଉପରେ ନିର୍ମିତ ଲୁହାଜାଲିର ଉଡ଼ନ୍ତା ପକ୍ଷୀ ପରିବେଶ-ଭାସ୍କର୍ଯ୍ୟ ଭାବେ ସମଗ୍ର ଦେଶରେ ମଧ୍ୟ ଉଲ୍ଲେଖନୀୟ । କଞ୍ଚନାସ୍ଥିତ ଭଡ଼ାଘର କଲେଜର ପରିସରରେ ଅଦ୍ୱୈତଙ୍କ ଯୌଥ ଭାସ୍କର୍ଯ୍ୟ ସାଙ୍ଗକୁ, ଆର୍ତ୍ତବନ୍ଧୁଙ୍କର ବୃଷଭ, ଅଜୟ ପଣ୍ଡାଙ୍କ ପଥରର ଆଧୁନିକ ଗଣେଶ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ବଲ୍‌ବୀର୍ କଟ୍‌ଙ୍କ ଅନୁପ୍ରେରଣାର ନିର୍ମିତ ଅଜଂନ ସାହୁଙ୍କ ନିରୂପ ଭାସ୍କର୍ଯ୍ୟ, କବିତା ମହାନ୍ତିଙ୍କ ପ୍ରସାଧନରତା ନାରୀ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା ।

କଲେଜର ପ୍ରଥମ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଇଥିବା କମଳାକ୍ଷ କାନୁନ୍‌ଗୋର ଅଦ୍ଭୁତ ସାଙ୍ଗଠନିକ ଦକ୍ଷତା ଥିଲା । ତା ଅଭିଧାନରେ ନାହିଁ ବୋଲି ଶବ୍ଦର ଉଲ୍ଲେଖ ନଥିଲା । କଲେଜ ଆନୁକୂଲ୍ୟରେ ସୁଇଡେନ୍ ଓ ମସ୍କୋରେ ଅନୁଷ୍ଠିତ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ବହୁ ସାଙ୍ଗଠନିକ କାର୍ଯ୍ୟରେ କମଳାକ୍ଷ ମୋତେ ସାହାଯ୍ୟ କରିଛି । ଗୋଟିଏ ଅନ୍ତର୍ଜାତୀୟ କଳା ପ୍ରଦର୍ଶନୀ ପ୍ରକଳ୍ପରେ କାମ କରିବାର ଅପୂର୍ବ ସୁଯୋଗ କମଳାକ୍ଷର ଜୀବନସାରା ମନେ ରହିବ । ଛାତ୍ରଭାବେ ତାର ସବୁଠାରୁ ଉଲ୍ଲେଖନୀୟ ତଥା ସ୍ମରଣୀୟ ଘଟଣା ହେଲା ଭୁବନେଶ୍ୱର ଲୋକସଭା ନିର୍ବାଚନ ମଣ୍ଡଳୀରେ ଲୋକସଭା ପାଇଁ ପ୍ରାର୍ଥୀ ହେଇ ନିର୍ବାଚନ ଲଢ଼ିବା । କମଳାକ୍ଷ ଯେ ନିର୍ବାଚନ ଜିଣିବ, ଏ ଆଶା କାହାର ନଥିଲା । କିନ୍ତୁ ଜଣେ ଚିତ୍ରଶିଳ୍ପୀ ବା ଚିତ୍ରକଳା ଅଧ୍ୟୟନ କରୁଥିବା ଛାତ୍ର ରାଜନୀତିର ଚକ୍ରବ୍ୟୂହ ଭିତରକୁ ଦୁଃସାହସର ସହ ଲମ୍ଫ ଦେଇପାରେ ଏହାହିଁ କଲେଜର ଇତିହାସ ପୃଷ୍ଠାକୁ ଗୁରିମନ୍ତ କରିଦେଲା । ନିଜେ ଚିତ୍ରକଳାର ଛାତ୍ର ହେଇଥିବାରୁ ସେ ତା'ର ସହପାଠୀଙ୍କୁ ନେଇ ରାତିଅଧିଆ ରାସ୍ତା ଉପରେ ଓ କାନ୍ଥବାଡ଼ରେ ପୋଷ୍ଟର ଲେଖୁଥିଲା ଓ ଦିନବେଳେ ସାଙ୍ଗସାଥୀଙ୍କ ଗହଣରେ ଭୋଟ ପ୍ରଚାର କରୁଥିଲା ।

ଅସୀମ ବସୁଙ୍କ ଝିଅ ଅତସୀ ଭଲ କବିତା ଲେଖୁଥିଲା ଓ କଲେଜ ଡ୍ରାମାରେ ଅଭିନୟ ମଧ୍ୟ କରୁଥିଲା । ଦିଲ୍ଲୀପ ଦାସ ଖୁବ୍ ଦରଦ ଦେଇ ରୋମାଣ୍ଟିକ୍ ଗୀତ ଗାଉଥିଲା । ତାବେଳକୁ ହ୍ରିଥିକ୍ ରୋଶନ୍ ସିନେମା ଜଗତରେ ଆବିର୍ଭାବ ହୋଇନଥିଲେ । କିନ୍ତୁ ଦିଲ୍ଲୀପ ହାତକଟା ଗଂଜି ପିନ୍ଧି ତାର ମାଂସଳ ବାହୁ ଯୁଗଳକୁ ପ୍ରଦର୍ଶନ କରି କଲେଜ ଝିଅମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ସାଜିଥିଲା ଓ ସାକ୍ଷାତ୍ ହ୍ରିଥିକ୍‌ଙ୍କ ପୂର୍ବଜ ଭଳି ଦେଖାଯାଉଥିଲା । ପ୍ରଥମ ବ୍ୟାଚ୍‌ର ପିଲାଙ୍କ ଭିତରେ ରଣଜିତ୍ ପରିଜା ଭଲ ପ୍ରଚ୍ଛଦଚିତ୍ର ଓ ଅଳଙ୍କରଣ ଚିତ୍ର

Digitized by srujanika@gmail.com

ମଧ୍ୟ କରୁଥିଲା । ପରବର୍ତ୍ତୀ ସମୟରେ ଅଧ୍ୟାପକ ବଳଦେବ ମହାରଥୀଙ୍କ ଉପଯୁକ୍ତ ଦାୟାଦ ଭାବେ ବ୍ୟବସାୟିକ କଳାରେ ସେ ବେଶ୍ ଚହଲ ପକେଇପାରିଲା । ରେଭେନ୍ସା ବିଶ୍ୱବିଦ୍ୟାଳୟରେ ସିଏ ଏବେ ଚିତ୍ରଶିଳ୍ପୀ ଭାବେ ଚାକିରୀ କରୁଛି । ଏହି ବ୍ୟାଚ୍‌ର ଭଲ ଛବି ଆଙ୍କୁଥିବା ପିଲାଙ୍କ ଭିତରେ ଥିଲା ବିନୋଦ ବିହାରୀ କର । ସାଦାସିଧା ଓ ଖୁବ୍ ବିଶ୍ୱସ୍ତ । ସେ ଭଲ ମାଙ୍କଡ଼ ଚିତ୍ର କରୁଥିଲା । ଅମର କୁମାର ଜେନା ଅଧ୍ୟାପକ ଡି.ଏନ୍.ରାଓଙ୍କୁ ସିଲ୍‌କ୍ ସ୍କ୍ରୀନ୍ ପ୍ରିଣ୍ଟିଂରେ ସାହାଯ୍ୟ କରି କିଛିଟା କୌଶଳ ଆୟତ୍ତ କରିଥିଲା । ଅଭିମନ୍ୟୁ ଜେନା ଅନ୍ୟମନସ୍କ ରହେ, କିନ୍ତୁ  ରେଖାଚିତ୍ରରେ ତାର ପାରଦର୍ଶିତା ଥିଲା । ଦୁର୍ଯ୍ୟୋଧନ ସେନାପତି ଅସମ୍ଭବ ବିଷଣ୍ଣ, କିନ୍ତୁ ମୁଠା ମୁଠା ଶରଧାବାଲି ଭଜନ ବୋଲିଲା ବେଳେ ସେ ଭାବରେ ଏତେ ବିହ୍ୱଳ ହେଇଯାଏ ଯେ ଶୁଣିବା ଲୋକକୁ ମନେହୁଏ ସିଏ ସତ ସତ ଶରଧା ବାଲି ମୁଠା ମୁଠା ହାତରେ ଧରି  ଜଗନ୍ନାଥ ପ୍ରେମରେ ତଲ୍ଲୀନ ହେଇପଡୁଛି । ଖୋର୍ଦ୍ଧାର ସୁଶାନ୍ତ କୁମାର ମହାନ୍ତି ବେଶ୍ ସ୍ମାର୍ଟ୍ । କୁଆଡୁ କାହାଦ୍ୱାରା ପ୍ରଭାବିତ ହେଇଥିଲା କେଜାଣି ଗୁଡାଏ ମୁଣ୍ଡବିହୀନ ମଣିଷଙ୍କ ତୈଳଚିତ୍ର କରୁଥିଲା । ସୋମନାଥ ଭଟ୍ଟାରିଆ ମୂଳରୁ ଚନ୍ଦାମୁଣ୍ଡିଆ, ନିରାଣିଆ ପିଲାଟେ । ଏବେଯାଏଁ ସେ ସେଭଳି ଅବସ୍ଥାରେ ଅଛି । ଓଡ଼ଗାଁର ଉମାଶଙ୍କର ଦାସ  ଭଲ ଜଳରଂଗର ଚିତ୍ର କରେ । ଏବେ ନୟାଗଡ଼ କଲେଜରେ ଚିତ୍ରଶିଳ୍ପୀ । ସେ ଥରେ ମୋତେ ବୁଝେଇବାକୁ ଚେଷ୍ଟାକଲା ଯେ କଲେଜରେ ଚାକିରି କଲେ ପ୍ୟାଣ୍ଟ ଓ କୋଟ୍ ପିନ୍ଧିବାକୁ ପଡ଼େ ।

ଏହିବର୍ଷର ପିଲାଙ୍କ ଭିତରେ ପ୍ରେମିକ ପ୍ରେମିକାଙ୍କ ସଂଖ୍ୟା ମଧ୍ୟ କମ୍ ନଥିଲା । ସେମାନଙ୍କ ବଣିଯୋଡ଼ି ସହଜରେ ବାରିହେଇଯାଉଥିଲା । କଲେଜ ଛାଡ଼ିବାର ପରବର୍ତ୍ତୀ କାଳରେ ସେମାନଙ୍କ ମଧ୍ୟରୁ ଅମର କୁମାର ଜେନା ଓ ଅତସୀ ବସୁ, ସଂଗ୍ରାମ କେଶରୀ କର ଓ ରୀନା ପୃଷ୍ଟି ସ୍ୱାମୀସ୍ତ୍ରୀ ହେଇ ଘର ସଂସାର କଲେ । କଲେଜରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ହେବା ସହିତ ପ୍ରେମୀ ଯୁଗଳଙ୍କ ସଂଖ୍ୟା ବଢ଼ିଲା । ସେ ସଂପର୍କରେ ବାରାନ୍ତରେ ଆଲୋଚନା କରାଯିବ । କଳାଜଗତରେ ବନ୍ଧୁବାନ୍ଧବୀ ବା ଗୁରୁଶିଷ୍ୟା ସ୍ୱାମୀସ୍ତ୍ରୀ ହେବାର ପରମ୍ପରା ଓଡ଼ିଶାରେ ଅତ୍ୟନ୍ତ 'ପ୍ରାଚୀନ' ମନେହୁଏ । ଏହି ପରମ୍ପରାର ଶୀର୍ଷରେ ଅଛନ୍ତି ବନ୍ଧୁ ଜଗଦୀଶ କାନୁନ୍‌ଗୋ ଓ ଚନ୍ଦ୍ରମଣି ବିଶ୍ୱାଳ । ଖଲ୍ଲିକୋଟ ଆର୍ଟ୍ ସ୍କୁଲ ବେଳରୁ ହିଁ ଏମାନେ ପ୍ରଥମ କରି କଳା-ଏକାନ୍ନବର୍ତ୍ତୀ ପରିବାରର ମୂଳଦୁଆ ପକେଇଥିଲେ ।

Digitized by srujanika@gmail.com

# ୯. ରେଗିଙ୍ଗ୍ ନୁହେଁ ସ୍ୱାଗତିକା

ସର୍ବତ୍ର ମହାବିଦ୍ୟାଳୟମାନଙ୍କରେ ରେଗିଙ୍ଗ୍‌ର ମାତ୍ରା ପ୍ରବଳ ହେବାରୁ ଏବଂ ଏହା ଶୋଭନୀୟତାର ସୀମା ଅତିକ୍ରମ କରି ବେଳେବେଳେ ନିର୍ଯ୍ୟାତନାରୁ ମଧ୍ୟ ବଳିପଡ଼ି ଧର୍ଷଣ ଓ ମୃତ୍ୟୁରେ ଉପନୀତ ହେଇଯିବା ଫଳରେ ଦେଶର ସର୍ବୋଚ୍ଚ ନ୍ୟାୟାଳୟ ସମୟକ୍ରମେ ଗଢ଼ିଉଠିଥିବା କଦର୍ଯ୍ୟ ପରମ୍ପରାକୁ ବନ୍ଦ କରିବା ପାଇଁ କଲେଜମାନଙ୍କୁ ନିର୍ଦ୍ଦେଶ ଦେବାର ବହୁଆଗରୁ ରେଗିଙ୍ଗ୍‌ର କୌତୁକ ମୋତେ କୌଣସି ପ୍ରକାରେ ପ୍ରଭାବିତ କରିନଥିଲା । ମୁଁ ଚାହୁଁଥିଲି ଅନ୍ତତଃ ଚାରୁକଳା ମହାବିଦ୍ୟାଳୟ ମାନଙ୍କରେ ସ୍ନେହାନୁବନ୍ଧନର ଗୋଟିଏ ସୁସ୍ଥ ପରମ୍ପରା ଗଢ଼ିଉଠୁ । ଶାନ୍ତିନିକେତନରେ ନବାଗତ ଓ ନବାଗତାମାନଙ୍କୁ ଫୁଲଚନ୍ଦନ ଦେଇ ସ୍ୱାଗତ କରିବାର ବିଧି ଅଛି । ବିଶ୍ୱକବି ରବୀନ୍ଦ୍ରନାଥ କେବଳ ବିଶ୍ୱବିଦ୍ୟାଳୟଟିଏ ପ୍ରତିଷ୍ଠା କରିନଥିଲେ, ବହୁ ଅଭିନବ ପରମ୍ପରା ଗଢ଼ିଦେଇ ସାଂସ୍କୃତିକ ସଚେତନତା ସୃଷ୍ଟି କରିଦେଇଥିଲେ । ଶାନ୍ତିନିକେତନ ଆମ୍ରକୁଞ୍ଜର ଘନସବୁଜ ଶୀତଳ ଛାଇରେ ଏହି ଉତ୍ସବଟି ପାଳିତ ହେବାର ମୁଁ ଆଗରୁ ଦେଖିଥିଲି । ଆଶ୍ଚର୍ଯ୍ୟ ଲାଗେ ଆମ ଖଲ୍ଲିକୋଟ କଳା ବିଦ୍ୟାଳୟରେ ଚାରିପାଞ୍ଚ ସରିକି ଶାନ୍ତିନିକେତନ-ଶିକ୍ଷାପ୍ରାପ୍ତ ଅଧ୍ୟାପକ ଅଧ୍ୟାପନା କରିଥିବା ସତ୍ତ୍ୱେ ଏବଂ ଅଧ୍ୟାପକଙ୍କ ମଧ୍ୟରୁ ଅଜିତ କେଶରୀ, ବିନୋଦ ରାଉତରାୟ ଓ ପରବର୍ତ୍ତୀ ସମୟରେ ଦୁର୍ଗାପ୍ରସାଦ ଦାସ ଓ ଅଲେଖ ଚରଣ ସାହୁ ଅଧ୍ୟକ୍ଷ ଦାୟିତ୍ୱ ତୁଲେଇଥିବା ସତ୍ତ୍ୱେ ସୁସ୍ଥ ପରମ୍ପରାଟିଏ ଗଢ଼ିଉଠିପାରି ନଥିଲା । ଆମବେଳେ ଖଲ୍ଲିକୋଟରେ ନା ରେଗିଙ୍ଗ୍ ହେଉଥିଲା ନା ସ୍ୱାଗତିକା । ଆମ ଉପର କ୍ଲାସରେ ଅଧ୍ୟୟନ କରୁଥିବା ପିଲାମାନେ ଆମ ପିଠିରେ କଟକୀ ଓ ଗଂଜାମୀର ଅସୂୟା ପ୍ରଣୋଦିତ ମୋହର ମାରି ଆମକୁ ବୃଷଭ ବନେଇ ଦେଇ ଲଢ଼େଇ ପାଇଁ ମଇଦାନକୁ ଛାଡ଼ି ଦେଉଥିଲେ ।

ଆମେ ସମସ୍ତେ ମିଶି ବି.କେ. କଲେଜରେ ଅଭିନନ୍ଦନ ପର୍ବଟିଏ ଆରମ୍ଭ କରିଦେଇଥିଲୁ । ମୋ ପ୍ରସ୍ତାବରେ ଅଧ୍ୟାପକ ଓ ଅନ୍ୟାନ୍ୟ ସହକର୍ମୀ ସମସ୍ତେ ଅନୁପ୍ରାଣିତ ହେଇଯାଇଥିଲେ । ବର୍ଷକୁ ବର୍ଷ ଶିକ୍ଷାବର୍ଷ ଆରମ୍ଭରେ ଏହା ପାଳିତ ହେଉଥିଲା, ଆଉ ଆମେ ଏହି ଅନୁଷ୍ଠାନର ନାଁ ଦେଇଥିଲୁ ସ୍ୱାଗତିକା । କଲେଜରେ ଆଡ୍‌ମିଶନ୍ କରିବା ପାଇଁ ପଠାଯାଉଥିବା ଚିଠିରେ ସ୍ୱାଗତିକାର ଦିନ ଓ ତାରିଖ ଜଣେଇ ଦିଆଯାଇଥାଏ । ପ୍ରବେଶିକା ପରୀକ୍ଷାରେ ଯୋଗଦେବାପାଇଁ ଆସୁଥିବା ବେଳଠୁ ଉପରକ୍ଲାସର ପିଲାମାନେ

Digitized by srujanika@gmail.com

ନୂଆପିଲାଙ୍କୁ ସ୍ୱାଗତିକା ସଂପର୍କରେ ସୂଚନା ଦେଇସାରିଥାନ୍ତି । ପ୍ରବେଶିକା ପାଇଁ ଅନୁଷ୍ଠିତ ହେଉଥିବା ମୌଖିକ ପରୀକ୍ଷାରେ ସବୁ ଅଧ୍ୟାପକ, ଅଧ୍ୟାପିକା ବିଚାରକ ଭାବେ ବସିଥାନ୍ତି । କଳା ମହାବିଦ୍ୟାଳୟରେ ଯେତେବେଳେ ପିଲାଟିଏ ପଢ଼ିବାକୁ ଆସିଛି, ତା'ର ଚିତ୍ରକଳାରେ ରୁଚି ରହିବା ସ୍ୱାଭାବିକ । ଚିତ୍ରକଳାର ନିର୍ଦ୍ଦିଷ୍ଟ ପରିଧି ବାହାରେ ଆଉ କେଉଁ କେଉଁ ବିଭାବରେ ତା'ର ପ୍ରବେଶ ଅଛି ତାକୁ ଆକଳନ କରାଯାଏ । ଏସବୁ ବିଭାବ ଭିତରେ ଥାଏ, ଗୀତ, ନୃତ୍ୟ, କବିତା ଆବୃତ୍ତି, ଖେଳ, କୌତୁକ ପ୍ରଦର୍ଶନ ପ୍ରଭୃତି । ଭୁବନେଶ୍ୱର ସହରର ପିଲାଙ୍କ ଅପେକ୍ଷା, ଗାଁ ଗହଳି ଓ ଦୂରଦୂରାନ୍ତରୁ ଆସିଥିବା ପିଲାଙ୍କ ଉପରେ ଆମେ ବେଶି ଗୁରୁତ୍ୱ ଦେଉଥିଲୁ । ଡଂଫା, ଡହରା ଓ ଛତରା ଟୋକାଙ୍କ ଅନୁପ୍ରବେଶ ରୋକିବା ପାଇଁ ଆମର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ବେଳେବେଳେ ବିଭିନ୍ନ ମହଲରୁ ସୁପାରିଶ ନେଇ କିଛି ଅବାଞ୍ଛିତ ଛାତ୍ର କଲେଜରେ ଅଧ୍ୟୟନ କରିବା ପାଇଁ ପଶି ଆସୁଥିଲେ । ଅବଶ୍ୟ ସେମାନଙ୍କ ଭିତରୁ ଅଧିକାଂଶ କଲେଜର ସୃଜନଶୀଳ ପରିବେଶର ପ୍ରଭାବରେ ପରିବର୍ତ୍ତିତ ହୋଇଯାଉଥିଲେ ତ ବେଳେବେଳେ ଧାନବିଲରୁ ବାଲୁଙ୍ଗା ଉପାଡ଼ିଲା ପରି କିଛି ଅବାଧ ଛାତ୍ରଙ୍କୁ କଲେଜରୁ ବହିଷ୍କାର କରିବାକୁ ମଧ୍ୟ ପଡୁଥିଲା ।

ସ୍ୱାଗତିକା ଉତ୍ସବରେ କଲେଜର ଇନ୍‌ଷ୍ଟ୍ରକ୍‌ଟର୍ ଗଜେନ୍ଦ୍ର ସାହୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ରହୁଥିଲା । ଗଜେନ୍ଦ୍ର ଜଣେ ସଂଗୀତଜ୍ଞ ଓ ସଫଳ ସଂଗଠକ ମଧ୍ୟ । ସେ ନିଜେ ଚମତ୍କାର ଗୀତ ବୋଲୁଥିଲେ ଏବଂ ପିଲାମାନଙ୍କୁ କହିପୁଛି, ଅନୁପ୍ରାଣିତ କରି ସେମାନଙ୍କୁ ସଂଗଠିତ କରିପାରୁଥିଲେ । ଚିତ୍ର ଶିଖେଇବା ଅପେକ୍ଷା ଗଜେନ୍ଦ୍ରଙ୍କର ଏ ଗୁଣଟି କଲେଜର ବହୁକାମରେ ଆସିଛି । ବିଭିନ୍ନ ପିଲାଙ୍କୁ ବିଭିନ୍ନ ଦାୟିତ୍ୱ ଦେଇ ସେ ଫୁଲ, ଚନ୍ଦନ ଯୋଗାଡ଼ କରନ୍ତି । ଗୀତ ନାଚ ପାଇଁ ହାରମୋନିୟମ୍ ତୁଗିତବଲା ଭଡ଼ାରେ ଆଣନ୍ତି । ରିହର୍ସଲ୍ କରି ଆବହ ସଂଗୀତ ପ୍ରସ୍ତୁତ କରନ୍ତି । ଶାନ୍ତିନିକେତନରେ ପିଲାଏ ଯିମିତି 'ଆମାଦେର ଶାନ୍ତିନିକେତନ' ଗୀତଟି ବସିଲେ ଉଠିଲେ ହସିଲେ କାଶିଲେ ଗାଇଥାନ୍ତି, ମୁଁ ଭାବୁଥିଲି ଆମ କଲେଜର ସିମିତି କିଛି ଗୋଟିଏ ନିର୍ଦ୍ଦିଷ୍ଟ ଆବହ ସଂଗୀତ ଠିକଣା ହୋଇପାରନ୍ତାକି ? ତା'ହେଲେ ସବୁପିଲା ସ୍ୱାଗତିକାର ମର୍ମସଂଗୀତ ଭାବେ ତାକୁ ବୋଲନ୍ତେ । ଅବଶ୍ୟ ମୁଁ ସଚେତନ ଥିଲି ସଂଗୀତଟିଏ ମାଟିରୁ ଉଦ୍‌ଭବେ । ମାଟିରୁ ଗନ୍ଧ ନିଏ, ଆକାଶରୁ ସ୍ୱପ୍ନ ନିଏ ଓ ପରିବେଶରୁ ସଂପର୍କ ନେଇ ରସାଳ ହୁଏ । ଏତିକି ଚାଖଣ୍ଡେ ଭଡ଼ାଘରେ କାହାକୁ ନେଇ ସଂଗୀତଟିଏ ରଚନା ହୋଇପାରିବ ? ପୁଣି ଭଡ଼ାଘର ଆଜି ଅଛି କାଲିକି ବଦଳିଯିବ ଓ ତା' ସଂଗେ ବଦଳିଯିବ ଗୀତର ଉପାଦାନ, ଉପମା, ଉପମେୟ ଓ ରୂପକଳ୍ପ । କଲେଜ ଯେତେବେଳେ ଉଦୟଗିରି ଓ ଖଣ୍ଡଗିରିର କୋଳକୁ ଗଲା ସେତେବେଳକୁ ମୁଁ ଆଉ କଲେଜରେ ନଥିଲି । ଯେଉଁମାନେ ହୁଏତ ଏଭଳି ଗୋଟିଏ ସଂଗୀତର ପରିକଳ୍ପନା କରିଥାନ୍ତେ ସେମାନେ ଥିଲେ ଏକ ରକ୍ଷଣଶୀଳ ସୀମିତ ପରମ୍ପରାର ।

Digitized by srujanika@gmail.com

କଚ୍ଚନାଛକ ଭଡ଼ାଘରେ କଲେଜ ଥିଲାବେଳେ ଆମ ଅଫିସ୍ ପାଖାପାଖି ମାଛ ଗବେଷଣା କରପୋରେସନ୍‌ରେ ଗୀତିକାର ନାରାୟଣ ପ୍ରସାଦ ସିଂହ ଚାକିରୀ କରୁଥାନ୍ତି । ତାଙ୍କୁ ଅନୁରୋଧ କରି ଗୀତଟିଏ ଲେଖେଇ ଆଣିଲି । ନାରାୟଣ ପ୍ରସାଦ ହୁଏତ ନିଜ ମନଲାଖି ଗୀତଟିଏ ଲେଖିଲେ, କିନ୍ତୁ ସେଥିରେ ସୃଜନ ଓ କଳାତ୍ମକତାର ଆସ୍ପୃହା ରହିଲାନାହିଁ । ତା'ପରେ ଆମେ କିଛି ଅଧ୍ୟାପକ ସାମୂହିକ ଭାବେ ଗୀତଟିଏ ପ୍ରସ୍ତୁତ କଲୁ । ତା' ବି ଯେ ସିମିତି କିଛି ଗୋଟିଏ ଉଚ୍ଚକୋଟୀର ସଂଗୀତ ଥିଲା, ଆମ ପ୍ରାଣର ଉଚ୍ଛୁଳା ସଂଗୀତଥିଲା ସେ କଥା ମୋଟେ ନୁହେଁ । ଦି' ଚାରିଥର ତାହା ହୁଏତ ସ୍ୱାଗତିକା ଉତ୍ସବରେ ବୋଲାହୋଇଥିବ । ତା'ପରେ ଅବହେଳାକ୍ରମେ ତାହା ଅଲୋଡ଼ା ହୋଇପଡ଼ିଲା । ଗଜେନ୍ଦ୍ର ପ୍ରତିଥର ତାଙ୍କୁ ସୁହେଇଲା ଭଳି ଗୀତଟିଏ ପ୍ରସ୍ତୁତ କରିଦିଅନ୍ତି ଆଉ ମୋତେ ଥରେ ଅଧେ ଶୁଣେଇଦେଲା ପରେ ସ୍ୱାଗତିକା ଉତ୍ସବ ପାଇଁ ତାହା ଗ୍ରହଣୀୟ ହେଇଯାଏ ।

ସ୍ୱାଗତିକା ଉତ୍ସବ ପାଇଁ ବାହାରୁ ବଶିଷ୍ଟ ଶିଳ୍ପୀ, କବି ଓ ସଂଗୀତଜ୍ଞଙ୍କୁ ନିମନ୍ତ୍ରଣ କରି ଡକେଇ ଅଣାଯାଏ । କଲେଜ ସଜେଇ ହେଇପଡ଼ି ଉତ୍ସବ ମୁଖର ଲାଗେ । ଉତ୍ସବ ପାଇଁ କାର୍ପେଟ୍, ବିଛଣା ଚାଦର, ଗଦି, ମାଣ୍ଡି ମୁଚୁଳା ଯାହା ଆବଶ୍ୟକ ହୁଏ ପିଲାଏ ମୋ କ୍ୱାର୍ଟରରୁ ନିର୍ବିବାଦରେ ବୋହିଆଣନ୍ତି । ସବୁ ପିଲା ଓ ଅଧ୍ୟାପକ ଏକାଠି ବସନ୍ତି । ଉପର କ୍ଲାସର ଝିଅ ଓ ପୁଅପିଲା ମିଳି ମିଶି ନବାଗତଙ୍କୁ ଫୁଲଚନ୍ଦନ ଦେଇ ସ୍ୱାଗତ ଜଣାନ୍ତି । ତା'ପରେ ନୂଆ ପିଲାମାନଙ୍କୁ ସ୍ୱାଗତିକାଦିନ ସେମାନଙ୍କର ପରିଚୟ ଦେବା ପାଇଁ କୁହାଯାଏ । ତା'ପରେ ଆରମ୍ଭ ହେଇଯାଏ ସ୍ୱାଗତିକା ଉତ୍ସବର ଅସଲ ପର୍ବ । ନୂଆ ପିଲାମାନେ ନିଜ ନିଜର ଭାବମୂର୍ତ୍ତି ଦେଖେଇବା ପାଇଁ ବାହାରି ପଡନ୍ତି । କିଏ ଗୀତ ବୋଲେ ତ ଆଉ କିଏ ଅଭିନୟ କରେ । କିଏ ପୁଣି ଆବୃତ୍ତି କରେ ପିଲାଦିନର କବିତା ଓ ସ୍କୁଲ କଲେଜରେ ଅଭିନୟ କରିଥିବା କୌଣସି ନାଟକର ସଂଳାପ । ପ୍ରତ୍ୟେକ ବର୍ଷର ଆଗନ୍ତୁକ ଛାତ୍ରଙ୍କ ମଧ୍ୟରେ ଜଣେ ଅଧେ ନାରୀସୁଲଭ ଢଙ୍ଗଢାଙ୍ଗର ପିଲା ବି ଥାଆନ୍ତି । କାଉ ସଭାରେ ବଗଭଳି ସେମାନେ ତୁରନ୍ତ ବାଛି ହେଇପଡନ୍ତି । ସେଇମାନେ ତା ପରବର୍ଷ ସ୍ୱାଗତିକା ଉତ୍ସବରେ ବେଶ୍ କାମରେ ଆସନ୍ତି । ଆମେ ଖଲ୍ଲିକୋଟରେ ପଢ଼ିଲାବେଳେ ଏଥିରୁ ଦୁଇତିନି ନୀତିଗତ ଭାବେ ପ୍ରତ୍ୟେକ କ୍ଲାସରେ ଅଧ୍ୟୟନ କରୁଥାନ୍ତି । କୁହାଯାଏ ପ୍ରତ୍ୟେକ ସର୍ଜନଶୀଳ ବ୍ୟକ୍ତି ଅର୍ଦ୍ଧେକ ନାରୀ, ଅର୍ଦ୍ଧେକ ପୁରୁଷ । କତିପୟଙ୍କ ନିକଟରେ ଆନୁପାତିକତାର ବିଭ୍ରାଟ ଘଟିଥାଏ । ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ପାର୍ବତୀଙ୍କମ ଲାସ୍ୟମୟୀ ଭାବ ଟିକିଏ ଗୁରୁ ହେଇଗଲେ ସେଇଠୁ ଆରମ୍ଭ ହେଇଯାଏ ନିତମ୍ବର ପହୁଞ୍ଚାଣି ଆଉ କଥାରେ ଲଥା, 'ମଲା ମଲା, ଏଇ କଥାକୁ, ନାଆ ପେଲି ଦେଲି କଲିକତାକୁ' ।

ସ୍ୱାଗତିକାର ସବୁଠାରୁ ଉପଭୋଗ୍ୟ ପରିବେଷଣ ହେଲା କଉତୁକ ପ୍ରଦର୍ଶନ ବା ବ୍ୟଙ୍ଗ ପ୍ରଦର୍ଶନ । ଅଧକ୍ଷ ଓ ଅଧ୍ୟାପକମାନଙ୍କର ଚାଲିଚଳନ, ହାବଭାବର ଅବିକଳ ନକଲ

Digitized by srujanika@gmail.com

କରି ପରିବେଷଣ କରିବା । ବନ୍ଧୁ ଗୁମରକଥା ଏହି ପରିବେଷଣରେ ପ୍ରଘଟ ହୋଇଯାଏ । ସୌଜନ୍ୟ ଦୃଷ୍ଟିରୁ ଅଧ୍ୟାପିକାଙ୍କୁ ପିଲାଏ ତାଙ୍କ ତର୍ଜମାରୁ ବାଦ ଦେଇଥାନ୍ତି । ଦୁଇଜଣ ଅଧ୍ୟାପକ ଚନ୍ଦ୍ରମଣି ଓ ବ୍ୟୋମକେଶ ସେମାନଙ୍କ ସଂପର୍କରେ କୌତୁକିଆ ମନ୍ତବ୍ୟ ପ୍ରକାଶ ନ କରିବା ପାଇଁ ପିଲାଙ୍କୁ ଆଗରୁ ତାଗିଦା କରିଦେଇଥାନ୍ତି । ଏଣୁ ପିଲାଏ ସ୍ୱାଗତିକା ମଞ୍ଚରେ ସେମାନଙ୍କୁ ଅବ୍ୟାହତି ଦେଇଦେଉଥିଲେ ମଧ ପରଦାର ଅନ୍ତରାଳେ ସେମାନଙ୍କ ନ୍ୟୂନପଣ ଓ ରକ୍ଷଣଶୀଳ ମନୋଭାବକୁ ବେଶ୍ ଚର୍ଚ୍ଚା କରିଥାନ୍ତି । ଯିଏ ସମାଲୋଚନାକୁ ଭୟ କରେ ସିଏ କି ବା ମଣିଷ ? ସଚରାଚର ଦେଖାଯାଇଥାଏ, ବିଜ୍ଞଲୋକମାନେ ନିଜକୁ ସମାଜର ପ୍ରତିଛବିରେ ଇତର ଚରିତ୍ର ଭାବେ ପ୍ରତିଫଳିତ କରେଇ ନିଜ ଚରିତ୍ରର ଯଥାର୍ଥ ମୂଲ୍ୟାୟନ କରିଥାନ୍ତି ।

ଅଧକ୍ଷ ଅଣ୍ଟାରେ ହାତଦେଇ ଠିଆ ହେବା ଓ ଭାଷଣ ଦେବାର ଭଙ୍ଗି, କଥା କହିବାର ଶୈଳୀ, ଅଧ୍ୟାପକ ଶିବ ପାଣିଗ୍ରାହୀଙ୍କ ବାଳସଜଡ଼ା ଓ ଷ୍ଟାଇଲିଆ ପୋଷାକ ପିନ୍ଧିବାର ଢ଼ଙ୍ଗ, ଅଧ୍ୟାପକ ଡି.ଏନ୍.ରାଓଙ୍କ ଥନ୍ତଲା ପେଟ ଓ ଚନ୍ଦାମୁଣ୍ଡ, ଜୟନ୍ତ ସାର୍ କ୍ଲାସରେ ରାଗିଯାଇ ଖୁବ୍ ବଡ଼ପାଟିରେ ପିଲାଙ୍କୁ 'ଚୋପ୍' କହିବାର ବାଗ ବା ଭାସ୍ୱର୍ଯ୍ୟ ସାର୍ ଦାମୋଦର ବେହେରା କ୍ଲାସରୁ କୌଶଳକ୍ରମେ ଖସିଯାଇ କଞ୍ଚନା ହଲ୍‌ରେ ମ୍ୟାଟିନି ସୋ ଦେଖା ପ୍ରସଙ୍ଗ ଅତି ଦକ୍ଷତାର ସହିତ ପିଲାମାନେ ଅଭିନୟ କରିଥାନ୍ତି । ସିନେମା ହଲ୍‌ରେ 'ଏଡଲ୍ଟ ସୋ' ପରିଦର୍ଶିତ ହେଉଥିବାବେଳେ ଦାମୋଦର ହଠାତ୍ ଛାତ୍ର ଅଞ୍ଜନ କିମ୍ବା ସୁବ୍ରତ ସହିତ ଦେଖାହୋଇଗଲେ କହି ପକେଇବେ 'ମହା ମୁସ୍କିଲ୍, ମୁଁ ଆସିଥିଲି ବୋଲି କହିବନି ହୋ ତମେ ପ୍ରିନ୍‌ସିପାଲ୍‌ଙ୍କୁ ।' ଆମ କଲେଜରେ ଦିନା କେତେ ସୁଧାଂଶୁ ଶତପଥୀ ଅତିଥି ଅଧ୍ୟାପକ ଭାବେ ପିଲାଙ୍କୁ କଳା ଇତିହାସ ପଢ଼ଉଥିଲେ । ସେ କଥାକଥାକେ 'ତ' ବ୍ୟବହାର କରନ୍ତି । ତ.... ପ୍ରଦୋଷ ମିଶ୍ର ସେତେବେଳର ଛାତ୍ର ଖୁବ୍ ରସିକତା ସହିତ ତାଙ୍କ ପାଠ ପଢ଼େଇବା ଢ଼ଙ୍ଗ ଅନୁକରଣ କରି ସ୍ୱାଗତିକା ମଞ୍ଚରେ ପରିବେଷଣ କରେ । ତ.... ସିନ୍ଧୁ ସଭ୍ୟତା, ବାପା ତ.... ମହେଞ୍ଜୋଦାରୋ ଠାରୁ ହରପ୍ପା ଯାଏଁ ତ.... କଳାର... ଇତ୍ୟାଦି । କେରିକେଚର୍ କରିବାରେ ପ୍ରଦ୍ୟୁମ୍ନ ମହାନ୍ତି (କୁଆଁ) ଅଂଜନ କୁମାର ସାହୁ, ପ୍ରଦୀପ ମହାନ୍ତି (ପଇ), ଓଝା, ଦିଲ୍ଲୀପ କୁମାର ତ୍ରିପାଠୀ ଓ ଜଗନ୍ନାଥ ପଣ୍ଡା ଖୁବ୍ ପାରିବାର । ଅଧ୍ୟାପକ ଶିବ ପାଣିଗ୍ରାହୀ ଓ ଅଧ୍ୟାପକ ଦେବରାଜ ସାହୁଙ୍କ ସ୍ୱର ଓ କଥାକହିବା ଭଙ୍ଗି ଅନୁକରଣରେ ଅଂଜନ ଗୋଟିଏ ରେକଡିଙ୍ଗ୍ ପ୍ରସ୍ତୁତ କରିଥିଲା । ଟେପ୍‌ଟି ଶୁଣିଲେ ଲାଗୁନଥିଲା ଯେ ଶିବ ସାର୍ ଓ ଦେବରାଜ ସାରଙ୍କ ଛଡ଼ା ଆଉ କିଏ ଦି'ଜଣ ଅଭିନୟ କରିଛନ୍ତି ।

ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ଗଜେନ୍ଦ୍ର ସାହୁ ଓ ମୋତେ ଉପଲକ୍ଷ କରି ଦିଲ୍ଲୀପ ତ୍ରିପାଠୀ ଭଂଜୀୟ ଶୈଳୀରେ ନିଜେ ଭଣତି କରିଥିବା ଗୀତଟିଏ ଏବେ ମୋର ଝାପ୍‌ସା ମନେ ପଡୁଛି । ମୁଁ ଏଠି ତାକୁ ଉଦ୍ଧାର କଲି:

Digitized by srujanika@gmail.com

ରମ୍ଭାଫଳ ଦିନାକୁ ଦେବି (ଦିନା ମାନେ ଦିନନାଥ ପାଠୀ)
ମନ ତୋଷିବି । (ଘୋଷା)

ସେ ଯେବେ କରିବେ ମାନ
କରି ତାହା ଅନୁମାନ
ଚୁଡ଼ା ବ୍ରେଡ୍ ଦହି ଭୁଂଜାଇବି
ରମ୍ଭାଫଳ ଦିନାକୁ ଦେବି ।
ମନ ତୋଷିବି । (ଘୋଷା)

ଯେ ଯଦି ନୋହିବେ ହର୍ଷ
ତାଙ୍କୁ ଆଉ ନକରି ବିରକ୍ତ
ନାରାୟଣ ନାରାୟଣ ଭଜିବି
ରମ୍ଭା ଫଳ ଦିନାକୁ ଦେବି ।
ମନ ତୋଷିବି । (ଘୋଷା)

ନାରାୟଣ କରିଲେ ମାନ
ଥାପିଁ ଧୂଳିଗୁଣ୍ଡି ପାନ
ଏମ୍‌ଟାଣ୍ଡି ଏମ୍‌ଟାଣ୍ଡି କହିବି
ରମ୍ଭାଫଳ ଦିନାକୁ ଦେବି ।
ମନ ତୋଷିବି । (ଘୋଷା)

ଡି.ଏନ୍. ନହେଲେ ସରସା
କରିବି ଗଜେନ୍ଦ୍ର ଭରସା
ଖୁଆଇବି ଗୁଗୁନି ପର୍ଯ୍ୟାପ୍ତ
ବରା ପିଆଜି ଅବ୍ୟର୍ଥ
ରମ୍ଭାଫଳ ଦିନାକୁ ଦେବି ।
ମନ ତୋଷିବି । (ଘୋଷା)

ସବୁଠୁ ହେଲେ ନିରାଶ
ପହଞ୍ଚିବି କଇଳାସ
ହାତେ ଧରି କଳା ରଙ୍ଗ
ତାହାହିଁ ଶିବଙ୍କ ଭାଙ୍ଗ
ରମ୍ଭାଫଳ ଦିନାକୁ ଦେବି ।
ମନ ତୋଷିବି । (ଘୋଷା)

Digitized by srujanika@gmail.com

# ୧୦. ବ୍ରହ୍ମେଶ୍ୱର ବେଢ଼ାରେ ପାଠପଢ଼ା

ଏବେ ବି ମୋର ଧାରଣା ରହିଛି ଯେ କଳା ମହାବିଦ୍ୟାଳୟମାନଙ୍କରେ ଶ୍ରେଣୀଗୃହ ଗୁଡିକୁ ଶ୍ରେଣୀ ବା କ୍ଲାସ୍‌ରୁମ୍ ନକହି ଯେତେ ଷ୍ଟୁଡ଼ିଓ କହ, ୱାର୍କସପ୍ କହ ବା ଆଉ ଯାହାବି କିଛି କହ ଚାରିକାନ୍ଥର ବେଷ୍ଟନୀ ମଧ୍ୟରେ ଆର୍ଟ୍ ପାଠପଢ଼ା କଦାପି ସମ୍ଭବ ନୁହେଁ। ଏଭଳି ଅବବୋଧର ଦୁଇଟି ଦିଗ; ଗୋଟିଏ ମହାତ୍ମାଗାନ୍ଧି କହିଥିବା ପ୍ରକାରେ– 'ମୋ ଘରର ଚାରିକାନ୍ଥ ନଥାଇ ପାରେ, ମୁଣ୍ଡ ଉପରେ ଛାତ ବି ନଥାଇ ପାରେ, ତାରାଖଚିତ ନୀଳ ଆକାଶ ତଳେ ମୋ ମନରେ ଯେଭଳି ମହାଜାଗତିକ ଭାବନା ଉଦ୍ରେକ ହୁଏ, ତାହା ଚାରିକାନ୍ଥର ପରିସୀମା ମଧ୍ୟରେ ସମ୍ଭବ ନୁହେଁ।' ଗାନ୍ଧିଜୀଙ୍କ କଳାଚିନ୍ତାରେ ଉପରୋକ୍ତ ଭାବନା କଳାକୁ ଜାଗତିକତାରୁ ଓ ଭୌତିକତାରୁ ମୁକ୍ତ କରିବାର ପ୍ରଧାନ ସାଧନା। ଅନ୍ୟ ଦିଗଟି ହେଲା କଳାର ଗୋଟିଏ ଧରାବନ୍ଧା ନିୟମ ଓ ଗଡ୍ଡାଳିକା ପ୍ରବାହରୁ ମୁକ୍ତି। ଆଧୁନିକ କଳାଶିକ୍ଷା ଦ୍ୱିତୀୟ ଦିଗଟି ଉପରେ ବେଶି ଗୁରୁତ୍ୱ ଦିଏ। ଏଇଠି ହିଁ ପାରମ୍ପରିକ ପଟଚିତ୍ର ଓ ପଥର ଖୋଦେଇ ଏବଂ ଆମ ଆଧୁନିକ କଳା ଭିତରେ ଅବବୋଧର ତାରତମ୍ୟ। ପାରମ୍ପରିକ ପାଠ୍ୟକ୍ରମରେ ସବୁ ସ୍ଥିର। ବାପଅଜା ଅମଳରୁ ଗଡ଼ିଆସିଥିବା ଧାରା ହିଁ ଶିକ୍ଷଣୀୟ, ଅନୁକରଣୀୟ, ଡ଼େଣା କଅଁଳେଇ ଉଡ଼ିଯିବାର ଉପକ୍ରମ ହିଁ ବୃଥା।

ଚାଳିଶି ପଞ୍ଚଚାଳିଶି ପିଲା ଏକାଠି ବସି କିମ୍ବା ଠିଆ ହେଇ ଚିତ୍ରଆଙ୍କିବା ପାଇଁ କଲେଜରେ ଘର ନଥିଲା। ପିଲାଏ ଦୁଇ ତିନି ବଖରାରେ ବାଣ୍ଟି ହେଇଗଲେ ସେମାନଙ୍କୁ ତଦାରଖ କରିବା ପାଇଁ ବା ଜଣେ ବରିଷ୍ଠ ଶିଳ୍ପୀ ଭାବେ ସେମାନଙ୍କୁ ସଖ୍ୟ ଦେବା ପାଇଁ କଲେଜରେ ଜଣକରୁ ଦି'ଜଣ ମଣିଷ ବି ନଥିଲେ। ମୁଁ ଜଣେ ହିଁ ଥିଲି ଚକର ଅଖ, ପରିଧି ଓ କେନ୍ଦ୍ର। ଏଣୁ ଅଧିକାଂଶ ଦିନ ଛାତ୍ରଛାତ୍ରୀଙ୍କୁ ସଙ୍ଗରେ ନେଇ ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାକୁ ପଳେଇ ଯାଏ।

ଆର୍ଟ୍ କଲେଜମାନଙ୍କର ପାଠ୍ୟକ୍ରମରେ 'ନେଚର୍ ଷ୍ଟଡି' ନାଁରେ ଯେଉଁ ବ୍ୟବସ୍ଥା ଅଛି, ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାରେ ପାଠପଢ଼ା ସେହି ବ୍ୟବସ୍ଥାର ଯଦିଓ ସଂପୂର୍ଣ୍ଣ ଅନୁପନ୍ଥୀ ନୁହେଁ ତଥାପି ସମଗ୍ର କଲେଜଟି ମୁକ୍ତ ହିଲ୍ଲୋଳରେ, ଏକାଦଶ ଶତାବ୍ଦୀର ପାଷାଣ ଖୋଦିତ ଭାସ୍କର୍ଯ୍ୟମାନଙ୍କ ଗହଣରେ ପୁନର୍ନବିତ ହେଇଯାଉଥିଲା। ପିଲାଏ ଇଜଲ୍, ଷ୍ଟାଣ୍ଡ୍, ବୋର୍ଡ଼୍ ଥୋଇ ଚିତ୍ରାଙ୍କନରେ ମଜ୍ଜି ଯାଉଥିଲେ।

Digitized by srujanika@gmail.com

ସ୍କୁଲମାନଙ୍କରେ ଚିତ୍ରଶିକ୍ଷକମାନେ ପିଲାଙ୍କ ଡ୍ରଇଁଖାତାରେ ଯେଉଁଳି ଅବିଚାର ଭାବେ ସଂଶୋଧନ କରନ୍ତି ଏବଂ ମାର୍କ୍ ଦେଇ ଚିତ୍ରର ମୂଲ୍ୟାୟନ କରନ୍ତି ତାହା ବିଧିସମ୍ମତ ଚିତ୍ରଶିକ୍ଷାର ଅଙ୍ଗ ନୁହେଁ । କାରଣ ଚିତ୍ରଶିକ୍ଷାରେ ଆଦର୍ଶ ସ୍ଥାନୀୟ ପରିଚିତି ସିନା ଅଛି, ଅନୁକରଣର ଚରମ ପର୍ଯ୍ୟାୟ ନାହିଁ । ଗାଈ ଚିତ୍ର ଆଙ୍କିବାର ଏକ ନିର୍ଦ୍ଦିଷ୍ଟ ଧାରା ସମ୍ଭବ ନୁହେଁ । ସିମିତି ବି ସମ୍ଭବ ନୁହେଁ ଗୋଟିଏ ଗାଈର ଚିତ୍ରଟି ସର୍ବଜନ ଗ୍ରହଣୀୟ ହେବା । ଏଭଳି ହେବା ଉଚିତ ବି ନୁହେଁ । ଏଣୁ ଚିତ୍ରଣ ପ୍ରଣାଳୀରେ ପର୍ଯ୍ୟାପ୍ତ ସମ୍ଭାବନା ହିଁ ଆଧୁନିକ କଳାଶିକ୍ଷାର ଶ୍ରେୟ ।

ବ୍ରହ୍ମେଶ୍ୱର ବେଢ଼ାର କଲେଜଟି ରୁଚି ଭିତ୍ତିରେ ବିଭିନ୍ନ ବିଭାଗରେ ଆପେ ଆପେ ବିଭକ୍ତ ହେଇ ଯାଉଥିଲା । ସେଗୁଡ଼ିକୁ ସ୍କେଚିଙ୍ଗ୍ କ୍ଲାସ୍, ଜଳରଙ୍ଗ ପ୍ରଶିକ୍ଷଣ କ୍ଲାସ୍, ତୈଳଚିତ୍ର ଷ୍ଟୁଡ଼ିଓ ଓ କଳା ଇତିହାସର ଶ୍ରେଣୀଗୃହ କୁହାଯାଇପାରେ । ଏସବୁ ଶ୍ରେଣୀଗୃହମାନଙ୍କର ଛାତ ତ ନଥିଲା, କାନ୍ଥର ପ୍ରତିବନ୍ଧକ ମଧ୍ୟ ନଥିଲା । ପିଲାମାନେ ମନ୍ଦିର ବେଢ଼ାରେ ପହଞ୍ଚିଗଲେ ବ୍ରହ୍ମେଶ୍ୱର ମନ୍ଦିରର ପୂଜକ ଶିବପାର୍ବତୀଙ୍କ ମଙ୍ଗଳଗାନରେ ପରିବେଶକୁ ମନ୍ତ୍ରିତ କରିଦେଉଥିଲା । ପୂଜକ ତା ବୃତ୍ତିର ଆବଶ୍ୟକତାଠାରୁ ବହୁତ ଅଧିକା ଜାଣିଥିଲା ଓ ବ୍ରହ୍ମେଶ୍ୱର ମନ୍ଦିରର ଐତିହ୍ୟ ସଂପର୍କରେ ପୂଜାରୀର ରକ୍ଷଣଶୀଳ ବେଷ୍ଟନୀ ମଧ୍ୟରୁ ଉତୁରି ପଡ଼ି ସିଏ କଲେଜର ବନ୍ଧୁ ହେଇ ସାରିଥିଲା । ଆମେ ଆଧୁନିକ କଳାଶିକ୍ଷା କହୁଥିଲେ ମଧ୍ୟ, ଆମ ପାଠପଢ଼ା ଶିବଙ୍କ ଆରାଧନାରୁ ଆରମ୍ଭ ହେଉଥିଲା । ଶିବ କାଳ, କଳା, ଛନ୍ଦ ଓ ନାଦର ଅଧିଷ୍ଠାତ୍ରୀ ଦେବତା । ଶିବ ପ୍ରଳୟର ଅଧିଷ୍ଠାତା ବୋଲି ସୃଷ୍ଟିର ଉତ୍ସ । ଶିବଙ୍କୁ ନୃତ୍ୟ ସହିତ ସଂପର୍କିତ କରାଯାଉଛି । କିନ୍ତୁ ଚିତ୍ର, ନୃତ୍ୟର ଆଦି ପ୍ରେରଣା ବୋଲି ଆମେ ସାଧାରଣତଃ କଳନା କରି ନଥାଉ ।

ବ୍ରହ୍ମେଶ୍ୱର ମନ୍ଦିରର ଆଧ୍ୟାତ୍ମିକ ଓ କଳାତ୍ମକ ପରିସରରେ ପ୍ରତ୍ୟହ କଲେଜର ପାଠପଢ଼ା ଆରମ୍ଭ ହୁଏ । ନିଜକୁ ମୁଁ ଅଧ୍ୟକ୍ଷ ଜ୍ଞାନ କରିପାରେନି । ପିଲାଙ୍କ ସାଙ୍ଗରେ ମିଶି ମୁଁ ମଧ୍ୟ ଛବି ଆଙ୍କେ । ଛବି ରଚନା ଭିତରୁ ବାର୍ତ୍ତାଳାପର ଆବାହାୱା ଉଲ୍ଲସି ଉଠେ ଏବଂ ତାହା କଳା ସମାଲୋଚନା ଓ କଳା ଇତିହାସ ପର୍ଯ୍ୟାୟରେ ପୂର୍ଣ୍ଣତା ପାଏ । କ୍ୟୁରେଟର୍ ବେଳର ପ୍ରତ୍ନତାତ୍ତ୍ୱିକ ଅବବୋଧ ଏବଂ ପର୍ଯ୍ୟଟନ ଚାକିରି ବେଳର ମନ୍ଦିରଙ୍କ ସହିତ ସଂପର୍କ ଏକ ନୂଆ ପରିପ୍ରେକ୍ଷୀରେ, ଅନୁଭବର ଏକ ନୂଆ ପର୍ଯ୍ୟାୟରେ କଳା ଇତିହାସ ହେଇଯାଏ । ଏହା ଅନୁଭୂତିର ଅଭ୍ୟୁତ୍ଥାନ ନା ବିବର୍ତ୍ତନ ଜାଣିହୁଏନି ।

କଳା ମହାବିଦ୍ୟାଳୟ ମାନଙ୍କରେ ଚାଳିଶି, ପଞ୍ଚଚାଳିଶି ମିନିଟିଆ ପିରିଅଡ଼୍‌ର ବ୍ୟବସ୍ଥା ନାହିଁ । ଏଠି ପିରିଅଡ଼୍ ତ ନାହିଁ, ଘଣ୍ଟା ପଡ଼ିବ କୁଆଡୁ ? ଅବଶ୍ୟ ଏଭଳି ଉଦାର ଓ ଅତ୍ୟାଧୁନିକ ପାଠ୍ୟନିର୍ଘଣ୍ଟ ଯୋଗୁଁ ପାଣି ଗୋଳିଆ ହେଇ ପାନୀୟ ଅନୁପଯୋଗୀ ହେବାର

Digitized by srujanika@gmail.com

ଭୟ ଅଛି । ମୁଁ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ପଢ଼ିବା ବେଳେ ଏ ଉଦାର ନୀତିକୁ ଖୋଦ୍ ଶିକ୍ଷକମାନେ ହିଁ ଉଲଙ୍ଘନ କରି ଏକ ବିକୃତ ପରମ୍ପରାର ଅଯମାରମ୍ଭ କରିଦେଇଥିଲେ । କଳାଶିକ୍ଷାର 'କ୍ଷେତ୍ର ଅନୁଶୀଳନ' ବା 'ପ୍ରକୃତି ପର୍ଯ୍ୟବେକ୍ଷଣ' ନାଁରେ ଚିଲିକାରୁ ମାଛ ମାରିବା, ବାଦୁଡ଼ି ଓ କୁଟରା ଶିକାର କରିବା କାଳକ୍ରମେ ମୁଖ୍ୟ ଭୂମିକା ଗ୍ରହଣ କରିନେଲା । ମୁଁ ଏ ସଂପର୍କରେ ସଚେତନ ଥାଇ ସୁଦ୍ଧା ବି.କେ. କଲେଜରେ କଳାଶିକ୍ଷାର ଉଦାର ନୀତି ଆପଣେଇ ଥିଲି ।

ହାସ୍ୟାସ୍ପଦ ଲାଗେ ବିଶ୍ୱବିଦ୍ୟାଳୟ ପ୍ରଶାସନ ପକ୍ଷରୁ ଅନୁପ୍ରେରିତ ହେଇ ବରିଷ୍ଠ ଅଧ୍ୟାପକମାନେ ୟୁନିଭରସିଟି ପରୀକ୍ଷାବେଳେ କପି ଧରିବା ପାଇଁ ଜିପ୍ ଚଢ଼ି ଯେତେବେଳେ କଳାବିଦ୍ୟାଳୟମାନଙ୍କୁ ମାଡ଼ି ଆସନ୍ତି । ଏକଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଖଲ୍ଲିକୋଟରେ କରୁଥିଲେ, ଉତ୍କଳ ବିଶ୍ୱବିଦ୍ୟାଳୟ ବି.କେ.ରେ ମଧ୍ୟ କରିବା ପାଇଁ ଚେଷ୍ଟା କରୁଥିଲେ ଏବଂ ଏବେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ  କୁଆଡ଼େ ଏହା କଡ଼ାକଡ଼ି ପାଳନ କରୁଛନ୍ତି । ମୁଁ ଅଧ୍ୟକ୍ଷ ଥିଲାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ବୁଝେଇ ଦେଇଥିଲି ଯେ କଳାପାଠ ଗଣିତ ନୁହେଁ ଯେ ଦୁଇରେ ଦୁଇ ମିଶିଲେ ଚାରି ହେବାକୁ ବାଧ୍ୟ । କଳାଶିକ୍ଷାରେ ଦୁଇରେ ଦୁଇ ମିଶିଲେ ଛଅ, ବେଳେବେଳେ ଆଠ ହେବାର ମଧ୍ୟ ବାଧା ନାହିଁ । କିଛି ବି ନ ହେବାର ନଜିର ଅଛି । କଳାପାଠରେ ପ୍ରକୃତିକୁ ନକଲ କରାଯାଏ । କିନ୍ତୁ ନକଲ ହେଲାପରେ ଚିତ୍ରରେ ପ୍ରକୃତି ସଂପୂର୍ଣ୍ଣ ପରିବର୍ତ୍ତିତ ହେଇଯାଏ । ନକଲ ବା କପିକରିବା କଳାବିଦ୍ୟାଳୟ ପାଠ୍ୟକ୍ରମର ଏକ ସ୍ୱୀକୃତ ପରମ୍ପରା । ଏଣୁ କପି ନାଁରେ ଯାହା ଧରିବାକୁ ଚେଷ୍ଟା କରାଯିବ ତାହା ପବନକୁ ଫାଶ ପକେଇଲା ଭଳିଆ କଥା ।

ଏବେ ତ ଅନ୍ୟାନ୍ୟ କଳାମହାବିଦ୍ୟାଳୟମାନଙ୍କରୁ ପରୀକ୍ଷା ବ୍ୟବସ୍ଥା ଉଠିଗଲାଣି । ଆମେ ପରିସ୍ଥିତିର ଚାପରେ ପଡି ଅଗତ୍ୟା ଟେଷ୍ଟ୍ ପରୀକ୍ଷା ଏବଂ ୟୁନିଭରସିଟି ପରୀକ୍ଷା କରୁଥିଲୁ । ଆଜିକାଲି ପରୀକ୍ଷା ବଦଳରେ ବ୍ୟକ୍ତିଗତ ଚିତ୍ର ପ୍ରଦର୍ଶନୀର ଯୋଗାଡ଼  ହେଉଛି । ଗୋଟିଏ ଛାତ୍ର ବା ଛାତ୍ରୀର ସମଗ୍ର କଲେଜ ବେଳର କାମ ଯାହାକୁ 'ବଡି ଅଫ୍ ୱାର୍କ୍' କୁହାଯାଉଛି ତା'ର ଏକ ସାମଗ୍ରିକ ମୂଲ୍ୟାୟନ କରି ପାସ୍ ଫେଲ୍ ନିର୍ଦ୍ଧାର୍ଯ୍ୟ ହେଉଛି । ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାରୁ ଆମେ ଗୋଟିଏ ଜଂଜାଳ ବିହୀନ, ସୃଜନ ପରମ୍ପରାର ଆରମ୍ଭ କରିଥିଲୁ । ଯଦି ଏହା ବଳବତ୍ତର ରହିଥାନ୍ତା ତାହେଲେ ଅନେକ ସୁଫଳ ମିଳିବାର ଆଶାଥିଲା । ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାରେ ପାଠପଢ଼ାର ଐତିହ୍ୟ ବହୁପୁରୁଣା । ବିଶ୍ୱକବି ରବୀନ୍ଦ୍ରନାଥ ଶାନ୍ତିନିକେତନରେ ଆମ୍ରବୀଥିରେ ପ୍ରକୃତି ସହିତ ଏକାତ୍ମ ହୋଇ ବିଦ୍ୟାଭ୍ୟାସ କରିବାର ପରମ୍ପରା ଆରମ୍ଭ କରିଥିଲେ । ପାଠଭବନ ଓ କଳାଭବନରେ ଏ ବ୍ୟବସ୍ଥା ଉଣାଅଧିକେ ଏବେ ବି ସକ୍ରିୟ ଅଛି । ଗଛମୂଳେ ଗୁରୁ ଓ ତାଙ୍କୁ ବେଢ଼ି ଗୋଲାକାର

Digitized by srujanika@gmail.com

ପରିଧିରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କୁ ଦେଖିଲେ ମନ ପୂରିଉଠେ । ମାଟିରେ ମୂର୍ତ୍ତି ଗଢ଼ିବା, କାଠ ପଥର ଖୋଦେଇ କରିବା, ଚୁଲୀ (କିଲ୍‌ନ୍) ରେ ମାଟିକଣ୍ଢେଇ ପୋଡିବା ଭଳି କଳାତ୍ମକ କାର୍ଯ୍ୟ ବେଶି ଖୋଲାମେଲାରେ ହିଁ ସଂପାଦନ କରାଯାଏ । ଓଡ଼ିଶାରେ ସତ୍ୟବାଦୀ ବନବିଦ୍ୟାଳୟର ଛୁରିଅନା ବକୁଳ ବନରେ ମଧ୍ୟ ଏଭଳି ପରମ୍ପରାର ଆରମ୍ଭ ହୋଇ କେଇବର୍ଷ ଚାଲିଲା ବୋଲି କୁହାଯାଉଛି । କିନ୍ତୁ ଏବେ ସେଠି ସବୁକଥା ସ୍ମୃତି । ଓଡ଼ିଶାରେ ଅଭିନବ କାର୍ଯ୍ୟଧାରାମାନ ଅକାଳରେ ବିଲୟ ଲଭନ୍ତି । କାରଣ କ'ଣ କେଜାଣି ? ବ୍ରହ୍ମେଶ୍ୱର ବେଢ଼ାର ସେଇ କେତୋଟି ଦିନର କଳାଭ୍ୟାସ ଆଜିବି ମୋ ସ୍ମୃତିରେ ଉଜ୍ଜୀବିତ ହୋଇଯାଏ । ସୃଜନର ସେଇ ଉଲ୍ଲସିତ ବେଳା ବି.କେ.କଲେଜର ଜୀବନରେ କେବେ ଆଉ ଆସିବାର ନୁହେଁ । ବେଳେବେଳେ ଆବଶ୍ୟକତାରୁ ଯେଉଁ ଉପାୟ ଆପେ ଆପେ ଉତୁରି ଆସେ ତାହା ପରମ୍ପରାଟିଏ ସୃଷ୍ଟି କରିବାରେ ସାମର୍ଥ୍ୟ ଲଭିଥାଏ । ପରବର୍ତ୍ତୀ କାଳରେ ନୀତି ନିୟମର ଦ୍ୱାହି ଦେଇ ଅବିଚାରିତ ଭାବେ ସେହି ପରମ୍ପରାକୁ ଭାଙ୍ଗିଦେବାର ଯନ୍ତ୍ରଣା ଅତ୍ୟନ୍ତ ଦୁଃଖଦାୟକ ।

ନାଁ ସିନା ବ୍ରହ୍ମେଶ୍ୱର ବେଢ଼ା ବୋଲି ଶୀର୍ଷକରେ ଗୁରୁତ୍ୱ ଦେଇଛି । କିନ୍ତୁ ଟଙ୍କପାଣି ରୋଡ୍‌ର ଉଭୟ ପାର୍ଶ୍ୱରେ ଥିବା ପ୍ରାୟ ସବୁ ମନ୍ଦିର, ଗରାବନ୍ଧୁ ବଗିଚା ଏବଂ ନୀଳମଣି ସେନାପତିଙ୍କ ବଗିଚା ବି.କେ. କଲେଜର ପ୍ରଥମ ଶ୍ରେଣୀଗୃହ ଭାବେ ଆମକୁ ଆଶ୍ରା ଦେଇଥିଲେ । ଅପରପକ୍ଷେ କହିବାକୁ ଗଲେ ଆମେ ଆମ କଲେଜ ତଥା କଲେଜ ସଂଲଗ୍ନ ସମଗ୍ର ପରିବେଶକୁ ଆମ ଉପସ୍ଥିତିରେ, କଳାଚର୍ଚ୍ଚାରେ କାବ୍ୟମୟ କରିଦେଇଥିଲୁ ।

Digitized by srujanika@gmail.com

# ୧୧. ବାବୁଲା ସେନାପତିଙ୍କ ବେତସ କୁଞ୍ଜ

ବହ୍ମେଶ୍ୱର ମନ୍ଦିରକୁ ମୁହଁକରି ଠିଆ ହେଲେ ଡ଼ାହାଣପଟର ପ୍ରଥମ ପ୍ରକାଣ୍ଡ ହତାଭିତରେ ଗ୍ରାଫ୍‌ଟେକ୍ ପ୍ରେସ୍ ଓ ଦିବାକର ମିଶ୍ରଙ୍କ ବାସଘର ଯାହାର ନାଁ ଶ୍ରୀ ପୁରୀରେଣୁ । ସେହି ହତାକୁ ଲାଗି ନୀଳମଣି ସେନାପତିଙ୍କ ଆଉ ଏକ ପ୍ରକାଣ୍ଡ ହତା । ତାକୁ ହତା ନ କହି ଉପବନ କହିବା ସମୀଚୀନ ହେବ । ଏହି ଉପବନ ଭିତରେ ଆଖିଦୃଷିଆ ଗୋଟିଏ ନିକାଞ୍ଚନ ଦି'ମହଲା ଘର । ଘରର ଗଢ଼ଣ ସାଜସଜ୍ଜା ଅତ୍ୟନ୍ତ ରୁଚିପୂର୍ଣ୍ଣ । ଏଇଠି ଓଡ଼ିଶାର ପ୍ରଥମ ଆଇ.ସି.ଏସ୍. ନୀଳମଣି ସେନାପତି ରହୁଥିଲେ । ମୁଁ ତାଙ୍କୁ ସ୍ୱଚକ୍ଷୁରେ ଦେଖିଲାବେଳକୁ ସେ ଚଳତ୍‌ଶକ୍ତି ରହିତ ହେଇସାରିଥିଲେ । ୱିଙ୍ଗ୍ କମାଣ୍ଡର ବାବୁଲା ସେନାପତି ନୀଳମଣି ସେନାପତିଙ୍କ ବଡ଼ପୁଅ ଓ ଆମର ଘନିଷ୍ଠ ବନ୍ଧୁ । ଏଣୁ ସଂପର୍କର ନୂତନ ପରିଭାଷାରେ ନୀଳମଣି ସେନାପତିଙ୍କର ବୋଲି କହିବା ଅପେକ୍ଷା ଆମେ ବାବୁଲା ସେନାପତିଙ୍କର ବୋଲି କହୁଛୁ ।

ବାବୁଲା ସେନାପତିଙ୍କ ଉପବନଟି ଅତ୍ୟନ୍ତ ମନୋରମ ଥିଲା । ପଣସ, ଆମ୍ବ, ଲଙ୍କାଆମ୍ବ, ନିମ, କଦମ୍ବ, ଟଭା, ଜମ୍ବୀର, ପିଜୁଳି ସାଙ୍ଗକୁ ଜାତିଜାତିକା ଫୁଲଗଛରେ ଉଦ୍ୟାନର ପରିବେଶ ସଦାବର୍ଣ୍ଣିଳ ଓ ସୁଗନ୍ଧଯୁକ୍ତ ରହୁଥିଲା । ବାଉଁଶ ଗଛର ସଂଖ୍ୟା ଥିଲା ସର୍ବାଧିକ ଏବଂ ବାଉଁଶ ଗଛର ଲମ୍ବ ଶାଖାପ୍ରଶାଖାଗୁଡ଼ିକ ପରସ୍ପର ଛନ୍ଦିହେଇ କୁଞ୍ଜ ସୃଷ୍ଟି କରିଥିଲେ । ଏହି କୁଞ୍ଜତଳେ ଆମ କଲେଜର ପିଲାଏ କେତେ ନା କେତେଥର ଚିତ୍ରଆସର ଜମେଇଛନ୍ତି ତା'ର ସଠିକ ହିସାବ କରିବା ଏବେ କଷ୍ଟକର । ବ୍ରହ୍ମେଶ୍ୱର ମନ୍ଦିରର ବେଢ଼ା ଅନୁରୂପ, ବରଂ ଆତ୍ମୀୟତାରେ ଅଧିକ ରସାଳ ଓ ଭାବଗର୍ଭକ ଥିଲା ବାବୁଲା ସେନାପତିଙ୍କ ବେତସ କୁଞ୍ଜ ।

ବାବୁଲା ପିତାଙ୍କ ସଯତ୍ନବର୍ଦ୍ଧିତ ଏତେବଡ଼ ସୁରମ୍ୟ ଉଦ୍ୟାନର କେବଳ ସତ୍ତ୍ୱାଧିକାରୀ ନଥିଲେ, ସିଏ ଥିଲେ ମୋର ଜଣେ ଶିଳ୍ପୀପ୍ରାଣ ଦରଦୀ ବନ୍ଧୁ । ବମ୍ବେରୁ ତାଙ୍କ ସିଲକ୍‌ସ୍କ୍ରିନ୍ ଷ୍ଟୁଡ଼ିଓ ସାଙ୍ଗରେ ସିଏ ଦିନେ ଭୁବନେଶ୍ୱରରେ ହଠାତ୍ ପହଞ୍ଚିଥିଲେ । ରାଜ୍ୟ ଅଭିଲେଖାଗାରର କୌଣସି ଗୋଟିଏ ପ୍ରଦର୍ଶନୀରେ ତାଙ୍କ ସହିତ ପ୍ରଥମ ସାକ୍ଷାତ ହେଇଥିଲା । ସୈନିକର ଦମ୍ଭିଲା ଚେହେରା, ମୁହଁରେ ଆଶା ଓ ଦୃଢ଼ତାର ସଂକେତ । ସେ ଆଭିଜାତ୍ୟର ବନ୍ଧନରୁ ମୁକୁଳି ପଡ଼ି ସ୍ୱାଧୀନ ଭାବେ ବଂଚିବାର ପ୍ରୟାସ କରୁଥିଲେ । ବମ୍ବେରୁ ସିଏ ମୋ ସଂପର୍କରେ

Digitized by srujanika@gmail.com

ତଥ୍ୟ ଯୋଗାଡ଼ କରିସାରିଥିଲେ, ଏଣୁ ପରସ୍ପରକୁ ଭେଟୁଭେଟୁ ଆତ୍ମୀୟତା ବଢ଼ିଯାଇଥିଲା, ଆଉ ବାବୁଲା ତାଙ୍କ ଘର ଓ ବଗିଚାକୁ ବି.କେ. କଲେଜର ଏକ ପ୍ରସାରିତ କେମ୍ପସ୍ ଭଳି ବ୍ୟବହାର କରିବାକୁ ଅନୁମତି ଦେଇଥିଲେ । ଆଜିର ଜଗତୀକରଣ ଯୁଗରେ ପ୍ରସାରିତ ବା ପରିବର୍ଦ୍ଧିତ ଶିକ୍ଷାୟତନର ପ୍ରଚଳନ ଆଧୁନିକ ପରିଚାଳନା ବିଜ୍ଞାନ ବା ବ୍ୟବସ୍ଥାର ଅଭିନବ ପରିକଳ୍ପନା । ଆମେ ଆଧୁନିକ ଶିକ୍ଷାବ୍ୟବସ୍ଥାର ଏତେକଥା ଆମ ମଗଜରେ ଭର୍ତ୍ତି ନ କରି ଆବଶ୍ୟକତା ଦୃଷ୍ଟିରୁ ବାବୁଲା ସେନାପତିଙ୍କ ବେତସ କୁଞ୍ଜକୁ ବ୍ରହ୍ମେଶ୍ୱର ବେଢ଼ା ପରେ ତୃତୀୟ କେମ୍ପସ ଭଳି ବ୍ୟବହାର କରୁଥିଲୁ ।

ବାବୁଲା ସିଲ୍କ୍ ସ୍କ୍ରୀନ୍‌ର ଜଣେ ଦକ୍ଷ ବିନ୍ଧାଣି ଥିଲେ । ବମ୍ବେରେ ସେ ଶ୍ୟାମ ଆହୁଜା କାର୍ପେଟ୍‌ର ନିଜସ୍ୱ ଡିଜାଇନ ଗୁଡିକୁ ସ୍କ୍ରୀନ୍‌ରେ ଛାପୁଥିଲେ । ବମ୍ବେରେ ଗୁଣାତ୍ମକ ଅଫସେଟ୍ ଛାପାର କୌଣସି ଅଭାବ ନଥିଲା । ବରଂ ବମ୍ବେର ଓ୍ୱକିଲ୍ ଏଣ୍ଡ୍ ସନ୍‌ସ୍ ଚମତ୍କାର ଅଫସେଟ୍ ମୁଦ୍ରଣ ପାଇଁ ପ୍ରସିଦ୍ଧି ଲାଭ କରିଥିଲା । କିନ୍ତୁ କାର୍ପେଟ୍‌ର ଖଦଡ଼ା ଭାବ ବା ଟେକ୍ସଚରର ଅନୁଭବ ଅଫ୍‌ସେଟ୍‌ର ଚିକ୍କଣ ମୁଦ୍ରଣ ଭିତରେ ହଜିଯାଉଥିବାରୁ ଶ୍ୟାମ ଆହୁଜା ତାଙ୍କ କାର୍ପେଟ୍‌ଗୁଡିକୁ କନା ଉପରେ ସିଲ୍କ୍ ସ୍କ୍ରୀନ୍ କରିବା ପାଇଁ ବାବୁଲାଙ୍କୁ ନିଯୁକ୍ତି କରିଥିଲେ । ବାବୁଲା ପନ୍ଦର ଷୋହଳ ପରସ୍ତ ରଙ୍ଗ ସ୍କ୍ରୀନ୍‌ରେ ଅତି ନିର୍ଭୁଲ ଓ ଚମକପ୍ରଦ ଭାବେ ଛାପି ପାରୁଥିଲେ । ଏଭଳି ଛାପା ଆଗରୁ ଆମେ କିଏ ଦେଖି ନଥିଲୁ । ମୂଳ ଡିଜାଇନ୍‌ରୁ ସ୍କ୍ରୀନ୍‌କୁ ହସ୍ତାନ୍ତର କରିବାର ସ୍ୱତନ୍ତ୍ର ପ୍ରଣାଳୀର ଟେର ସୁଦ୍ଧା ବାବୁଲା ଅନ୍ୟକୁ ଦେଖାଉ ନଥିଲେ କି ଜଣାଉ ନଥିଲେ । ଆମେ ଏସବୁ ଗହନ କଥା ତାଙ୍କୁ ଭରସି ପଚାରି ପାରୁ ନଥିଲୁ । ଶିଳ୍ପୀ ଓ କାରିଗରମାନେ ନିଜ ବୃତ୍ତିର ମଣ୍ଡକଥାଯାକ ଅନ୍ୟ କାହା ଆଗରେ ସାଧାରଣତଃ ପ୍ରକାଶ କରନ୍ତି ନାହିଁ । ନିର୍ଦ୍ଦିଷ୍ଟ ଭାବେ କହିବାକୁ ହେଲେ କୁହାଯାଇପାରିବ ଯେ ଆମ କଲେଜର ଗ୍ରାଫିକ୍ ଷ୍ଟୁଡିଓର ପରୀକ୍ଷା ନିରୀକ୍ଷା ଉପବିଭାଗଟି ବାବୁଲାଙ୍କ ଘରେ ଅବସ୍ଥାପିତ ହେଇଥିଲା । ଟଙ୍କପାଣି ରୋଡ଼୍‌ରେ ଆମ କଲେଜ ଥିଲାଯାଏଁ ଏ ବ୍ୟବସ୍ଥା ଚାଲୁ ରହିଥିଲା । ଥରେ ବାବୁଲା ଶାଢ଼ି ଛାପାର ଡିମନ୍‌ଷ୍ଟ୍ରେସନ୍ ଦେଖେଇବା ପାଇଁ ଅଧ୍ୟାପକ ଡି.ଏନ୍.ରାଓଙ୍କୁ ଡକେଇଲେ । ଡି.ଏନ୍. ତାଙ୍କର ଛାତ୍ରଛାତ୍ରୀ ଯଥା ଅମର, ସଂଗ୍ରାମ, ବିନୋଦ, ଉମା ଓ ରୀନାଙ୍କୁ ଧରି ବାବୁଲାଙ୍କ ଘରେ ପହଞ୍ଚିଲେ । ବାବୁଲା ତାଙ୍କ ବାପ ଅମଳର ଟେନିସ୍ ଟେବୁଲ୍‌ଟିକୁ ଓ୍ୱାର୍କସପ୍ ଟେବୁଲ୍‌ରେ ପରିଣତ କରିଦେଇ ତା ଉପରେ ଶାଢ଼ିଟିଏ ପାରିଥାନ୍ତି । ଯୁବଶିଳ୍ପୀ ଦଳକ ପହଞ୍ଚିଲା ପରେ ସିଏ ବମ୍ବେ, ଅହମ୍ମଦାବାଦ୍ ଅଞ୍ଚଳରୁ ସଂଗ୍ରହ କରିଥିବା କାଠବ୍ଲକ୍ ସାହାଯ୍ୟରେ ଶାଢ଼ି ଉପରେ ବିଭିନ୍ନ ପ୍ରକାର ଡିଜାଇନ୍ ଛାପି ଆମକୁ ଚମତ୍କୃତ କରିଦେଇଥିଲେ । ଏଥର ଆମ ପିଲାଙ୍କ ପାଳି ପଡ଼ିଲା । ବ୍ଲକ୍ କିଏ ଆମେ କିଏ । ଆମ ପିଲାଏ ବାବୁଲାଙ୍କ ଘରେ ଏଣେ ତେଣେ ପଡ଼ିଥିବା କାଚଖଣ୍ଡ,

Digitized by srujanika@gmail.com

ବୋତଲଠିପି, ପ୍ରଭୃତି ଅନାବନା ଦ୍ରବ୍ୟ ସଂଗ୍ରହ କରି ଅଭିନବ ଉପାୟରେ ଛାପାଶାଢ଼ି ଖଣ୍ଡେ ପ୍ରସ୍ତୁତ କରିପାରି ବାବୁଲାଙ୍କ ପ୍ରଶଂସାଭାଜନ ହୋଇପାରିଥିଲେ ।

ବାବୁଲାଙ୍କ କାର୍ଯ୍ୟ ପ୍ରଣାଳୀର ଏକ ନିର୍ଦ୍ଦିଷ୍ଟ ବାଗ ଥିଲା । ସେ ଅତ୍ୟନ୍ତ ସମୟାନୁବର୍ତ୍ତୀ ଥିଲେ ଓ ପେଟରେ କଳ୍ମଷ ନରଖି ନିଜ ମନୋଭାବ ରୋକ୍‌ଠୋକ୍ ପ୍ରକାଶ କରୁଥିବାରୁ ବାବୁଲାଙ୍କ ସହିତ ବ୍ୟବହାରରେ ଆମକୁ ସଂଭ୍ରମ ରଖିବାକୁ ହେଉଥିଲା । ଆଇ.ସି.ଏସ୍.ଙ୍କ ପୁଅ, ଏଣେ ଭାରତୀୟ ବାୟୁସେନାର ଅଫିସର୍, ଏଣୁ ଆଦବ କାଏଦାର କୌଣସି କମ୍ ଥିଲା । ବ୍ରେକ୍‌ଫାଷ୍ଟ, ଲଞ୍ଚ୍ ବେଳେ ଡାଇନିଙ୍ଗ୍ ଟେବୁଲ ପାଖକୁ ଚକଲଗା ଠେଲାଗାଡ଼ି-ଟ୍ରେରେ ଖାଦ୍ୟ ଆସି ପହଞ୍ଚିବ । କପ୍ ପ୍ଲେଟ୍ ସବୁ ଲଣ୍ଡନ ମାର୍କା ପୋର୍‌ସିଲନ୍ । ଡାଲ୍‌ମା ଖାଅ କି ଚୁଡ଼ାଚକଟା ଖାଅ କଣ୍ଟାଚାମଚ ଲାଗିବ । ବାଁପଟେ ରିଙ୍ଗ୍ ଭିତରେ ନେପ୍‌କିନ୍ ଥୁଆ ହେବ, ଡାହାଣ ପଟେ ଗ୍ଲାସ । ମୁଁ ବାବୁଲାଙ୍କ ନିମନ୍ତ୍ରଣ ରକ୍ଷା କରି ତାଙ୍କ ସାଙ୍ଗରେ ଅନେକ ଥର ବ୍ରେକ୍‌ଫାଷ୍ଟ ଓ ଲଞ୍ଚ୍ ଖାଇଛି । ବାବୁଲା ଡିନର୍‌ବେଳକୁ ସାଧାରଣତଃ ମିଳନ୍ତି ନାହିଁ । ସଂଧ୍ୟା ନଇଁ ଆସିଲେ ସିଏ ଏୟାର୍‌ଫୋର୍ସ୍ କୋଟାରୁ ଦି'ଚାରି ପେଗ୍‌ଯାଏଁ ଏକଲା ଏକଲା ବସି ପିଇଯାଆନ୍ତି । ଏହି ସମୟରେ ତାଙ୍କୁ ଦୈବାତ୍ କିଏ ଟେଲିଫୋନ୍ କଲେ ଇଂରେଜରେ ତାଙ୍କ ଉତ୍ତର ଶୁଣିବାକୁ ମିଳେ । ସେଥିରେ ବ୍ଲଡ଼ି, ହେଲ୍ ପ୍ରଭୃତି ବିଶେଷଣ ବାଚକ ଶବ୍ଦ ଫୁଲମାଳରେ ତୁଳସୀ ଭଳି ଗୁନ୍ଥି ହୋଇ ରହିଥାଏ ।

ବହୁ ଅନୁରୋଧ ପରେ ବାବୁଲା ଥରେ ସିଲ୍କ ସ୍କ୍ରୀନ୍ 'ଡେମୋ' ଦେଖେଇବା ପାଇଁ ଆମକୁ ତାଙ୍କ ଘରକୁ ଡ଼ାକିଲେ । ଆମେ ଧରିନେଲୁ ସିଏ ବୋଧହୁଏ ସ୍କ୍ରୀନ୍‌କୁ ଡିଜାଇନ୍ ଟ୍ରାନସ୍‌ଫର୍‌ର ପଦ୍ଧତି ଦେଖେଇବେ କିନ୍ତୁ ତାହା ନୋହିଲା । ସିଏ ଆମକୁ ଅଣହସ୍ତାନ୍ତର ପଦ୍ଧତି (ନନ୍ ଟ୍ରାନସ୍‌ଫରେବଲ୍ ଟେକ୍‌ନୋଲୋଜି) ମାଧ୍ୟମରେ ସ୍କ୍ରୀନ୍ ପ୍ରିଣ୍ଟିଙ୍ଗ୍ ଦେଖେଇଲେ । ସ୍କ୍ରୀନ୍ ଉପରେ ଗଛରୁ ତୋଳିଆଣି ପତ୍ରଟିଏ ଥୋଇ ତା ଉପରେ ରୋଲର୍‌ରେ ରଙ୍ଗ ଟାଣିବା ଫଳରେ କାଗଜ ଉପରେ ପତ୍ରର ଅବିକଳ ଚିତ୍ରଟିଏ ଉଠିଆସିଲା ।

ବାବୁଲା ଆମ ଅନୁରୋଧରେ କଲେଜରେ ପାଞ୍ଚ ଦଶ କ୍ଲାସ୍ ନେଇଥିବେ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଖୁବ୍ ରୋଚକ ଓ କଥା କହିବା ଭଙ୍ଗୀ ଅତ୍ୟନ୍ତ ପରିଷ୍କାର । ପ୍ରକୃତିକୁ ଚିତ୍ରରେ ଧରିରଖିବାର ବିଭିନ୍ନ ପଦ୍ଧତି ସଂପର୍କରେ ପିଲାଙ୍କୁ କହିଥିବା କଥା ଭିତରୁ ପ୍ରସଙ୍ଗଟିଏ ମୋର ମନେଅଛି । ବାବୁଲା ଉଡ଼ାଜାହାଜ ଚଳଉଥିବା ବେଳର ଅନୁଭୂତି । ଉଡ଼ାଜାହାଜରେ ବସି ମାଟି ଉପରୁ ଆକାଶକୁ ଉଠିଗଲେ ମାଟି ଉପରର ଛୋଟ ଛୋଟ ଭିନ୍ନତା ହଜିଯାଏ ଏବଂ ଆକାଶରୁ ପ୍ରକୃତି କେବଳ ବିଭିନ୍ନ ରଙ୍ଗର ଆସ୍ତରଣ ଭଳି ଦେଖାଯାଏ । ଏଣୁ ପ୍ରକୃତିକୁ ଅନୁଶୀଳନ କରି ଚିତ୍ରକଳାବେଳେ ଶିକ୍ଷାଟିଏ ଯଦି ଛୋଟ ଛୋଟ ପ୍ରଭେଦ ଓ ତାରତମ୍ୟ ଭିତରେ ବୁଡ଼ିରହେ ତା'ହେଲେ ସେ ସାମଗ୍ରିକ ଅବବୋଧଠାରୁ ଦୂରେଇ ଯିବ

Digitized by srujanika@gmail.com

ଏବଂ ତା'ର ଚିତ୍ର ପ୍ରକୃତିର ସାରବତ୍ତାକୁ ଗ୍ରହଣ କରିପାରିବନି । ଏ କଥା ଭିତରେ କେବଳ ଚିତ୍ରପ୍ରସଙ୍ଗ ନୁହେଁ ମଣିଷ ମଣିଷ ଭିତରେ ତିଷ୍ଠି ରହିଥିବା ସଂପର୍କର ଅହେତୁକ ଭିନ୍ନତା ନ ବାରି ସମଗ୍ର ମାନବ ଜାତିକୁ ସମଭାବରେ ଜ୍ଞାନ କରିବାର ମହନୀୟ ଉଦାହରଣ ବି ତିଷ୍ଠି ରହିଥିଲା । କ୍ଷୁଦ୍ରକ୍ଷୁଦ୍ର ସ୍ୱାର୍ଥରୁ ଉର୍ଦ୍ଧ୍ୱକୁ ଉଠିଲେ ହିଁ ମାନବିକତାର ବିକାଶ ଘଟେ ।

ବାବୁଲା ଚିତ୍ରକଳାର ମୌଳିକ ଉପାଦାନ ଯଥା ରେଖା, ରୂପ, ଟେକ୍ସଚର୍, ରଚନା କୌଶଳ ସଂପର୍କରେ ଯଥେଷ୍ଟ ଗୁରୁତ୍ୱ ଦେଉଥିଲେ । ତାଙ୍କ ଭାଷଣ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଯଥେଷ୍ଟ ଆଦୃତ ହେଉଥିଲା ।

ମୁଁ ପର୍ଯ୍ୟଟନ ବିଭାଗରେ ଚାକିରି କଲାଦିନଠାରୁ ଓଡ଼ିଶା ପରିଭ୍ରମଣରେ ଆସୁଥିବା ବିଭିନ୍ନ ପର୍ଯ୍ୟଟକଙ୍କ ସଂପର୍କରେ ଆସୁଥାଏ । ବିଶେଷତଃ ସୁଇଜରଲ୍ୟାଣ୍ଡରୁ ଆସୁଥିବା ଭ୍ରମଣକାରୀମାନେ ଖୋଜିଲୋଡ଼ି ମୋତେ ଦେଖା କରିଥାନ୍ତି । ସିମିତି କିଏ ବିଶେଷ ଧରଣର ପର୍ଯ୍ୟଟକ ହେଲେ ବାବୁଲା ତାଙ୍କ ଘରକୁ ନେଇଯିବା ପାଇଁ ମୋତେ କହିଥାନ୍ତି । ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ନେଇ ସୁଇସ୍ ଏଆର୍ ଗେଜେଟ୍‌ର ସଂପାଦିକା ଲୁଡିଆ ଲେହମାନ୍ ଭୁବନେଶ୍ୱର ଆସିଥାନ୍ତି । ଲୁଡିଆ ମଧ୍ୟବୟସ୍କା, ସୁନ୍ଦରୀ ଓ ଅବିବାହିତା ଥିଲେ । ମୁଁ ତାଙ୍କୁ ମନ୍ଦିର ନଗରୀ ଭୁବନେଶ୍ୱର, ରତ୍ନଗିରି ଓ ଉଦୟଗିରି ପ୍ରଭୃତିର ବୌଦ୍ଧସ୍ତୂପ ଦେଖେଇ ସାରିଲାପରେ ଦିନେ ସକାଳୁ ବ୍ରେକ୍‌ଫାଷ୍ଟ୍ ପାଇଁ ତାଙ୍କୁ ସାଙ୍ଗରେ ନେଇ ବାବୁଲାଙ୍କ ଘରେ ପହଞ୍ଚିଲି । ବାବୁଲା ବେତସ କୁଞ୍ଜରେ ଆମ ତିନିଜଣଙ୍କ ପାଇଁ ବ୍ରେକ୍‌ଫାଷ୍ଟ୍ ଆୟୋଜନ କରିଥିଲେ । ଜଳଖିଆର ମୁଖ୍ୟ ଆକର୍ଷଣ ଥିଲା ମସ୍‌ରୁମ୍ ଆମଲେଟ୍ । ତାଙ୍କ ବଗିଚାରେ ବାବୁଲା ନିଜେ ପରିଶ୍ରମ କରି ପ୍ରବଳ ଛତୁ ଚାଷ କରିଥିଲେ । ଲୁଡିଆ ସେଦିନ କେବଳ ଛତୁ ଆମ୍‌ଲେଟ୍‌ର ଭୂୟସୀ ପ୍ରଶଂସା କରିନଥିଲେ, ତାଙ୍କ ପ୍ରସନ୍ଦ ଭିତରେ ବେତସ କୁଞ୍ଜ ମଧ୍ୟ ଆକର୍ଷଣୀୟ ଡେଷ୍ଟିନେସନ୍ ଭାବେ ସ୍ଥାନ ପାଇଥିଲା । ବାବୁଲାଙ୍କ ବେତସ କୁଞ୍ଜ ଭିତରେ ବସି ଲୁଡ଼ିଆ ଜାପାନରେ ଥିବା ତାଙ୍କ କିଏ ଜଣେ ବାନ୍ଧବୀଙ୍କର ବାଉଁଶ ବଗିଚାକଥା ମନେ ପକେଇଥିଲେ । ମୁଁ ସେତେବେଳେକୁ ଜାପାନ ଯାଇନଥାଏ । ଅନେକ ଦିନ ପରେ ଜାପାନର ବାଉଁଶ ବଣରେ ପହଞ୍ଚି ବାବୁଲାଙ୍କ ବେତସ କୁଞ୍ଜକଥା ମନେ ପକେଇଲି ।

ବାବୁଲା ତାଙ୍କ ଡ଼ାହାଣ କାନରେ ଗୋଟିଏ ପିତଳ ନୋଳି, ଗଳାରେ ଲକେଟ୍ ଓ ଡ଼ାହାଣ ହାତରେ ଷ୍ଟିଲ୍‌ବଳା ପିନ୍ଧି ଧଳାବାଳ ଥିବା ମୁଣ୍ଡରେ କାଉ୍‌ବୟ୍ ଭଳିଆ ଦେଖାଯାଉଥିଲେ । ତାଙ୍କ ରୂପ, ଚାଲିଚଳଣ, କଥାକହିବା ଢ଼ଙ୍ଗଢ଼ାଙ୍ଗରେ ଲୁଡିଆ ମୁଗ୍ଧ ହେଇଗଲେ ଓ ମନେ ମନେ ବାବୁଲାକୁ ପ୍ରେମ କରି ବସିଲେ । ସେବର୍ଷ ମୁଁ ସୁଇଜରଲ୍ୟାଣ୍ଡ୍ ଯାଇଥିଲାବେଳେ ଲୁଡିଆ ତାଙ୍କ ଘରକୁ ଡିନର୍ ଖାଇବାକୁ ମୋତେ ନିମନ୍ତ୍ରଣ କଲେ ଓ ବାବୁଲାକୁ ପ୍ରେମ କରୁଥିବା କଥା ମୋ ଆଗରେ ଖୋଲିଦେଲେ । ଏଠି ଉଦ୍ଧୃତି କଲା ଭଳି

Digitized by srujanika@gmail.com

ତାଙ୍କ ବାକ୍ୟଟିଏ ହେଲା, 'ମୁଁ ବାବୁଲାର ପୌରୁଷକୁ ପସନ୍ଦ କରେ । ଏଭଳି ପୁରୁଷଟିଏ ଜୀବନରେ ମିଳିଲେନି ବୋଲି ମୁଁ ବାହା ନହେଇ ରହିଗଲି ।' ମୁଁ ବହୁବର୍ଷ ଧରି ବାବୁଲା ଓ ଲୁଡିଆ ମଧ୍ୟରେ ପତ୍ରବାହକର ଭୂମିକା ନିର୍ବାହ କରିଛି । ଥରେ ଲୁଡିଆ ବାବୁଲାକୁ ଉପହାର ଦେଇଥିବା ଗଛକଟା କତୁରିଟିଏ ମୁଁ ଭୁଲରେ ମୋ ହାତ ବେଗ୍‌ରେ ପକେଇ ଦେଇଥିଲି ବୋଲି କଷ୍ଟମ୍‌ସ୍‌ରେ କେତେ ଯେ ହଇରାଣ ହେଇଛି ତାର ସୀମା ନାହିଁ, କିନ୍ତୁ ପ୍ରେମର ବାହକ ହେଇଥିବାରୁ ଆନନ୍ଦ ସିନା ପାଇଛି ଦୁଃଖର ଲେଶମାତ୍ର ନାହିଁ ।

କେବଳ ଲୁଡିଆ ନୁହେଁ, ଆମ କଲେଜର ଅଧିକାଂଶ ଛାତ୍ର ବାବୁଲାଙ୍କ ଷ୍ଟାଇଲ୍‌ରେ ଅନୁପ୍ରାଣିତ ହେଇ କାନରେ ନୋଲି, ହାତରେ କଡ଼ା ଓ ଗଳାରେ ଲକେଟ୍ ପିନ୍ଧୁଥିଲେ । ସେମାନଙ୍କ ଭିତରେ ଥିଲେ ସଂଗ୍ରାମ ମହାରଣା, ରାଜେଶ ନାୟକ ଆଉ ଖୋର୍ଦ୍ଧାର ପୁତୁଲ ପଟ୍ଟନାୟକ । ଅବଶ୍ୟ ଏ ସମସ୍ତ ଛାତ୍ରଥିଲେ ଗ୍ରାଫିକ୍ ବିଭାଗର ହିରୋ ।

Digitized by srujanika@gmail.com

# ୧୨. ବାରମାସେ ତେର ଯାତ

ମୁଖ୍ୟତଃ, ଶାନ୍ତିନିକେତନର କଳାଭବନ, ବରୋଦା ଓ ଦିଲ୍ଲୀ କଲେଜ ଅଫ୍ ଆର୍ଟ୍‌ରେ ପ୍ରଚଳିତ ସିଲାବସ୍‌ର ସମନ୍ୱୟରେ ଆମ କଲେଜର ପାଠ୍ୟ-ନିର୍ଘଣ୍ଟ ପ୍ରସ୍ତୁତ କରାଯାଇଥିଲା । ରକ୍ଷା ହେଇଯାଇଥିଲା ଖଲ୍ଲିକୋଟର ଚାରୁ ଓ କାରୁକଳା ମହାବିଦ୍ୟାଳୟ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସହିତ ଏବଂ ଆମେ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ସହନିବନ୍ଧିତ ହେଇଥିବା ଫଳରେ ସଂସ୍କୃତି ବିଭାଗର ଏହି ଦୁଇଟି ଡିଗ୍ରୀ କଲେଜର ସିଲାବସ୍ ମଧ୍ୟରେ ତାଳମେଳ ନ ରହିଲେ ମଧ୍ୟ ଧରାକ ନଥିଲା । ଖଲ୍ଲିକୋଟର ପାଠ୍ୟକ୍ରମ ଅତ୍ୟନ୍ତ ରକ୍ଷଣଶୀଳ ଥିଲା । ଅଧ୍ୟାପକମାନେ ବିଚାର କରୁଥିଲେ ଯେ ସିଲାବସ୍ ବହିର୍ଭୂତ କୌଣସି କଳାବିଦ୍ୟାକୁ ଅନୁସରଣ କରିବା ଏକ ଗର୍ହିତ କାର୍ଯ୍ୟ । ଅନ୍ୟ ଯେ କୌଣସି ପାଠ ଯଥା, ସାହିତ୍ୟ, ଇତିହାସ, ଭୂଗୋଳ, ସାମାଜିକ ବିଜ୍ଞାନ କିମ୍ବା ଅଙ୍କ ସହିତ ଚିତ୍ରକଳା କସ୍ମିନକାଳେ ତୁଳନୀୟ ନୁହେଁ । କିନ୍ତୁ ସବୁପାଠ ଭଳି ଚିତ୍ରକଳା ପାଠରେ ମଧ୍ୟ କଲେଜର ନିୟମ ଦୃଷ୍ଟିରୁ ସିଲାବସ୍‌ଟିଏ ପ୍ରଣୟନ ହୁଏ । କିନ୍ତୁ ସିଲାବସ୍‌କୁ ବେଦର ଗାର ବୋଲି ବିବେଚନା କରିବା ଏକ ବିସଙ୍ଗତି ନିଶ୍ଚୟ । ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ମାନ୍ଧାତା ଅମଳର ଭାବଧାରା ଏବେ ବି ରହିଛି । ମୁଁ ନିଜେ ପ୍ରସ୍ତୁତ କରିଥିବା ସିଲାବସ୍‌କୁ ନିଜେ ସ୍ୱୀକାର କରୁନଥିଲି ବା ସେଥିପ୍ରତି ମୋର ସମ୍ମାନବୋଧ ନଥିଲା ତାହା ଭାବିବା ଠିକ୍ ହେବନି । ସିଲାବସ୍‌ଟି ହାତୀଦାନ୍ତ ଭଳିଆ ବାହାରକୁ ଦେଖେଇବା ପାଇଁ ଅଲଗା ଏବଂ ଖାଦ୍ୟ ଚୋବେଇବା ପାଇଁ ଅଲଗା । ସିଲାବସ୍‌ରେ ଯାହା ଲିପିବଦ୍ଧ ଥାଏ ତାହା କାର୍ଯ୍ୟକାରୀ କରିବା କାଠିକର ପାଠ । ଉଦାହରଣ ସ୍ୱରୂପ ଆମେ ସରକାର ନିର୍ଧାର୍ଯ୍ୟ କରିଥିବା କମରସିଆଲ୍ ଆର୍ଟ୍ ଡିପାର୍ଟମେଣ୍ଟ୍ ଯାହାକୁ ଆମେ ସାଧାରଣତଃ ବାଣିଜ୍ୟକଳା ବିଭାଗ କହୁଥିଲୁ ତାକୁ ମୁଁ ବିନା ଦ୍ୱିଧାରେ ଡିଜାଇନ୍ ବିଭାଗରେ ବଦଳେଇ ଦେଇ ସରକାରଙ୍କ ଗୋଚରାର୍ଥେ ଜଣେଇ ଦେଇଥିଲି । ଡିଜାଇନ୍ ବିଭାଗରେ ଟେକ୍ସଟାଇଲ୍, ଗ୍ଲାସ୍ ଓ ସେରାମିକ୍ ପ୍ରଭୃତି ବିଷୟ ପଢ଼େଇବା ପାଇଁ ସିଲାବସ୍‌ରେ ଲିପିବଦ୍ଧ ହେଇଥିଲା । ତା ସହିତ ପୁଣି ଥିଲା ଇଣ୍ଟିରିଅର୍ ଡେକୋରେସନ୍ ପ୍ରଭୃତି । ଏହି ବିଭାଗରେ ଜଣେ ମାତ୍ର ଅଧ୍ୟାପକ ଥିଲେ ଏବଂ ସେ ଖଲ୍ଲିକୋଟ ସରକାରୀ ଚାରୁକଳା ମହାବିଦ୍ୟାଳୟରୁ କମରସିଆଲ୍ ଆର୍ଟ୍‌ରେ ଡିଗ୍ରୀ କରିଥିଲେ । ଏଣୁ ମୁଦ୍ରିତ ସିଲାବସ୍‌ର ନିୟମାନୁସାରୀ ପାଠ୍ୟକ୍ରମ, ଅଧ୍ୟାପକଙ୍କ ଯୋଗ୍ୟତା ଓ ନିର୍ଦ୍ଦିଷ୍ଟ

Digitized by srujanika@gmail.com

କରାଯାଇଥିବା ପାଠ ପଢ଼େଇବା ପାଇଁ କଲେଜରେ ବ୍ୟବସ୍ଥା ମଧ୍ୟରେ ସାତତାଳ ପ୍ରଭେଦ ଥିଲା । ଜଣେ ରକ୍ଷଣଶୀଳ ମନୋଭାବ ନେଇ ସମଗ୍ର ଘଟଣାଟିକୁ ଅନୁଧ୍ୟାନ କଲେ ମନେ ହେବ ଏଭଳି ମହାବିଦ୍ୟାଳୟରେ ଛାତ୍ରଛାତ୍ରୀଙ୍କ ଭାଗ୍ୟ ବିଡ଼ମ୍ବିତ ଓ ଭବିଷ୍ୟତ ଅନ୍ଧାର ।

କିନ୍ତୁ ଏହାର ଅନ୍ୟ ଏକ ଆଲୋକିତ ଦିଗଅଛି । ସିଲାବସ୍‌ର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକୁ ସିଲାବସ୍ ବହିର୍ଭୂତ କାର୍ଯ୍ୟାନୁସାରୀ ଢ଼ାଞ୍ଚା ଭିତରେ ପଢ଼େଇହେବ । ତାହାହେଲା ବାରମାସରେ ତେରଯାତ୍ରା । ଏହି ଢ଼ାଞ୍ଚାଟି ଜଗନ୍ନାଥ ମନ୍ଦିରର ପରମ୍ପରା ଏବଂ ବିଶେଷ କରି ଜଗନ୍ନାଥ ଚେତନା ସହିତ ସଂପୃକ୍ତ । ପୁରୀର ଜଗନ୍ନାଥ ମନ୍ଦିର ଯେଭଳି ସଦାସର୍ବଦା ଉତ୍ସବମୁଖର ଥାଏ ଏବଂ ସେହି ଉତ୍ସବମାନଙ୍କର ଅନ୍ତଃସ୍ରୋତ ଯିମିତି ଭାବରେ ଜଗନ୍ନାଥ ଚେତନା ଭିତରେ ଆନ୍ଦୋଳିତ ହେଉଥାଏ, ଠିକ୍ ସେଭଳି ଆମର ଆର୍ଟ୍ କଲେଜ । ଆମ ଘନିଷ୍ଠ ବନ୍ଧୁମାନେ ତଥା ପ୍ରତିପକ୍ଷର ଶିଳ୍ପୀମାନଙ୍କ ମନରେ ସନ୍ଦେହ ହେଉଥାଏ, ଏ କିଭଳି ପାଠପଢ଼ା । ଗୋଟିଏ ସରକାରୀ ଡିଗ୍ରୀ କଲେଜରେ ଏଭଳି ପାଠ୍ୟକ୍ରମ କ'ଣ ସମ୍ଭବ? ଆମ କଳ୍ପନା କଲେଜ (କଳ୍ପନା ଛକରେ ଭଡ଼ାଘରେ ଅବସ୍ଥାପିତ ବୋଲି ଏଭଳି ନାମକରଣ) ବକ୍‌ସି ଜଗବନ୍ଧୁ ବିଦ୍ୟାଧର କଲେଜର ପାଖାପାଖି ଥିବାରୁ ଦୁଇଟି କଲେଜ ମଧ୍ୟରେ ତୁଳନା କଲାବେଳକୁ ଯେକୌଣସି ବ୍ୟକ୍ତିଙ୍କ ମନରେ ସନ୍ଦେହ ହେବା ସ୍ୱାଭାବିକ । ବି.ଜେ.ବି କଲେଜ ଚାରିପାଞ୍ଚ ବେଳକୁ ଛୁଟି । ପିଲାଏ ଘରକୁ ଛୁଟନ୍ତି । ଆମ କଳ୍ପନା କଲେଜରେ ସେତେବେଳକୁ ପାଠପଢ଼ା ଆରମ୍ଭ ହୁଏ । କୋଣାର୍କ ମନ୍ଦିର ନିଶ୍ଚିତ ଭାବରେ ସଦାଶିବ ସାମନ୍ତରାୟ ମହାପାତ୍ରଙ୍କ ନିର୍ଦ୍ଧାରିତ କାର୍ଯ୍ୟନିର୍ଘଣ୍ଟ ବା କାର୍ଯ୍ୟଖସଡ଼ା ବାହାରେ ଏକ ସୃଜନ ଉତ୍ତାଳର ପ୍ରଚୋଦନାରେ ନିର୍ମିତ ହେଇଥିଲା, ଏଣୁ କୋଣାର୍କ 'ମେଥଡିଙ୍ଗ୍ ଅଫ୍ ମେଡ୍‌ନେସ୍'ର ଚରମ ଦୃଷ୍ଟାନ୍ତ ହେଇ ରହିଗଲା । କୋଣାର୍କ ଏକ ମନ୍ଦିର ମାତ୍ର ଭାବିଲେ ମନ୍ଦିରର ସୀମିତତା ମଧ୍ୟରେ ସବୁ ଅଟକି ରହିବ । ଏହି ଧାରଣାରୁ ଉତୁରି ପଡ଼ି ଭାବିଲେ ମନେହେବ କୋଣାର୍କ ଦୀର୍ଘ ବାରବର୍ଷ ଅବଧିରେ ସୃଜନ ବିଭାରେ ଚଳଚଞ୍ଚଳ ଥିବା ଓଡ଼ିଶୀ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକଳାର ଏକ ବିଦ୍ୟାମନ୍ଦିର ଯାହାର ପୃଷ୍ଠପୋଷକ ଥିଲେ ଲାଙ୍ଗୁଳା ନରସିଂହଦେବ ଓ ଅଧ୍ୟକ୍ଷ ଥିଲେ ସଦାଶିବ ସାମନ୍ତରାୟ ମହାପାତ୍ର । ଆମେ ମଧ୍ୟ କୋଣାର୍କର ଅନ୍ୟଏକ ବିଭବ-ନୃତ୍ୟକୁ ଶିଳ୍ପସହିତ ସମାନ୍ତରାଳ କରି ବିବେଚନା କରିନେବା ଉଚିତ ହେବ । ଆମେ ମଧ୍ୟ ଦେଖିବାକୁ ପାଇବା ମନ୍ଦିର ଗାତ୍ରରେ ହାତରେ ମଞ୍ଜିରା ଧରି ତାଳ ଓ ଲୟକୁ ନିୟନ୍ତ୍ରଣ କରୁଥିବା ନୃତ୍ୟଗୁରୁ ସୋମରାଜ । ମନ୍ଦିରର ନୃତ୍ୟ କଳା ଆବୋରି ବସିବ ଶିଳ୍ପକଳାକୁ ।

ଯେଉଁମାନେ ଶାନ୍ତିନିକେତନ କଳା ଭବନର ପାଠପଢ଼ା ପଦ୍ଧତିକୁ ଲକ୍ଷ୍ୟ କରିଥିବେ, ଆମ ବାରମାସେ ତେରପର୍ବର ନିର୍ଯ୍ୟାସକୁ ବୁଝିବାରେ ଅସୁବିଧା ହେବନି । ଶାନ୍ତିନିକେତନରେ ନନ୍ଦଲାଲଙ୍କ ଅମଳରେ କଳାଛାତ୍ରଛାତ୍ରୀମାନେ ଖୋଳ କରତାଳ

Digitized by srujanika@gmail.com

ବଙ୍ଗେଇ ମୁଠି ଭିକ୍ଷା କରୁଥିବା ଓ ତାଙ୍କ ବୈତାଳିକକୁ ଲକ୍ଷ୍ୟକରି ଖଲ୍ଲିକୋଟରେ ଅଧ୍ୟାପକ ବିପ୍ରଚରଣ ମହାନ୍ତି ଅଧ୍ୟାପକ ଅଜିତ କେଶରୀ ରାୟଙ୍କୁ ସମୟେ ସମୟେ ଥଟ୍ଟା କରୁଥିଲେ । ବିପ୍ରଚରଣ ଅଧ୍ୟୟନ କରୁଥିବା କଲିକତା ଆର୍ଟ୍ କଲେଜ ପ୍ରାଚୁର୍ଯ୍ୟ ଭିତରେ ଉବୁଟୁବୁ ହେଉଥିବା ବେଳେ କଳାଭବନ କଳା ରସିକଙ୍କ ବଦାନ୍ୟତା ଉପରେ ତିଷ୍ଠି ରହୁଥିଲା । କିନ୍ତୁ କଳାଭବନ ଯେଉଁ ଶିଳ୍ପ-କାବ୍ୟ ପରିବେଶ ସୃଷ୍ଟି କରିପାରିଥିଲା ତାହା କଲିକତା ଆର୍ଟ୍ କଲେଜରେ ସମ୍ଭବ ନଥିଲା । ଗୋଟିଏ କଳା ଅନୁଷ୍ଠାନରେ ନିର୍ଜୀବ ସିଲାବସ୍‌ଟିଏ ଅପେକ୍ଷା ପ୍ରାଣସ୍ପନ୍ଦିତ 'ବାରମାସେ ତେର ଯାତ'ର କାର୍ଯ୍ୟକ୍ରମଟିଏ କଲେଜ ପକ୍ଷେ କେତେ ଆବଶ୍ୟକ ତାହା ଉପଲବ୍ଧିର ବିଷୟ ।

ଆମର 'ବାରମାସେ ତେର ଯାତ' କାର୍ଯ୍ୟକ୍ରମ ନେଇ ସନ୍ଦେହରେ ବୁଡ଼ି ରହୁଥିଲେ ବି.ଜେ.ବି. କଲେଜର କିଛି ଅଧ୍ୟାପକ ଓ କର୍ମଚାରୀ । ଏମାନେ ବି.ଜେ.ବି. କଲେଜରୁ ଡେପୁଟେସନ୍‌ରେ ଆସିଥିବା ଡି.ଏନ୍.ରାଓଙ୍କ ସହକର୍ମୀ ଥିଲେ । ସେମାନଙ୍କ ଧାରଣା ଥିଲା କଳ୍ପନା ଆର୍ଟ୍ କଲେଜ ଦିନନାଥ ପାଠୀଙ୍କ ବ୍ୟକ୍ତିଗତ ମାଲିକାନା । ସିଏ ବିଦେଶରୁ ଅପର୍ଯ୍ୟାପ୍ତ ଟଙ୍କା ବୋହିଆଣି ରାତିଦିନ ଏଠି ତାମସା ଲଗେଇଛନ୍ତି । ଇଏ କି ପାଠପଢ଼ା ? ସଂଧ୍ୟାବେଳେ କଲେଜରେ ପିଲାଏ କାମ କରୁଥିଲାବେଳେ ସେମାନେ ହତା ଭିତରକୁ ସେମାନଙ୍କ କୌତୂହଳ ମେଣ୍ଟେଇବାକୁ ପଶି ଆସୁଥିଲେ । ମୋ ସାଙ୍ଗରେ ଦେଖାହେଇଗଲେ କଳାଶିକ୍ଷା ସଂପର୍କରେ ଆଲୋଚନା ହୁଏ । ମୋକଥା ସେମାନଙ୍କ ହୃଦ୍‌ବୋଧ ହୁଏକି ନାହିଁ କେଜାଣି କିନ୍ତୁ ଲାଗେ ସନ୍ଦେହର ବଳୟଟିଏ ଆମକୁ ସଦା ବେଢ଼ି ରହିଛି ।

ଏଠି କଲେଜ ଦ୍ୱାରା ପ୍ରକାଶିତ ୧୯୮୬-୮୭ ମସିହା ଶିକ୍ଷାବର୍ଷର ମୁଦ୍ରିତ କାର୍ଯ୍ୟକ୍ରମରୁ କିଛି ଉଦ୍ଧୃତି ଦେବା ସମୀଚୀନ ମନେକରୁଛି ।

| | |
|---|---|
| ଅଗଷ୍ଟ' ୮୬, ୪ ତାରିଖ | - ନବାଗତ, ନବାଗତାଙ୍କୁ ଅଭିନନ୍ଦନ ଜଣେଇବା ପାଇଁ ସ୍ୱାଗତିକା |
| ୨୫ ରୁ ୨୯ତାରିଖ | - ଢ଼ୋକ୍ରା ପିତଳ ଢ଼ଳେଇ କଳା ଉପରେ କର୍ମଶାଳା |
| ସେପ୍ଟେମ୍ବର' ୮୬, ୩ ତାରିଖ | - ବିଭୂତି କାନୁନ୍‌ଗୋଙ୍କ ତୃତୀୟ ବାର୍ଷିକୀ ଶ୍ରାଦ୍ଧୋତ୍ସବ ପାଳନ, ଗଣେଶ ପୂଜା ଏବଂ ଦ୍ୱିତୀୟ ବାର୍ଷିକ ଛାତ୍ରଛାତ୍ରୀଙ୍କ ଦ୍ୱାରା ଚିତ୍ରପ୍ରଦର୍ଶନୀ, ବ୍ରିଟିଶ୍ କାଉନ୍‌ସିଲ୍ ଦ୍ୱାରା ଲଣ୍ଡନ କଳା ମହାବିଦ୍ୟାଳୟମାନଙ୍କ ପକ୍ଷରୁ ପ୍ରକାଶିତ ପ୍ରଦର୍ଶନୀ ପୁସ୍ତିକାଗୁଡ଼ିକର ପ୍ରଦର୍ଶନୀ । |

Digitized by srujanika@gmail.com

୨୫ ରୁ ୨୯ତାରିଖ - ପାରମ୍ପରିକ ପଥର ଖୋଦେଇ କର୍ମଶାଳା

ଅକ୍ଟୋବର'୮୬, ୧୦ ତାରିଖ - କ୍ୟାଲିଗ୍ରାଫି ବା ଅକ୍ଷର ଅଙ୍କନକଳାର ପ୍ରଦର୍ଶନୀ

ନଭେମ୍ବର'୮୬, ୨୦ରୁ୩୦ ତାରିଖ- ଶାସ୍ତ୍ରୀ ଇଣ୍ଡୋ-କେନେଡ଼ିଆନ୍ ପ୍ରତିଷ୍ଠାନ ଆନୁକୂଲ୍ୟରେ ପଟରୀ (ମାଟିହାଣ୍ଡି ଶିଳ୍ପ) ଓ ଏଚିଙ୍ଗ୍ ସଂପର୍କୀୟ ପ୍ରଦର୍ଶନୀ ।

ଡିସେମ୍ବର'୮୬, ୧୫ ରୁ ୧୭ତାରିଖ- ଭାରତ ସରକାରଙ୍କ ହସ୍ତଶିଳ୍ପ ବିଭାଗ ଏବଂ ଭାରତ ସରକାରଙ୍କ ଅଧୀନରେ ପରିଚାଳିତ ଭୁବନେଶ୍ୱରର ମାର୍କେଟିଙ୍ଗ୍ ଏବଂ ସର୍ଭିସ୍ ଏକ୍ସଟେନ୍‌ସନ୍ କେନ୍ଦ୍ର ଆନୁକୂଲ୍ୟରେ । ଶିଳ୍ପକର୍ମ ପ୍ରଦର୍ଶନ ତୃତୀୟ ଚିତ୍ରମେଳା (କଲେଜର ବାର୍ଷିକ କଳା ଉତ୍ସବ)

ଗ୍ରାଫିକ୍ ପ୍ରିଣ୍ଟର ଚିତ୍ର ପ୍ରଦର୍ଶନୀ ଓ ଗ୍ରାଫିକ୍ ବିଭାଗ ତରଫରୁ ପ୍ରକାଶିତ ବାର୍ଷିକ ପୁସ୍ତିକା 'ମୁଦ୍ରା'ର ତୃତୀୟ ସଂଖ୍ୟାର ଉନ୍ମୋଚନ ।

ଜାନୁୟାରୀ'୮୭, ୧୫ ତାରିଖ ଶିଳ୍ପୀଙ୍କ ସହିତ ଦିନେ

୨୫ ତାରିଖ କଲେଜର ପ୍ରତିଷ୍ଠା ଦିବସ ପାଳନ ଓ ତୃତୀୟ ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତା ।

ଫେବୃୟାରୀ '୮୭, - ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ସଂପର୍କରେ କର୍ମଶାଳା ଏବଂ ଚିତ୍ରବିଭାଗ ତରଫରୁ ପ୍ରକାଶିତ ବାର୍ଷିକ ପୁସ୍ତିକା 'ଡ୍ରଇଁ'ର ଦ୍ୱିତୀୟ ସଂଖ୍ୟାର ଉନ୍ମୋଚନ ।

ମାର୍ଚ୍ଚ'୮୭ - ଟେରାକୋଟା ପ୍ରଦର୍ଶନୀ ଏବଂ ଭାସ୍କର୍ଯ୍ୟ ବିଭାଗ ତରଫରୁ ପ୍ରକାଶିତ 'ଇମେଜ୍'ର ପ୍ରଥମ ସଂଖ୍ୟାର ଉନ୍ମୋଚନ ।

ଭାରତୀୟ ପାରମ୍ପରିକ କଳା ସଂପର୍କରେ ସେମିନାର୍ ।

ସାହିତ୍ୟ ସଂସଦ, କ୍ରୀଡ଼ା ସଂସଦ, ସ୍କେଚିଙ୍ଗ୍ କ୍ଲବ୍, ସଂଗୀତ ଓ ନୃତ୍ୟ ସଂସଦ ତଥା ପରିବେଶ କ୍ଲବମାନଙ୍କର ବାର୍ଷିକ ଉତ୍ସବ ।

Digitized by srujanika@gmail.com

| | |
|---|---|
| ଏପ୍ରିଲ୍'୮୭ | - ଫଟୋଗ୍ରାଫି ସମ୍ବନ୍ଧୀୟ କର୍ମଶାଳା ଏବଂ ବାର୍ଷିକ ପ୍ରଦର୍ଶନୀ । |
| ମଇ'୮୭ | - ଚତୁର୍ଥ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀ ଏବଂ କଳା ଓ ନାନ୍ଦନିକତା ସଂପର୍କୀୟ ମହାବିଦ୍ୟାଳୟର ବାର୍ଷିକ ପତ୍ରିକା -'ଚିତ୍ରମ୍'ର ଉନ୍ମୋଚନ । ଛାତ୍ରଛାତ୍ରୀଙ୍କ ଦ୍ୱାରା ନାଟକ ପରିବେଷଣ । (ଏଠାରେ ଉଲ୍ଲେଖନୀୟ ଯେ କଳା ଓ ନାନ୍ଦନିକତା ସଂପର୍କରେ ଇଂରାଜୀ ଭାଷାରେ ପ୍ରକାଶିତ ଆମ କଲେଜ ପତ୍ରିକାରେ ଭାରତବର୍ଷର ବିଶିଷ୍ଟ କଳା ସମାଲୋଚକ ଓ କଳା ଐତିହାସିକମାନଙ୍କ ଲେଖା ମୁଦ୍ରିତ ହେଉଥିଲା । |

କଲେଜର ନିର୍ଦ୍ଧିଷ୍ଟ ପାଠ୍ୟକ୍ରମ ବାହାରେ ଉପରେ ଉଲ୍ଲିଖିତ କାର୍ଯ୍ୟକ୍ରମ ଗୁଡ଼ିକୁ ରୂପାୟିତ କରାଯାଉଥିଲା ଏଥିପାଇଁ ସରକାରୀ ଅନୁଦାନ ସାମାନ୍ୟ ଉପଲବ୍ଧି ହେଉଥିଲା । ଆମେ ଚାନ୍ଦା ଭେଦା କରି, ବେଳେ ବେଳେ ନିଜ ଦରମାରୁ ଅର୍ଥବ୍ୟୟ କରି ଏହି କାର୍ଯ୍ୟକ୍ରମକୁ ସାକାର କରୁଥିଲୁ ।

ପାଠ୍ୟକ୍ରମ ପାଇଁ ଯେଉଁ ଖସଡ଼ା ପ୍ରସ୍ତୁତ ହେଇଥାଏ ସେଥିରେ ଅନ୍ତର୍ନିହିତ ଆଭିମୁଖ୍ୟ ସଦାକାଳେ ପ୍ରକାଶିତ ହେଇ ପାରି ନଥାଏ । ଏଣୁ ଆମେ କଲେଜ ପକ୍ଷରୁ ପ୍ରକାଶିତ ଏହି ପାଠ୍ୟସାରଣୀରେ ସେହି ଆଭିମୁଖ୍ୟକୁ ସୂଚିତ କରିଦେଇଥାଉ । ଏଭଳି ବ୍ୟବସ୍ଥା ଉଭୟ ଛାତ୍ରଛାତ୍ରୀ ଏବଂ ଅଧ୍ୟାପକ ଅଧ୍ୟାପିକାଙ୍କ ପାଇଁ ସୁଗମ ହୋଇଥାଏ । ଏଠାରେ ସେଥିରୁ ସାମାନ୍ୟ କେତୋଟି ଉଦାହରଣ ଛଳରେ ଲିପିବଦ୍ଧ କରିବାର ଆବଶ୍ୟକତା ମୁଁ ଅନୁଭବ କରୁଛି । ସେଗୁଡିକ ହେଲା ଅକ୍ଷର ଲିଖନ କଳାର ପରିକଳ୍ପନା ଓ ପ୍ରଣାଳୀ, ଓଡ଼ିଶାର ମନ୍ଦିରମାନଙ୍କରେ ଖୋଦିତ ଡିଜାଇନ୍‌ର ଅଧ୍ୟୟନ ଓ ତା'ରି ଉପରେ ନିର୍ଭର କରି ନୂଆ ନୂଆ ଶୈଳ୍ପିକ ପରିକଳ୍ପନା, ପୁରାତନ ଶିଳ୍ପଶାସ୍ତ୍ରରେ ବ୍ୟବହୃତ ପରିଭାଷା, ଚିତ୍ରକଳାରେ ଗୁଣ ଓ ମାନର ଆକଳନ, ଅକ୍ଷରରୁ ଚିତ୍ରର ପରିକଳ୍ପନା, କଳା ଓ ସୌନ୍ଦର୍ଯ୍ୟ ମଧ୍ୟରେ ତାରତମ୍ୟ, କଳାର ଆଧାର, ତା'ର ବିରୂପୀକରଣ ଓ ନୂତନ ପ୍ରତିରୂପ, ଭାରତୀୟ ଚିତ୍ରକଳାର ମୌଳିକତା, ପାରମ୍ପରିକ କ୍ଷୁଦ୍ରଚିତ୍ର (ମିନିଏଚର୍)ର ରଚନା କୌଶଳ, ପଞ୍ଜର, ବର୍ଣ୍ଣ ଓ ରୂପ ବିନ୍ୟାସର ଅନୁଶୀଳନ । ପାରମ୍ପରିକ ଗଂଜପା ଡିଜାଇନ୍‌ର ବୈଭବ ଅଧ୍ୟୟନ ଓ ନୂଆ ଧରଣର ଗଂଜପାର ପରିକଳ୍ପନା, ବୟନ କଳାର ବିଭିନ୍ନ ଡିଜାଇନ୍ ଅନୁଶୀଳନ

Digitized by srujanika@gmail.com

କରିବା, ଷଡ଼ଙ୍ଗ କଳାତତ୍ତ୍ୱର ଅବବୋଧ, ଭାରତୀୟ ସଂସ୍କୃତିର ଅଭ୍ୟୁଦୟ ଓ ବିକାଶ ଏବଂ ଶାଢ଼ି ଉପରେ ଛପେଇବା ପାଇଁ କାଠବ୍ଲକ୍ ନିର୍ମାଣ । ସୃଜନଶୀଳ ଫଟୋଗ୍ରାଫୀ, ଇତ୍ୟାଦି । ସେତେବେଳକୁ ଆମ ମହାବିଦ୍ୟାଳୟରେ ନା ବ୍ୟୋମକେଶ ମହାନ୍ତି ନା ଚନ୍ଦ୍ରମଣି ବିଶ୍ୱାଳ ଯୋଗ ଦେଇଥିଲେ । ଆମେ ଧାରସୂତ୍ରରେ ଖଲ୍ଲିକୋଟ ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ଇନ୍‌ଷ୍ଟ୍ରକ୍‌ଟର୍ ଭାବେ କାର୍ଯ୍ୟ କରୁଥିବା ପଞ୍ଚାନନ ସୁର ଓ ବିନାୟକ ବେହେରାଙ୍କୁ ଆମ କଲେଜରେ ସାମିଲ କରିଥିଲୁ । ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ବଳଦେବ ମହାରଥା ଓ ଦେବରାଜ ସାହୁଙ୍କ ଆନ୍ତରିକ ସାହଚର୍ଯ୍ୟ ଫଳରେ ଏ କାର୍ଯ୍ୟକ୍ରମ ଗୁଡିକ ସୁଚାରୁରୂପେ ପରିଚାଳିତ ହେଇପାରୁଥିଲା । ଏମାନଙ୍କ ସହିତ ଅଫିସର କର୍ମଚାରୀ ଗଗନ ବିହାରୀ ମହାନ୍ତି, ରାଜକୁମାର ସୁବୁଦ୍ଧି ଓ ଅନ୍ୟାନ୍ୟମାନଙ୍କ ଅକୁଣ୍ଠ ସହଯୋଗ ମୁଁ ପାଇ ପାରୁଥିଲି । କହିବା ବାହୁଲ୍ୟ ଯେ ଏ କାର୍ଯ୍ୟକ୍ରମର ପରିକଳ୍ପନା ଯେହେତୁ ମୋର ହିଁ ଥିଲା ଏଣୁ ଏହାର ରୂପାୟନର ଦାୟିତ୍ୱ ମଧ୍ୟ ମୁଖ୍ୟତଃ ମୋରି ଉପରେ ନ୍ୟସ୍ତ ଥିଲା ।

Digitized by srujanika@gmail.com

# ୧୩. କଳା ଓ ପ୍ରକୃତି କର୍ମଶାଳା

ବିଗତ ଶତାବ୍ଦୀର ଅଶିଦଶକରେ ପ୍ରକୃତି ଓ ପରିବେଶର ସୁରକ୍ଷାକୁ କେନ୍ଦ୍ରକରି ବେଶ୍ ଚର୍ଚ୍ଚା ଚାଲିଲା । କୁହାଗଲା ପୃଥିବୀରେ ଉତ୍ତାପ ବଢ଼ୁଛି । ଋତୁମାନେ ସେମାନଙ୍କ ଆଗମନର ଦିନ, ବେଳା ଓ ନକ୍ଷତ୍ର ବଦଳେଇ ସାରିଲେଣି । ଜଣେ ଜଣେ ଆଉ ଜମାରୁ ଉଭା ବି ହେଉନାହାନ୍ତି । ଏଇ ଯିମିତି ହେମନ୍ତ । ବର୍ଷକରେ ଛଅ ଋତୁ ଏକଥା ଛାତିରେ ହାତରଖି ସଫା କହିହେଉନି । ମାଟି, ପାଣି, ପବନ ଏଭଳି ଯାହାସବୁ ପ୍ରକୃତିର ଅମୂଲ୍ୟ ଉପାଦାନ ଦୂଷିତ ହେବାରେ ଲାଗିଲେଣି । ଏଥର ପରିବେଶ ପ୍ରତି ଆମେ ଦୃଷ୍ଟି ନଦେଲେ, ତା'ର ରକ୍ଷଣାବେକ୍ଷଣ ପାଇଁ ଚେଷ୍ଟିତ ନହେଲେ ଆଉ ନିସ୍ତାର ନାହିଁ । ଏହି ମର୍ମରେ ଓଡ଼ିଶା ସରକାର ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେବା ପାଇଁ ବିଭାଗଟିଏ ଖୋଲିଲେ । ବୋଧହୁଏ ସୁଧାଂଶୁ ଭୂଷଣ ମିଶ୍ର ଏ ବିଭାଗ ଦାୟିତ୍ୱରେ ରହିଲେ । ପରିବେଶର ସୁରକ୍ଷା ସଂପର୍କରେ ଜନସଚେତନତା ବଢ଼େଇବା ପାଇଁ ନାନା ପ୍ରକାର ଯୋଜନା ରୂପାୟନ କରିବାକୁ ଏହି ବିଭାଗରେ ସ୍ଥିର କରାଗଲା ।

ଏହି ବିଭାଗର ମୁଖ୍ୟ ସଂଚାଳକ ଥିଲେ ରାଧାମୋହନ ପଣ୍ଡା ବା ସଂକ୍ଷେପରେ ରାଧାମୋହନ ବା ସଂଭ୍ରମ ରଖି କହିଲେ କୁହାଯିବ ପ୍ରଫେସର୍ ରାଧାମୋହନ । ବେଶ୍ ସାଦାସିଧା ଲୋକ, ପରିଧାନ ଆଣ୍ଠୁ ଡ଼େଇଁଲା ପରି ଖଣ୍ଡିଏ ଧୋତି, ଅଧାହାତ ବାଲା ସାର୍ଟ ଓ ହଳେ ଚପଲ । ମୁହଁରେ ଗୋଛାଏ ଦାଢ଼ି । ମନେ ହେଉଥିଲା ପରିବେଶର ସୁରକ୍ଷା ନହେବା ଯାଏଁ ସେ ଦାଢ଼ି ଖିଅର ହେବେନି । ସେ ପରିବେଶର ସୁରକ୍ଷା ସଂପର୍କରେ ଭାଷଣ ଦେଲେ ନାଗସାପ ମଧ୍ୟ ଫଣାଟେକି ତଟସ୍ଥ ହେଇ ଶୁଣିବ । ଅତି ଚମତ୍କାର କଥା କହିବା ଢ଼ଙ୍ଗ, ଅତି ସାଧାରଣ କଥାଯାକ ଅଦ୍ଭୁତ ଲାଗିବ । ଏଇ ଦେଖନ୍ତୁ ତାଙ୍କ ଭାଷଣର କିଛି ଅଂଶ ମୁଁ ମନେପକାଉଛି: ଚାଷ ପାଇଁ ବିଲ କାଦୁଅ କରି ସାରିଲା ପରେ ରାସାୟନିକ ସାର ପ୍ରୟୋଗ କରାଗଲା, କ'ଣ ନା ଜମିର ଉର୍ବର ଶକ୍ତି ବଢ଼ିବ । କିନ୍ତୁ ପାଣି ଏଭଳି ଦୂଷିତ ହେଇଗଲା ଯେ ଜମିରେ ଯେତେ ପୋକ ଯୋକ ଛୋଟ ଜନ୍ତୁଜନ୍ତା ଥିଲେ ସମସ୍ତେ ମଲେ । ବେଙ୍ଗ ଝିଣ୍ଟିକା ଖାଇ ମଲା ଆଉ ବେଙ୍ଗକୁ ଯେଉଁ ଧଣ୍ଡ ଗିଳିଲା ସିଏ ବି ମଲା । ପୁଣି ଧଣ୍ଡକୁ ଥଣ୍ଟରେ ଉଠେଇ ନେଇ ଗଛ ଉପରେ ମହା ଆନନ୍ଦରେ ଖାଉଥିବା ଚିଲର ମଧ୍ୟ ମୃତ୍ୟୁ ହେଲା । ମୃତ୍ୟୁର ଏହି ବିଭୀଷିକା ଫଳରେ ଚିଲଙ୍କ ବଂଶ ଲୋପ ହେଇଗଲାଣି ।

Digitized by srujanika@gmail.com

ଶଙ୍ଖଚିଲ ତ ଆଉ ଆଖିରେ ପଡୁନାହାନ୍ତି । ପିଲାବେଳେ ଶଙ୍ଖଚିଲଟି ଆକାଶରେ ଉଡ଼ିବା ଦେଖିଲେ, ଆମେ କେତେ ଖୁସୀ ହେଉ ନ ଥିଲେ, ଗୀତ ଯୋଡ଼ି ତାଳି ମାରି ଗାଉଥିଲେ, 'ଶଂଖଚିଲ ମହାବିଲ ଧୋବ ଧାଉଳିଆ ପକ୍ଷୀ, ରାମଚନ୍ଦ୍ର କହିଯାଇଛନ୍ତି, ସୀତା ବଡ଼ ଦୁଃଖୀ ।' ରାସାୟନିକ ସାର ଶେଷରେ କେବଳ ମାଟି ନୁହେଁ, ପାଣି ନୁହେଁ, ଜୀବଜନ୍ତୁ ବୋଲି ନୁହେଁ ଗୋଟିଏ ସାଂସ୍କୃତିକ ପରମ୍ପରାକୁ ମଧ୍ୟ ସମୂଳେ ଧ୍ୱଂସ କରିଦେଲା । ପରିବେଶ, ପ୍ରକୃତି ଓ ସଂସ୍କୃତିର ଉତ୍ସ ଏକ । ଏକାସଂଗେ ବିକଶିତ ହୁଅନ୍ତି ପୁଣି ମିଳିମିଶି ବିଲୟ ଭଜନ୍ତି ।

ପ୍ରଫେସର୍ ରାଧାମୋହନ ଖୁବ୍ ଆତ୍ମପ୍ରତ୍ୟୟର ସହିତ ଏକଥା ଗୁଡିକ କହନ୍ତି । ଯିମିତି ସିଏ ସବୁକଥା ଅଙ୍ଗେ ଲିଭେଇଛନ୍ତି । ତାଙ୍କ କଥାଗୁଡିକ ଶୁଣିଲା ବେଳେ ଗୋଟିଏ ଗୋଟିଏ ଦୃଶ୍ୟ ଆଖିଆଗରେ ନାଚିଉଠେ । ଅନ୍ୟଭାବରେ କହିବାକୁ ଗଲେ କୁହାଯାଇପାରିବ ଯେ ରାଧାମୋହନ ତାଙ୍କ କଥାରେ ଚିତ୍ରଆଙ୍କି ପାରନ୍ତି । ଏଇଠୁ ଆରମ୍ଭ ହୁଏ ପ୍ରକୃତି ସହିତ କଳାର ସଂପର୍କ ବା ପରିବେଶ ବିଭାଗ ସହିତ ଆମ କଲେଜର ସଂପର୍କ । ପରିବେଶ ବିଭାଗ ଆମ କଲେଜରେ କର୍ମଶାଳାଟିଏ ଅନୁଷ୍ଠିତ କରେଇବା ପାଇଁ ସ୍ଥିର କଲେ । କଲେଜ ପ୍ରତିଷ୍ଠିତ ହେବାର ପ୍ରଥମ ବର୍ଷ ୧୯୮୪ ମସିହାର ଶୀତଦିନରେ ପାଞ୍ଚଦିନ ବ୍ୟାପୀ ଏହି କର୍ମଶାଳା ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ନିମନ୍ତିତ ହେଇ ପ୍ରାୟ ତିରିଶ ବତିଶି ଜଣ ଶିଳ୍ପୀ କର୍ମଶାଳାରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଥିଲେ ସ୍କୁଲମାନଙ୍କର ଚିତ୍ରଶିକ୍ଷକ, ଆଉ କେତେକ କଲେଜମାନଙ୍କରେ କାର୍ଯ୍ୟରତ ଶିଳ୍ପୀ ଓ ସରକାରୀ ବିଭାଗମାନଙ୍କରେ ନିଯୁକ୍ତି ପାଇଥିବା ଆର୍ଟିଷ୍ଟ୍ । ସମୟ କ'ଣ କାହାକୁ ଅପେକ୍ଷା କରେ ? ସେମାନଙ୍କ ମଧ୍ୟରୁ କେତେଜଣଙ୍କର ଏ ଭିତରେ ଦେହାନ୍ତ ହେଇଗଲାଣି । ସେହି ଦିବଂଗତ ଶିଳ୍ପୀମାନଙ୍କ ମଧ୍ୟରେ ଅଛନ୍ତି ଚିତ୍ର ଶିକ୍ଷୟିତ୍ରୀ ବିରଜା କୁମାରୀ ସିଂହ, ତାଙ୍କ କନ୍ୟା ରମାଦେବୀ ମହିଳା ମହାବିଦ୍ୟାଳୟର ଶିଳ୍ପୀ କମଳ କୁମାରୀ ସିଂହ, ଶ୍ରୀକାକୁଲମ୍‌ର ସ୍ୱାଧୀନଭାବେ କଳା ସାଧନା କରୁଥିବା ଭି. ସୂର୍ଯ୍ୟନାରାୟଣା, ଭୁବନେଶ୍ୱରର ଆମ ଘନିଷ୍ଠ ବନ୍ଧୁ ଏନ୍. ଚନ୍ଦ୍ରଶେଖର ରାଓ ଓ ବ୍ରହ୍ମପୁରର ବିପିନ୍ ବିହାରୀ ସାହୁ । ଶିବିରରେ ଅଂଶଗ୍ରହଣ କରିଥିବା କେତେକ ଏବେ ସରକାରୀ ଚାକିରୀରୁ ଅବସର ନେଇଗଲେଣି । ଚବିଶି ପଚିଶି ବର୍ଷ ତଳର କଥା ହେଲାଣି । ସେମାନେ ହେଲେ ଉତ୍କଳ ବିଶ୍ୱବିଦ୍ୟାଳୟ ଉଦ୍ଭିଦ ବିଜ୍ଞାନ ବିଭାଗର ବି. ଦଣ୍ଡପାଣି, ସଚିବାଳୟ ଯୋଜନା ଓ ସମନ୍ୱୟ ବିଭାଗର ବାଞ୍ଛାନିଧି ପଟ୍ଟନାୟକ, ଓଡ଼ଗାଁ ହାଇସ୍କୁଲର ଚିତ୍ରଶିକ୍ଷକ ମାନ୍ୟରେ ଆମ ଭାଇନା, ଲକ୍ଷ୍ମୀନାରାୟଣ ସାହୁ, ହସ୍ତଶିଳ୍ପ ବିଭାଗର ମାଷ୍ଟର୍ କ୍ରାଫ୍ଟ୍‌ସ୍ ମ୍ୟାନ୍ ଦେବରାଜ ସାହୁ, ଆଜିକାଲି ସେ ମାଟିମଣି; ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ଫକୀର ମୋହନ ମଲ୍ଲିକ ଓ ବ୍ରହ୍ମପୁର ମ୍ୟୁନିସିପାଲିଟି ହାଇସ୍କୁଲର ଚିତ୍ରଶିକ୍ଷକ ଦେବେନ୍ଦ୍ର ନାଥ ସାମଲ । ଆଉ

Digitized by srujanika@gmail.com

ଯେଉଁମାନେ ଏବେ ବି ସରକାରୀ ଚାକିରୀରେ ଅଛନ୍ତି, ଏବଂ ଶିଳ୍ପୀଭାବେ ସୁନାମ ଅର୍ଜନ କରିଛନ୍ତି ସେମାନଙ୍କ ଭିତରେ ଅଛନ୍ତି, କେନ୍ଦ୍ର ଲଳିତକଳା ଏକାଡେମୀ ଆଞ୍ଚଳିକ କେନ୍ଦ୍ରର ଶିଳ୍ପୀ ରାମହରି ଜେନା, କେନ୍ଦ୍ରୀୟ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ରହି ମଧ ବିଦେଶରେ ଅବସ୍ଥାପିତ ବନଜା ଚୌଧୁରୀ ଏବଂ ଆମେରିକାରୁ କଳାଶିକ୍ଷା ସମାପ୍ତ କରି ଏବେ କିଟ୍ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ ସତ୍ୟବ୍ରତ ଦାସ ।

କର୍ମଶାଳାକୁ ଆମେ ତିନୋଟି ସମୟ ଖଣ୍ଡରେ ବିଭକ୍ତ କରିଦେଇଥିଲୁ । ପ୍ରତ୍ୟେକଟି ଥିଲା ଗୋଟିଏ ଗୋଟିଏ ପର୍ଯ୍ୟାୟ । ସକାଳ, ଓପରଓଳି ଓ ସଂଧ୍ୟା । ସକାଳୁ କଲେଜରେ ଜଳଖିଆ ଖାଇସାରି ଆମେ ବାବୁଲା ସେନାପତିଙ୍କ ବେତସ କୁଞ୍ଜରେ ଏକତ୍ରିତ ହେଉଥିଲୁ । ବାବୁଲା ସେନାପତି ତାଙ୍କ ଘରର ନାମକରଣ କରିଥିଲେ ମଳୟ । ଆମ୍ବ, କଦମ୍ବ, ନିମ୍ବ, ନଡ଼ିଆ ଓ ବାଉଁଶ ବଣରେ ରୁନ୍ଧା ପରିବେଶ । ତା' ସାଙ୍ଗକୁ ଜାତିଜାତିକା ଫୁଲର ଉପବନ । ଏଭଳି ଏକ ସୁନ୍ଦର ଓ ବର୍ଣ୍ଣିଳ ପରିବେଶରେ ଆରମ୍ଭ ହେଉଥିଲା ପରିବେଶ ସଂକ୍ରାନ୍ତୀୟ ବ୍ୟାଖ୍ୟାନ । ପ୍ରଫେସର୍ ରାଧାମୋହନଙ୍କ ତଥ୍ୟ ଭିତ୍ତିକ ଭାଷଣରେ ଆମେ ସମସ୍ତେ ଅନୁପ୍ରାଣିତ ହୋଇଯାଉଥିଲୁ । ପ୍ରକୃତିର ଅଫୁରନ୍ତ ହିଲ୍ଲୋଳରେ ଶିଳ୍ପୀମାନେ ଆମୋଦିତ ହୋଇଯାଉଥିଲେ । ତା'ପରେ କଲେଜକୁ ଫେରି ଦିନବେଳାର ଖାଦ୍ୟ ଖାଇସାରି ପହଞ୍ଚୁଥିଲୁ ନନ୍ଦନକାନନରେ । ସେଠି ସଂରକ୍ଷିତ ଅରଣ୍ୟର ପରିବେଶରେ, ତା'ର ସବୁଜ ମହକରେ ମଜଗୁଲ ରହି ସମସ୍ତେ ଯେଝା କଳ୍ପନାକୁ ରୂପ ଦେଇ ବସୁଥିଲେ । ଉତୁରି ପଡୁଥିଲା ଜାତିଜାତିକା ଚିତ୍ର, ତା' ମଧ୍ୟରେ ଥାଏ ବିଜ୍ଞାପନ ଚିତ୍ର, ପୋଷ୍ଟର ଓ ବିଭିନ୍ନ ପ୍ରାକୃତିକ ଦୃଶ୍ୟର ପ୍ରତିଛବି । ଏ ଚିତ୍ରମାନଙ୍କ ଭିତରକୁ ବେଳେବେଳେ ହରିଣଟିଏ, ହଂସଟିଏ ବା କଜଳପାତିଟିଏ ପଶି ଆସୁଥିଲେ ଚିତ୍ର ଜୀବନ୍ତ ହୋଇ ଉଠୁଥିଲା । ଚିତ୍ରରେ ତ ପ୍ରକୃତି ଅମର ହୋଇଯାଉଥିଲା କିନ୍ତୁ ଚିତ୍ରର ପରିସୀମା ବାହାରେ ? କଳା ପ୍ରକୃତି କର୍ମଶାଳା ଏହାହିଁ ଚେତେଇ ଦେଉଥିଲା ।

ସଂଧ୍ୟାହେଲେ ଶିଳ୍ପୀମାନେ ଫେରିଆସୁଥିଲେ ପୁଣି ଟଙ୍କପାଣି ରୋଡ଼ର କଲେଜ ପରିସରକୁ । ସେଠି ପରିବେଶ ବିଭାଗ, ଲୋକସଂପର୍କ ଓ ସୂଚନା ବିଭାଗ ଏବଂ ପର୍ଯ୍ୟଟନ ବିଭାଗ ତରଫରୁ ଦେଶ ଓ ବିଦେଶରେ ନିର୍ମିତ ପରିବେଶ ସଂକ୍ରାନ୍ତୀୟ ବିଭିନ୍ନ ଚଳଚିତ୍ର ପ୍ରଦର୍ଶିତ ହେଉଥିଲା । ବିଭିନ୍ନ ଅତିଥି ନିମନ୍ତ୍ରିତ ହୋଇ ଆସୁଥିଲେ ଶିଳ୍ପୀଙ୍କ ସହିତ ଆଲୋଚନା କରିବା ପାଇଁ, ଭାବବିନିମୟ କରିବା ପାଇଁ । ସେମାନଙ୍କ ଭିତରେ ଥିଲେ ବାବୁଲା ସେନାପତି, ଅସୀମ ବସୁ, ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର୍ ଶ୍ୟାମ ସୁନ୍ଦର ପଟ୍ଟନାୟକ, ଚିତ୍ରଶିଳ୍ପୀ ଲକ୍ଷ୍ମୀଧର ଦାସ, କବି ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ପ୍ରତ୍ନତତ୍ତ୍ୱବିତ୍ ବିଜୟ କୁମାର ରଥ । କବି ସୀତାକାନ୍ତ ମହାପାତ୍ର ଉଦ୍‌ଯାପନ ଉତ୍ସବରେ ମୁଖ୍ୟ ଅତିଥି ହୋଇ କଲେଜକୁ ଆସିଥିଲେ । ପ୍ରଶାସକ ଓ ଫଟୋଗ୍ରାଫର୍ ଗୌତମ ବୁଦ୍ଧ ମୁଖାର୍ଜୀ କର୍ମଶାଳାରେ ତାଙ୍କ ଆଣ୍ଟାର୍କଟିକା ଗସ୍ତର ରଙ୍ଗିନ

Digitized by srujanika@gmail.com

ସ୍ଲାଇଡ଼୍‌ସ୍ ପ୍ରଦର୍ଶନ କରିଥିଲେ । ଆଉ ଦିନେ ସଂଧ୍ୟାରେ ସର୍ବଭାରତୀୟ ପ୍ରତ୍ନତତ୍ତ୍ୱ ସଂସ୍ଥାର ଅଧ୍ୟକ୍ଷ ନାଗରାଜ ରାଓ ମନ୍ଦିର ଗାତ୍ରରେ ଖୋଦିତ ପରିବେଶ ସଂକ୍ରାନ୍ତୀୟ ବିଭିନ୍ନ ଭାସ୍କର୍ଯ୍ୟ ସଂପର୍କରେ ରଙ୍ଗିନ୍ ସ୍ଲାଇଡ଼୍‌ସ୍ ମାଧ୍ୟମରେ ଆମକୁ ସମ୍ୟକ୍ ଧାରଣା ଦେଇଥିଲେ । ଦିନପରେ ଦିନ ଗଡ଼ି ଯାଉଥିଲା ଏବଂ ପ୍ରକୃତି ସହିତ ଏକାତ୍ମହେବାର ସୁଯୋଗ ହାତ ପାଆନ୍ତାରେ ଉପଲଭ୍ୟ ହେଇଯାଉଥିଲା ।

ଏମିତିରେ ଦେଖିବାକୁ ଗଲେ ପ୍ରକୃତି ହିଁ ସଦାକାଳେ ଶିଳ୍ପୀର ପ୍ରେରଣାର ଉତ୍ସ । ପ୍ରକୃତି ହିଁ ଚିତ୍ରଶିଳ୍ପୀର ତୂଳୀରେ, ଭାସ୍କରର ନିହାଣ ମୂନରେ କଳା ହେଇ ରୂପ ପାଏ । ପ୍ରକୃତି ସହିତ ଶିଳ୍ପୀର ସଂପର୍କ ଅତ୍ୟନ୍ତ ପ୍ରାଚୀନ ପୁଣି ନିବିଡ଼ । ପ୍ରକୃତି ସହିତ ଏକାତ୍ମ ନହେଲେ କଳାସୃଷ୍ଟି ସମ୍ଭବ ନୁହେଁ । ପରିବେଶ ଓ ଶିଳ୍ପୀର ଅନୁକରଣୀୟ ସଂପର୍କଟିଏ ଶାନ୍ତିନିକେତନ କଳାଭବନର ଛତ୍ରେ ଛତ୍ରେ ଫୁଟି ଉଠିଛି । ଏ ସଂପର୍କ ଏତେ ଗହୀରିଆ ଯେ କଳାଭବନର ଶିକ୍ଷା ପଦ୍ଧତି ଓ ପରମ୍ପରାକୁ ଗଭୀର ଭାବେ ଅନୁଶୀଳନ ନକଲେ ଜଣା ପଡିବନି । କଳାଭବନର ଅଧ୍ୟକ୍ଷ ଆଚାର୍ଯ୍ୟ ନନ୍ଦଲାଲ ତାଙ୍କ ଛାତ୍ରଛାତ୍ରୀଙ୍କୁ ଉଦ୍‌ବୋଧନ ଦେଇ କହିଥାନ୍ତି; ଗଛଟିଏକୁ ସାମାନ୍ୟ ଭାବି ତାକୁ ଆଙ୍କି ବସିଲେ, ହୁଏତ ଗଛଟିଏ ଆଙ୍କି ହେଇଯିବ, ଅଥଚ ସେଥିରେ ଗଛର ଭାବ ରହିବନି, ଆତ୍ମା ରହିବନି । ଏଣୁ ଚିତ୍ରରେ ଗଛର ପ୍ରାଣ ଫୁଟେଇବାକୁ ହେଲେ ଗଛ ପାଖରେ କାକୁତିମିନତି ହେବାକୁ ହେବ । ଗଛକୁ ଦିନଦିନ ଧରି କୁଣ୍ଢେଇ ଅଶ୍ରୁମୋଚନ କରିବାକୁ ହେବ, ନେହୁରା ହେଇ କହିବାକୁ ହେବ, ହେ ଗଛ ! ମୋତେ ଦୟାକର । ମୋ ଚିତ୍ରରେ ପ୍ରସନ୍ନ ହୁଅ ।

ପ୍ରକୃତି ସହିତ ନିଜକୁ ଏକାକାର କରିଦେଇ ପାରିଲେ ପ୍ରକୃତିର ଅନିଷ୍ଟ କରିବା ପାଇଁ ମନ ବଳିବନି । ଏହି ସଚେତନତାକୁ କଳା ମାଧ୍ୟମରେ ପରିବେଷଣ କରିବାର ଉଦ୍ଦେଶ୍ୟ ନେଇ ଆମେ କଳା ଓ ପ୍ରକୃତି କର୍ମଶାଳାର ଆୟୋଜନ କରିଥିଲୁ । ଏଭଳି କର୍ମଶାଳା ଆମ କଲେଜ ଜୀବନରେ କେବଳ ନୂଆ ନଥିଲା । ଏହାଥିଲା ସମଗ୍ର ଓଡ଼ିଶା ପାଇଁ ଗୋଟିଏ ଅଭିନବ ପଦକ୍ଷେପ । ଏହି କର୍ମଶାଳା ପ୍ରଫେସର୍ ରାଧାମୋହନଙ୍କୁ କଲେଜ ସାଙ୍ଗରେ ବନ୍ଧୁତାର ଡୋରିରେ ଛନ୍ଦି ଦେଇଥିଲା । ଏହା ପରେ ପରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ରାଧାମୋହନଙ୍କ ନେତୃତ୍ୱରେ ଆମ କଲେଜର ଛାତ୍ରଛାତ୍ରୀମାନେ କର୍ମଶାଳାମାନଙ୍କର ଦାୟିତ୍ୱ ନେଇଛନ୍ତି ।

ଆମ କର୍ମଶାଳାର ସଫଳତାରେ ଅସୂୟାପରବଶ ହେଇ ରାଜ୍ୟ ଲଳିତକଳା ଏକାଡେମୀ ସାଧାରଣ ପରିଷଦର କିଛି ସଦସ୍ୟ ବିଭାଗୀୟ ସଚିବ ବିବେକାନନ୍ଦ ପଟ୍ଟନାୟକଙ୍କ ନିକଟରେ ମୋ ବିରୁଦ୍ଧରେ ଅଭିଯୋଗ ଆଣିଲେ । ଅଭିଯୋଗର କାରଣ ଅତି ନଗଣ୍ୟ, ଅଯୌକ୍ତିକ ଓ ହାସ୍ୟାସ୍ପଦ ମଧ୍ୟ । ମୁଁ ଏତେବଡ଼ କର୍ମଶାଳାର ଆୟୋଜନ କରୁଛି ଅଥଚ ଏକାଡେମୀର ସାଧାରଣ ପରିଷଦର ସଭ୍ୟମାନଙ୍କୁ ନିମନ୍ତ୍ରଣ ଜଣେଇନି । ସେତେବେଳର ସାଧାରଣ

Digitized by srujanika@gmail.com

ପରିଷଦରେ ଥିଲେ ବିନୋଦ ରାଉତରାୟ, ଯତୀନ ଦାସ ପ୍ରମୁଖ ଶିଳ୍ପୀ । ସଚିବ ବିବେକାନନ୍ଦ ପଟ୍ଟନାୟକ ଜଣେ ସଚ୍ଚୋଟ ପ୍ରଶାସକ, ଏଣୁ କଲେଜର ଏଭଳି ବଦନାମକୁ ସହଜରେ ଗ୍ରହଣ କରି ନପାରି ଗୋଟିଏ ସରକାରୀ ନୋଟ୍‌ସିଟ୍‌ରେ ମୋ ପାଖକୁ ଆଦେଶନାମା ପଠେଇଲେ । ସେହି ଆଦେଶନାମାରେ ଉଲ୍ଲିଖିତ ଥିଲା ଯେ ଅଧକ୍ଷ ବ୍ୟକ୍ତିଗତ ଭାବେ ଏକାଡେମୀ ଅଫିସକୁ ଯାଇ ସବୁ ସଭ୍ୟଙ୍କୁ ନିମନ୍ତ୍ରଣ କରିବେ ଏବଂ ଦିବାଭୋଜନରେ ଆପ୍ୟାୟିତ କରିବେ । ଅବଶ୍ୟ ପ୍ରାୟ ପନ୍ଦର କୋଡ଼ିଏ ସଭ୍ୟଙ୍କ ପାଇଁ ଭୋଜନର ବ୍ୟବସ୍ଥା କରାଗଲେ ଯେଉଁ ଅର୍ଥ ବ୍ୟୟିତ ହେବ ତାହା କିଭଳି ଯୋଗାଡ଼ କରାଯିବ ସେକଥା ନୋଟ୍‌ସିଟ୍‌ରେ ଉଲ୍ଲେଖ କରାଯାଇ ନଥିଲା । ଲଳିତ କଳା ଏକାଡେମୀର ସାଧାରଣ ପରିଷଦର ବୈଠକ ସେଦିନ ବସିଥାଏ । ମୋ ପାଖକୁ ସଚିବଙ୍କ ଦପ୍ତରରୁ ଆସୁଥିବା ଆଦେଶନାମା ସଂପର୍କରେ ଉପଶାସନ ସଚିବ ସୁଧାଂଶୁ ମୋହନ ରାଉତରାୟଙ୍କ ମାଧ୍ୟମରେ ଆଗତୁରା ଖବର ପାଇ ଲିଙ୍ଗରାଜ ମନ୍ଦିରର ସ୍ୱତନ୍ତ୍ର ଭୋଗ ବ୍ୟବସ୍ଥା କରିସାରି ଏକାଡେମୀ ଅଫିସରେ ପହଞ୍ଚି ଯୋଡ଼ହସ୍ତରେ ସମସ୍ତଙ୍କୁ ନିମନ୍ତ୍ରଣ ଜଣେଇଲି । ମନେହେଲା ମୋ ଝିଅର ବାହାଘର, ଭୁଲ କ୍ରମେ କିଛି ବରଯାତ୍ରୀ ସତେ ନିମନ୍ତ୍ରିତ ନହେଇ ରହିଯାଇଥିଲେ । ଏଭଳି ଅବହେଳା କଦାପି ମାର୍ଜନୀୟ ନୁହେଁ ।

ଶିଳ୍ପୀ ବନ୍ଧୁମାନେ କଲେଜରେ ପଦାର୍ପଣ କଲେ । ଭୂରିଭୋଜନରେ ଆପ୍ୟାୟିତ ହେଲେ । ସେମାନେ ଅଧକ୍ଷଙ୍କ କରାମତି ବି ହେଜିଲେ । କଲେଜର ଆତିଥ୍ୟର ମହତ୍ୱ ମଧ୍ୟ ହୃଦୟଙ୍ଗମ କଲେ । ସେମାନେ କଲେଜରୁ ବିଦାୟ ନେଲାପୂର୍ବରୁ କର୍ମଶାଳା ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଇଥିବା ଗୋଟିଏ ଗୋଟିଏ ଝୁଲାମୁଣି ସେମାନଙ୍କୁ ଉପହାର ଦେଲୁ । ଅଖାରେ ତିଆରି ମୁଣି ତା' ଉପରେ ଇଟା ରଙ୍ଗର କନାରେ ଦୁଇଟି ଗୋଲିଆ ଜହ୍ନ ନିଖୁଣ ଛୁଞ୍ଚି ଟିପରେ ସିଲେଇ ହେଇଛି । କନା ଉପରେ ସାଞ୍ଚି ସ୍ତୂପର ତୋରଣରେ ଖୋଦିତ ପଦ୍ମବନର ପ୍ରତିଛବି ସିଲ୍‌କ ସ୍କ୍ରୀନ୍‌ରେ ମୁଦ୍ରିତ । ଅଖାର ମଳିଛିଆ ଧୂସରିତ ଶାଗୁଆ ରଙ୍ଗର ପୃଷ୍ଠଭୂମିରେ ଇଟାରଙ୍ଗର ଜହ୍ନ ବେଶ୍ ରୋଚକ ହୋଇଥିଲା । ଶିଳ୍ପୀ ଯତୀନ ଦାସଙ୍କ ମୁହଁରୁ ପ୍ରଶଂସାର ବାକ୍ୟଟିଏ ତାଙ୍କ ନିଜସ୍ୱ ଢ଼ଙ୍ଗରେ ବାହାରି ପଡିଲା । 'ଶଳା ତମକୁ ସବୁକଥା ବେଶ୍ ଜଣା ।' ଯତୀନଙ୍କ ଧାରଣା ଦିଲ୍ଲୀରେ ହିଁ ସବୁ ଭଲକଥା ହୁଏ ଏବଂ ଯେଉଁମାନେ ଦିଲ୍ଲୀରେ ରହିଥାନ୍ତି, ସେମାନେ ହିଁ ବଡ଼ ଆର୍ଟିଷ୍ଟ୍ । ଆଉ ଅନ୍ୟମାନେ ଶଳା ଓଡ଼ିଆ, ତୁଚ୍ଛ । ଯତୀନଙ୍କ ଅବବୋଧରେ ଆମେ ସାମାନ୍ୟ ଭଙ୍ଗା ସୃଷ୍ଟି କରିପାରିଥିଲୁ ବୋଲି ଆମ ମନରେ ଉଚ୍ଚାଟ ଆସିପାରିଥିଲା । ଏହାକୁ ଦିଲ୍ଲୀ ଆଡ଼େ କହନ୍ତି ଝଟ୍‌କା ଦେବା ।

Digitized by srujanika@gmail.com

# ୧୪. କଚ୍ଛନା ଛକର ବି.କେ. କଲେଜ

କାହାର ସିନା ଗୋଟିଏ କଲେଜ, ଆମର କିନ୍ତୁ ଥିଲା ତିନୋଟି । ଟଙ୍କାପାଣି ରୋଡ଼ କଲେଜ, କଚ୍ଛନା ଛକ କଲେଜ ଆଉ ଉଦୟଗିରି ଖଣ୍ଡଗିରି କଲେଜ । ଟଙ୍କପାଣି ରୋଡ଼ରେ ବର୍ଷେ ଚାରିମାସ, କଚ୍ଛନାରେ ନଅବର୍ଷ ଓ ଖଣ୍ଡଗିରିରେ ମୋ ରହଣି ମାତ୍ର ଚାରିମାସ । ଏଣୁ କଲେଜ କହିଲେ କଚ୍ଛନା କଲେଜ । ଟଙ୍କପାଣି ରୋଡ଼ରେ କଲେଜ ଆରମ୍ଭ ହେଲାବେଳକୁ ଘର ଫାଙ୍କା, ଗୋଟିଏ ଡିଗ୍ରୀ କଲେଜ କ'ଣ ଏମିତିରେ ଆରମ୍ଭ ହୋଇପାରେ ? କନ୍‌ଟିଜେନ୍ସି ତ ସମୁଦାୟ ଆଠ ହଜାର । ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣି ଦୟାପରବଶ ହୋଇ ନିର୍ଦ୍ଦେଶାଳୟ ବଜେଟ୍‌ରୁ ଫର୍ଣ୍ଣିଚର୍ ପାଇଁ ଦଶ ହଜାର ଟଙ୍କା ଅନୁଦାନ ଦେଲେ । ମୁଁ କଟକ ସରକାରୀ ଇନ୍‌ଷ୍ଟ୍ରୁମେଣ୍ଟ ଫେକ୍‌ଟରୀ ଯାଇ ଚାରିଜଣ ଅଧ୍ୟାପକଙ୍କ ପାଇଁ ଚାରୋଟି ଟେବୁଲ୍, ଜଣପିଛା ତିନୋଟି ଚୌକି, ଅଫିସ୍ ପାଇଁ ଦୁଇଟି ଟେବୁଲ, ଚାରୋଟି ଚୌକି, ଅଧ୍ୟକ୍ଷଙ୍କ ପାଇଁ ଗୋଟିଏ ଏକ୍‌ଜିକ୍ୟୁଟିଭ୍ ଟେବୁଲ୍, ଘୁରା ଚୌକି ଓ ଛ'ଟି ଅପ୍‌ହୋଲ୍‌ଷ୍ଟରୀବାଲା ଚୌକି ମନୋନୀତ କଲି । ଏସବୁ ଆସବାବପତ୍ର ସାଙ୍ଗକୁ ଗୋଟିଏ ଛୋଟିଆ ସୋ'କେଶ ଏବଂ ଲାଇବ୍ରେରୀ ପାଇଁ ଲମ୍ବା ଟେବୁଲ୍ ମଧ୍ୟ ବଛାଗଲା । ସରକାରୀ ସଂସ୍ଥାରୁ ଆଣିଥିବାରୁ ଏଗୁଡ଼ିର ଯଥେଷ୍ଟ ଇଜ୍ଜତ ଥିଲା । ଇନ୍‌ଷ୍ଟ୍ରୁମେଣ୍ଟ ଫେକ୍‌ଟରୀର ଜେନେରାଲ ମ୍ୟାନେଜର ଥିଲେ ରବିନାରାୟଣ ଦାଶ, ଆମର ଘନିଷ୍ଠ ବନ୍ଧୁ । ପରେ ସେ ଆଇ.ଏ.ଏସ୍. ପାଇ ପଞ୍ଚାୟତିରାଜ ବିଭାଗରେ ସଚିବ ହୋଇ ବହୁତ ଦିନଯାଏଁ ରହିଲେ । ଦକ୍ଷ ପ୍ରଶାସକ ଓ ବେଶ୍ ମେଳାପି ଲୋକ । ଫର୍ଣ୍ଣିଚର୍ ମନୋନୟନ ପରେ ମୁଁ ରବିନାରାୟଣ ଦାଶଙ୍କ ସାଙ୍ଗରେ ଭୁବନେଶ୍ୱର ଫେରିଆସିଲି ଏବଂ ଅଧ୍ୟାପକ ଶିବ ପାଣିଗ୍ରାହୀ ଟେବୁଲ ଚୌକି ଟ୍ରକ୍‌ଡ଼ାଲାରେ ଚଢ଼େଇ ନିଜେ ଟ୍ରକ୍‌ରେ ବସି ଟଙ୍କପାଣି ରୋଡ଼ କଲେଜରେ ପହଞ୍ଚିଲେ । ଏହାପରେ ଆଉ ଆଖିଦୃଶିଆ କାଠ ଫର୍ଣ୍ଣିଚର୍ କଲେଜ ପାଇଁ କିଣା ଯାଇନି । ମୁଁ ଘରୁ ନିଜର ଖଣ୍ଡେ ଦିଖଣ୍ଡ ଇଜଲ୍, ଗୋଟିଏ ବଳଦ ମୁଖା, ଦୁଇଟି ସୁଇସ୍ ଲାଇଟ୍ ଷ୍ଟାଣ୍ଡ, ଗୋଟିଏ ଟେବୁଲ୍ ଲ୍ୟାମ୍ପ ଓ ସୋ'କେଶରେ ରଖିବା ପାଇଁ ବରଗଡ଼ର କିଛି ଚିତ୍ରିତ କାଠ କଣେଇ, ସୋନପୁରର ଟେରାକୋଟା ହନୁମାନ, ଫୁଲବାଣୀ କନ୍ଧମାଳ ଅଞ୍ଚଳର ଦି'ଚାରିଟା ଲିଙ୍ଗା ଓ କିଛି ଚିତ୍ର ସଂପର୍କୀୟ ବହି ଆଣି ସଜେଇ

Digitized by srujanika@gmail.com

ଦେଉଥିଲି । ଅଧ୍ୟକ୍ଷଙ୍କ ଅଫିସ୍ ରୁମ୍‌ରେ ମୋର ଦୁଇଟି କାଚଫ୍ରେମ୍ କରା ଖଲ୍ଲିକୋଟ ବେଳର ଜଳରଙ୍ଗର ଛବି ଓ ଖଣ୍ଡିଏ ଅଏଲ୍ ପେଣ୍ଟିଙ୍ଗ୍ ଝୁଲୁଥାଏ । ଅଧ୍ୟକ୍ଷଙ୍କ ଚୌକି ଉପରେ ଟର୍କିସ୍ ତଉଲିଆ ଜାଗାରେ ଗୁଜରାଟ ଅଞ୍ଚଳର କାଚଲଗା ଗୋଟିଏ ଚାଦର । ଏତିକି ମାତ୍ର ସାଜସଜ୍ଜାରେ ଅଧ୍ୟକ୍ଷଙ୍କ ଅଫିସ୍‌ଟି ବେଶ୍ ରୁଚିପୂର୍ଣ୍ଣ ମନେ ହେଉଥାଏ । ଏହି କଲେଜକୁ ବିଭିନ୍ନ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର୍ ମନ୍ମଥ ନାଥ ଦାସ, ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ, ବରୋଦା ଏମ୍.ଏସ. ବିଶ୍ୱବିଦ୍ୟାଳୟ କଳା ଇତିହାସ ପ୍ରଫେସର୍ ରତନ୍ ପାରିମୁ, ତାଙ୍କ କନ୍ୟା ଚିତ୍ରଶିଳ୍ପୀ ଗୌରୀ ପାରିମୁ, ପରିଦର୍ଶନରେ ଆସିଥିଲେ । ଏଇଠି ଅନୁଷ୍ଠିତ ହେଇଥିଲା ପ୍ରଥମ ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତା ଓ ବକ୍ତୃତା ଦେବା ପାଇଁ କଳାଭବନର ସେତେବେଳର ଅଧ୍ୟାପକ ଓ ପରବର୍ତ୍ତୀ ସମୟର ଅଧ୍ୟକ୍ଷ ନିର୍ମଳେନ୍ଦୁ ଦାସ ଆସିଥିଲେ ।

କଞ୍ଚନା ଛକକୁ କଲେଜ ସ୍ଥାନାନ୍ତରିତ ହେଇଗଲାପରେ ତା'ର ପରିସର ଯଥେଷ୍ଟ ବଢ଼ିଗଲା । ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ଚିତ୍ର ଓ ଭାସ୍କର୍ଯ୍ୟ ସାଧନା କରିବା ପାଇଁ ବେଶି ସୁଯୋଗ ପାଇଲେ । ଭଡ଼ାଘର ହେଲେ ମଧ୍ୟ କଲେଜ ତ ଆମର ଓ ଓଡ଼ିଶାର । ଏଣୁ ତାକୁ ଚାହିଁ ମୁଁ ତା'ର ପରିବେଶ ଓ ସାଜସଜ୍ଜା ପ୍ରତି ଯଥେଷ୍ଟ ଗୁରୁତ୍ୱ ଦେଉଥିଲି । ମୋ ପାଖରେ ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ପ୍ରାନ୍ତର ହସ୍ତଶିଳ୍ପ ଓ ଦେଶବିଦେଶରୁ ମୁଁ ଆଣିଥିବା ବିଶ୍ୱବନ୍ଦିତ ଶିଳ୍ପୀମାନଙ୍କର ଚିତ୍ରର ରିପ୍ରିଣ୍ଟ ଓ ପୋଷ୍ଟର୍ ସଦାବେଳେ ରହିଥାଏ ଓ ତାହା କଲେଜର ସୌନ୍ଦର୍ଯ୍ୟ ବଢ଼େଇବାରେ ସହାୟକ ହେଉଥାଏ । ପ୍ରଥମ ମହଲାରେ ଅଧ୍ୟକ୍ଷଙ୍କ ଅଫିସ୍‌ରୁମ୍ । ତା' ଆଗରେ ଗୋଟିଏ ଛୋଟିଆ ଲାଉଞ୍ଜ୍ । ଲାଉଞ୍ଜ୍‌ର କାନ୍ଥରେ ପୌରାଣିକ ଆଖ୍ୟାୟିକାମାନଙ୍କ ଉପରେ ଆଧାରିତ ବମ୍ବେର ନୋନିଭାଲ ଠାରେ ଥିବା ଲିଥୋଗ୍ରାଫ୍ ପ୍ରେସରେ ମୁଦ୍ରିତ ରାଜା ରବି ବର୍ମାଙ୍କ କ୍ୟାଲେଣ୍ଡର୍ । ଏଗୁଡିକ ଯେକୌଣସି ଦର୍ଶକର କଳାତ୍ମକ ଅଭୀପ୍‌ସାକୁ ମୋହି ପାରୁଥିଲା । କଞ୍ଚନାଛକ କଲେଜରେ ଅଧ୍ୟକ୍ଷଙ୍କ ଅଫିସ୍ ରୁମ୍ ସାଙ୍ଗରେ ଆଉ ଗୋଟିଏ ରୁମ୍ ଯୋଡ଼ିହେଇ ରହିଥିଲା । ତାହାଥିଲା ତାଙ୍କର ଷ୍ଟୁଡ଼ିଓ । ସେଠି କଲେଜର ଯାବତୀୟ ବହି କ୍ୟାଟଲଗ୍‌ର ଡିଜାଇନ୍ କାମ ହେଉଥିଲା । କଲେଜରେ କାମର ଚାପ ବେଶି ହେଇଗଲେ ଅଧ୍ୟକ୍ଷ ଏଇଠି ରାତ୍ରୀଯାପନ ମଧ୍ୟ କରୁଥିଲେ । ଗ୍ରାଉଣ୍ଡ୍ ଫ୍ଲୋର୍‌ର ପିଣ୍ଡା ଚଢ଼ୁଚଢ଼ୁ ବଡ଼ ବଖରାଟି ହେଲା ଗ୍ରାଫିକ୍ ଷ୍ଟୁଡ଼ିଓ । ଏହି ଷ୍ଟୁଡ଼ିଓରେ ଗ୍ରାଫିକ୍ ପ୍ରିଣ୍ଟ ନେବା ପାଇଁ ଦୁଇଟି ମେସିନ୍ । ଗୋଟିଏ ଲିଥୋର, ଅନ୍ୟଟି ହେଲା ଏଚିଙ୍ଗ୍‌ର । କେନ୍ଦ୍ର ଲଳିତ କଳା ଏକାଡେମୀର ଭୁବନେଶ୍ୱର ଆଞ୍ଚଳିକ କେନ୍ଦ୍ର, ଖଲ୍ଲିକୋଟ କଳାବିଦ୍ୟାଳୟ ଓ ଆମ କଲେଜ ମଧ୍ୟରୁ ପ୍ରଥମେ କିଏ ଲିଥୋ ଓ ଏଚିଙ୍ଗ୍ ମେସିନ୍ ଓଡ଼ିଶାକୁ ଆଣିଚି ସେଥିନେଇ ବିବାଦଟିଏ ଅଛି । ସରକାରୀ ନଥିପତ୍ର ତନଖି ଭିତରକୁ ନଯାଇ ଆମେ କେନ୍ଦ୍ର ଲଳିତ

Digitized by srujanika@gmail.com

କଳା ଏକାଡେମୀ ଆଞ୍ଚଳିକ କେନ୍ଦ୍ରର ପ୍ରାଧାନ୍ୟ ଏବଂ ଓଡ଼ିଶାର ଲିଥୋ ଓ ଏଚିଙ୍ଗ୍ ଶୈଳୀକୁ ଗୁଣ୍ଡିବନ୍ତ କରିବାରେ ରାମହରି ଜେନାଙ୍କ ଅବଦାନକୁ ସ୍ୱୀକାର କରୁଛୁ । ଖଲ୍ଲିକୋଟର ଲିନୋଖୋଦେଇ ଓ କାଠଖୋଦେଇ ପାଇଁ ପ୍ରସିଦ୍ଧି ଅଛି । ଆଞ୍ଚଳିକ କେନ୍ଦ୍ରର ଗ୍ରାଫିକ୍ ଷ୍ଟୁଡ଼ିଓ ଆମ କଲେଜ ଷ୍ଟୁଡ଼ିଓର ଏକ ସଂପ୍ରସାରିତ କେନ୍ଦ୍ର ବୋଲି ଆମେ ସଦାବେଳେ ଜ୍ଞାନ କରିଆସିଛୁ । ଓଡ଼ିଶାରେ ଗ୍ରାଫିକ୍ କଳାର ସ୍ଥିତି ହୃଦୟଙ୍ଗମ କରିଥିଲି ବୋଲି କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ଥିଲାବେଳେ ଏକାଡେମୀର ଆଞ୍ଚଳିକ କେନ୍ଦ୍ରମାନଙ୍କର ଷ୍ଟୁଡ଼ିଓମାନଙ୍କରେ କଳା ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନେ କାମ କରିବାର ସୁଯୋଗ ପାଇବେ ବୋଲି ନିର୍ଦ୍ଦେଶ ଦେଇଥିଲି ।

କଲେଜର ତଳମହଲାରେ ଗ୍ରାଫିକ୍ ଷ୍ଟୁଡ଼ିଓର ବାଁପଟରେ ଡିଜାଇନ୍ ବିଭାଗ ଏବଂ ବାରଣ୍ଡା ଓ ଅଗଣାରେ ତାରପୋଲିନ୍‌କୁ ଛାତ ଭଳି ପାରିଦେଇ ସେଠି ଭାସ୍କର୍ଯ୍ୟ ବିଭାଗ ଚାଲୁଥିଲା । ପ୍ରଥମ ମହଲାକୁ ଯିବା ପାଇଁ ସିଡ଼ିତଳେ କଲେଜର ଅଫିସ୍ । ପ୍ରଥମ ମହଲାରୁ ତିନିମହଲା ଉଠିଲା ବେଳକୁ ସିଡ଼ିଘରର କାନ୍ଥମାନଙ୍କରେ ବିଶ୍ୱକଳାକୁ ପ୍ରତିନିଧିତ୍ୱ କଲାଭଳି ବିଭିନ୍ନ ପୋଷ୍ଟର୍ ଓ ମୋ ନିଜ ଅଙ୍କା ବଡ଼ ବଡ଼ ତୈଳଚିତ୍ର ଛାତ୍ରଛାତ୍ରୀଙ୍କ ମନରେ ଗଭୀର ଆତ୍ମପ୍ରତ୍ୟୟ ଆଣିଦେଉଥିଲା । ପ୍ରାୟ ପ୍ରତି ବର୍ଷ ମୋ ବିଦେଶ ଭ୍ରମଣବେଳେ ବିଭିନ୍ନ ସଂଗ୍ରହାଳୟ ଓ କଳା ଅନୁଷ୍ଠାନମାନଙ୍କରୁ ଏ ପୋଷ୍ଟରଗୁଡ଼ିକ ମୁଁ ସଂଗ୍ରହ କରିଥାଏ । ଦ୍ୱିତୀୟ ମହଲାରେ ତଳମହଲାର ଅଫିସ୍‌ଥିବା ଜାଗାର ମୁଣ୍ଡ ଉପରେ କଲେଜର ଅତିଥିଗୃହ । ଏହି ଛୋଟିଆ ଘରଟିରେ କେବଳ ଭାରତ ନୁହେଁ ବିଶ୍ୱର ବିଭିନ୍ନ ଦେଶର ଚିତ୍ରଶିଳ୍ପୀ, ଲେଖକ ଓ ସଂଗୀତଜ୍ଞମାନେ ଆମର ଆତିଥ୍ୟ ଗ୍ରହଣ କରିଛନ୍ତି । ଏଇଠି କଳାଭବନର ପ୍ରଫେସର୍ ସନତ କର, କାଞ୍ଚନ ଚକ୍ରବର୍ତ୍ତୀ, ଜୟନ୍ତ ଚକ୍ରବର୍ତ୍ତୀ, ଯୋଗେନ ଚୌଧୁରୀ, ଅଜିତ ଚକ୍ରବର୍ତ୍ତୀ, ଚେନ୍ନାଇ କଳା ମହାବିଦ୍ୟାଳୟର ପ୍ରାଧ୍ୟାପକ ଦକ୍ଷିଣାମୂର୍ତ୍ତି, ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଗୌରୀ ଶଙ୍କର, ବରୋଦାର ପ୍ରଫେସର୍ ଜ୍ୟୋତି ଭଟ୍ଟ, ପ୍ରଫେସର୍ ରତନ ପାରିମୁ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ବଲବୀର ସିଂହ କଟ୍ ବେଳେବେଳେ ମାସାଧିକ କାଳ ଆମର ଅତିଥି ହୋଇ ଓଡ଼ିଶୀ କଳା ପଞ୍ଜୀକରଣ କରିଛନ୍ତି ଓ ଆମର ଛାତ୍ରଛାତ୍ରୀଙ୍କୁ ସେମାନଙ୍କ ଶୈଳ୍ପୀକ ଅନୁଭୂତିରେ ଆଲୋକିତ କରିଛନ୍ତି ।

ପ୍ରଥମ ମହଲାରେ କଲେଜର ସବୁଠାରୁ ବଡ଼ ହଲ୍ । ସେଇଠି ପ୍ରଥମ ବର୍ଷର ପିଲା ବସନ୍ତି ଓ ଅନ୍ୟବେଳେ ଏଇଠି କଳା ଇତିହାସ କ୍ଲାସ ହୁଏ । ମୁଁ କଲେଜର ପ୍ରଥମ କଳା ଇତିହାସ ଅଧ୍ୟାପକ । ଏହି ହଲ୍‌ର ଚଉଡ଼ାପଟେ ଛାତ୍ର ରଣଜିତ ପରିଜାଙ୍କ କନା ଉପରେ ହାତଅଙ୍କା ଚାଇନିଜ୍ ଶୈଳୀର ବାଉଁଶ ଗଛ, ମାଛ, କଙ୍କି ଓ ବେଙ୍ଗ ସମଗ୍ର ହଲ୍‌ଟିକୁ ଭରପୂର କରି ରଖିଥାଏ । ଏହା ବ୍ୟତୀତ ରିଟ୍‌ବର୍ଗ୍ ସଂଗ୍ରହାଳୟ ଦ୍ୱାରା ମୁଦ୍ରିତ ସୁଇସ୍ ଶିଳ୍ପୀ

Digitized by srujanika@gmail.com

ଆଲିସ୍ ବୋନରଙ୍କ ବିଶ୍ୱରୂପ ଚିତ୍ରର ପୋଷ୍ଟର୍ । ତା' ସାଙ୍ଗକୁ କାଶ୍ମୀରରୁ ପ୍ରାପ୍ତ ଗୋଟିଏ ଚିତ୍ରିତ ପୋଥିର ରିପ୍ରଡକ୍ସନ୍ । ଏହି ଚିତ୍ରଟି ଏଭଳି ସୁନ୍ଦର ଭାବେ ମୁଦ୍ରିତ ହୋଇଥାଏ, ଆଉ ସେଥିରେ ସ୍ଥାନିତ ଗଣେଶ ଓ ସରସ୍ୱତୀଙ୍କ ଚିତ୍ର ଏଭଳି ରୋଚକ ହୋଇଥାଏ ଯେ ଲୋଭ ସମ୍ବରଣ କରି ନପାରି ପ୍ରଫେସର୍ ରତନ୍ ପାରିମୁ ଏଇଟିକୁ ତାଙ୍କ କଲେଜରେ ପ୍ରଦର୍ଶନ କରିବା ପାଇଁ ମାଗିଲେ । ଭୁବନେଶ୍ୱର କଲେଜ ପାଖରେ ବରୋଦା ବିଶ୍ୱବିଦ୍ୟାଳୟ ହାତ ପତଉଛି ଏହାକୁ ସୌଭାଗ୍ୟ ମନେକରି ମୁଁ ସମ୍ମତି ଦେଲି । ରିପ୍ରଡ଼କ୍ସନ୍‌ର ସାଇଜ୍‌ଟି ପାଞ୍ଚଫୁଟ ଓ ସାଢ଼େ ତିନିଫୁଟ ଥିଲା । ଏତେବଡ଼ ପ୍ଲାଇବୋର୍ଡ୍ ଉପରେ ମାଉଣ୍ଟ୍ କରାଯାଇଥିବା ଚିତ୍ରଟିକୁ ଶୀତତାପ ନିୟନ୍ତ୍ରିତ ଡ଼ବାରେ ନେବାରେ ଅସୁବିଧା ଉପୁଜିବାରୁ ପାରିମୁଙ୍କ ଅନୁରୋଧରେ ଛବିଟିକୁ ମଝିରୁ କାଟି ଦୁଇଖଣ୍ଡ କରିବାକୁ ପଡିଲା । ଏହା କୋଣାର୍କ ମନ୍ଦିର ବେଢ଼ାରୁ ଇଂରେଜ ଶାସକଙ୍କ ନବଗ୍ରହ ପାଟ ନେବା ଭଳି କଥା ହେଲା । ସମଗ୍ର କଲେଜଟି ଗୋଟିଏ ଚିତ୍ରବିଥି ଭଳି ଦେଖାଯାଉଥିଲା । ମୁଁ ଯେତେସବୁ କାର୍ଯ୍ୟକ୍ରମର ଉଲ୍ଲେଖ କଲି, ଅତିଥିମାନଙ୍କ ରହଣି କଥା କହିଲି ବା କଲେଜର ସାଜସଜ୍ଜା ସଂପର୍କରେ ସୂଚନା ଦେଲି ସେଥିପାଇଁ ଅର୍ଥବ୍ୟବସ୍ଥା ସଂପୂର୍ଣ୍ଣ ବେସରକାରୀ ସ୍ତରରେ କରାଯାଉଥିଲା । ଏଣୁ କଲେଜର ଭଲ ପାଇଁ ବା ଉନ୍ନତି ପାଇଁ ଆମେ କ'ଣ କରିବୁ ବା ନ କରିବୁ ସେଥିପାଇଁ ସରକାରୀ ଅନୁମୋଦନର ଆବଶ୍ୟକତା ନଥିଲା । ଅର୍ଥବ୍ୟବସ୍ଥା କରିବା ଦାୟିତ୍ୱ ଅଧ୍ୟକ୍ଷ ସଂପୂର୍ଣ୍ଣ ଭାବେ ନିଜେ ଚଳେଇ ନେଉଥିଲେ । ତେଣୁ ଅସୂୟାପ୍ରଣୋଦିତ ହୋଇ ଥୋକେ କହୁଥିଲେ ଦିନନାଥ ପାଠୀ କଲେଜ । ଏଭଳି ଆକ୍ଷେପ ଆମକୁ ହତୋତ୍ସାହିତ କରିଦେବା ପରିବର୍ତ୍ତେ ବରଂ ପ୍ରେରଣା ଯୋଗାଇ ଦେଉଥିଲା ।

ଏ ତ ଗଲା ଘର ଭିତରର କଥା, ଘର ବାହାରେ ଥିଲା ସୁରମ୍ୟ ଭାସ୍କର୍ଯ୍ୟ ଉଦ୍ୟାନ, କୋଠା ଘରର ଦୁଇପାଖରେ ଥିଲା ଦୁଇଟି ଝଙ୍କାଳିଆ ଗଛ । ଗୋଟିଏ ପଣସ ଏବଂ ଅନ୍ୟଟି କଞ୍ଚଣ । ପଣସ ଗଛମୂଳ ଘଞ୍ଚଛାଇର ଅପେକ୍ଷାକୃତ ନିକାଞ୍ଚନ ଲାଗୁଥିଲା । ପିଲାଙ୍କ ସାହାଯ୍ୟ ନେଇ ଗଛମୂଳକୁ ବେଢ଼େଇ ମୁଁ ଦଶବାରଟା ପଥର ପକେଇ ଦେଇଥିଲି । ପୁଅ ଝିଅମାନଙ୍କ ପ୍ରେମ ଗୁଞ୍ଜନ ଓ କଳଧ୍ୱନିରେ ଗଛମୂଳ ସଦା ଉନ୍ମାଦିତ ରହୁଥିଲା । ଘଣ୍ଟାଘଣ୍ଟା, ଦିନଦିନ ଧରି ସେମାନଙ୍କ ବାର୍ତ୍ତାଳାପର କଥାବସ୍ତୁ ପ୍ରେମ ତ ନିଶ୍ଚୟ, କିନ୍ତୁ ତାରି ସଂଚାରୀ ଭାବ ଏତେ ଦୀର୍ଘ ହୋଇପାରେ, ମୋର ବ୍ୟସ୍ତମୟ ସମୟ ଭିତରେ ମୁଁ ତା'ର ସଠିକ ଅବଧାରଣା କରିପାରୁ ନଥିଲି । ବେଳେବେଳେ ସେମାନଙ୍କୁ ପଚାରି ଜାଣିବାକୁ ଇଚ୍ଛା ହେଉଥିଲେ ବି ତାହା ଅଧ୍ୟକ୍ଷଙ୍କ ସୀମାବହିର୍ଭୁତ କାର୍ଯ୍ୟ ବୋଲି ମୁଁ ନୀରବ ରହିବାକୁ ବାଧ୍ୟ ହେଉଥିଲି । ଏ ଗଛର ପଶ୍ଚିମ ମୁଣ୍ଡରେ ପାଚେରୀକୁ ଲାଗି ଦି ସାଉଡ଼ି ଆସ୍‌ବେସ୍‌ଟସ୍ ଘର । ତା'ରି ଭିତରେ ବି ପିଲାମାନେ ରହିଯାଉଥିଲେ ଓ ତାକୁ ହଷ୍ଟେଲ ଭଳି ବ୍ୟବହାର କରୁଥିଲେ ।

Digitized by srujanika@gmail.com

ଆଜିର ମଡ୍‌ର୍ଣ୍ଣ ଆର୍ଟ୍ ଗ୍ୟାଲେରୀର ନିର୍ଦ୍ଦେଶକ ତାରାକାନ୍ତ ପରିଡ଼ା, ଏବେକାର ଦାମନଯୋଡ଼ି ନାଲ୍‌କୋ ସ୍କୁଲର ଚିତ୍ରଶିକ୍ଷକ ଅଶୋକ ତ୍ରିପାଠୀ ଦିନାକେତେ ସେଠି ରହୁଥିବା ମୋର ମନେଅଛି । ସେହି ଘର ବାରଣ୍ଡାର ଗୋଟିଏ ପଟେ ଭାସ୍କର୍ଯ୍ୟ ଗଢ଼ିବା ପାଇଁ ଆବଶ୍ୟକୀୟ ମାଟି, ଆର୍ମେଚର୍ ଛାଞ୍ଚ ବାନ୍ଧିବା ପାଇଁ କାଠ ବେଟେନ୍ ଓ କାଠ ପଟା ପୁଣି ତାରି ଭିତରେ ବଞ୍ଚି ରହିବା ପାଇଁ ପ୍ରୟାସ; ଏଠାରେ କଳା ଓ ଜୀବନର ଏକ ଫେଣ୍ଟା ଫେଣ୍ଟି ଅବସ୍ଥା ସୃଷ୍ଟି ହେଉଥିଲା ।

ଚିତ୍ରକଳା ବୋଲି କେବଳ ନୁହେଁ ପ୍ରେମ ପ୍ରାୟ ସବୁ କଲେଜର ଜୀବନ ପ୍ରବାହର ଏକ ଅବିଚ୍ଛିନ୍ନ ଅଙ୍ଗ । ମେଡିକଲ୍ କଲେଜମାନଙ୍କରେ ମଣିଷ ଦେହ ସଂପର୍କରେ ଅବଧାରିତ ହେବା ଏବଂ ଗୋଟିଏ କଳା ମହାବିଦ୍ୟାଳୟରେ ଦେହର ଭଙ୍ଗିମା, ବଙ୍କିମା ଓ ସମ୍ବେଦନକୁ ନେଇ ସଚେତନ ହେବା ଦୁଇଟି ସଂପୂର୍ଣ୍ଣ ଭିନ୍ନ ବ୍ୟାପାର । ଗୋଟିକରେ ସ୍ପଷ୍ଟବାଦିତାର ଗଦ୍ୟାତ୍ମକତା ଓ ଅନ୍ୟଟିରେ କାବ୍ୟର କଳ୍ପନା-ପ୍ରବଣତା । ଏଠି କଳା ମହାବିଦ୍ୟାଳୟରେ ଚାଲିର ପ୍ରତି ପଦପାତରେ, କଥାର ପ୍ରତିଟି ଉଚ୍ଚାରଣରେ ଓ ଚାହାଣିର ପ୍ରତିଟି କଟାକ୍ଷରେ ପ୍ରେମର ଫଲ୍‌ଗୁ ଝରେ । କଳ୍ପନା କଲେଜରେ ପ୍ରେମର ଜୁଆରିଆ ମୁହୂର୍ତ୍ତମାନଙ୍କରେ ଛାତ୍ରଛାତ୍ରୀମାନେ ଉବୁଟୁବୁ ହେଉଥିଲେ । ଅଧ୍ୟାପକମାନେ ବେଳେବେଳେ ଛାତ୍ରଛାତ୍ରୀଙ୍କ ବିରୁଦ୍ଧରେ ନିର୍ଦ୍ଦିଷ୍ଟ ଅଭିଯୋଗ ଆଣିଲେ ମୁଁ ବାରଣ କରୁଥିଲି । ଏଠି ସମସ୍ତେ ତ ରୂପର, ରଙ୍ଗର, ରସର ମଣିଷ ଏଣୁ ଏଭଳି ଅଭିଯୋଗର ଅର୍ଥ ଥାଏନା ।

ଅଧ୍ୟକ୍ଷଙ୍କ ଏଭଳି କୋହଳ ମନୋଭାବକୁ ସମାଲୋଚନା କରି ତାଙ୍କ ନିକଟରେ ବେନାମି ଚିଠିମାନ ପହଞ୍ଚୁଥିଲା । ଅଧ୍ୟକ୍ଷ ଅଧ୍ୟାପକବନ୍ଧୁମାନଙ୍କୁ ଡାକି ଚିଠି ପଢ଼େଇ ଦେଉଥିଲେ । ପିଲାମାନଙ୍କର ପ୍ରେମଚିଠି ଦୈବାତ୍ ହାତରେ ପଡ଼ିଗଲେ ଅଧ୍ୟକ୍ଷ ତାକୁ ଖୋଲି କ୍ଲାସରେ ସମସ୍ତଙ୍କ ଆଗରେ ପଢ଼ି ଦେଉଥିଲେ । ଏଭଳି ଚିଠିମାନଙ୍କରେ ସମ୍ବୋଧନ ଏକ ସାର୍ବଜନୀନ ପ୍ରେମୋଲ୍ଲାସ, ଏବଂ ପ୍ରେରକ ସଦାକାଳେ ଅଜ୍ଞାତ ପ୍ରେମିକ ଓ ପ୍ରେମିକା, ଅଥଚ ଚିଠିଟି ଯେଉଁ ଦୁଇଜଣକୁ କଲ୍ଲୋଳିତ କରିବା କଥା ତା ଅବଶ୍ୟ କରୁଥିଲା । ମଦନର କାମଶର ବ୍ୟର୍ଥ ହେବାର ନୁହେଁ । ଚିଠିର ଅଳଙ୍କାରିତା ରସାଣିତ ହେଉଥିଲେ ମୁଁ ତାକୁ ବଡ଼ ଅକ୍ଷରରେ ଜେରକ୍ସ କରିଦେଇ ନୋଟିସବୋର୍ଡ୍‌ରେ ଲଗେଇ ଦେଉଥିଲି । କଲେଜର ଉତ୍ତରପଟ ପାଚେରି କଡ଼ ଗଛମୂଳେ ଭୁବନାର ଛୋଟକୋଟର ଚାହା ଷ୍ଟଲଟିଏ ଥିଲା । ଶାନ୍ତିନିକେତନ କଳାଭବନର ଅନୁକରଣରେ ଆମେ ସେହି ଗଛମୂଳେ ଚଉଖୁଣ୍ଟିଆ ସିମେଣ୍ଟ ଚାନ୍ଦିନୀଟିଏ ଗଢ଼ି ଦେଇଥିଲୁ । ସକାଳ ସାଢ଼େ ସାତ ବେଳକୁ ସକାଳ ବୁଲା ସାରି ଆମେ ଏହି ଚାନ୍ଦିନୀ ପାଖରେ ଜୁଟି ଯାଉଥିଲୁ । ଆମେ କହିଲେ ମୂଳତଃ କଲେଜର ଅଘୋଷିତ ଛାତ୍ରାବାସର ଅନ୍ତେବାସୀ, କେ. ସିକ୍ସ୍ (କଲେଜର ପ୍ଲଟ ନମ୍ବର ଥିଲା

Digitized by srujanika@gmail.com

କେ.ଏଇଟ୍) ରେ ରହୁଥିବା ଶିଳ୍ପୀ ରାମହରି ଜେନା, କୁପ୍ତରେ ରାମଦା', ସେଠିକାର ଅନ୍ୟାନ୍ୟ ଅନ୍ତେବାସୀ ଯଥା ଅଞ୍ଜନ କୁମାର ସାହୁ, ସଜଳ ପାତ୍ର, କାଜଲ ପାତ୍ର, ପ୍ରତୁଲ ଦାଶ, ତପନ ଦାଶ, ଜୟନ୍ତ ପଣ୍ଡା, କମଳାକ୍ଷ କାନୁନ୍‌ଗୋ, ମ୍ୟୁଜିୟମ୍ କଲୋନୀରେ ରହୁଥିବା ଶୋଭନ କୁମାର, ଅଧ୍ୟାପକମାନଙ୍କ ମଧ୍ୟରୁ ଡି.ଏନ୍.ରାଓ, କଲେଜରେ କଳା ଇତିହାସ ପଢ଼ଉଥିବା ଚିତ୍ରଶିଳ୍ପୀ ସୁଧାଂଶୁ ଶତପଥୀ ଏବଂ ପରିଶେଷରେ ମୁଁ। ଏଠି ଖାଲି ଚାହା ପିଆ ହେଉଥିଲା, ତାହା ନୁହେଁ ଆସର ଜମୁଥିଲା ନଅ ସାଢ଼େନଅ ଯାଏଁ। ଭୁବନା ଫକୀର ଚାହା ବନେଇ ବନେଇ ଏକରକମ ଥକି ଯାଉଥିଲେ।

ଚାହାପିଆ ସାଙ୍ଗରେ ବଗିଚାରେ ଥିବା ଗଛମାନଙ୍କର ହେପାଜତ, ଘାସବଛା, ଗଛରେ ପାଣିଦିଆ, କଲେଜ ଘର ସଫାସଫି, ଅଗଣାର ନାଳ ପରିଷ୍କାର କରିବା, ପାଣି ପକେଇ ଗାର୍ଡ଼େନ୍ ଭାସ୍କର୍ଯ୍ୟଗୁଡ଼ିକୁ ଧୋଇବା କାର୍ଯ୍ୟ ମଧ୍ୟ ଅନ୍ତର୍ଭୁକ୍ତ। ମୁଁ ଜାଣିଶୁଣି ମହାତ୍ମା ଗାନ୍ଧିଙ୍କ ମୌଳିକ ଶିକ୍ଷାର କିଛି ଆଭାସ କଲେଜ ଧାରାଭିତରେ ପୂରେଇ ଦେଇଥିଲି। କଲେଜର ପାଇଖାନା, ୱାସ୍ ବେସିନ୍ ଓ ଅଗଣାର ପଚା ସଢ଼ା ଦୁର୍ଗନ୍ଧ ନାଳ ସଫା କରିବାରେ ମୋର ଘୃଣାଭାବ ନଥିଲା। ମୋତେ ଦେଖାଦେଖି ଡିଗ୍ରୀ କଲେଜର ପିଲାମାନେ ମଧ୍ୟ କଲେଜ ସୁଇପର୍‌ର ଦାୟିତ୍ୱ ତୁଲେଇବାରେ ହେଳା କରୁ ନଥିଲେ। ସକାଳୁ ସକାଳୁ ସୁଇପର୍ ଯଦି ଚାହା ତିଆରିରେ ଲାଗିବ ତା ହେଲେ ତା'ର ସାମ୍ବିଧାନିକ ଦାୟିତ୍ୱ ତ ପୁଣି ଆଉ କିଏ ସଂପାଦନ କରିବ। ଭୁବନା ଏଭଳି ଭାବରେ ପିଲାଙ୍କୁ ଭଲ ପାଉଥିଲା ଆଉ ସମ୍ମାନ ଦେଖଉଥିଲା ଯେ ସୁଇପର୍ କର୍ମଜନିତ ଇତର ଭାବ ତା ପାଖରୁ ହଟିଯାଇଥିଲା।

କାଳକ୍ରମେ ଭୁବନାର ଚାହାଷ୍ଟଲ୍ ଗୋଟିଏ ରେସ୍ତୋରାଁରେ ପରିଣତ ହେଇଗଲା। ଏଆରି ଭିତରେ କଲେଜ ମୋର ଦ୍ୱିତୀୟ ଘର ହେଇସାରିଥିଲା। ମୁଁ ଦିନରାତି କଲେଜରେ ହିଁ କଟଉଥିଲି। ଏହାର କାରଣ ବହୁବିଧ। ମୁଖ୍ୟ କାରଣ ହେଲା କଳା ସାଙ୍ଗରେ, କଲେଜର ଛାତ୍ରଛାତ୍ରୀଙ୍କ ସାଧନାରେ, ହସରେ କାନ୍ଦରେ ଏକାତ୍ମହେବାର ଆନନ୍ଦ। ରେସ୍ତୋରାଁର ପୃଷ୍ଠପୋଷକ ଭିତରେ ଥିଲେ ରାମହରି, ମୁଁ ଓ କଲେଜ ଓ ତା' ପାଖାପାଖି ରହୁଥିବା କେତେକ ଛାତ୍ର। ବେଶ୍ ଦିନାକେତେ ମୁକ୍ତ ରେସ୍ତୋରାଁ ଭଲ ଚାଲିଲା କିନ୍ତୁ ତା ସହିତ ଭୁବନାର ବାକିଖାତା ମୋଟା ହେଇ ହେଇ ଗଲା। ଭୁବନାକୁ ଦେବାଳିଆ ଅବସ୍ଥାରୁ ମୁକୁଳେଇବା ପାଇଁ କଲେଜ ଅନୌପଚାରିକ ସବ୍‌ସିଡ଼ି ମଧ୍ୟ ଦେଲା। ତଥାପି ରେସ୍ତୋରାଁ ବେଶିଦିନ ତିଷ୍ଠିଲାନି।

କିନ୍ତୁ ଏସବୁ ଦୁର୍ଯୋଗରୁ ଭୁବନା ବେପାର ପାଠ ଶିଖିଗଲା। ସିଏ କଚ୍ଛନା ଛକ କଲେଜ ସାମନାରେ ମିଠା ଦୋକାନ ଖୋଲିଲା। ପ୍ରଥମେ ଅଂଶୀଦାର ଭାବେ ଗାଙ୍ଗୁରାମର

Digitized by srujanika@gmail.com

ଶାଖା ଏବଂ ପରେ ପରେ ବ୍ୟକ୍ତିଗତ ମାଲିକାନାରେ ନିଜ ସଂସ୍ଥା । ତା'ର ମିଠା ଦୋକାନ ଧୀରେ ଧୀରେ ପ୍ରଭାବ ବିସ୍ତାର କଲା । ଭୁବନା ଚୌକିଦାର ହେଇ ରାତିରେ କଲେଜରେ ଶୋଇଲା ଆଉ ଦିନବେଳେ ମାଲିକ ହେଇ ମିଠା ଦୋକାନରେ ବସିଲା । କଲେଜ ଖଣ୍ଡଗିରି ପାଖକୁ ଉଠିଯିବା ଖବର ପାଇ ଖଣ୍ଡଗିରି ଛକ ପାଖରେ ସିଏ ଆଗତୁରା ଦୋକାନ ଘର ଭଡ଼ାନେଲା । ତା' ଦୋକାନରେ ଥାଳି ଧୋଇବା ପାଇଁ ଗ୍ରାଜୁଏଟ୍ ପିଲା ଚାକର ରଖିଲା । ଏବେ ଭୁବନା ମାଲାମାଲ୍ । ବୋଧହୁଏ ଭୁବନେଶ୍ୱରରେ ଦୁଇତିନୋଟି କୋଠା । ସେଥିରୁ ଗୋଟିଏ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟାପକ ଦୁର୍ଗା ପ୍ରସାଦ ଦାସଙ୍କ କୋଠା ପାଖାପାଖି । ଦାସେଙ୍କ କୋଠା ଏକ ମହଲା ହେଲାବେଳକୁ ଭୁବନାର ଘର ଦି'ମହଲା ଓ ପ୍ଲଟ୍‌ଟି ଆକାରରେ ବଡ଼ । ଅଧ୍ୟାପକ ବ୍ୟୋମକେଶ ମହାନ୍ତି ମୋତେ ଥରେ ତାଙ୍କ ନୂଆ ମାରୁତି ୮୦୦ ଦେଖେଇବାକୁ ଗାଡ଼ିରେ ବସି ଭୀମଟାଙ୍ଗି ଆସିଥିଲେ । ମୁଁ ତାଙ୍କ କାର୍ ଦେଖି ନିଶ୍ଚୟ ଆନନ୍ଦିତ ହେଲି କିନ୍ତୁ ମୋ ପାଟିରୁ ସ୍ଫୁରଣ ହେଇଗଲା, ବ୍ୟୋମକେଶ ତମ ଗାଡ଼ି କିନ୍ତୁ କଲେଜର ଦ୍ୱିତୀୟ ନମ୍ବର ଗାଡ଼ି, ପ୍ରଥମ ଗାଡ଼ିଟି ଚୌକିଦାର ଶ୍ରୀ ଭୁବନାନନ୍ଦ ଦାସଙ୍କର ଆମ୍ବାସଡ଼ର୍ ।

କଞ୍ଚନାଛକ ଭଡ଼ାଘର କଲେଜରେ ଷ୍ଟୁଡିଓର ଉପଯୁକ୍ତ ସୁବିଧା ନଥିଲା । ତାରପୁଲିନ୍ ଛାତ ତଳେ, ଖରାତରାରେ ପିଲାଏ ଭାସ୍କର୍ଯ୍ୟ ଗଢୁଥିଲେ ସତ । କିନ୍ତୁ ଜାଗାଟିଏକୁ କଲେଜ ଜ୍ଞାନକରି ତାକୁ ହୀନ, ହେୟ ଭାବିଲେ ଦୋଷାବହ ହେବ । କାରଣ ଆଜିର ସାଂପ୍ରତିକ ଭାରତୀୟ କଳାଜଗତରେ ଯେତେସବୁ ହଇଚଇ ହେଉଛି ବା ଓଡ଼ିଶାର ରାଜ୍ୟସ୍ତରୀୟ କଳା ଆନ୍ଦୋଳନରେ ଯେଉଁମାନେ ସକ୍ରିୟ ଅଂଶଗ୍ରହଣ କରିଛନ୍ତି ସେମାନେ ସମସ୍ତେ କଞ୍ଚନା କଲେଜରେ ଛାତ୍ରଛାତ୍ରୀ ଥିଲେ ଓ ଏହି ସଂକୁଚିତ ଜାଗାରୁ ଉତୁରି ପଡ଼ିଥିଲେ ପଙ୍କରୁ ପଦ୍ମଭଳି । ଏମାନେ ହିଁ ଚିତ୍ର, ଭାସ୍କର୍ଯ୍ୟ, ଫଟୋଗ୍ରାଫୀ, ଡିଜାଇନ୍, କଳା ଇତିହାସ ଓ କଳାଶିକ୍ଷା ପ୍ରଭୃତିର ନେତୃତ୍ୱ ନେଇଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଜଗନ୍ନାଥ ପଣ୍ଡା, ଏମ୍ ଶୋଭନ୍ କୁମାର, ପ୍ରତୁଲ ଦାଶ, ତପନ ଦାଶ, ଅନୁପ ଚାନ୍ଦ, ସୁଧାଂଶୁ ସୁତାର, ଦିଲ୍ଲୀପ କୁମାର ତ୍ରିପାଠୀ, ପ୍ରଦୋଷ କୁମାର ମିଶ୍ର, ସଜଳ ପାତ୍ର, କାଳୀକିଙ୍କର ଦେ, କାଜଲ ପାତ୍ର, ଚୁଗୁଲି କୁମାର ସାହୁ, ପ୍ରଦୋଷ ସ୍ୱାଇଁ, ବିଦ୍ୟୁତଲତା ପାଟଶାଣୀ, ପ୍ରଣତି ମହାପାତ୍ର, ହେଲେନବାଳା ବ୍ରହ୍ମ, ପରେଶ ରଞ୍ଜନ ଚୌଧୁରୀ, ଦୀପକ ହରିଚନ୍ଦନ, ଆର୍ତ୍ତବନ୍ଧୁ ରାଉତ, ସତ୍ୟ ପାଢ଼ୀ, ଶିବ କୁମାର ସାହୁ, ଅଞ୍ଜନ କୁମାର ସାହୁ, ସୁବ୍ରତ କୁମାର ମଲ୍ଲିକ, ମାନସ ରଂଜନ ଜେନା, ପ୍ରତାପ ଜେନା, ଅରୁଣ କୁମାର ଜେନା, ସଂଗ୍ରାମ ମହାରଣା, ପଞ୍ଚାନନ ସାମଲ, ଚନ୍ଦନ ସାମଲ, ମନୋଜ ଭଟ୍ଟାଚାର୍ଯ୍ୟ, ଗୌରହରି ରାଉତ ପ୍ରମୁଖ ।

Digitized by srujanika@gmail.com

କଞ୍ଚନା କଲେଜକୁ ଆମେ ଗୋଟିଏ ଆବାସିକ ମହାବିଦ୍ୟାଳୟ ରୂପେ ପ୍ରଥମରୁ ହିଁ ବିବେଚନା କରିଛୁ । କଞ୍ଚନା କଲେଜ ପାଖରେ କଞ୍ଚନା ଫ୍ଲାଟ୍‌ରେ ଅଧ୍ୟକ୍ଷ ରହୁଥିଲେ, ବି.ଜେ.ବି. କଲେଜ ଓ ସେହି କଲେଜର ପ୍ରିନ୍‌ସପାଲ୍‌ଙ୍କ କ୍ୱାର୍ଟର ଠାରୁ କମ୍ ଦୂର । କଞ୍ଚନା କଲେଜର ଅଧ୍ୟାପକ ଡି.ଏନ୍.ରାଓ ରହୁଥିଲେ ବି.ଜେ.ବି. ଫ୍ଲାଟ୍‌ରେ, ଟାଇପିଷ୍ଟ୍ ରାଜକୁମାର ସୁବୁଦ୍ଧି ରହୁଥିଲେ କଞ୍ଚନା ଫ୍ଲାଟ୍‌ରେ । ଛାତ୍ରମାନେ ବାଣ୍ଟିହେଇ ବରଗଡ଼ ଓ ଚିନ୍ତାମଣିଶ୍ୱର ଅଞ୍ଚଳର ଭଡ଼ାଘରମାନଙ୍କରେ ରେଭେନ୍ସା କଲେଜର ଇଷ୍ଟ୍ ଓ ୱେଷ୍ଟ୍ ହଷ୍ଟେଲ ଭଳି ରହୁଥିଲେ । ଆମେ ସକାଳୁ ମର୍ଣ୍ଣିଙ୍ଗ୍ ୱାକ୍‌ରେ ବରଗଡ଼ ଓ ଚିନ୍ତାମଣିଶ୍ୱର ଅଞ୍ଚଳରେ ପହଞ୍ଚି ପିଲାମାନଙ୍କୁ ନିଦରୁ ଉଠଉଥିଲୁ । ମାନସ ରଂଜନ ଜେନା, ଦିଲ୍ଲୀପ କୁମାର ମହନ୍ତ, ପ୍ରଦୀପ କୁମାର ମହାନ୍ତି, ଅରୁଣ କୁମାର ଜେନା, ଦିଲ୍ଲୀପ କୁମାର ତ୍ରିପାଠୀ, ଗୋବିନ୍ଦ ରେଡ୍ଡି ପ୍ରଭୃତି ଧଡ଼ପଡ଼ ହେଇ ଉଠିପଡ଼ି, ମୁହଁ ହାତ ଧୋଇ ଜିପ୍ ଗାଡ଼ିର ଟ୍ରେଲର୍ ଭଳି ଆମ ଦଳରେ ସାମିଲ ହେଉଥିଲେ । ନା ଆମ କଲେଜର କୌଣସି ସୀମିତ କ୍ୟାମ୍ପସ୍ ଥିଲା ନା ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ଥିଲା । କଞ୍ଚନା କଲେଜ ଥିଲା ଅହର୍ନିଶ କଳା ସାଧନାର ଗୋଟିଏ ଜୀବନ୍ତ କେନ୍ଦ୍ର । ପିଲାଏ କହୁଥିଲେ ଚେନାଏ ଶାନ୍ତିନିକେତନ ।

Digitized by srujanika@gmail.com

# ୧୫. ଚିତ୍ରଶିକ୍ଷକଙ୍କ ସର୍ବଭାରତୀୟ ଶିବିର

ଚିତ୍ରଶିକ୍ଷକଙ୍କ ସର୍ବଭାରତୀୟ ଶିବିର କେବଳ ଆମ କଲେଜ ପାଇଁ ନୁହେଁ, ସମଗ୍ର ଓଡ଼ିଶା ପାଇଁ ଏକ ଗୌରବାବହ ଘଟଣା । ଘଟଣାର ଏଭଳି ମୂଲ୍ୟାୟନ ଏବେ ଅତିରଞ୍ଜିତ ମନେ ହେଇପାରେ । କିନ୍ତୁ ଚିତ୍ରଶିକ୍ଷକଙ୍କ ପାଇଁ ଏଭଳି ଗୋଟିଏ ଶିବିର ଆମ ଦେଶରେ ପ୍ରଥମ କରି ଆୟୋଜିତ ହେଇଥିଲା, ପୁଣି ତାହା ଆମ କଲେଜରେ । ୧୯୮୫ ମସିହା ନଭେମ୍ବର ମାସରେ ଦୀର୍ଘ ଦଶ ଦିନ ଧରି କଞ୍ଚନାଛକ କଲେଜଟି ଗୋଟିଏ କଳାତୀର୍ଥରେ ପରିଣତ ହେଇଯାଇଥିଲା । ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ବିଶେଷ କରି ଦିଲ୍ଲୀ, ମହାରାଷ୍ଟ୍ର, କର୍ଣ୍ଣାଟକ ଓ ଓଡ଼ିଶାରୁ ଷାଠିଏ ଜଣ ଚିତ୍ରଶିକ୍ଷକ ଦଶଦିନ ଧରି ନିଜ ଶିଳ୍ପ ସୃଷ୍ଟିରେ, ଅନୁଭୂତି ବର୍ଣ୍ଣନରେ, ଗୀତରେ, ନାଚରେ କଲେଜ ପରିବେଶକୁ ଉତ୍ତାଳ କରି ରଖିଥିଲେ ।

ଏନ୍.ସି.ଇ.ଆର୍.ଟି. (ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣର ଜାତୀୟ ପରିଷଦ) ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧୀନରେ ଥିବା ଶିକ୍ଷା ବିଭାଗର ଏକ ପ୍ରମୁଖ ଅନୁଷ୍ଠାନ । ଶିକ୍ଷା କ୍ଷେତ୍ରରେ ଚିତ୍ରଶିକ୍ଷକମାନଙ୍କ ଭୂମିକାକୁ ଅଧିକ ପରିପୁଷ୍ଟ କରିବା ଉଦ୍ଦେଶ୍ୟରେ ଏବଂ କଳା ଶିକ୍ଷାରେ ସୃଜନାତ୍ମକ ଦିଗର ବିକାଶ ଓ କଳାଶିକ୍ଷକମାନଙ୍କର ଆଭିମୁଖ୍ୟ ଓ ଅଭିରୁଚି ବଢ଼େଇବା ପାଇଁ ଏନ୍.ସି.ଇ.ଆର୍.ଟି. ଗୋଟିଏ ସର୍ବଭାରତୀୟ ଶିବିରର ପରିଯୋଜନା କରି ଓଡ଼ିଶାର ଶିକ୍ଷା ବିଭାଗକୁ ଚିଠି ଲେଖିଥିବା ସମ୍ବାଦ ମୋ ନିକଟରେ ପହଞ୍ଚିଥାଏ । ଆମ ରାଜ୍ୟର ଶିକ୍ଷା ନିର୍ଦ୍ଦେଶାଳୟରେ କଳାଶିକ୍ଷାର ବିକାଶ ପାଇଁ ଓ ବିଭିନ୍ନ କାର୍ଯ୍ୟକ୍ରମର ରୂପାୟନ କରିବାକୁ ନିଯୁକ୍ତ ସ୍ୱତନ୍ତ୍ର ଅଧିକାରୀ ଅଧ୍ୟାପକ ଅନନ୍ତ ପଣ୍ଡା ଏହି ଶିବିରକୁ ନିଜେ ପରିଚାଳନା କରିବା ପାଇଁ ଆଗଭର ହେଇ ପୁରୀ ସହରରେ କୌଣସି ଗୋଟିଏ ହାଇସ୍କୁଲ ତଲାସରେ ଥିଲେ । ଅନନ୍ତ ପଣ୍ଡା ମୋର ଅତି ପ୍ରିୟ ଶିକ୍ଷକ । ସେ ଜଣେ ଉଚ୍ଚକୋଟୀର ଚିତ୍ରଶିଳ୍ପୀ ମଧ୍ୟ । କିନ୍ତୁ ଏଭଳି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରକଳ୍ପକୁ ରୂପଦେବାକୁ ତାଙ୍କ ନିକଟରେ ସାଧନର ଅଭାବ ଥିଲା । ଏଣୁ ମୁଁ ଏହି ଯୋଜନାଟିକୁ କରାୟତ୍ତ କରିବା ଉଦ୍ଦେଶ୍ୟରେ ଆମ କଲେଜର ଅଧ୍ୟାପକ ଡି.ଏନ୍.ରାଓଙ୍କୁ ଦିଲ୍ଲୀ ପଠେଇଲି । ଡି.ଏନ୍.ରାଓ ଏନ.ସି.ଇ.ଆର୍.ଟିର ପ୍ରାଧ୍ୟାପକ ଦିଲ୍ଲୀପ ବକ୍ସି, ଅଧ୍ୟାପକ କେ.ଡି. ଭିରମାନୀ ଓ ଭାସ୍କର ଧର୍ମାନୀଙ୍କ ସହିତ ଆଲୋଚନା କରି ସେମାନଙ୍କ ମନ ପରିବର୍ତ୍ତନ କରିବା ପାଇଁ ସକ୍ଷମ ହୋଇଥିଲେ । ଏଠି ଉଲ୍ଲେଖ କରିବା ଅନାବଶ୍ୟକ ଯେ ଦିଲ୍ଲୀପ ବକ୍ସି ଓ ଧର୍ମାନୀଙ୍କ ସହିତ ଆଗରୁ ମୋର ଘନିଷ୍ଠ ବନ୍ଧୁତା ଥିଲା ।

Digitized by srujanika@gmail.com

ଭାରତ ବର୍ଷରେ ଆମ କଲେଜର ସ୍ଥିତି ଓ ପ୍ରତ୍ୟୟ ବଜାୟ ରଖିବା ପାଇଁ ଏହି ସର୍ବଭାରତୀୟ ଶିବିରର ଅନୁଷ୍ଠାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଶିବିରରେ ଯୋଗଦେଇଥିବା ଷାଠିଏ ଜଣ ଚିତ୍ରଶିକ୍ଷକ, ଆମ କଲେଜର ଶହେରୁ ଅଧିକ ପିଲା, ପୁଣି ନିମନ୍ତିତ ଅତିଥି ଓ ଶିଳ୍ପୀଙ୍କୁ ମିଶେଇ ପ୍ରାୟ ଦୁଇଶହ ଜଣ ପ୍ରତ୍ୟହ ଚଳପ୍ରଚଳ ହେବା ବା ସେମାନଙ୍କ ଚଳପ୍ରଚଳକୁ ଭଡ଼ାଘରର ସୀମିତ ସରହଦ ଭିତରେ ନିୟନ୍ତ୍ରଣ କରିବା ପାଇଁ ଏକ ସୁଚିନ୍ତିତ ପରିକଳ୍ପନାର ରୂପ ଦେବାକୁ ହେଲା । ଜଳଖିଆ, ଚାହା ଓ ଖାଇବାର ବନ୍ଦୋବସ୍ତ ପାଇଁ କଲେଜ ହତା ଭିତରେ ଖନ୍ଦା ବସିଲା ଏବଂ କଲେଜର ବଡ଼ବାବୁ ଗଗନ ଓ ତାଙ୍କ ସହକର୍ମୀ ସୁବୁଦ୍ଧି ଖିଆପିଆ ଦାୟିତ୍ୱରେ ରହିଲେ । ରହିବା ଓ ଖାଇବାରେ ଅସୁବିଧା ଉପୁଜିଲେ ଧରିନେବାକୁ ହେବ ଶିବିରର ପରିଚାଳନା ଠିକ୍ ହେଲାନାହିଁ । ପର୍ଯ୍ୟଟନ ବିଭାଗରେ ଅର୍ଜିଥିବା ମୋର ଅନୁଭୂତିକୁ ଏଠି ମୁଁ ପର୍ଯ୍ୟାପ୍ତ ଭାବେ ଉପଯୋଗ କରିପାରିଲି । ମୁଁ ସକାଳ ସାତ ସାଢ଼େ ସାତରେ ମୋ ନିତ୍ୟକର୍ମ ଓ ଗାଧୁଆ ପାଧୁଆ ସାରି ଅତିଥିଙ୍କ ଜଳଯୋଗର ତଦାରଖ କରିବାକୁ କଲେଜରେ ପହଞ୍ଚିଯାଏ । ଏଭଳି ଶିବିରମାନଙ୍କରେ ଅଂଶଗ୍ରହଣକାରୀଙ୍କ ହୃଦ୍‌ବୋଧ ହେବା ଉଚିତ ଯେ, କଲେଜ ଓ ତା'ର ପରିବେଶ ପ୍ରତିଦିନ ନୂଆ ନୂଆ ରୂପରେ ସଜେଇ ହେଉଛି କେବଳ ସେମାନଙ୍କ ପାଇଁ । ଏଇଥି ପାଇଁ ଆମକୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ହେଉଥିଲା । କଲେଜରେ ସିମିତି କିଛି ଆସବାବ୍‌ପତ୍ର ନଥିଲା । ମୁଁ ମୋର ନିଜର ବ୍ୟାବହାରିକ ସବୁ ଜିନିଷପତ୍ର ଆଣି କଲେଜ କାମରେ ଲଗେଇ ଦେଉଥିଲି ।

ସକାଳଓଳି କଳା ସଂପର୍କରେ ଯେଉଁ ଆଲୋଚନା ହେଉଥିଲା, ସେଥିରେ ଅତିଥିମାନେ ଗୋଟିଏ ଡିଭାନ୍ (ନୂଆଣିଆ ଖଟ) ଉପରେ ଗୋଲ ମାଣ୍ଡି ଉପରେ ଭରାଦେଇ ବସୁଥିଲେ । ପ୍ରତିଦିନ ଡିଭାନ୍‌ର ବିଛଣା ଚାଦର ବଦଳୁଥିଲା, ଆଜି ସମ୍ବଲପୁରୀ ବାନ୍ଧ ହେଲା ବେଳକୁ ତା' ପରଦିନ ଗୁଜରାଟୀ କନ୍ଥା, ନହେଲେ କାଠ ବ୍ଲକରେ ପ୍ରିଣ୍ଟ୍ ହେଇଥିବା ଗୁଜରାଟର ଠାକୁରାଣୀ ଚାନ୍ଦୁଆ । ତୃତୀୟ ଦିନ କିନ୍ତୁ ଏ ସବୁର ପୁନରାବୃତ୍ତି ହେଉ ନଥିଲା, ଡିଭାନ୍‌ରେ ଲାଗୁଥିଲା ମଧୁବନୀ ଚିତ୍ର ଅଙ୍କା ହେଇଥିବା ବେଡ୍‌ଶ । ଏଭଳି ସାଜସଜ୍ଜା ଦୃଷ୍ଟିଉତ୍ସୁକତା ବଢ଼େଇବା ସହିତ ସଂଗଠକ ମାନଙ୍କ ରୁଚିର ପରିଚୟ ମଧ୍ୟ ଦେଉଥିଲା । ମୋର ପ୍ରତିଥର ବିଦେଶ ଗସ୍ତରୁ ଆନୀତ ବିଭିନ୍ନ ସଂଗ୍ରହାଳୟର ବିଶ୍ୱଚିତ୍ରକଳା ଉପରେ ଆଧାରିତ ରଙ୍ଗିନ ପୋଷ୍ଟର୍ କଲେଜ କାନ୍ଥମାନଙ୍କରେ ଶୋଭା ପାଉଥିଲା । ନିର୍ଭୟରେ କୁହାଯାଇପାରିବ, ଭାରତର ଯେକୌଣସି କଳା ମହାବିଦ୍ୟାଳୟର ସଂଗ୍ରହରେ ଏଭଳି ଉନ୍ନତଧାରାରେ ମୁଦ୍ରିତ ଚିତ୍ରସଂଭାର ଦୁର୍ଲଭ । ଛାତ ଉପରେ ମୁକ୍ତ ଆକାଶ ତଳେ ସାନ୍ଧ୍ୟ ଅଧିବେଶନ ଓ ନୃତ୍ୟ ସମାରୋହ ଖୁବ୍ ଉପଭୋଗ୍ୟ ହେଉଥିଲା । ତଳେ ବଗିଚା ଭିତରେ ଚନ୍ଦ୍ରାତପ ତଳେ କୁମ୍ଭାରଶାଳର କୁମ୍ଭାର ଚକ ଥିଲା ଶିବିରର ଅନ୍ୟ ଏକ ଆକର୍ଷଣ । ପଣସ

Digitized by srujanika@gmail.com

ଗଛମୂଳେ ଟେରୋକୋଟା ପୋଡ଼ିବା ପାଇଁ ଭାଟି । ଭାରତ ସରକାରଙ୍କ ହସ୍ତଶିଳ୍ପ ବିଭାଗ ଆନୁକୂଲ୍ୟରେ ଆଠଦଳ କାରିଗର କଲେଜହତା ମଧ୍ୟରେ ନିରନ୍ତର ସେମାନଙ୍କ ଶିଳ୍ପ ରଚନାରେ ନିମଗ୍ନ ରହୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଚିକିଟି ଗଡ଼ର ଗଂଜପା କାରିଗର ଆପନ୍ନା ମହାପାତ୍ର, ପାରଳାଖେମଣ୍ଡିର ଚିତ୍ରକାର ପ୍ରକାଶଚନ୍ଦ୍ର ମହାପାତ୍ର ଓ ତାଙ୍କ ଭଣଜା ସୀମାଞ୍ଚଳ । ସେମାନଙ୍କ ସହିତ ଥିଲା ବରଗଡ଼ର ମାଟିକାମ, ନବରଙ୍ଗପୁରର ଲାଖକାମ, ପୁରୀର ପଥରଖୋଦେଇ । କାରିଗରମାନଙ୍କ ଶିଳ୍ପକୌଶଳରେ ଉଦ୍‌ବୁଦ୍ଧ ହୋଇ ଦଳଦଳ ଅଂଶଗ୍ରହଣକାରୀ ଶିଳ୍ପୀ ସେମାନଙ୍କୁ ଘେରି ଯାଉଥିଲେ । ଓଡ଼ିଶୀ ଶିଳ୍ପ ପରମ୍ପରାର ବିଚକ୍ଷଣତା ସାଙ୍ଗକୁ କାରିଗରଙ୍କ ତଲ୍ଲୀନତା ସେମାନଙ୍କୁ ଅପାର ଆନନ୍ଦ ଯୋଗାଇ ଦେଉଥିଲା ।

ପଥର କାରିଗରମାନଙ୍କ ନିହାଣମୁନର ସଂଗୀତକୁ ତାଳଦେଇ ସଂଧ୍ୟାରେ ଆରମ୍ଭ ହୋଇଯାଉଥିଲା ପଦ୍ମଶ୍ରୀ ସଂଯୁକ୍ତା ପାଣିଗ୍ରାହୀଙ୍କ ଓଡ଼ିଶୀ ନୃତ୍ୟର ଛନ୍ଦୋବଦ୍ଧ ନୂପୁରର ନିକ୍ୱଣ ଆଉ ତାଙ୍କ ସଂଗେ ସୁରମିଳେଇ ପଣ୍ଡିତ ରଘୁନାଥ ପାଣିଗ୍ରାହୀ ପରିବେଷଣ କରିଦେଉଥିଲେ ଗୀତଗୋବିନ୍ଦର ଲଳିତ କାନ୍ତ ପଦାବଳୀ ।

କୁମ୍ଭାର ଚକକୁ ସଳଖ ଭାବରେ ବୁଲେଇବା ଥିଲା ଅଧିକାଂଶ ଶିଳ୍ପୀଙ୍କ ଜୀବନରେ ପ୍ରଥମ ଅନୁଭବ । କୌଶଳଟି ନିଶ୍ଚିତଭାବେ ଥିଲା ଶିକ୍ଷଣୀୟ କିନ୍ତୁ ତାରି ଭିତରେ ଭରିହୋଇ ରହିଥିଲା କୌତୂହଳତା । ଗାଁର ପରିବେଶଟିଏ ସୃଷ୍ଟିକରିଦେବା ପାଇଁ ଆମ କଲେଜ ପିଲା ହତାଭିତରେ ଥିବା କଣ୍ଟଣ ଗଛ ମୂଳରେ ପୋଡ଼ାମାଟିର ଘୋଡ଼ା, ହାତୀ, ଛୋଟ ଛୋଟ ମାଟିର ହାତଗଢ଼ା ଦିଅଁ, ହାଣ୍ଡି, ଦୀପ, ରୁଖା ସଜେଇ ଦେଇ ଗୋଟିଏ ଠାକୁରାଣୀ ଆସ୍ଥାନର ଭ୍ରମ ସୃଷ୍ଟି କରିଦେଇଥିଲେ । କଲେଜ ହତା ଭିତରେ ଥିବା ଗୋଟିଏ ଖାଲୁଆ ଜାଗାକୁ ସଫାକରି ଗୋଟିଏ କୃତ୍ରିମ ପୁଷ୍କରିଣୀ ସୃଷ୍ଟି କରିଦେଇଥିଲେ । ତା'ରି ଭିତରେ ପଥରରେ ଖୋଦେଇ କରା କୁମ୍ଭୀର, ଫାଇବର୍ ଗ୍ଲାସ୍‌ର କଇଁଚ, ଥର୍ମୋକୋଲ୍‌ର ମାଛ, ମହମଦିଆ କାଗଜର ପଦ୍ମ ଫୁଲ, ପଦ୍ମପତ୍ର ପ୍ରଭୃତି ଖଞ୍ଜିଦେଇ କଳ୍ପନାର ଗୋଟିଏ ଝଲକ ସେଇଠି ଛାଡ଼ି ଦେଇଥିଲେ । ସେଇ ଠାକୁରାଣୀଙ୍କ ଆସ୍ଥାନ ପାଖରେ ବିଶିଷ୍ଟ ଓଡ଼ିଶୀ ନୃତ୍ୟଗୁରୁ ଦେବପ୍ରସାଦ ଦାସ ଓ ତାଙ୍କ ଛାତ୍ରୀ ସୁଜାତା ମିଶ୍ର ଓଡ଼ିଶୀ ନୃତ୍ୟର ବିଭିନ୍ନ ଭଙ୍ଗି, ମୁଦ୍ରା, ଚାଲି, ବେଲି, ଠିଆ, ବଇଠା ପ୍ରଦର୍ଶନ କରି ସମସ୍ତଙ୍କୁ ମୁଗ୍ଧ ଚକିତ କରି ଦେଇଥିଲେ ।

ଶିବିରର ସେହି ସ୍ମରଣୀୟ ଦଶଦିନ ଭିତରେ ଭାରତବର୍ଷର କେତେକ ଦିଗ୍‌ଗଜ ପଣ୍ଡିତ, ଲେଖକ, ଶିଳ୍ପୀ, ଶିକ୍ଷାବିତ୍ ଏହି କଲେଜରେ ପଦାର୍ପଣ କରି କଲେଜକୁ ଏବଂ ଆମକୁ ଧନ୍ୟ କରିଛନ୍ତି । ଏମାନଙ୍କ ଭିତରୁ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ କଥା ମନରୁ ଯାଉନି । ତା ମଧ୍ୟରୁ ଜଣେ ହେଲେ ବୃଦ୍ଧ ଚିତ୍ରଶିଳ୍ପୀ ପ୍ରଫେସର୍ ଭବେଶ ଚନ୍ଦ୍ର ସାନ୍ୟାଲ- ଭବେଶ ଦା' ବା ପ୍ରଫେସର୍ ସାନ୍ୟାଲ ଭାବରେ ଶିଳ୍ପୀ ମହଲରେ ବେଶି ପରିଚିତ । ଏଇ

Digitized by srujanika@gmail.com

ତିନିଚାରି ବର୍ଷ ତଳେ ଶତୋତ୍ତର ସମୟରରେ ତାଙ୍କ ପରଲୋକ ଘଟିଛି । ଆଉ ଜଣେ ସେଭଳି ପ୍ରସିଦ୍ଧ ଲେଖକ, ସତ୍ୟନିଷ୍ଠ କଳା ସମାଲୋଚକ ଏବଂ ସଫଳ ସଂଗଠକ ହେଲେ ମୁଲକ୍‌ରାଜ୍ ଆନନ୍ଦ । ଇଂଲିଶ ଭାଷାରେ ଲେଖାଲେଖି କରିଥିବା ସେ ଜଣେ ବିଚକ୍ଷଣ ଔପନ୍ୟାସିକ । ଆଉ ଛଟି ମାସ ବଂଚିଥିଲେ ସିଏ ବି ଶତାୟୁର ଅଧିକାରୀ ହେଇଥାନ୍ତେ । ବେଶ ପୋଷାକରେ ମୁଲକ୍‌ରାଜ୍‌ଙ୍କର ଏକ ନିଜସ୍ୱ ଶୈଳୀ ଥିଲା, ବୋତାମ ନଥାଇ ବାଁ ପଟେ ସୂତା ବନ୍ଧା କୁର୍ତ୍ତା ସେ ପିନ୍ଧୁଥିଲେ । ଗୋଟିଏ ଗୁଜରାଟି ପ୍ରିଣ୍ଟ୍‌ର କନା ବ୍ୟାଗ୍ ହାତରେ ଝୁଲେଇ ଧରୁଥିଲେ । ବ୍ୟାଗ୍ ଭିତରେ ପାଞ୍ଚ ଛଅଟି ଛୋଟ ବ୍ୟାଗ୍, ଗୋଟିକରେ ନୋଟ୍‌ବୁକ୍, ଅନ୍ୟଟିରେ ଚଷମା ଖୋଳ, ତୃତୀୟଟିରେ ଔଷଧ ଏମିତି ଯେତେ ସବୁ ଦରକାରୀ ପଦାର୍ଥ । ସେ କହିଲାବେଳେ ସବୁବେଳେ ଏତେ ତରତର ଯେ ମନେ ହେଉଥିଲା ଯିମିତି ତାଙ୍କ ହାତରୁ ସମୟ ଖସିଯାଉଛି । ଆମେ ସବୁ ଶିଳ୍ପୀ କୋଣାର୍କ ମନ୍ଦିର ଦେଖିବାକୁ ଯାଉଥାଉ । ଥକିଗଲେ ନା କ'ଣ ସେ ପଥରଖଣ୍ଡ ଉପରେ ବସିପଡ଼ିଲେ । ଆମେ ତାଙ୍କୁ ଚାରିଆଡୁ ଘେରି ବସିଗଲୁ । ତାପରେ ଆରମ୍ଭ ହେଇଯାଉଥିଲା ମୁଲକ୍‌ରାଜ୍‌ଙ୍କ ଜୀବନ ସ୍ମୃତି:

''ମୋ ବାନ୍ଧବୀ ବର୍ଷେ ଜେଲ୍‌କୁ ଚାଲିଗଲା ପରେ ମୋତେ ଆଉ ଲଣ୍ଡନରେ ରହିବାକୁ ମନ ଲାଗିଲାନି । ମୁଁ ଭାରତକୁ ଫେରିଆସି ମହାତ୍ମା ଗାନ୍ଧିଙ୍କ ଆଶ୍ରମରେ ରହି ସମାଜ ସେବାରେ ମନୋନିବେଶ କରିବା ପାଇଁ ଚାହିଁଲି । ମୁଁ ଗାନ୍ଧିଙ୍କ ପାଖକୁ ଅନୁମତି ଭିକ୍ଷା କରି ଚିଠି ଲେଖିଲି । ମୋତେ ସୁପାରିଶ କରି କବି ଜର୍ଜ ରାଶୋଲ୍ ବି ଚିଠି ଲେଖିଲେ ।''

''୧୯୨୭ ଜାନୁୟାରୀ ପ୍ରାରମ୍ଭରେ ଆସିବା ପାଇଁ ମହାତ୍ମା ଗାନ୍ଧି ମୋତେ ଚିଠି ଦ୍ୱାରା ଜଣେଇଲେ । ମୁଁ ମୋର କରଡୁରଏ ସୁଟ୍‌ରେ ସାବରମତୀରେ ପହଞ୍ଚିଲି । ବାପୁ ମୋତେ ଦେଖି ସାମାନ୍ୟ ମୁରୁକି ହସା ଦେଲେ ଆଉ ପ୍ରଶ୍ନକଲେ, ''ଏ ପୋଷକରେ ତମକୁ ଗରମ ବାଧୁନି ?'' ମୁଁ ଉତ୍ତର ଦେଲି, ''ବ୍ଲୁମସ୍‌ବରୀରୁ ଆସିଛି ତ ସେଠିକାର ଫେସନ୍ ଅନୁଯାୟୀ ଡ୍ରେସ୍ ପିନ୍ଧିଛି ।'' ଆମେ ସବୁ ତଟସ୍ଥ ହେଇ ତାଙ୍କ ମୁହଁକୁ ଅନେଇ ରହିଥାଉ । ଭାବୁଥାଉ ସେ କେତେ ଭାଗ୍ୟବାନ୍ । ''ଗାନ୍ଧିଜୀ କହିଲେ ଆମର ଆଶ୍ରମରେ କୁର୍ତ୍ତା ପାଇଜାମା ପିନ୍ଧ । ତା'ପରେ ଗାନ୍ଧିଜୀ ତାଙ୍କ ସଚିବ ମହାଦେବ ଦେଶାଇଙ୍କୁ କହି ଖଦଡ଼ର କୁର୍ତ୍ତା ପାଇଜାମା ମଗେଇ ଆଣିଲେ ।''

ତମେ ମୋ ଠାରୁ କ'ଣ ଆଶା କରୁଚ ବୋଲି ଗାନ୍ଧିଜୀ ମୁଲକ୍‌ରାଜ୍‌ଙ୍କୁ ପଚାରିଲେ । ମୁଲକ୍‌ରାଜ୍ କହିଲେ, ''ଅସବର୍ଣ୍ଣଙ୍କ ସଂପର୍କରେ ଲେଖିଥିବା ମୋ ଉପନ୍ୟାସର ପାଣ୍ଡୁଲିପି ଦେଖେଇବା ପାଇଁ ଚାହୁଁଛି ।'' ଗାନ୍ଧିଜୀ ମନବିଡ଼ିବା ପାଇଁ ମୁଲକ୍‌ଙ୍କୁ ପଚାରିଲେ ''ଅସବର୍ଣ୍ଣ ମାନେ ହରିଜନ ତ ?''

Digitized by srujanika@gmail.com

ମୁଲକ୍ ଆମକୁ କହିଚାଲିଥାନ୍ତି, ''ମୁଁ ମୁହଁପୋତି ଠିଆ ହେଲି।'' ଗାନ୍ଧିଜୀ କଥା ଲମ୍ବେଇଲେ, ତମେ ଯଦି ଏହି ଆଶ୍ରମରେ ରହିବା ପାଇଁ ଚାହୁଁଛ ତା'ହେଲେ ତମକୁ ତିନୋଟି ପ୍ରତିଜ୍ଞା କରିବାକୁ ହେବ। ପ୍ରଥମ ହେଲା କୌଣସି ନାରୀକୁ ଆସକ୍ତ ଆଖିରେ ଦେଖିବନି। ''ମୁଁ ମୁଣ୍ଡ ହଲେଇ ହଁ ଭରିଲି।'' ଦ୍ୱିତୀୟଟି ହେଲା, ''ସପ୍ତାହକୁ ଥରେ ତମକୁ ଆଶ୍ରମର ପାଇଖାନା ସଫା କରିବାକୁ ହେବ ଏବଂ ରୋଷେଇରେ ମଧ୍ୟ ସାହାଯ୍ୟ କରିବାକୁ ପଡ଼ିବ। ମୁଁ ସାମାନ୍ୟ ହସିଦେଇ ମୋ ସମ୍ମତି ଜଣେଇଲି। ତୃତୀୟ ପ୍ରତିଜ୍ଞା ହେଲା ପ୍ରତିଦିନ ସକାଳୁ ପ୍ରାର୍ଥନା ସଭାରେ ଯୋଗ ଦେବାକୁ ପଡ଼ିବ। ଏହି ପ୍ରତିଜ୍ଞାଟି ଶୁଣି ମୁଁ ସାମାନ୍ୟ ହଡ଼ବଡ଼େଇଗଲି କିନ୍ତୁ ଶେଷରେ ମୁଁ କହିଥିଲି ମୋର ଉପନ୍ୟାସ ରଚନାହିଁ ମୋର ପ୍ରାର୍ଥନା।''

ମୁଲକ୍‌ରାଜ୍ ଖୁବ୍ ଭାବପ୍ରବଣତାର ସହିତ ଜୀବନର ଅନୁଭବଗୁଡ଼ିକ ଗପି ଚାଲିଥାନ୍ତି ଓ ଆମେ ସମସ୍ତେ ମୁହଁରେ କୃତଜ୍ଞତାର ଆଭାସ ଫୁଟାଇ ତାଙ୍କ କଥାଯାକ ସତେ ପିଇଯାଉଥାଉ। ସେ ସମୟତକ ପାଇଁ ଆମକୁ ଲାଗିଲା ମୁଲକ୍‌ରାଜ୍ ନିଜେ ମହାତ୍ମାରେ ରୂପାନ୍ତରିତ ହୋଇ ସାରିଛନ୍ତି। ଆଉ ଆମେ ମହାତ୍ମାଗାନ୍ଧିଙ୍କ ମୁହଁରୁ ମୁଲକ୍‌ଙ୍କ ସଂପର୍କରେ ଶୁଣୁଛୁ।

ଭବେଶ ଦା' ଅନୁଭୂତିରେ ମୁଲକ୍ ଅପେକ୍ଷା କିଛି କମ୍ ନୁହନ୍ତି। ମୁଲକ୍ ଯିମିତି ସାହିତ୍ୟର ଶୀର୍ଷରେ ସିଏ ସିମିତି ଚିତ୍ରକଳାର ଉଚ୍ଚତର ସୋପାନରେ। ଜଣେ ବିଚକ୍ଷଣ ଶିକ୍ଷକ। ଓଲଟ ବାଗରେ ଦି' ପାଖକୁ ସଦାବେଳେ କୁଣ୍ଡିଆ ହୋଇ ସଜଡ଼ା ହୋଇଥିବା ସଫେଦ ଦାଢ଼ି। ଗୋରା ଦେହ, ପତଳା ଚେହେରା କିନ୍ତୁ ଅଣ୍ଟାକୁ ସିଧାକରି ସେନାଧ୍ୟକ୍ଷ ଭଳି ଚାଲୁଥିବା ଏବଂ ଆତ୍ମପ୍ରତ୍ୟୟର ସହିତ କଥା କହୁଥିବା ମଣିଷ ପ୍ରଫେସର୍ ସାନ୍ୟାଲଙ୍କ ଚିତ୍ର ଓ ଭାସ୍କର୍ଯ୍ୟରେ ଜୀବନର ପ୍ରାଣପ୍ରାଚୁର୍ଯ୍ୟ ଭରି ରହିଥିଲା। ସିଏ ଥିଲେ ଜଣେ ଉଦାରଚେତା, ସର୍ଜନଶୀଳ ଓ ଦୂରଦୃଷ୍ଟିସଂପନ୍ନ ମଣିଷ। ଶିବିରର ପ୍ରତି ସକାଳ ସମାବେଶରେ ପ୍ରଫେସର୍ ସାନ୍ୟାଲ୍ ତାଙ୍କ ଜୀବନର ଅଭୁଲା ସ୍ମୃତି ଅଜାଡ଼ି ଦେବେ। ତାଙ୍କର ଚିତ୍ରଯାତ୍ରା ଲାହୋରର ମାୟୋ ସ୍କୁଲ ଠାରୁ ଆରମ୍ଭ ହେବ। ସିଏ କିମିତି ଜାତୀୟ କଂଗ୍ରେସ ଅଧିବେଶନ ପାଇଁ ଲାଲା ଲାଜପତ୍ ରାୟଙ୍କ ପୂର୍ଣ୍ଣାବୟବ ମୂର୍ତ୍ତିଟିଏ ନିର୍ମାଣ କରିବାକୁ ୧୯୨୯ରେ ଲାହୋରରେ ପହଞ୍ଚିଲେ। ଆଉ ଲାହୋରର ଶିଳ୍ପ ଅଭ୍ୟୁତ୍ଥାନରେ ନିଜକୁ କିମିତି ସାମିଲ କରିଦେଲେ, ତାର ଝଲକ ଦେବେ। ସେ ମାୟୋ କଳାବିଦ୍ୟାଳୟରେ ସାତବର୍ଷ ଯାଏ ଅଧ୍ୟାପକ ରହିଲେ ଏବଂ ପରେ ପରେ ନିଜ ପ୍ରଚେଷ୍ଟାରେ ସେଠି ଏକ ନୂଆ ଅନୁଷ୍ଠାନ, ''ଲାହୋର କଳାବିଦ୍ୟାଳୟ''ର ମୂଳଦୁଆ ପକାଇଥିଲେ, ଯାହା ଶେଷରେ ''ସାନ୍ୟାଲଙ୍କ ଷ୍ଟୁଡ଼ିଓ'' ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲା। ଏହି ପ୍ରସିଦ୍ଧିର ମୂଳରେ ଥିଲା ଅନୌପଚାରିକ

Digitized by srujanika@gmail.com

କଳାଶିକ୍ଷାର ଆଦର । ସାନ୍ୟାଲ୍‌ଙ୍କ ଷ୍ଟୁଡ଼ିଓ ଦଶନ୍ଧିଏ ଧରି ଏକ ନୂତନ କଳା ଆନ୍ଦୋଳନର କେନ୍ଦ୍ର ହୋଇଗଲା । ତାଙ୍କ ଷ୍ଟୁଡ଼ିଓରେ ସେତେବେଳେ ଯେଉଁମାନେ ସହଯୋଗୀ ଥିଲେ, ସେମାନେ ହେଲେ ଧନରାଜ୍ ଭଗତ୍, ହରକ୍ରିଷନ୍ ଲାଲ୍, ପ୍ରାଣନାଥ ମାଗୋ, ଅମରନାଥ୍ ସେହଗଲ୍, କ୍ରିଷେନ୍ ଖାନ୍ନା, ଦମୟନ୍ତୀ ଚାଓ୍ୱଲା, ରତ୍ନା ଫାବ୍ରୀ ପ୍ରମୁଖ । ଆମ ଚିତ୍ର ଶିକ୍ଷକ ଶିବିରରେ ଯୋଗଦେଇଥିବା ଶିଳ୍ପୀମାନଙ୍କ ପାଇଁ ସାନ୍ୟାଲ୍‌ଙ୍କ ଷ୍ଟୁଡ଼ିଓର ଶିଳ୍ପୀଙ୍କ ନାମଗୁଡ଼ିକ ଅତ୍ୟନ୍ତ ଉତ୍ସାହପ୍ରଦ ଥିଲା । ଲାଗୁଥିଲା ସେମାନେ ଯେଭଳି କଳାଜଗତର ଏକ ନୂତନ ଆଲୋକର ସନ୍ଧାନ ପାଇଛନ୍ତି ।

ସ୍ୱାଧୀନତା ପରେ ଦେଶ ବିଭାଜନକୁ ଆଳ କରି ଭବେଶ ଦା' ଭାରତ ଲେଉଟି ଆସିଲେ ଆଉ ତାଙ୍କ ନେତୃତ୍ୱରେ ଦିଲ୍ଲୀ ନଗରୀରେ ଆରମ୍ଭ ହୋଇଗଲା 'ଦିଲ୍ଲୀ ଶିଳ୍ପୀଚକ୍ର' । ଦିଲ୍ଲୀ ଶିଳ୍ପୀଚକ୍ରର ପ୍ରତିଷ୍ଠା ହୁଏ ୨୫ ମାର୍ଚ୍ଚ ୧୯୪୯ ମସିହାରେ ଓ ପରେ ପରେ ତାହା ନିଜ କାୟା ବିସ୍ତାର କରେ । ଭବେଶ ଦା'ଙ୍କ ସହିତ ଅନ୍ୟ ଶିଳ୍ପୀମାନେ ଆସି ଯୋଗଦିଅନ୍ତି । ସେମାନଙ୍କ ମଧ୍ୟରେ ଥାଆନ୍ତି ପୁରୁଣା ସହକର୍ମୀ ହରକ୍ରିଷନ୍ ଲାଲ୍, କେ.ସି. ଆର୍ଯ୍ୟ, ଦମୟନ୍ତୀ ଚାଓ୍ୱଲା, ଦିନକର୍ କଉଶିକ୍, ଜୟା ଆପାସ୍ୱାମୀ, ଶ୍ରୀନିବାସ ପଣ୍ଡିତ, ବ୍ରିଜ୍‌ମୋହନ ଭନୋତ୍, ସତୀଶ୍ ଗୁଜରାଲ୍, ରାମକୁମାର୍, ଅବିନାଶ ଚନ୍ଦ୍ର, କେଓ୍ୱଲ୍ ସୋନି, ବିଶ୍ୱମ୍ବର ଖାନ୍ନା, ରାଜେଶ୍ ମେହେରା, ରାମେଶ୍ୱର ବ୍ରୁଟା, ଜଗମୋହନ ଚୋପ୍ରା ଏବଂ ପରମ୍‌ଜିତ୍ ସିଂହ ।

ଭବେଶ୍ ଦା'ଙ୍କ ସ୍ମୃତିଚାରଣ ମନେହେଉଥିଲା ଭାରତୀୟ ଆଧୁନିକ ଚିତ୍ରକଳା ଇତିହାସର ଉନ୍ମୋଚନ । ତାଙ୍କ ପ୍ରତ୍ୟେକ ବାକ୍ୟ ଲାଗୁଥିଲା ସେହି ଇତିହାସର ଗୋଟିଏ ଗୋଟିଏ ଗୌରବମୟ ପୃଷ୍ଠା । ଭବେଶ ଦା' ଡିଭାନ୍ ଉପରେ ଗୋଡ଼ ଉଠେଇ ବସିବେ । ତାଙ୍କ ବାଁପଟେ ଦିଲ୍ଲୀପ ବକ୍‌ସି ଓ ଡାହାଣ ପଟେ ମୁଁ । ସିଏ ତାଙ୍କ କଥାରେ ଶ୍ରୋତାଙ୍କୁ ତଟସ୍ଥ କରି ଦେଉଥିବେ, ଅନୁପ୍ରାଣିତ କରି ଦେଉଥିବେ । କଥାଗୁଡ଼ିକ ଫୁଲର ଶର ହୋଇ ଦେହରେ ମନରେ ଭେଦିଯାଉଥିବ ।

ସିଏ ଏମିତି ଗୋଟିଏ ସକାଳୁଆ ଅଧିବେଶନରେ 'ମେଥଡ଼ିଙ୍ଗ୍ ଅଫ୍ ମ୍ୟାଡ୍‌ନେସ୍' କଥା କହିଥିଲେ । ଉପଲକ୍ଷ୍ୟ ଥିଲା କୋଣାର୍କ ମନ୍ଦିରର ନିର୍ମାଣ ଓ ନିର୍ମାଣ କାର୍ଯ୍ୟରେ ନିୟୋଜିତ ଶିଳ୍ପୀଙ୍କ ଶୈଳ୍ପିକ ଆଭିମୁଖ୍ୟ । ସୃଜନକଳାରେ ପାଗଳ ନହେଲେ ସୃଷ୍ଟି ସମ୍ଭବ ନୁହେଁ । ସୃଷ୍ଟିପାଇଁ ଧରାବନ୍ଧା ନିୟମ ନାହିଁ, ବ୍ୟାକରଣ ନାହିଁ । ସୃଷ୍ଟି ଏକ ସଂପୂର୍ଣ୍ଣ ମୁକ୍ତ ଛନ୍ଦରେ ହିଁ ସମ୍ଭବ ଏବଂ ଯାହା ଏଭଳି ଅବ୍ୟାପାର ଭିତରୁ ରୂପ ନିଏ ସେଥିରେ ମଧ୍ୟ ଛନ୍ଦ ଲୁଚି ରହିଥାଏ, 'ମେଥଡ୍' ଆପେ ଆପେ ଅବତରେ ।

ପ୍ରଫେସର୍ ମୁଲକ୍‌ରାଜ୍ ଆନନ୍ଦ ଓ ପ୍ରଫେସର୍ ଭବେଶଚନ୍ଦ୍ର ସାନ୍ୟାଲ୍‌ଙ୍କୁ ମୁଁ ବହୁଆଗରୁ ଥରେ-ଅଧେ ନୁହେଁ ଏକାଧିକବାର ଭେଟିଛି ଏବଂ ତାଙ୍କ ବ୍ୟକ୍ତିତ୍ୱରେ ଯଥେଷ୍ଟ ଅନୁପ୍ରାଣିତ

Digitized by srujanika@gmail.com

ହୋଇଛି । ମୋର ମନେଥାଏ ମୁଲକ୍‌ରାଜ୍ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଦେଇଥିବା ତିନୋଟି ମହାର୍ଘ ପ୍ରସ୍ତାବ, ଉପଦେଶ ବି କୁହାଯାଇପାରେ । ପ୍ରଥମଟି ହେଲା, ''ହେ ଜାନକୀ ବଲ୍ଲଭ ! ତମ ସଚିବାଳୟ କୋଠାର ପିଙ୍କ୍ ରଙ୍ଗ ଓଡ଼ିଆ ଭଳି ବୀର ଓ ଦୁର୍ଦ୍ଧର୍ଷ ଜାତିର ପରାଭବକୁ ପୋଷଉ ନାହିଁ, ଏଣୁ ରଙ୍ଗ ବଦଳେଇଦିଅ ।'' ଦ୍ୱିତୀୟଟି ହେଲା, ''ତମେ ତମ ସରକାରଙ୍କ ବିଭିନ୍ନ ବିଭାଗ ଓ ଉପବିଭାଗ ଆନୁକୂଲ୍ୟରେ ଓଡ଼ିଶାର ସଂସ୍କୃତି ସଂପର୍କରେ ଅନେକ ବହି ମୁଦ୍ରଣ କରୁଛ । ସେହି ବହିଗୁଡ଼ିକର ପରିକଳ୍ପନା, ସଂପାଦନା ଓ ଡିଜାଇନ୍ ଅତି ନିମ୍ନମାନର, ଏଣୁ ଗୋଟିଏ ହେଲେ ବହି ଆନ୍ତର୍ଜାତିକ ସ୍ତରରେ ତିଷ୍ଠିପାରୁନାହିଁ । ଅତଏବ ସମସ୍ତ ବିକ୍ଷିପ୍ତ ଶକ୍ତି, ସାମର୍ଥ ଓ ଅର୍ଥକୁ ପୁଞ୍ଜି କରି ବର୍ଷକୁ ଅନ୍ତତଃ ଗୋଟିଏ ଉଲ୍ଲେଖଯୋଗ୍ୟ ବହି ପ୍ରକାଶ କର । ଏଥିପାଇଁ ଯଦି ମୋର ସାହାଯ୍ୟ ଆବଶ୍ୟକ ପଡେ, ତାହା ମୁଁ ଯୋଗାଇ ଦେବାପାଇଁ କୁଣ୍ଠା କରିବିନି ।'' ତୃତୀୟଟି ହେଲା, କୋଣାର୍କ ଠାରେ ଗୋଟିଏ ଶିଳ୍ପଗ୍ରାମ ପ୍ରତିଷ୍ଠା । ଏଥିରୁ କୌଣସିଟି ହେଲେ ପ୍ରସ୍ତାବ ଆଜିଯାଏଁ କାର୍ଯ୍ୟକାରୀ ହେଇପାରିନି । କେବଳ ଏବେ ସଚିବାଳୟର ମାତ୍ର ରଙ୍ଗ ବଦଳିଛି ।

ଶିବିରରେ ଆଉ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଯୋଗଦେଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ ବିଶିଷ୍ଟ ନୃତ୍ୟ ସମାଲୋଚକ ଡକ୍ଟର ସୁନୀଲ କୋଠାରୀ, ଶିକ୍ଷାବିତ୍ ପ୍ରଫେସର୍ ଦେବେନ୍ଦ୍ର ଯୋଶୀ ଓ ଶ୍ରୀମତୀ ମେହେରା କଣ୍ଟ୍ରାକ୍‌ଟର୍; ନାମଜାଦା ଭାସ୍କର୍ଯ୍ୟ ପ୍ରଫେସର୍ ବଲ୍‌ବୀର ସିଂହ କଟ୍, ଏନ୍.ସି.ଇ.ଆର୍.ଟିର କର୍ମକର୍ତ୍ତାମାନଙ୍କ ମଧ୍ୟରେ ଥିଲେ ପ୍ରଫେସର୍ ବିଦ୍ୟାଳଙ୍କାର ଏବଂ ଦିଲ୍ଲୀପ ବକ୍ସି ଯେଉଁମାନେ ଶିବିରର ଦୈନିକ କାର୍ଯ୍ୟକ୍ରମରେ ଶିକ୍ଷାର୍ଥୀମାନଙ୍କୁ ଭାରତୀୟ କଳା ଓ ସଂସ୍କୃତିର ବିଭିନ୍ନ ବିଷୟରେ ଉଦ୍‌ବୋଧନ ଦେଉଥିଲେ । ସେମାନଙ୍କ ସହିତ ଓଡ଼ିଶାରୁ ଯେଉଁ ଗୁଣୀଜ୍ଞାନୀମାନେ ନିମନ୍ତ୍ରିତ ହେଇଆସିଥିଲେ, ତା'ରି ଭିତରେ ଥିଲେ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର୍ ଶତ୍ରୁଘ୍ନ ନାଥ, ଓଡ଼ିଶୀ ନୃତ୍ୟସମାଲୋଚକ ଧୀରେନ୍ଦ୍ର ନାଥ ପଟ୍ଟନାୟକ, ସ୍ୱନାମଧନ୍ୟ  ଶିକ୍ଷକ ଡକ୍ଟର ରଘୁନାଥ ପାଣି, ଇଣ୍ଟିଗ୍ରାଲ୍ ସ୍କୁଲର ଅଧ୍ୟକ୍ଷା ପ୍ରୀତି ପଟ୍ଟନାୟକ, ରୁଚିକା ସ୍କୁଲର ଅଧ୍ୟକ୍ଷା ଇନ୍ଦରଜିତ୍ ଖୁରାନା ଏବଂ ବକ୍‌ସି ଜଗବନ୍ଧୁ ଇଂଲିଶ୍ ମଡ଼ିୟମ୍ ସ୍କୁଲର ଅଧ୍ୟକ୍ଷ କୃଷ୍ଣ ଚନ୍ଦ୍ର ଦାଶ ।

ମେହେରା କଣ୍ଟ୍ରାକ୍‌ଟର ବମ୍ବେର ଲୋକ । ସେ ଶିକ୍ଷା କ୍ଷେତ୍ରରେ ଚିତ୍ରକଳାର ପ୍ରୟୋଗକୁ ନେଇ ବହୁତ ପରୀକ୍ଷାନିରୀକ୍ଷା କରିଛନ୍ତି । ଅଲୋଡ଼ା କାଗଜ ଓ କନା ସାହାଯ୍ୟରେ ପୁତଳିକା କରିବାରେ ସେ ଧୁରନ୍ଧର । ସେ ମାତ୍ର ଦୁଇତିନିଦିନ ମଧ୍ୟରେ ଶିବିରର ଶିକ୍ଷାର୍ଥୀଙ୍କୁ କାଠିଲଗା କଣ୍ଢେଇ ଗଢ଼ିବା ଶିଖେଇ ଦେଇପାରିଥିଲେ ଏବଂ ସେମାନେ ନିଜେ ନିଜେ ଗପ ଫାନ୍ଦି ନାଟକ ପରିବେଷଣ କଲାବେଳେ ଚମତ୍କାର ଭାବେ କଣ୍ଢେଇ ଗୁଡ଼ିକୁ ଉପଯୋଗ କରିପାରୁଥିଲେ । ଆମେ କୋଣାର୍କ ପରିଦର୍ଶନରେ ଯାଇଥାଉ । ମୁଲକ୍‌ରାଜ୍ କହିଲେ,

Digitized by srujanika@gmail.com

''ଦିନନାଥ ଚାଲ, ଆମେ ଗୋଟିଏ ପ୍ରାଇମେରୀ ସ୍କୁଲକୁ ଯିବା ଓ ସେଠି ପିଲାଙ୍କ ସାଙ୍ଗରେ ଦି'ଚାରିଘଣ୍ଟା କଟେଇବା ।'' ଏହାଥିଲା ଶିବିରରେ ଆହରଣ କରିଥିବା ଜ୍ଞାନ କୌଶଳର ପ୍ରୟୋଗାତ୍ମକ ଦିଗ । ଆମେ କୋଣାର୍କ ପାଖ କୁଣେଇ ଗାଁର ପ୍ରାଇମେରୀ ସ୍କୁଲରେ ଅଚାନକ ପହଞ୍ଚିଲୁ । ଏତେବଡ଼ ଦଳବଳ ଦେଖି ପ୍ରଧାନଶିକ୍ଷକ ହଡ଼ବଡ଼େଇ ଗଲେ । ମୁଁ ଅତିଥିମାନଙ୍କ ସାଙ୍ଗରେ ତାଙ୍କର ପରିଚୟ କରି ଦେଲା ପରେ ସେ ବିସ୍ମୟାନନ୍ଦରେ ଅଭିଭୂତ ହୋଇପଡିଲେ । ତାଙ୍କର ମନେହେଲା ସତେ ଯିମିତି ସ୍ୱର୍ଗର ଇନ୍ଦ୍ରସଭାରୁ ଚେନାଏ ତାଙ୍କ ବିଦ୍ୟାଳୟ ହତା ଭିତରେ ଖସିପଡ଼ିଛି । ସିଏ ହୁଏତ ଶତଚେଷ୍ଟା କରିଥିଲେ ମଧ୍ୟ ଏତେବଡ଼ ଯଶଧର ବ୍ୟକ୍ତିତ୍ୱମାନଙ୍କୁ ତାଙ୍କ ସ୍କୁଲକୁ ଏକାସାଙ୍ଗରେ ଆଣିପାରି ନଥାନ୍ତେ । କେବଳ ସଭାଟିଏ ହେଲାନି, ଆମ ଭିତରୁ ଦୁଇତିନି ଜଣ ଶ୍ରେଣୀ ଗୃହରେ ପଶି ପିଲାଙ୍କୁ ପାଠ ପଢ଼େଇବା ଆରମ୍ଭ କରିଦେଲେ । କି ଦେଖିବ ସେମାନଙ୍କ ଆନନ୍ଦ, ଉତ୍ସାହ । ଯେହେତୁ ଆମ ଶିକ୍ଷା ବ୍ୟବସ୍ଥାରେ ପ୍ରାଇମେରୀ ସ୍କୁଲ ଉପରେ ଗୁରୁତ୍ୱ କମ୍ ଏଭଳି ଅଣପାରମ୍ପରିକ ପରିଦର୍ଶନ ଫଳରେ ସେହି ଅବହେଳିତ ଅନୁଷ୍ଠାନମାନଙ୍କର ଜୀବନରେ ଆଲୋକର ଉଚ୍ଛ୍ୱାସ ଫେରି ଆସିପାରିବ ।

ଶିବିର ଅବଧି ମଧ୍ୟରେ ଆମ କଲେଜର ଛାତ୍ରଛାତ୍ରୀ ଗୋଟିଏ ନାଟକ ପରିବେଷଣ କରିଥିଲେ । ମେହେରା କଷ୍ଟ୍ରାକ୍ଟର୍ ଶିଖେଇଥିବା ପ୍ରକାରେ କାଠି କଣ୍ଢେଇ ନିଜେ ତିଆରି କରି ନାଟକ ପ୍ରଦର୍ଶନରେ ପ୍ରୟୋଗ କରିଥିଲେ ।

ଶିବିରଟି ଓଡ଼ିଶାର ତଦାନୀନ୍ତନ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶ ମହାପାତ୍ରଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା, ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି ଶକ୍ତି ପ୍ରସାଦ ମିଶ୍ର ଉତ୍ସବରେ ସଭାପତିତ୍ୱ କରିଥିଲେ ଓ ଶିକ୍ଷା ନିର୍ଦ୍ଦେଶକ ଦୀନବନ୍ଧୁ ମିଶ୍ର ମୁଖ୍ୟ ଅତିଥିଭାବେ ଯୋଗଦେଇ ଶିକ୍ଷାରେ ଚିତ୍ରକଳାର ଗୁରୁତ୍ୱ ପ୍ରତି ଆମକୁ ସଚେତନ କରିଦେଇଥିଲେ । ଏହି ଉପଲକ୍ଷେ ରାଜସ୍ଥାନରୁ ଯୋଗ ଦେଇଥିବା ଆଲ୍‌ପନା ଜୈନଙ୍କ ଟେକ୍‌ସ୍ଟାଇଲ୍ ଡିଜାଇନ୍ ଓ ଶାନ୍ତିନିକେତନର ଗ୍ରାଫିକ୍ ପ୍ରିଣ୍ଟ ତଥା ଏସୀୟ ଚିତ୍ରକଳା ଉପରେ ଆଧାରିତ ସୁଇସ୍ ପୋଷ୍ଟର୍ ପ୍ରଦର୍ଶିତ ହୋଇଥିଲା । ରାଜ୍ୟ ସଂସ୍କୃତି ବିଭାଗର କମିଶନର୍ ସମର ବଲ୍ଲଭ ମହାପାତ୍ର ଏହି ପ୍ରଦର୍ଶନୀ ଗୁଡ଼ିକୁ କଲେଜ ପରିସର ମଧ୍ୟରେ ଉଦ୍‌ଘାଟନ କରିଥିଲେ । ଶିବିରର ସମାବର୍ତ୍ତନ ଉତ୍ସବର ଦୁଇଟି ଘଟଣା ଅତ୍ୟନ୍ତ କୌତୂହଳପ୍ରଦ ଥିଲା ଏବଂ ଏହା ଏବେଯାଏଁ ମୋର ସ୍ମରଣରେ ଅଛି । ଶିବିରରେ ଦଶଦିନ ମଧ୍ୟରେ ଘଟିଯାଇଥିବା ବିଭିନ୍ନ କାର୍ଯ୍ୟକ୍ରମର ଗୋଟିଏ ଧାରାବିବରଣୀ ସମାବର୍ତ୍ତନ ଉତ୍ସବରେ ମୁଁ ଉପସ୍ଥାପନା କରିଥିଲି । ମୋର ଏହି ଉପସ୍ଥାପନାରେ ମୁଗ୍ଧ ହୋଇ ମାଧ୍ୟମିକ ଶିକ୍ଷା ପରିଷଦର ସଂପାଦକ ଏସ୍.ଆର୍. ପଟ୍ଟନାୟକ ସଭାଶେଷର ଗୋଟିଏ ଅପେକ୍ଷାକୃତ ନିରାଞ୍ଜନ ଜାଗାକୁ ମୋତେ ଡାକିନେଇ ଖୁବ୍ ଆତ୍ମୀୟତାର ସହିତ ପଚାରିଲେ । ଉକ୍ତର

Digitized by srujanika@gmail.com

ପାଠୀ। ଆପଣଙ୍କ ଶିବିର ଓ କାର୍ଯ୍ୟକ୍ରମର ତ ପଟାନ୍ତର ନାହିଁ, ଆପଣ ଦରମା କେତେ ପାଆନ୍ତି ? ମନେ ହେଉନାହିଁ ଆପଣଙ୍କ ଦରମା ଖଲ୍ଲିକୋଟରେ ଚାରୁ ଓ କାରୁ ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ଦରମା ସହିତ ସମାନ ହେଉଥିବ। ମୁଁ ଶିକ୍ଷା ବିଭାଗର ଲୋକ ଏଣୁ ଭଲ ଭାବରେ ଜାଣିଛି, ସେହି ଅଧ୍ୟାପକମାନେ ବିଶେଷ କରି ସେଠାକାର ଅଧ୍ୟକ୍ଷ ଜଣେ ସାଧାରଣ କଲେଜ ଅଧ୍ୟାପକର ଦରମା ମଧ୍ୟ ପାଆନ୍ତିନି। ପଟ୍ଟନାୟକ ମହାଶୟଙ୍କ ପ୍ରଶ୍ନର ଗୁମର ମୁଁ ସହଜରେ ଧରିପାରିଲି। ପଟ୍ଟନାୟକ ଗଂଜାମ ଆଡ଼ର ଲୋକ ଏଣୁ ତାଙ୍କ ପ୍ରଶ୍ନଟି ମୋ ଅଣ୍ଟାରେ ଚୋଟଭଳି ଲାଗିଲା। ନିଜ ମାନମହତ, ବିଶେଷ କରି ପୁଅଙ୍କ ଦରମା ଓ ଝିଅଙ୍କ ବୟସ ପଦାରେ ପକେଇବା ବିଜ୍ଞତାର କାର୍ଯ୍ୟ ନୁହେଁ। ଏଣୁ ସହସା ତାଙ୍କୁ ଉତ୍ତର ଫେରେଇ କହିଲି, ଭୁବନେଶ୍ୱରର ଏହି କଲେଜ ଖଲ୍ଲିକୋଟ ଠାରୁ ପାହ୍ୟାରେ ବଡ଼ ଏଣୁ ଏଠିକାର ଅଧ୍ୟକ୍ଷ ପ୍ରଫେସର୍ ସ୍କେଲ୍ ପାଆନ୍ତି। ଉଚ୍ଚପଦସ୍ଥ ଅଫିସର୍ ତଥା ଅନ୍ୟ ଅତିଥିମାନଙ୍କ ସହିତ ମୁଁ ଯେଭଳି ସ୍ୱଚ୍ଛନ୍ଦ ଭାବେ ମିଳାମିଶା କରିପାରୁଥିଲି, ଇଂରାଜୀରେ ଅନର୍ଗଳ ଭାଷଣ ଦେଇପାରୁଥିଲି ପଟ୍ଟନାୟକ ମହାଶୟ ତାଙ୍କୁ ଆକଳନ କରି ମୋର ଦରମା ପ୍ରଫେସରଙ୍କ ଦରମା ତୁଲେ ସମାନ ହେଉଥିବ ବୋଲି ବିଶ୍ୱାସ କରିଗଲେ। ମୋର ଅନୁମାନ ପରବର୍ତ୍ତୀ ସମୟରେ ସିଏ ନିଶ୍ଚୟ ସରଜମିନ୍ ତଦନ୍ତ କରି ମୁଁ ପାଉଥିବା ଦରମାର ସତ୍ୟାସତ୍ୟ ଜାଣିପାରିଥିବେ। ଏହି ଉତ୍ସବ ପରେ ତାଙ୍କ ସହିତ ବହୁବାର ଦେଖା ସାକ୍ଷାତ ହେଇଛି। ସେ କିନ୍ତୁ ମୋ ଦରମା ସଂପର୍କରେ ଆଉ ପ୍ରଶ୍ନ ପଚାରି ନାହାନ୍ତି।

ଦ୍ୱିତୀୟ ଘଟଣାଟି ହେଲା ପ୍ରଫେସର୍ ଭବେଶ ସାନ୍ୟାଲ୍‌ଙ୍କୁ କେନ୍ଦ୍ରକରି। ସମାବର୍ତ୍ତନ ଉତ୍ସବ ସରିଥାଏ। ଅତିଥିମାନେ ଚାହା ପିଉଥାନ୍ତି। ପ୍ରଫେସର୍ ସାନ୍ୟାଲ୍ ମୋତେ ଲକ୍ଷ୍ୟ କରି ହଠାତ୍ ପଚାରିଦେଲେ, ''ପ୍ରଫେସର୍ ପାଠୀ, ଆପଣ କେଉଁ ଅନୁଷ୍ଠାନରେ କଳାଶିକ୍ଷା କରିଛନ୍ତି।'' ମୁଁ କହିଲି, ''ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟ।'' ସେ ମୋ ଉତ୍ତର ଶୁଣି ସିଂହ ଭଳି ଗର୍ଜି ଉଠି କହିଲେ, ''ନା,ଏହା କେବେ ସମ୍ଭବ ନୁହେଁ।'' ମୁଁ ତାଙ୍କୁ ପ୍ରତ୍ୟୟ ଦେବା ପାଇଁ କହିଲି, ''ସାର୍ ଆପଣଙ୍କ ଠାରେ ମୁଁ କୌଣସି କଥା ଲୁଚାଉ ନାହିଁ। ମୋ ଉତ୍ତର କାହିଁକି ଯଥାର୍ଥ ହେବନି।'' ଭବେଶ ଦା' ଏଥର ନିଜଆଡୁ ବୟାନଟି ଦେଲେ। ସେ ଖୁବ୍ ମାନ୍ୟରେ ପ୍ରଫେସର୍ ବୋଲି ସମ୍ବୋଧନ କରି କହୁଥାନ୍ତି। ''ତମେ ବୋଧହୁଏ ଜାଣନି ଯେ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ବିସଙ୍ଗତି ସଂପର୍କରେ ତଦନ୍ତ କରି ଗୋଟିଏ ରିପୋର୍ଟ ପ୍ରଦାନ କରିବାକୁ ଓଡ଼ିଶା ସରକାର ମୋତେ ବିଗତ ଦିନରେ ଦାୟିତ୍ୱ ଦେଇଥିଲେ ଏବଂ ସେ ଅନୁଷ୍ଠାନର ଅଭାବ, ଅସୁବିଧା, ରୁଚିହୀନତା ଏବଂ ଶିକ୍ଷାବୈକଲ୍ୟକୁ କେନ୍ଦ୍ରକରି ମୁଁ ସତୁରି ଅଶିଏ ପୃଷ୍ଠାର ଗୋଟିଏ ରିପୋର୍ଟ୍ ସରକାରଙ୍କୁ ଦେଇଥିଲି। ମୁଁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ପ୍ରତ୍ୟେକ ଜିନିଷ ଓ ଘଟଣାକୁ ତନ୍ନତନ୍ନ

Digitized by srujanika@gmail.com

ତନଖି ତାର ଯଥାର୍ଥତା ବିଷୟରେ ମୋର ସୁଚିନ୍ତିତ ଓ ସ୍ପଷ୍ଟ ମତ ଉଲ୍ଲେଖ କରିଥିଲି । ଅଧ୍ୟକ୍ଷଙ୍କ ଅଫିସରୁମ୍‌ରେ ଟଙ୍ଗା ହୋଇଥିବା ପରଦା, ଟେବୁଲ କ୍ଲଥ୍ ମଧ୍ୟ ମୋର ଅନୁଶୀଳନରୁ ବାଦ୍ ପଡ଼ିନଥିଲା ।''

ପ୍ରଫେସର୍ ସାନ୍ୟାଲଙ୍କୁ ଖୁବ୍ ବିନମ୍ର ଭାବେ ମୁଁ କହିଲି, ''ସାର୍ ମୁଁ ଆପଣଙ୍କ ରିପୋର୍ଟ୍ ଦେଖିଛି ଓ ପଢ଼ିଛି । ତଥାପି ଆତ୍ମପ୍ରତ୍ୟୟର ସହିତ କହୁଛି ମୁଁ ସେହି ଅନୁଷ୍ଠାନର ଏକଦା ଛାତ୍ର ଥିଲି ।''

ଶିବିର ଗତ ହେବାର ପ୍ରାୟ ଦୁଇ ଦଶନ୍ଧି ପରେ ମୋତେ ଲାଗୁଛି, ଏତେଗୁଡ଼ିଏ ବ୍ୟବସ୍ଥା ମୁଁ କିଭଳି ସୁଚାରୁ ରୂପେ ତୁଲାଇ ପାରୁଥିଲି । ମୋ କନ୍ୟା ସୁନନ୍ଦାର ସ୍ୱାସ୍ଥ୍ୟ ବରାବର ଅସୁସ୍ଥ ରହୁଥିଲା । ମୁଁ ଓ ମୋ ପତ୍ନୀ ଦିନରାତି ଡ଼ାକ୍ତରଙ୍କ ପାଖକୁ ଦୌଡ଼ି ଦୌଡ଼ି ନୟାନ୍ତ ହୋଇଯାଉଥିଲୁ । କଲେଜରେ ଏତେବଡ଼ ଶିବିରକୁ ପରିଚାଳନା କରିବା ପାଇଁ ଆଖିଦୃଶିଆ ସହକର୍ମୀ ନଥିଲେ । ବିଶେଷ କିଛି ଅଘଟଣ ନ ଘଟି ଏହି କାର୍ଯ୍ୟକ୍ରମ ତୁଲେଇ ହୋଇଯିବାରେ ଭଗବାନଙ୍କର ଅପାର କରୁଣା ରହିଥିଲା ।

Digitized by srujanika@gmail.com

# ୧୬. କେ.ସିକ୍ସ୍‌ର ରାମଦା'

ଆଗରୁ ଆମ ସାମାଜିକ ପରମ୍ପରାରେ ପ୍ରଚଳିତ ଥିଲା ଯେ ଝିଅଟିଏ ପୁଅଟିଏକୁ ବାହାହେଇ ସ୍ତ୍ରୀ-ସ୍ୱାମୀ ହେଇଗଲାପରେ ସ୍ତ୍ରୀ ନିଜ ସାଙ୍ଗିଆ ଛାଡ଼ି ସ୍ୱାମୀର ସାଙ୍ଗିଆ ଗ୍ରହଣ କରୁଥିଲା । ପାଣିଗ୍ରାହୀ ହେଇଥିଲେ ସ୍ୱାମୀଙ୍କର ମିଶ୍ର ସାଙ୍ଗିଆକୁ ନିଜ ନାଁ ସାଙ୍ଗରେ ଯୋଡି ଦେଇ ମିଶ୍ର ହେଇଯାଉଥିଲା । ଏବେ ୟୁରୋପରେ ଗୋଟିଏ ନୂଆ ପରମ୍ପରା ଆରମ୍ଭ ହେଇଗଲାଣି । ଦେଖାଯାଉଛି ଆଜିକାଲି ସ୍ୱାମୀମାନେ ସ୍ତ୍ରୀମାନଙ୍କ ସାଙ୍ଗିଆ ନିଜେ ଧାରଣ କଲେଣି । ସେଇ ମର୍ମରେ ରାମହରି ଜେନା କଲିକତାରେ ବାହାହେଇଗଲା ପରେ ଆଉ ଭାଇ ନ ହେଇ ଦାଦା ବା ଖାଲି ଦା' ହେଇଗଲେ ।

ରାମ ଦା' କଞ୍ଚନାଛକର କେ.ସିକ୍ସ୍. ନମ୍ବର ଘରେ ରହୁଥିଲେ ବୋଲି ଆମେ କହୁଛୁ କେ.ସିକ୍ସ୍‌ର ରାମ ଦା' । ରାମହରିଙ୍କ ନିଜ ଗାଁ ଆସିକା ପାଖ ଘଟକୁରୀ । ସେ ଆସିକା ହରିହର ହାଇସ୍କୁଲର ପ୍ରସିଦ୍ଧ ଚିତ୍ରଶିକ୍ଷକ ହରିଶରଣ ମହାପାତ୍ରଙ୍କ ଛାତ୍ର ଥିବା ବେଳଠୁ ମୁଁ ତାଙ୍କୁ ଜାଣେ । ମୁଁ ବିଭିନ୍ନ ପ୍ରୋଜେକ୍ଟ କାମରେ ଗଂଜାମ ଗସ୍ତରେ ଗଲେ, ଚନ୍ଦ୍ରଶେଖର ରାଓଙ୍କ ବସାଘରେ ରହେ । ସେଇଠି ରାମହରିଙ୍କ ସାଙ୍ଗରେ ବରାବର ଦେଖାହୁଏ । ଚନ୍ଦ୍ରଶେଖର ଟେକ୍‌ନିକାଲ୍ ହାଇସ୍କୁଲରେ ଚିତ୍ରଶିକ୍ଷକ ଥିଲେ ଏବଂ ସ୍କୁଲଟି ଘଟକୁରୀ ଓ ଆସିକାକୁ ସଂଯୋଗ କରୁଥିବା ରାସ୍ତାରେ ଥିବାରୁ ଯାଉଣୁ ଆସୁଣୁ ରାମହରି ଚନ୍ଦ୍ରଶେଖରଙ୍କ ଚିତ୍ରରେ ଆକୃଷ୍ଟ ହେଇ ତାଙ୍କଠେ ପହଞ୍ଚୁଥିଲେ । ଚନ୍ଦ୍ରଶେଖର ସ୍କୁଲ ଛାଡିଲା ପରେ ରାମହରି ସେହି ଟେକ୍‌ନିକାଲ୍ ହାଇସ୍କୁଲରେ ଚିତ୍ରଶିକ୍ଷକ ହେଲେ । ଟେକ୍‌ନିକାଲ୍ ସ୍କୁଲ ଛାଡି ଭୁବନେଶ୍ୱର ଠାରେ କେନ୍ଦ୍ର ଲଳିତ କଳା ଏକାଡେମୀଦ୍ୱାରା ପ୍ରତିଷ୍ଠିତ ଆଞ୍ଚଳିକ କେନ୍ଦ୍ରରେ ଗ୍ରାଫିକ୍ କଳା ବିଭାଗର ମୁଖ୍ୟ ହେଇ ଯୋଗ ଦେଲା ପରେ ମୋ ସାଙ୍ଗରେ ଆଉ ବିଭୂତି କାନୁନ୍‌ଗୋ କଲେଜ ସାଙ୍ଗରେ ରାମହରିଙ୍କ ଆତ୍ମୀୟତା ଘନେଇ ଗଲା । ଭୁବନେଶ୍ୱରରେ ସେ ଭଡ଼ା ଘର ଯୋଗାଡ଼ କରିବା ଆଗରୁ ପ୍ରଥମେ ପ୍ରଥମେ ଆମ କଲେଜର ଅତିଥି ଭବନରେ ଆତିଥ୍ୟ ଗ୍ରହଣ କରିଥିଲେ । ସେହିଦିନଠାରୁ କଲେଜର ଛାତ୍ରଛାତ୍ରୀ ଧରି ନେଲେ ଯେ ସେ କଲେଜର ଅନ୍ୟତମ ଅଧ୍ୟାପକ ।

ସଂଧ୍ୟା ହେଇଗଲେ କଲେଜରେ ପିଲା ସାମାନ୍ୟ ପତଳା ହେଇଯାଆନ୍ତି । ପୋର୍ଟିକୋର ଛାତ ଉପରେ ଚଉକି ପଡ଼େ । ଆଉ ସେଇଠି ଆସରଟିଏ ଜମେ । ଏହି

Digitized by srujanika@gmail.com

ଆସରରେ ନିୟମିତ ଗ୍ରାହକ ହେଲେ ଚନ୍ଦ୍ରଶେଖର ରାଓ, ଡି.ଏନ୍.ରାଓ, ଶିଳ୍ପୀ ସୁଧାଂଶୁ ଶେଖର ଶତପଥି । ବି.ଜେ.ବି. କଲେଜର ଅଧ୍ୟାପକ ପ୍ରଫୁଲ୍ଲ କୁମାର ତ୍ରିପାଠୀ, 'ଏକାଏକା' କବିତା ପତ୍ରିକାର ସଂପାଦକ ହିମାଂଶୁ ପଟ୍ଟନାୟକ ଓ ରାମହରି । ଦଳେ ପିଲା କଲେଜରେ ଅହର୍ନିଶ କାମ କରୁଥାନ୍ତି ବା କଲେଜ ଘରେ ଓ କଲେଜ ପାଖ କଞ୍ଚନା ଅଞ୍ଚଳରେ ଭଡ଼ାଘର ନେଇଥିବାରୁ ସନ୍ଧ୍ୟା ହେଲେ ବାଘ ପାଣିକୁ ଗଡ଼ିଲା ପରି କଲେଜରେ ପହଞ୍ଚନ୍ତି ଏବଂ ଅବଲୀଳାକ୍ରମେ ପୋର୍ଟିକୋ ଆସରରେ ସାମିଲ୍ ହେଇଯାଆନ୍ତି । ପୋର୍ଟିକୋ ଉପରେ ଗୋଟିଏ ଛୋଟକାଟର ବଗିଚା ଥାଏ । କଲେଜରେ ମାଳି ବୋଲି ତ କିଏ ନଥାଏ ଏଣୁ ଯିଏ ଯେତେବେଳେ ସୁବିଧା ପାଏ ପାଣି ବାଲ୍‌ତି ଅଧାବାଲ୍‌ତି ଢ଼ାଳିଦିଏ । କିନ୍ତୁ ହେପାଜତ ଅଭାବରୁ କୁଣ୍ଡର ଗଛଗୁଡ଼ିକ ହତାଶିଆ ଦିଶୁଥାନ୍ତି । ରାମହରି ନିଜକୁ ସମ୍ଭାଳି ନପାରି ଗଛଙ୍କ ପଛରେ ଲାଗିପଡ଼ନ୍ତି । ଡି.ଏନ୍.ରାଓ କଞ୍ଚନାଛକରୁ ବରା, ପିଆଜି ଓ ଚାହାର ବନ୍ଦୋବସ୍ତ କରନ୍ତି । ତା'ପରେ ଦୁନିଆଯାକର କଳାଚର୍ଚ୍ଚା ଆରମ୍ଭ ହୁଏ । ମୁଁ ଟିକିଏ ଅଧିକ ଗପୁଡ଼ି ଲୋକ । ଏଣୁ ପାଠ ଆଉ ଶାଠ ଏବଂ ବିଭିନ୍ନ ପରିଯୋଜନା ମାନ ବେଳେବେଳେ ଏଇଠି ରୂପ ନିଏ । ମାଷ୍ଟ୍ରଙ୍କର ବଳ ହେଲେ ଶିଷ୍ୟଦଳ । ସେଥିରୁ ବିଶ୍ୱସ୍ତ ଦୁଇଚାରି ମିଳିଗଲେ ଆସର ଜମିବାରେ ଅସୁବିଧା ରହେ ନାହିଁ ।

ଦଳେ ପିଲା ଆସରର ନିୟମିତ ଗରାଖ । ସେମାନଙ୍କ ମଧ୍ୟରେ ଥାଆନ୍ତି ଅଞ୍ଜନ କୁମାର ସାହୁ, ସୁବ୍ରତ କୁମାର ମଲ୍ଲିକ, ଦୁଇ ବିହାରୀ ଭାଇ- ସଜଲ ଓ କାଜଲ ପାତ୍ର, ବାରିପଦାର ଦିଲ୍ଲୀପ ଓ ଅଶ୍ୱୀନ ମହାନ୍ତ, କଲିକତାର ଜୟଦେବ ଚୌଧୁରୀ, ସଂଗ୍ରାମ କର, ବିନୋଦ କର, ଅମର ଜେନା, କମଳାକ୍ଷ କାନୁନ୍‌ଗୋ ଓ ଅମରେଶ ବାଂଶୁରୀ । ଆସର ସଂଧ୍ୟା ଆଠ, ନଅ ଯାଏଁ ଚାଲେ । ଆର୍ଟ୍ କଲେଜ ପିଲାଙ୍କ ପାଠ ପଢ଼ା ଉପରେ ସେତେ ଗୁରୁତ୍ୱ ନଥାଏ । ଏଣୁ ସେମାନେ ନିଧଡ଼କରେ ଏହି ଆସରରେ ନିଜକୁ ମଜେଇ ରଖୁଥାନ୍ତି । ରାମହରି ଯେତେବେଳେ କଲେଜର କେ.ଆଠ ଘର ଛାଡି କଲେଜ ପାଖ ରମ୍ଭାଦେବୀଙ୍କ କେ. ସିକ୍‌ସ୍‌ରେ ପହଞ୍ଚିଲେ ରାଜନେତା ଦଳ ବଦଳ ବେଳେ ଯିମିତି ଘଟିଥାଏ ସିମିତି ହେଲା । ଆମ କଲେଜର ଅନେକ ପିଲା ତାଙ୍କ ପ୍ରିୟ ରାମ ଦା'ଙ୍କ ସାଙ୍ଗରେ କେ. ସିକ୍‌ସ୍‌ର ହତା ଭିତରେ ଥିବା ଆଜ୍‌ବେଷ୍ଟସ୍ ଘରେ ଭଡ଼ା ନେଇ ରହିଲେ । ଏବେ ମନେହେଲା କେ.ସିକ୍‌ସ୍, କେ. ଏଇଟ୍‌ରେ ଥିବା କଲେଜର ଅଧ୍ୟାପକ କ୍ୱାର୍ଟର୍ ଓ ହଷ୍ଟେଲ୍ ।

କେ. ସିକ୍‌ସ୍‌ରେ ଗୃହକର୍ତ୍ତ୍ରୀ ହେଲେ ସ୍ୱାଧୀନତା ସଂଗ୍ରାମୀ ରମ୍ଭାଦେବୀ, ତାଙ୍କ ପାଳିତା ଭଉଣୀ ଆଉ ପୁରୁଷ ମୁଖ୍ୟ ହେଲେ ରାମ ଦା' । ପିଲାଙ୍କ ଅଭ୍ୟାସ ସାଙ୍ଗରେ ରାମ ଦା'ଙ୍କ ଚାହା ପାଣି, ସିଗାରେଟ୍ ଆଉ ବେଳେ ବେଳେ ମୁଡ୍ କରିବା ପାଇଁ ସାମାନ୍ୟ ବିଦେଶୀ ପାନୀୟ ମଧ୍ୟ ଚଳୁଥିଲା । ପିଲାମାନେ ଧରି ନେଉଥିଲେ ମୁଁ ବିଦେଶୀ ପାନୀୟ ସଂପର୍କରେ

Digitized by srujanika@gmail.com

ପୂରା ଅନଭିଜ୍ଞ, ପୁଣି ଅଧ୍ୟକ୍ଷ ବୋଲି ମୋ ଠାରେ ସେମାନଙ୍କ ସଂଭ୍ରମ ଥିଲା । ମୋର ବଦ୍ଧମୂଳ ଧାରଣା ଥିଲା ଆର୍ଟ୍ କଲେଜମାନଙ୍କରେ ବିଦେଶୀ ପାନୀୟର ଚଳପ୍ରଚଳ ବେଶି । ଏହା ଆଧୁନିକ କଳା ସହିତ ପାଶ୍ଚାତ୍ୟ ଦେଶରୁ 'ଇଜ୍‌ମ୍' ଭଳି ଆମ କଳାଶିକ୍ଷା ପରିସର ଭିତରକୁ ପଶି ଆସିଥିଲା ଓ ଶେଷରେ ଆମ ପାଖରେ ସ୍ଥାୟୀ ବସବାସ କରି ରହିଗଲା । ଶାନ୍ତି ନିକେତନର ଅଧ୍ୟାପକ କିଙ୍କର ଦା' (ବିଶିଷ୍ଟ ଭାସ୍କର ପ୍ରଫେସର୍ ରାମକିଙ୍କର ବେଜ୍) ବିଦେଶୀରୁ ଖସି ଆସି ଶେଷରେ ଦେଶୀରେ ଅଭ୍ୟସ୍ତ ହେଇଯାଇଥିଲେ । ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଓ ଜଣେ ଅନନ୍ୟ ମଣିଷ ଭାବେ କିଙ୍କର ଦା' ସମସ୍ତଙ୍କ ପ୍ରିୟ ଥିଲେ, ଶ୍ରଦ୍ଧାଭାଜନ ମଧ୍ୟ ଥିଲେ । ଏଣୁ ଦେଶୀ, ବିଦେଶୀ ପ୍ରସଙ୍ଗ ତାଙ୍କ ପାଖରେ ଗୁରୁତ୍ୱ ହରେଇ ଦେଇଥିଲା । ମୁଁ ରାମଦା'ଙ୍କୁ କିଙ୍କର ଦା'ଙ୍କ ସହିତ ତୁଳନା କରିବାର ଧୃଷ୍ଟତା ରଖୁନି । କିନ୍ତୁ 'ବାଘ ନ ଦେଖିଲେ ବିଲେଇ ଦେଖ' ନ୍ୟାୟରେ ଘଟଣାଟିକୁ ଅତି ସହଜ ଭାବରେ ଗ୍ରହଣ କରିନେବାକୁ ପାଠକଙ୍କୁ ଅନୁରୋଧ କରୁଛି । ଉଭୟଙ୍କ ସମ୍ବୋଧନରେ କେବଳ ଦା'ର ସାମଞ୍ଜସ୍ୟ ଆମ ସ୍ମୃତିଗ୍ରନ୍ଥରେ ପରସ୍ପରଙ୍କୁ ଏକାଠି ସ୍ମରଣ କରିବାକୁ ପ୍ରବୋଦନା ଦେଇଛି । ଶିକ୍ଷା ପରମ୍ପରା କ୍ରମରେ ଅଧ୍ୟାପକ ଅନନ୍ତ ପଣ୍ଡା ହେଉଛନ୍ତି କିଙ୍କର ଦା'ଙ୍କ ଛାତ୍ର, ପୁଣି ସେ ରାମଦା'ଙ୍କ ଅଜା ବା ଜେଜେ; ଶିକ୍ଷକଙ୍କ ଶିକ୍ଷକ, ସେହି ମର୍ମରେ କିଙ୍କରଦା' ରାମ ଦା'ଙ୍କ ଗୋସେଇଁ ଜେଜେ ହେବେ ।

କେ. ସିକ୍‌ସ୍‌ରେ ବି.କେ. କଲେଜର ପିଲାଙ୍କ ସଂଖ୍ୟା ଧୀରେ ଧୀରେ ବଢ଼ିଲା । ପ୍ରତୁଲ ଦାଶ, ତପନ ଦାଶ ଆସି ସେଠି ଡେରା ପକେଇଲେ । ଆଗରୁ ସଜଳ ତ ରହୁଥିଲା, ତା ଭାଇ କାଜଲ ଆସି ସେଠି ପହଞ୍ଚିଲା । ରଂଜନ ନାୟକ ପୁଣି ସେଠିକି ଗଡ଼ିଲା । ବିହାରରୁ ମଦନ ଗୋପାଳ ଆସି ବିହାରୀ ଦଳରେ ଯୋଗଦେଲା । ଅଦ୍ୱୈତ ପ୍ରସାଦ ଗଡ଼ନାୟକ ସେଠି ରହୁନଥିଲେ ମଧ୍ୟ ସବୁବେଳେ ଆସି ଆଡ୍ଡା ଜମାଏ । ବସନ୍ତ ଆସିଲେ ଗଛରେ ପତ୍ର କଅଁଳିଲା ଭଳି ବେଳକାଳ ଉଣ୍ଡି ବାନ୍ଧବୀମାନେ ପହଞ୍ଚିଲେ । ବବିତା ମିଶ୍ର, ଅପର୍ଣ୍ଣା ରାୟ, ବିଦ୍ୟୁତଲତା ପାଟଶାଣୀ, ସେମାନଙ୍କ ସାଙ୍ଗମାନଙ୍କୁ ଭେଟିବା ପାଇଁ କେ. ସିକ୍‌ସ୍‌ରେ ସକାଳୁ ସନ୍ଧ୍ୟା ପହଞ୍ଚି ଯାଉଥିଲେ । ଜୟନ୍ତ ପଣ୍ଡା ଓ ରଶ୍ମୀ ପଣ୍ଡା ଏ ଦଳଙ୍କ ବନ୍ଧୁ ହେଲେ ବି ସେଠିକି ଜୁଟୁ ନଥିଲେ । ସେଇ ଘର ପଡ଼ିଶା ଆଉ ଗୋଟିଏ ଘରର ପ୍ରଥମ ମହଲା ଉପରେ ସେମାନଙ୍କ ଆଡ୍ଡା ଥିଲା । ରାମ ଦା'ଙ୍କ ଖୁଆଡ଼ରେ ଗୋପନ ଅଭିସାରର ମାତ୍ରା ବଢ଼ିଲା । ମୁଁ ସବୁକଥା ଜାଣୁଥିଲି । ଅବଶ୍ୟ ଏଥିରେ ଜାଣିବା ପାଇଁ ବିଶେଷ କିଛି ଖୋରାକ ନଥିଲା । ଯିମିତି ସବୁ କଲେଜ ମାନଙ୍କରେ, ହଷ୍ଟେଲ ମାନଙ୍କରେ ଘଟେ । ଏହି ବୟସରେ ଏଭଳି ହେବା ହିଁ ସ୍ୱାଭାବିକ । ରାମଦା'ଙ୍କ କେ.ସିକ୍‌ସ୍ କେ. ଏଇଟ୍ କଲେଜର ଗୋଟିଏ ବିଭାଗ ଭଳି କାମ କଲା । ସେଠି ତୈଳରଙ୍ଗର ଚିତ୍ର, ଜଳରଙ୍ଗର ଚିତ୍ର, ପଥର

Digitized by srujanika@gmail.com

ଖୋଦେଇ, ଟେରାକୋଟା ଓ ଶେଷରେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ କାମ ମଧ୍ୟ ଚାଲିଲା । ଏହାକୁ ବିଭାଗ ନ କହି ବରଂ ବି.କେ. କଲେଜର ମିନିଏଚର୍ ରୂପ ବା ଏକ୍ସଟେନ୍‌ସନ୍ କହିଲେ ଯଥାର୍ଥ ହେବ । ରାମଦା’ ପିଲାମାନଙ୍କୁ ବତଉ ଥିଲେ, ମତଉ ଥିଲେ । ସେଠି ବୟସର ତାରତମ୍ୟ କମ୍ ଥିଲା । କଲେଜରେ କାମଟିଏ କରିବା ଆଗରୁ ପିଲାମାନେ ଏଠି ପ୍ରଥମେ ଅଭ୍ୟାସ କରିନେଉଥିଲେ, କ’ଣ କରି ତାଙ୍କ ସାଙ୍ଗମାନଙ୍କୁ ଚମକେଇ ଦେବେ । ରାମହରି ମଧ୍ୟ ଅଧ୍ୟାପକ ଭୂମିକାରେ ରହି କ’ଣ, କିଭଳି ପିଲାଙ୍କୁ ଶିଖେଇଲେ ସେମାନେ କଲେଜରେ ଯାହା ନୂଆକାମ କରିବେ ସେଥିରେ ତାଙ୍କ ପତିଆରା ରହିବ ତାକୁ ନେଇ ମାତୁଥିଲେ ମାନସିକ ସ୍ତରରେ ଏହାଥିଲା କଲେଜ ଅଧ୍ୟାପକଙ୍କ ସହିତ ରାମହରିଙ୍କ ଏକ ଅଘୋଷିତ ପ୍ରତିଯୋଗିତା ‘‘ଅଧ୍ୟାପକ କଲନି ପରା ଏବେ ଦେଖ ମୋ କରାମତି ।’’

ଯିମିତି ଅଧକ୍ଷମାନେ ବେଳେବେଳେ କ୍ଲାସ ପରିଦର୍ଶନକୁ ଯାଆନ୍ତି ମୁଁ ମଧ୍ୟ ସମୟ ପାଇଲେ ପିଲାଙ୍କ କାମ ଦେଖିବା ପାଇଁ କେ.ସିକ୍‌ସ୍‌ରେ ପହଞ୍ଚି ଯାଉଥିଲି । ପିଲାମାନେ ନେଚର୍ ଷ୍ଟଡ଼ି କଲାବେଳେ ମୁଁ କାମ ବାଗେଇ ଦେବା ପାଇଁ ଦଣ୍ଡେ ଘଡ଼ିଏ ଛବି ପାଖରେ ବସି ପଡୁଥିଲି । ମୋର ମନେଅଛି ସଜଳ ପାତ୍ରର କାନ୍‌ଭାସ୍ ଉପରେ ଇମ୍‌ପାଷ୍ଟୋ ଟେକ୍‌ନିକ୍‌ରେ ହଗ୍‌ହେୟାର୍ ବ୍ରସ୍ ସାହାଯ୍ୟରେ ଗୋଟିଏ ଭୂଦୃଶ୍ୟ ଚିତ୍ରଣ କିମିତି କରି ହେବ ମୁଁ ତାକୁ ଦେଖେଇ ଦେଇଥିଲି । ସେତେବେଳକୁ ଆମ କଲେଜରେ ସଫ୍‌ଟ୍ ଟେକ୍‌ନିକ୍ ଓ ଇମ୍‌ପାଷ୍ଟୋ ଟେକ୍‌ନିକ୍ ମଧ୍ୟରେ ଶୈଳୀଗତ ବିବାଦ ଲାଗି ରହିଥିଲା । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଫେରି ଆମ କଲେଜରେ ଅଧ୍ୟାପକ ହେଇଥିବା ବ୍ୟୋମକେଶ ମହାନ୍ତିଙ୍କ ସଫ୍‌ଟ୍‌କୁ ଆମ ଖଲ୍ଲିକୋଟିଆଙ୍କ ଇମ୍‌ପାଷ୍ଟୋ । ଇମ୍‌ପାଷ୍ଟୋ ହେଲା କାନଭ୍ୟାସ୍ ଉପରେ ମୋଟା ମୋଟା ରଙ୍ଗ ପ୍ରୟୋଗ କରି ଛାଇ ଆଲୁଅର ଭ୍ରମ ସୃଷ୍ଟି କରିବା । ସଫ୍‌ଟ ହେଲା ପତଳା ପତଳା ରଙ୍ଗ ଲଗେଇ ଚିକ୍କିଣିଆ ଭାବ ଆଣିବା । କଲେଜ ଛାଡିଲା ପରେ ସଜଳକୁ ଥରେ ମୁଁ ସଂଶୋଧନ କରି ଦେଇଥିବା ଭୂଦୃଶ୍ୟ କଥା ପଚାରିଲି । ବ୍ୟୋମକେଶ ସାର୍ ଚିତ୍ରଟିକୁ ନେଇ ଘରେ ରଖିଛନ୍ତି ବୋଲି ସଜଳ କହିଥିଲା । ଯିଏ ଯାହା ନୁହେଁ ତାହା ହେବା ପାଇଁ ସବୁବେଳେ ସମସ୍ତଙ୍କ ବ୍ୟଗ୍ରତା ଲାଗିରହିଥାଏ ।

ମୁଁ ମନେ ମନେ ଭାବୁଥାଏ ଜୀବନରେ କେବେ ଥରେ ସୁଯୋଗ ପାଇଲେ ମୋର ଜଣେ ଛାତ୍ରକୁ ଜାତୀୟ ପୁରସ୍କାର ଦିଆଇଦେବି । ୧୯୮୮ ମସିହାରେ ଗୋଟିଏ ସୁଯୋଗ ଆସିଲା । ମୋତେ କେନ୍ଦ୍ର ଲଳିତ କଳା ଏକାଡେମୀ ଜାତୀୟ ପ୍ରଦର୍ଶନୀର ବିଚାରକ ନିଯୁକ୍ତି କଲେ । ମୁଁ ଆଉ ରାମ ଦା’ ମିଶି କେ. ସିକ୍‌ସ୍‌ର ପିଲାମାନଙ୍କୁ ଆଖିଦୃଶିଆ କାମ କରିବା ପାଇଁ ପ୍ରଚୋଦିତ କଲୁ । ଆଶ୍ଚର୍ଯ୍ୟର କଥା କିଏ ଜଣେ ହେଲେ ଆମ କଥାକୁ ଗୁରୁତ୍ୱର ସହିତ ଗ୍ରହଣ କରି କାମରେ ଆଗେଇଲେନି । ଅଂକନ ଶେଷରେ ବ୍ରୋଞ୍ଜ୍‌ର

Digitized by srujanika@gmail.com

ଗୋଟିଏ ଛୋଟିଆ ଭାସ୍କର୍ଯ୍ୟଟିଏ ଗଢ଼ିଲା । ଭାସ୍କର୍ଯ୍ୟଟି ସେତେ ମନକୁ ଗଲାନି । ରାମ ଦା' ସେ ବର୍ଷ ଲଳିତ କଳା ଏକାଡେମୀର ଜାତୀୟ ପ୍ରଦର୍ଶନୀକୁ ଗୋଟିଏ ଚମତ୍କାର ତୈଳଚିତ୍ର ଦେଇଥିଲେ । ସାମ୍ପ୍ରତିକ କଥାବସ୍ତୁ, ଆର୍ମେନିଆର ଭୂମିକମ୍ପ ଉପରେ ଚିତ୍ରଟି ପର୍ଯ୍ୟବସିତ ଥିଲା । ଏବଂ ସେହି ଚିତ୍ରଟି ଜାତୀୟ ପୁରସ୍କାର ପାଇଲା ଏବଂ ତାହା କେବଳ ଶିଳ୍ପୀଙ୍କ ପାଇଁ ନୁହେଁ, ମୂଳତଃ କେ. ସିକ୍ସ ଓ ସମଗ୍ର ଓଡ଼ିଶା ପାଇଁ ଗୌରବ ଓ ଚର୍ଚ୍ଚାର ବିଷୟ ହୋଇଗଲା ।

ଆଉ ଥରେ ଆମ କଲେଜ ଭାସ୍କର୍ଯ୍ୟ ବିଭାଗର ବାର୍ଷିକ ପରୀକ୍ଷାରେ ପ୍ରଥମ ବ୍ୟାଚ୍‌ର ଛାତ୍ର ଅଦ୍ୱୈତ ଗଡ଼ନାୟକ ଇନ୍‌ଷ୍ଟଲେସନ୍‌ଟିଏ କରି ଆମ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ପ୍ରଶ୍ନଥିଲା କ୍ରିଏଟିଭ୍ ସ୍କଲପ୍‌ଚର୍ ବା ସୃଜନଶୀଳ ଭାସ୍କର୍ଯ୍ୟ । ପ୍ରଶ୍ନର ଉତ୍ତରରେ ନିଜକୁ ପ୍ରକାଶ କରିବାର ସ୍ୱାଧୀନତା ଭରି ରହିଥିଲା । ଏହି ଭାସ୍କର୍ଯ୍ୟ ସଂପର୍କରେ ରାମଦା'ଙ୍କ କେ. ସିକ୍‌ସ୍‌ରେ ଆଗରୁ ଆଲୋଚନା ହୋଇ ସାରିଥିଲା । ଅନୁମାନ ହୁଏ ଏହାର ପରିବେଷଣରେ ରାମ ଦା'ଙ୍କ ପରାମର୍ଶ ମଧ୍ୟ ଥିଲା । କଲେଜ ଅଗଣାରେ ଦୁର୍ଘଟଣାଗ୍ରସ୍ତ ପୁରୁଣା ସାଇକେଲଟି ମୋଡ଼ି ମାଡ଼ି ହୋଇ ପଡ଼ିଥିଲା । ସେଥିରୁ ଗୋଟିଏ ଚକ ହୁଗୁଳି ଯାଇ ଅଲଗା ହୋଇପଡ଼ିଥିଲା । ସିଟ୍‌ଟି ଦୁଇମିଟର ଦୂରକୁ ଛିଟିକି ପଡ଼ିଥିଲା । ସାଇକେଲ୍‌ଟି ଏମିତିରେ ପୁରୁଣା, ତାର ଅଦ୍ୱାନ ଅବସ୍ଥା ଦେଖିଲେ ଘଟଣାଟି ସତ ସତ ମନେ ହେଉଥିଲା । ପାଳ ଓ ନଡ଼ା ଭିଡ଼ି ଗୋଟିଏ ସାଇକେଲ ଆରୋହୀ ବନେଇ ତାକୁ ମୁହଁମାଡ଼ି ରାସ୍ତା ଉପରେ ଅଦ୍ୱୈତ ପକେଇ ଦେଇଥିଲା । ଭାସ୍କର୍ଯ୍ୟର ଶୀର୍ଷକ ଥିଲା 'ଦୁର୍ଘଟଣା' । ଥୀମ୍‌ଟି ଅତି ସାଧାରଣ ମନେ ହେଉଥିଲେ ମଧ୍ୟ ଭାସ୍କର୍ଯ୍ୟର ନୂତନ ଉପସ୍ଥାପନା ଦୃଷ୍ଟିରୁ ତାହା ଅନନ୍ୟ ଥିଲା । ଅନନ୍ୟ ଭାବକୁ ନେଇ ଯୁକ୍ତି ଥିଲା ଯଦି ମାର୍ଶଲ୍ ଡୁସାଁ ଗୋଟିଏ ୟୁରିନେଲ୍‌କୁ ଭାସ୍କର୍ଯ୍ୟର ଆଖ୍ୟା ଦେଇ ତାକୁ ବିଶ୍ୱବିଖ୍ୟାତ କରିଦେଇ ପାରିଲେ, ଆମ ଅଦ୍ୱୈତ ଏଭଳି ଏକ ଶୈଳ୍ପିକ ରଚନାଟିକୁ ଯେ କାହିଁକି ଭାସ୍କର୍ଯ୍ୟ ପଦବାଚ୍ୟ କରିଦେଇପାରିବ ନାହିଁ ?

ଏବେ କେ.ସିକ୍‌ସ୍ ଅଛି କିନ୍ତୁ ତାହା ଆଉ ରାମଦା'ଙ୍କ ନୁହେଁ । ରାମ ଦା' ପଳାଶପଲ୍ଲୀ ହୋଇ ଏବେ ବୃନ୍ଦାବନ ପ୍ଲାଜାର ଫ୍ଲାଟ୍‌ଘରେ ପହଞ୍ଚିଗଲେଣି । କିନ୍ତୁ ଦୁଃଖର କଥା ଆଡ୍ଡା ଜମେଇବା ପାଇଁ ସେଠି ଆଉ ପରିବେଶ ନାହିଁ ।

Digitized by srujanika@gmail.com

# ୧୭. ବି.କେ.ରେ ବଲ୍‌ବୀର୍

ସମୁଦ୍ର-ମନ୍ଥନରୁ ବହୁ ଅମୂଲ୍ୟ ରତ୍ନ ପାଇଲା ପରି ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିରରୁ ଆମେ ବହୁ ଉପାଦେୟ ସାଧନ ପାଇପାରିଲୁ । ସେସବୁ ମଧ୍ୟରୁ ଯାହା କଳାଶିକ୍ଷାର ମାନକୁ ବହୁଭାବରେ ରସାଣିତ କରିଦେଇପାରିଥିଲା, ତା ହେଲା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ବଲ୍‌ବୀର୍ ସିଂହ କଟ୍‌ଙ୍କ ପଥର ଭାସ୍କର୍ଯ୍ୟ ନିର୍ମାଣର ମାର୍ଗଦର୍ଶନ । କଳିଙ୍ଗ ଦେଶରେ ଜନ୍ମ ହେଇ କାରୁକାର୍ଯ୍ୟ ଖଚିତ ପଥର ନିର୍ମିତ ମନ୍ଦିରମାନଙ୍କ ଗହଣରେ କାଳାତିପାତ କରି ମଧ୍ୟ ଷାଠିଏ ଓ ସତୁରି ଦଶକରେ ଆମ ଖଲ୍ଲିକୋଟ କଳା ବିଦ୍ୟାଳୟରେ କଳାଧ୍ୟାୟୀ ଛାତ୍ରଛାତ୍ରୀମାନେ ପଥରରେ ଭାସ୍କର୍ଯ୍ୟ ଗଢ଼ିବା ନେଇ ସଚେତନ ନଥିଲେ କହିବା ଏକ ସ୍ୱବିରୋଧୀ ମନ୍ତବ୍ୟ ହେଲେ ମଧ୍ୟ ଅସତ୍ୟ ନୁହେଁ । ଯୁକ୍ତି ଛଳରେ କୁହାଯାଇପାରେ ଯେ ଆମ ପୁରୀ ପଥୁରିଆ ସାହିରେ ତ ପଥରରେ ମୂର୍ତ୍ତି ବରାବର ଖୋଦେଇ ହେଉଥିଲା । କିନ୍ତୁ ତାହା ଥିଲା ପାରମ୍ପରିକ କାରୁଶିଳ୍ପ ଏବଂ ସେଥିରେ ସୃଜନର ଓ ଆଧୁନିକତାର ଲେଶ ମାତ୍ର ନଥିଲା ।

ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଆମର ଭାସ୍କର୍ଯ୍ୟ ଅଧ୍ୟାପକ ବିପ୍ରଚରଣ ମହାନ୍ତି କଲିକତା କଳା ବିଦ୍ୟାଳୟର ଛାତ୍ର ହେଇଥିବାରୁ ଔପନିବେଶିକ ଢ଼ାଞ୍ଚାରେ କଳାଶିକ୍ଷା କରିଥିଲେ, ଯେଉଁଥିରେ ପଥର ଅପେକ୍ଷା ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍‌ର ଆଦର ବେଶିଥିଲା । ମାଟିରେ ମୂର୍ତ୍ତିଗଢ଼ି, ସେଥିରୁ ପ୍ଲାଷ୍ଟର୍‌ର ମୂଳ ଛାଞ୍ଚ ବାହାର କରି, ପୁଣି ତହିଁରେ ପ୍ଲାଷ୍ଟର୍ ଢ଼ାଳି ପ୍ଲାଷ୍ଟର୍ କିମ୍ବା ସିମେଣ୍ଟର ମୂର୍ତ୍ତି ନିର୍ମାଣ କରିବା ଆଧୁନିକତାର ଏକ ପରମ୍ପରାରେ ସମାହିତ ହୋଇସାରିଥିଲା । ଏଣୁ କଳାଛାତ୍ରମାନେ ବିପ୍ରଚରଣଙ୍କ ଢ଼ଙ୍ଗରେ ତାଲିମ ପାଇଥିବାରୁ ପଥରକୁ ଭାସ୍କର୍ଯ୍ୟ ନିର୍ମାଣର ଏକ ମୂଳ ଉପାଦାନ ବୋଲି ଗ୍ରହଣ କରିପାରି ନଥିଲେ ।

ଅଧ୍ୟାପକ ଅନନ୍ତ ପଣ୍ଡା ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଦାରୁ ଭାସ୍କର୍ଯ୍ୟ ଗଢୁଥିଲେ ଏବଂ ଅଧ୍ୟାପକ ଅଜିତ କେଶରୀ ରାୟ ମଧ୍ୟ ମେକ୍‌ସିକାନ୍ ଶୈଳୀରେ ପଥରର ଗୋଟିଏ ଛୋଟିଆ ଆଲେଖ୍ୟ ଖୋଦେଇ କରିଥିଲେ, କିନ୍ତୁ ଭାସ୍କର୍ଯ୍ୟ ନିର୍ମାଣରେ ପଥରର ସାରବତ୍ତାକୁ ନେଇ ଯେତିକି ସଚେତନତା ରହିବା କଥା ଛାତ୍ରଛାତ୍ରୀଙ୍କ ମଧ୍ୟରେ ସେତିକି ଦେଖାଯାଇ ନଥିଲା । ସଂଗ୍ରହାଳୟରେ ମୁଁ କ୍ୟୁରେଟର୍ ଭାବେ କାମ କରିଥିବାରୁ ପଥର

Digitized by srujanika@gmail.com

ଭାସ୍କର୍ଯ୍ୟ ସହିତ ପ୍ରତ୍ୟକ୍ଷ ସଂପର୍କରେ ଆସିବାର ସୁଯୋଗ ପାଇଥିଲି । କିନ୍ତୁ ମୁଁ ମୂଳତଃ ଜଣେ ଚିତ୍ରକର ଏଣୁ ପଥର ଖୋଦେଇର ଅଭିଜ୍ଞତା ମୋର ନିଜ ଅର୍ଜିତ ନଥିଲା ।

ବଲ୍‌ବୀର୍ ଅପରପକ୍ଷରେ ଶାନ୍ତିନିକେତନରେ ରାମକିଙ୍କର୍ ବେଜ୍ ଓ ଶଙ୍ଖ ଚୌଧୁରୀଙ୍କ ଛାତ୍ରଥିବାରୁ, ସେ ପ୍ଲାଷ୍ଟର୍‌ର ଚିକ୍କଣ ପରିଧିରୁ ଉତୁରି ପଡ଼ି ଭାସ୍କର୍ଯ୍ୟ ପାଇଁ ଅନ୍ୟାନ୍ୟ ଉପାଦାନ ତଥା ବିଭିନ୍ନ ପଥରର ସନ୍ଧାନରେ ଥିଲେ । ଚିତ୍ରକଳା ଶିବିରରେ ସେ ଗୋଟିଏ ଛୋଟିଆ କନ୍ଦାପଥର ଖୋଦେଇ କରି ପଥରରେ ଭରି ରହିଥିବା ଶୈଳ୍ପିକ ସମ୍ବେଦନା ପ୍ରତି ଆମ ପିଲାଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଶିବିର ଶେଷ ହେଲା ପରେ ସେ ହଠାତ୍ ବନାରସ ଫେରି ନଯାଇ ଆମ କଲେଜରେ କିଛିଦିନ ଅଧିକା ରହିଯାଇ ଦଳେ ଛାତ୍ରଙ୍କୁ ପଥର ଖୋଦେଇର ମାଦକତାରେ ମଜେଇ ଦେଇଥିଲେ । କହିବା ବାହୁଲ୍ୟ ଯେ ବଲ୍‌ବୀର୍ ଜଣେ ଉଚ୍ଚକୋଟୀର ଶିକ୍ଷକ ଥିଲେ ଏବଂ ତାଙ୍କର ବିଦ୍‌ବତ୍ତା ଓ ଛାତ୍ରସୁଲଭ ପରାକାଷ୍ଠାରେ ଆମ ପିଲାମାନେ ଉଦ୍‌ବୁଦ୍ଧ ହେଇସାରିଥିଲେ ।

ପଥର ଅନୁସନ୍ଧାନରେ ଆମ କଲେଜରୁ ତାଙ୍କ ଯାତ୍ରା ଆରମ୍ଭ ହେଇ ପହଞ୍ଚିଥିଲା ତାପଙ୍ଗ ରେଲଷ୍ଟେସନ୍ ପାଖ ଭୋଗପୁର ପଥର ଖଣିରେ । ତାଙ୍କ ସାଙ୍ଗରେ ଥିଲେ ଆମ କଲେଜର ଛାତ୍ର ଅଂଜନ କୁମାର ସାହୁ ଓ ଜୟନ୍ତ କୁମାର ପଣ୍ଡା । ଓଡ଼ିଶାର କନ୍ଦା ପଥର ଖଣି ସାଙ୍ଗରେ ଏହା ଥିଲା ତାଙ୍କ ପ୍ରଥମ ପରିଚିତି । ସେ କିନ୍ତୁ ଏହି ପରିଚିତିକୁ ସଂପର୍କର ଅତୁଟ ବନ୍ଧନରେ ପରିଣତ କରିଦେଇଥିଲେ । ପଥର ଖଣିରେ ତାଙ୍କର ବିଭିନ୍ନ ସମୟର ରହଣି ଭିତରେ ଆମ କଲେଜରୁ ଦଳଦଳ ପିଲା ତାଙ୍କ ପାଖରେ ପହଞ୍ଚି ଯାଉଥିଲେ । ଯେଉଁମାନେ ତାଙ୍କ କାର୍ଯ୍ୟ ପ୍ରଣାଳୀରେ ବାସ୍ତବିକ ଅନୁପ୍ରାଣିତ ହେଇ ପରବର୍ତ୍ତୀ ସମୟରେ ବିଶିଷ୍ଟ ଭାସ୍କର ହେବାର ଗୌରବ ମୁଣ୍ଡେଇ ପାରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଅଦ୍ୱୈତ ପ୍ରସାଦ ଗଡ଼ନାୟକ ଓ ଅଂଜନ କୁମାର ସାହୁ । ଜୟନ୍ତ ପଣ୍ଡା ଓ ସୁବ୍ରତ ମଲ୍ଲିକଙ୍କ ପଥର ଖଣିରେ ଯୋଗଦାନ କେବଳ ଭ୍ରମଣ ଉତ୍ସୁକତା ଭିତରେ ହିଁ ସୀମିତ ହେଇଯାଇଥିଲା । ଜୟନ୍ତ ଗୋଟେ ଦି'ଟା ପଥର ଭାସ୍କର୍ଯ୍ୟ ଗଢ଼ିଛି କିନ୍ତୁ ତାହା ତାଙ୍କ ପ୍ରବୃତ୍ତିକୁ ଅବଧାନିତ କରିପାରିନଥିଲା । ଆଜି ଅଦ୍ୱୈତଙ୍କ ଭାସ୍କର୍ଯ୍ୟ ଗଢ଼ଣର ବିଶାଳତାକୁ ଲକ୍ଷ୍ୟ କଲେ ମନେ ପଡ଼ିଯାଆନ୍ତି ବଲ୍‌ବୀର୍ ସିଂହ କଟ୍ ଓ ଆଖିଆଗରେ ଭାସିଯାଏ ତାପଙ୍ଗର ପଥରଖଣି । ତା'ରି ଭିତରେ ଏହି କଲେଜର ଗୋଟିଏ ଛୋଟିଆ ପ୍ରୟାସ ଏଭଳି ଯେ ତା'ର କାୟା ବିସ୍ତାର କରିପାରିଛି, ତା'କୁ ଗଭୀର ଭାବେ ଅନୁଶୀଳନ ନକଲେ ସହଜରେ ବୁଝିହୁଏନି ।

ବଲ୍‌ବୀର୍ ସର୍‌ଦାର୍ ହେଲେ ବି ଦେଖିବାକୁ ପତଳା ଓ ହାଲୁକା ମନେ ହେଉଥିଲେ, ତଥାପି ତାଙ୍କରି ଗଢ଼ଣ ଭିତରେ ପଥରର ଅନ୍ତରାତ୍ମାଟିଏ ସତେଜ ଥିଲା । ବଲ୍‌ବୀର୍ ପଥରକୁ ଅସମ୍ଭବ ଭାବେ ଭଲ ପାଉଥିଲେ । ଘଣ୍ଟାଘଣ୍ଟା ଧରି ପଥର ଉପରେ କାନପାରି

Digitized by srujanika@gmail.com

ତା' କଥା, ତା'ର ସଂଗୀତ ଶୁଣିବାରେ ସେ ଅପାର ଆନନ୍ଦ ଲାଭ କରୁଥିଲେ । ସେ ଭାରତୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ପରମ୍ପରାର ସମ୍ମୋହନରେ ନିଜକୁ ସଂପୂର୍ଣ୍ଣ ହଜେଇ ଦେଇଥିଲେ । ଏଲୋରାର ପଥର ଖୋଦେଇ, ପ୍ରକାଣ୍ଡ ପାହାଡ଼କୁ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ପରିଣତ କରିଦେଇଥିବାର ପଥର କାରିଗରଙ୍କ ଦାମ୍ଭିକତା ଓ ପ୍ରବଣତା ତାଙ୍କୁ ଉଦ୍‌ବୁଦ୍ଧ କରିଦେଇଥିଲା । ପଥର ପାହାଡ଼ର ଉଦ୍ଦାମ ସଂଗୀତ କାରିଗରଙ୍କ ନିହାଣ ମୂନରେ ଆଳାପିତ ରାଗିଣୀ ଭଳି ଉଚ୍ଛୁଳି ପଡୁଥିଲା । ଭାରତର ପାରମ୍ପରିକ ଭାସ୍କର୍ଯ୍ୟର ଉତ୍ତୁଙ୍ଗ ଗରିମା, ଚିରନ୍ତନତାର ଆହ୍ୱାନ ଓ ସୃଜନ ପ୍ରକାଶର ଅଫୁରନ୍ତ ଆନନ୍ଦ ବଲ୍‌ବୀର୍‌ଙ୍କ ଧେୟ ହେଇଯାଇଥିଲା ।

ବଲ୍‌ବୀର୍‌ଙ୍କ ଅଦମ୍ୟ ସାହସ ଓ ନୂତନତାର ସନ୍ଧାନ ତାଙ୍କୁ ଜଣେ ପ୍ରତିଷ୍ଠିତ ଭାସ୍କରର ସମ୍ମାନ ଆଣିଦେଇଥିଲା । ଅଦ୍ୱୈତ ଗଡ଼ନାୟକଙ୍କ କୀଟ୍ ବିଶ୍ୱବିଦ୍ୟାଳୟରେ ପ୍ରଦର୍ଶିତ ପ୍ରକାଣ୍ଡ ଭାସ୍କର୍ଯ୍ୟ ହେଉ ବା ବମ୍ବେସ୍ଥିତ ନିକୋଲାସ୍ ପିରାମଲ୍ ଔଷଧ କମ୍ପାନୀର ପୁରୁଷୋତ୍ତର ଉଚ୍ଚାର ଭାସ୍କର୍ଯ୍ୟ ହେଉ ସେଥିରେ ବଲ୍‌ବୀର୍‌ଙ୍କ ଗତିଶୀଳ ଛନ୍ଦର ଆଭାସ ମିଳିଯାଏ ।

ବଲ୍‌ବୀର୍ ମାର୍ବଲ ଓ କନ୍ଦାପଥର ସମ୍ମିଶ୍ରଣରେ, ବେଳେବେଳେ ଭୌଁସଲାନା ମାର୍ବଲରେ ନିରୋଳା ଭାବେ, ଆଉ କେତେବେଳେ ଜୈସଲମେର୍ ପଥରରେ, ନହେଲେ ବନାରସ ପାଖ ଚୂନାର ପଥରରେ ପ୍ରକାଣ୍ଡ ପ୍ରକାଣ୍ଡ ଭାସ୍କର୍ଯ୍ୟ ଗଢ଼ିଛନ୍ତି । ତାଙ୍କ ଭାସ୍କର୍ଯ୍ୟ ଗୁଡ଼ିକ ପଥରର ନିଜସ୍ୱ ଆକୃତି ଓ ଚରିତ୍ର ଭିତରୁ ଜନ୍ମ ନେଇଛନ୍ତି । କୁହାଯାଏ ପଥର ଶିଳ୍ପୀକୁ ବାଟ କଢ଼େଇଥାଏ ଆଉ ମୂର୍ତ୍ତିଟିଏ ପଥର ଭିତରେ ଲୁକ୍କାୟିତ ହେଇ ରହିଥାଏ ଓ ନିହାଣର ଚରମ ସ୍ପର୍ଶକୁ ଅପେକ୍ଷା କରିଥାଏ । ପଥରକୁ ଅନ୍ଧାଧୁନିଆ କରି ହାଣି ପକେଇବା କୌଣସି ବାହାଦୁରି ନୁହେଁ । ପଥରର ଭାଷାକୁ ବୁଝି ତା'ର ଅନୁସାରୀ ହେଇ କାମ କରିବା ଜଣେ ସଫଳ ଭାସ୍କରର କରଣି ।

ରାଜନେତାଙ୍କ ମୂର୍ତ୍ତି ଗଢ଼ଣ କେବଳ ଔପନିବେଶିକ ମାନସିକତାକୁ ପ୍ରଚୋଦିତ କରିନି ଓଡ଼ିଶାର ସୃଜନଶୀଳ ପରମ୍ପରାକୁ ବ୍ୟାହତ କରିଛି । ବଲ୍‌ବୀର୍ ସିଂହ କଟ୍ ଭାରତବର୍ଷର ଜଣେ ସ୍ୱନାମଧନ୍ୟ ଭାସ୍କର ଯାହାଙ୍କ ଭାସ୍କର୍ଯ୍ୟରେ ଘନବାଦର ସାଙ୍ଗୀତିକତା ଛତ୍ରେଛତ୍ରେ ଫୁଟି ଉଠୁଥାଏ । ସେ ତାଙ୍କ ଗୁରୁ ରାମକିଙ୍କର୍ ବେଜ୍‌ଙ୍କ ଦୃଢ଼ ସଂକଳ୍ପର ଅନନ୍ୟ ଉଲ୍ଲାସ ତଥା ଭାରତୀୟ ଭାସ୍କର୍ଯ୍ୟ ପରମ୍ପରାର ଅନ୍ତର୍ନିହିତ ଛନ୍ଦକୁ ସଫଳତାର ସହିତ ଆପଣେଇ ପାରିଛନ୍ତି । ଆମ କଲେଜର ଅଂଜନ କୁମାର ସାହୁ ସିନା ବଡ଼ ବଡ଼ ଭାସ୍କର୍ଯ୍ୟ ଗଢ଼ିବାର ସୁଯୋଗ ପାଇପାରିଲାନି, କିନ୍ତୁ ବଲ୍‌ବୀର୍‌ଙ୍କ ଭାବପ୍ରବଣତା ଓ ଆତ୍ମୀୟତାର ଝଲକ ତା' ଠାରେ ଏବେବି ପାଇହୁଏ ଏବଂ ତା'ର ସାଙ୍ଗମାନେ ତାକୁ ବଲ୍‌ବୀର ବୋଲି ଆଖ୍ୟା ଦେଇଥାନ୍ତି । ଅବଶ୍ୟ ଆମ କଲେଜରୁ ପାଠସାରି ଅଂଜନ ଓ ଶୋଭନ ବନାରସରେ

Digitized by srujanika@gmail.com

ବଲ୍‌ବୀରଙ୍କ ଛାତ୍ର ହେବାର ଅପୂର୍ବ ସୁଯୋଗ ଲାଭ କରିଥିଲେ । ଏ ଦୁହେଁ ଆମ କଲେଜରେ ସୃଜନଶୀଳ ଭାସ୍କର୍ଯ୍ୟର ଯେଉଁ ମୂଳଦୁଆ ପକେଇଥିଲେ, ତାହା ଜଣାଅଧିକେ ଆଜି ବି ଅନୁସୃତ ହେଉଛି ।

ବଲ୍‌ବୀରଙ୍କ କଳାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ପ୍ରଗାଢ଼ ବିଶ୍ୱସନୀୟତା ଯାହା ତାଙ୍କୁ କେବଳ ଭାରତ ନୁହେଁ ବିଶ୍ୱର ବହୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଓ ପ୍ରକଳ୍ପ ସହିତ ଛନ୍ଦି ଦେଇଥିଲା । ସେ ପଥର ଖୋଦେଇ କଲାବେଳେ ଜଣେ ସାଧାରଣ ଶ୍ରମିକ ଭଳି ମୁଣ୍ଡ ଝାଳ ତୁଣ୍ଡରେ ମାରି ପଥର ସାଙ୍ଗରେ, ମାଟି ସାଙ୍ଗରେ ଏକାକାର ହେଇଯାଉଥିଲେ । କଳାପିଠିଆ ଶ୍ରମିକମାନେ ତାଙ୍କର ଆଦର୍ଶ ଥିଲେ ଓ ତାରି ଭିତରେ ମାନବିକତାର ଏକ ବିମଳ ଅଧ୍ୟାୟଟି ଲୁକ୍କାୟିତ ହୋଇ ରହିଥିଲା ।

ବଲ୍‌ବୀରଙ୍କ ଭାସ୍କର୍ଯ୍ୟକୁ କେହି କେହି କଳା ସମାଲୋଚକ ସ୍ଥାପତ୍ୟର ନବ ଉନ୍ମେଷ ବୋଲି ଆଖ୍ୟା ଦେଇଥାନ୍ତି । ତା'ର କାରଣ ହେଲା ବଲ୍‌ବୀର୍ ତାଙ୍କ ଭାସ୍କର୍ଯ୍ୟରେ ଯେଉଁ ଆନୁପାତିକତାକୁ ପୁନର୍ଜୀବିତ କରିଦେଇଥାନ୍ତି ତାହା କେବଳ ପଥରର ନୁହେଁ, ପାହାଡ଼ର । ସେଥିରେ ପୁଣି ବନ୍ଧୁଳତାର ଓ ବନ୍ଧୁଧାର ସଂକେତ । ଭାସ୍କର୍ଯ୍ୟ ଯେଉଁଠି ଅବସ୍ଥାପିତ ହୁଏ, ସେଥିରୁ ଶକ୍ତିର ଗୋଟିଏ ଅଦୃଶ୍ୟ ଉତ୍ସ ବିଚ୍ଛୁରିତ ହେଇ ତା'ର ନିଜର ପରିବେଶଟିଏ ରଚନା କରିଦିଏ । ବଲ୍‌ବୀର୍ କେବଳ ପାରମ୍ପରିକ ଭାସ୍କର୍ଯ୍ୟକୁ ନୁହେଁ, ଭାରତର ଅନେକ ଆଦିମ ରୂପରଚନାକୁ ତାଙ୍କ ସୃଷ୍ଟିରେ ସ୍ଥାନ ଦେଇଛନ୍ତି । ସେ ପଥର ଉପରେ ଯେଉଁଭଳି ସ୍ପର୍ଶସଂବିଗ୍ନତା ସୃଷ୍ଟି କରୁଥିଲେ ତାହା ଅନନ୍ୟ । ତାଙ୍କର ଅନବଦ୍ୟ କୃତି ମଧ୍ୟରେ ଆଧୁନିକ କଳା ସଂଗ୍ରହାଳୟରେ ଥିବା 'ନାଦେଶ୍ୱର', ବିଶାଖାପାଟଣାରେ ଅବସ୍ଥାପିତ ସମୁଦ୍ର ତଟରେ 'ସୂର୍ଯ୍ୟାସ୍ତ', ଆଇ.ଆଇ.ଟି. କାନପୁରର 'ବୌଦ୍ଧ ସ୍ତମ୍ଭ', ଲଳିତ କଳା ଏକାଡେମୀ ବଗିଚାରେ ପ୍ରଦର୍ଶିତ 'ସୂର୍ଯ୍ୟରଥ' ପ୍ରଧାନ ।

ବଲ୍‌ବୀର୍ ବଞ୍ଚିଥିଲେ ଏବେ ତାଙ୍କୁ ସତୁରି ପୂରିଥାନ୍ତା । ବନାରସ ବିଶ୍ୱବିଦ୍ୟାଳୟରୁ ତାଙ୍କ ସହସା ଅନ୍ତର୍ଦ୍ଧାନ ଏବେବି ରହସ୍ୟାବୃତ । ତାଙ୍କ ସହଧର୍ମିଣୀ ଲତିକା ତାଙ୍କ ଭଳି ଜଣେ ପ୍ରଖ୍ୟାତ ଭାସ୍କର । ଲତିକାଙ୍କ ଆପ୍ରାଣ ଚେଷ୍ଟା ସତ୍ତ୍ୱେ ବଲ୍‌ବୀରଙ୍କ ସନ୍ଧାନ ଆଜିଯାଏଁ ମିଳିପାରିନି । ବଲ୍‌ବୀର୍ ଚବିଶି ବର୍ଷ ତଳେ ଆମ କଞ୍ଚନା କଲେଜର ଏକ ଆତ୍ମିକ ପରିସର ମଧ୍ୟରେ ପଥର ଭାସ୍କର୍ଯ୍ୟର ଯେଉଁ ଶୁଭାରମ୍ଭ କରିଥିଲେ ତାହାର ପ୍ରଭାବ ସୁଦୂରପ୍ରସାରୀ ହୋଇପାରିଛି । ଓଡ଼ିଶାରେ ଆଧୁନିକ ଭାସ୍କର୍ଯ୍ୟର ଧାରା ଆମ କଲେଜରୁ ଆରମ୍ଭ ହେଇଥିଲା କହିଲେ ହୁଏତ ଅନେକେ ଆମର ପ୍ରତ୍ୟୟ ସହିତ ସହମତ ହେବେନାହିଁ, ତଥାପି ବି.କେ. ଓ ବଲ୍‌ବୀର୍ ପ୍ରଚ୍ଛନ୍ନ ଭାବରେ ଭାସ୍କର୍ଯ୍ୟର ଆଧୁନିକ ଧାରାକୁ ଋଦ୍ଧିମନ୍ତ କରୁଥିବେ ଏହା ଇତିହାସ କହିବ ।

Digitized by srujanika@gmail.com

# ୧୮. ଡି.ଏନ୍.ଙ୍କ ସିଲ୍‌କ ସ୍କ୍ରୀନ୍

ସିଲ୍‌କ ସ୍କ୍ରୀନ୍ ଏକ ପ୍ରକାର ଷ୍ଟେନ୍‌ସିଲ୍ ବା ଛାଞ୍ଚ ପଦ୍ଧତି । ବୁନ୍ଦି ଛଣା ହେଉଥିବା ବେଳେ ଲକ୍ଷ୍ୟ କଲେ ସିଲ୍‌କ ସ୍କ୍ରୀନ୍ ଛାପା ମୋଟାମୋଟି ଭାବେ ବୁଝିହେବ । ବୁନ୍ଦି ତେଲ କଡ଼େଇରେ ପକେଇବା ପାଇଁ ଚାଲୁଣି ଭଳି ଟିଣର ଗୋଟିଏ ଛାଞ୍ଚ ଥାଏ । ବେସନ ମଣ୍ଡକୁ ଛାଞ୍ଚରେ ଘସିଲେ ବୁନ୍ଦିର ଛୋଟ ଛୋଟ ଦାନା ଘିଅ ବା ତେଲ କଡ଼େଇରେ ଗଳି ପଡ଼େ । ତେଲ କଡ଼େଇ ଜାଗାରେ ଫର୍ଦ୍ଦେ କାଗଜ ଥୋଇ ଛାଞ୍ଚଟିକୁ କାଗଜ ଉପରେ ଲଗେଇ ଧରି ରଙ୍ଗକୁ ଛାଞ୍ଚ ଉପରେ ମାଠି ଆଣିଲେ କାଗଜ ଉପରେ ଛାଞ୍ଚର କଣାମାନ ଦେଇ କାଗଜ ଉପରେ ରଙ୍ଗ ଲେସି ହେଇଯିବ । ଛାଞ୍ଚଟିକୁ ଉଠେଇ ଦେଲେ କାଗଜରେ ସୁନ୍ଦର ଡିଜାଇନ୍‌ଟିଏ ଫୁଟି ଉଠିବ । କିନ୍ତୁ ସିଲ୍‌କ୍ ସ୍କ୍ରୀନ୍ ପଦ୍ଧତି ଆହୁରି ସୂକ୍ଷ୍ମ ଏବଂ ସେଥିରେ ଟିଣ ଛାଞ୍ଚ ବଦଳରେ ସିଲ୍‌କ୍ କନାର ଗୋଟିଏ ଚାଲୁଣି ବ୍ୟବହାର କରାଯାଏ ।

ସିଲ୍‌କ୍ ସ୍କ୍ରୀନ୍ ଛାପାର ବାହାଦୁରି ହେଲା କଳା ଉପରେ ଧଳା ଛପା ବା ବିଭିନ୍ନ ରଙ୍ଗର କାଗଜ ଉପରେ ଧଳା ରଙ୍ଗରେ ଛପେଇ । କେବଳ କାଗଜ ନୁହେଁ ସିଲ୍‌କ୍ ସ୍କ୍ରୀନ୍ ପଦ୍ଧତିରେ କନା, କାଠ, ଟିଣ ବା ଯେକୌଣସି ସମତଳ ଜାଗା (ସର୍‌ଫେସ୍) ଉପରେ ଛାପା ସମ୍ଭବ ହେଇପାରିବ । ଲେଟର୍‌ପ୍ରେସ୍ ପ୍ରିଣ୍ଟିଙ୍ଗ୍‌ରେ ରିଭର୍ସ୍ ଜିଙ୍କ୍ ବ୍ଲକ୍ ସାହାଯ୍ୟରେ ସାଧାରଣତଃ ଧଳା ଅଂଶକୁ ବାଦ୍ ଦେଇ କଳାରେ ଛପା ହୁଏ । ମନେହୁଏ କଳା ଉପରେ ଧଳାରେ ଛାପା ହେଇଛି । ଅଫ୍‌ସେଟ୍ ପ୍ରେସ୍‌ର ପ୍ରଚଳନ ହେଲାପରେ ଆଉ ବ୍ଲକ୍‌ର ଆବଶ୍ୟକତା ହେଲାନାହିଁ ଏବଂ ଅଫସେଟ୍‌ର ପର୍ଯ୍ୟାପ୍ତ ସମ୍ଭାବନା ଭିତରେ କେବଳ କଳା ଉପରେ ଧଳା ନୁହେଁ, ବିଭିନ୍ନ ପ୍ରକାର ରଙ୍ଗର ମିଶ୍ରଣରେ ଛାପା କାମ ହେଇପାରିଲା । ସିଲ୍‌କ୍ ସ୍କ୍ରୀନ୍ ଗୋଟିଏ କଳାତ୍ମକ ମୁଦ୍ରଣ ପଦ୍ଧତି ଭାବେ ଶିଳ୍ପୀମାନଙ୍କର ସମ୍ବଳ ହେଇ ରହିଲା । ଯଦିଓ ତାର ଅନ୍ୟ ଏକ ବ୍ୟବସାୟାତ୍ମକ ଦିଗକୁ ପ୍ରସାରିତ କରି ଶିଳ୍ପ କାରଖାନାମାନଙ୍କରେ ତାହା ବ୍ୟବହୃତ ହେଲା । ଆମେ ଯେତେସବୁ ଟିଣ ଓ ପ୍ଲାଷ୍ଟିକ୍ ଡବା ଦେଖୁଛୁ ସେଗୁଡ଼ିକ ଏହି ପଦ୍ଧତିରେ ଛାପା ।

ଓଡ଼ିଶାର ସିଲ୍‌କ୍ ସ୍କ୍ରୀନ୍ କଥା ମନେ ପଡ଼ିଲେ ପ୍ରଥମେ ବାବୁଲା ସେନାପତିଙ୍କ ନାଁ ସ୍ମରଣକୁ ଆସେ । ସେ ପଟଚିତ୍ରର ମୌଳିକତା ରକ୍ଷା କରି ଅତ୍ୟନ୍ତ ବିଚକ୍ଷଣତାର ସହିତ ସାତ ଆଠ ପ୍ରକାରର ରଙ୍ଗ ଆସ୍ତରଣ ବ୍ୟବହାର କରି ସ୍କ୍ରୀନ୍ କରୁଥିଲେ । ତାଙ୍କ ସ୍କ୍ରୀନ୍ ଛପା

Digitized by srujanika@gmail.com

ଗୁଡ଼ିକରେ ପିଗ୍‌ମେଣ୍ଟ୍ ପ୍ରଲେପର ଅନୁଭବ ରହୁଥିଲା ଓ ତାହା ଅଫ୍‌ସେଟ୍ ମୁଦ୍ରଣ ଠାରୁ ମଧ୍ୟ ବଳି ଅଧିକ ସୁନ୍ଦର ଦେଖା ଯାଉଥିଲା ।

କଲେଜର ପାଠ୍ୟକ୍ରମ ଭିତରେ ସିଲ୍‌କ୍ ସ୍କ୍ରୀନ୍‌ର ପ୍ରଚଳନ ହୋଇପାରିଲେ ଛାତ୍ରଛାତ୍ରୀମାନେ ସେ ପଦ୍ଧତିକୁ ଆପଣେଇ ପାରିବେ ଏବଂ ଭବିଷ୍ୟତରେ ତାହାକୁ ନିଜେ ବଂଚିବାର ଗୋଟିଏ ଅବଲମ୍ବନ ଭାବେ ଗ୍ରହଣ କରିପାରିବାର ସମ୍ଭାବନା ଥିବାରୁ ମୁଁ ତା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଉଥିଲି ଏବଂ ତା'ର ବିଭିନ୍ନ କୌଶଳ ଆୟତ୍ତ କରିବା ପାଇଁ ଡି.ଏନ୍.ରାଓଙ୍କୁ ପ୍ରଚୋଦିତ କରିଥିଲି । ଆମ କଲେଜରେ ଡି.ଏନ୍. ଯୋଗଦେବା ଆଗରୁ ବି.ଜେ.ବି. କଲେଜର ପ୍ରାଣୀବିଭାଗରେ ଶିଳ୍ପୀ ଭାବେ କାମ କରୁଥିଲେ ଓ ଫଟୋଗ୍ରାଫିର ଛପା ପଦ୍ଧତି ସହିତ ଜଡ଼ିତ ଥିଲେ । ସିଲ୍‌କ୍ ସ୍କ୍ରୀନ୍‌ର ଟ୍ରାନ୍ସଫର୍ ଓ ଏକ୍ସପୋଜ୍ ଶୈଳୀ ଫଟୋଗ୍ରାଫି ସହିତ ସାମଞ୍ଜସ୍ୟ ଥିବାରୁ ଡି.ଏନ୍. ତାକୁ କମ୍ ଆୟସରେ ଅକ୍ତିଆର କରିପାରିବେ ବୋଲି ମୋର ଧାରଣା ହୋଇଥିଲା । ଆମ କଲେଜରେ ମୁଁ ନିଜର ବ୍ୟକ୍ତିଗତ କ୍ୟାମେରା ଓ ଏନ୍‌ଲାରଜର୍ ବ୍ୟବହାର କରି ଡି.ଏନ୍.ରାଓଙ୍କ ତତ୍ତ୍ୱାବଧାନରେ ଗୋଟିଏ ଛୋଟଧରଣର ଫଟୋଷ୍ଟୁଡ଼ିଓ କାର୍ଯ୍ୟକାରୀ କରେଇ ପାରିଥିଲି । ଏଥିପାଇଁ ସରକାରୀ ଅର୍ଥବ୍ୟବସ୍ଥା ନଥିଲେ ମଧ୍ୟ ଆମ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଆମେ ତାକୁ କାର୍ଯ୍ୟକାରୀ କରିବାରେ ସଫଳ ହୋଇଥିଲୁ । ଘଟଣାଟିକୁ ପୁଙ୍ଖାନୁପୁଙ୍ଖ ଭାବେ ଦେଖିଲେ ଗୋଟିଏ ଭଡ଼ାଘରେ ସାଧାରଣ ଭାବେ କ୍ଲାସ କରିବା ପାଇଁ ସ୍ଥାନର ଅଭାବ ହେଉଥିବା ବେଳେ ଫଟୋ ଷ୍ଟୁଡ଼ିଓ, ସିଲ୍‌କ୍ ସ୍କ୍ରୀନ୍ ପ୍ରିଣ୍ଟିଙ୍ଗ୍ ଷ୍ଟୁଡ଼ିଓ ପ୍ରଭୃତି ଏତେ କଥା କିମିତି ବା ସମ୍ଭବ ହୋଇପାରୁଥିଲା । ତନ୍ତୀର ବା ଚିତ୍ରକାରର ଶାଳ କଥା ମନେ ପକେଇଲେ ଷ୍ଟୁଡ଼ିଓର ଦୃଶ୍ୟଟି ସ୍ପଷ୍ଟ ହୋଇଯିବ । ପର୍ଯ୍ୟଟନ ବ୍ୟବସାୟରେ ଗୋଟିଏ ହୋଟେଲ ରୁମ୍‌କୁ ଦିନରେ ତିନିଥର ବିକିଲା ପରି ଆମେ ଆମ କଲେଜର ଗୋଟିଏ ବଖରାକୁ ବିଭିନ୍ନ ସମୟରେ ବିଭିନ୍ନ କାମ ପାଇଁ ବ୍ୟବହାର କରୁଥିଲୁ ।

କଲେଜରେ ଅସଲ ସିଲ୍‌କ ସ୍କ୍ରୀନ୍ ପାଖରେ ପହଞ୍ଚିବା ଆଗରୁ ମୁଁ ଓଡ଼ିଶା ପର୍ଯ୍ୟଟନ ବିଭାଗର ବିଜ୍ଞାପନ କାର୍ଯ୍ୟ ପାଇଁ ଏବଂ ବେଳେବେଳେ ଓଡ଼ିଶା ସରକାରଙ୍କ ଆଦିବାସୀ ଓ ହରିଜନ ବିଭାଗ ତଥା ଅନ୍ୟାନ୍ୟ ବିଭାଗୀୟ ବରାଦ କାମ କଲିକତାରୁ ସ୍କ୍ରୀନ୍‌ରେ ଛପେଇ ଆଣୁଥିଲି ଏବଂ ଏହି ଛପାକାମ ଗୁଡ଼ିକ ଅତ୍ୟନ୍ତ ଦୃଷ୍ଟିରୋଚକ ହୋଇପାରୁଥିଲା । କୁହାଯାଇପାରିବ ଯେ ସ୍କ୍ରୀନ୍ ଛାପାର ଯାଦୁକରୀ ପ୍ରଭାବ ସରକାରୀ ଅଫିସରଙ୍କ ମନ ମୋହି ଦେଉଥିଲା । ସିଲ୍‌କ୍ ସ୍କ୍ରୀନ୍ ପଦ୍ଧତିର ଗୁହ୍ୟ ତଥା ଗହନ କଥାଗୁଡ଼ିକ ଜାଣିବାରେ କୌଣସି ସମ୍ଭାବନା ନଥିଲା । ପ୍ରତ୍ୟେକ ସଫଳ ଶିଳ୍ପୀ ସିଲ୍‌କ୍ ସ୍କ୍ରୀନ୍‌ର ଗୋପନକଥାକୁ ହାତଛଡ଼ା କରୁନଥିଲେ । ଡି.ଏନ୍. ନିଜ ବ୍ୟକ୍ତିଗତ ଉଦ୍ୟମରେ ବିଶାଖାପାଟଣା ଯାଇ

Digitized by srujanika@gmail.com

ଜଣେ ତେଲୁଗୁ ଶିଳ୍ପୀଙ୍କ ପାଖରୁ ସ୍କ୍ରୀନ୍ ଏକ୍ସ୍‌ପୋଜ୍, ଟ୍ରାନ୍ସଫର୍ ଓ ଛପେଇ କୌଶଳ ଶିକ୍ଷା କରିପାରିଥିଲେ । ସରକାରୀ ପରିଭାଷାରେ ଏହାକୁ ଓରିଏଣ୍ଟେସନ୍ ତାଲିମ କୁହାଯିବ । ସେ ତେଲୁଗୁ ଶିଳ୍ପୀଙ୍କୁ ପ୍ରଭାବିତ କରି ତାଙ୍କର ସମସ୍ତ ଛପେଇ ସାମଗ୍ରୀ ଯଥା ସ୍କ୍ରୀନ୍, ଛପେଇଫ୍ରେମ୍, ସ୍କ୍ରୀନ୍ ଛାପା ସରିବା ପରେ ଚିତ୍ରଗୁଡ଼ିକ ଶୁଖେଇବା ପାଇଁ ଡ୍ରାଇଙ୍ଗ୍ ଫ୍ରେମ୍, ରଙ୍ଗର ପ୍ରଲେପ ଦେବାପାଇଁ ସ୍କୁଇଜର୍ ପ୍ରଭୃତି ପାଞ୍ଚହଜାର ଟଙ୍କାରେ କିଣି ଆଣିଥିଲେ । ବିନା ସରକାରୀ ଅନୁଦାନରେ କଲେଜ ଗୋଟିଏ ସିଲ୍କ୍ ସ୍କ୍ରୀନ୍ ଷ୍ଟୁଡ଼ିଓ ପାଇଗଲା ।

କଲେଜରେ ଯେତେବେଳେ ସ୍କ୍ରୀନ୍ ଛପେଇ ଆରମ୍ଭ ହେଲା ଆମର ଆନନ୍ଦ କହିଲେ ନସରେ । ସେଯାଏଁ କଳାଶିକ୍ଷାରେ ଗ୍ରାଫିକ୍ କହିଲେ ଲିନୋ ଓ କାଠଖୋଦେଇ, ସିଏ ପୁଣି ଶାନ୍ତିନିକେତନ ଶୈଳୀରେ । ଆମେ ପ୍ରଥମ ହେଇ ଗ୍ରାଫିକ୍ ଶିକ୍ଷାର ପରିସରକୁ ବଢ଼େଇପାରିଲୁ । ମୁଁ ଅଧ୍ୟକ୍ଷ ଭାବରେ ଏସବୁ ପ୍ରକଳ୍ପର ବ୍ୟବସ୍ଥା ସହିତ ସଂପୃକ୍ତ ଥିଲେ ବି ଡି.ଏନ୍. ହିଁ ଏହାର ଶ୍ରେୟ ପାଇବେ ।

ଡି.ଏନ୍. ସମୟକ୍ରମେ ସିଲ୍କ୍ ସ୍କ୍ରୀନ୍‌ରେ ଅନେକ ପରିବର୍ତ୍ତନ ଆଣିଲେ । ଅନେକ ସୂକ୍ଷ୍ମ ଓ ସୁନ୍ଦର ଛପେଇ କାର୍ଯ୍ୟ କଲେଜରେ ସଂପାଦିତ ହେଇପାରିଲା । ଆମ କଲେଜର ସିଲ୍କ୍ ସ୍କ୍ରୀନ୍ ଏକ୍ସପାର୍ଟ୍‌ଭାବେ ସେ କେନ୍ଦ୍ର ଲଳିତ କଳାଏକାଡେମୀର ଲକ୍ଷ୍ନୌ ଆଞ୍ଚଳିକ କେନ୍ଦ୍ର ଶିଳ୍ପୀ ଶିବିର, ଭୋପାଳସ୍ଥିତ ଭାରତ ଭବନର ଶିଳ୍ପୀ ଶିବିର, ଓ ଭୁବନେଶ୍ୱର ଆଞ୍ଚଳିକ କେନ୍ଦ୍ର ଶିଳ୍ପୀ ଶିବିରରେ ଯୋଗଦେଇଥିଲେ । ଏହି ଶିବିରମାନଙ୍କରେ ଅନ୍ୟାନ୍ୟ ସର୍ବଭାରତୀୟ ଶିଳ୍ପୀମାନଙ୍କ ସହିତ କାମ କଲାପରେ ସ୍କ୍ରୀନ୍ ପ୍ରିଣ୍ଟିଙ୍ଗ୍‌ର ଅତ୍ୟାଧୁନିକ ଶୈଳୀ ସହିତ ସେ ଅଧିକ ପରିଚିତ ହେଇ ପାରିଥିଲେ ଓ ତାହା ଛାତ୍ରଛାତ୍ରୀଙ୍କ ଶିକ୍ଷା ଆହରଣରେ ସହାୟକ ହେଇପାରିଥିଲା । ଡି.ଏନ୍. ବିଭିନ୍ନ ଆଧୁନିକ ପଦ୍ଧତିରେ ସଉରା ଆଦିବାସୀଙ୍କ ଭିତ୍ତିଚିତ୍ର ଆଧାରିତ ଅନେକ ସ୍କ୍ରୀନ୍ ଛପେଇ କାମ କରିଥିଲେ ।

ସିଲ୍କ୍ ସ୍କ୍ରୀନ୍ ଛପେଇ ଜଣକିଆ କାମ ନୁହେଁ । ଏହା ଦଳଗତ ପ୍ରକଳ୍ପ । ଏହି ଛପେଇ କାମରେ ଯେଉଁ ଛାତ୍ରମାନେ ଡି.ଏନ୍.ଙ୍କୁ ବିଶେଷ ଭାବରେ ସାହାଯ୍ୟ କରୁଥିଲେ ସେମାନେ ହେଲେ ଅମର କୁମାର ଜେନା, ସଂଗ୍ରାମ କେଶରୀ କର, ସୁଶାନ୍ତ କୁମାର ପଟ୍ଟନାୟକ, ବିନୋଦ କର, ପ୍ରଭୃତି । ଡି.ଏନ୍.ରାଓଙ୍କ ସିଲ୍କ୍ ସ୍କ୍ରୀନ୍ ଷ୍ଟୁଡ଼ିଓ କେବଳ କଲେଜ ଭିତରେ ସୀମିତ ନଥିଲା, ତାହା କଳ୍ପନା କଲେଜରୁ ତାଙ୍କ ବି.ଜେ.ବି. କଲେଜ ସରକାରୀ କ୍ୱାର୍ଟର୍ ଯାଏଁ ପରିବ୍ୟାପ୍ତ ହେଇଥିଲା । ସେ ଆମ କଲେଜରେ ଥିଲାଯାଏଁ ପାଠ୍ୟକ୍ରମରେ ସିଲ୍କ୍ ସ୍କ୍ରୀନ୍ କାମ ପ୍ରବଳ ଭାବେ ହେଉଥିଲା । ଏତେ ପାରିବାର ଅଧ୍ୟାପକ ଅଧ୍ୟକ୍ଷ ହେଇ ଖଲ୍ଲିକୋଟ ବଦଳି ହେଇଗଲାପରେ ଉଭୟ ଖଲ୍ଲିକୋଟ ଓ ଭୁବନେଶ୍ୱର କଲେଜରେ ସିଲ୍କ୍ ସ୍କ୍ରୀନ୍ ପାଠ ବନ୍ଦ ହେଇଗଲା । ଅବଶ୍ୟ ଏହା ମୁଁ କଲେଜ ଛାଡ଼ିବାର ବହୁଦିନ ପରର ଘଟଣା । ଏଣୁ ଏ ଦୁର୍ଦ୍ଦିନ ପାଇଁ ମୁଁ ଉତ୍ତରଦାୟୀ ହେଇ ରହିଲିନି, ପୁଣି

Digitized by srujanika@gmail.com

ସାକ୍ଷୀ ମଧ୍ୟ ନୁହେଁ । ଯେଉଁମାନେ କଲେଜକୁ ଠିକଣା ବାଗରେ ପରିଚାଳନା କରିବାର ବାହାସ୍ଫୋଟ ମାରୁଥିଲେ ସେମାନେ ଅତ୍ୟନ୍ତ ଅସହାୟ ଭାବେ ଏ ହୀନମନ୍ୟତାକୁ ଗ୍ରହଣ କରିନେଲେ । ଏବେ ଡି.ଏନ୍.ରାଓ ଅବସର ଗ୍ରହଣ କରି ଭୁବନେଶ୍ୱରରେ ରହୁଥିଲେ ମଧ୍ୟ ବର୍ତ୍ତମାନର ଅଧ୍ୟକ୍ଷ ମହାଶୟ ବି.କେ. ଖଣ୍ଡଗିରି କଲେଜରେ ତାଙ୍କ ଗ୍ରାଫିକ୍ ବିଭାଗରେ ସିଲ୍କ ସ୍କ୍ରୀନ୍‌ର ପୁନଃ ପ୍ରଚଳନ ପାଇଁ ଚେଷ୍ଟା ସୁଦ୍ଧା କରିନାହାନ୍ତି । ଏହାକୁ ଦୁର୍ଭାଗ୍ୟ କହିବାନି ତ ଆଉ କ'ଣ କହିବା । ବି.କେ. କଲେଜରେ ବର୍ତ୍ତମାନ ଅର୍ଥର ଅଭାବ ନାହିଁ, ଅଥଚ ଏତେ କଷ୍ଟରେ ପୁଣି ଏତିକି ଶ୍ରଦ୍ଧାରେ ଗଢ଼ିଉଠିଥିବା ପରମ୍ପରାଟିଏ ଖଣ୍ଡଗିରିର ଅନ୍ଧାରିଆ ଗୁମ୍ଫାରେ ନିଶ୍ଚିହ୍ନ ହେଇଗଲା !

ସେତେବେଳର କଲେଜରେ ଅଧ୍ୟୟନ କରୁଥିବା ବହୁ ଛାତ୍ରଛାତ୍ରୀ ଏବେ ବ୍ୟକ୍ତିଗତ ଉଦ୍ୟମରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ନିଶ୍ଚୟ ସିଲ୍କ୍ ସ୍କ୍ରୀନ୍ ଛପେଇ କରୁଥିବେ । ଯେଉଁମାନେ ତାକୁ ବଂଚିବାର ସାଧନ ଭାବେ ଗ୍ରହଣ କରିଛନ୍ତି ସେମାନଙ୍କ ମଧ୍ୟରୁ କମଳାକ୍ଷ କାନୁନ୍‌ଗୋ, ସୁଶାନ୍ତ କୁମାର ପଟ୍ଟନାୟକ, ବାଳକୃଷ୍ଣ ନନ୍ଦ, ରଂଜନ, ବିରଞ୍ଚି ଷେଣ୍ଢ, ସବିତା ସାହୁଙ୍କ ଭୂମିକା ସ୍ୱୀକାର୍ଯ୍ୟ । ବର୍ତ୍ତମାନ ଓଡ଼ିଶାର ପୁରପଲ୍ଲୀରେ ସିଲ୍କ୍ ସ୍କ୍ରୀନ୍ କୁଟୀର ଶିଳ୍ପରେ ପରିଣତ ହେଇଗଲାଣି । ଛୋଟମୋଟ କାମ ପାଇଁ ଗ୍ରାହକମାନେ ଆଜିକାଲି ବେଶି ବେଶି ସ୍କ୍ରୀନ୍ ଛପେଇ ଉପରେ ନିର୍ଭର କରୁଛନ୍ତି । ବାହାଘର ନିମନ୍ତ୍ରଣ ପତ୍ର, ଛୋଟ ଛୋଟ ହେଣ୍ଡ୍‌ବିଲ୍, ଭିଜିଟିଙ୍ଗ୍ କାର୍ଡ଼ ଓ ବେନର୍ ପ୍ରଭୃତି ବର୍ତ୍ତମାନ ସ୍କ୍ରୀନ୍‌ରେ ହିଁ ଛପେଇ ହେଉଛି । ଏସବୁର ଉତ୍ସ ଯେ ଆମ ବେଳର ବି.କେ. କଲେଜ ଏକଥା ଅଧିକାଂଶ ଜାଣି ନଥିବେ । ଏସବୁର ପ୍ରାବଲ୍ୟ ସତ୍ତ୍ୱେ ଓଡ଼ିଶାରେ ଆଉ ଯେ ଭଲ ସ୍କ୍ରୀନ୍ ଛପାକାମ ହେଇପାରୁନି ଏହା ଅତ୍ୟନ୍ତ ପରିତାପର ବିଷୟ । ଅବଶ୍ୟ ବାଣିଜ୍ୟଭିତ୍ତିକ ଛପେଇରେ 'ଥାର୍ଡ୍ ଆଇ କମ୍ୟୁନିକେସନ୍'ର ଜ୍ୟୋତିରଞ୍ଜନ ସ୍ୱାଇଁ, ସରୋଜ ମିଶ୍ର ଓ କଲ୍ୟାଣି ପ୍ରେସ୍‌ର କମଳାକ୍ଷ କାନୁନ୍‌ଗୋଙ୍କ ଭାଇ ସୁପୁ କାନୁନ୍‌ଗୋ ଚମତ୍କାର ଛପେଇ କାମ କରୁଛନ୍ତି ।

ଆମେ ସାଧାରଣତଃ ସିଲ୍କ୍ ସ୍କ୍ରୀନ୍ ଛପେଇ କାମକୁ ଦୁଇଟି ବିଭାଗରେ ବାଣ୍ଟୁଛୁ । ଗୋଟିଏ ହେଲା କଳାତ୍ମକ (ଆର୍ଟିଷ୍ଟିକ୍) ଛପେଇ ଓ ଅନ୍ୟଟି ହେଲା (କମରସିଆଲ୍) ବାଣିଜ୍ୟଭିତ୍ତିକ କାମ । ଓଡ଼ିଶାରେ ଏବେ କମରସିଆଲ୍ କାମର କଦର ବେଶି । ଏଥିରେ ମାନସିକତାର ଯେଉଁ ପ୍ରତିବନ୍ଧକ ଥାଏ ଆର୍ଟିଷ୍ଟିକ୍ ଛପେଇରେ ତାହା ନଥାଏ । ସେଥିରେ ଥାଏ ନୂତନତାର ଆହ୍ୱାନ ଓ ଉତ୍କର୍ଷରେ ପହଞ୍ଚିବାର ଆକାଂକ୍ଷା । ଆର୍ଟିଷ୍ଟିକ୍ ଛପେଇ ପର୍ଯ୍ୟାୟର ଶୀର୍ଷରେ ମୁଁ ବାବୁଲା ସେନାପତିଙ୍କ କାମକୁ ରଖିବି । ଏ ଅବଧି ତାଙ୍କ କାମକୁ ଅତିକ୍ରମ କରି ଆଗେଇ ଯିବାର ଦୁଃସାହସ ଅନ୍ୟ କିଏ କରିନାହାନ୍ତି । ଡି.ଏନ୍.ରାଓଙ୍କ ସିଲ୍କ୍ ସ୍କ୍ରୀନ୍ ତା ତଳକୁ ।

Digitized by srujanika@gmail.com

ଆମ କଲେଜରେ ଡି.ଏନ୍.ରାଓଙ୍କ ଦ୍ୱାରା କରାଯାଇଥିବା କେତୋଟି ଉଲ୍ଲେଖନୀୟ ଛପେଇ କାମର ମୁଁ ଏଠି ସୂଚନା ଦେଉଛି । ଇତିହାସ ଅଧ୍ୟାପକ ରାଜେନ୍ଦ୍ର ପ୍ରସାଦ ଦାସଙ୍କ ପ୍ରଥମ ଲିଖିତ ଉପନ୍ୟାସ 'ଆଜିକାଲି ପଅରଦିନ'ର ପ୍ରଚ୍ଛଦ କନା ଉପରେ ତିନିରଙ୍ଗରେ ଛପେଇ ହୋଇ ମଲାଟ ବନ୍ଧେଇରେ ବ୍ୟବହୃତ ହୋଇଥିଲା ଓ ତା ଉପରର ଜାକେଟ୍ ମଧ୍ୟ କାଗଜ ଉପରେ ସ୍କ୍ରୀନ୍ କରାଯାଇଥିଲା । ସେଭଳି ରାଜେନ୍ଦ୍ର ପ୍ରସାଦଙ୍କ 'ଚାହିଁଲେ ଆକାଶ' ଗଳ୍ପ ସଂକଳନର ଜାକେଟ୍ ମଧ୍ୟ ଆମ କଲେଜରେ ମୁଦ୍ରିତ ହୋଇଥିଲା । ଓଡ଼ିଆ ବହିର ପ୍ରଚ୍ଛଦଚିତ୍ର ମାନଙ୍କ ମଧ୍ୟରେ ଏହି ଦୁଇଟି ଉଲ୍ଲେଖନୀୟ । ତା ସହିତ କ୍ୟାପ୍‌ଟେନ୍ ଅରୁଣ ପଟ୍ଟନାୟକଙ୍କ ଉପନ୍ୟାସ 'ବାଳୁକା'ର ପ୍ରଚ୍ଛଦଟି ମଧ୍ୟ ଆମ କଲେଜରେ ପ୍ରସ୍ତୁତ ହୋଇଥିଲା । ଡକ୍ଟର ସୀତାକାନ୍ତ ମହାପାତ୍ର ଆଦିବାସୀ ଓ ହରିଜନ ବିଭାଗର ସଚିବ ଥିବାବେଳେ ଜାନୁୟାରୀ ମାସରେ ଭୁବନେଶ୍ୱରର ଏକାମ୍ରର ଆଦିବାସୀ ପଡ଼ିଆରେ ଅନୁଷ୍ଠିତ ହେଉଥିବା ଆଦିବାସୀ ମେଳା ପାଇଁ କନ୍ଧ ଯୁବକ ଯୁବତୀ ବ୍ୟବହାର କରୁଥିବା ଛୁଞ୍ଚି ସୂତା କାମ କରା ଚାଦରର ଅନୁକରଣରେ ବିଭାଗୀୟ ମୁଖପତ୍ର 'ବନଜା', ଉତ୍ସବର ନିମନ୍ତ୍ରଣ ପତ୍ର ପ୍ରଭୃତି ଆମ କଲେଜର ସିଲ୍‌କ୍ ସ୍କ୍ରୀନ୍ ଷ୍ଟୁଡିଓରେ ମୁଦ୍ରିତ ହୋଇଥିଲା । ମୋ କନ୍ୟା ସୁନନ୍ଦାର ଗୋଟିଏ ଚିତ୍ରକୁ ଆଧାର କରି ଅଧ୍ୟାପକ ରାଓ ଚାରି ପାଞ୍ଚୋଟି ରଙ୍ଗରେ ମୋ କବିତା ବହି 'ଅବନ୍ତୀ'ର ପ୍ରଚ୍ଛଦପଟ ପ୍ରସ୍ତୁତ କରିଥିଲେ । ସୁନନ୍ଦା ଜୁରିକ୍ ନଗରୀର ଶିଶୁ ଚିକିତ୍ସାଳୟରେ ଚିକିତ୍ସିତ ହେଉଥିବାବେଳେ ଏହି କବିତା ବହିଟିକୁ ଉପହାର ଭଳି ମୁଁ ବ୍ୟବହାର କରିଥିଲି । ଚିକିତ୍ସାଳୟର ଡ଼ାକ୍ତର ଓ ନର୍ସମାନେ ପ୍ରଚ୍ଛଦର କଳାତ୍ମକତାକୁ ଭୂୟସୀ ପ୍ରଶଂସା କରିଥିଲେ । ଏହି ପ୍ରଚ୍ଛଦ ସହିତ ମୋ ଜୀବନର ଗୋଟିଏ ଅତ୍ୟନ୍ତ ଦୁଃଖଦ ଓ କରୁଣାତ୍ମକ ଅଧ୍ୟାୟ ସଂପୃକ୍ତ । ଏବେ ପ୍ରଚ୍ଛଦର ଶିଶୁ ଶିଳ୍ପୀ ସୁନନ୍ଦା ଓ କବିତାର ଶୀର୍ଷକ ନିଜ ନାଁରେ ରସାଣିତ କରିଥିବା ପତ୍ନୀ ଅବନ୍ତୀ ଆଉ ନାହାନ୍ତି । କେବେ କିମିତି ନିରଳସ ମୁହୂର୍ତ୍ତରେ କବିତା ବହିଟିକୁ ହାତରେ ଧରିଲେ ପ୍ରାଣର ସ୍ପନ୍ଦନ ଅନୁଭବ କରିହୁଏ ଏବଂ ତା ସହିତ କଳ୍ପନା କଲେଜର ଗୋଟିଏ ବିସ୍ମୃତ ଅଧ୍ୟାୟ ପୁନର୍ଜୀବିତ ହୋଇଯାଏ ।

Digitized by srujanika@gmail.com

# ୧୯. ଦେବରାଜଙ୍କ କୁମ୍ଭାର ଚକ

ନିଜ ମୂଳ ବିଭାଗକୁ ଚନ୍ଦ୍ରକୁମାର ସାମନ୍ତରାୟଙ୍କ ପ୍ରତ୍ୟାବର୍ତ୍ତନ ପରେ ଦେବରାଜ ସାହୁ କଞ୍ଚନା କଲେଜରେ ଭାସ୍କର୍ଯ୍ୟ ଅଧ୍ୟାପକ ହେଇ ଯୋଗଦେଲେ । ଦେବରାଜ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟରେ ମୋ ଉପର କ୍ଲାସରେ ଅଧ୍ୟୟନ କରୁଥିଲେ ଓ ଗଂଜାମ ଛାତ୍ରାବାସର ଥିଲେ ଅନ୍ତେବାସୀ । ଗଂଜାମ ଛାତ୍ରାବାସରେ ରହିବାର ଅନେକ କାରଣ ମଧ୍ୟରୁ ଅନ୍ୟତମ ମୁଖ୍ୟ କାରଣ ଥିଲା ତାଙ୍କ ଘନିଷ୍ଠ ବନ୍ଧୁ ଚନ୍ଦ୍ରଶେଖର ରାଓଙ୍କ ସ୍ନେହ ଓ ଆକର୍ଷଣ । ଗୋଟିଏ ବଡ଼ ବଖରା ଭିତରେ ଦେବରାଜ ଓ ଚନ୍ଦ୍ରଙ୍କ ବ୍ୟତୀତ ଥିଲେ ଭୀମସେନ ମହାରଣା, ଫକୀର ମୋହନ ମଲ୍ଲିକ ଓ ଦେବରାଜଙ୍କ ଦାଦି ରଙ୍କନାଥ ସାହୁ । ମୁଁ ଏମାନଙ୍କ ସହିତ ଏଭଳି ଭାବେ ସଂପର୍କୀତ ହେଇଯାଇଥିଲି ଯେ ମୋର ଅଧିକାଂଶ ସମୟ ତାଙ୍କ ଗହଣରେ ହିଁ କଟୁଥିଲା । ଏହି ସଂପର୍କରୁ ହିଁ ଦେବରାଜ ବିଭୂତି କାନୁନ୍‌ଗୋ କଲେଜରେ ଆଡ଼ହକ୍ ଅଧ୍ୟାପକ ଭାବେ ଯୋଗ ଦେଇଥିଲେ ।

ଭାସ୍କର୍ଯ୍ୟ କଳାରେ ଦେବରାଜ ସାହୁଙ୍କ ଦକ୍ଷତା ଥିଲା । ଖଲ୍ଲିକୋଟରେ ଅଧ୍ୟୟନ କରୁଥିବା ବେଳେ ସେ ପ୍ଲାଷ୍ଟର ଓ ସିମେଣ୍ଟରେ ଆଖିଦୃଶିଆ ମୂର୍ତ୍ତିମାନ ତିଆରି କରି ଅଧକ୍ଷ ଓ ଅଧ୍ୟାପକମାନଙ୍କ ସ୍ନେହଭାଜନ ହେଇ ପାରିଥିଲେ । ସେ ହସ୍ତଶିଳ୍ପ ତାଲିମ କେନ୍ଦ୍ରରେ ଯୋଗ ଦେଲାପରେ ପୋଡ଼ାମାଟି ବା ଟେରାକୋଟା କାମ ପ୍ରତି ତାଙ୍କର ଆଗ୍ରହ ବଢ଼ିଲା । ଆମ କଲେଜର ପାଠ୍ୟକ୍ରମରେ ଟେରାକୋଟା କାମର ବିସ୍ତାରିତ ପ୍ରୟୋଗରେ ତାଙ୍କର ନିର୍ଦ୍ଦିଷ୍ଟ ଭୂମିକା ରହିଥିଲା । ଗଣେଶ, ସରସ୍ୱତୀ, ଖୁଦୁରୁକୁଣୀ ଓ ଦୁର୍ଗା ମୂର୍ତ୍ତି ଗଢ଼ିବା ଏବଂ ସୃଜନ କଳାର ବିଭାବ ଭାବେ ଟେରାକୋଟାକୁ ବ୍ୟବହାର କରିବା ଅଲଗା କଥା ।

ଏନ୍.ସି.ଇ.ଆର୍.ଟି ସହଯୋଗରେ ଆମ କଲେଜରେ ଆୟୋଜିତ ପ୍ରଥମ ସର୍ବଭାରତୀୟ ଚିତ୍ରକଳା ଶିକ୍ଷକଙ୍କ ଶିବିରରେ ପ୍ରଥମ କରି ଆମେ କୁମ୍ଭାରଚକ ବ୍ୟବହାର କରିଥିଲୁ । କୁମ୍ଭାର ଚକ ସାହାଯ୍ୟରେ ପାରମ୍ପରିକ ଭାବେ ମାଟିହାଣ୍ଡି, ମାଟିପାତ୍ର, ସାଙ୍ଗକୁ ଦୀପ, ଗୁଖା, ବଇଠା, ହାତୀ ଘୋଡ଼ା ଗଢ଼ାଯାଏ । କିନ୍ତୁ ଏହି ପାରମ୍ପରିକ କୌଶଳକୁ ଆୟତ୍ତ କରିପାରିଲେ ଚକ ଭିତରୁ ଆଧୁନିକ ଧରଣର ଅଦ୍ଭୁତ କାମମାନ ସମ୍ଭବ ହୁଏ । କୁମ୍ଭାର ଚକକୁ ହାତରେ ଚଳେଇବା ପାଇଁ କିଛିଦିନ ଅଭ୍ୟାସ ନକଲେ ଚକ ବୋଲ

Digitized by srujanika@gmail.com

ମାନେନି । ଚକ ମଝିରେ ଥୁଆହୋଇଥିବା ମାଟି ମେଞ୍ଚାକୁ ହାତର ପାପୁଲି ଓ ଆଙ୍ଗୁଠିର କରାମତିରେ ବିଭିନ୍ନ ରୂପ ଓ ବିଭିନ୍ନ ଆକାରରେ ପରିବର୍ତ୍ତନ କରାଯାଇଥାଏ । ମାଟି ପାତ୍ରମାନଙ୍କରେ ଫନ୍ଦ ପାଖାପାଖି ବା ବଇଠା ପାଖକୁ ଆମେ ଯେଉଁ ରେଖାଗୁଡ଼ିକ ଦେଖୁ ତାହା ଏଭଳି ଦକ୍ଷ ହାତର କାମ । କୁମ୍ଭାର ଚକରେ ହାଣ୍ଡି, ମାଠିଆ, ସରା, ପଲମ ଇତ୍ୟାଦି ଉତୁରିଲା ବେଳକୁ କୁମ୍ଭାରର ଦକ୍ଷ ହାତ ଓ ଆଙ୍ଗୁଳିଗୁଡ଼ିକର ଅପୂର୍ବ ଚାଳନା ନ ଦେଖିଥିଲେ ପାଠ ପଢ଼ି ମାଟିକାମକୁ ଠଉରେଇ ହେବନି । ସେମାନଙ୍କ ହାତରେ ମାଟିମେଞ୍ଚାକର ଅଦ୍ଭୁତ ପରିବର୍ତ୍ତନ ହୃଦୟଙ୍ଗମ କରି କୁମ୍ଭାର ମାନଙ୍କୁ ପ୍ରଜାପତି ବୋଲି କୁହାଯାଇଛି ।

କୁମ୍ଭାରଚକର ବୈଷୟିକ ଜ୍ଞାନକୌଶଳ ଦୁଇତିନି ହଜାର ବର୍ଷର ପୁରୁଣା । ଏତେ ସବୁ ପରିବର୍ତ୍ତନ ଭିତରେ ମଧ୍ୟ ଚକର ମୌଳିକ ପ୍ରୟୋଗରେ ବିଶେଷ କିଛି ପରିବର୍ତ୍ତନ ହୋଇନି । ହାତରେ ଘୂରେଇବା ଚକ ଏବେ ବିଦ୍ୟୁତ୍ ଶକ୍ତିରେ ଘୂରୁଛି । କିନ୍ତୁ ଚକ ନ ଘୂରିଲେ ମାଟିର ବିବର୍ତ୍ତନ ସମ୍ଭବ ନୁହେଁ । ଦେବରାଜ ସାହୁ ଜାତିରେ ତେଲି । କିନ୍ତୁ କୁମ୍ଭାର କାମ ତାଙ୍କ ହାତରେ ଅସମ୍ଭବ ଭାବେ ପଇଟେ । ତେଲିଙ୍କ ତେଲପେଡ଼ା ଘଣାର ଘୂର୍ଣ୍ଣନ ଏବଂ କୁମ୍ଭାର ଚକର ଘୂର୍ଣ୍ଣନ ଦୁଇଟି ସଂପୂର୍ଣ୍ଣ ଭାବେ ଅଲଗା । ଗୋଟିକରେ ବିଭିନ୍ନ ତୈଳବୀଜକୁ ପେଷି ତେଲ ବାହାର କରାଯାଏ ଏବଂ ଅନ୍ୟଟିରେ କଞ୍ଚାମାଟିକୁ ବୋଲ ମନେଇ ନାନାଜାତିର ପାତ୍ର ଗଢ଼ାଯାଏ । ଗୋଟିକରେ ରୂପକୁ ଅରୂପରେ ଏବଂ ଅନ୍ୟଟିରେ ଅପରୂପକୁ ରୂପରେ ପରିଣତ କରାଯାଏ । ଚକର ଚରିତ୍ର ବୁଝି ନପାରିଲେ ତାକୁ ମଣେଇ ହୁଏନି ।

ଆମେ କଲେଜ ଅଗଣାରେ ଗୋଟିଏ କୁମ୍ଭାର ଚକ ପକେଇଥାଉ । ଚକ ଘୂରେଇବାରେ ପିଲାଙ୍କୁ ସାହାଯ୍ୟ କରିବା ପାଇଁ କପିଳ ପ୍ରସାଦ ଅଞ୍ଚଳରୁ କୁମ୍ଭାରଘର ଟୋକାଟିଏକୁ ନିଯୁକ୍ତି ଦେଇଥାଉ । କଲେଜ ବଗିଚାରେ ଥିବା ଆଉଟ୍‌ହାଉସ୍‌ଘରେ ମାଟି ରଖିବା ପାଇଁ ଦୁଇଟି ସିମେଣ୍ଟ କୁଣ୍ଡ ତିଆରି ହୋଇଥାଏ । ମାଟି ପାଗ କରିବା ସବୁଠାରୁ ଦିକ୍‌ଦାର କାମ । ମାଟିରୁ ଗୋଡ଼ି, ବାଲି ଖପରା ପ୍ରଭୃତି ଯାବତୀୟ ବର୍ଜ୍ୟବସ୍ତୁ ସଫାକରି ତାକୁ ବତୁରାଯାଏ । ମାଟିକୁ ଚକୁଟି ମଣ୍ଡ ଭଳିଆ କରି ତାକୁ ପୁଣି ଛାଙ୍କି ଶୁଦ୍ଧ କରାଯାଏ । ଏହି ମାଟିହିଁ ଚକରେ ବସିବା ପାଇଁ ଯୋଗ୍ୟତା ହାସଲ କରେ । ମାଟିକୁ ତିନିଚାରି ଦିନ ଘୋଡ଼ା ଘୋଡ଼ି କରି ଛାଇରେ ନ ରଖିଲେ ତାହା ପାଗାଏ ନାହିଁ ।

କଲେଜ କାନ୍ଥରେ ଟେରାକୋଟାର ମ୍ୟୁରାଲ୍‌ଟିଏ କରିବା ପାଇଁ ଦେବରାଜଙ୍କୁ ମୁଁ ଅନୁରୋଧ ଜଣେଇଥିଲି । ଦେବରାଜ ଦ୍ୱିତୀୟ ବର୍ଷର ଛାତ୍ର ଆର୍ତ୍ତବନ୍ଧୁଙ୍କ ତତ୍ତ୍ୱାବଧାନରେ କାମଟି ଆରମ୍ଭ କଲେ । ପ୍ରଥମେ ଫୁଟେକୁ ଫୁଟର ଟାଇଲ୍ ତିଆରି ହେଲା ଓ ତା' ଉପରେ ରିଲିଫ୍ ବା ଅଙ୍କୋଚ ଭାସ୍କର୍ଯ୍ୟ ବନେଇ ସାରି କିଛିଦିନ ଛାଇରେ ପବନରେ ଶୁଖେଇଦେଲା

Digitized by srujanika@gmail.com

ପରେ ଆମେ ସେଗୁଡ଼ିକୁ ପୋଡ଼ି ଟେରାକୋଟାରେ ପରିଣତ କଲୁ । ପୋଡ଼ାମାଟିର ଟାଇଲ୍ ଗୁଡ଼ିକୁ ଖଣ୍ଡାଖଣ୍ଡି କରି କଲେଜ ଭିତରକୁ ପ୍ରବେଶ କରିବାର ଡ଼ାହାଣ କାନ୍ଥରେ ମ୍ୟୁରଲ୍‌ଟିକୁ ବସେଇ ଦିଆଗଲା । ମ୍ୟୁରଲ୍‌ର ବିଷୟବସ୍ତୁ ଥିଲା କଲେଜରେ ଶିକ୍ଷା ଦିଆଯାଉଥିବା ବିଭିନ୍ନ ଶିଳ୍ପକାମର ଦୃଶ୍ୟରୂପ । କାନ୍ଥରେ ଖଞ୍ଜା ହେଇଥିବା ମୁରାଲ୍‌କୁ ଦେଖି ଆମ ଆନନ୍ଦ କହିଲେ ନସରେ । କିନ୍ତୁ ଦି'ଚାରି ଅସରା ବର୍ଷାମାଡ଼ ଖାଇଲା ପରେ ମ୍ୟୁରଲ୍‌ର ବିଭିନ୍ନ ଅଂଶ କାନ୍ଥରୁ ଖସି ପଡ଼ିଲା । ତଥାପି ଆମେ ହତୋତ୍ସାହିତ ନହେଇ ମାଟିପାଗ ଓ ମାଟି ପୋଡ଼ିବା କୌଶଳରେ ସୁଧାର ଆଣିଲୁ । ପ୍ରାଥମିକ ବିପର୍ଯ୍ୟୟ ସତ୍ତ୍ୱେ ଏହି ଟେରାକୋଟା ମ୍ୟୁରଲ୍ କେବଳ ଆମ କଲେଜ ନୁହେଁ, ଓଡ଼ିଶାର ସମଗ୍ର କଳାଜଗତରେ ପ୍ରଥମ ପ୍ରଚେଷ୍ଟା ବୋଲି ଧରାଯିବ ।

ପିଲାଙ୍କ ସାଙ୍ଗରେ ପିଲା ହେଇ ମାଟି ସାଙ୍ଗରେ ମାଟି ହେଇ କାମ କରିବାର ଅସମ୍ଭବ ଝୁଙ୍କ ଦେବରାଜଙ୍କର ଥିଲା । ଭାସ୍କର୍ଯ୍ୟ ଓ ମଡେଲିଙ୍ଗ୍ ବିଭାଗର ପିଲାମାନେ ଦଳବଦ୍ଧ ହେଇ ଯେଝା କାମରେ ଲାଗିପଡ଼ୁଥିଲେ । ଡିସେମ୍ବର ମାସର ଚିତ୍ରମେଳା ପାଇଁ ଟେରାକୋଟା କାମ କେବଳ ଦୃଷ୍ଟିରୋଚକ ହେଉନଥିଲା, ଗ୍ରାହକ ମାନେ କିଣିନେବା ପାଇଁ ସୁବିଧା ବି ହେଉଥିଲା ।

ଶାନ୍ତିନିକେତନ କଳାଭବନରେ ପିଲାମାନେ ଉଚ୍ଚକୋଟୀର ଟେରାକୋଟା କାମ କରିପାରନ୍ତି । ଟେରାକୋଟାକାମ ସେଠି ପରମ୍ପରା ହେଇଗଲାଣି । ପଶ୍ଚିମ ବଙ୍ଗର ବିଷ୍ଣୁପୁର-ଟେରାକୋଟା ମନ୍ଦିରର ପ୍ରସିଦ୍ଧି ଅଛି । ମୁଁ ପିଲାଙ୍କୁ ନେଇ ଶାନ୍ତିନିକେତନ ପରିଭ୍ରମଣରେ ଗଲେ ଶାନ୍ତିନିକେତନ ପାଖ ସୁରୁଲ ଯାଇ ଟେରାକୋଟା ମନ୍ଦିରର ନିଖୁଣ କାମ ଦେଖେଇଆଣେ । ଓଡ଼ିଶାରେ ମୟୂରଭଂଜ ଜିଲ୍ଲାର ବାରିପଦା ପାଖାପାଖି ଭଂଜରାଜାଙ୍କ ପୁରୁଣାଗଡ଼ରେ ଟେରାକୋଟା ମନ୍ଦିରମାନ ଅଛି । ଆମ ଦେଶରେ ପ୍ରାୟ ପ୍ରତି ଗାଁ ଗହଳିରେ କୁମ୍ଭାରମାନେ ମାଟିହାଣ୍ଡି ଗଢ଼ିଥାନ୍ତି ଓ ଠାକୁରାଣୀ ମନ୍ଦିରମାନଙ୍କରେ ମାନସିକ ଦେବାପାଇଁ ହାତୀ ଘୋଡ଼ା ତିଆରି କରିଥାନ୍ତି । ଓଡ଼ିଶାର ଘୋଡ଼ାମାନଙ୍କର ଆଦିମ ଗ୍ରାମ୍ୟ ଭାବ ସେମାନଙ୍କର ବିଶେଷତ୍ୱ । ତଥାପି ବଙ୍ଗଳା-ବିଷ୍ଣୁପୁରର ଲମ୍ୱାବେକ ଥିବା ଘୋଡ଼ାକୁ ତାର ଚିକ୍କଣପଣ ପାଇଁ କୁଟୀରଶିଳ୍ପ ସଂସ୍ଥା ସେମାନଙ୍କ ସଂଗଠନର ପ୍ରତୀକ ଭାବେ ଗ୍ରହଣ କରିନେଇଛନ୍ତି । ଆମ ସୋନପୁର କୁମ୍ଭାରଙ୍କ ହାତଗଢ଼ା ହନୁମାନର ଜାନ୍ତବ ଓ କଉତୁକିଆ ଭାବର ପଟାନ୍ତର ନାହିଁ । କେବଳ ସେତିକି ନୁହେଁ ସମ୍ବଲପୁର ବରଗଡ଼ ଅଞ୍ଚଳର ଚଢ଼େଇ ଓ ଜନ୍ତୁଜନ୍ତା ଖଞ୍ଜା ଖପରଲିର ଚମତ୍କାରିତା କହିଲେ ନ ସରେ । ପୋଡ଼ାମାଟିର ମୂର୍ତ୍ତି ସଂଗ୍ରହରେ ମୋର ସଉକ ଅଛି । ଏବେ ମଧ୍ୟ ମୋ ପାଖରେ ପଚାଶ ଷାଠିଏ ମାଟିଘୋଡ଼ା ଓ ହାତୀ ଥିବ ।

Digitized by srujanika@gmail.com

ଆମ କଲେଜ ପିଲାମାନେ ଟେରାକୋଟା ପ୍ରତି ମୋ ଦୁର୍ବଳତାର ସୁଯୋଗ ନେଇ ଥରେ ଗୋଟିଏ ଅଘଟଣ ଘଟେଇ ଦେଲେ । ଆମେ ଲଳିତଗିରି-ରତ୍ନଗିରିର ବୌଦ୍ଧକୀର୍ତ୍ତି ଦେଖିବା ପାଇଁ ଯାଇଥାଉ । ସେଠି ସ୍ତୂପ ଓ ବିହାରମାନଙ୍କରେ ବ୍ୟବହୃତ ହେଉଥିବା ପୋଡ଼ାମାଟିର ବିଭିନ୍ନ ଆକାର ପ୍ରକାରର ଇଟା ଦେଖି ପିଲାଏ ଅନୁପ୍ରାଣିତ ହେଲେ । ହଜାରେ ବର୍ଷତଳର କୁମ୍ଭାରଙ୍କ ବିଚକ୍ଷଣ ହାତକାମ ସେମାନଙ୍କୁ ଉଦ୍‌ବୁଦ୍ଧ କଲା । ଭୁବନେଶ୍ୱର ଫେରିବା ବାଟରେ ମୋତେ ଓ ଦେବରାଜଙ୍କୁ ମୂଳତଃ ଚମକେଇ ଦେବା ପାଇଁ ବାଟରେ ବସ ଅଟକେଇ ଗୋଟିଏ ରାସ୍ତାକଡ଼ ଠାକୁରାଣୀ ମନ୍ଦିରରୁ ପାଞ୍ଚଦଶଟି ଘୋଡ଼ା ଉଠେଇ ଆଣିଲେ । ଚୋରିବିଦ୍ୟା ନେଇ ଆଣି ଥୋଇ ପାରିଲେ ସାର । ପିଲାଙ୍କ ଚୋରିକାମ ଗାଁ ବାଲାଙ୍କ ତୀକ୍ଷ୍ଣ ନଜରରୁ ବର୍ତ୍ତିଲାନି । ସେମାନେ ଦଳବଦ୍ଧ ହୋଇ ବସ୍‌କୁ ଘେରିଗଲେ । ସଙ୍ଗୀନ ପରିସ୍ଥିତିଟିଏ ସୃଷ୍ଟି ହେଇଗଲା । ଶିକ୍ଷକର ମାନ ମହତ୍ତ୍ୱ ବଂଚେଇବା ପାଇଁ ଆମେ ଦିହେଁ ଗୁଣିଆ ହେଇ ଭୂତ ଛଡ଼େଇବାରେ ଲାଗିଲୁ । ପିଲାଏ ଘୋଡ଼ା ଫେରେଇଦେଲେ । ଆମେ ନିର୍ବିଘ୍ନରେ ଭୁବନେଶ୍ୱର ପହଞ୍ଚିଲୁ । ରାସ୍ତାକଡ଼ ଖୋଲା ଠାକୁରାଣୀ ମନ୍ଦିରମାନଙ୍କରେ ଶହଶହ ଠାକୁରାଣୀ ଘୋଡ଼ା ଯତ୍ନ ଅଭାବରୁ ଯେଭଳି ଭାଙ୍ଗିରୁଜି ଖପରା ହେଇଯାଉଛନ୍ତି, ସେଗୁଡ଼ିକୁ ସେହି ଦୟନୀୟ ଅବସ୍ଥାରୁ ଉଦ୍ଧାର କରି ଆଣିବାରେ ନୈତିକତାର ବିପର୍ଯ୍ୟୟ ହୁଏ ବୋଲି ମୋର ବିଶ୍ୱାସ ନାହିଁ । ଜଣେ ଶିଳ୍ପୀର ଭୂମିକାରେ ରହି ଏହି ଅମନନୀୟ କଳାକୃତିଗୁଡ଼ିକୁ ସମୟର କରାଳଗର୍ଭରେ ଲୋପ ହେଇଯିବାକୁ ନ ଦେଇ ସେମାନଙ୍କୁ ସେମାନଙ୍କ ଶୈଳ୍ପିକ ଅସ୍ମିତା ଫେରାଇ ଦେବାରେ ନୀତି ଅନୀତିର ପ୍ରଶ୍ନ ନାହିଁ । ମୁଁ ଅନୁମାନ କରୁଛି ଧାର୍ମିକ ବିଶ୍ୱାସର ଦ୍ୱାହି ଦେଇ ଅନେକେ ମୋର ଏଭଳି ମାନସିକତାକୁ ପସନ୍ଦ କରିବେ ନାହିଁ । ତଥାପି ଓମ୍ ପ୍ରକାଶ ଜୈନଙ୍କ ଦିଲ୍ଲୀ ଛତ୍ରପୁର-ମେହରୁଲି ରୋଡ୍ କଡ଼େ ଗଢ଼ିଉଠିଥିବା ସାଂସ୍କୃତିକ କେନ୍ଦ୍ରର ଟେରାକୋଟା ସଂଗ୍ରହ ଦେଖିଲେ ବିସ୍ମୟରେ ଅଭିଭୂତ ହେବାକୁ ପଡ଼େ । କାହିଁ ଆମ ଓଡ଼ିଶାରେ କେଉଁଠି ହେଲେ ପୋଡ଼ାମାଟିର ସଂଗ୍ରହାଳୟଟିଏ ମୁଣ୍ଡଟେକି ଠିଆ ହେଇପାରିଲାନି ?

ଭାସ୍କର୍ଯ୍ୟ ଗଢ଼ିବା ପାଇଁ ଉଦ୍ଦିଷ୍ଟ ବିଭିନ୍ନ ଉପାଦାନ ଯଥା ମାଟି, କାଠ, ପଥର, ପିତଳ, ଲୁହା, ରୁପା ଓ ସୁନା ମଧ୍ୟରୁ ମାଟି ହିଁ ସର୍ବଶ୍ରେଷ୍ଠ । ମାଟି ମୂର୍ତ୍ତିଟିଏ ଠିକ୍ ଭାବରେ ପୋଡ଼ାହେଇ ପାରିଲେ ତାହା ଲୁହାଠାରୁ ମଧ୍ୟ ଟାଣ ହେଇଯାଏ । ତା ନହେଇଥିଲେ ମହେଞ୍ଜୋଦାରୋ ଓ ହରପ୍ପାର ଟେରାକୋଟା ଶିଳ୍ପର ନିଦର୍ଶନ ଆଜିଯାଏଁ ତିଷ୍ଠି ରହିପାରିନଥାନ୍ତା । ଉପନିବେଶୀୟ ଚିନ୍ତାରେ ବଶୀଭୂତ ହେଇ ଆମେ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଟେରାକୋଟା କାମକୁ ହତାଦର କରିଆସିଛୁ । ଏଣୁ ପଚାଶ ବର୍ଷର ଆଧୁନିକ କଳାଶିକ୍ଷାର ଅବଧି ମଧ୍ୟରେ ଟେରାକୋଟା ଶିଳ୍ପ ପରମ୍ପରାରେ ପରିଣତ ହେଇଯିବା

Digitized by srujanika@gmail.com

କଥା, ତାହା ହେଇପାରିନି । ମୁଁ ଦୃଢ଼ତାର ସହିତ କହିପାରିବି ଆମ କଳ୍ପନା କଲେଜର ତାରପୁଲିନ୍ ଢ଼ଙ୍କା ଭାସ୍କର୍ଯ୍ୟ ବିଭାଗରୁ ଟେରାକୋଟା ଶିଳ୍ପ ଜନ୍ମ ନେଇଥିଲା । ଦେବରାଜ ଆମ କଲେଜରେ ଆଉ ଅଧିକା କିଛିଦିନ ଅଧ୍ୟାପକ ହେଇ ରହିଯାଇଥିଲେ ଟେରାକୋଟା କାମ ଆଉ ଟିକିଏ ବାଗ ଧରି ନେଇଥାନ୍ତା ।

ଆମ କଲେଜର ଅଜୟ ସାମନ୍ତଙ୍କ ଟେରାକୋଟା କାମ ମୋ ସ୍ମରଣରେ ଅଛି । ଛାତ୍ରଥିବା ଅବସ୍ଥାରେ ଟେରାକୋଟା କାମ ପାଇଁ ସେ ସର୍ବଭାରତୀୟ ପୁରସ୍କାର ପାଇଥିଲା । ତା'ର ଭାରି ନିଠେଇଲା କାମ, ଡ଼ାଳି ଡିଜାଇନ୍, ଗାର ଗୁଣା, ଝଲକା ଆଉ ବିନ୍ଦି ଲଗେଇ ତା କାମ ଗୁଡିକୁ ସେ ବେଳେବେଳେ ଅଳଙ୍କରଣରେ ଭାରାକ୍ରାନ୍ତ କରିଦିଏ ସିନା ତା'ର ମାଟିପ୍ରତି ଅଙ୍ଗୀକାରବଦ୍ଧତା ଥିଲା । ଆମ କଲେଜରୁ ପାଠ ସାରି ଭୁବନେଶ୍ୱର ଖୋର୍ଦ୍ଧାରୋଡ଼ କଡ଼େ ଥିବା ତା ଭାଇର ବିକଳ ଢ଼ାବାରେ ଟେରାକୋଟା କାମର ଶାଳଟିଏ ଖୋଲିଲା । ବ୍ରହ୍ମପୁର ଗଲାବେଳେ ମୁଁ ଖାସ୍ କାମ ଦେଖିବା ପାଇଁ ଢ଼ାବାରେ ଓହ୍ଲାଏ । ତା କାମରେ ଅଧାପେଟ ପୂରିଯାଏ, ଆଉ ଆଳୁ ପରଟା ଓ ବସାଦହିରେ ଆଉ ଅଧକ ଭରିଯାଏ । ମୁଁ କେତେ ଆଶା କରିଥିଲି ଓମ୍ ପ୍ରକାଶ ଜୈନଙ୍କ ଭଳି ସଂଗ୍ରହାଳୟଟିଏ ଅଜୟ ଗଢ଼ିପାରିବ । ସିଏ ଭଲ ଓଡ଼ିଶୀ ନୃତ୍ୟ ବି କରୁଥିଲା, ଛଉ ମଧ୍ୟ ଶିଖୁଥିଲା । ମୁଁ ଅଜୟର ଶୈଳ୍ପିକ ସାମର୍ଥ୍ୟକୁ ନେଇ ବହୁ ସ୍ୱପ୍ନ ଦେଖିଥିଲି । ସୁଇଜରଲ୍ୟାଣ୍ଡର ଗୋଟିଏ ଇଣ୍ଡୋ-ସୁଇସ୍ ଥିଏଟର୍ ସଂସ୍ଥାରେ ଅଭିନେତା ଭାବେ କାମ କରିବା ପାଇଁ ମୁଁ ସୁଯୋଗଟିଏ ଜୁଟେଇ ଦେଇଥିଲି । କ'ଣ ହେଲା କେଜାଣି ସବୁ ଓଲଟପାଲଟ ହେଇଗଲା । ଶେଷରେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ଜଣେ ସାଧାରଣ ଗୁମାସ୍ତା ଭୂମିକାରେ ଏବେ ତାକୁ ଦେଖିବାକୁ ମନ କହୁନି ।

କାଳୀ କିଙ୍କର ଦେ, ଶୋଭନ କୁମାର ଓ ଜଗନ୍ନାଥ ପଣ୍ଡା ମଧ୍ୟ ଚମତ୍କାର ଟେରାକୋଟା କାମ କରୁଥିଲେ । କଲେଜର ବାର୍ଷିକ ପ୍ରଦର୍ଶନୀକୁ ଥୀମ୍ କରି କାଳୀ କିଙ୍କର ଦେ ଗୋଟିଏ ଟେରାକୋଟା କୋଲାଜ କରିଥିଲା । ସେହି କାମଟି ପାଇଁ ସେ ଷଷ୍ଠ ବାର୍ଷିକ ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲା । ଶୋଭନ ଟେରାକୋଟାକୁ ଆଧୁନିକ ବାଗରେ ବେଶ୍ ପ୍ରକାଶ କରିପାରେ । ସେ ଆମ କଲେଜରୁ ଉତ୍ତୀର୍ଣ୍ଣ ହେଲାପରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ର ହେଲା । ତା'ପରେ ଟେରାକୋଟା କାମରେ ତାର ଦକ୍ଷତା ବଢ଼ିଗଲା । ସେ ଟେରାକୋଟାର ଗୋଟିଏ କବାଟ, ଦୁଆରବନ୍ଧ ଓ ତା'ରି ଆଗରେ ବିଭିନ୍ନ ଜୋତାଗୁଡ଼ିକର ସମାହାର ପ୍ରଦର୍ଶନ କରି ଘର ଭିତରେ ଗୁରୁତର ଆଲୋଚନା ହେଉଥିବାର ଆଭାସ ଦେଇପାରିଥିଲା । ପୁଣି 'ବିଅଣ୍ଡ ଦି ସୋର୍ସ୍' ପ୍ରଦର୍ଶନୀରେ ଟେରାକୋଟାର

Digitized by srujanika@gmail.com

ପ୍ରୟୋଗରେ 'ପୁରୀକୁ ରାସ୍ତା' ଇନଷ୍ଟଲେସନ୍ ଓ ମୁସଲମାନଙ୍କ ନମାଜ ପଢ଼ାର ଟେରାକୋଟା ଇନ୍‌ଷ୍ଟଲେସନ୍ ଆଧୁନିକ ଟେରାକୋଟା ଶିଳ୍ପର ଚମତ୍କାର ନମୁନା ।

ବିଗତ ଶତାବ୍ଦୀର ଅଶିଦଶକର ଶେଷଭାଗରେ ସଂଯୁକ୍ତା ପାଣିଗ୍ରାହୀ ଭୁବନେଶ୍ୱର ରେଲଷ୍ଟେସନ ପାଖ ଝୁନ୍‌ଝୁନ୍‌ୱାଲା ବଗିଚା କଡ଼ରେ ନିଜର ଘର ତିଆରି କଲେ । ଘରର ସୌନ୍ଦର୍ଯ୍ୟକରଣ କରିବାକୁ ମୋ ସାଙ୍ଗରେ ପରାମର୍ଶ କଲେ । ଘର ସାମନାପଟ କାନ୍ଥରେ ଗୋଟିଏ ଟେରାକୋଟା ମ୍ୟୁରଲ୍ ଖଞ୍ଜିବା ପାଇଁ ମୁଁ କହିଲି । ମ୍ୟୁରଲ୍‌ର ଥୀମ୍ ଥିଲା ଓଡ଼ିଶୀ ନୃତ୍ୟ । ଆମ କଲେଜର ଆର୍ତ୍ତବନ୍ଧୁ ରାଉତ ତାଙ୍କ ଜୁନିୟର୍ ପିଲାଦଳ ନେଇ ଝୁନ୍‌ଝୁନ୍‌ୱାଲା ବଗିଚାରେ ପହଞ୍ଚିଲା । ସେଠି ଟେରାକୋଟା ପାଇଁ ମାଟିରେ ଟାଇଲ୍ ଗଢ଼ା ହେଲା । ସେଠି ଭାଟିରେ ପୋଡ଼ାହେଲା । ସଂଯୁକ୍ତା ନାନୀ ଆଉ ରଘୁଭାଇନାଙ୍କ ଏଠି ଗୋଟିଏ ଗୋଡ଼ ହେଲେ ବିଦେଶରେ ଆଉ ଗୋଟିଏ ଗୋଡ଼ । କାନ୍ଥରେ ଖଞ୍ଜାହେବ, ଏଇ ହେଉଛି, ଏମିତି ହେଇ ହେଇ ଦିନ ଗଡ଼ିଲା । ଆର୍ତ୍ତ ଶେଷରେ କଲେଜ ପାଠ ପଢ଼ାସାରି ଅହମ୍ମଦାବାଦ ଚାଲିଲା । ମୁଁ ଯେତେଥର ସଂଯୁକ୍ତା ନାନୀଙ୍କୁ ମ୍ୟୁରଲ୍ କଥା ପଚାରିଛି, କାନ୍ଥରେ ଲଗାଇବା କଥାକୁ ନେଇ ସେ କେବେ ମନା କରିନାହାନ୍ତି । ଶେଷରେ ସିଏ ଅସୁସ୍ଥ ହେଇ ପଡ଼ିଲେ ଆଉ ଅକାଳରେ ଚାଲିଗଲେ । ଟେରାକୋଟା ମ୍ୟୁରଲ ଅପୂର୍ଣ୍ଣ ରହିଲା ।

ଦେବରାଜ କଲେଜରେ ବେଶିଦିନ ଅଧ୍ୟାପକ ହେଇ ରହିପାରିଲେନି । ପବ୍ଲିକ୍ ସର୍ଭିସ୍ କମିଶନ୍ ତାଙ୍କ ନିଯୁକ୍ତି କାଏମ କଲେନାହିଁ । ସେ କିନ୍ତୁ ଆମ କଲେଜ ଛାଡ଼ିଲା ପରେ ଟେରାକୋଟାକୁ କାରୁଶିଳ୍ପ ଭାବେ ବେଶି ବେଶି ବ୍ୟବହାର କଲେ । ସେଥିରୁ ଆଧୁନିକତାର ସମ୍ବେଦନ ଓ ସୃଜନଶୀଳତା ତ ହଟିଗଲା, କାଳକ୍ରମେ ତାହା ବୃଥା ଅଳଙ୍କରଣରେ ଭାରାକ୍ରାନ୍ତ ହେଇଗଲା । ସେଥିରେ ଶୈଳୀଗତ ଶୁଦ୍ଧତା ରହିଲାନି, ଓଡ଼ିଆପଣ ସୁଦୂରପରାହତ ହେଇପଡ଼ିଲା । ଏସବୁ ସତ୍ତ୍ୱେ ପରିଣତ ବୟସରେ ବି ଦେବରାଜ ଟେରାକୋଟାକୁ ପାଥେୟ କରି ବଂଚିରହିଛନ୍ତି ।

Digitized by srujanika@gmail.com

## ୨୦. ଶିବ ସାର୍ ଓ ବି.ଏଚ.ୟୁ. ବା 'ଭୁ' ର ପ୍ରକୋପ

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ବି.ଏଚ୍.ୟୁ. ବା ଆମ କଲେଜ ପିଲାଏ ପରିହାସରେ କହୁଥିବା 'ଭୁ' ପ୍ରସଙ୍ଗ ପଛକୁ ଥାଉ, ଆଗେ ଆମେ କହିବା ଶିବ ପାଣିଗ୍ରାହୀଙ୍କ କଥା । ଶିବ ପାଣିଗ୍ରାହୀ ବା ଶିବ ସାର୍ ଗେଡ଼ା ଲୋକ, ମୁଣ୍ଡରେ ଭରପୂର ଘଞ୍ଚ କଳା ବାଳ, ଆଜିଯାଏଁ ସତଷଠି ଅଠଷଠିରେ ପହଞ୍ଚିଲା ପରେ ମଧ୍ୟ ପତ୍ରଝଡ଼ା ଦେଇନି କି ରଙ୍ଗର ମଧ୍ୟ ପରିବର୍ତ୍ତନ ହେଇନି । ଆମର ସମସାମୟିକ ତିନିଜଣ ଶିକ୍ଷାବନ୍ଧୁ ଚନ୍ଦ୍ରଶେଖର ରାଓ, ଡି.ଏନ୍.ରାଓ ଓ ଶିବ ପାଣିଗ୍ରାହୀଙ୍କ ମୁଣ୍ଡବାଳ ସାଙ୍ଗରେ ବୟସର କୌଣସି ସଂପର୍କ ନାହିଁ । ଡି.ଏନ୍.ରାଓ ବାଳର କଳାଧଳା ବୈଷମ୍ୟକୁ ନେଇ ଶିବ ସାର୍‌ଙ୍କୁ ଦୋଷ ଦିଅନ୍ତି । ଅବଶ୍ୟ ଡି.ଏନ୍.ରାଓଙ୍କର ମୁଣ୍ଡଟି ସମ୍ପୂର୍ଣ୍ଣ ଚନ୍ଦା, ଏଣୁ ବାଳ କଳା କରିବାର ପ୍ରୟାସଟି ସହସା ଧରା ପଡ଼ିଯାଏ । ଥରେ ଶିବ ସାର୍ ଛନ୍ଦା ଆଚାର୍ଯ୍ୟ, ଡି.ଏନ୍.ରାଓ ଓ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପରୀକ୍ଷକ ଭାବେ ନିଯୁକ୍ତି ପାଇଥିବାରୁ ମିଳିତ ଭାବେ ଟ୍ୟାକ୍‌ସିଟିଏ ଭଡ଼ା କରି ସମ୍ବଲପୁର ଯାଉଥାଉ । ବାଟରେ ଗାଡ଼ି ରଖି ଝାଡ଼ାଝପଟ ଯାଇ ଗାଧୋଇବା ଆବଶ୍ୟକ ହେଲା । ରାସ୍ତାରେ ଏଭଳି ଗୋଟିଏ ପରିସ୍ଥିତି ଘଟିପାରେ ବୋଲି ଅନୁମାନ କରି ଶିବ ସାର୍ କ'ଣ ଯାଦୁ କରିଥିଲେ କେଜାଣି, 'ବାଳ କଳାକରିବା ପାଇଁ ମୁଁ ମୁଣ୍ଡରେ କଳା ଲଗାଏ ନାହିଁ' କହିବା ପାଇଁ ଜାଣିଶୁଣି ତାଙ୍କର ଛାତିର ବାଳ ପ୍ରତି ଜୋର ଜବରଦସ୍ତି ଆମ ଦୃଷ୍ଟି ଆକର୍ଷଣ କରେଇଲେ । ବଡ଼ ଆଚମ୍ବିତ କଥା ଶିବ ସାର୍‌ଙ୍କ ଛାତିର କଳା ବାଳର ଖିଅଟିଏ ହେଲେ ପାଚି ନଥିଲା । ଏଇଥିରୁ ସିଏ ନିଜ ଚେହେରା ସଂପର୍କରେ କେତେ ସଚେତନ ଅନୁମାନ କରିହେବ ।

ଶିବ ସାର୍ ନିଜ ପୋଷାକ ପରିଚ୍ଛଦ ପ୍ରତି ମଧ୍ୟ ବିଶେଷ ଯତ୍ନବାନ୍ । ସେ ବାରିପଦା ଲୋକ ହେଇଥିଲେ ମଧ୍ୟ ତାଙ୍କ ବେଶଭୂଷାରୁ କଟକୀ ଢ଼ଙ୍ଗ ବାରିହେଇ ପଡୁଥିଲା । ଶିବ ସାର୍ ସବୁବେଳେ କଲେଜ ସମୟ ଆଗରୁ ହାତରେ ବ୍ରିଫ୍‌କେଶ୍ ଧରି କଟକରୁ ବସ୍‌ଯୋଗେ ପହଞ୍ଚି ଯାଉଥିଲେ । ସେ କେବଳ ସମୟାନୁବର୍ତ୍ତୀ ନଥିଲେ, ଥିଲେ ବିଶ୍ୱସ୍ତ ଓ କଲେଜପ୍ରତି ଅନୁରକ୍ତ । ସେ ମୋ'ଠାରୁ ବୟସରେ ଛୋଟ କିନ୍ତୁ ଖଲ୍ଲିକୋଟରେ ମୋ ଉପର କ୍ଲାସରେ ପଢୁଥିବାରୁ ମୁଁ ପ୍ରତି କଥାରେ ତାଙ୍କୁ ଯଥୋଚିତ ସମ୍ମାନ ଦେଉଥିଲି । ମୁଁ ସ୍କୁଲରେ ଅନୁପସ୍ଥିତ ରହୁଥିଲେ ସିଏ ହିଁ ଅଧ୍ୟକ୍ଷ ଦାୟିତ୍ୱ ତୁଲାଉଥିଲେ ।

Digitized by srujanika@gmail.com

ଦ୍ୱିତୀୟ ମହଲାରେ ଥିବା ତୈଳଚିତ୍ର ବିଭାଗ ସଂଲଗ୍ନ ଗୋଟିଏ ସ୍ୱତନ୍ତ୍ର ବଖରାରେ ସିଏ ଥାଟବାଟରେ ବସୁଥିଲେ । ଦିନେ ଦିନେ ଘରୁ ଭଲ ଜଳଖିଆ ଆଣିଥିଲେ ସିଏ ମତେ ଡକେଇ ପଠାଉଥିଲେ ଓ ମୁଁ ଘଣ୍ଟାଛୁଟିରେ ତାଙ୍କଠି ପହଞ୍ଚିଯାଉଥିଲି । ଶିବ ସାର୍ ବେଶ ମଉଜିଆ କଥା କହନ୍ତି । କଥାରେ ଲଥା ଯୋଖା ହେଉଥାଏ । ବେଳେବେଳେ ତାଙ୍କର କେତେକ କଥା ପ୍ରତି ପ୍ରତ୍ୟୟ ଯାଉ ନଥିଲେ ମଧ ସଂଭ୍ରମ ଦୃଷ୍ଟିରୁ ଆମେ ଗ୍ରହଣ କରିନେଉଥିଲୁ ।

ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନରେ ଛାତ୍ରାବସ୍ଥାରୁ ମଧ ଆମେ ମିଳିମିଶି କାମ କରିଥିବାରୁ ଐକିକ ଅନୁଭୂତି ଉଭୟଙ୍କର ନିଜସ୍ୱ ହେଉଥାଏ । ଓଡ଼ିଶା ଲଳିତ କଳା ଏକାଡେମୀର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀରେ ଶିବ ପାଣିଗ୍ରାହୀ ଆଧୁନିକ ଚିତ୍ରକଳାରେ ପୁରସ୍କାର ପାଇଥିଲେ ଓ ମୁଁ ତୈଳଚିତ୍ରରେ ପୁରସ୍କୃତ ହେଉଥିଲି । ଶିବ ପାଣିଗ୍ରାହୀ ମୋ ସମ୍ବର୍ଦ୍ଧନା ଗ୍ରନ୍ଥ 'ବାଙ୍‌ମୟ ଚିତ୍ରପଟ' ପାଇଁ ଦେଇଥିବା ଗୋଟିଏ ଲେଖାରେ ସ୍ୱୀକାର କରିଛନ୍ତି ଯେ ସେ ଆଧୁନିକ ଚିତ୍ରକଳାରେ ପ୍ରଥମେ ପୁରସ୍କୃତ ହୋଇଥିବାରୁ ଭାବିଥିଲେ ଯେ ଆଧୁନିକ ଚିତ୍ରବିଦ୍ୟାରେ ମୋତେ ଟପିଯିବେ; ତାହା ତାଙ୍କ ଜୀବନରେ ସମ୍ଭବ ହେଲାନାହିଁ । କାରଣ କସ୍ମିନ୍ କାଳେ ପୁରସ୍କାର ପ୍ରତିଭାର ସ୍ୱୀକୃତି ନୁହେଁ ଏବଂ ପୁରସ୍କାରକୁ ଆଳ କରି ଚିତ୍ରବୃତ୍ତିର ବିକାଶ ଆକଳନ କରାଯାଇପାରେନା ।

ଆଧୁନିକ ଚିତ୍ରକଳାଠାରୁ ବଳି ଶିବ ସାର୍‌ଙ୍କ ଅନ୍ୟ ଗୋଟିଏ ପରିଚୟ ଅଛି । ତାହା ହେଲା ତାଙ୍କ ପ୍ରଚ୍ଛଦଚିତ୍ର । ସେ ବହୁ ବିଶିଷ୍ଟ କବି ଓ ଲେଖକଙ୍କ ବହିର ମଲାଟ ଅଙ୍କନ କରିଥିବାରୁ ତାଙ୍କ ଲଲାଟରେ ଯଶର ଉଜ୍ଜଳ ରେଖା ସ୍ୱତଃ ଫୁଟି ଉଠିଛି । ଓଡ଼ିଶାରେ ଜଣେ ଶିଳ୍ପୀର କୃତିକୁ ଆକଳନ କରିବା ପାଇଁ କେବଳ ପ୍ରଚ୍ଛଦଚିତ୍ର ଓ ଅଳଙ୍କରଣ ଚିତ୍ରର ସମୀକ୍ଷା କରାଯାଉଥିବାରୁ ପ୍ରଚ୍ଛଦଚିତ୍ର ଆଙ୍କିଲାବାଲା ଓଡ଼ିଶାର ଶ୍ରେଷ୍ଠ ଶିଳ୍ପୀ ତାଲିକାରେ ରହିଆସିଛନ୍ତି । ଏହି କଥାକୁ ଉପଲକ୍ଷ କରି ଶିବ ସାର୍‌ଙ୍କ ଧର୍ମପତ୍ନୀ ତାଙ୍କ ଘରକୁ କିଏ ଅତିଥି ଗଲେ ସୋଫାକୁ, ଡାଇନିଙ୍ଗ୍ ଚେୟାର୍‌କୁ ଦେଖେଇ କହିଥାନ୍ତି, ''ଏଇଠି ତ ସଚ୍ଚି ରାଉତରା ବସିଥିଲେ ଆଉ ଆର କଡ଼କୁ ଯେଉଁ ଚଉକି ଦେଖୁଛନ୍ତି ଏବେ ଜାଗା ଅଭାବରୁ କାନ୍ଥ ଆଡ଼େ ମୁହଁକରି ରଖାହେଇଛି ସେଇଠି ସୁରେନ୍ଦ୍ର ମହାନ୍ତି ବସିଥିଲେ ।'' ଓଡ଼ିଆ ସାହିତ୍ୟର ଏହି ଦୁଇଟି ପ୍ରାତଃସ୍ମରଣୀୟ ନାମ । ସେମାନଙ୍କ କଥା ଶୁଣିଲା ପରେ ସେହି ସୋଫା ଓ ଚଉକିମାନଙ୍କ ତଳୁ ପଦଧୂଳି ନେଇ ମୁଣ୍ଡରେ ମାରିବା ପାଇଁ ଇଚ୍ଛା ହେବ । ପ୍ରଚ୍ଛଦଚିତ୍ର ପାଇଁ ଶିବ ସାର୍ କିଛି ନିର୍ଦ୍ଦିଷ୍ଟ ଢ଼ାଞ୍ଚା ରଖିଥାନ୍ତି ଓ ଚୂନାକୁ ଦେଖି ପିଠା ନ୍ୟାୟରେ ସେହି କେତୋଟି ରୂପକଳ୍ପକୁ ଓଲଟପାଲଟ କରି ବ୍ୟବହାର କରିଥାନ୍ତି ।

Digitized by srujanika@gmail.com

ଗୋଟିଏ ସପ୍ତାହର କେଉଁଦିନ କିଭଳି, କି ରଂଗର ପୋଷାକ ପିନ୍ଧିବାକୁ ହେବ, ତା'ର ଗୋଟିଏ ରଙ୍ଗିନ୍ ଚାର୍ଟ ତିଆରି କରି ଶିବ ସାର୍ ସେଇ ଅନୁଯାୟୀ ପୋଷାକ ପିନ୍ଧୁଥିଲେ । ଆମ ଶିବ ସାର୍ ଜଣେ ସଫଳ ସଂଗଠକ ମଧ୍ୟ । କଟକ ସହରରେ ତାଙ୍କ ଆଦ୍ୟଜୀବନରେ ବାରିପଦାର ରମେଶ ମହାନ୍ତି ଓ ଜଗଦୀଶ କାନୁନ୍‌ଗୋ ପ୍ରଭୃତି ବନ୍ଧୁଙ୍କ ସହିତ ମିଶି ଚାରୁକଳା ପରିଷଦ ଗଢ଼ିଥିଲେ ଓ ଚାରୁକଳା ପରିଷଦ ପକ୍ଷରୁ କିଛି ଚିତ୍ରପ୍ରଦର୍ଶନୀ ଓ ଶିଳ୍ପ ଆଲୋଚନା ଚକ୍ର ଆୟୋଜନ କରିବାରେ ଅନ୍ୟ ବନ୍ଧୁମାନଙ୍କୁ ସେ ସାହଚର୍ଯ୍ୟ ଦେଇଥିଲେ । ଏଣୁ କଲେଜର ବାର୍ଷିକ ଚିତ୍ରପ୍ରଦର୍ଶନୀ ହେଉ, ବାର୍ଷିକ ପରୀକ୍ଷା ହେଉ, ପିଲାଙ୍କ ଆଡ୍‌ମିଶନ୍ ଟେଷ୍ଟ୍ ହେଉ ବା ପରିଭ୍ରମଣ ହେଉ ସବୁଥିରେ ସେ ବିନାଦ୍ୱିଧାରେ ଆଗଭର ହେଇ କାର୍ଯ୍ୟ କରୁଥିଲେ । ଆବଶ୍ୟକ ପଡ଼ିଲେ ବେଳେବେଳେ ସଂଧ୍ୟାରେ କଟକ ନ ଫେରି କଲେଜରେ ହିଁ ରାତ୍ରୀଯାପନ କରୁଥିଲେ । ଏସବୁ ଦୃଷ୍ଟିରୁ ପିଲାଙ୍କ ଧାରଣା ଥିଲା ଶିବ ସାର୍ କଲେଜର ଭାଇସ୍ ପ୍ରିନ୍‌ସିପାଲ୍ ।

ବ୍ୟୋମକେଶ ମହାନ୍ତି କଲେଜରେ ଅଧ୍ୟାପକ ହେଇ ଯୋଗଦେବା ଯାଏଁ ଶିବ ସାର୍ ଚିତ୍ରକଳା ବିଭାଗରେ ନିରଙ୍କୁଶ ସ୍ୱାଧୀନତା ଉପଭୋଗ କରୁଥିଲେ । ବ୍ୟୋମକେଶ ଅଧ୍ୟାପକ ହେଲାପରେ ତାଙ୍କର ସବୁ ଅଙ୍କ କଷା ଅଡୁଆ ହେଇଗଲା । କଲେଜର ଅଧ୍ୟାପକଙ୍କ ମଧ୍ୟରେ ବ୍ୟୋମକେଶଙ୍କ ଶିକ୍ଷାଗତ ଯୋଗ୍ୟତା ସମସ୍ତଙ୍କ ଠାରୁ ବେଶିଥିଲା । ସେ ବନାରସର ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଚିତ୍ରକଳାରେ ସ୍ନାତକୋତ୍ତର କରି ଓଡ଼ିଶା ଫେରିଥିବାରୁ ନିଜର ଭବିଷ୍ୟତକୁ ନେଇ ବହୁସ୍ୱପ୍ନ ଦେଖୁଥିଲେ । ଏବେ ତ ଏମିତି, ପଚିଶି ବର୍ଷତଳେ ଓଡ଼ିଶା ଦେଶରେ ଆଧୁନିକ ଚିତ୍ରକଳାର ଅବସ୍ଥା ବ୍ୟବସ୍ଥା ଯାହା ହେଇଥିବ ସେଥିରେ ଗୋଟିଏ ସ୍ୱପ୍ନଶୀଳ ସୁଯୋଗ ଆଶା କରିବା ବୃଥା । ଏଣୁ ଅଧିକାଂଶ ସମୟରେ ସେ ଘାଏଲା ବାଘଭଳି ଗର୍ଜନତର୍ଜନ କରୁଥିଲେ ଏବଂ ଏକା ଗୁମ୍ଫାରେ ଦୁହେଁ ବସବାସ କରୁଥିବାରୁ ଶିବ ସାର୍ ବ୍ୟୋମକେଶଙ୍କ ଆକ୍ରୋଶର ପ୍ରଥମ ଶିକାର ହେଉଥିଲେ ।

ବ୍ୟୋମକେଶ ଶିବ ପାଣିଗ୍ରାହୀଙ୍କୁ ଅସମ୍ମାନ ବ୍ୟବହାର ଦେଖାଉଥିଲେ କହିବା ଅସଂଗତ ହେବ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକଲ କଲେଜରେ ବ୍ୟୋମକେଶଙ୍କ ପିତା କୃପାସିନ୍ଧୁ ମହାନ୍ତିଙ୍କ ସହ ଶିବ ପାଣିଗ୍ରାହୀ ମଧ୍ୟ ଏକାଭଳି ବୃତ୍ତିଧାରୀ ଥିବାରୁ ସେ ଶିବ ପାଣିଗ୍ରାହୀଙ୍କୁ ଜଣେ ବରିଷ୍ଠ ଶିଳ୍ପୀର ସମ୍ମାନ ଦେଉଥିଲେ । ମୁଁ ଆଜିଯାଏଁ ବ୍ୟୋମକେଶଙ୍କୁ ଭଲଭାବେ ଚିହ୍ନି ପାରିନାହିଁ । ଅତ୍ୟନ୍ତ ଦୁଃଖର କଥା ଏଇ ଦୁଇତିନି ବର୍ଷ ତଳେ ତାଙ୍କର ଦେହାନ୍ତ ହୋଇଯାଇଛି । ମୁଁ ତାଙ୍କ ସଂପର୍କରେ ଏତିକି କହିପାରିବି ଯେ ସିଏ ଜଣେ ଭଲ ଚିତ୍ରଶିଳ୍ପୀ ଏବଂ ଓଡ଼ିଶାର ବହୁ ନୂଆ ପୁରୁଣା ଶିଳ୍ପୀଙ୍କ ଠାରୁ ଯୋଗ୍ୟତାରେ ଅଧିକ । ବ୍ୟୋମକେଶ ଆମ କଲେଜରେ ସଫ୍‌ଟ୍ ବ୍ରସ୍ କାମ ପିଲାଙ୍କୁ ଶିଖେଇଥିଲେ । ବ୍ରସ୍ ଚାଳନାର

Digitized by srujanika@gmail.com

ବାଗ ତାଙ୍କୁ ଜଣା ଓ ତାଙ୍କ ଛବିରେ ଚିତ୍ରାଙ୍ଗିର ଝଲକ ପାଇହୁଏ । ତାଙ୍କ ସାଂଗଠନିକ କ୍ଷମତା ଯଥେଷ୍ଟ ବେଶି, ଭଲରେ ହେଉ, ଭେଲରେ ହେଉ ସେ ପିଲାଙ୍କୁ ତାଙ୍କ ଆଦର୍ଶରେ ମତେଇ ଦେଇପାରନ୍ତି । ତାଙ୍କ ବ୍ୟକ୍ତିତ୍ୱର ସବୁଠାରୁ ଦୁର୍ବଳ ଦିଗ ହେଲା ଅନିୟମିତତା ଓ ଭାବପ୍ରବଣତା । ବୁଝିହେଉଛି ଜଣେ ଶିଳ୍ପୀର ଭାବ ନ ରହିଲେ ସେ ଶିଳ୍ପୀ ପଦବାଚ୍ୟ ନୁହେଁ । ତଥାପି ଭାବପ୍ରବଣତା ସାମୂହିକ ନୀତି ନିୟମକୁ ପ୍ରତିହତ କଲେ କୌଣସି କାର୍ଯ୍ୟରୁ ସୁଫଳ ମିଳେନାହିଁ । ଆମେ ଊଣା ଅଧିକେ ସମସ୍ତେ ଆବଶ୍ୟକସ୍ଥଳେ ମିଛ ସତ କହୁ, ଏଣୁ କେବଳ ବ୍ୟୋମକେଶ ମିଛ କହନ୍ତି ଏ କଥାର କୌଣସି ଅର୍ଥ ନାହିଁ । ବ୍ୟୋମକେଶ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ସମ୍ବାଦପତ୍ରିକାର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକଙ୍କ ସହପାଠୀ ବୋଲି ତାଙ୍କ ତୁଣ୍ଡରୁ ବହୁବାର ଶୁଣିଛି । ବନାରସରୁ ଓଡ଼ିଶା ଫେରି ସେ ନବଗଠିତ ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେବାପାଇଁ ଚାହିଁଥିଲେ । ସେତେବେଳେ ତାଙ୍କ ସଂପର୍କରେ ବହୁ କଥା ଅକଥା ଶୁଣାଯାଉଥିଲା । ତାଙ୍କ ବିରୁଦ୍ଧରେ ଏଭଳି କୁଷାରଟନାର କିଏ ସୂତ୍ରଧର ଥିଲା ଜଣାନାହିଁ । କୁହାଯାଉଥିଲା ବ୍ୟୋମକେଶ ପକେଟ୍‌ରେ ପିସ୍ତଲଧରି ବୁଲୁଛନ୍ତି ଏବଂ କୌଣସି ପ୍ରସଙ୍ଗ ଆଲୋଚନା ବେଳେ ପରିସ୍ଥିତି ତାଙ୍କ ପ୍ରତି ଅନୁକୂଳ ନହେଲେ ସେ ରାମପୁରିଆ ଛୁରୀକୁ ଗୋଜବାଗରେ ଟେବୁଲ ଉପରେ ମାରିଦେଇ ତାଙ୍କ ମତାମତକୁ ସମ୍ମାନ କରୁନଥିବା ପ୍ରତିପକ୍ଷର ଲୋକଙ୍କ ହୃଦୟରେ ଛନକା ପଶେଇ ଦେଉଛନ୍ତି । ଏଭଳି କଥା ଶୁଣିଲା ପରେ କେଉଁ ଅଧ୍ୟକ୍ଷ ଅବା ତା କଲେଜରେ ଏମିତି ଜଣେ ଅଧ୍ୟାପକ ରହନ୍ତୁ ବୋଲି ଚାହିଁବ ! ବ୍ୟୋମକେଶଙ୍କ ମାମୁଁପୁଅ ଭାଇ ସାମ୍ବାଦିକ ଓ ଲେଖକ ବସନ୍ତ ଦାସ ବ୍ୟୋମକେଶ ଅଧ୍ୟାପକ ଭାବେ ଆମ କଲେଜରେ ଯୋଗଦେବା କଥା ମୋତେ ଅନେକଥର ପ୍ରସ୍ତାବ ଦେଇଥିବେ କିନ୍ତୁ ସବୁଥର ମୋ ପାରୁପର୍ଯ୍ୟନ୍ତ ଆମ କଲେଜରେ ତାଙ୍କ ପ୍ରବେଶକୁ ମୁଁ ପ୍ରତିହତ କରିଛି । ଏଇଥିପାଇଁ ସେ ମୋ ଉପରେ ଆକ୍ରୋଶ ରଖିବା ସ୍ୱାଭାବିକ ।

ମୁଁ ଭାରତ ଉତ୍ସବ କାମରେ ମସ୍କୋ ଯାଇଥାଏ, ବସନ୍ତ ଦାସ ସଂସ୍କୃତି ସଚିବ ସମର ବଲ୍ଲଭ ମହାପାତ୍ରଙ୍କୁ କୁହାପୁଛା କରି ଆଡ୍‌ହକ୍‌ରେ ବ୍ୟୋମକେଶଙ୍କୁ ଆମ କଲେଜରେ ଭର୍ତ୍ତି କରିଦେଲେ । ମୁଁ ମସ୍କୋରୁ ଫେରିଲା ପରେ ଅଧ୍ୟାପକ ବ୍ୟୋମକେଶଙ୍କ ସହିତ କଲେଜରେ ମୋର ପ୍ରଥମ ଭେଟ ହେଲା । ସିଏ ଜାଣିଥିଲେ ମୋର ସମସ୍ତ ଅନିଚ୍ଛାସତ୍ତ୍ୱେ ସେସବୁ ପ୍ରତିବନ୍ଧକକୁ ଅତିକ୍ରମ କରି କଲେଜରେ ଯୋଗ ଦେଇପାରିଛନ୍ତି । ବସନ୍ତ ବାବୁ ମୋର ଘନିଷ୍ଠ ବନ୍ଧୁ, ଏଣୁ ମୋ ବିରୁଦ୍ଧରେ ଓ କଲେଜ ବିରୁଦ୍ଧରେ କିଛି ଅପ୍ରୀତିକର କାର୍ଯ୍ୟ ନ କରିବା ପାଇଁ ବ୍ୟୋମକେଶଙ୍କୁ ସତର୍କ କରିଦେଇଥିଲେ । ବ୍ୟୋମକେଶଙ୍କ ପ୍ରତି ମୋର ଉଦାସୀନ ମନୋଭାବର ସୁଯୋଗ ନେଇ ଆମର ଅନେକ ବରିଷ୍ଠ ଶିକ୍ଷୀ ତାଙ୍କର ମୁଣ୍ଡ

Digitized by srujanika@gmail.com

ବିଗାଡ଼ିବା ପାଇଁ ଚେଷ୍ଟା କରିଥିବାର ବହୁ ଦୃଷ୍ଟାନ୍ତ ଅଛି । ବ୍ୟୋମକେଶ ସେମାନଙ୍କ ମନ୍ଦ ପ୍ରଭାବରେ ପ୍ରଭାବିତ ହୋଇ କଲେଜ ପ୍ରତି ଅମନଯୋଗୀ ହେଲେ ମୁଁ ବସନ୍ତ ଦାସ, କଟକର ଗିରିଜା ଭୂଷଣ ପଟ୍ଟନାୟକ ଓ ଡ଼ାକ୍ତର ଜେ.ପି. ଦାସଙ୍କ ସହିତ ପରାମର୍ଶ କରେ । ସେମାନେ କହନ୍ତି ସେଟା ଗୋଟିଏ ବଦ୍ଧ ପାଗଳ, ତା କଥା ଧରାକ କରିବନି ।

ଶିବ ସାର୍‌ଙ୍କ ପାଖରେ ବ୍ୟୋମକେଶଙ୍କ ବେଶି ପାଗଳାମି ବାହାରେ । ବ୍ୟୋମକେଶ ଅଧ୍ୟାପକ ହୋଇ ଯୋଗ ଦେଲାପରେ ଗୋଟିଏ ଅଫିସ୍ ରୁମ୍‌ରେ ଦୁଇଟି ଚଉକି, ଦୁଇଟି ଟେବୁଲ୍ ପଡ଼ିଲା, ଭାଇଭାଗ ଭଳି ବଖରାଟି ଦି'ଭାଗ ହେଲା । ଶିବ ସାର୍ ଟଏଲେଟ୍ ଓ ୱାସ୍ ବେସିନ୍‌କୁ ସଦାବେଳେ ଫିନ୍ ଫିନ୍ କରି ରଖିଥିଲେ, ବ୍ୟୋମକେଶଙ୍କ ଜର୍ଦ୍ଦାପୂର୍ଣ୍ଣ ପାନ ଓ ବନାରସିଆ ଖଇନି ସେଗୁଡ଼ିକୁ ରଙ୍ଗବେରଙ୍ଗ କରିପକେଇଲା । ଦିନାକେତେ ଦୁଇଜଣଙ୍କ ମଧ୍ୟରେ ନାମଫଳକକୁ ନେଇ କନ୍ଦଳ ଲାଗିଲା । ନାମଫଳକଗୁଡ଼ିକ ଦିନକୁ ଦିନ ସାଇଜ୍‌ରେ ବଢ଼ ହୋଇ ହୋଇ ସାଇନ୍‌ବୋର୍ଡ଼ ପର୍ଯ୍ୟାୟରେ ପହଞ୍ଚିଲା । ପୁଣି ବିଭାଗର କିଏ ମୁଖ୍ୟ ତାକୁ ନେଇ କଜିଆ ହେଲା । କଲେଜରେ କୌଣସି ଅଧ୍ୟାପକ 'ହେଡ୍ ଅଫ୍ ଡିପାର୍ଟ୍‌ମେଣ୍ଟ' ଲେଖି ନାମଫଳକ ଝୁଲେଇ ପାରିବେନି ବୋଲି ମୋତେ 'ନିର୍ଦ୍ଦେଶନାମା' ଜାରି କରିବାକୁ ପଡ଼ିଲା । ମୋର ନାମଫଳକ ସଉକ୍ କେବେହେଲେ ନଥିଲା । ତଥାପି ମୋତେ ଚିହ୍ନିବା ପାଇଁ ଅତିଥିଙ୍କୁ ଓ ଅଭିଭାବକଙ୍କୁ କେବେ ବି କଷ୍ଟ କରିବାକୁ ପଡ଼ିନି । ଷ୍ଟୁଡ଼ିଓରେ ପିଲାମାନଙ୍କ ଆଗରେ ଚିତ୍ର ଡିମନ୍‌ଷ୍ଟ୍ରେସନ୍ ଦେଖେଇବାରେ ବ୍ୟୋମକେଶ କାର୍ପଣ୍ୟ କରୁନଥିଲେ । ବରଂ ତାହାଥିଲା ଶିକ୍ଷକ ଭାବେ ବ୍ୟୋମକେଶଙ୍କ ଗୋଟିଏ ସଫଳ ପ୍ରୟାସ । ଏ ଦିଗରେ ବ୍ୟୋମକେଶଙ୍କ ଠାରୁ ପଛରେ ପଡ଼ିଯିବା ଭୟରେ ଶିବ ସାର୍ ତାଙ୍କ ବସିବା ରୁମ୍ ଭିତରେ ଛୋଟମୋଟ ଛବି ନିଜେ କରି ପିଲାଙ୍କୁ ଦେଖାଇ ଦେଉଥିଲେ । ଶିକ୍ଷକତାର ଅନେକ ପର୍ଯ୍ୟାୟରେ ଶିବ ସାର୍ ବ୍ୟୋମକେଶଙ୍କ ଆଗରେ ସଂଭ୍ରମି ଯାଉଥିଲେ । ମୋର ଜ୍ୟେଷ୍ଠ ଦୃଷ୍ଟିରୁ ଶିବ ସାର୍‌ଙ୍କ ମନଖୁସୀ କରିବା ପାଇଁ ମୁଁ ଅଧକ୍ଷପଣ ପ୍ରୟୋଗ କରି ତାଙ୍କୁ ଦୁରବସ୍ଥାରୁ ଉଦ୍ଧାର କରୁଥିଲି । ତୈଳଚିତ୍ର ଷ୍ଟୁଡିଓରେ ପଶିଯାଇ ବେଳେବେଳେ ମୁଁ ପିଲାମାନଙ୍କୁ ଡିମନ୍‌ଷ୍ଟ୍ରେସନ୍ ଦେଖେଇ ଦେଉଥିଲି, ଏଇଥି ପାଇଁ ଯେ ପିଲାଙ୍କ ଧାରଣା ନ ହେଉ ଖଲ୍ଲିକୋଟିଆ ମାନେ ଅନ୍ୟମାନଙ୍କ ସାଙ୍ଗରେ ଟକ୍କର ଦେଇପାରନ୍ତିନି । ମୁଁ ଖଲ୍ଲିକୋଟରେ କଳାଶିକ୍ଷା କରିଥିଲେ ମଧ୍ୟ ମାନସିକତାରେ ଖଲ୍ଲିକୋଟିଆ ନଥିଲି, ତଥାପି ଅବଲୀଳାକ୍ରମେ ମୁଁ ଖଲ୍ଲିକୋଟିଆଙ୍କ ସାଙ୍ଗରେ ଏକ ହୋଇଯାଉଥିଲି ।

ଶିବ ପାଣିଗ୍ରାହୀ ଓ ବ୍ୟୋମକେଶ ମହାନ୍ତି ଏକାସାଙ୍ଗରେ ଲୋକସେବା ଆୟୋଗରେ ସାକ୍ଷାତକାର ଦେଇଥିଲେ । ମୁଁ ସରକାରଙ୍କ ପ୍ରତିନିଧି ଭାବେ ବିଚାରକ ମଣ୍ଡଳୀରେ ବସିଥାଏ । ମୁରଲୀଧର ଟାଲି ଏକସ୍‌ପାର୍ଟ୍ ଥାଆନ୍ତି । ବ୍ୟୋମକେଶଙ୍କ ଯୋଗ୍ୟତା ଶିବଙ୍କ ଠାରୁ ବେଶି

Digitized by srujanika@gmail.com

ହୋଇଥିବାରୁ ସେ ବ୍ୟୋମକେଶଙ୍କୁ ହିଁ ଅଧ୍ୟାପକ ପଦବୀରେ ମନୋନୀତ କଲେ । ଏଭଳି ନିଷ୍ପତ୍ତିକୁ ବିରୋଧ କରିବା ପାଇଁ ମୋ ପାଖରେ ଯୁକ୍ତି ନଥିଲା । ବ୍ୟୋମକେଶ ସାକ୍ଷାତକାରରେ କୃତକାର୍ଯ୍ୟ ହେଲେ ।

ଯେହେତୁ ଲୋକସେବା ଆୟୋଗ ବ୍ୟୋମକେଶଙ୍କୁ ଅଧ୍ୟାପକ ପାଇଁ ପ୍ରଥମେ ମନୋନୀତ କରିଥିଲା ସିଏ ଶିବ ପାଣିଗ୍ରାହୀଙ୍କ ଠାରୁ ସିନିଅର୍ ଓ ମୁଁ ଅଧ୍ୟକ୍ଷଭାବେ ତାଙ୍କ ସିନିଅର୍‌ଟି ଗ୍ରହଣ କରୁନି ବୋଲି ବ୍ୟୋମକେଶ କ୍ଷୋଭ ପ୍ରକାଶ କରୁଥିଲେ । ସୁପ୍ରିମ୍ କୋର୍ଟ ସିନିଅରିଟି ନିର୍ଧାର୍ଯ୍ୟ କରିବା ପାଇଁ ଆଡ୍‌ହକ୍ ଚାକିରିର ଅବଧିକୁ ମଧ୍ୟ ବିଚାରକୁ ନିଆଯିବ ବୋଲି ରାୟ ଦେଇଥିବାରୁ ଏ ସବୁ ବିପର୍ଯ୍ୟୟ ସତ୍ତ୍ୱେ ଶିବ ପାଣିଗ୍ରାହୀ ହିଁ ସିନିଅର୍ ବୋଲି ବିବେଚିତ ହେଉଥିଲେ । ଶିବ ସାର୍‌ଙ୍କୁ ଅଧ୍ୟାପକ ଚାକିରିରେ ସ୍ଥାୟୀ କରିବା ପାଇଁ ଆଉ ଗୋଟିଏ ଅଧ୍ୟାପକ ପଦବୀ ସରକାରଙ୍କୁ କହି ସୃଷ୍ଟି କରିବାକୁ ପଡ଼ିଲା । ସେ ସଂପର୍କରେ ମୁଁ ଅନ୍ୟତ୍ର ଉଲ୍ଲେଖ କରିଛି ।

ଉପରୋକ୍ତ କାରଣମାନଙ୍କ ଯୋଗୁଁ ବ୍ୟୋମକେଶ ମୋ ଉପରେ ମଧ୍ୟ ଏତେ କ୍ଷୁବ୍ଧ ହୋଇଯାଇଥିଲେ ଯେ ମୋର ଯୋଗ୍ୟତାକୁ ନେଇ ସେ କଲେଜ ବାହାରେ ହାଲୁକା ମନ୍ତବ୍ୟ ପ୍ରକାଶ କରୁଥିଲେ । ଓଡ଼ିଶାର ପାରମ୍ପରିକ ଚିତ୍ରକଳା ଉପରେ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ମୁଁ ପିଏଚ୍.ଡି. ପାଇଥିଲେ ମଧ୍ୟ ତାହା ଇତିହାସ ସଂପର୍କୀୟ ବୋଲି କହି ତାକୁ ନ୍ୟୂନ କରିବାକୁ ଚେଷ୍ଟା କରୁଥିଲେ । ତାଙ୍କର କହିବା କଥା ଆମେ ସବୁ ଖଲ୍ଲିକୋଟିଆ ପୁରୁଣାକାଳିଆ ଆଉ ଡିପ୍ଲୋମାଧାରୀ ଏବଂ ସେ ଏକମାତ୍ର ଏମ୍.ଏ.ବାଲା । ବ୍ୟୋମକେଶ ତ ସବୁବେଳେ ଖାଲ 'ଭୁ' 'ଭୁ' ହେଲେ ଏଣୁ ତାଙ୍କୁ ଯୋଗ୍ୟତା ମାମଲାରେ ଟକ୍କର ଦେବା ପାଇଁ ବିଶ୍ୱଭାରତୀ କଳାଭବନରେ ପ୍ରଫେସର୍ କାଞ୍ଚନ ଚକ୍ରବର୍ତ୍ତୀଙ୍କ ତତ୍ତ୍ୱାବଧାନରେ ମୁଁ କଳା ଇତିହାସରେ ଆଉ ଗୋଟିଏ ପିଏଚ୍.ଡି. ପ୍ରସ୍ତୁତ କଲି । ଭାରତର ପ୍ରଧାନମନ୍ତ୍ରୀ ଓ ଶାନ୍ତିନିକେତନର କୁଳାଧିପତି ନରସିଂହ ରାଓ ରବୀନ୍ଦ୍ର ପରମ୍ପରା ଅନୁସାରେ ଛାତିମ ଗଛର ପତ୍ର ଉପହାର ଦେଇ ପିଏଚ୍.ଡି. ପାଇଥିବା ଛାତ୍ରଛାତ୍ରୀମାନଙ୍କୁ ଶାନ୍ତିନିକେତନ ଶିକ୍ଷା ପରିସରଭୁକ୍ତ କଲେ । ସେହି ଦିନଟି ମୋ ପାଇଁ ସ୍ମରଣୀୟ ହୋଇ ରହିଲା । ମୁଁ ଶାନ୍ତିନିକେତନ ସମାବର୍ତ୍ତନ ଉତ୍ସବରୁ ଫେରି ବ୍ୟୋମକେଶଙ୍କୁ ବଧେଇ ଜଣେଇ, କହିଲି, 'ତମର ଅଶେଷ ଦୟାରୁ କଳା ଇତିହାସରେ ପିଏଚ୍.ଡି. ପାଇ ମୁଁ ଖଲ୍ଲିକୋଟିଆ ଚିତ୍ରଶିଳ୍ପୀମାନଙ୍କୁ ନ୍ୟୂନମନ୍ୟତାରୁ ଉଦ୍ଧାର କରିଦେଇ ପାରିଲି । ବ୍ୟୋମକେଶ ମୋ ଶ୍ଳେଷ ବୁଝିପାରିଲେ । ଏଠି ଉଲ୍ଲେଖ କଲେ ଅସଙ୍ଗତ ହେବନାହିଁ ଯେ ମୁଁ ଏ ଅବଧି ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଚିତ୍ରକଳା କ୍ଷେତ୍ରରେ ପିଏଚ୍.ଡି. ପାଇଥିବା ପ୍ରଥମ ଚିତ୍ର ଶିଳ୍ପୀ ।

Digitized by srujanika@gmail.com

ବ୍ୟୋମକେଶ ଆମ କଲେଜରେ ସଂଗୀତ ଓ ଚିତ୍ରର ଗୋଟିଏ ଯୁଗଳବନ୍ଦୀ ଆୟୋଜନ କରିଥିଲେ । ଏହା ଚିତ୍ରକଳା କ୍ଷେତ୍ରରେ ପ୍ରଥମ ଯୁଗଳବନ୍ଦୀ ଥିଲା । ବ୍ୟୋମକେଶ ତାଙ୍କ ସଂଗୀତଜ୍ଞ ଭାଇ ଓମ୍ ପ୍ରକାଶ ଏବଂ ତାଙ୍କ ଅନ୍ୟାନ୍ୟ ସହଯୋଗୀ ମାନେ ସଂଗୀତ ପରିବେଷଣ ପାଇଁ ବିଭିନ୍ନ ଯନ୍ତ୍ରପାତି ନେଇ କଳ୍ପନା କଲେଜରେ ପହଞ୍ଚିଥିଲେ । ସଂଗୀତ ଆରମ୍ଭ ହେଲା, କଲେଜ ପରିସର ଜନାରଣ୍ୟ ହେଇଗଲା । ଆମେ, ଆଉ ଆମ ଛାତ୍ରଛାତ୍ରୀମାନେ ଇଜଲ୍‌ରେ କାନଭାସ୍ ଲଗେଇ ଚିତ୍ର ଆରମ୍ଭ କରିଦେଲୁ । କେତେଜଣ ଅଧ୍ୟାପକଙ୍କ ଧାରଣା ହେଲା ଯେ ଚିତ୍ର ଓ ସଂଗୀତର ଯୁଗଳବନ୍ଦୀରେ ସଂଗୀତର ତାଳେତାଳେ ନାଚିନାଚି ଚିତ୍ରକରିବାକୁ ହେବ । ଅଧ୍ୟାପକ ପଞ୍ଚାନନ ସୁରଙ୍କ ସେଦିନର ନାଚ ଛାତ୍ରଛାତ୍ରୀ ଓ ଦର୍ଶକମାନଙ୍କୁ ଆମୋଦିତ କରିଦେଇଥିଲା । ଏ ଯୁଗଳବନ୍ଦୀରେ ଅଂଶଗ୍ରହଣ କରି ଶିବ ସାର୍ ମଧ୍ୟ ଅତି ଆନନ୍ଦରେ ଚିତ୍ର ଅଙ୍କନ କରିଥିଲେ ।

ଶିକ୍ଷକ ଭାବରେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ନିଜର ପ୍ରଭାବବିସ୍ତାର ଉଦ୍ଦେଶ୍ୟ ନେଇ ବ୍ୟୋମକେଶ ବିଭିନ୍ନ ସ୍ଥାନରେ ଚିତ୍ରଶିବିରମାନ ଆୟୋଜନ କରାଉଥିଲେ । ଏହି ଶିବିରମାନଙ୍କରେ ପୁଅଝିଅମାନଙ୍କ ଅବାଧ ମିଳାମିଶାର ସୁଯୋଗ ଥିବାରୁ ଏଗୁଡ଼ିକ ବେଶ ଆଦୃତ ହେଉଥିଲା । ଶିବିରର କାର୍ଯ୍ୟକ୍ରମକୁ ନେଇ ରଙ୍ଗିନ ପୁସ୍ତିକା ମଧ୍ୟ ପ୍ରକାଶ ପାଉଥିଲା । ଶିବିର ଆୟୋଜନ ଓ ପୁସ୍ତିକା ପ୍ରକାଶନ ପାଇଁ ଅର୍ଥ ଚାନ୍ଦା କରି ଛାତ୍ର-ଛାତ୍ରୀ ଭରଣା କରୁଥିଲେ । ଉଲ୍ଲେଖଯୋଗ୍ୟ ଯେ କଳାଶିକ୍ଷାରେ ଶିବିରର ପରିକଳ୍ପନା ଆମ କଲେଜ ପକ୍ଷରୁ ପ୍ରଥମ କରି ଆରମ୍ଭ ହେଇଥିଲା । କେବଳ ଚିତ୍ରବୋଲି ନୁହେଁ, ଅନ୍ୟ ଅଧ୍ୟାପକମାନେ ମଧ୍ୟ ଭାସ୍କର୍ଯ୍ୟ, ଗ୍ରାଫିକ୍‌କଳା ଓ ଡ଼ିଜାଇନ୍ ସଂକ୍ରାନ୍ତରେ ଶିବିରମାନ ଆୟୋଜିତ କରୁଥିଲେ । ପଟଚିତ୍ରଶିଳ୍ପୀ ଗୋକୁଳି ବିହାରୀ ପଟ୍ଟନାୟକଙ୍କ ଝିଅ ସଂଗୀତା ଆମ କଲେଜରେ ଚିତ୍ରକଳା ବିଭାଗରେ ଅଧ୍ୟୟନ କରୁଥାଏ । ସେ ଓ ତା'ର ଅନ୍ୟାନ୍ୟ ସାଙ୍ଗଙ୍କ ସହଯୋଗରେ ତାଙ୍କ ଗାଁ ଓଳସିଂହରେ ଚିତ୍ରଶିବିରଟିଏର ବ୍ୟବସ୍ଥା କରିଥିଲା । ବ୍ୟୋମକେଶ ଏହି ଶିବିରର ପରିଚାଳନା କରିଥିଲେ ।

ବ୍ୟୋମକେଶ ବେଳେବେଳେ ନିଜର ଅମନୋଯୋଗିତାରୁ ଅଡୁଆକାମମାନ କରିପକାନ୍ତି । ତାଙ୍କ ସୁପାରିଶରେ କଟକ ସହରର ଦୁଇଜଣ ପିଲା ଆମ କଲେଜରେ ଆଡ୍‌ମିଶନ୍ ନେଲେ । ଚାରିପାଞ୍ଚ ମାସ ଯାଇଛି କି ନାହିଁ ସେ ଦୁଇଜଣ ତାଙ୍କ ଅସଲ ସ୍ୱରୂପ ପ୍ରକଟ କଲେ । ପିଲାଙ୍କୁ ମେଳି କଲେ । ସେମାନଙ୍କ ଯୋଗୁଁ କଲେଜରେ ଛୋଟକାଟର ଅଘଟଣ ମଧ୍ୟ ଘଟିଲା । ସେମାନଙ୍କ କାରବାର ସଂପର୍କରେ ବ୍ୟୋମକେଶଙ୍କୁ କହିବାରୁ ସେ ନୀରବ ରହିଲେ । ମୁଁ ଭାବିଲି କଲେଜରେ ଅସ୍ଥିରତା ସୃଷ୍ଟି କରିବାର ଏହା ପ୍ରାକ୍ ଯୋଜନା । ଏଣୁ ଏ ଦୁଇଜଣଙ୍କୁ କଲେଜରୁ ବହିଷ୍କାର କରିବାକୁ ହେଲା । ଜଣେ ପିଲା

Digitized by srujanika@gmail.com

ମୋ ଘରକୁ ଆସି ମୋତେ ଛୁରା ଭୂଷି ହତ୍ୟା କରିବ ବୋଲି ଧମକ ଦେଲା । ତା ବୃଥା ଆସ୍ଫାଳନରେ ମୋ ସ୍ତ୍ରୀ ସାମାନ୍ୟ ହଡ଼ବଡ଼େଇ ଗଲେ । ମୁଁ ଭାବିଲି ଯିଏ ମାରିବି କହେ ସେ କସ୍ମିନକାଳେ ମାରିପାରେନି । ପୁଣି ମନକୁ ଆସିଲା କଲେଜ ପାଇଁ ପ୍ରାଣ ଗଲେ ଶହୀଦ ହେବାର ଗୌରବ ମିଳିବ ଓ ଆମ ପିଲାଏ କଞ୍ଚନା ଛକରେ ମୂର୍ତ୍ତି ନିର୍ମାଣ କରି ସ୍ଥାପନା କରିଦେବେ । କିନ୍ତୁ ଏଭଳି କିଛି ଘଟିବାର ନଥିଲା ।

ବ୍ୟୋମକେଶ କଲେଜକୁ ଆସିବାରେ ନିୟମିତତା ରକ୍ଷା କରନ୍ତିନି । ଶିବ ସାର୍ କଠୋରଭାବେ ନିୟମାନୁବର୍ତ୍ତୀ ହେତୁ ପାଠପଢ଼ାରେ ସମସ୍ୟା ଉପୁଜେନି । ଏଣୁ ମୁଁ ବ୍ୟୋମକେଶ ଆସିବା ନ ଆସିବା ଉପରେ ସେତେଟା ଗୁରୁତ୍ୱ ଦିଏନି । ବେଳେବେଳେ ମୁଁ ମଧ ତାଙ୍କ କ୍ଲାସରେ ପଶି ପିଲାଙ୍କ କାମ ତଦାରଖ କରିନିଏ । ନ ଆସିବାର କାରଣ ସଂପର୍କରେ ପଚାରିଲେ ବ୍ୟୋମକେଶ ଚମତ୍କାର ମନଗଢ଼ା ଗପଟିଏ କହିଦିଅନ୍ତି । ତାଙ୍କ ଯୁକ୍ତିମାନ ସତ ଲାଗୁନଥିଲେ ମଧ ଶୁଣିବା ଉପଭୋଗ୍ୟ ହୁଏ । ମୁଁ ଶେଷରେ ବ୍ୟୋମକେଶଙ୍କ ପାଗଳାମିକୁ ଏତେ ଭଲ ପାଇ ବସିଲି ଯେ ଅଧକ୍ଷ ଭାବେ ଦିନେ ବି ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିନାହିଁ । ମୁଁ କଲେଜ ଛାଡ଼ିଲା ପରେ ଶୁଣିବାକୁ ପାଇଲି, ତାଙ୍କ ବିରୁଦ୍ଧରେ ମେଳିକରି ପରବର୍ତ୍ତୀ ଅଧକ୍ଷମାନେ ନାନା ପ୍ରକାର ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । କଲେଜରେ ନାନା ପ୍ରକାର ଅଶାନ୍ତି ହେଲା ସିନା ବାହାରେ କଲେଜର ସୁନାମ ହେଲାନାହିଁ ।

ଜଣେ ବରିଷ୍ଠର ଭୂମିକାରେ ରହି ଶିବ ସାର୍ ବ୍ୟୋମକେଶଙ୍କ ସବୁ ପାଗଳାମି, ଅର୍ଦ୍ଦଳି, ପ୍ରକୋପ ହସି ହସି ସହିଛନ୍ତି । ଗୋଟିଏ ଚିତ୍ରକଳା ମହାବିଦ୍ୟାଳୟର ଅଧକ୍ଷ ଥାନା ଇନ୍‌ଚାର୍ଜ ନୁହନ୍ତି ଯେ ତାଙ୍କ ସହକର୍ମୀଙ୍କ ବିପକ୍ଷରେ କାର୍ଯ୍ୟାନୁଷ୍ଠାନ କରିବେ । ବ୍ୟୋମକେଶଙ୍କ ଅପେକ୍ଷା ଏଭଳିକି ଅଧକ୍ଷଙ୍କ ଆତ୍ମମର୍ଯ୍ୟାଦା ବା ଆତ୍ମଅଭିମାନ ଅପେକ୍ଷା କଲେଜର ମର୍ଯ୍ୟାଦା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

Digitized by srujanika@gmail.com

# ୨୧-ଜୟନ୍ତ ଦାସଙ୍କ ରଘୁନାଥ ମୁର୍ମୁ

ଯଦିଓ ଖଲ୍ଲିକୋଟ ଘରୁ ଓ କାରୁକଳା ମହାବିଦ୍ୟାଳୟର ଅଧ୍ୟାପକ ବିପ୍ରଚରଣ ମହାନ୍ତିଙ୍କୁ ବ୍ରୋଞ୍ଜ୍‌, ଭାସ୍କର୍ଯ୍ୟ ପରମ୍ପରାର ଜନକ କୁହାଯାଉଛି, ତାଙ୍କ ଅଭିଧାନରେ କିନ୍ତୁ ବ୍ରୋଞ୍ଜ୍‌, ଭାସ୍କର୍ଯ୍ୟ କହିଲେ ରାଜନୈତିକ ନେତା ଓ ଓଡ଼ିଶାର ବରପୁତ୍ରଙ୍କ ଆବକ୍ଷ ଏବଂ ପୂର୍ଣ୍ଣାବୟବ ପ୍ରତିକୃତି ହିଁ ଉଲ୍ଲେଖ ଥିଲା। ସେ ତାଙ୍କ ଜୀବଦ୍ଦଶାରେ ପ୍ରାୟତଃ ଗୋଟିଏ ହେଲେ ସୃଜନଶୀଳ ଭାସ୍କର୍ଯ୍ୟ ଗଢ଼ିନାହାନ୍ତି । ପୁଣି ସେ ବ୍ରୋଞ୍ଜ୍‌ ଢ଼ଳେଇ କୌଶଳକୁ ଯଥାସମ୍ଭବ ତାଙ୍କର ଛାତ୍ର ଛାତ୍ରୀଙ୍କଠାରୁ ଦୂରେଇ ରଖିଥିଲେ । ଉଦ୍ଦେଶ୍ୟ ହେଲା ଯଦି ରାମା ଦାମା ଶ୍ୟାମା ପାଠ ଶିଖି ବ୍ରୋଞ୍ଜ୍‌ ପ୍ରତିମୂର୍ତ୍ତି ଗଢ଼ିବା ଆରମ୍ଭ କରିବେ ତା ହେଲେ ତାଙ୍କ ଭେକ ବୁଡ଼ିଯିବ । ଅଧ୍ୟାପକ ମହାନ୍ତି, ଆମ ବିପ୍ର ସାର୍‌ ତାଙ୍କର ଏତାଦୃଶ ଚିନ୍ତାଧାରାରେ ନିଜକୁ ମଜେଇ ଦେଇ ହୁଏତ ଠିକ୍‌ କରିଥିଲେ । କିନ୍ତୁ ଗୋଟିଏ ନୂଆ କଲେଜର ଅଧକ୍ଷ ଭାବେ ମୁଁ ବିଚାରୁ ଥିଲି ଶିକ୍ଷାଦାନରେ ଏଭଳି ଛକା ପଞ୍ଝା- ନୀତି ସ୍ପୃହଣୀୟ ନୁହେଁ । ଏଣୁ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ସୁବାସ ପାଣି ଯେତେବେଳେ ଆଦିବାସୀ ନେତା ଓ ଓଲଚି ଅକ୍ଷରର ପ୍ରବର୍ତ୍ତକ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ଗୋଟିଏ ପୂର୍ଣ୍ଣାବୟବ ବ୍ରୋଞ୍ଜ୍‌ ପ୍ରତିକୃତି ପ୍ରସ୍ତୁତ କରିବା ପାଇଁ କହିଲେ, ମୁଁ ଏହାକୁ ଗୋଟିଏ ଅପୂର୍ବ ସୁଯୋଗ ମନେକରି କଲେଜରେ ଗୋଟିଏ ଅସ୍ଥାୟୀ ବ୍ରୋଞ୍ଜ୍‌ ଢ଼ଳେଇ ୱାର୍କ୍‌ସପ୍‌ ତିଆରି କରିବାର ସବୁ ପ୍ରକାର ବ୍ୟବସ୍ଥା କିରଦେଲି ।

ଅଧ୍ୟାପକ ବିପ୍ରଚରଣ ମହାନ୍ତିଙ୍କ ପ୍ରିୟ ଛାତ୍ର ଜୟନ୍ତ ଦାସ ଆମ କଲେଜରେ ନୂଆ ହୋଇ କନିଷ୍ଠ ଅଧ୍ୟାପକ ଭାବେ ଯୋଗ ଦେଇଥାନ୍ତି । ସେ ଜଣେ କର୍ମଠ ଶିକ୍ଷକ ଏବଂ କିଛି ନୂଆକରି ଦେଖାଇବାରେ ଆଗ୍ରହ ରଖୁଥିଲେ । କଲେଜ ପରିସରରେ ରଘୁନାଥଙ୍କ ବ୍ରୋଞ୍ଜ୍‌ ପ୍ରତିମୂର୍ତ୍ତି ଗଢ଼ିବା ପାଇଁ ମୋର ପ୍ରସ୍ତାବ ତାଙ୍କୁ ଦୋ ଦୋ ପାଞ୍ଚ ମାନସିକତାରେ ଘାରି ଦେଇଥିଲା । ସେ ମୋ ପ୍ରସ୍ତାବ ସମ୍ପର୍କରେ ବିପ୍ର ସାରଙ୍କ ସହିତ ପରାମର୍ଶ କରିବା ପାଇଁ ଖଲ୍ଲିକୋଟରେ ପହଞ୍ଚିଲେ । ବିପ୍ର ସାର୍‌ ଜଣେ ଅନୁଭବୀ ଓ ବିଜ୍ଞ ବ୍ୟକ୍ତି ଥିଲେ । ସେ ମୋ ପ୍ରସ୍ତାବଟିକୁ ପୂର୍ବାପର ସମ୍ବନ୍ଧ ରଖି ସବୁ ଦୃଷ୍ଟିରୁ ବିଚାର କରି ମୂର୍ତ୍ତି ଗଢ଼ିବାରେ ଆଗେଇ ଯିବା ପାଇଁ ଜୟନ୍ତଙ୍କୁ ନିର୍ଦ୍ଦେଶ ଦେଲେ । ଜୟନ୍ତ ଯେହେତୁ ବ୍ରୋଞ୍ଜ୍‌ ଢ଼ଳେଇ

Digitized by srujanika@gmail.com

ବିଦ୍ୟାଟି ଅତି ବିଶ୍ୱସନୀୟ ଶିଷ୍ୟ ଭାବରେ ବିପ୍ରସାରଙ୍କଠାରୁ ଶିକ୍ଷା କରିଥିଲେ, ଏଣୁ ସାରଙ୍କଠାରୁ କାର୍ଯ୍ୟ ଆରମ୍ଭରେ ଆଶୀର୍ବାଦ ନେବା ସମୀଚୀନ ଥିଲା ।

ବିପ୍ର ସାର୍ ଜୟନ୍ତଙ୍କୁ ଉପଦେଶ ଛଳରେ କହିଥିଲେ, ''ଜୟନ୍ତ ବିଚାର କର, ଖଲ୍ଲିକୋଟ ଓ ଭୁବନେଶ୍ୱର ମଧ୍ୟରେ ଅନେକ ତଫାତ । ପାଠୀ କେବଳ ଭାରତ ନୁହେଁ ପୃଥିବୀର ବିଭିନ୍ନ କଳା ଅନୁଷ୍ଠାନ ଦେଖିଛି । ସେଇ ଅନୁପ୍ରେରଣାରେ ସେ ତା' କଲେଜଟିକୁ ଗଢ଼ିବାକୁ ଚାହୁଁଛି । ତମେ ତମର ଭବିଷ୍ୟତ ମଧ୍ୟ ଚିନ୍ତା କର । କେବଳ ପାଠୀ ପାଖରେ ନୁହେଁ, ସରକାରଙ୍କ ପାଖରେ ମଧ୍ୟ ତମେ ଜଣେ ଭଲ ଶିଳ୍ପୀ ଓ ଶିକ୍ଷକ ବୋଲି ପ୍ରମାଣିତ ହେବା ଦରକାର । ସମୟ ବଦଳି ଯାଇଛି । ଏଣୁ ଖଲ୍ଲିକୋଟର ମାନସିକତାରେ ରହି ତମେ ତମର ଭୁବନେଶ୍ୱର କଲେଜକୁ ଆକଳନ କଲେ ଚଳିବନି । ପାଠୀ ଏବଂ ତମ କଲେଜ ତମର ଶକ୍ତି ଓ ସାମର୍ଥ୍ୟ ଚାହୁଁଛନ୍ତି । ଏଣୁ ତମେ କୁଣ୍ଠା କରନା ।''

ଆମ କଲେଜରେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓ ପାଇଁ ପ୍ରଶସ୍ତ ଜାଗା ନଥିଲା । ଅଗଣାରେ ତାରପୋଲିନ୍ ବନ୍ଧା ଷ୍ଟୁଡ଼ିଓରେ କାମ ଆରମ୍ଭ ହେଲା । କାମକୁ ଦି'ଭାଗ କରାଗଲା । ମାଟି ଓ ପ୍ଲାଷ୍ଟର୍ କାମ ଅଗଣାରେ । ଫରନେସ୍, ନିଆଁ ଓ ତରଳାକାମ ବଗିଚାରେ, ଖୋଲା ଆକାଶ ତଳେ । ଦଳେ ପିଲା ଅସମ୍ଭବ ଭାବେ ଅନୁପ୍ରାଣିତ ହୋଇ କାମ ଶିଖିବା ଉଦ୍ଦେଶ୍ୟରେ ରାତିଦିନ ଜଗି ରହିଲେ, ଜୟନ୍ତଙ୍କ ପିଛା ଛାଡ଼ିଲେ ନାହିଁ । ଜୟନ୍ତଙ୍କ ଦଳରେ ଯେଉଁ ଛାତ୍ରମାନେ ଥିଲେ ସେମାନେ ହେଲେ ଅଦ୍ୱୈତ ଗଡ଼ନାୟକ, ଅଜୟ ପଣ୍ଡା, ଅଂଜନ କୁମାର ସାହୁ, ବିଜୟ, ମାନସ, ଚନ୍ଦନ ସାମଲ, ଜ୍ୟୋତି ପାଣିଗ୍ରାହୀ, ଶୋଭନ କୁମାର, ସରୋଜ ଭଞ୍ଜ ପ୍ରଭୃତି । ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ କାମ ଆମମାନଙ୍କ ପାଇଁ ନୂଆ । ମୁଁ ଯଦିଓ ଢ଼ୋକ୍ରା କାଷ୍ଟିଙ୍ଗ୍‌ର ମହମ ଛାଞ୍ଚ ଓ ପିତଳ ତରଳା କାମ (ଲଷ୍ଟ୍ ୱାକ୍ସ ପ୍ରୋସେସ୍) ସଂପର୍କରେ ସଂପୂର୍ଣ୍ଣ ଅବହିତ ଥିଲି ତଥାପି ଏତେବଡ଼ କାମ ଦେଖିବାରେ ଆନନ୍ଦ ମିଳୁଥିଲା । ମୁଁ ଯାଉଣୁ ଆସୁଣୁ, ସକାଳ ସନ୍ଧ୍ୟା, ଅଭାବ ଅସୁବିଧାର ଖବର ରଖୁଥିଲି । କିଛି ବରିଷ୍ଠ ଶିଳ୍ପୀ କଲେଜ କାମରେ ସଦାବେଳେ ଅଡୁଆ ସୃଷ୍ଟି କରିବାକୁ ଚେଷ୍ଟିତ ଥିଲେ । ସେମାନେ ଈର୍ଷାପରାୟଣ ହେଇ କଲେଜର ସୁନାମରେ ଆଞ୍ଚ ଆଣିବା ପାଇଁ ଚେଷ୍ଟା କରୁଥିଲେ । ଏଭଳି କିଛି ଅପ୍ରୀତିକର ପରିସ୍ଥିତି ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ବେଳେ ନ ଘଟୁ ମୁଁ ସେଥିପ୍ରତି ସଚେତନ ଥିଲି । କାହା ମନରେ କି ଭାବନା ଉପୁଜୁ ଥିଲା କେଜାଣି କିନ୍ତୁ ଓଡ଼ିଶାର ଚିତ୍ରକଳା କ୍ଷେତ୍ରରେ ଏକ ନୂତନ ଦିଗନ୍ତ ଉନ୍ମୋଚିତ ହେଉଛି ଏହା ନେଇ ମୁଁ ନିଃସନ୍ଦୀହାନ ଥିଲି ।

କିଏ କିଏ ଭାବୁଥିଲେ ଜୟନ୍ତ ତ ଟୋକାଟାଏ ଭଳି ଦେଖାଯାଉଛି । ସେ ପୁଣି ଖଲ୍ଲିକୋଟ ଫେରନ୍ତା, ଏଠି କି ବ୍ରୋଞ୍ଜ୍ ମୂର୍ତ୍ତି ଗଢ଼ିବ ? ଖଲ୍ଲିକୋଟ ଆର୍ଟ୍ ସ୍କୁଲର କିଛି ସିନିୟର ଭାସ୍କର୍ଯ୍ୟ ଛାତ୍ରମାନେ ବିଭିନ୍ନ ଆଳ କରି କଲେଜ ଆଡ଼େ ପଇଁତରା ମାରିଲେ ।

Digitized by srujanika@gmail.com

ନିଜ ଆଖିରେ ସବୁ ଦେଖି ମଧ୍ୟ ନ ଦେଖିଲା ପରି, ନ ଜାଣିଲା ପରି ହେଲେ । କିନ୍ତୁ ସେମାନେ ମର୍ମେ ମର୍ମେ ଅନୁଭବ କରୁଥିଲେ ଯେ ଯାହା ସବୁ ବିଭୂତି କାନୁନ୍‌ଗୋ କଲେଜରେ ଘଟିଯାଉଛି ତାହା ଓଡ଼ିଶାର କଳାକ୍ଷେତ୍ରରେ ଅଭୂତପୂର୍ବ ।

ବ୍ରୋଞ୍ଜ୍ ଢ଼ଳେଇ ପାଇଁ ରାଜମହେନ୍ଦ୍ରୀରୁ କ୍ରୁସିବଲ୍ (ବ୍ରୋଞ୍ଜ୍ ତରଳେଇବାର ପାତ୍ର) ଆସିଲା । ମଣିଷ ଉଚ୍ଚାର ଲୁହା ଚିମୁଟା ଜୟନ୍ତ ଖଲ୍ଲିକୋଟରୁ ବନେଇ ଆଣିଲେ । ଏଭଳି ଆଉ ଯେତେ ସାଜ ସରଞ୍ଜାମ ଯୋଗାଡ଼ କରାଗଲା । ଶେଷରେ ବ୍ରୋଞ୍ଜ୍ ତରଳେଇବା ପାଇଁ ଆଉ ରଡ଼ ରଡ଼ ନିଆଁରୁ କ୍ରୁସିବଲ୍ ଉଠେଇ ମୋଲଡ୍ ଭିତରେ ଢ଼ାଳିବା ପାଇଁ ବିପ୍ର ସାର୍‌ଙ୍କ ଲୋକଙ୍କୁ ଜୟନ୍ତ ଖଲ୍ଲିକୋଟରୁ ଆଣିଲେ । ଏମାନଙ୍କ ସହିତ ଅଣ୍ଟାଭିଡ଼ିଲେ କେତେକ ଛାତ୍ର ଓ କଲେଜର ଚତୁର୍ଥ ଶ୍ରେଣୀ କର୍ମଚାରୀ ଭୁବନ ଓ ଅଶୋକ ପ୍ରଭୃତି । କାମ ଦେଖିବା ପାଇଁ ମୁଁ ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣିଙ୍କୁ କଲେଜକୁ ଡାକି ଆଣିଲି । ଏତେ ସବୁ ଯୋଗାଡ଼ ଯନ୍ତ୍ର ଓ ପଟାଟୋପ ଦେଖି ସୁବାସ ପାଣିଙ୍କ ମନରେ ବିସ୍ମୟ ଭରିଗଲା । ଏବେ ସମସ୍ତଙ୍କ ମନରେ ପ୍ରତ୍ୟୟ ଆସିଲା ଖଲ୍ଲିକୋଟିଆ ଜୟନ୍ତ ବ୍ରୋଞ୍ଜ୍ ପ୍ରତିମୂର୍ତ୍ତି ଗଢ଼ିପାରିବ । ଏହି ଘଟଣାଟି ଏବେ ଅତି ସାଧାରଣ ମନେ ହୋଇପାରେ କାରଣ ଭାରତ ବର୍ଷର ଅନ୍ୟାନ୍ୟ ପ୍ରମୁଖ କଳା ମହାବିଦ୍ୟାଳୟମାନଙ୍କରେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓ ଅଛି ଓ ସେଠାରେ କାଷ୍ଟିଙ୍ଗ୍ ଏକ ନିତିଦିନିଆ ଘଟଣା । କିନ୍ତୁ ଓଡ଼ିଶାରେ କଳାଶିକ୍ଷାର ମୂଳ ସ୍ରୋତରେ ବ୍ରୋଞ୍ଜ୍ ପ୍ରତିମୂର୍ତ୍ତି ନିର୍ମାଣ କୌଶଳକୁ ସାମିଲ ନକରିବା ପାଇଁ ଯେଉଁ ସବୁ ବ୍ୟକ୍ତିଗତ ଅଭାବବୋଧ ଥିଲା ଏବଂ ଏଥିପାଇଁ ମାନସିକ ସ୍ତରରେ ଯେଉଁସବୁ ପ୍ରତିବନ୍ଧକ ଥିଲା ତାହା ଏବେ ଅପସରିଗଲା । ଏସବୁର ଶ୍ରେୟଃ ମୁଁ ଜୟନ୍ତ ଏବଂ ତାଙ୍କର ନିଷ୍ଠାବାନ୍ ଛାତ୍ର ଗୋଷ୍ଠୀଙ୍କୁ ଦେବି । ଯେଉଁଦିନ ଢ଼ଳେଇ ହୋଇଥିବା ମୂର୍ତ୍ତିର ଅଂଶଗୁଡ଼ିକୁ ଯୋଡ଼ାଯୋଡ଼ି କରି ସାରିଲା ପରେ ପୂର୍ଣ୍ଣାବୟବ ମୂର୍ତ୍ତିଟି କଲେଜ ଅଗଣାରେ ତାରପୋଲିନ୍ ଛାତତଳେ ଠିଆ ହୋଇଗଲା ସେଦିନର ଆନନ୍ଦ ଓ ଉଦ୍‌ବେଳନ କହିଲେ ନସରେ । ଭିତରେ ବହୁ ବାଧାବିଘ୍ନର ଦିନଗୁଡ଼ିକ ଅତିବାହିତ ହୋଇଛି, କିନ୍ତୁ ଏସବୁ ଅଭାବବୋଧର ପରିସମାପ୍ତି ଘଟିଛି ଆନନ୍ଦର କଲ୍ଲୋଳରେ ।

ତା'ପରେ ମୂର୍ତ୍ତିଟି ଟ୍ରକରେ ଲଦାହେଇ ରାଇରଙ୍ଗପୁର ଚାଲିଲା । ମୂର୍ତ୍ତିଟି ପ୍ରତି ଜୟନ୍ତର ଆସକ୍ତିକୁ ମୁଁ ଲକ୍ଷ୍ୟ କରୁଥିଲି । ଯିମିତି ମା' ତାର ଜନ୍ମିତ ସନ୍ତାନକୁ ଦଣ୍ଡେ ବି ହାତଛଡ଼ା କରିବାକୁ ଚାହେଁ ନାହିଁ ସେଭଳି ଜୟନ୍ତର ଆଗ୍ରହକୁ ମୁଁ ମର୍ମେ ମର୍ମେ ଅନୁଭବ କରୁଥିଲି । ଜୟନ୍ତ ନିଜର କିଛି ବିଶ୍ୱସ୍ତ ଛାତ୍ରଙ୍କୁ ନେଇ ଟ୍ରକ୍‌ରେ ଦାଖଲ ହେଲେ । ପଣ୍ଡିତ ରଘୁନାଥ ମୁର୍ମୁଙ୍କ ମୂର୍ତ୍ତିଟି ତାଙ୍କ ଜନ୍ମଦିନ ଅବସରରେ ରାଇରଙ୍ଗପୁରଠାରେ ପ୍ରତିଷ୍ଠା ପାଇବ । ଟ୍ରକ୍ ପଛରେ ଆମ୍ଭାସଡର କାର୍‌ରେ ଅଧ୍ୟାପକ ଦାମୋଦର ବେହେରା, ଜ୍ୟୋତି ପାଣିଗ୍ରାହୀ ଆଉ ମୁଁ । ମୂର୍ତ୍ତିଟି ବସେଇ ସାରି ଫେରିଲା ବାଟରେ ରାସ୍ତା ସାରା ଗୋଟିଏ ଅଦ୍ଭୁତ ଦୃଶ୍ୟ

Digitized by srujanika@gmail.com

ଦେଖିବାକୁ ପାଇଲୁ । ଶହଶହ ସଂଖ୍ୟାରେ ଆଦିବାସୀ କାନ୍ଧରେ ଭାରନେଇ ମୂର୍ତ୍ତି ପ୍ରତିଷ୍ଠା ଉତ୍ସବରେ ଭାଗନେବା ପାଇଁ ରାଇରଙ୍ଗପୁର ଚାଲିଛନ୍ତି । କେଉଁଠି ରାସ୍ତାକଡ଼ ଶାଳବଣ ଭିତରେ ଆଦିବାସୀ ପରିବାରଟିଏ ତା' ପିଲାଛୁଆଙ୍କୁ ନେଇ ମୁଢ଼ି ମାଂସ ମହାଆନନ୍ଦରେ ଖାଇଚାଲିଛି ତ ଆଉ କେଉଁଠି କ୍ଲାନ୍ତି ଅପନୋଦନ ପାଇଁ ଗଛ ଛାଇ ତଳେ ଟିକିଏ ଘୁମେଇ ପଡ଼ିଛି ସାନ୍ତାଳଟିଏ । ମନେହେଉଛି ଏକ ଉତ୍ସବ ମୁଖର ପରିବେଶ । ଆମ ମନରେ ଗୋଟିଏ ଗଡ଼ ଜିଣି ଫେରିବାର ବଳ ଓ ଉତ୍ସାହ । ପ୍ରଶଂସା କରି ଜୟନ୍ତଙ୍କୁ ଦୁଇପଦ କହିବା ପାଇଁ ଇଚ୍ଛା ହେଲା । ମୂର୍ତ୍ତି ଗଢ଼ିବା ଆଗରୁ ମୁଁ ଜୟନ୍ତଙ୍କୁ ଯେଉଁ କଥା କହିଥିଲି ସେହି କଥାପଦକ ଦୋହରାଇବା ପାଇଁ ଇଚ୍ଛାକଲି । ''ଜୟନ୍ତ ତମେ ଏବେ ବୁଝିପାରୁଥିବ ଦୀପଟିଏ ଜଳେଇଦେବାର ମହିମା । ଶିକ୍ଷକର କାମ ହେଲା ନିଜର ଆଲୋକରେ ଆଉ ଦୀପଟିଏ ଜାଳିଦେବା । ଏ ଉତ୍ସବର ଆଡ଼ମ୍ବର ମନେହୁଏ ତମରି ପାଇଁ । ତମେ ଯେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍‌କୁ କଳାଶିକ୍ଷାର ମୂଳସ୍ରୋତରେ ସାମିଲ କରିଦେଇପାରିଲ ସେଇଥିପାଇଁ ଏହି ଉତ୍ସବର ଆୟୋଜନ । ତମେ ଯେଉଳି ବିପ୍ର ସାର୍‌ଙ୍କ ପାରଦର୍ଶିତା ଓ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍‌ର କୌଶଳକୁ ଆହରଣ କରି ଏଠି ପରିବେଷଣ କଲ, ସେଭଳି ତମର ବହୁ ଛାତ୍ରଛାତ୍ରୀ ଜଣେ ଜଣେ ଜୟନ୍ତ ବନି ଯାଇ ଗୋଟିଏ ରଘୁନାଥ ମୁର୍ମୁ ନୁହେଁ ଶହ ଶହ ରଘୁନାଥଙ୍କ ମୂର୍ତ୍ତି ଗଢ଼ିବେ । ଏହାହିଁ ଆମର ଭାରତୀୟ ଗୁରୁ ପରମ୍ପରା । ତମେ ମୋତେ ବିପ୍ର ସାର୍‌ଙ୍କ ଯେଉଁ ଆଶ୍ୱାସନାର ବାଣୀ କହୁଥିଲ ଯେ ସେ ବ୍ରୋଞ୍ଜ୍ କଳାକୁ ଏଭଳି ଭାବରେ ବ୍ୟବହାର କରିଛନ୍ତି ଯାହା ଫଳରେ ଭାସ୍କର ଶିଳ୍ପୀଟିଏ କେବେ ବେକାର ହେଇ ବସିବନି କି ତା ପେଟ ଅପୋଷା ରହିବ ନାହିଁ, ତାହା ମଧ୍ୟ ତମେ ତମ ଛାତ୍ରଙ୍କ ପାଖରେ ଦେଖିପାରିବ ।''

ଏବେ ମୁଁ ଶୁଣିବାକୁ ପାଉଛି ଯେ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ କୁଆଡ଼େ ଗୋଟିଏ ବ୍ରୋଞ୍ଜ୍ ମୂର୍ତ୍ତି ଗଢ଼ିବା କାରଖାନା ହୋଇଗଲାଣି । ଗାନ୍ଧି, ଗୋପବନ୍ଧୁ, ବିଶେଷ କରି ବିଜୁ ପଟ୍ଟନାୟକଙ୍କ ପ୍ରତିମୂର୍ତ୍ତିର ଆଦର ବଢ଼ିଗଲାଣି । ଏବେ କଲେଜର ପ୍ରାୟ ସବୁ ପାରିବାର ଅଧ୍ୟାପକ ମୂର୍ତ୍ତି ଗଢ଼ିବାରେ ଅହର୍ନିଶ ବ୍ୟସ୍ତ ରହିଛନ୍ତି । ନିଜେ ଗଢ଼ନ୍ତୁ ବା ଆଉ କାହାରି ହାତରେ ମୂର୍ତ୍ତିକାମ କରେଇ ନେଇ ବାହାବା ନିଅନ୍ତୁ, ସମସ୍ତେ କିନ୍ତୁ ଏବେ ବ୍ରୋଞ୍ଜ୍ ଭାସ୍କର ଶିଳ୍ପୀ । ଖୁସିର କଥା କଲେଜର ଚତୁର୍ଥଶ୍ରେଣୀ କର୍ମଚାରୀ ଫକୀର ମଧ୍ୟ ବ୍ରୋଞ୍ଜ୍ କାଷ୍ଟିଙ୍ଗସ୍ କାଏଦା ଶିଖିଗଲାଣି । ଆମବେଳେ ଅଧକ୍ଷ ବ୍ରୋଞ୍ଜ୍ ମୂର୍ତ୍ତିର ଅର୍ଡର ସଂଗ୍ରହ କରିବା ପାଇଁ ଅଫିସ୍‌ମାନଙ୍କରେ ଜଣେ କଣ୍ଟ୍ରାକ୍ଟର ଭଳି ପଇଁତରା ମାରୁ ନଥିଲେ । ଚିଠିଟିଏ ଲେଖିଦେଲେ କାମ ହେଇଯାଉଥିଲା । ଦିନ ଥିଲା ସରକାରଙ୍କ ବିଭିନ୍ନ ବରାଦ କାମକୁ ସୁଚାରୁରୂପେ ପରିଚାଳନା କରି ସେଥିରୁ ଯତ୍‌କିଞ୍ଚିତ୍ ଆଦାୟ ଅର୍ଥକୁ କଲେଜର ଉନ୍ନତିରେ ବିନିଯୋଗ କରିବା । ଏବେ କିନ୍ତୁ ଏସବୁ ଆଦର୍ଶର କୌଣସି ମୂଲ୍ୟ ନାହିଁ ।

Digitized by srujanika@gmail.com

ଅର୍ଥ ଏବେ ଅନର୍ଥର କାରଣ ପାଲଟିଛି । ହାୟ ! କଲେଜର ଶିକ୍ଷଣୀୟ ପରିସର ମଧ୍ୟରେ ଆଉ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ହେଉ ନାହିଁ । ଖଲ୍ଲିକୋଟ ବେଳର ସେହି ପୁରୁଣା ମାନସିକତା । କଲେଜ୍‌ର ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ଷ୍ଟୁଡ଼ିଓଟି ଏବେ ବହୁଧା ବିଭକ୍ତ ଦେହ କିଚେନ୍ ଗାର୍ଡେନ ଭଳି ଅଧ୍ୟାପକଙ୍କ ଘର ବାଡ଼ି ପଟେ । ସବୁଠାରୁ ବିଡ଼ମ୍ବନାର ବିଷୟ ଯେ ବିପ୍ରଚରଣ ମହାନ୍ତିଙ୍କୁ ଶ୍ରେଷ୍ଠ ଆଧୁନିକ ଭାସ୍କର ଶିଳ୍ପୀର ଆଖ୍ୟା ଦେଇ ସଂସ୍କୃତି ବିଭାଗ ଏବେ ତାଙ୍କର ସ୍ମୃତିକୁ ରାସ୍ତାକଡ଼େ ଠିଆ କରେଇବାର ଯୋଜନା କଲେଣି । ବିପ୍ରଚରଣଙ୍କ ମୂର୍ତ୍ତି ଗଢ଼ା ହେବାରେ ଆପତ୍ତି ନାହିଁ । କିନ୍ତୁ ସେଭଳି ମୂର୍ତ୍ତିର ଉପଯୁକ୍ତ ସ୍ଥାନ ହେଲା ଖଲ୍ଲିକୋଟ କଳା ମହାବିଦ୍ୟାଳୟ ପରିସର ଯାହା ଥିଲା ବର୍ଷ ବର୍ଷ ଧରି ତାଙ୍କ କର୍ମଭୂମି, ଯେଉଁଠି ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ପ୍ରଥମେ ରୂପ ନେଇଥିଲା । ଏ ସବୁ କଳାଶିକ୍ଷା କ୍ଷେତ୍ରର ମାମଲାରେ ମନେହୁଏ ଜୟନ୍ତ ଏବେ ବହୁପଛରେ । କିନ୍ତୁ ଆଶା କରାଯାଏ ଇତିହାସ ଆମ କଲେଜର ଅବଦାନକୁ ବିକୃତ କରିବ ନାହିଁ ।

Digitized by srujanika@gmail.com

# ୨୨. ବିଦେଶୀ ପାଠରେ ଦେଶୀ ସୁଆଦ

ଇଂରେଜ ସରକାର ପ୍ରାୟ ଦେଢ଼ଶ' ବର୍ଷ ତଳେ ଆମ ଦେଶରେ ଆଧୁନିକ କଳାଶିକ୍ଷାର ପ୍ରଚଳନ ପାଇଁ କଲିକତା, ମେଡ୍ରାସ୍ ଓ ବମ୍ବେରେ ତିନୋଟି କଳା ମହାବିଦ୍ୟାଳୟ ଖୋଲିଲେ ଏବଂ ବିଦେଶୀ ପରମ୍ପରା ଅନୁସାରେ ସେଠି କଳାଶିକ୍ଷା ଦିଆଗଲା । କଳାକୁ ଚାରୁକଳା ବା ଫାଇନ୍ ଆର୍ଟ୍‌ସ୍ କୁହାଗଲା । ପୁଣି ତା ସାଙ୍ଗରେ ଯୋଡ଼ାଗଲା କାରୁକଳା ବା କ୍ରାଫ୍‌ଟ୍‌ସ୍ । ଅନୁଷ୍ଠାନ ଗୁଡ଼ିକର ନାମ କରଣରେ ଆର୍ଟ୍ ଓ କ୍ରାଫ୍‌ଟ୍‌ର ଦ୍ୱୈତ ଭାବ ଆମ ପରମ୍ପରାକୁ କୁଠାରାଘାତ କଲା । ଏହି କଳାଶିକ୍ଷା ମୂଳରେ ସୃଜନାତ୍ମକତାର ବିକାଶ ମୂଳ ନଥିଲା, ଥିଲା କୌଶଳ ଆହରଣ କରିବାର ବ୍ୟଗ୍ରତା । ଯେଭଳି ଗୁମାସ୍ତା ତିଆରି କରିବା ପାଇଁ ମ୍ୟାକଲେ ଆମ ଦେଶରେ ଇଂରେଜୀ ଶିକ୍ଷାର ପ୍ରଚଳନ କରିଥିଲେ, ସେଭଳି ନକଲ କରିବାରେ ପାରଦର୍ଶିତା ଲାଭ କରିବା ଥିଲା ଆଧୁନିକ ବିଦେଶୀ କଳାର ଲକ୍ଷ୍ୟ । ଆମେ ଯେଉଁମାନେ ଉପନିବେଶୀୟ କଳାରେ ନିଜକୁ ଦକ୍ଷ କରିବାକୁ ଚାହିଁଲୁ, ଆମକୁ ଶିଖିବାକୁ ହେଲା 'ନେଚର୍ ଷ୍ଟଡ଼ି' ବା ପ୍ରକୃତିର ଅନୁଶୀଳନ, 'ଲାଇଫ୍ ଷ୍ଟଡ଼ି' ବା ମଡେଲ୍ ଦେଖି ମଣିଷ ଶରୀରର ଗଠନ ସଂପର୍କରେ ରୂପଚର୍ଚ୍ଚା, 'ଷ୍ଟିଲ୍ ଲାଇଫ୍' ବା ନିର୍ଜୀବ ବସ୍ତୁର ରୂପ ଓ ବର୍ଣ୍ଣ ଅନୁଶୀଳନ । ଯାହା ଦେଖୁଛ ତା'ର ଅବିକଳ ନକଲ କରିବାକୁ ଚେଷ୍ଟାକର । ପ୍ରକୃତିର ଷୋହଳଅଣାକୁ ଛବିର ଷୋହଳ ଅଣା ସାଙ୍ଗରେ ମିଶେଇ ଦିଅ । ଏହାଥିଲା କଳାଶିକ୍ଷାର ନିର୍ଯ୍ୟାସ । ଉପନିବେଶୀୟ କଳାର ମହତ୍ତ୍ୱ ବଢ଼େଇଦେବା ପାଇଁ କୁହାଯାଉଥିଲା, ଦେଖ ସେ କିମିତିକା ଜଣେ ଶିଳ୍ପୀ ଅମୁକ ଜଣକୁ ଆଖିରେ ନଦେଖି ମଧ୍ୟ, ମନରୁ ଆଙ୍କିଦେଲା ଯେ ଅବିକଳ ତା'ର ଚିତ୍ରଭଳି ଦେଖାଗଲା । ଅବଶ୍ୟ ଉପନିବେଶୀୟ କଳାର ଏସବୁ ନକଲ ଯୋଗ୍ୟ ବିଭବ ସହିତ ଆଉ ଗୋଟିଏ ଆପାତତଃ ସୃଜନଶୀଳ ମନେହେଉଥିବା ପାଠ ହେଉଛି କମ୍ପୋଜିସନ୍, ଯାହା ଅନୁଶୀଳନମାନଙ୍କରୁ ଆହରଣ କରାଯାଇଥିବା କୌଶଳର ଉପଯୋଗ କରି ଚିତ୍ର ବା ଭାସ୍କର୍ଯ୍ୟ ରଚନା ।

ଆମର ଶିକ୍ଷକମାନେ ଏଭଳି ଶିକ୍ଷା (ବରଂ ତାଲିମ କହିବା ଠିକ୍ ହେବ), ପାଇଥିଲେ, ପୁଣି ଆମେ ଏଭଳି ଶିକ୍ଷା ଆମ ଛାତ୍ରଛାତ୍ରୀଙ୍କୁ ବାଟି ପିଆଇ ଦେଇଥିଲୁ । ଆମ ଦେଶର ଲୋକଙ୍କୁ ଭୁଆଁ ବୁଲାଇବା ପାଇଁ ଦୁଇପ୍ରକାର ଚିତ୍ରବିଦ୍ୟା ଶିକ୍ଷା ଦିଆଯାଉଥିଲା; ଗୋଟିଏ

Digitized by srujanika@gmail.com

ହେଲା ତୈଳଚିତ୍ର ଓ ଅନ୍ୟଟି ହେଲା ଭାରତୀୟ ଚିତ୍ର ବା ଇଣ୍ଡିଆନ୍ ପେଣ୍ଟିଙ୍ଗ୍। ଆମେ ଖଲ୍ଲିକୋଟର ଚିତ୍ରକଳା ମହାବିଦ୍ୟାଳୟରେ ଏହି ଦୁଇପ୍ରକାର ଚିତ୍ର ଶିକ୍ଷା କରୁଥିଲୁ। ଆମମାନଙ୍କର ଶିକ୍ଷାଗତ ପ୍ରମାଣପତ୍ରମାନଙ୍କରେ ତାଲିମ ଶବ୍ଦ ତ ବ୍ୟବହାର କରାଯାଉଥିଲା, ତା ସହିତ ଥିଲା ତୈଳଚିତ୍ର ଭଳି ଗୋଟିଏ ବିଦେଶୀ ରଙ୍ଗର ଜାତିବାଚକ ଶବ୍ଦର ଉଲ୍ଲେଖ। ମୋ ସାର୍ଟିଫିକେଟ୍‌ରେ ଲେଖାଅଛି 'ଡିପ୍ଲୋମା ଇନ୍ ଫାଇନ୍ ଆର୍ଟ୍ ଓ ବନ୍ଧନୀ ଭିତରେ 'ଅଏଲ୍ ପେଣ୍ଟିଙ୍ଗ୍'। ଏଭଳି ପରିଭାଷାର ବ୍ୟବହାରକୁ ନେଇ ଓ ତା'ର ଆଭିମୁଖ୍ୟକୁ ନେଇ ଆମ ଅଧ୍ୟାପକମାନେ କେବେ କିଛି ସନ୍ଦେହ କରିନାହାନ୍ତି, ଆପତ୍ତି ଉଠେଇନାହାନ୍ତି ଓ ତା'ର ପରିବର୍ତ୍ତନ କରିବା ପାଇଁ ଚେଷ୍ଟା କରିନାହାନ୍ତି। ମୋ ନିଜ ସାର୍ଟିଫିକେଟ୍‌ର 'ଫାଇନ୍ ଆର୍ଟ୍' ଓ 'ଅଏଲ ପେଣ୍ଟିଙ୍ଗ୍' ଭଳି ପରିଭାଷାକୁ ନେଇ ମୋତେ ହାଇକୋର୍ଟ୍‌ର ଦ୍ୱାରସ୍ଥ ହେବାକୁ ହେଇଛି। ଏବେ ଅଳ୍ପଦିନ ତଳେ ଲୋକ ସେବା ଆୟୋଗ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଅଧ୍ୟାପକ ପଦ ପୂରଣ ପାଇଁ ବିଜ୍ଞପ୍ତି ଜାରି କରିଥିଲେ । ସେଥିରେ ପଚାଶ ଷାଠିଏ ବର୍ଷ ତଳର ବିସଙ୍ଗତି 'ଅଏଲ୍ ପେଣ୍ଟିଙ୍ଗ୍' ପୁଣି ଦେଖାଦେଇଥିଲା । ଏହି ଭୁଲ ସୁଧାରିବା ପାଇଁ ମୁଁ ଲୋକସେବା ଆୟୋଗ, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ଏବଂ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗକୁ ଚିଠି ଲେଖିଥିଲି । କିନ୍ତୁ ଚିଠି ପଢ଼ିବ କିଏ, ସୁଧାର ଆଣିବ କିଏ ?

ଇଂରେଜ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ଏଭଳି ବିଦେଶୀ ପାଠ୍ୟକ୍ରମ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି କଲିକତାରେ ଅବନୀନ୍ଦ୍ର ନାଥ ଠାକୁର, ଗଗନେନ୍ଦ୍ର ନାଥ ଠାକୁର ଓ ଶେଷରେ ସବିଶେଷ ଭାବେ ଶାନ୍ତିନିକେତନରେ ନନ୍ଦଲାଲ ବସୁ ସ୍ୱଦେଶୀ ପାଠ୍ୟକ୍ରମର ପ୍ରଚଳନ କଲେ। ଭାରତର ସ୍ୱାଧୀନତା ଆନ୍ଦୋଳନରେ ସ୍ୱଦେଶୀ ପାଠର ଗୁରୁତ୍ୱ ଥିଲା। ସବୁ ବିଦେଶୀ ଦ୍ରବ୍ୟ ବର୍ଜନ ସହିତ କଳାପାଠରେ ମଧ୍ୟ ବିଦେଶୀ ବର୍ଜନ ବେଶ୍ ସୁହାଇଲା। କିନ୍ତୁ ସ୍ୱଦେଶୀ ନାଁରେ ଯାହା ପ୍ରବର୍ତ୍ତନ କରାଗଲା ତାହା ଶେଷରେ କଳାଭବନର ଘୋଷରା ପାଠରେ ପରିଣତ ହୋଇଗଲା। ସେଥିରେ ଥିଲା ଟେମ୍ପେରା ବା ଲେପ ଚିତ୍ର, ୱାସ୍ ପେଣ୍ଟିଙ୍ଗ୍ ବା ଧୌତ ଚିତ୍ର ଏବଂ ଲାଇନ୍ ଡ୍ରଇଁ ବା ରେଖା ଚିତ୍ର। ଯେଉଁମାନେ ଶାନ୍ତିନିକେତନର କଳାଭବନରୁ ଏଭଳି ପାଠ ପଢ଼ିସାରି ଫେରିଲେ ସେମାନେ ଓଡ଼ିଶାରେ ଏହି ଚିତ୍ରଣଧାରାର ଗୋଟିଏ ପରମ୍ପରା ସୃଷ୍ଟି କରିଦେଲେ।

ମୁଁ ଖଲ୍ଲିକୋଟରେ ଚିତ୍ରକଳା ଅଧ୍ୟୟନ କରୁଥିବା ବେଳେ ଯଦିଓ ଏସବୁ ବିସଙ୍ଗତି ନଜରରେ ପଡୁଥିଲା, ତା'ର ସୁଧାରରେ କ'ଣ କରାଯାଇପାରେ ମୁଣ୍ଡକୁ ଜୁଟୁନଥିଲା। ସରକାରୀ ନିର୍ଦ୍ଦେଶନାମାରେ ଥିଲା ମାନ୍ଧାତା ଅମଳର ନାମକରଣ, ଅଏଲ୍ ପେଣ୍ଟିଙ୍ଗ୍ ବିଭାଗ ବା ତୈଳଚିତ୍ର ବିଭାଗ । ଇଣ୍ଡିଆନ୍ ପେଣ୍ଟିଙ୍ଗ୍ ବା ଭାରତୀୟ କଳା ବିଭାଗ ଇତ୍ୟାଦି। ମୁଁ

Digitized by srujanika@gmail.com

ଆମ କଲେଜରେ ପ୍ରଥମେ ଏହି ଦୁଇଟି ବିଭାଗର ନାମକରଣରେ ପରିବର୍ତ୍ତନ କରି ତାକୁ ଚିତ୍ର ବିଭାଗ ଓ ପାରମ୍ପରିକ କଳା ବିଭାଗ କରିଦେଲି । ମୁଁ ଭାବୁଥିଲି କେବଳ କଳାଭବନ ଧାରାର ଲେପ ଚିତ୍ର ଓ ଧୌତ ଚିତ୍ର ଉପରେ ଗୁରୁତ୍ୱ ନ ଦେଇ ଭାରତର ବିଭିନ୍ନ ପ୍ରାନ୍ତରେ ଗଢ଼ି ଉଠିଥିବା ଆଞ୍ଚଳିକ କଳାଶୈଳୀରେ ଯାହା ଶ୍ରେୟଃ ଅଛି, ତା'ର ଅନୁଶୀଳନ ଓ ଆହରଣ ପାରମ୍ପରିକ କଳା ବିଭାଗର ଧେୟ ହେଉ । ପାଠକଙ୍କ ଅବବୋଧ ପାଇଁ ଆମର ଆଭିମୁଖ୍ୟକୁ ଆହୁରି ଟିକିଏ ବିସ୍ତାର କରାଯାଇପାରେ । ଭାରତୀୟ ସଂସ୍କୃତି ଯିମିତି ନିରୋଳା ଭାରତୀୟ ନୁହେଁ, ବହୁ ଉତ୍ସର ସମ୍ମିଶ୍ରଣ, ସେଭଳି ଭାରତୀୟ କଳା ମଧ ବିଭିନ୍ନ କଳାଶୈଳୀରେ ପରିପୁଷ୍ଟ । ସେଗୁଡ଼ିକ ହେଲା ମୁଖ୍ୟତଃ ପରସିଆନ୍, ସୁଲ୍‌ତାନୀୟ ଓ ମୋଗଲ । ଆଗରୁ ତ ଗାନ୍ଧାର କଳାରେ ଗ୍ରୀସୀୟ ପ୍ରଭାବ ଥିଲା ଯାହା କୁଶାଣ ଶୈଳୀକୁ ପ୍ରଭାବିତ କରିଥିଲା । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ପୂର୍ବଭାରତର ବୌଦ୍ଧ କ୍ଷୁଦ୍ରଣ-ଚିତ୍ର ପରମ୍ପରା ସହିତ ପଶ୍ଚିମ ଭାରତର ଜୈନ ଚିତ୍ରକଳାର ଶୈଳୀ ଏବଂ ତା ପରବର୍ତ୍ତୀ କାଳରେ ମୋଗଲ, ରାଜପୁତ ଓ ପାହାଡ଼ୀ ଚିତ୍ରକଳା ଭାରତୀୟ କଳାର ମୁଖ୍ୟ ଉତ୍ସ ହୋଇ ରହିଲା । ମୁଁ ପାରମ୍ପରିକ ଚିତ୍ର ବିଭାଗର ଅଧ୍ୟାପକ ବଳଦେବ ମହାରଥୀଙ୍କୁ ଏହି ଭାରତୀୟ ଶୈଳୀର ଅନନ୍ୟତା ସଂପର୍କରେ ବୁଝେଇବାରେ ସକ୍ଷମ ହୋଇଥିଲି । ଉପର ଠାଉରିଆ ଭାବେ ଯାହା ତାହା ଚିତ୍ର ନ ଆଙ୍କି ତା'ର ଐତିହାସିକ ପଟ୍ଟଭୂମି ସ୍ଥିର କରି ଶିଳ୍ପ ସମନ୍ୱୟର ଏକ ନିର୍ଯ୍ୟାସ ଉପସ୍ଥାପନା କରିବା ପାଇଁ ଅଧ୍ୟୟନ ଓ ଅନୁଶୀଳନ ଆବଶ୍ୟକ ହେଉଥିଲା ଏବଂ ତାଙ୍କ ଦ୍ୱାରା ତାହା ସମ୍ଭବ ବୋଲି ମୁଁ ବଳଦେବଙ୍କୁ ପ୍ରତ୍ୟୟ ଦେଇଥିଲି । ପ୍ରଥମେ ପ୍ରଥମେ ବଳଦେବ ଏକ ନୂତନ କଳାଧାରାର ଅଭ୍ୟୁଦୟ ଘଟେଇବା ପାଇଁ ଆଗ୍ରହ ଦେଖେଇଲେ । ତାଙ୍କର ବ୍ୟକ୍ତିଗତ ଚିତ୍ରଣ ଶୈଳୀରେ ଓଡ଼ିଶୀ ପଟର ପ୍ରଭାବ ପ୍ରାଞ୍ଜଳ ହୋଇଥାଏ । କିନ୍ତୁ କଲେଜର ଶିକ୍ଷାପଦ୍ଧତି ଭିତରେ ଏକ ନୂତନ ଶୈଳୀର ପ୍ରବର୍ତ୍ତନ କରିବା ଅନ୍ୟକଥା । ଏବଂ ଏହା କରିବା କଷ୍ଟସାଧ ମଧ । ଏଣୁ ପରବର୍ତ୍ତୀ କାଳରେ ସେଥିପ୍ରତି ସେ ଉଦାସୀନ ରହିଲେ ।

ଉପନିବେଶୀୟ କଳା ପରିବର୍ତ୍ତେ ସ୍ୱାଧୀନତାପର ଆଧୁନିକ ଭାରତରେ ନୂତନକରି ଜନ୍ମ ନେଇଥିବା ଭାରତୀୟ କଳାରେ ଦେଶୀ ସୁଆଦ ଆଣିବା ପାଇଁ ଆମର ପ୍ରୟାସ ସଂପୂର୍ଣ୍ଣ ନୂଆ ନୁହେଁ । ବରୋଦା ବିଶ୍ୱବିଦ୍ୟାଳୟରେ ଚିତ୍ରକଳା ବିଭାଗର ପ୍ରଫେସର୍ ଗୁଲାମ୍ ମହମ୍ମଦ୍ ଶେଖ୍ ବା ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟରେ ଗ୍ରାଫିକ୍ କଳା ପ୍ରଫେସର୍ ଲକ୍ଷ୍ମୀ ଗୌଡ଼ ବା ଶାନ୍ତିନିକେତନର ପ୍ରାକ୍ତନ ଛାତ୍ର, ବିଶିଷ୍ଟ ଚିତ୍ରଶିଳ୍ପୀ ଏ. ରାମଚନ୍ଦ୍ରନ୍ ମୋଗଲ, ଡେକାନୀ ଓ କେରଳ ଭିତ୍ତି ଚିତ୍ରର ଆଧାରରେ ନିଜ ନିଜ ଚିତ୍ରଣ ଶୈଳୀକୁ ପୁଷ୍ଟଳ କରିଥିଲେ । ତାମିଲନାଡ୍ରୁ, କେରଳ ଓ ରାଜସ୍ଥାନରେ ଭାରତୀୟତାର ଦ୍ୱାହି ନେଇ ନୂତନ ମିଶ୍ରଣଧାରାର

Digitized by srujanika@gmail.com

ଅଭ୍ୟୁଦୟ ଘଟିଲା । ମୁଁ ଚାହୁଁଥିଲି ଆମ କଲେଜର ପାରମ୍ପରିକ ଚିତ୍ରକଳା ବିଭାଗରେ ମଧ୍ୟ ଶାନ୍ତିନିକେତନୀୟ ଲେପ ଚିତ୍ର ଓ ଧୌତ ଚିତ୍ର ପରିବର୍ତ୍ତେ ଏଭଳି ନୂତନଧାରାଟିଏ ଦାନା ବାନ୍ଧୁ । ମୁଁ କଲେଜରେ ଅଧ୍ୟକ୍ଷ ଥିଲାଯାଏଁ ଯାହାସବୁ ଘଟିଥିଲା ତାକୁ ଉପକ୍ରମଣିକା ମାତ୍ର କୁହାଯାଇପାରିବ । ତା'ପରେ ଏ ଦିଗରେ ବିଶେଷ କିଛି ଅଗ୍ରଗତି ହୋଇଛି ବୋଲି ମନେ ହେଉନି ।

ବିଦେଶୀ ପାଠରେ ଦେଶୀ ସୁଆଦ ଆଣିବା ପାଇଁ ସିଲାବସ୍ ବାହାରେ କର୍ମଶାଳା ମାଧ୍ୟମରେ ଓଡ଼ିଶାର ପ୍ରାଚୀନ କଳାକୌଶଳ ସଂପର୍କରେ ପିଲାମାନଙ୍କୁ ଧାରଣା ଦେବା ପାଇଁ ମୁଁ ଚେଷ୍ଟା କରିଥିଲି । ଓଡ଼ିଶାର କଳାଶିକ୍ଷା କ୍ଷେତ୍ରରେ ଏଭଳି ପରୀକ୍ଷା ଆଗରୁ କେବେ ହୋଇ ନଥିଲା । ଟେରାକୋଟା, ପଥରଖୋଦେଇ, ପିତଳଢ଼ଳେଇ, ପଟ ଓ ତାଳପତ୍ର ଚିତ୍ରର କୌଶଳ ଅତ୍ୟନ୍ତ ପ୍ରାଚୀନ । ପଟ ଓ ତାଳପତ୍ରକୁ ବାଦଦେଲେ ଅନ୍ୟଗୁଡ଼ିକ ଅନ୍ୟୂନ ଦୁଇ ତିନିହଜାର ବର୍ଷର ପୁରୁଣା ହେବ । ଅତଏବ ଆଧୁନିକ କଳାଶିକ୍ଷା ନାଁରେ ଏଭଳି ଏକ ବଳିଷ୍ଠ ବୈଷୟିକ ପରମ୍ପରାକୁ ହତାଦର କରିବା ଦୁର୍ଭାଗ୍ୟଜନକ ଘଟଣା ହେବ ବୋଲି ମୋର ଧାରଣା । କିଛିଦିନ ଧରି 'କ୍ରାଫ୍ଟ୍' ଶବ୍ଦକୁ କଳା ମହାବିଦ୍ୟାଳୟର ନାମକରଣ ସହିତ ନ ଯୋଡ଼ିବାର ଫେସନ୍ ଚାଲିଲା । ସତେ ଯିମିତି 'କ୍ରାଫ୍ଟ୍' ଶବ୍ଦ ଅସ୍ପୃଶ୍ୟ । ପାଶ୍ଚାତ୍ୟ କଳା ସମାଲୋଚକମାନେ 'କ୍ରାଫ୍ଟ୍' ବଦଳରେ 'ମାଇନର୍ ଆର୍ଟସ୍' ବା 'ଗୌଣ କଳା' ଶବ୍ଦ ପ୍ରୟୋଗ କଲେ । ଏଭଳି କେତେକ ଭୁଲ ବୁଝାମଣା ଫଳରେ ବୈଷୟିକ କୌଶଳର ମର୍ଯ୍ୟାଦା କମିଗଲା । ଏବେ କମ୍ପ୍ୟୁଟର୍‌ର ବହୁଳ ପ୍ରଚଳନ ଫଳରେ ସୂକ୍ଷ୍ମକଳା କେବଳ ଯାନ୍ତ୍ରିକ କୌଶଳରେ ପରିଣତ ହୋଇଗଲା ।

ପ୍ରତିବର୍ଷ ଆମେ ଆମ କଲେଜରେ ଅନ୍ତତଃ ଦଶ ବାରୋଟି କର୍ମଶାଳାର ଆୟୋଜନ କରୁଥିଲୁ । ତା ସହିତ ପ୍ରୟୋଗାତ୍ମକ ବକ୍ତୃତା ମଧ୍ୟ କରାଯାଉଥିଲା । ମୁଁ କେବଳ ୧୯୮୫ ମସିହାରେ ଅନୁଷ୍ଠିତ ବିଭିନ୍ନ ଏତାଦୃଶ କାର୍ଯ୍ୟକ୍ରମର ବିବରଣୀ ଏଠି ଉଲ୍ଲେଖ କରୁଛି । କର୍ମଶାଳାମାନ ହେଲା ଲୁଗାବୁଣା, ପଟଚିତ୍ର, ଲାଖକାମ, ବାତିକ୍, ପୋଷ୍ଟର୍, ଚିତ୍ରଣ, ଫଟୋଗ୍ରାଫି, ସଉରାଚିତ୍ର ଓ ମନ୍ଦିର ନିର୍ମାଣ । ଏହି କର୍ମଶାଳାଗୁଡିକୁ ସୁକାନ୍ତି ପଟ୍ଟନାୟକ, ବ୍ରଜବନ୍ଧୁ ଦାସ, ଦେବରାଜ ସାହୁ, ବନଜା ଚୌଧୁରୀ, ଅସୀମ ବସୁ, କାଶୀନାଥ ଜେନା, ରୂପ ଶବର ଓ ବିଜୟ କୁମାର ରଥ ପରିଚାଳନା କରିଥିଲେ । ପ୍ରୟୋଗାତ୍ମକ ବକ୍ତୃତା ପ୍ରଦାନ କରିଥିଲେ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ପ୍ରାକ୍ତନ ଅଧ୍ୟକ୍ଷ ଅଜିତ କେଶରୀ ରାୟ । ତାଙ୍କ ବକ୍ତୃତାର ବିଷୟ ଥିଲା, 'ଶିଶୁଟିଏ ଚିତ୍ର କାହିଁକି ଅଙ୍କନ କରେ ?' ସଂସ୍କୃତି ନିର୍ଦ୍ଦେଶାଳୟର ସଂପାଦକ ଭଗବାନ ପଣ୍ଡା 'ସଂସ୍କୃତ ସାହିତ୍ୟରେ ରୂପକଙ୍କର ବର୍ଣ୍ଣନା' ସଂପର୍କରେ ଅନ୍ୟ ଏକ ପ୍ରୟୋଗାତ୍ମକ ବକ୍ତୃତା ଦେଇଥିଲେ । ସେଭଳି ରାଜ୍ୟ ସଂଗ୍ରହାଳୟର

Digitized by srujanika@gmail.com

ପୋଥି ବିଭାଗର କ୍ୟୁରେଟର୍ ନୀଳମଣି ମିଶ୍ର କୋଠୀ ଓ ମଣ୍ଡଳ ସଂପର୍କରେ ଗୋଟିଏ ସଚିତ୍ର ଉପସ୍ଥାପନା କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ପ୍ରଫେସର୍ କରୁଣା ସାଗର ବେହେରା ରଙ୍ଗିନ ସ୍ଲାଇଡ୍ସ୍ ମାଧ୍ୟମରେ ଅଜନ୍ତାର ଭିତ୍ତିଚିତ୍ରର ଏକ ମନୋଜ୍ଞ ବାକ୍-ଚିତ୍ର ବ୍ୟାଖ୍ୟାନ ପ୍ରଦାନ କରିଥିଲେ । ସେଭଳି ତତ୍‌କାଳୀନ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ଅଧ୍ୟାପକ ଅଲେଖ ଚରଣ ସାହୁ ଭାରତୀୟ ଚିତ୍ରକଳାର ଏକ ସିଂହାବଲୋକନ ଉପସ୍ଥାପନ କରିଥିଲେ । ସେହିବର୍ଷ ଓଡ଼ିଶାର ପାରମ୍ପରିକ ପଟଚିତ୍ରକୁ ଆଧାର କରି ଗୋଟିଏ ସେମିନାର ଓ ଚିତ୍ର ପ୍ରଦର୍ଶନୀର ମଧ୍ୟ ଆୟୋଜନ କରାଯାଇଥିଲା । ଏହି କାର୍ଯ୍ୟକ୍ରମକୁ ରଘୁରାଜପୁରର ପଟଚିତ୍ରକାର ଭାଗବତ ମହାରଣା, ହସ୍ତଶିଳ୍ପ ଡିଜାଇନ୍ କେନ୍ଦ୍ରର ବରିଷ୍ଠ ସଂଚାଳକ ଶରତ ଚନ୍ଦ୍ର ମହାନ୍ତି, ଓଡ଼ିଶା ହସ୍ତଶିଳ୍ପ ଉନ୍ନୟନ କର୍‌ପୋରେସନ୍‌ର ଜେନେରାଲ ମ୍ୟାନେଜର୍ ଦିବ୍ୟସିଂହ ପ୍ରସାଦ ଗିରି, ଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ଶରତ କୁମାର ରଥ ନିମନ୍ତ୍ରିତ ହୋଇ ଆସିଥିଲେ । ସେମାନେ ପଟଚିତ୍ରର ପାରମ୍ପରିକତା, ସେଥିରେ ଆଧୁନିକତାର ପ୍ରୟୋଗ, ନୂତନ ରୂପକଳ୍ପର ଭୂମିକା ଏବଂ ପଟଚିତ୍ର ବିକ୍ରୟର ସୁଯୋଗ ସଂପର୍କରେ ନିଜର ସୁଚିନ୍ତିତ ବକ୍ତବ୍ୟ ରଖିଥିଲେ । ପ୍ରଦର୍ଶନୀରେ ସ୍ଥାନ ପାଇଥିବା ପଟଚିତ୍ରଗୁଡ଼ିକ ସେମିନାରକୁ ଦୃଶ୍ୟ-ପ୍ରମାଣ ଯୋଗାଇ ଦେଇଥିଲା ।

କର୍ମଶାଳାର ଆୟୋଜନ ପାଇଁ ସରକାରୀ ଅନୁଦାନ ସ୍ୱଳ୍ପ ଥିଲା କିନ୍ତୁ ଏହି କାର୍ଯ୍ୟକ୍ରମ ମହାବିଦ୍ୟାଳୟରେ ଗୋଟିଏ ଶିକ୍ଷଣୀୟ ବିଷୟ ଭାବରେ ଆଦୃତ ହେଉଥିଲା । ଆଧୁନିକ କଳାଶିକ୍ଷାର ଗତାନୁଗତିକତା ମଧ୍ୟରେ ପରମ୍ପରାକୁ ଉଜ୍ଜୀବିତ କରି ଐତିହ୍ୟ ସହିତ ସଂପର୍କିତ ହେବାର ଏହାଥିଲା ଏକ ଉତ୍ସାହପ୍ରଦ କାର୍ଯ୍ୟକ୍ରମ । କଲେଜର ବିଶ୍ୱବିଦ୍ୟାଳୟ ସ୍ୱୀକୃତ ପାଠ୍ୟକ୍ରମ ବାହାରେ ଏହି କର୍ମଶାଳାଗୁଡ଼ିକ ହିଁ ଥିଲା ପ୍ରେରଣାର ଉତ୍ସ । ମୁଁ ୧୯୯୧ ମସିହାରେ ଅନୁଷ୍ଠିତ ଆଉ କେତେକ କର୍ମଶାଳାର ସାମାନ୍ୟ ସୂଚନା ଏଠି ଦେବା ଉଚିତ ହେବ ଭାବୁଛି । ସେଗୁଡ଼ିକ ହେଲା-

ଢୋକ୍ରା ପିତଳଢଳେଇ କାମର ଦୁଇଟି ଶାଳ ଏବଂ ଟେରାକୋଟା ଶିଳ୍ପର ଦୁଇଟି ଶାଳ । ଢେଙ୍କାନାଳ ପାଖର ସଦେଇବେରେଣୀ ଗାଁର ପ୍ରଫୁଲ୍ଲ ଚନ୍ଦ୍ର ପ୍ରଧାନ ଓ ଚକ୍ରଧର ନାୟକ ଏବଂ କୋଣାର୍କ ପାଖ ବାଲିକନ୍ଦଳ ଗାଁର ବାବାଜୀ ଚରଣ ମୁଦୁଲି ଓ କୁଞ୍ଜବିହାରୀ ମୁଦୁଲି ଏହି ଚାରୋଟି ଶାଳକୁ ପରିଚାଳନା କରିଥିଲେ । ସେବର୍ଷ ଇତିହାସ ପ୍ରଫେସର୍ ରାଜେନ୍ଦ୍ର ପ୍ରସାଦ ଦାସ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ଉପରେ ରଙ୍ଗିନ ସ୍ଲାଇଡ୍ସ୍ ମାଧ୍ୟମରେ ଅତ୍ୟନ୍ତ ଶିକ୍ଷଣୀୟ ଭାଷଣଟିଏ ଦେଇଥିଲେ । ଶାଳ ମାଧ୍ୟମରେ ପାରମ୍ପରିକ କଳାଚର୍ଚ୍ଚା ପ୍ରତି ମୁଁ ଯଥେଷ୍ଟ ଗୁରୁତ୍ୱ ଦେଉଥିଲି । ଏଣୁ ପ୍ରତି ଶିକ୍ଷାବର୍ଷ ମାନଙ୍କରେ କଳାର ବିଭିନ୍ନ ବିଭବକୁ ନେଇ କର୍ମଶାଳାମାନ ଅନୁଷ୍ଠିତ କରାଉଥିଲି । ସରକାରୀ ଅର୍ଥ ବ୍ୟବସ୍ଥା ଉପରେ ନିର୍ଭର ନ

Digitized by srujanika@gmail.com

କରି  ବିଭିନ୍ନ ଉପାୟରେ ଅର୍ଥ ସଂଗ୍ରହ କରି ଏଗୁଡ଼ିକୁ ରୂପାୟନ କରାଯାଉଥିଲା । ଏହାକୁ ହିଁ ବିଦେଶୀ ପାଠରେ ଦେଶୀ ସୁଆଦ ବୋଲି ଆମେ ଆଖ୍ୟା ଦେଇଥିଲୁ । ଏସବୁ ଶାଳମାନଙ୍କରେ ଭାରତୀୟତା ଓ ଓଡ଼ିଶୀ କଳାର ସ୍ୱାଦୁ ପାଇ ହେଉଥିଲା । ଏହି ଶାଳ ମଧ୍ୟରେ ବେଳେବେଳେ ମାଟି କଣ୍ଢେଇ ସାଙ୍ଗରେ ଗୋବର କଣ୍ଢେଇର କଥା ପିଲା ଜାଣିବାର ସୁଯୋଗ ପାଉଥିଲେ । ପ୍ଲାଷ୍ଟିକ୍ କଣ୍ଢେଇର ଦୌରାତ୍ମ୍ୟରୁ କାଠ ଓ ଗୋବର କଣ୍ଢେଇର ଆଦର କିଭଳି କମିଯାଉଛି ଓ ଗାଁ ମାନଙ୍କର ଗରିବ କାରିଗରମାନେ କିଭଳି ପେଟପାଟଣାର ବ୍ୟବସ୍ଥା କରିପାରୁ ନାହାନ୍ତି, ତା'ର ଗୋଟିଏ ଜୀବନ୍ତ ଚିତ୍ର ପିଲାମାନେ ପାଇ ପାରୁଥିଲେ । ଆମ ସମାଜରେ ଗୋଟିଏ ପଟେ ନାରୀ ସ୍ୱାଧୀନତାର ନାରା ଦିଆଯାଉଥିଲାବେଳେ ଅନ୍ୟ ଦିଗରେ ନାରୀଶିଳ୍ପୀଙ୍କ ଦ୍ୱାରା ପ୍ରସ୍ତୁତ କଣ୍ଢେଇ ଭଳି ଏକ ସାଧାରଣ କଳାକୁ ବିଲୋପ କରି ଦିଆଯାଉଛି । କଲେଜ ସହିତ ମୁଁ ସଂପୃକ୍ତି ଥିବାର ଦଶ ବର୍ଷ ମଧ୍ୟରେ ପ୍ରାୟ ଦୁଇଶହ ସରିକି ଗ୍ରାମ୍ୟ କାରିଗର ଆମକୁ ସେମାନଙ୍କ କଳାତ୍ମକତାରେ ଉଦ୍‌ବୁଦ୍ଧ କରିଥିବେ । ଶହେରୁ ଊର୍ଦ୍ଧ୍ୱ ପଣ୍ଡିତ କଳାକୁ କେନ୍ଦ୍ର କରି ପ୍ରୟୋଗାତ୍ମକ ବକ୍ତୃତା ପ୍ରଦାନ କରିଥିବେ । ସେମିନାର କଥାର ଆଲୋଚନା ପରକୁ ଅଛି । ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ଅଧ୍ୟାପକମାନେ ଆମର ଅଭିନବ କାର୍ଯ୍ୟକ୍ରମ ସଂପର୍କରେ ଅବହିତ ରହୁଥିଲେ ମଧ୍ୟ ଏସବୁ ପ୍ରୟାସ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ନୁହେଁ, ଏଣୁ ଶିକ୍ଷଣୀୟ ନୁହେଁ ବୋଲି ଆମର ଶିକ୍ଷାପଦ୍ଧତିକୁ ହେୟ ଓ ତୁଚ୍ଛ ମଣୁଥିଲେ । ବିଚାରର ଦାରିଦ୍ର୍ୟ ଓ ଅସୂୟାର କଳାଛାଇ ସେହି ଅଧ୍ୟାପକମାନଙ୍କ ବିଚାର-ବୃତ୍ତିକୁ ଆଚ୍ଛନ୍ନ କରି ରଖିଥିଲା । ମୁଁ ଗାଁର କାରିଗରଙ୍କ କଥା ଓ ଲୋପ ପାଇଯାଉଥିବା ଶିଳ୍ପ କଥା କହେ ବୋଲି ଏବଂ ସେମାନଙ୍କ ସୁରକ୍ଷାରେ ବ୍ରତୀ ହେଉଛି ବୋଲି କିଏ କିଏ ମୁଁ ଜଣେ ଆଧୁନିକ ଶିଳ୍ପୀ ନୁହେଁ ବୋଲି ସନ୍ଦେହ କରନ୍ତି । କିନ୍ତୁ ଆଜିକାଲି ଗୋଟିଏ ହୋ ଉଠିଛି ଯେ ଏମାନଙ୍କ କଥା ନ କହିଲେ ତମେ ଆଧୁନିକ, ସଭ୍ୟ ଓ ସଂସ୍କୃତ ନୁହଁ । ସେଇ କଥା ତ ବିଦେଶୀ ପାଠରେ ଦେଶୀ ସୁଆଦ ।

Digitized by srujanika@gmail.com

# ୨୩. ବାର୍ଷିକ ଉତ୍ସବ: ଚିତ୍ରପ୍ରଦର୍ଶନୀ, ପୋର୍ଟ୍‌ଫୋଲିଓ ଓ ନାଟକ

ଆମେ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଅଧ୍ୟାପକ ଅନନ୍ତ ପଣ୍ଡାଙ୍କ ଉଦ୍ୟମ ଫଳରେ ଲାଗ ଲାଗ ଦୁଇବର୍ଷ ଆମ ତୈଳଚିତ୍ର ବିଭାଗରେ ବାର୍ଷିକ ପ୍ରଦର୍ଶନୀ ସମ୍ଭବ ହୋଇଥିଲା । ଏହା ଥିଲା କିନ୍ତୁ ବିଭାଗୀୟ ପ୍ରଦର୍ଶନୀ । ସମଗ୍ର ମହାବିଦ୍ୟାଳୟ ପକ୍ଷରୁ ପ୍ରଦର୍ଶନୀ କେବେ ଅନୁଷ୍ଠିତ ହେଇନି । ଦେଖିବାକୁ ଗଲେ ଚିତ୍ରପ୍ରଦର୍ଶନୀ ଚିତ୍ରକଳା ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଛବି କିଭଳି କାନ୍ଥରେ ବା ଡିସ୍‌ପ୍ଲେ ବୋର୍ଡ୍ ଦେହରେ ଟଙ୍ଗାଯାଏ, ଭାସ୍କର୍ଯ୍ୟ କିମିତି ଚଟାଣ ଉପରେ ପେଡେଷ୍ଟଲ୍‌ରେ ରଖାଯାଏ, ଛବିରେ କିଭଳି କାପ୍‌ସନ୍ ବା ଶୀର୍ଷକ ଲେଖାଯାଏ, କାଟ୍‌ଲଗ୍ ବା ପ୍ରଦର୍ଶନୀ ପୁସ୍ତିକା କିମିତି ଡିଜାଇନ୍ କରି ମୁଦ୍ରଣ କରାଯାଏ; ଏ ସବୁର କୌଶଳ ଶିକ୍ଷା କରିବା ହେଲା ପ୍ରଦର୍ଶନୀ ଅନୁଷ୍ଠାନର ଲକ୍ଷ୍ୟ । କିନ୍ତୁ ଏସବୁ ବ୍ୟତୀତ ଯାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ତା'ହେଲା ପିଲାମାନଙ୍କର ସାମଗ୍ରିକ କଳାକୃତିକୁ ଗୋଟିଏ ପର୍ଯ୍ୟାୟରେ ଅନୁଶୀଳନ କରି ଭଲ ଭେଲର ତାରତମ୍ୟ ଧାର୍ଯ୍ୟ କରିବା ବା ସେଗୁଡ଼ିକର ଉପଯୁକ୍ତ ମୂଲ୍ୟାୟନ କରିବା । କଲେଜରୁ ପାଠ ସାରି ପିଲାମାନେ ସାଧାରଣତଃ ସ୍କୁଲ ବା କଲେଜରେ ଚିତ୍ରଶିକ୍ଷକ ବା ଅଧ୍ୟାପକ ହେଲେ ବା ନିଜେ ସ୍ୱାଧୀନଭାବେ ଚିତ୍ରଶିଳ୍ପୀର ବୃତ୍ତିରେ ନିଜକୁ ନିୟୋଜିତ କଲେ ଚିତ୍ରପ୍ରଦର୍ଶନୀ ମୁଖ୍ୟ ଧନ୍ଦା ହୋଇ ଦେଖାଦିଏ । ଏହାକୁ ଉପଲବ୍ଧି କରି ମୁଁ ଆମ କଲେଜରେ ଚିତ୍ରପ୍ରଦର୍ଶନୀକୁ ପାଠ୍ୟକ୍ରମରେ ଗୁରୁତ୍ୱ ଦେଇଥିଲି ।

ଅନ୍ୟାନ୍ୟ ସାଧାରଣ ଆର୍ଟ୍‌ସ୍ ବା ସାଇନ୍‌ସ୍ କଲେଜ ଭଳି ଚାରିଘଣ୍ଟିଆ ପରୀକ୍ଷା ମାଧ୍ୟମରେ ଜଣେ ପରୀକ୍ଷାର୍ଥୀର ଉତ୍‌କର୍ଷ ମାପିବା ଚାରୁକଳା ବିଦ୍ୟାଳୟମାନଙ୍କରେ ସମ୍ଭବ ନୁହେଁ । ଥିଓରି ଅପେକ୍ଷା ପ୍ରାକ୍‌ଟିକାଲ୍ ପରୀକ୍ଷାରେ ପ୍ରତି ମୁହୂର୍ତ୍ତରେ ଅନିଷ୍ଟ ଆଶଙ୍କା ଅତ୍ୟନ୍ତ ଗୁରୁତର । ପୁଣି ଚାରୁକଳା ମହାବିଦ୍ୟାଳୟରେ ଥିଓରି ଅପେକ୍ଷା ପ୍ରାୟୋଗିକ ବା ପ୍ରାକ୍‌ଟିକାଲ୍‌ର ମାତ୍ରା ଯଥେଷ୍ଟ ବେଶି ବୋଲି ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ଭିତରର ପରୀକ୍ଷା ମାଧ୍ୟମରେ ସଫଳ ମୂଲ୍ୟାୟନ ସମ୍ଭବ ନୁହେଁ । ଏହା ବାଞ୍ଛନୀୟ ମଧ୍ୟ ନୁହେଁ । ଏଣୁ ଅଧିକାଂଶ ଚାରୁକଳା ମହାବିଦ୍ୟାଳୟରେ ଏବେ ଏଭଳି ପରୀକ୍ଷା ବ୍ୟବସ୍ଥା ଉଠେଇ ଦେଲେଣି । ତା ବଦଳରେ

Digitized by srujanika@gmail.com

ପ୍ରଚଳନ କଲେଣି 'ଡିସ୍‌ପ୍ଲେ' ବା କଳାପ୍ରଦର୍ଶନୀ । ଆମେ ଓଡ଼ିଶାର କଳାଶିକ୍ଷାରେ ପ୍ରଥମ କରି 'ଡିସ୍‌ପ୍ଲେ' କଥା ପ୍ରଚଳନ କରିଥିଲୁ । 'ଡିସ୍‌ପ୍ଲେ' ସାଙ୍ଗରେ ପୁଣି ସଂଯୋଗ କରିଦେଇଥିଲୁ 'ପୋର୍ଟ୍‌ଫୋଲିଓ' । 'ପୋର୍ଟ୍‌ଫୋଲିଓ'କୁ ଓଡ଼ିଆରେ ବସ୍ତାନି କୁହାଯାଇପାରେ । ଜଣେ ପିଲା ତା ବର୍ଷଯାକର କାମକୁ ବସ୍ତାନିରେ ସଜେଇ ନିଜର ଅଧ୍ୟାପକଙ୍କୁ ଦେଖେଇ ସାରିଲା ପରେ ଅଧ୍ୟକ୍ଷଙ୍କ ପାଖରେ ଜମା ଦିଏ ଏବଂ ଅଧ୍ୟକ୍ଷ କଲେଜ ବାହାରର ଜଣେ ବିଶିଷ୍ଟ ଶିଳ୍ପୀଙ୍କର ପରାମର୍ଶ ନେଇ କଲେଜର ସମସ୍ତ ଅଧ୍ୟାପକଙ୍କ ଉପସ୍ଥିତିରେ ତାର ମୂଲ୍ୟାୟନ କରନ୍ତି ।

ଆମ କଲେଜର ପ୍ରଥମ ବାର୍ଷିକ କଳାପ୍ରଦର୍ଶନୀ ରବୀନ୍ଦ୍ର ମଣ୍ଡପ ଠାରେ ତଦାନୀନ୍ତନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ସେ ଜଗନ୍ନାଥ ମହାପ୍ରଭୁଙ୍କ ଚିତ୍ର ଅଙ୍କନ କରି ଏକ ଅଭିନବ ଉପାୟରେ କଲେଜର ପ୍ରଥମ ପ୍ରଦର୍ଶନୀର ଶୁଭାରମ୍ଭ କରିଥିଲେ । ଅନ୍ୟ ଅତିଥିମାନଙ୍କ ମଧ୍ୟରେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ମନ୍ମଥନାଥ ଦାସ, ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ, ନିର୍ଦ୍ଦେଶକ ସୁବାସ ପାଣି ଏବଂ ଉପଶାସନ ସଚିବ ସୁଧାଂଶୁ ମୋହନ ରାଉତରାୟ । ମଞ୍ଚ ଉପରେ ଚଉକି ଟେବୁଲର ବନ୍ଦୋବସ୍ତ ନ କରି ଅତିଥିମାନେ ବସିବା ପାଇଁ ଆମେ ନୁଆଁଣିଆ ଖଟ, ଗଦି ଓ ମାଣ୍ଡି ଦେଇ ମଞ୍ଚ ସଜେଇ ଦେଇଥିଲୁ ମାଣ୍ଡିଗୁଡ଼ିକରେ ଦର୍ପଣ ଲଗା ହୋଇଥିଲା ଓ ଡ଼ାଳି ଲତାର କାରୁକାର୍ଯ୍ୟ ଖଚିତ ହୋଇ ଅତ୍ୟନ୍ତ ଆକର୍ଷଣୀୟ ଦେଖାଯାଉଥିଲା । ମୁଖ୍ୟମନ୍ତ୍ରୀ ଗଦିରେ ବସୁବସୁ ଏଗୁଡ଼ିକର ତାରିଫ୍ କରିବା ଆରମ୍ଭ କରିଦେଇଥିଲେ । ମୋର ଧାରଣା ଥିଲା ଗୋଟିଏ କଳା ମହାବିଦ୍ୟାଳୟର ପ୍ରତ୍ୟେକଟି କାର୍ଯ୍ୟ, ତାହା ପ୍ରଦର୍ଶନୀ ହେଉ ବା ମଞ୍ଚ ସଜାଣ ହେଉ କଳାତ୍ମକ ହେବା ବିଧେୟ । ପ୍ରଥମ ବର୍ଷର ପ୍ରଦର୍ଶନୀ ବେଳକୁ କଲେଜର କେବଳ ତିନିଜଣ ଅଧ୍ୟାପକ ଥିଲେ । ସେମାନେ ହେଲେ ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ ଓ ଚନ୍ଦ୍ରକୁମାର ସାମନ୍ତରାୟ । ଚିତ୍ରଗୁଡ଼ିକ ମୂଲ୍ୟାୟନ କରିବା ପାଇଁ ଆମେ ମୁରଲୀଧର ଟାଲିଙ୍କୁ ନିମନ୍ତ୍ରଣ କରିଥିଲୁ । ପ୍ରଥମ ବ୍ୟାଚ୍‌ର ସତଚାଳିଶି ଜଣ ଛାତ୍ରୀଙ୍କ ଶହେ ଏକଷଠି ଗୋଟି ଚିତ୍ର ଓ ଭାସ୍କର୍ଯ୍ୟ ପ୍ରଦର୍ଶିତ ହୋଇଥିଲା । ସେଥିରୁ ଅଧାଅଧି ପିଲା ପୁରସ୍କୃତ ହୋଇଥିଲେ । ଜଳରଙ୍ଗ ଚିତ୍ରରେ ସୁଶାନ୍ତ କୁମାର ମହାନ୍ତି, ଦୁର୍ଯ୍ୟୋଧନ ସେନାପତି ଓ ଉମାଶଙ୍କର ଦାସଙ୍କୁ ପୁରସ୍କାର ମିଳିଥିଲା । ଷ୍ଟଡି ବା ପ୍ରକୃତି ଅନୁକରଣରେ ପୁରସ୍କାର ପାଇଥିଲେ ନମିତା ଆଚାର୍ଯ୍ୟ, ପ୍ରଦ୍ୟୁମ୍ନ କୁମାର ମହାନ୍ତି ଓ ରବିନାରାୟଣ ବନିକ ଭାସ୍କର୍ଯ୍ୟରେ ସଂଗ୍ରାମ କେଶରୀ କର, ପ୍ରଦ୍ୟୁମ୍ନ କୁମାର ମହାନ୍ତି, ସୁଜୟ ସ୍ୱାଇଁ ଓ ଅସିତ ପାଣିଗ୍ରାହୀ । ଗ୍ରାଫିକ୍ କଳାରେ ପୁଣି ଉମାଶଙ୍କର ଦାସ, ସୋମନାଥ ଭଟ୍ଟାରିଆ ଓ ମନୋରଞ୍ଜନ ଦାସ । ତ୍ୱରିତ ରେଖାଙ୍କନରେ ଅମର କୁମାର ଜେନା, ଅଭିମନ୍ୟୁ ଜେନା ଓ ରଣଜିତ୍

Digitized by srujanika@gmail.com

କୁମାର ପରିଜା ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ସେଭଳି ବ୍ୟାପାରିକ କଳା ବିଭାଗର ପୋଷ୍ଟର୍ ଡିଜାଇନ୍‌ରେ ରଣଜିତ୍ କୁମାର ପରିଜା, ଅତସୀ ବସୁ, ମମତା ପଣ୍ଡା ଓ ରୀନା ପୁଷ୍ଟି ଓ ପ୍ରଚ୍ଛଦ ଚିତ୍ରଣରେ ସୁଶାନ୍ତ କୁମାର ମହାନ୍ତି, ବିନୋଦ ବିହାରୀ କର ଓ ସଂଘମିତ୍ରା ନାୟକ ଏବଂ ଡେକୋରେଟିଭ୍ ଡିଜାଇନ୍‌ରେ କମଳାକ୍ଷ କାନୁନ୍‌ଗୋ, ଡି. ଭୂଷଣ ରାଓ ଓ ଦୀପାଞ୍ଜଳି ମହାନ୍ତିଙ୍କୁ ପୁରସ୍କୃତ କରାଯାଇଥିଲା ।

କଲେଜର ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀ ପିଲାଙ୍କ ବାର୍ଷିକ ପରୀକ୍ଷା ଶେଷ ହେଲାପରେ ଜୁନ ମାସ ପ୍ରାରମ୍ଭରେ ଅନୁଷ୍ଠିତ ହେଉଥିଲା । ଏବେ ଅବଶ୍ୟ ସେଭଳି ହେଉନି । ପିଲାମାନେ ବର୍ଷସାରାର କାମ ଏକାଠି ପ୍ରଦର୍ଶିତ କରିବାର ସୁଯୋଗ ପାଉଥିଲେ । ପରସ୍ପର ଭିତରେ କାମର ଭଲମନ୍ଦ ସଂପର୍କରେ ଆଲୋଚନା ହେଉଥିଲା । ଶିକ୍ଷକ ଓ ଅଭିଭାବକ ମଧ୍ୟ ସେମାନଙ୍କର ପୁଅଝିଅର ଚିତ୍ର ଓ ଭାସ୍କର୍ଯ୍ୟକୁ ଅନ୍ୟମାନଙ୍କ ସାଙ୍ଗରେ ମିଳେଇ ଏକ ତୁଳନାତ୍ମକ ଅବବୋଧରେ ପହଞ୍ଚି ପାରୁଥିଲେ । ପାଇଥିବା ପିଲାମାନଙ୍କ ପାଇଁ ପ୍ରଦର୍ଶନୀରେ ପୁରସ୍କାର, ନତୁବା ପ୍ରଦର୍ଶନୀ ପୁସ୍ତିକା ପରିବାରରେ ଓ ଗାଁରେ ଦେଖେଇବାର ଅନ୍ୟ ଗୋଟିଏ ପ୍ରଲୋଭନ ଥିଲା । ଏସବୁରେ ନିଜର ପତିଆରା ଦେଖେଇବାର ସୁଯୋଗ ତ ନିଶ୍ଚୟ ଥିଲା, ତା ସହିତ କଲେଜର ଓ କଲେଜର ଅଧ୍ୟାପକଙ୍କ ପ୍ରଶଂସା ଓ ପାରିବାର ପଣିଆ ମଧ୍ୟ ସଂଶ୍ଳିଷ୍ଟ ହେଇ ରହୁଥିଲା । ଆମେ ପ୍ରଦର୍ଶନୀ ପୁସ୍ତିକାଗୁଡ଼ିକୁ ଭାରତର ଅନ୍ୟାନ୍ୟ ଚିତ୍ରକଳା ମହାବିଦ୍ୟାଳୟମାନଙ୍କୁ ପଠେଇ ଦେଉଥିଲୁ । ତାହା ଆମର ସୌହାର୍ଦ୍ଦ୍ୟ ଓ ସାରବତ୍ତାକୁ ସେମାନଙ୍କ ନିକଟରେ ପରିଚିତ କରିଦେଇ ପାରୁଥିଲା । ଏଣେ ଚିତ୍ର ପ୍ରଦର୍ଶନୀ ପାଇଁ ଆମେ ପିଲାଙ୍କ ଠାରୁ ସଂଗ୍ରହ କରିଥିବା କଳାକୃତିର ସମୀକ୍ଷା କରିବା ପାଇଁ ଓଡ଼ିଶାର ଯେଉଁ ବରିଷ୍ଠ ଓ ବିଶିଷ୍ଟ ଶିଳ୍ପୀମାନେ କଲେଜକୁ ଆସୁଥିଲେ ସେମାନେ ମଧ୍ୟ ପିଲାମାନଙ୍କ କାମରେ ସନ୍ତୋଷ ପ୍ରକାଶ କରୁଥିଲେ । ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟ ସହିତ ଆମ କଲେଜ ଆପେ ଆପେ ତଉଲି ହେଇଯାଉଥିଲା ।

ସୁଇଜରଲ୍ୟାଣ୍ଡସ୍ଥିତ ରିଟ୍‌ବର୍ଗ ସଂଗ୍ରହାଳୟର ନିର୍ଦ୍ଦେଶକ, ମୋ ବନ୍ଧୁ ଏବରହାର୍ଡ୍ ଫିସର୍‌ଙ୍କୁ ଅନୁରୋଧ କରି ବିଶିଷ୍ଟ ସୁଇସ୍ ଶିଳ୍ପୀ ଓ ବିଦୂଷୀ ଆଲିସ୍ ବୋନର୍‌ଙ୍କ ସ୍ମୃତିରେ ପ୍ରତିବର୍ଷ ଗୋଟିଏ ପୁରସ୍କାର ଦେବାର ବନ୍ଦୋବସ୍ତ କରିଥିଲି । ପୁରସ୍କାର ପାଇଁ ଜମା ଥିଲା ମାତ୍ର ଦଶ ହଜାର ଟଙ୍କା ଓ ସେଥିରୁ କଳନ୍ତର ବାବଦକୁ ଆମେ ବାର୍ଷିକ ପ୍ରାୟ ହଜାରେ ଟଙ୍କା ପାଉଥିଲୁ । ଅର୍ଥର ପରିମାଣକୁ ନେଇ ପୁରସ୍କାରକୁ ଆକଳନ କରାଯାଉ ନଥିଲା । ଏଲିସ୍ ବୋନର୍‌ଙ୍କ ଭଳି ଏତେ ବଡ଼ ଶିଳ୍ପୀଙ୍କ ସ୍ମୃତି ସହିତ ଜଡ଼ିତ ହୋଇଥିବାରୁ ପୁରସ୍କାରର ଗରିମା ବଢ଼ିଯାଇଥିଲା । ଯେଉଁ ଛାତ୍ରଛାତ୍ରୀ ଏହି ପୁରସ୍କାର ପାଉଥିଲେ ସେମାନେ ନିଜକୁ ଆଲିସ୍ ବୋନର୍ ଆୱାର୍ଡ଼ି ବୋଲି କହିବାରେ ଗର୍ବ ଅନୁଭବ କରୁଥିଲେ । ଏକ ଅଦ୍ଭୁତ

Digitized by srujanika@gmail.com

ସଂଯୋଗକ୍ରମେ ଯେଉଁ ଛାତ୍ରମାନେ ଆଲିସ୍ ବୋନର୍ ସ୍ମୃତି ପୁରସ୍କାର ପାଇଥିଲେ ସେମାନେ ଆଜିର ଶ୍ରେଷ୍ଠଶିଳ୍ପୀ । ସେମାନଙ୍କ ମଧ୍ୟରେ ଅଛନ୍ତି ଆର୍ତ୍ତବନ୍ଧୁ ରାଉତ, ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଅଞ୍ଜନ କୁମାର ସାହୁ, ଶୋଭନ କୁମାର, ଜଗନ୍ନାଥ ପଣ୍ଡା, କାଳିକିଙ୍କର ଦେ, ପ୍ରତାପ ଜେନା ପ୍ରଭୃତି । ଏକଥା ବେଳେ ବେଳେ ମନକୁ ଆସିଲେ ସେହି ମହିୟସୀ ମହିଳାଙ୍କ ସ୍ମୃତି ପ୍ରତି ସମ୍ମାନବୋଧ ଦ୍ୱିଗୁଣିତ ହୋଇଯାଏ ଓ ଆମ ପିଲାଙ୍କ କୃତିତ୍ୱରେ ମନ ଗୌରବାନ୍ୱିତ ହୋଇଯାଏ ।

ଏହି ପୁରସ୍କାର ଅନୁଷ୍ଠିତ ହେବାର କିଛିଦିନ ପରେ ଆମ ଭାଇନା କ୍ୱାଲିଟି ପ୍ରେସ୍‌ର ମାଲିକ ଜଗଦୀଶ ପାଣି ବଡ଼ପୁଅ ଦିବ୍ୟ ରଞ୍ଜନର ଆକସ୍ମିକ ମୃତ୍ୟୁରେ ବ୍ୟଥିତ ହୋଇ ପୁଅର ସ୍ମୃତି ଉଦ୍ଦେଶ୍ୟରେ ଆଉ ଗୋଟିଏ ପୁରସ୍କାର ପ୍ରଚଳନ କରିଥିଲେ । ତାହାଥିଲା ଦିବ୍ୟରଞ୍ଜନ ପାଣି ସ୍ମୃତି ପୁରସ୍କାର ।

ଚିତ୍ରକଳା ପ୍ରଦର୍ଶନୀ ବାର୍ଷିକ ଉତ୍ସବର ଅଂଶବିଶେଷ ଥିଲା । ଛାତ୍ରଛାତ୍ରୀଙ୍କ ଦ୍ୱାରା ନାଟକ ଅଭିନୟ ଏହି ଉତ୍ସବର ଅନ୍ୟତମ ମୁଖ୍ୟ ଆକର୍ଷଣ ଥିଲା । ଏଠାରେ ଦୁଇଟି ନାଟକର ସ୍ମୃତି ମୋ ପାଖରେ ଏବେ ବି ସାଇତା ଅଛି । ଗୋଟିଏ ହେଲା ଜଣେ ଶିଳ୍ପୀର ଜୀବନକୁ କେନ୍ଦ୍ରକରି ଗୁଣନିଧି ଜେନାଙ୍କ ଦ୍ୱାରା ଲିଖିତ ନାଟକ 'ଆହତ ଅଭିମାନ' ଓ ଅନ୍ୟଟି ମୋ ଦ୍ୱାରା ରଚିତ 'ଶ୍ଳୋକଛନ୍ଦ' । ପ୍ରଥମ ନାଟକଟି ସୂଚନା ଭବନରେ ପ୍ରୋସିନିଅମ୍ ଥିଏଟର୍‌ରେ ଓ ଦ୍ୱିତୀୟଟି ଭୁବନେଶ୍ୱର ଖାରବେଳ ନଗରସ୍ଥିତ ପରିବେଶ ରଙ୍ଗମଞ୍ଚରେ (ଏନ୍‌ଭିରୋନ୍‌ମେଣ୍ଟାଲ୍ ନାଟକ ଭାବେ) ଅଭିନୀତ ହୋଇଥିଲା । 'ଆହତ ଅଭିମାନ' ନାଟକରେ ଅର୍ଥପ୍ରାପ୍ତିକୁ ଗୌଣ କରିଦେଇ ଶିଳ୍ପୀ ଲଳିତ ନୀତିର କଥା, ଅଭିମାନର କଥା କହୁଚି । ଏଭଳି ଗୋଟିଏ ସଂଳାପ ବର୍ତ୍ତମାନ ହେଉଥିବା ଶିକ୍ଷାଭ୍ୟାସର ବିରୋଧୀ । ମୁଁ ଏହି ନାଟକର ଅଗ୍ରଲେଖ ଭାବେ ଲେଖିଥିବା ମୋ ବକ୍ତବ୍ୟର କିଛି ଅଂଶ ଏଠାରେ ଉଦ୍ଧାର କରିବା ଉଚିତ ହେବ ବୋଲି ଭାବୁଛି । ''ଏହି ନାଟକଟି ପଢ଼ି ସାରିଲା ପରେ ବା ଅଭିନୟ ଦେଖିସାରିଲା ପରେ ପ୍ରତ୍ୟେକ ଓଡ଼ିଆ ଶିଳ୍ପୀର ହତାଶା ଓ ବ୍ୟର୍ଥତାଭରା ହୃଦୟରେ ନିଶ୍ଚିତ ଏକ ନୂତନ ସ୍ପନ୍ଦନ ଜାଗ୍ରତ ହେବ । ଏହି ସ୍ପନ୍ଦନରୁ ଉତୁରୁଥିବା କ୍ଷୀଣ ଆଲୋକ ଭିତରେ ସେମାନେ ଶିଳ୍ପପତି ତଥା ନେତା ସିଦ୍ଧାର୍ଥକୁ ଏବଂ ତାଙ୍କ ପତ୍ନୀ ଶୁଭାଙ୍ଗୀଙ୍କୁ ନିଶ୍ଚୟ ଭେଟିବେ । ହୁଏତ କେହି କେହି ଶିଳ୍ପୀ ବନ୍ଧୁ ଶୁଭାଙ୍ଗୀଙ୍କ ହାତରେ ଦଶ ହଜାର ଟଙ୍କାର ନୋଟ ବିଡ଼ାଟିଏର ସ୍ୱପ୍ନ ମଧ ଦେଖିବା ପାଇଁ ଚେଷ୍ଟା କରିବେ । କିନ୍ତୁ ନାଟ୍ୟକାର ନାଟକର ଭାସ୍କର ଶିଳ୍ପୀ ଲଳିତଙ୍କ ମନରେ ଯେଉଁ ଚିନ୍ତାର ଉଦ୍ରେକ କରିଛନ୍ତି ଏବଂ ତାଙ୍କ ମୁହଁରେ ଯେଉଁ ଭାଷା ଦେଇଛନ୍ତି, 'କହିପାରିବ ଲତା ! ସ୍ରଷ୍ଟାର ସୃଷ୍ଟିରେ ଗୋଟିଏ ମଣିଷ ପରି ଅବିକଳ ଆଉ ଗୋଟିଏ ମଣିଷ କେଉଁଠି ଦେଖିଛ ?' ତାହା ପ୍ରତ୍ୟେକ ଶିଳ୍ପୀକୁ ସ୍ରଷ୍ଟାର

Digitized by srujanika@gmail.com

ସଚେତନତା ଆଣିଦେବ ଏବଂ ନିଛକ ଶିଳ୍ପୀ ହୃଦୟଟି ନିଶ୍ଚୟ ଚିତ୍କାର କରିବ; 'ଓଃ ଶେଷରେ ମୋତେ ଗ୍ରାହକର ବରାଦ ଅନୁଯାୟୀ ମଡ଼େଲ୍ କରିବାକୁ ହେବ ।''

ଏହି ନାଟକରେ ପୁରୁଷ ଚରିତ୍ରରେ ଚନ୍ଦ୍ରଭାନୁ, ସୁଧାକର, ପ୍ରଦୀପ କୁମାର, ଶରତ କୁମାର, ସନ୍ତୋଷ କୁମାର ଓ ସୂର୍ଯ୍ୟ ନାରାୟଣ ଏବଂ ନାରୀ ଚରିତ୍ରରେ ସୁଧାଂଶୁବାଳା ସାହୁ ଓ ଅନୁସୂୟା ଦାସ ଅଭିନୟ କରିଥିଲେ । ଅତ୍ୟନ୍ତ ଦୁଃଖର କଥା କେଉଁ ଗୋଟିଏ ଅଭାବନୀୟ ପରିସ୍ଥିତିରେ ପଡ଼ି ଅନୁସୂୟା ଆତ୍ମହତ୍ୟା କରିସାରିଛି । ନାଟକରେ ନୁହେଁ, ବାସ୍ତବ ଜୀବନରେ । ନାଟକ ନିର୍ଦ୍ଦେଶନା ଦେଇଥିଲେ କଲେଜର ଇନ୍‌ଷ୍ଟ୍ରକ୍‌ଟର୍ ଗଜେନ୍ଦ୍ର କୁମାର ସାହୁ ଓ ମଞ୍ଚ ପରିଚାଳନା କରିଥିଲେ ଛାତ୍ର ମହେଶ ପ୍ରସାଦ ଆଚାର୍ଯ୍ୟ ।

'ଶ୍ଳୋକଛନ୍ଦ' ନାଟକର ଅନୁପ୍ରେରଣା ହେଲା ଲଣ୍ଡନର ରଏଲ୍ ଥିଏଟର୍‌ସ୍‌ରେ ମୁଁ ଦେଖିଥିବା ଗୋଟିଏ ନାଟକ । ନାଟକଟି ଥିଲା 'ଏ ଡେ ଇନ୍ ଦ ପାର୍କ୍ ୱିଥ୍ ଜର୍ଜ୍' ପାର୍କ୍‌ରେ ଜର୍ଜ୍‌ଙ୍କ ସହିତ ଦିନେ । ଜର୍ଜ୍‌ଙ୍କ ପୁରା ନାଁ ହେଲା ଜର୍ଜ ସିଉରା, ପଏଣ୍ଟିଲିଜମ୍ ବା ବିନ୍ଦୁବାଦର ପ୍ରଖ୍ୟାତ ଶିଳ୍ପୀ । ଏହାକୁ କିଏ କିଏ ଡିଭିଜନିଜମ୍ ମଧ୍ୟ କହିଥାନ୍ତି । ବିନ୍ଦୁବାଦର ମୂଳମନ୍ତ୍ର ହେଲା କାନଭାସ୍ ଉପରେ ଗୋଟିଏ ରଙ୍ଗକୁ ଅନ୍ୟ ରଙ୍ଗ ସହିତ ମିଶେଇ ନ ଦେଇ ଅଲଗା ଅଲଗା ବିନ୍ଦୁରେ ଥାପନା କରିବା ଓ ପ୍ରତ୍ୟେକ ରଙ୍ଗର ସ୍ୱାଭାବିକ ଔଜ୍ଜ୍ୱଲ୍ୟକୁ ଗ୍ରହଣ କରିବା । ଏହି ବର୍ଣ୍ଣବିନ୍ଦୁ ଗୁଡ଼ିକ କେବଳ ବସ୍ତୁର ନିଜସ୍ୱ ରଙ୍ଗ ପ୍ରକାଶ କରେନାହିଁ, ଏ ବିନ୍ଦୁଗୁଡ଼ିକ ଉପରେ ଆଲୋକ ସଂପାତରେ ଘଟୁଥିବା ବର୍ଣ୍ଣାଳୀକୁ ମଧ୍ୟ ପ୍ରତିଫଳିତ କରେ । ପରବର୍ତ୍ତୀ ସମୟରେ ଡ଼ିଭିଜନିଜମ୍‌କୁ ନୂତନ ଆଭାସବାଦ ବୋଲି ମଧ୍ୟ କୁହାଯାଇଛି ।

ଏହି ନାଟକରେ ବ୍ୟବହୃତ ଜର୍ଜ୍‌ଙ୍କ ଚିତ୍ରର ଅନ୍ତରାଳରେ ଗଢ଼ିଉଠିଥିବା ଏକ କାହାଣୀ ମୋତେ ଆକର୍ଷିତ କରିଥିଲା । ପ୍ରତି ସଂଧ୍ୟାରେ ହ୍ରଦକୂଳରେ ଜୁଟିଯାଉଥିବା ପ୍ରେମିକ ପ୍ରେମିକା ଆଇସ୍‌କ୍ରିମ୍ ବିକାଳି, ତା'ର କୁକୁର, ବୟସ୍କ ଦଂପତି, ହ୍ରଦରେ ଗାଧୋଇବାକୁ ଆସୁଥିବା ଯୁବକମାନଙ୍କର ଦୈନନ୍ଦିନ ଖବର ଚିତ୍ରଶିଳ୍ପୀ ସିଉରା କେବଳ ରଖୁନଥିଲେ, ସେହି ଚରିତ୍ରମାନଙ୍କୁ ପିଛା କରି ସେମାନଙ୍କର ସଂପର୍କର କାହାଣୀକୁ ଚିତ୍ରରେ ଫୁଟେଇବା ପାଇଁ ମଧ୍ୟ ଚେଷ୍ଟା କରୁଥିଲେ । ଏଣୁ ଚିତ୍ରର ଦୃଶ୍ୟମାନ ରୂପମାନେ କାନ୍‌ଭାସ୍‌ର ସୀମିତ ସରହଦ ମଧ୍ୟରେ ଆବଦ୍ଧ ନ ରହି ପ୍ରତ୍ୟେକେ ସେମାନଙ୍କ ନିଜ ନିଜର ଗୋଟିଏ ଗୋଟିଏ ସାହିତ୍ୟ ରଚନା କରିଦେଇଥିଲେ ।

ମୁଁ ଆମ କଲେଜ ନାଟକରେ ସିଉରାଙ୍କ ଚିତ୍ରର ଦୃଶ୍ୟଟିକୁ ଉଠେଇ ଆଣି ଶରତ ଚନ୍ଦ୍ର ଦେବଙ୍କ ଦ୍ୱାରା ରଚିତ 'ଶ୍ଳୋକଛନ୍ଦ' ଚିତ୍ରର କାନ୍‌ଭାସ୍ ଉପରେ ଥାପି ଦେଇଥିଲି । ଏଣୁ ଏହି ଚିତ୍ରର ଗୋଟିଏ କାଳ୍ପିକ ପଟ୍ଟଭୂମିଟିଏ ତିଆରି କରି ତା'ରି ଅବଲମ୍ବନରେ ଛୋଟିଆ ନାଟକଟିଏ ରଚନା କରିଦେଇଥିଲି । ନାଟକଟିର ଭିନ୍ନଧରଣର କାହାଣୀ ସମସ୍ତଙ୍କୁ

Digitized by srujanika@gmail.com

ଆକୃଷ୍ଟ କରିଥିଲା । ବିଭିନ୍ନ ଛାତ୍ରଛାତ୍ରୀ ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ । ଆଞ୍ଚଳିକ କଳାକେନ୍ଦ୍ରର ପ୍ରବେଶ ଦ୍ୱାର ସଂଲଗ୍ନ ପାହାଚ, ପ୍ରବେଶଦ୍ୱାର ଡ଼ାହାଣ ପଟର ବାଲ୍‌କୋନି, ପ୍ରଥମ ମହଲା ଛାତ, ବଗିଚା ଆଉ ଯେତେସବୁ ସମ୍ଭାବ୍ୟ ସ୍ଥାନ ଅଭିନୟ ପାଇଁ ବ୍ୟବହୃତ ହେଉଥିଲା । ନାଟକର ନାୟକ ଶରତଚନ୍ଦ୍ର ଭୂମିକାରେ ଅଭିନୟ କରିଥିବା ଛାତ୍ର ଅନୁପ ଚାନ୍ଦ ଶେଷରେ ମୋ ଗୁରୁ ହୋଇ ରହିଗଲା । ଖଲ୍ଲିକୋଟ କଳାବିଦ୍ୟାଳୟରେ ଶରତଚନ୍ଦ୍ର ମୋ ଅଧକ୍ଷ ଥିଲେ ଏଣୁ ଅନୁପକୁ କିଛିଦିନ ଯାଏଁ ମୁଁ ସାର୍ ବୋଲି ସମ୍ବୋଧନ କରୁଥିଲି ।

କଲେଜର ବାର୍ଷିକ ଉତ୍ସବ ଉପଲକ୍ଷେ ଅନୁଷ୍ଠିତ ଚିତ୍ରପ୍ରଦର୍ଶନୀ, ପୋର୍ଟ୍‌ଫୋଲିଓ ଓ ନାଟକ ଭିତରେ ଗୋଟିଏ ଅନ୍ତଃସ୍ରୋତ ପ୍ରବାହିତ ହେଉଥିଲା । ତାହା ଥିଲା ଉପସ୍ଥାପନାର କଳାତ୍ମକତା । ପୋର୍ଟ୍‌ଫୋଲିଓରେ ସଂଗୃହିତ କୃତି ଛାତ୍ର,ଛାତ୍ରୀଙ୍କ ଚିତ୍ର ଓ ଭାସ୍କର୍ଯ୍ୟ ପଞ୍ଜୀକରଣରେ ସହାୟକ ହେଉଥିଲା । ନାଟକ ସଂପର୍କର ଏକ ନୂତନ ଦିଗକୁ ଉନ୍ମୋଚିତ କରୁଥିଲା ତ ଚିତ୍ରପ୍ରଦର୍ଶନୀ ଶିକ୍ଷା ଆହରଣର ପରିମାପକ ଥିଲା । ଏହି ଘଟଣାମାନ ଗୋଟିଏ ଶିକ୍ଷାବର୍ଷର ଥିଲା ଶୀର୍ଷ ଅନୁଭବ ଯାହା ଆମକୁ ଓ ପିଲାମାନଙ୍କୁ ନବ ନବ ଉନ୍ମାଦନାରେ ଛନ୍ଦି ଦେଉଥିଲା ।

Digitized by srujanika@gmail.com

# ୨୪. କଳାସମାଲୋଚନା ଓ ନାନ୍ଦନିକ ତତ୍ତ୍ୱର ପତ୍ରିକା : ଚିତ୍ର

ଆମେ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବା ବେଳେ କଳା-ଅଭ୍ୟାସ ସହିତ କଳା ସମାଲୋଚନା, ନାନ୍ଦନିକ ତତ୍ତ୍ୱ ବା କଳା ଇତିହାସ ଅଧ୍ୟୟନ କରୁ ନଥିଲୁ । ଅଧାରୁ ପାଠ ଶାଠ ଛାଡ଼ି ଆସିଥିବା ଅଧିକାଂଶ ପିଲା ପାଠର ଧାର ଧରୁ ନଥିଲେ । ଖଲ୍ଲିକୋଟର ପାହାଡ଼ ପର୍ବତ ଘେରା ଏକ ମଧ୍ୟଯୁଗୀୟ ଜମିଦାରୀ ଥିଲା କଳା ଜଗତରେ ଏକାନ୍ତ ତୀର୍ଥ । ତା'ରି ବାହାରେ ଯେ କଳାର ଏକ ବୃହତ୍ତର ପରିଧି ଅଛି ସେଥି ପ୍ରତି କାହାର ନିଘା ନଥିଲା । ଏଣୁ ଆମର ପାଠ ଥିଲା ଡିପ୍ଲୋମା, ଡିଗ୍ରୀ ନୁହେଁ । ଏହି ଅଭାବକୁ ପୂରଣ କରିବା ପାଇଁ ବ୍ୟକ୍ତିଗତ ସ୍ତରରେ ମୁଁ ବହୁ ଉଦ୍ୟମ କରିଛି । ସାନ୍ଧ୍ୟ କଲେଜର ପାଠ ସାଙ୍ଗକୁ ବିଶ୍ୱବିଦ୍ୟାଳୟର ଘରୋଇ ପରୀକ୍ଷା ଓ ଶେଷରେ କଳାରେ ପିଏଚ୍.ଡି. ଏହି ହୀନମ୍ମନ୍ୟତାକୁ ବହୁ ଭାବରେ ଦୂରେଇ ଦେଇଛି ।

ଏଣୁ କଳାଭ୍ୟାସ ସହିତ ପାଠପଢ଼ା ଉପରେ ଗୁରୁତ୍ୱ ଦେବା ମୋର ଅସ୍ମିତାଗତ ହୋଇପଡିଛି । ସେଥିପାଇଁ ବ୍ୟକ୍ତିଗତ ଭାବେ ମୁଁ ବହୁ ଅସୁବିଧାର ସମ୍ମୁଖୀନ ହୋଇଛି । ବିଭୂତି କାନୁନ୍‌ଗୋ କଲେଜର ଅଧକ୍ଷ ହେବାପରେ ମୋ ମନକୁ ଆସିଲା, କଲେଜଟିଏ ଚାଲିବ, ଅଥଚ ସେଥିରେ ପାଠପଢ଼ା ହେବ ନାହିଁ ? ଇଏ କିଭଳିଆ କଥା । ଏଣୁ କଳା ଇତିହାସକୁ ପାଠ୍ୟକ୍ରମରେ ଯୋଡ଼ିଲି ଏବଂ କଲେଜରୁ ପତ୍ରିକାଟିଏ ପ୍ରକାଶ କରିବା ପାଇଁ ବ୍ୟବସ୍ଥା କଲି । ପତ୍ରିକାର ନାଁ ରହିଲା 'ଚିତ୍ର '। କଳା ଓ ନାନ୍ଦନିକତାର ବାର୍ଷିକ ପତ୍ରିକା । ଚିତ୍ରମୟ ଏ ଜଗତ, ଏହି ପରିକଳ୍ପନାରୁ ଏଭଳି ନାମକରଣ । ଚିତ୍ର କହିଲେ ସାଧାରଣତଃ ଯାହା ବୁଝାଯାଏ, ସେତିକିରେ ତାର ବ୍ୟାଖ୍ୟା ସୀମିତ ନୁହେଁ । ଚିତ୍ର ହେଉଛି ବାସ୍ତବରେ ଭାସ୍କର୍ଯ୍ୟ, ଅର୍ଦ୍ଧଚିତ୍ର ହେଉଛି ସ୍ଫୀତୋଚ୍ଚ ଭାସ୍କର୍ଯ୍ୟ ବା ରିଲିଫ୍ ଏବଂ ଚିତ୍ରାଭାସ ହେଲା ଆଜିର ଅସଲ ଚିତ୍ର ବା ପେଣ୍ଟିଙ୍ଗ୍ ।

ଚିତ୍ରର ପ୍ରଥମ ସଂଖ୍ୟା କଲେଜର ପ୍ରଥମ ବାର୍ଷିକ ଉତ୍ସବରେ ଉନ୍ମୋଚିତ ହୋଇଥିଲା । ଗ୍ରାଫ୍‌ଟେକ୍ ପ୍ରେସ୍‌ର ନିତ୍ୟାନନ୍ଦ ମିଶ୍ର ତାକୁ ଅଫ୍‌ସେଟ୍‌ରେ ଛପେଇ ଥିଲେ । ପତ୍ରିକାର ପ୍ରଥମ ଲେଖା ଥିଲା, ନନ୍ଦଲାଲ୍ ବସୁଙ୍କର 'ଶିକ୍ଷାରେ କଳାର ଭୂମିକା' । ସୁରେନ୍ଦ୍ର ନାଥ

Digitized by srujanika@gmail.com

ଠାକୁର ମୂଳ ବଙ୍ଗଳାରୁ ଏହି ଲେଖାକୁ ଇଂରାଜୀରେ ଅନୁବାଦ କରିଥିଲେ । ଦ୍ୱିତୀୟ ପ୍ରବନ୍ଧଟି ସଂସ୍କୃତି ବିଭାଗର ନିର୍ଦ୍ଦେଶକ ସୁବାସ ପାଣିଙ୍କର 'ଓଡ଼ିଶାର କଳା ପରମ୍ପରା' । ଲକ୍ଷ୍ନୌ କଳା ମହାବିଦ୍ୟାଳୟର ଅଧ୍ୟାପକ ଅସଦ୍ ଅଲ୍ଲୀଙ୍କ କଳାଶିକ୍ଷା ଓ କଳାଭ୍ୟାସ ସଂପର୍କୀୟ ପ୍ରବନ୍ଧ ତା'ପରେ ମୁଦ୍ରିତ ହେଉଥିଲା । ମୋର ଲେଖା 'ଓଡ଼ିଶାର ପଥର ଗୁହାର ଚିତ୍ର' ପତ୍ରିକାର ଥିଲା ଚତୁର୍ଥ ପ୍ରବନ୍ଧ । ଏବଂ ଶେଷ ଲେଖାଟି ଯାହା ଅତ୍ୟନ୍ତ ଉପାଦେୟ ମନେହେଉଥିଲା ତାହା ବାବୁଲା ସେନାପତିଙ୍କର 'କଳା ପଞ୍ଜରର ମୌଳିକ ଉପାଦାନ ।' ବାବୁଲା ସେନାପତି ଗୋଟିଏ ସାରଣୀ ମାଧ୍ୟମରେ ରେଖାର ବିଭିନ୍ନ ବିଭାବକୁ ଅତି ପ୍ରାଞ୍ଜଳ ଭାବରେ ପ୍ରତିପାଦିତ କରିଦେଇଥିଲେ । ଏହା ସହିତ ବର୍ଣ୍ଣର ଏକ ବିସ୍ତୃତ ବିବରଣୀ ମଧ୍ୟ ଦେଇଥିଲେ । ତାଙ୍କ ପ୍ରବନ୍ଧରେ ଯେଉଁ ଅଂଶଟି ଭାବୋଦ୍ଦୀପକ ଥିଲା ତାହାହେଲା ଟେକ୍ସଚର୍ । 'ଟେକ୍ସଚର୍' ପରିଭାଷା ବୟନ ଶିଳ୍ପରୁ ଆହରିତ ହୋଇ କଳାରେ ବ୍ୟବହୃତ ହେଉଛି ।

ମୋର ସବୁବେଳେ ଧାରଣା ରହିଆସିଛି ଯେ ଆମେ ଚିତ୍ରର ନଅ ଗୋଟି ସଂଖ୍ୟା ପ୍ରକାଶ କରିଥିଲୁ । ଖୋଜାଖୋଜିରେ ମୁଁ ଆଠଟି ପାଇଛି । ଦଶମ ସଂଖ୍ୟାଟିର ପ୍ରକାଶନ ଅଧ୍ୟାପକ ବନ୍ଧୁମାନଙ୍କ ଉପରେ ନ୍ୟସ୍ତକରି ଦେଇ ମୁଁ ଅକୃତକାର୍ଯ୍ୟ ହେଇଥିଲି । ଶେଷରେ ମୁଁ କଲେଜ ଛାଡ଼ିଲା ପରେ ଏହି ପତ୍ରିକାର ପ୍ରକାଶନ ସଂପୂର୍ଣ୍ଣ ବନ୍ଦ ହେଇଯାଇଛି । ମୋ ପାଖରେ ଥିବା ଆଠଟି ସଂଖ୍ୟାରେ ମୋଟ ତେୟାଳିଶି ଗୋଟି ଲେଖା ପ୍ରକାଶ ପାଇଛି । ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଆମକୁ ଲେଖା ଦେଇଥିଲେ ସେମାନଙ୍କ ଭିତରେ ଅଛନ୍ତି, ଇଲାଷ୍ଟ୍ରେଟେଡ୍ ୱିକ୍‌ଲିର ପୂର୍ବତନ ସଂପାଦକ ଡକ୍ଟର ଏ.ଏସ୍. ରମଣ, ଶାନ୍ତିନିକେତନର ପ୍ରଫେସର୍ କେ.ଜି. ସୁବ୍ରମଣିୟନ୍, ପ୍ରଫେସର୍ ଜୟନ୍ତ ଚକ୍ରବର୍ତ୍ତୀ, ଡକ୍ଟର ନିର୍ମଳେନ୍ଦୁ ଦାସ, ଆଗ୍ରା ବିଶ୍ୱବିଦ୍ୟାଳୟର ପ୍ରଫେସର୍ ବି.ପି. କମ୍ବୋଜ୍, ନାସନାଲ୍ ମଡର୍ଣ୍ଣ ଆର୍ଟ୍ ଗ୍ୟାଲେରୀର ନିର୍ଦ୍ଦେଶକ ଡକ୍ଟର ଅନିଶ୍ ଫାରୁକି ଗ୍ରାଫିକ୍ କଳାର ସ୍ୱନାମଧନ୍ୟ ଆନ୍ତର୍ଜାତିକ ଶିଳ୍ପୀ ପ୍ରଫେସର୍ ଏନ୍. କୃଷ୍ଣା ରେଡ୍ଡୀ, ଅହମ୍ମଦାବାଦର ଚିତ୍ରଶିଳ୍ପୀ ହାକୁ ଶାହା, ବରୋଦା ଏମ୍.ଏସ୍. ବିଶ୍ୱବିଦ୍ୟାଳୟର ପ୍ରଫେସର୍ ରମେଶ ପାଣ୍ଡ୍ୟା ଓ ଗୌରୀ ପାରିମୁ ଏବଂ ବମ୍ବେର ମେହେରା କଣ୍ଟ୍ରାକ୍‌ଟର । ଜର୍ମାନୀର ବିଶିଷ୍ଟ ଐତିହାସିକ ପ୍ରଫେସର୍ ହରମାନ୍ କୁଲ୍‌କେ ମଧ୍ୟ ଆମ ପତ୍ରିକାରେ ପ୍ରକାଶନ ପାଇଁ ପ୍ରବନ୍ଧ ପଠେଇଥିଲେ । ଓଡ଼ିଶାରୁ ବିଶିଷ୍ଟ କବି ଡକ୍ଟର ସୀତାକାନ୍ତ ମହାପାତ୍ର, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର୍ କରୁଣା ସାଗର ବେହେରା, ଓଡ଼ିଶା ପ୍ରତ୍ନତତ୍ତ୍ୱ ବିଭାଗର ସୁପରିନ୍‌ଟେଣ୍ଡେଣ୍ଟ ଡକ୍ଟର ବିଜୟ କୁମାର ରଥଙ୍କ ଲେଖା ମଧ୍ୟ ପ୍ରକାଶ ପାଇଥିଲା ।

ପ୍ରତି ସଂଖ୍ୟାରେ ବର୍ଷସାରାର ମହାବିଦ୍ୟାଳୟ-କାର୍ଯ୍ୟକ୍ରମର ସଂକ୍ଷିପ୍ତ ବିବରଣୀ ସହିତ ମୋର ସଂପାଦକୀୟ ମଧ୍ୟ ସ୍ଥାନ ପାଉଥିଲା । ମୁଁ ପ୍ରତି ସଂଖ୍ୟାରେ ଓଡ଼ିଶାର ପାରମ୍ପରିକ

Digitized by srujanika@gmail.com

ତଥା ସାମ୍ପ୍ରତିକ କଳା ସଂପର୍କରେ ଲେଖିଥିଲି । ଅଧ୍ୟାପକ ଚନ୍ଦ୍ରମଣି ବିଶ୍ୱାଳ ଓ ବ୍ୟୋମକେଶ ମହାନ୍ତି, ଦୁଇତିନୋଟି ପ୍ରବନ୍ଧ ପ୍ରକାଶ କରିଥିଲେ । ଛାତ୍ରମାନଙ୍କ ମଧ୍ୟରୁ ଦିଲ୍ଲୀପ କୁମାର ତ୍ରିପାଠୀ ଭଞ୍ଜନଗରର କଳ ଘୋଡ଼ା ସଂକ୍ରାନ୍ତରେ ଓ ଭଞ୍ଜନଗର ପାଖ ନେଟଙ୍ଗାର ରାମସ୍ୱାମୀ ମନ୍ଦିରର କାଠ ଖୋଦେଇ ଉପରେ ଦୁଇଟି ଗବେଷଣା ମୂଳକ ପ୍ରବନ୍ଧ ପ୍ରକାଶ କରିଥିଲା ।

ପତ୍ରିକାଟିର ପ୍ରକାଶନ ପାଇଁ ଅଧ୍ୟାପକ, ଛାତ୍ର ଓ ଛାତ୍ରୀମାନେ ସବୁମନେ ସହଯୋଗ କରୁଥିଲେ । ଅଧ୍ୟାପକ ଡି.ଏନ୍.ରାଓ କଲେଜର ଗ୍ରାଫିକ୍ ଷ୍ଟୁଡ଼ିଓରେ ଷଷ୍ଠ ସଂଖ୍ୟାର ପ୍ରଚ୍ଛଦ ମୁଦ୍ରଣ କରିଥିଲାବେଳେ ଛାତ୍ର ରଞ୍ଜନ ନାୟକ ଡ଼ିଜାଇନ୍ ବିଭାଗର ଷ୍ଟୁଡ଼ିଓରେ ସପ୍ତମ ସଂଖ୍ୟାର ସିଲ୍କ୍ ସ୍କ୍ରୀନ୍‌ରେ ମୁଦ୍ରଣ କରିଥିଲେ । ଚିତ୍ରର ପଞ୍ଚମ ସଂଖ୍ୟାର ପ୍ରଚ୍ଛଦରେ ଅଧ୍ୟାପକ ଶିବ ପାଣିଗ୍ରାହୀଙ୍କ ଗୋଟିଏ ତୈଳଚିତ୍ର ଅଫସେଟ୍‌ରେ ମୁଦ୍ରିତ ହୋଇଥିଲା । ଗ୍ରାଫିକ୍ କଳାର ମୁଦ୍ରଣ କୌଶଳ ଓ ଇତିହାସ ଜାଣିବା ପାଇଁ ମୁଦ୍ରିତ ତିନୋଟି ଲେଖା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରଫେସର୍ କୃଷ୍ଣା ରେଡ୍ଡୀଙ୍କର ପ୍ରବନ୍ଧରେ ବିଶ୍ୱପରିପ୍ରେକ୍ଷୀରେ ଗ୍ରାଫିକ୍ କଳାରେ ଘଟୁଥିବା ବିବର୍ତ୍ତନ ସଂପର୍କରେ ଆଲୋକପାତ କରାଯାଇଥିଲା । ବିଶ୍ୱକଳାର ଇତିହାସ ଅବତାରଣା କରିବା ସଂଗେ ସଂଗେ ଗ୍ରାଫିକ୍‌କଳାର ବିଭିନ୍ନ ପ୍ରଣାଳୀର ପୁଙ୍ଖାନୁପୁଙ୍ଖ ବିବରଣୀ ସେ ପ୍ରଦାନ କରିଥିଲେ । ବାଇଶି ପୃଷ୍ଠାର ଏହି ବିସ୍ତୃତ ପ୍ରବନ୍ଧରେ ଏଚିଙ୍ଗ୍, ଫଟୋ ପ୍ରସେସ୍, ଆକୁଆଟିଣ୍ଟ୍, ଯୁଗ୍ମ ପ୍ରଣାଳୀ, ଭିସ୍କୋସିଟି, ଇଣ୍ଟାଗଲିଓ ପ୍ରଭୃତି ଗ୍ରାଫିକ୍‌ର ଗହନକଥାକୁ ଅତି ପ୍ରାଞ୍ଜଳ ଭାବରେ ସେ ବୁଝେଇ ଦେଇଥିଲେ । ଓଡ଼ିଶାରେ ଭାସ୍କର୍ଯ୍ୟ ଓ ଚିତ୍ର ଅପେକ୍ଷା ଗ୍ରାଫିକ୍‌କଳା ଅତ୍ୟନ୍ତ ଦୁର୍ବଳ ଏଣୁ ଅନ୍ତତଃ ପତ୍ରିକା ମାଧ୍ୟମରେ ପିଲାଙ୍କୁ ପଠନ ସାମଗ୍ରୀ ଯୋଗାଇ ଦେବାର ଚେଷ୍ଟା କରାଯାଇଥିଲା । ପ୍ରଫେସର୍ ରେଡ୍ଡୀଙ୍କ ବ୍ୟତୀତ ଆଉ ଦୁଇଟି ଲେଖା ହେଲା ନିର୍ମଳେନ୍ଦୁ ଦାସଙ୍କର ଓ ମୋର ଗ୍ରାଫିକ୍ କଳାକୁ ନେଇ ବିଶେଷ ପ୍ରବନ୍ଧ ।

ଓଡ଼ିଶାରେ କଳା ସଂପର୍କୀୟ ଆଲୋଚନା ଓ ସମାଲୋଚନାର ଘୋର ଅଭାବ ଦେଖାଦେଇଥିବା ବେଳେ ଆମ କଲେଜର ବାର୍ଷିକ ପତ୍ରିକା ସାମାନ୍ୟ ଆଶାର ସଂଚାର କରି କଳା ଛାତ୍ରଛାତ୍ରୀମାନଙ୍କୁ ପଠନ ଆଭିମୁଖ୍ୟ ହେବା ପାଇଁ ପ୍ରେରଣା ଯୋଗାଉଥିଲା । ଗୋଟିଏ ପତ୍ରିକା କିଭଳି ନିର୍ମାଣ କରାଯାଏ ସେ ସଂକ୍ରାନ୍ତରେ କଳା ଇତିହାସ ଅଧ୍ୟୟନ କରୁଥିବା ଛାତ୍ରମାନେ ଜ୍ଞାନ ଆହରଣ କରିବାର ସୁଯୋଗ ପାଇପାରୁଥିଲେ । କଳା ଇତିହାସ ବିଭାଗର ଛାତ୍ର ପ୍ରଦୋଷ ମିଶ୍ର ଓ ଛାତ୍ରୀ ସୁଧା ବାହାରୁ ଆସୁଥିବା ହିନ୍ଦୀ ଲେଖାମାନଙ୍କୁ ଇଂରାଜୀରେ ଅନୁବାଦ କରୁଥିଲେ । ଅଧ୍ୟାପକମାନେ ମଧ୍ୟ ତାଙ୍କ ଜୀବନର ପ୍ରଥମ ଇଂରେଜୀ ଲେଖା ଏହି ପତ୍ରିକାରେ ପ୍ରକାଶ କରିବାର ସୁଯୋଗ ପାଇଥିଲେ । ଯତ୍ନଶୀଳ ହେଇ ପ୍ରବନ୍ଧଗୁଡ଼ିକ ଉପରେ ସାମାନ୍ୟ ଆଖିବୁଲେଇ ଆଣିଲେ ସେଗୁଡିକର ବିବିଧତା ସଂପର୍କରେ ଜାଣିହେବ । କୃଷ୍ଣା ରେଡ୍ଡୀ ଓ ନିର୍ମଳେନ୍ଦୁ ଦାସଙ୍କ ପ୍ରବନ୍ଧ ବୈଷୟିକ କଳାଜ୍ଞାନରେ ଋଦ୍ଧିମନ୍ତ

Digitized by srujanika@gmail.com

ହେଲାବେଳକୁ ବରୋଦା ନିକଟସ୍ଥ 'ଚାନ୍ଦୋଦର ଭିତ୍ତିଚିତ୍ର' ପ୍ରତ୍ନତତ୍ତ୍ୱ ଦୃଷ୍ଟିରୁ ଖୁବ୍ ଉପାଦେୟ ହୋଇଛି । ବରୋଦା ସହରର ପଚାଶ କିଲୋମିଟର ଦୂରରେ ନର୍ମଦା ନଦୀ କୂଳର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଚାନ୍ଦୋଦର ପୁରାତନ ନାଁ ହେଲା ଚଣ୍ଡୀପୁର । ବିଶ୍ୱାସ କରାଯାଏ ଚଣ୍ଡୀ ଏଠାରେ ଚଣ୍ଡ ଓ ମୁଣ୍ଡ ନାମକ ଦୁଇଟି ଅସୁରକୁ ବଧ କରିଥିଲେ । ଚନ୍ଦୋଦରେ ମରହଟ୍ଟା ରାଜା ଗାଏକ୍‌ୱାଡ଼୍‌ଙ୍କ ଦ୍ୱାରା ନିର୍ମିତ କାଶୀବିଶ୍ୱନାଥ ମନ୍ଦିର ଓ ଦମେଶ୍ୱର ମହାଦେବଙ୍କ ମନ୍ଦିର ଗାତ୍ରରେଥିବା ରାମାୟଣ ଓ ମହାଭାରତ ବିଷୟକ ଚିତ୍ରରାଜିକୁ ନେଇ ପ୍ରଫେସର୍ ପାଣ୍ଡ୍ୟା ଜଣେ ଶିଳ୍ପୀର ବିବେଚନାରେ ଅଦ୍ଭୁତ ବର୍ଣ୍ଣନ ଦେଇଛନ୍ତି । ଏହି ପ୍ରବନ୍ଧ ସାଙ୍ଗରେ ତାଳ ଦେଇ ପ୍ରଫେସର୍ ଜୟନ୍ତ ଚକ୍ରବର୍ତ୍ତୀ ଦକ୍ଷିଣ ଭାରତୀୟ ଭିତ୍ତିଚିତ୍ର ପରମ୍ପରାରେ ବାଦାମୀର ଗୁରୁତ୍ୱ ପ୍ରତିପାଦନ କରିଛନ୍ତି । ବିଜାପୁର ଜିଲ୍ଲାରେ ଅବସ୍ଥିତ ବାଦାମୀର ଭିତ୍ତିଚିତ୍ର ନିର୍ମାଣର କୌଶଳ ସଂପର୍କରେ କହିବାକୁ ଯାଇ ପ୍ରଫେସର୍ ଚକ୍ରବର୍ତ୍ତୀ 'ବିଷ୍ଣୁଧର୍ମୋତ୍ତର ପୁରାଣ', 'ସମରାଙ୍ଗଣ ସୂତ୍ରଧର', 'ଶିଳ୍ପରତ୍ନ' ତଥା 'ମାନସୋଲ୍ଲାସ' ଭଳି ଚିତ୍ରକଳା ସଂପର୍କୀୟ ଗ୍ରନ୍ଥରେ ଉଲ୍ଲେଖ ଥିବା ଚିତ୍ରଣପଦ୍ଧତି ଉପରେ ଆଲୋକପାତ କରିଛନ୍ତି । ପ୍ରଫେସର୍ ହରମାନ୍ କୁଲ୍‌କେଙ୍କ ଐତିହାସିକ ଗବେଷଣାତ୍ମକ ଲେଖା ଥିଲା 'ଏସିଆର ଭ୍ରାମ୍ୟମାଣ ସ୍ଥାପତ୍ୟ ରଥ ଓ ରାଜା' । ପୁରୀର ଜଗନ୍ନାଥଙ୍କ ରଥଯାତ୍ରାରେ କେବଳ ଇତିହାସର ଉନ୍ମୀଳନ ନୁହେଁ ବରଂ ଏକ ପରମ୍ପରାର ସତ୍ୟନିଷ୍ଠ ବିବରଣ ଭାବେ ଆମ ପତ୍ରିକାରେ ସ୍ଥାନ ପାଇଛି ।

ମୁଁ କେବଳ କଳା-ଇତିହାସ ଗବେଷଣାର ବିଭିନ୍ନ ବିଭାଗ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଛି ଏବଂ ସେହି ବୈଚିତ୍ର୍ୟରେ ଉଲ୍ଲସିତ ଆମ ପତ୍ରିକା କଳାଶିକ୍ଷା କ୍ଷେତ୍ରରେ କିଭଳି ଭୂମିକା ଗ୍ରହଣ କରିଥିଲା ତାର ସୂଚନା ମାତ୍ର ଦେଉଛି । ମେହେରା କଣ୍ଟ୍ରାକ୍ଟର୍ ସର୍ବଭାରତୀୟ କଳାଶିକ୍ଷା ଶିବିରରେ 'କଣ୍ଢେଇ ନାଟ' ଉପରେ ଯେଉଁ ପ୍ରବନ୍ଧଟି ଉପସ୍ଥାପନା କରିଥିଲେ, ତା'ର ମୁଦ୍ରିତ ରୂପ ହେଲା, 'କଣ୍ଢେଇର ବୈଚିତ୍ର୍ୟମୟ ଜଗତ' । ପଞ୍ଜାବରୁ ଆରମ୍ଭ କରି କେରଳ ପର୍ଯ୍ୟନ୍ତ ତା ସହିତ ବିଶ୍ୱର ବିଭିନ୍ନ ଦେଶରେ ପ୍ରଚଳିତ କଣ୍ଢେଇ ନାଟ ସଂକ୍ରାନ୍ତରେ ପ୍ରତ୍ୟକ୍ଷ ଅନୁଭୂତି ସଂଚୟ କରି ସେ ବିଶ୍ୱ ପରିପ୍ରେକ୍ଷୀର କଣ୍ଢେଇ ନାଟର ଭୂମିକାକୁ ସ୍ପଷ୍ଟ କରିଦେଇଛନ୍ତି ।

ଏସବୁ କଳାର ବିଭିନ୍ନ ବୌଦ୍ଧିକ ଅବବୋଧ ମଧ୍ୟରେ କଳା ସାମଗ୍ରୀକୁ ହେପାଜତ କରିବା, ତା'ର ରକ୍ଷଣାବେକ୍ଷଣ ଓ ସ୍ଥାନାନ୍ତରୀକରଣ ସମୟରେ ଆବଶ୍ୟକ ହେଉଥିବା ଯତ୍ନ ଓ କୌଶଳକୁ ଆପଣେଇବାର ମାର୍ଗ ପ୍ରଦର୍ଶନ କରିଛନ୍ତି ଏଇଚ୍. କେ. ନୈଠାନୀ । ନୈଠାନୀ ସଂଗ୍ରହାଳୟ ପରିସରରେ କାର୍ଯ୍ୟ କରିଥିବାରୁ ଏସବୁ ଆନୁଷଙ୍ଗିକ କାର୍ଯ୍ୟକଳାପର ମହତ୍ତ୍ୱ ବୁଝିଛନ୍ତି । ଜଣେ ଚିତ୍ରଶିଳ୍ପୀ ପାଇଁ ବାଦାମୀ ଭିତ୍ତିଚିତ୍ରର ଲକ୍ଷଣ ଓ ନିର୍ମାଣ ସଂପର୍କରେ ତଥ୍ୟ ଯେଭଳି ଜାଣିବା ଆବଶ୍ୟକ ସେଭଳି ଚିତ୍ରକୁ ଆର୍ଦ୍ରଜଳବାୟୁରୁ ରକ୍ଷା କରିବା,

Digitized by srujanika@gmail.com

ପ୍ରଚଣ୍ଡ ଆଲୁଅରୁ ବଞ୍ଚେଇ ରଖିବା ଏକାଭଳି ଆବଶ୍ୟକ ମନେହୁଏ । ମୋଟାମୋଟି ଭାବେ ଆମ କଲେଜର ପତ୍ରିକା କଳାର ବିଭିନ୍ନ ବିଭାଗକୁ ଛାତ୍ରଛାତ୍ରୀମାନଙ୍କ ନିକଟରେ ପରିଚିତ କରିବା ପାଇଁ ଏବଂ ଆମ ଦେଶ ତଥା ବିଦେଶରେ ଘଟୁଥିବା କଳା ସଂପର୍କୀୟ ପ୍ରବାହକୁ ନେଇ ସଚେତନ ହେବାପାଇଁ ଲକ୍ଷ୍ୟ ରଖି ପ୍ରକାଶିତ ହେଉଥିଲା । ପତ୍ରିକାକୁ ପିଲାଙ୍କ ମଧ୍ୟରେ ବିତରଣ କରିବା ସହିତ ଭାରତବର୍ଷର ଅନ୍ୟାନ୍ୟ କଳାଅନୁଷ୍ଠାନ ତଥା ବିଶିଷ୍ଟ ଶିଳ୍ପୀମାନଙ୍କ ନିକଟକୁ ପଠାଯାଉଥିଲା । ଏହି ପତ୍ରିକା ମାଧ୍ୟମରେ ଓଡ଼ିଶୀ କଳାର ପ୍ରଚାର ପ୍ରସାର କରିବା ଆମର ଅନ୍ୟ ଉଦ୍ଦେଶ୍ୟ ଥିଲା । ପୁଣି ଏହାରି ମାଧ୍ୟମରେ ଆମ କଲେଜର ଶିକ୍ଷାକାର୍ଯ୍ୟକ୍ରମ ସଂପର୍କରେ ଅଭିଭାବକ ଓ ଚିତ୍ରଶିଳ୍ପୀମାନେ ସଚେତନ ମଧ୍ୟ ହେଇପାରୁଥିଲେ ।

Digitized by srujanika@gmail.com

# ୨୫. ଚିତ୍ରମେଳା: ପାଠରୁ ଶାଠ ବଳି

ଖଲ୍ଲିକୋଟ ଚିତ୍ରକଳା ବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ଆମେ ଥରେ ଶାନ୍ତିନିକେତନ ପରିଦର୍ଶନରେ ଯାଇଥାଉ । ସେଠାକାର ପ୍ରାକୃତିକ ପରିବେଶ, ରଙ୍ଗାମାଟି, ଆମ୍ରବୀଥି ଆମକୁ ତା'ର ସ୍ୱାଭାବିକ ଛନ୍ଦରେ ମୁଗ୍ଧ କରିଥିଲା । ଆଉ ଅନ୍ୟ ଯେଉଁ ଯେଉଁ କଥା ଓ କାର୍ଯ୍ୟ ଆମ ମନକୁ ଆନ୍ଦୋଳିତ କରିଥିଲା, ତା'ରି ମଧ୍ୟରେ ଥିଲା ସେଠି ଅନୁଷ୍ଠିତ ହେଉଥିବା ନନ୍ଦନମେଳା । କଳାଭବନର ପ୍ରତିଷ୍ଠାତା ଅଧ୍ୟକ୍ଷ ନନ୍ଦଲାଲ ବସୁଙ୍କ ସ୍ମୃତିରେ, ତାଙ୍କ ଜନ୍ମଦିନରେ ଗୋଟିଏ କାର୍ଯ୍ୟକ୍ରମ ଭାବେ ପରିକଳ୍ପିତ ଏହି ଗ୍ରାମ୍ୟମେଳା । ଯିମିତି ଗାଁଗହଳରେ ମେଳା ବସିଲେ, ରଙ୍ଗବେରଙ୍ଗ ପୋଷାକ ପିନ୍ଧା ଦେଖଣାହାରୀଙ୍କ ଭିଡ଼ ଜମେ, ଅବିକଳ ସିମିତି । ପାଖ ଗାଁଗଣ୍ଡାରୁ ଲୋକମାନେ ତ ବୁହାହେଇ ଆସିଥାନ୍ତି । ସେମାନଙ୍କ ସାଙ୍ଗରେ ଆସିଥାଏ ଜାତିଜାତିକା ଘରକରଣା ଜିନିଷ । ଏସବୁର ବିକାକିଣା ପାଇଁ ଷ୍ଟଲ୍ ବସିଥାଏ । ତା ସହିତ କଳାଭବନର ପିଲାଏ ମଧ୍ୟ ଷ୍ଟଲ୍ ଖୋଲିଥାନ୍ତି । ଅଧ୍ୟାପକମାନେ ନିଜେ ଷ୍ଟଲ୍‌ରେ ଠିଆ ହେଇ ସେମାନଙ୍କ ହାତ ଅଙ୍କା ଛବି ମଧ୍ୟ ବିକୁଥାନ୍ତି । ଷ୍ଟଲ୍‌ମାନଙ୍କରେ ଥାଏ ଚିତ୍ର, ଗ୍ରାଫିକ୍ ପ୍ରିଣ୍ଟ, ଟେରାକୋଟା ତଥା ଶ୍ରୀନିକେତନର ସିରାମିକ୍ ଓ କାଠ କଣ୍ଢେଇ ପ୍ରଭୃତି । ମନେପଡ଼ିଗଲା ଡିମ୍ବୁଳା ଯାତ୍ରାର କଥା । ମୁଁ, ମୋ ଭାଇନା ଓ ନନା ମିଶି ଷ୍ଟଲ୍ ବସଉଥିଲୁ; ନଚାକଣ୍ଢେଇ, ସୋଲଫୁଲ ବିକୁଥିଲୁ । ଏଭଳି ଗୋଟିଏ ଗାଉଁଲି କାର୍ଯ୍ୟକ୍ରମ ଗୋଟିଏ କଳା ମହାବିଦ୍ୟାଳୟର ପାଠ୍ୟକ୍ରମରେ କ'ଣ ସ୍ଥାନ ପାଇପାରେ ? ମୁଁ ମନେ ମନେ ଭାବୁଥିଲି ଶାନ୍ତିନିକେତନରୁ ପାଠପଢ଼ି ଆସିଥିବା ଆମ ଅଧ୍ୟାପକମାନେ ଯେତେ ଛୋଟିଆ ହେଲେବି ଖଲ୍ଲିକୋଟ ରାଜଉଆସରେ ଏଭଳି ମେଳାଟିଏର କାହିଁ ଆୟୋଜନ କରିପାରିନାହାନ୍ତି ।

ଖଲ୍ଲିକୋଟ ଚିତ୍ରକଳା ବିଦ୍ୟାଳୟରୁ ପାଠସାରି ଚାକିରିରେ ପଶିଲା ଭିତରେ ଆମେ ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟ୍ସ୍ ଆସୋସିଏସନ୍ ପକ୍ଷରୁ ଅନେକ ଥର କେନ୍ଦ୍ର ଲଳିତ କଳା ଏକାଡେମୀ ଆୟୋଜନ କରୁଥିବା କଳାମେଳାରେ ଯୋଗଦେଇଛୁ । ସତରଞ୍ଜି ଓ ବିଛଣା ଚାଦରରେ ଛବିଗୁଡ଼ିକୁ ଗୁଡ଼େଇ ଦ୍ୱିତୀୟ ଶ୍ରେଣୀ ସ୍ଲିପର୍ ରେଳବଗିରେ ଚଢ଼ି ମେଳାରେ ଯୋଗଦେବାପାଇଁ ଯିବାରେ ଯେଉଁ ଆଗ୍ରହ ଓ ଉନ୍ମାଦନା ତାକୁ ବି ମୁଁ ଆପଣାର କରିବା ସୁଯୋଗ ପାଇଛି ।

Digitized by srujanika@gmail.com

ତ୍ରିବାର୍ଷିକ ଭାରତ ବିଶ୍ୱକଳା ପ୍ରଦର୍ଶନୀରେ ସବୁପ୍ରକାର ଚିତ୍ରଶିଳ୍ପୀ ଭାଗନେବା ନୀତିନିୟମ ଦୃଷ୍ଟିରୁ ସମ୍ଭବ ହୁଏନି ବୋଲି କଳାମେଳା ସମସ୍ତଙ୍କ ପାଇଁ ଦ୍ୱାର ଖୋଲି ଦେଇଥାଏ । ଭାରତବର୍ଷର କୋଣ ଅନୁକୋଣ୍ତ, ବେଳେବେଳେ ଭାରତବାହାରୁ ମଧ୍ୟ ଶିଳ୍ପୀମାନେ ଏ ମେଳାରେ ଷ୍ଟଲ୍ ଖୋଲିଥାନ୍ତି । ଏଠିବି ଗ୍ରାମ୍ୟମେଳାର ରଙ୍ଗ, ସ୍ୱର ଓ ଶବ୍ଦର ଉଚ୍ଚାଟ, ପରସ୍ପରକୁ କୋଳେଇ ନେବାର ବ୍ୟଗ୍ରତାରେ ଆତ୍ମୀୟତା ପାଇହୁଏ । ଡିସେମ୍ବର ମାସ ହାଡ଼ଭଙ୍ଗା ଦିଲ୍ଲୀ ଶୀତରେ ତଳେ ନଡ଼ାପାରି ସାଙ୍ଗ ସୁଖ ହୋଇ ରାତିରେ ଶୋଇବାରେ ଅପାର ଆନନ୍ଦ ମିଳେ ।

ଆମ ଗାଁରୁ ଆରମ୍ଭ କରି ଶାନ୍ତିନିକେତନର ନନ୍ଦନମେଳା ଓ ଦିଲ୍ଲୀର କଳାମେଳାର ଆକର୍ଷଣ ମୋ ସ୍ମୃତିରେ ସାଇତା ହୋଇ ରହିଥାଏ । କଲେଜ ଗଢ଼ିବାର ଦାୟିତ୍ୱ ନେଲାପରେ ସେହି ସ୍ମୃତି ବାସ୍ତବ ରୂପ ନେଲା ଓ ଆମ ବାର୍ଷିକ ଶିକ୍ଷାକ୍ରମରେ ତାହା ଚିତ୍ରମେଳା ହୋଇ ସ୍ଥାନ ପାଇଲା । କଳା ସମାଲୋଚନାର ବାର୍ଷିକ ପତ୍ରିକା ଚିତ୍ର ସାଙ୍ଗରେ ତାଳମେଳ ରଖି ଚିତ୍ରମେଳା । ପ୍ରତି ଡିସେମ୍ବର ମାସରେ ଖ୍ରୀଷ୍ଟମାସ ଛୁଟି ଆଗରୁ କଛନା ଛକ ପାଖ କଲେଜ ମେଳାର ସହସ୍ର ବର୍ଣ୍ଣରେ ଉଜ୍ଜ୍ୱଳି ଉଠେ । ସପ୍ତାହେ ଧରି କଲେଜ ପରିସର ଉତ୍ସବ ମୁଖର ହୋଇଯାଏ । ଆମେ ପିଲାବେଳେ ସରସ୍ୱତୀ ପୂଜାପାଇଁ ଗାଁ ଚାଟଶାଳୀରେ ମାସ ମାସ ଧରି ଯିମିତି ଗୀତମୁଖସ୍ଥ କରୁଥାଉ, ଆମ କଲେଜ ପିଲାଏ ନଭେମ୍ବର ମାସ ସାରା ଓ ଡିସେମ୍ବର ମାସର ଅଧେଦିନ କଳାମେଳା ପାଇଁ ବିଭିନ୍ନ କଳାସାମଗ୍ରୀ ଗଢ଼ିବାରେ ଲାଗିପଡନ୍ତି ।

ପ୍ରଥମେ ଭାସ୍କର୍ଯ୍ୟ ବିଭାଗର ପିଲାମାନେ ମାଟିରେ ମୂର୍ତ୍ତି ଗଢ଼ିବା ଆରମ୍ଭ କରିଦିଅନ୍ତି । ଆର୍ତ୍ତବନ୍ଧୁ ରାଉତ, ଅଞ୍ଜନ କୁମାର ସାହୁ, ଜଗନ୍ନାଥ ପଣ୍ଡା, କବିତା ମହାନ୍ତି, ଶୋଭନ କୁମାର, ପ୍ରତାପ କୁମାର ଜେନା ପ୍ରଭୃତିଙ୍କୁ ରାତିଦିନ ତର ନଥାଏ । ମାଟି କାମରେ ଅଡୁଆ ବେଶି, ମାଟି ଶୁଖିବାଯାଏଁ ଅପେକ୍ଷା କରିବାକୁ ପଡ଼େ । ତା'ପରେ ପୋଡ଼ିବା ପାଇଁ ଭାଟି ଲାଗେ । ପିଲାମାନେ ରାତିସାରା ଭାଟିକୁ ଜଗି ବସିଥାନ୍ତି । ତା' ଭିତରେ ଗୀତ, ଗପ, ମଉଜ ଲାଗିରହିଥାଏ । ଏସବୁ ଆକର୍ଷଣକୁ ହତାଦର କରି କଲେଜ ଛାଡ଼ି ମୁଁ ରାତିରେ ଘରକୁ ଯାଇପାରେନି, ପିଲାଙ୍କ ସାଙ୍ଗରେ ରହିଯାଏ । ରାତି ଗହୀର ହେଲେ ମଝିମଝିରେ ପନ୍ଦର କୋଡ଼ିଏ କୁକୁର କଲେଜ ହତା ଭିତରକୁ ପଶିଆସି ଭୁକିଲାଭଳି ଲାଗେ । ମୋ ନିଦ ଭାଙ୍ଗିଯାଏ । ମୁଁ ଧଡ଼ପଡ଼ ହୋଇ ଉଠିପଡ଼େ । ତଳକୁ ଆସି ଦେଖେ କୁକୁରମାନେ ନଥାନ୍ତି । ପିଲାମାନେ କୁକୁର ଭୁକିବା ଏତେ ନିଚ୍ଛକ, ଅବିକଳ ନକଲ କରିଥାନ୍ତି ଜାଣିଲାପରେ ତାଜୁବ ଲାଗେ । ଫେରିଯାଇ ପୁଣି ଶୋଇପଡ଼ିବାକୁ ଆଉ ମନ କହେନି । ସେଇ ଭାଟି ପାଖରେ ପିଲାଙ୍କ ସାଙ୍ଗରେ ବଳକା ରାତିତକ କଟିଯାଏ । ଏ ଆନନ୍ଦ କେବଳ ପିଲାମାନଙ୍କର ନୁହେଁ, ମୋର ମଧ୍ୟ । ସରକାରୀ ହାକିମ ଓ ଜଣେ ଶିକ୍ଷକ ଭିତରେ ତଫାତ୍

Digitized by srujanika@gmail.com

ଏଇଠି । ଭାଟିରୁ ଅକ୍ଷତ ଅବସ୍ଥାରେ ପୋଡ଼ାମାଟିର କଣ୍ଢେଇଗୁଡ଼ିକୁ ଉଦ୍ଧାର କରିପାରିଲେ ପିଲାଏ ଉତ୍‌ଫୁଲ୍ଲ ହୋଇ ଉଠନ୍ତି । ଦିନ ଦିନର ଗର୍ଭବେଦନା ମନରୁ ଉଭେଇଯାଏ ।

କାଳେ ସେମାନେ ପଛରେ ପଡ଼ିଯିବେ, ଏଣୁ ଗ୍ରାଫିକ୍ ବିଭାଗର ପିଲା ସେମାନଙ୍କ ଯୋଜନା ସାକାର କରିବାରେ ଲାଗିପଡ଼ନ୍ତି । ମାସ ମାସ ଧରି କାଠରେ ବ୍ଲକ ଖୋଦେଇ କାମ ଚାଲୁ ରହେ । ମୁଁ ସେମାନଙ୍କୁ ଜଗନ୍ନାଥଙ୍କ ଯାତ୍ରୀପଟି, ମଙ୍ଗଳାପଟିକୁ କନା ଉପରେ ବ୍ଲକ ଛପେଇ କରି 'ଡୋର୍ ସ୍କ୍ରୀନ୍', 'ଉଇଣ୍ଡୋ ସ୍କ୍ରୀନ୍' ତିଆରି କାମରେ ଲଗେଇ ଦେଇଥାଏ । ଅଧ୍ୟାପକ ଡି.ଏନ୍. ରାଓଙ୍କ ଘର ତ ବି.ଜେ.ବି. ଫ୍ଲାଟରେ, ସେ ବି ରାତିଦିନ କଲେଜରେ ହିଁ କଟେଇ ଦିଅନ୍ତି ବା କେବେ କେବେ ବିଳମ୍ବରେ ଘରକୁ ଫେରନ୍ତି । ଏଣେ ସେ ବେଳେବେଳେ ବୁଲା କୁକୁରଙ୍କ ଦୌରାତ୍ମ୍ୟର ଶୀକାର ହୋଇଯାଆନ୍ତି । କାଠ ବ୍ଲକ ଛପେଇ ସାଙ୍ଗକୁ ସିଲ୍‌କ୍ ସ୍କ୍ରୀନ୍‌ର ନବବର୍ଷ ଅଭିନନ୍ଦନ ପତ୍ରର ଛପେଇ କାମ ଚାଲୁ ରହେ । କାମ ଆରମ୍ଭରୁ ହିଁ ପିଲାମାନେ ଯେଝାକାମ ନିଜେ ହେପାଜତ କରି ରଖିଥାନ୍ତି । କନା, ରଙ୍ଗ ଇତ୍ୟାଦି ବାବଦକୁ କଲେଜ ଯାହାଦିଏ, ତାହା ସମୁଦ୍ରକୁ ଶଙ୍ଖେ ପାଣି । ବ୍ୟକ୍ତିଗତ ଭାବରେ ପିଲାମାନେ ଅର୍ଥ ବିନିଯୋଗ କରିଥାନ୍ତି । ଆମେ କଲେଜ ତରଫରୁ କେବଳ ଷ୍ଟଲ୍ ତିଆରି ଓ ଆଲୋକ ବ୍ୟବସ୍ଥା କରିଥାଉ ।

ଗ୍ରାଫିକ୍ ବିଭାଗର କାମ ସାମାନ୍ୟ ଆଗେଇଲେ ଅଧ୍ୟାପକ ଶିବ ପାଣିଗ୍ରାହୀ ନିଜ ଛାତ୍ରଛାତ୍ରୀଙ୍କୁ ଛୋଟ ଛୋଟ ଜଳରଙ୍ଗର ଛବି କରେଇବାରେ ମତେଇ ଦିଅନ୍ତି । ତାଙ୍କ ବିଭାଗରେ ବି ନବବର୍ଷର ଅଭିନନ୍ଦନପତ୍ର ତିଆରି ହୁଏ ଜଳରଙ୍ଗରେ, ପେଷ୍ଟାଲ୍‌ରେ ଓ ଇଣ୍ଡିଆନ୍ ଇଙ୍କ୍‌ରେ । ନବବର୍ଷର ଅଭିନନ୍ଦନ ପତ୍ରରେ କ'ଣ ପାଠ ଲେଖାଯିବ, ତା'ର ଦାୟିତ୍ୱ ମୋର । ହାତ ଚିତ୍ରକାମ ସରିଗଲେ ପିଲାମାନେ ଗ୍ରାଫିକ୍ ବିଭାଗର ସେମାନଙ୍କ ବନ୍ଧୁଙ୍କ ସାହାଯ୍ୟରେ ପାଠ ଛପେଇ ଦିଅନ୍ତି । ଏସବୁ ସତ୍ତ୍ୱେ ଥରେ ଥରେ ବନାନ ଭୁଲ ରହିଯାଏ । ଶିକ୍ଷାର୍ଥୀମାନଙ୍କ କ୍ଷେତ୍ରରେ ଏଭଳି ହେବା ସ୍ୱାଭାବିକ ।

ଅନ୍ୟାନ୍ୟ ବିଭାଗରେ ଚିତ୍ରମେଳା ପାଇଁ ପ୍ରସ୍ତୁତି ଚାଲିଥିଲାବେଳେ ଡ଼ିଜାଇନ୍ ବିଭାଗ ଉଦାସୀନ ହୋଇ ଅନ୍ୟ ସବୁକାମରେ ଧ୍ୟାନ ଦେଇଥାଏ । ପିଲାମାନେ ସେମାନଙ୍କ ବନ୍ଧୁମାନଙ୍କର କାମ ଦେଖି ଅତର୍ଛିଆ ହୁଅନ୍ତି ଏବଂ ବଳଦେବ ସାର୍‌ଙ୍କୁ ତାଗିଦା ଦିଅନ୍ତି । ତା'ପରେ ସହସ୍ର ସିଂହର ବଳ ନେଇ ଅଧ୍ୟାପକ ବଳଦେବ ମହାରଥୀ ରଣହୁଙ୍କାର ଦିଅନ୍ତି । ବଳଦେବଙ୍କ ହାତକାମ  ବିଚକ୍ଷଣ, ଏଣୁ ଶିକ୍ଷାଦାନ ପ୍ରଣାଳୀର ମାପଚୁପ ଭୁଲିଯାଇ ସେ ପିଲାଙ୍କ କାମକୁ ଆବୋରି ବସନ୍ତି । ଏହା ଠେକୁଆ କଇଁଛ ଗପ ପରି । ଥରେ କ'ଣ ଭାବିଲେ କେଜାଣି ବଳଦେବ ମହାରଥୀ ତାଙ୍କ ବିଭାଗର ଗୋଟିଏ ପୂରା କ୍ୟାଲେଣ୍ଡର୍ କ୍ୱାଲିଟି ପ୍ରେସ୍‌ରେ ଛପେଇ ଆଣିଲେ । ଅନ୍ୟ ବିଭାଗର ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ

Digitized by srujanika@gmail.com

ଚମକି ଗଲେ । ମନେହେଲା ବିଭାଗୀୟ ପ୍ରତିଯୋଗିତାରେ ବଳଦେବ ମହାରଥୀଙ୍କ ବିଭାଗ ଜିଣିଗଲା । ଭୀମର ବଳ କୁନ୍ତୀକୁ ଜଣା । ମୁଁ ବଳଦେବଙ୍କୁ ଅଲଗା ଭେଟି ତାଙ୍କୁ ଚେତେଇ ଦେଲି ଯେ କଲେଜର ସବୁକାମରେ ପିଲାଙ୍କ ସଂପୃକ୍ତି ନ ରହିଲେ ସେଥିରୁ ଶିକ୍ଷଣୀୟ କର୍ମ ହ୍ରାସ ପାଇଯାଏ । କ୍ୱାଲିଟି ପ୍ରେସ୍ ପ୍ରୋପ୍ରାଇଟର୍ ଜଗଦୀଶ ପାଣିଙ୍କ ବଡ଼ବୋହୂ ମମତା ବଳଦେବ ମହାରଥୀଙ୍କ ବିଭାଗର ଛାତ୍ରୀ, ଏଣୁ କାମଟି ସୁରୁଖୁରୁରେ ହେଇଯାଏ । ତଥାପି ଅଧ୍ୟାପକ ମହାଶୟଙ୍କୁ ବେଶ୍ କିଛି ଅର୍ଥ ଶ୍ରାଦ୍ଧ କରିବାକୁ ପଡ଼ିଥାଏ ।

ଚିତ୍ରମେଳାର ଦୁଇଟି ଉଦ୍ଦେଶ୍ୟ । ଗୋଟିଏ ହେଲା କଳା ମାଧ୍ୟମରେ ଲୋକଙ୍କ ପାଖରେ ପହଞ୍ଚିବା, ଦ୍ୱିତୀୟଟି ହେଲା ଶିକ୍ଷା ଅର୍ଜନ ସହିତ ସାମାନ୍ୟ କିଛି ଅର୍ଥ ରୋଜଗାର କରିବା ପାଇଁ ପ୍ରୟାସ କରିବା । ଇଂରାଜୀରେ ଆମେ କହୁଥାଉ 'ଅର୍ଣ୍ଣ ହ୍ୱାଇଲ୍ ୟୁ ଲର୍ଣ୍ଣ ।' ଏଇ ପ୍ରୟାସ ମଧ୍ୟରେ ପରିଚାଳନା ବିଜ୍ଞାନ ଓ ସେଲ୍ସ ମ୍ୟାନ୍‌ସିପ୍‌ର କଥା ମଧ୍ୟ ନିହିତ ଅଛି । ଗରାଖଙ୍କ ପାଖରେ ନିଜର ଶିଳ୍ପକୃତିକୁ ଉପସ୍ଥାପନା କରିବାର କୌଶଳ ଆପଣେଇବାର ବିଦ୍ୟା ମଧ୍ୟ ସେଲ୍ସ ମ୍ୟାନ୍‌ସିପ୍‌ରେ ଅନ୍ତର୍ଭୁକ୍ତ ।

ଚିତ୍ରମେଳା ଅନ୍ତତଃପକ୍ଷେ ସାତଦିନ ବ୍ୟାପି ଚାଲେ । କଲେଜ ପରିସରରେ କୋଡ଼ିଏ ତିରିଶି ଷ୍ଟଲ୍ ତିଆରି ହୁଏ । ଛାତ୍ରଛାତ୍ରୀମାନଙ୍କ ସହିତ ମିଳିମିଶି ଅଧ୍ୟାପକମାନେ ମଧ୍ୟ ନିଜ ନିଜ ଷ୍ଟଲ୍ ଖୋଲନ୍ତି । ଷ୍ଟଲ୍‌ରେ ବସି ଛବି ଆଙ୍କନ୍ତି ଓ ବିକ୍ରୟ ମଧ୍ୟ କରନ୍ତି । ଅଧ୍ୟାପକମାନେ ଓଡ଼ିଶାର ବିଶିଷ୍ଟ ଶିଳ୍ପୀ । ଏଣୁ ଦଶ ପନ୍ଦର ଟଙ୍କାରେ ସେମାନଙ୍କ ଠାରୁ ଖଣ୍ଡିଏ ଖଣ୍ଡିଏ ଛବି ପାଇବା କମ୍ କଥାନୁହେଁ । ସବୁବର୍ଷ କଳାମେଳାରେ ମୁଁ ମୋର ସ୍ୱତନ୍ତ୍ର ଷ୍ଟଲ୍ ଖୋଲେ । ରେଖାପ୍ରାଧାନ୍ୟ ଥାଇ ଜଳରଙ୍ଗର ଛବି କରେ । ମୋର ଗ୍ରାହକ ହେଲେ ମୋର ଅଧିକାଂଶ ଛାତ୍ରଛାତ୍ରୀ । ମୁଁ ଏବେ ଭାବୁଛି ସେମାନେ କିଣିଥିବା ମୋ ଛବିଗୁଡ଼ିକୁ ନିଶ୍ଚୟ ହେପାଜତ କରି ରଖିଥିବେ । ମୁଁ ଥରେ ନନ୍ଦନ ମେଳାରୁ ପ୍ରଫେସର୍ କେ.ଜି. ସୁବ୍ରମଣିୟନ୍‌ଙ୍କ 'ଛେଳି' ସ୍କେଚ୍ ଏବଂ ପ୍ରଫେସର୍ ସନତ କରଙ୍କ ଗୋଟିଏ ଇନ୍‌ଟାଗ୍ଲିଓ କିଣିଥିଲି । ମୁଁ ସେଇ ଦୁଇଟି ଚିତ୍ର ଆଜିଯାଏଁ ଅତି ଯତ୍ନର ସହିତ ପାଖରେ ରଖିଛି ।

ମେଳାରେ ବିଭିନ୍ନ ବିଭାଗର ଛାତ୍ରୀମାନେ ସମବାୟ ଭିତ୍ତିରେ ଜଳଖିଆ ଷ୍ଟଲ୍ ଖୋଲିଥାନ୍ତି । ଷ୍ଟଲ୍‌ରେ ବରା, ପିଆଜି, ଘୁଗୁନି (ଗଞ୍ଜାମର ରାଗଚଣା) ଓ ମିକ୍‌ସ୍‌ଚର୍ ମିଳେ । ଗ୍ରାଫିକ୍ ବିଭାଗର ବିନୋଦ ବିହାରୀ କର ଖୋର୍ଦ୍ଧା ଗାମୁଛା ଓ ଗଞ୍ଜି ଖଣ୍ଡେ ପିନ୍ଧି କେଟିଲ୍‌ରେ ଚାହା ଓ ହାତରେ ପୋଡ଼ାମାଟିର କପ୍‌ନେଇ ଷ୍ଟଲ୍ ମାନଙ୍କରେ ଘୂରୁଥାଏ । ତା'ର ଚେହେରା ଓ ପୋଷାକପତ୍ରରୁ ମନେହେବ ସତେଯିମିତି କଷ୍ଟନାଛକ ଚାହା ଦୋକାନରେ ବୋଲହାକ କରିବା ପିଲାଟିଏ ଚାହା ବିକୁଛି । ମେଳା କ୍ୟାଣ୍ଟିନ୍ ଦାୟିତ୍ୱରେ ମଞ୍ଜୁ ଦାସ, ସୁଧାଂଶୁବାଳା ସାହୁ, ଅନୁସୂୟା ଦାସ, ରୀନା ପୃଷ୍ଟି ପ୍ରଭୃତି ରହିଥାନ୍ତି । ଅଧକ୍ଷ ବା ଅଧ୍ୟାପକ ସେମାନଙ୍କ

Digitized by srujanika@gmail.com

କ୍ୟାଣ୍ଟିନ୍ ଆଡ଼େ ଥରେ ବୁଲି ଆସିଲେ ପନ୍ଦର କୋଡ଼ିଏ ଟଙ୍କା ପକେଟରୁ ନିର୍ବିବାଦରେ ଝଡ଼ିପଡେ। ବଜାରରେ ଏଭଳି ସ୍ପେଶାଲ୍ ଚାହା ପଚାଶ ପଇସାରେ ମିଳୁଥିଲେ ମଧ ଏମାନଙ୍କ କ୍ୟାଣ୍ଟିନ୍‌ରେ ଚାହା କପ୍‌ର ଦାମ୍ ଥାଏ ଦୁଇଟଙ୍କା।

ଯେଉଁ ପିଲାଙ୍କ ହାତରେ ଭଲ ପୋର୍ଟ୍ରେଟ୍ ସ୍କେଚ୍‌ହୁଏ ସେମାନେ ଗୋଟିଏ ଗୋଟିଏ ଷ୍ଟଲ୍‌ରେ ସ୍କେଚିଙ୍ଗ୍ ଷ୍ଟୁଲ ନେଇ ବସିଯାଆନ୍ତି। ଆମ ଚିତ୍ର ପରିଭାଷାରେ ମଡେଲ୍ ହୋଇ ବସିବାକୁ 'ସିଟିଙ୍ଗ୍' କହୁ। ଗୋଟିଏ 'ସିଟିଙ୍ଗ୍' ଦଶ ପନ୍ଦର ମିନିଟ୍‌ରୁ ଅଧିକ ସମୟ ଲାଗେ ନାହିଁ। ସେହି ସମୟ ମଧ୍ୟରେ ସ୍କେଚ୍‌ଟିଏ ସଂପୂର୍ଣ୍ଣ ହୋଇଯାଏ। ମୁହଁ ବା ଆଲେଖ୍ୟର ବୈଶିଷ୍ଟ୍ୟ ରହିଥିଲେ, ଆଖି, ନାକ, ଓଠ, ଥୋଡି, ଗାଲ, ମୁଣ୍ଡବାଳ ବା ପୁରୁଷ ହୋଇଥିଲେ ନିଶ ଦାଢ଼ିର କିଛି ସ୍ୱାତନ୍ତ୍ର ରହିଥିଲେ ସ୍କେଚଟି ଖୁବ୍ ଶୀଘ୍ର ଉତୁରି ପଡ଼େ। ଏଭଳି କିଛି ବିଶେଷ ଆଲେଖ୍ୟର ଉଦାହରଣରେ, ବର୍ତ୍ତମାନର ସୁପରଷ୍ଟାର ବିଗ୍ 'ବି' ଅମିତାଭ ବଚନ ବା ଆଗକାଳର ମହାତ୍ମା ଗାନ୍ଧି ବା ରବୀନ୍ଦ୍ରନାଥ ଠାକୁରଙ୍କ କଥା କୁହାଯାଇପାରେ। ଯେଉଁମାନେ ପ୍ୟାରିସ୍ ସହର ବା ଲଣ୍ଡନ ନଗରୀ ପରିଦର୍ଶନରେ ଯାଇଥିବେ ସେଠିକାର ସୀନ୍ ଓ ଟେମସ୍ ନଦୀକୂଳରେ ଏ ଭଳି ପୋର୍ଟ୍ରେଟ୍ ସ୍କେଚ୍ ଆଙ୍କୁଥିବାର ଆର୍ଟିଷ୍ଟ୍ ମାନଙ୍କୁ ଭେଟିଥିବେ। ମୋର ସ୍ୱପ୍ନଥିଲା ଖଣ୍ଡଗିରି, ଉଦୟଗିରିର ପାଦଦେଶକୁ ଆମ କଲେଜ ଉଠି ଆସିଲାପରେ, ହୁଏତ ଆମ ପିଲାମାନେ କଳାମେଳାରୁ ଅନୁପ୍ରେରଣା ନେଇ ଖଣ୍ଡଗିରି ଓ ଉଦୟଗିରିର ଜୈନଗୁମ୍ଫା ଆଗରେ ସ୍କେଚ୍‌ଖାତା ନେଇ ଦେଶୀ ବିଦେଶୀ ପର୍ଯ୍ୟଟକଙ୍କ ଅପେକ୍ଷାରେ ବସିଯିବେ ଏବଂ ଆଲେଖ୍ୟ ଅଙ୍କନ ଆମ କଲେଜର ଗୋଟିଏ ପରମ୍ପରାରେ ପରିଣତ ହୋଇଯିବ। ପ୍ରତି ବ୍ୟକ୍ତିର ଚିନ୍ତାଧାରା ଅଲଗା ଅଲଗା, ଏଣୁ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ଦୋଷ ଦେବାପାଇଁ ମନ କହୁ ନଥିଲେ ବି ଲାଗୁଛି ଏହା ଆମ କଳାଶିକ୍ଷାର ଓ କଳା ଅବବୋଧର ଦୋଷ। ହୁଏତ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ସିଲାବସ୍‌ରେ ଏଭଳି ଅତ୍ୟନ୍ତ ଶିକ୍ଷଣୀୟ, ଆକର୍ଷଣୀୟ ଓ ଅର୍ଥକରୀ କାର୍ଯ୍ୟକ୍ରମ ସ୍ଥାନିତ ହୋଇପାରିନାହିଁ ବୋଲି ଆମର ଅଧ୍ୟାପକ ଓ ଅଧକ୍ଷମାନେ ଏଥିପ୍ରତି ଆଗ୍ରହ ପ୍ରକାଶ କରୁନାହାନ୍ତି। ସେଭଳି ଦେଖିବାକୁ ଗଲେ ଚିତ୍ରମେଳା କଥା ବି ଏବେ ତଦ୍ରୂପ।

ଚିତ୍ରମେଳାକୁ ଅନେକ ପିଲା ରୁଚିପୂର୍ଣ୍ଣ ପୋଷାକରେ ଆସନ୍ତି। ସେମାନଙ୍କ ବନ୍ଧୁ ଓ ବାନ୍ଧବୀମାନଙ୍କ ସହିତ ପ୍ରଜାପତି ଭଳି ଘୂରୁଥାନ୍ତି। ଏଠି କେବଳ ପ୍ରଜାପତି ଫୁଲରେ ବସେନି, ବେଳେବେଳେ ଫୁଲ ବ୍ୟଗ୍ରହୋଇ ପ୍ରଜାପତି ପାଖକୁ ଝୁଙ୍କି ଆସେ। ରଶ୍ମିରେଖା ପଣ୍ଡାର ନେହୁରୁ ଜାକେଟ୍, ପ୍ରଣତି ମହାପାତ୍ରର ଜିନ୍‌ପେଣ୍ଟ ନାଲି ଟି ସାର୍ଟ ଓ ଦୀପାଞ୍ଜଳିର ଝିଲ୍‌ମିଲ୍ ଶାଢ଼ିର ଦୃଶ୍ୟ ଏପର୍ଯ୍ୟନ୍ତ ମନରୁ ଯାଇନି। ମେଳାରେ ପୁଅପିଲାଙ୍କ ମଧ୍ୟରୁ ଅନେକ ଅଘୋଷିକ ପରିଚାଳକ ଦାୟିତ୍ୱରେ ରହିଥାନ୍ତି। ସେମାନଙ୍କ କାର୍ଯ୍ୟପରିସର ଭିତରେ ଥାଏ

Digitized by srujanika@gmail.com

ଦେଖଣାହାରୀ ଓ ଗ୍ରାହକଙ୍କ ଚଳପ୍ରଚଳକୁ ନିୟନ୍ତ୍ରଣ କରିବା, ବହୁ ଅଣଶିକ୍ଷାର୍ଥୀ କଲେଜ ପରିସରରେ ପ୍ରବେଶ କରିବାର ସମ୍ଭାବନା ଥିବାରୁ ଶାନ୍ତିଶୃଙ୍ଖଳା ପ୍ରତି ଦୃଷ୍ଟିଦେବା, ବିଶେଷ କରି ସେମାନଙ୍କ ବାନ୍ଧବୀମାନଙ୍କ ନିରାପତ୍ତା ପ୍ରତି ତୀକ୍ଷ୍ଣ ନଜର ରଖିବା । କାରଣ କଳାମେଳାର ବିସ୍ଫୋରକ ପରିବେଶରେ ସାମାନ୍ୟ ସତର୍କ ନ ରହିଲେ ଅପ୍ରୀତିକର ଘଟଣା ଘଟିଯିବା ଆଶ୍ଚର୍ଯ୍ୟ ନୁହେଁ । ଏହି ପିଲାଙ୍କ ଦଳରେ ଥାଆନ୍ତି କମଳାକ୍ଷ କାନୁନ୍‌ଗୋ, ଜୟନ୍ତ ପଣ୍ଡା, ସୁବ୍ରତ ମଲ୍ଲିକ, ମହେଶ ଆଚାର୍ଯ୍ୟ, ଶିବ୍ ପ୍ରସାଦ ସାହୁ, ପ୍ରଦୋଷ ମିଶ୍ର ଓ ଅଶ୍ୱିନୀ ମହନ୍ତ ପ୍ରଭୃତି ।

ମେଳାରେ ସଂଧ୍ୟାହେଲେ ସଂଗୀତ ଆସର ଜମେ । ସଂଗୀତ ପରିବେଷଣରେ ଯେଉଁମାନେ ଅଗ୍ରଣୀ ଭୂମିକା ଗ୍ରହଣ କରିଥାନ୍ତି ସେମାନଙ୍କ ଭିତରେ ଥାଆନ୍ତି ପ୍ରଦୋଷ ମିଶ୍ର, ମହେଶ ଆଚାର୍ଯ୍ୟ, ମାନସ ରଂଜନ ଜେନା, ଦିଲ୍ଲୀପ ଦାସ ଓ ଦିଲ୍ଲୀପ କୁମାର ତ୍ରିପାଠୀ । 'ମେରା ନାମ ଜୋକର୍' ସିନେମାରେ ରାଜ କପୁର ଗାଇଥିବା ସେତେବେଳର ଲୋକପ୍ରିୟ ଗୀତ ପ୍ରଦୋଷ ମିଶ୍ର ଦରଦ ଦେଇ ଗାଉଥିଲା ଓ ତା' ସାଙ୍ଗରେ ବ୍ରେକ୍ ଡ୍ୟାନ୍‌ସ୍ ମଧ୍ୟ କରୁଥିଲା । ଗୀତଟିର ନିର୍ଯ୍ୟାସ ଥିଲା ଏହିପରି । ଏହି (କଲେଜ) ସ୍ଥାନ ଆମର ସବୁକିଛି, ଏଇଠି ଆମେ ଜନ୍ମ ହେଇଛୁ, ଆତଯାତ ହେଇଛୁ, ଏଇଠି ହିଁ ଆମ ବିଲୟ ହେବ । ଆମ ପାଇଁ ଆଉ ରାସ୍ତା କାହିଁ? ଅବଶ୍ୟ ପ୍ରଦୋଷ ଆମ କଲେଜରୁ ପାଠସାରି ଚଣ୍ଡୀଗଡ଼ରେ ପଢ଼ିଲା, ଏବେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କଳା-ଇତିହାସରେ ବରିଷ୍ଠ ଅଧ୍ୟାପକ । ତା'ପାଇଁ ଏବେ ବହୁ ରାସ୍ତା ଖୋଲିଗଲାଣି ।

ପାରମ୍ପରିକ ମେଳାର ଏକମାତ୍ର ବ୍ୟତିକ୍ରମ ହେଲା ମୁଖ୍ୟ ଅତିଥିଙ୍କ ଦ୍ୱାରା ଉଦ୍‌ଘାଟନର ବ୍ୟବସ୍ଥା । ଚିତ୍ରମେଳା ଉଦ୍‌ଘାଟନ ବେଳେ ଘଣ୍ଟାଶଙ୍ଖ ବାଜେ (ରକ୍ଷା ହେଇଥିଲା ସେତେବେଳକୁ ବିଜୁ ଜନତା ଦଳର ଉଦ୍ଭବ ହେଇ ନଥିଲା । ତା ହେଇଥିଲେ କହିଥାନ୍ତେ ମୁଁ କଲେଜରେ ଚିତ୍ରମେଳାକୁ ନେଇ ରାଜନୀତି କରୁଛି) ମେଳାର ଉଦ୍ଦେଶ୍ୟକୁ ନେଇ ଏବଂ ଛବି କିଣିବା ପାଇଁ ସାଧାରଣ ଲୋକଙ୍କୁ ପ୍ରବର୍ତ୍ତେଇବା ପାଇଁ ଆମେ ଓଡ଼ିଆରେ ପ୍ରଚାରପତ୍ର ଛାପି ବାଣ୍ଟୁଥିଲୁ । ୧୯୮୫ ମସିହାର କଳାମେଳାରେ ଭାରତ ସରକାରଙ୍କ ହସ୍ତଶିଳ୍ପ ବିଭାଗ ତରଫରୁ ପୁରୀର ପାରମ୍ପରିକ ଚିତ୍ରକର ରାମଚନ୍ଦ୍ର ମହାରଣା, ଭୁବନେଶ୍ୱରର ଭଗବାନ ସୁବୁଦ୍ଧି, ସୋନପୁରର ନାକଫୁଟି ମହାରଣା, ସମ୍ବଲପୁର ବରପାଲିର ଗୌରୀ ରଣା, ବଲାଙ୍ଗୀର ତୁଷ୍ଟାର ବେଣୁଧର ଦର୍ଜୀ, ଗଂଜାମ ଜିଲ୍ଲା ଚିକିଟି ଗଡ଼ର ଆପନ୍ନା ମହାପାତ୍ର, ପାରଳାଖେମଣ୍ଡିର ପ୍ରକାଶ ଚନ୍ଦ୍ର ମହାପାତ୍ର ଏବଂ ପୁରୁଷୋତ୍ତମପୁରର ହରିପଣ୍ଡା, ବାଣପୁରର ବିଷ୍ଣୁପ୍ରିୟା ଦେବୀ କଳାମେଳାରେ ସେମାନଙ୍କ ବୃତ୍ତିଗତ କାରୁଶିଳ୍ପ ତିଆରି କରି ବିକ୍ରୀ କରିଥିଲେ ।

Digitized by srujanika@gmail.com

କଳାମେଳା ବେଳେ ପିଲାଏ ଏତେ ଉତ୍ସାହିତ ହେଉଥାନ୍ତି ଯେ, ସକାଳୁ ସେମାନଙ୍କ ହାତ ତିଆରି କୌଣସି ଶିଳ୍ପ ବିକ୍ରିହୋଇ ଶେଷ ହୋଇଗଲେ ଦିନସାରା ସେଭଳି ଆଉ କିଛି କାମ ଅଧିକା ପ୍ରସ୍ତୁତ କରି ଭରଣା କରିଦିଅନ୍ତି । ଏଣେ ଚିତ୍ର ତିଆରି ହେଉଥାଏ ତେଣେ ବିକ୍ରୀ ହେଉଥାଏ । ଏହିକଥାକୁ ଇଂରେଜୀରେ କହିଥାନ୍ତି 'ସେଲ୍ସ ଲାଇକ୍ କେକ୍' ବା ଗରମ ପିଠା । ୧୯୮୭ ମସିହା ଓ ୧୯୮୮ ମସିହାର ଚିତ୍ରମେଳାରେ ବିକ୍ରିଉପଲବ୍ଧ ଅର୍ଥର ପରିମାଣ ଥିଲା ଆଠହଜାର ଓ ଆଠହଜାର ପାଞ୍ଚ ଶହ ଟଙ୍କା । କୋଡ଼ିଏ ବର୍ଷ ତଳର ଏହି ଟଙ୍କା ଆଜିର ହିସାବରେ ଅନ୍ୟୂନ ଲକ୍ଷେ ଟଙ୍କା ହେବ । ଏହି ଅର୍ଥରେ ପିଲାମାନେ ବଣଭୋଜି କରନ୍ତି । ଏହି କାର୍ଯ୍ୟକ୍ରମଟି ସଂପୂର୍ଣ୍ଣ ଭାବେ ପିଲାଙ୍କ ମର୍ଜି ଉପରେ ଏବଂ ରୁଚି ଉପରେ ନିର୍ଭର କରେ । ଆମେ କେବଳ ସେଥିରେ ଅତିଥି ଭାବେ ଯୋଗ ଦେଇଥାଉ ।

ଚିତ୍ରମେଳାକୁ ଖଣ୍ଡଗିରି ମେଳା ସାଙ୍ଗରେ ଯୋଡ଼ି ଦେବାର ମୁଁ ପରିକଳ୍ପନା କରିଥିଲି । ମୁଁ କଲେଜ ଛାଡ଼ିଯିବାର ଆଗ ବର୍ଷ ଖଣ୍ଡଗିରି ମେଳା ମଧ୍ୟରେ ଗୋଟିଏ ଷ୍ଟଲ୍‌ଖୋଲି ଏହି କାର୍ଯ୍ୟକ୍ରମର ଆରମ୍ଭ କରାଯାଇଥିଲା । ମୁଁ ମୋର ସହକର୍ମୀମାନଙ୍କୁ ବୁଝେଇଥିଲି ଯେ ଆମ ନୂତନ ଗୃହ ଓ ତା'ର ପରିସର ଭିତରେ ଆଗାମୀ ବର୍ଷ ମାନଙ୍କରେ ଚିତ୍ରମେଳା ଅନୁଷ୍ଠିତ ହେବ । କଳ୍ପନା କଲେଜରେ ଯେଭଳି ଷ୍ଟଲ୍ ତିଆରି ହେଉଥିଲା ସେଭଳି ହେବ । ଖଣ୍ଡଗିରି ମେଳାରେ ବିଜ୍ଞାପନ ବୋର୍ଡ଼ଟିଏ ଲଗେଇ ଦେଲେ ମେଳା ଦେଖଣାହାରି ମାନେ କଲେଜ ଆସି ମେଳା ଦେଖିବେ । କେତେ ବା ବାଟ । କୋଣାର୍କର ତିଳସପ୍ତମୀ ମେଳା ପରେ ପରେ ଖଣ୍ଡଗିରିର ମେଳା । ଏହି ମେଳାର ପରମ୍ପରାରେ କାଳକ୍ରମେ ସାମିଲ ହେଇଯିବ ଆମ କଲେଜର ସହିତ ।

ଏସବୁ ପରିକଳ୍ପନାରେ ହିଁ ରହିଗଲା ।

Digitized by srujanika@gmail.com

## ୨୬. ପ୍ରାଣ ପ୍ରାଚୁର୍ଯ୍ୟର ସନ୍ଦର୍ଭ : କଳା ଓ କବିତା

ଏ ସଂପର୍କରେ କିଛି ଅବତାରଣା କରିବା ଆଗରୁ ଆମ ଛାତ୍ରଛାତ୍ରୀଙ୍କ ଦୁଇଚାରୋଟି କବିତାର ଉଦ୍ଧୃତି ଦେବା ସମୀଚୀନ ମନେହୁଏ। କବିତା ସଂପର୍କରେ ଲେଖା କବିତାରୁ ଆରମ୍ଭ ହେଉ।

ଯିଏ ସତରେ ମୃତ୍ୟୁକୁ ନିଜ ଇଚ୍ଛାରେ ଯମଲୋକରୁ ଧରାପୃଷ୍ଠକୁ ଉଦ୍ଲେଇ ଆଣିଥିଲା ଆଉ ମୁହୂର୍ତ୍ତକ ମଧ୍ୟରେ ନିଜର ପ୍ରାଣପିଣ୍ଡଟିକୁ ମାଟିର ନିର୍ଜୀବ ପିତୁଳାରେ ପରିଣତ କରିଦେଇଥିଲା ଏଠି ସେହି ଛାତ୍ରୀକବି ଅନସୂୟା ଦାସଙ୍କ କବିତାରୁ ପ୍ରଥମ ଉଦ୍ଧୃତି :

ଆସ ମୃତ୍ୟୁ ତୁମେ ନୁହେଁ ହଳାହଳ,<br>
ତୁମେ ତ ମହାସୁଖ ଅମୃତତୁଲ୍ୟ।<br>
କିଏ ବା ଦୁଃଖୀ ସୁଖୀ ନ ପଚାରିବ ତବ ମୂଲ୍ୟ।<br>
ତୁମେ ଯେ ଦୁଃଖୀ ପରାଣର ଆଶ୍ରୟସ୍ଥଳ<br>
ତୁମେ ଯେ ସାଧକର ବିଶ୍ରାମ ସ୍ଥଳ<br>
ତୁମେ ଯେ ସବୁରି ଲକ୍ଷ୍ୟସ୍ଥଳ।

x x x

ଥିବା ଯାଏ ଧରି ଏ ମରଶରୀର<br>
ଏଣୁ ହେ ମୃତ୍ୟୁ କରୁଛି ତୁମକୁ ସ୍ୱାଗତ।

ମୃତ୍ୟୁର ସନେଟ୍ ପରେ ସୁଧାଂଶୁ ଭୂଷଣ ସୂତାରର ପ୍ରେମକବିତାରୁ ପଂକ୍ତିଟିଏ:

ଉପଭୋଗ କରିଥିଲି ପ୍ରଣୟର ଯେତେ ଯାହା ସାକୀ<br>
ଅଭିନୟ କରିଥିଲି ଆଦାମ୍ ଓ ରୋମିଓ ଚରିତ୍ର<br>
ମୋ ଅତୀତ- ମୋ କଳା- ମୋ ପ୍ରଣୟର ପାଦଚିହ୍ନ<br>
କୋଣାର୍କ ବାଲିରେ ଏ ଯାଏଁ ରହିଛି<br>
ଅଜନ୍ତା ବା ଏଲୋରାର ପ୍ରସ୍ତରରୁ ନିଶ୍ଚିହ୍ନ ହୋଇନି।

Digitized by srujanika@gmail.com

କେତେ ନିଖୁଣ ଭାବର କେତେ ଉଲ୍ଲାସଭରା କବିତା, କଳା ସାଙ୍ଗରେ କବିତାର ଅପୂର୍ବ ମିଳନ ଘଟିଥିଲା ଆମ କଲେଜରେ ପ୍ରତିଟି ପ୍ରାଣରେ, କବିତା ବହିର ପ୍ରତିଟି ପୃଷ୍ଠାରେ ଆଉ ପ୍ରତିଟି ଅନ୍ତେବାସୀର ସ୍ମୃତିରେ ।

ଗୋଟିଏ ବର୍ଷର କଳା ଓ କବିତା ବହିର ନିଜ ଅଗ୍ରଲେଖ, 'ନଦୀ, ଛବି ଓ କବିତା' ରୁ କିଛି ଏଇଠି ପୁନରାବୃତ୍ତି ଏଇଥି ପାଇଁ ଯେ ସେଦିନର ଶବ୍ଦଗୁଡ଼ିକ ଏ ସ୍ମୃତିଗ୍ରନ୍ଥରେ ଲିପିବଦ୍ଧ ରହୁ । ଏ ବୟସରେ ମଧ୍ୟ ତାହା ପ୍ରାଣରେ ପ୍ରେମ ଭରିଦେବ ।

''ଚେଷ୍ଟାଚରିତ୍ର କରି କବିତା ଲେଖା ଯାଏନାହିଁ । ଚିତ୍ର ଓ ଭାସ୍କର୍ଯ୍ୟ ଭଳି କବିତା ଏକ ସ୍ୱତଃସ୍ଫୂର୍ତ୍ତ ଧାରା, ମନ୍ଦାକିନୀ ପରି ଆପେ ଆପେ ବହିଯାଏ । ସେଥିରେ ଯେଉଁମାନେ ଅବଗାହନ କରନ୍ତି, ସେମାନେ ହିଁ କାବ୍ୟରସ ପାନ କରିବାର ସୁଯୋଗ ପାଆନ୍ତି ।

ଏହି ମହାବିଦ୍ୟାଳୟକୁ କଳାଭ୍ୟାସ କରିବାକୁ ଯେଉଁମାନେ ଆସନ୍ତି, ନିଜ ଜାଣତରେ ହେଉ ବା ଅଜାଣତରେ ହେଉ ଏହି ମନ୍ଦାକିନୀରେ ଲମ୍ଫ ଦିଅନ୍ତି । କିଏ କିଏ ହୁଏତ ସେମିତି ପାଣିରେ ପାଣିରେ ବେଳେବେଳେ ସନ୍ତରଣ କରି, ବେଳେବେଳେ ବୁଡ଼ ଦେଇ ବା ବେଳେ ବେଳେ ପାଣି ଫୋଟକା ପରି, ପୁଣି କିଏ କିଏ କେବଳ ନଦୀକୂଳରେ ବାନ୍ଧବୀମାନଙ୍କ ସହ ପାଣି ଭିତରକୁ ଗୋଡ଼ି ଫିଙ୍ଗି ନିଜର ଅରମାନ ମେଣ୍ଟାନ୍ତି ।

ବେଳେବେଳେ ନଦୀ ବନ୍ୟାରେ ପ୍ଲାବିତ ତ ବେଳେବେଳେ ଖାଁ ଖାଁ, ଶୁଖିଲା । ଗାଧୁଆ ଶେଷ । କୂଳରେ ବୁଲା ବି ଶେଷ । ଖାଲି ସ୍ମୃତିକୁ ପଖାଳି ପଖାଳି ଥୋକେ ଅଶ୍ରୁସିକ୍ତ । ଜୀବନଯୁଦ୍ଧରେ ରକ୍ତଜର୍ଜରିତ । ଘୃଣାରେ, ଅସୂୟାରେ ଲୁଣ୍ଠିତ ଓ ଏଭଳି ଯେତେ ଗଦ୍ୟମୟ ଜୀବନର ଗଳିରାସ୍ତାମାନଙ୍କରେ ଛବିଟିଏ ବା କବିଟିଏ ସଂଗେ ଦେଖାହେଲେ ସେଇ ପୁରୁଣା କଥା ନଦୀରେ ଗାଧୋଇବା, ଜହ୍ନ ଦେଖିବା, ବଉଳର ବାସ୍ନା ଶୁଙ୍ଘିବା ବା ବାନ୍ଧବୀର ବେଣୀରୁ ସେବତୀ ଖସେଇ ଆଣିବାର ଦୁଃସାହସିକତା ବା ପ୍ରବଣତା ।''

୧୯୮୯ ବର୍ଷର କଳା-କବିତା ବହିର ଉପକ୍ରମଣିକାରେ ମୁଁ ଯାହା ଲେଖିଥିଲି ତାହା ହିଁ କଳା ଓ କବିତାକୁ ଏକାସାଙ୍ଗରେ ଘେନିବାର ଅସଲ ଉଦ୍ଦେଶ୍ୟ ।

''ଚିତ୍ର, ଭାସ୍କର୍ଯ୍ୟ ଓ କବିତା ଭିତରେ ଯେଉଁ ପ୍ରାଣବନ୍ତ ଓ ସ୍ପନ୍ଦନ ଅଛି ତାହା ଏକ । କେବଳ ରୂପଗତ ପରିପ୍ରକାଶ ଭିନ୍ନ ଭିନ୍ନ । ରୂପଚର୍ଚ୍ଚା ବାହ୍ୟିକ ନୁହେଁ । ଏହା ଏକ ଅନ୍ତଃସମୀକ୍ଷା ବା ଆତ୍ମାନୁଶୀଳନର ବ୍ୟାପାର । କବି ଓ ଚିତ୍ରକରର ଦୃଷ୍ଟିଭଙ୍ଗୀ ପ୍ରାୟତଃ ସମାନ । ସେମାନେ ସୃଷ୍ଟିର ବିଚିତ୍ରତାରେ ବିହ୍ୱଳିତ ହୋଇ ଅନୁଭୂତିକୁ ରସାଣିତ କରି ତୃପ୍ତି ଓ ଆନନ୍ଦର ପ୍ରାପ୍ତି ପାଇଁ ସୃଷ୍ଟି କରିଥାନ୍ତି । ଆମେ ଯେଉଁମାନେ ଏଠାରେ ଏଭଳି ଏକ ରସାନୁଭୂତି ପାଇଁ ସୌନ୍ଦର୍ଯ୍ୟର ଉପାସନା କରୁଛୁ ସମସ୍ତେ ଉଣା ଅଧିକେ ଚିତ୍ରକର ଓ କବି । ଗଭୀର ଆତ୍ମବିଶ୍ୱାସ ଓ ଅନୁଭୂତିର ପ୍ରଚୋଦନାରେ ବିଗତ ତିନିବର୍ଷ ଧରି ଏହି ମହାବିଦ୍ୟାଳୟର ସାହିତ୍ୟ ସଂସଦ ଆନୁକୂଲ୍ୟରେ

Digitized by srujanika@gmail.com

କବିତା ଉତ୍ସବ ଅନୁଷ୍ଠିତ ହେଉଛି । ବହିଟିଏ ପ୍ରକାଶିତ ହେଉଛି । ଏହାକୁ ଅଧିକ ବର୍ଣ୍ଣାଢ଼୍ୟ କରିବା ପାଇଁ ଆମର ଯାହା ସମ୍ବଳ ଆବଶ୍ୟକ, ତାହା ଆମ ପାଖରେ ନାହିଁ । ତଥାପି କବିତା ଉତ୍ସବ ପାଇଁ ଆମର ଶିଳ୍ପୀବନ୍ଧୁମାନେ କବିତାମୁଖର ହୋଇ ଉଠୁଛନ୍ତି, ଏହା ହିଁ ବୋଧହୁଏ ଏହି ଉତ୍ସବର ଆଭିମୁଖ୍ୟ । ତେଲଲୁଣର ସଂସାର ବା ପରୀକ୍ଷା ଡିଗ୍ରୀ ଓ ପୁରସ୍କାରର ସଂସାର ଭିତରେ ଶିଳ୍ପୀ ନିଜକୁ ସଂପୂର୍ଣ୍ଣ ହଜେଇ ନ ଦେଇ ବେଳେବେଳେ କାବ୍ୟିକ ରସସ୍ୱାଦନ ଭିତରେ ନିଜକୁ ଭୁଲିଯିବାରେ ଆନନ୍ଦ ପାଏ ।''

ଆମେ ପ୍ରତିବର୍ଷ ଫେବୃୟାରୀ ବା ମାର୍ଚ୍ଚମାସରେ ସାହିତ୍ୟ ସଂସଦ ଆନୁକୂଲ୍ୟରେ କବିତା ଉତ୍ସବଟିଏର ଆୟୋଜନ କରିଥାଉ । ଜଣେ ବିଶିଷ୍ଟ କବିଙ୍କ ଉପସ୍ଥିତିରେ ପିଲାମାନେ କବିତାପାଠ କରିଥାନ୍ତି । ଅତିଥି କବିତାଗୁଡ଼ିକ ନିଜ ପସନ୍ଦରେ ନିର୍ବାଚିତ କରିଦେଇଥାନ୍ତି । ସେଗୁଡ଼ିକୁ ନେଇ କବିତା ବହିଟିଏ ପ୍ରକାଶ ପାଏ । ଏହି ବହିରେ ପିଲାମାନଙ୍କର ଚିତ୍ର ସ୍ଥାନ ପାଏ । ଗୋଟିଏ ବର୍ଷର କବିତା ଅନ୍ୟ ବର୍ଷମାନଙ୍କ କବିତା ଠାରୁ କେବଳ ଭିନ୍ନ ନୁହେଁ, ସେଥିରେ ଚିତ୍ର ସଂଯୋଜନା ଓ ବହି ନିର୍ମାଣରେ ମଧ୍ୟ ସ୍ୱାତନ୍ତ୍ୟ ଥାଏ । ବେଳେବେଳେ କବିତା ସହିତ ଲିନୋ ବା କାଠବ୍ଲକଗୁଡ଼ିକ ଛପା ଯାଇଥାଏ ତ ଆଉ କେତେବେଳେ ସିଲ୍‌କ୍ ସ୍କ୍ରୀନ୍‌ରେ କବିତା ଓ ଚିତ୍ର ମୁଦ୍ରଣ କରାଯାଏ । ଥରେ ଥରେ ଏଭଳି ବି ହେଇଛି ଅଧ୍ୟାପକ ବଳଦେବ ମହାରଥୀ ସଂପୂର୍ଣ୍ଣ ବହିଟିକୁ ନିଜ ହାତ ଅକ୍ଷରେଲେଖି ଚିତ୍ର ସଂଯୋଗ କରିଦେଇଛନ୍ତି ଓ ତାହା ଅଫ୍‌ସେଟ୍ ପ୍ରେସ୍‌ରେ ମୁଦ୍ରିତ ହେଇଛି । ୧୯୮୯ ମସିହାର କଳା-କବିତା ବହିର ସଂପୂର୍ଣ୍ଣ ଡ଼ିଜାଇନ୍ କରିଥିଲେ ଅଧ୍ୟାପକ ଡି.ଏନ୍.ରାଓ । ମୁଁ ମଧ୍ୟ ତା ପରବର୍ଷ ବହିର ଡ଼ିଜାଇନ୍ କରିଥିଲି ଓ ସେଥିରେ ସ୍ଥାନ ପାଇଥିବା ଚିତ୍ର ମଧ୍ୟ ଅଙ୍କନ କରିଦେଇଥିଲି । କିନ୍ତୁ ଏସବୁ କାର୍ଯ୍ୟର ଶ୍ରେୟଃ କେବଳ ମୋ ପାଖକୁ ନ ଆସୁ, ଅଧ୍ୟାପକମାନେ, ଛାତ୍ରଛାତ୍ରୀମାନେ ସେମାନଙ୍କ ସଂପୃକ୍ତିକୁ ନେଇ ଗର୍ବ କରନ୍ତୁ, ତାହହେଲେ ଯାଇ କବିତା ଉତ୍ସବ ଓ ପ୍ରକାଶନ ସାର୍ଥକ ହେବ ବୋଲି ମୋର ଧାରଣା ଥାଏ । ଏଣୁ ପ୍ରକାଶନରେ ବେଳେବେଳେ ବିଭିନ୍ନ ଅଧ୍ୟାପକଙ୍କ ଓ ଛାତ୍ରଛାତ୍ରୀଙ୍କ ନାଁ ସିମିତି ସିମିତି ସଂପୃକ୍ତ ରହେ ।

ବିଭିନ୍ନ ସମୟରେ ବିଭିନ୍ନ କବି ନିମନ୍ତ୍ରିତ ହେଇଥାନ୍ତି । ଯେଉଁମାନଙ୍କ ନାଁ ଏବେ ବି ସ୍ମରଣରେ ଅଛି ସେମାନେ ହେଲେ ରବିନାରାୟଣ ସେନାପତି, ସୌରୀନ୍ଦ୍ର ବାରିକ, ଫନି ମହାନ୍ତି, ସୁଧାଂଶୁ ମୋହନ ରାଉତରାୟ, ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ହିମାଂଶୁ ଶେଖର ପଟ୍ଟନାୟକ ପ୍ରଭୃତି । ଆଗ ଅପେକ୍ଷା ମୁଁ ଏବେ ଟିକିଏ ଅଧିକ ଲେଖାଲେଖି କରିବା ପାଇଁ ସମୟ ସୁଯୋଗ ପାଇପାରୁଛି । ମୋ ସାହିତ୍ୟିକ ବନ୍ଧୁମାନେ ମୋତେ ପଚାରିଥାନ୍ତି ଜଣେ ଚିତ୍ରଶିଳ୍ପୀର ସାହିତ୍ୟ ସଂପୃକ୍ତି କଥା । ପୁଣି ସେମାନଙ୍କ ପ୍ରଶ୍ନ ଭିତରେ ଥାଏ 'ତମକୁ କ'ଣ ଅଧିକ ଭଲ ଲାଗେ,

Digitized by srujanika@gmail.com

ସାହିତ୍ୟ ନା ଚିତ୍ର'? ମୁଁ ସବୁବେଳେ ସୃଜନ ଉତ୍ସର କଥା କହିବାକୁ ଚେଷ୍ଟା କରିଥାଏ । ପ୍ରକାଶର, ମାଧ୍ୟମର କଥା କହିଥାଏ । ଆମ ଶିଳ୍ପୀଙ୍କ ଦଳରେ ବିଶିଷ୍ଟ କବିମାନଙ୍କର ଅଭାବ ନଥିଲା । ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟର ଅଧ୍ୟାପକ ବିନୋଦ ରାଉତରାୟ ଜଣେ ଜଣାଶୁଣା କବି ଥିଲେ । ଅଧ୍ୟାପକ ଅନନ୍ତ ପଣ୍ଡା ବନ୍ଧୁ ଆଗରୁ ନିଜ ଗଳ୍ପ ସଂକଳନ 'ସ୍ୱରାଜ୍ୟର ସ୍ୱପ୍ନ' ପ୍ରକାଶ କରିଥିଲେ । ଅଧ୍ୟକ୍ଷ ଶରତଚନ୍ଦ୍ର ଦେବ ଆଧ୍ୟାତ୍ମିକ କବିତା ଲେଖିଛନ୍ତି, ପ୍ରକାଶ କରିଛନ୍ତି । ଗୋପାଳ କାନୁନ୍‌ଗୋଙ୍କ ସାହିତ୍ୟ ସଂପୃକ୍ତି କଥା କିଏ ବା ନଜାଣେ । ତାଙ୍କ କବିତା ଯିମିତି କବିତାର ଅନୁବାଦ ସିମିତି ଛନ୍ଦୋମୟ, ଲାଳିତ୍ୟପୂର୍ଣ୍ଣ; କଳା ସମାଲୋଚନା ଓ ସାହିତ୍ୟର ସବୁ ବିଭବରେ ଧୁରନ୍ଧର ଥିଲେ ଶିଳ୍ପୀ କାନୁନ୍‌ଗୋ । ଶିଳ୍ପୀ-କବିଙ୍କ ମଧ୍ୟରେ ସେ ଥିଲେ ଅଗ୍ରଗଣ୍ୟ । ଖଲ୍ଲିକୋଟ ଚାରୁକଳା ବିଦ୍ୟାଳୟର, ବରିଷ୍ଠ ଓ କନିଷ୍ଠ ଭିତିରେ ମୋର ବନ୍ଧୁ ସହପାଠୀ ଅନେକ ବନ୍ଧୁ ନାଟକ ରଚନା କରିଛନ୍ତି । ପାଣ୍ଡୁଲିପି ବେଶି, ଛାପାବହି କମ୍ । ଏଣୁ ସେମାନେ ବଣମଲ୍ଲୀ ଭଳି ଉହାଡ଼ରେ ରହିଯାଇଛନ୍ତି । ସେମାନଙ୍କ ହାତଲେଖା କବିତା ବହି ମଧ୍ୟ ଅଛି । ସେମାନଙ୍କ ମଧ୍ୟରୁ ଆଜିର ବରିଷ୍ଠ ଶିଳ୍ପୀ ଓଡ଼ଗାଁର ଲକ୍ଷ୍ମୀଧର ସାହୁଙ୍କ ରଚିତ ନାଟକର ସଂଖ୍ୟା ପଚାଶ ପାଖାପାଖି ହେବ । ଭଦ୍ରକ-ବାଲେଶ୍ୱରର ଅଶୋକ କୁମାର ମହାନ୍ତି ଏବେ ବି କବିତା ଲେଖନ୍ତି । ଅଶୋକ ପ୍ରକାଶନ ମାମଲାରେ ଖୁବ୍ ପାରିବାର । ତଥାପି ଖଲ୍ଲିକୋଟରେ ଆମେ ଅଧ୍ୟୟନ କରୁଥିବା ବେଳେ ସାହିତ୍ୟ ସଂସଦଟିଏ, କବିତା ଉତ୍ସବଟିଏ କାହିଁକି ଆୟୋଜିତ ହୋଇପାରିନଥିଲା, ଚିନ୍ତାକରି ହେଉନି । ପ୍ରଥମ ବ୍ୟାଚ୍‌ର ଛାତ୍ରୀ ଇନ୍ଦିରା ସାମନ୍ତ ଏବେ ଖଲ୍ଲିକୋଟ ଠାରେ 'ଚିଲିକା ସାହିତ୍ୟ ସଂସଦ' ନାଁରେ ଗୋଟିଏ ଗୋଷ୍ଠୀ ଗଠନ କରି ସାହିତ୍ୟ ଚର୍ଚ୍ଚା କରୁଛନ୍ତି । ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଶିଳ୍ପୀ ଚନ୍ଦ୍ରମଣି ବିଶ୍ୱାଳ ମଧ୍ୟ କବିତା ଲେଖା ଲେଖି କରିଛନ୍ତି । ଆମ କଲେଜରେ ଅଧ୍ୟାପନା କରୁଥିବା ବେଳେ ସେ କବିତା ସଂକଳନଟିଏ ପ୍ରକାଶ କରିଛନ୍ତି ।

ଏତେ ସବୁ କଥା ଓ କାର୍ଯ୍ୟକ୍ରମ ସୃଜନରେ ମୋ ବିଶ୍ୱାସର ବିସ୍ତାର ମାତ୍ର । ସୃଷ୍ଟିକରିବା ଶକ୍ତିରେ ଅଖଣ୍ଡ ବିଶ୍ୱାସ । ବିଶ୍ୱାସ ଭିତରେ ଏଇ ଅବବୋଧ ସ୍ଥାନ ପାଇଛି ଯେ, ପ୍ରତ୍ୟେକ ଶିଳ୍ପୀ କବି । ଆଜିର ସାହିତ୍ୟରେ ଚିତ୍ରକଳାର ଆଦର ନଥିବାରୁ, ଶିଳ୍ପୀମାନଙ୍କ ସୃଜନକଳା ପ୍ରତି ଯଥୋଚିତ ସଂଭ୍ରମ ଓ ସମ୍ମାନ ଦିଆଯାଉ ନଥିବାରୁ ଦୁଃଖ ଲାଗେ । ମନରେ ବିଷାଦ ଭରିଯାଏ । ଏବେ ବି ସେଇ ପୁରୁଣା କଳା-କବିତାର ପୃଷ୍ଠା ଓଲଟାଇ ଦେଲେ ସେ ବେଳର ଛାତ୍ରଛାତ୍ରୀଙ୍କ ଭାବୋଲ୍ଲାସଭରା କବିତା ସିନ୍ଦୁକ ସାଇତା ପାଟ ଓ ମଠାର ଗନ୍ଧ ଭଳି ମୋତେ ଆନମନା କରିଦିଏ । ଏବେ ତ ଆଉ ବିଭୂତି କାନୁନ୍‌ଗୋ ଚିତ୍ରକଳା ମହାବିଦ୍ୟାଳୟରେ କଳା-କବିତା ଉତ୍ସବ ହେଉନାହିଁ । ଏଣୁ ଏଇ ଗୁଡିକ ହିଁ ପୁରୁଣା ସନ୍ତକ ।

Digitized by srujanika@gmail.com

ସେଇ ଆମର ପୁରୁଣା କବିତାରୁ କିଛି ଉଦ୍ଧୃତି ଦେବା ପାଇଁ ପୁଣି ମନ କହୁଛି । କବିତା ପ୍ରତି କି ଦୁର୍ବାର ଆକର୍ଷଣ ! ଅଧ୍ୟାପିକା ଶୈଳବାଳା ନାୟକଙ୍କ 'ହଜିଯାଇଥିବା ସ୍ୱପ୍ନ' କବିତାରୁ ଦୁଇଟି ପଂକ୍ତି :

'ସବୁ ତ ବଦଳିଯାଏ,
ମାଟି ପଥର ବି ମିଳେଇଯାଏ
ଯେମିତି ତୁ, କିନ୍ତୁ
ଫେରିଲା ବର୍ଷରେ
ତୋ ସଂଗୀତ ଯେତେବେଳେ ମନେପଡ଼ିଯାଏ
ହାତ ବଢ଼ାଇଲେ ତ ପାଏନାହିଁ
ଆକାଶକୁ ଛୁଏଁ ନାହିଁ ବି,' x x x

ପୁଣି ଛାତ୍ର ଗୌରହରି ରାଉତଙ୍କ 'ନିରାଶ ଝଡ଼'ରୁ କିଛି ଧାଡ଼ି । ତେବେ ଗୌରହରି ପୋଖତ କବିଟିଏ ପାଲଟିଗଲାଣି, ତିନି ଚାରୋଟି କବିତା ସଂକଳନ ପ୍ରକାଶ କରିସାରିଲାଣି । ତା'ର ଗୋଟିଏ ସଂକଳନରେ କବି ସୌରୀନ୍ଦ୍ର ବାରିକଙ୍କ ଅଗ୍ରଲେଖ ତ ଅନ୍ୟଟିରେ ମୋର, ସେଦିନର କଳା-କବିତା ସଂପର୍କର ବିସ୍ତାର ଭଳି ଲାଗେ ।

'ମହା ପ୍ରଳୟର ତାଣ୍ଡବ ହସୁଛି
ଅନ୍ତର ବେଦନା ମନ ତଳେ,
ଚିତ୍ତ ଝଙ୍କାର ପବନ ବହୁଛି
ଆନ୍ଦୋଳନ କରି ବୁକୁ ପରେ
ବିଭଙ୍ଗ ଭରୁଛି ପ୍ରାଣେ ପ୍ରାଣେ-
ମାଟିର ମଣିଷ ମାଟି ହୋଇଯାଏ ସୃଜନୀ ଆତ୍ମାଟି ହଜେ କେଣେ ।'

ଉପରୋକ୍ତ କାବ୍ୟ ପଂକ୍ତି ପାଠକଲେ କହିବା ପାଇଁ ସାହସ କୁଳଉଛି, ଆମ କଲେଜର କଳା-କବିତାର କବିତାଗୁଡ଼ିକ ଯେ କୌଣସି ଉଚ୍ଚାଙ୍ଗ ସାହିତ୍ୟ ପତ୍ରିକାରେ ପ୍ରକାଶିତ କବିତା ସହିତ ସମକକ୍ଷ । ଉତୁରି ଆସୁଥିବା ଏଭଳି ଗୋଟିଏ ସୃଜନ ପରମ୍ପରାର ହତ୍ୟା ଶିଳ୍ପୀ ସମାଜ ପାଇଁ ଶୋଭନୀୟ ନୁହେଁ । ଗୋଟିଏ ମହାବିଦ୍ୟାଳୟର ବର୍ଣ୍ଣବିସ୍ତାର ପାଇଁ ମଧ୍ୟ ତାହା ହିତକର ନୁହେଁ ।

Digitized by srujanika@gmail.com

# ୨୭. ସ୍ମାରକୀ ବକ୍ତୃତା

ଆମ କଲେଜଟି ବିଭୁତି କାନୁନ୍‌ଗୋଙ୍କୁ ଉତ୍ସର୍ଗ କରାଯାଇଥିଲା । ଏହି କାର୍ଯ୍ୟଟି ସଂପୂର୍ଣ୍ଣ ରାଜନୈତିକ ବିଚାର ଦ୍ୱାରା ପ୍ରଚୋଦିତ ହୋଇଥିଲା, କାରଣ ବିଭୁତି କାନୁନ୍‌ଗୋ ଓଡ଼ିଶାର ପ୍ରସିଦ୍ଧ ଶିଳ୍ପୀ ନଥିଲେ । ତଥାପି ଆମ କଲେଜର ସମ୍ମାନ ଓ ସ୍ୱର୍ଗତ କାନୁନ୍‌ଗୋଙ୍କ ସ୍ମୃତିରକ୍ଷା ଦୃଷ୍ଟିରୁ ଆମେ କଲେଜ ପ୍ରତିଷ୍ଠା ଦିବସ ୨୫ ଜାନୁୟାରୀ ଦିନ ବିଭୁତି କାନୁନ୍‌ଗୋ ସ୍ମୃତି ବକ୍ତୃତା ମାଳାର ଆୟୋଜନ କରୁଥିଲୁ । ଜନ୍ମଦିବସ ବା ଶ୍ରାଦ୍ଧଦିବସ ପାଳନ କଲେ ବକ୍ତାମାନେ ସାଧାରଣ ଭାବେ ଯେଭଳି ଦିବଙ୍ଗତ ବ୍ୟକ୍ତିତ୍ୱ ସଂପର୍କରେ ଆକାଶରୁ ତୋଳିଆଣିବା କଥା କହିଥାନ୍ତି ଏବଂ ସେଭଳି ବକ୍ତବ୍ୟ ବର୍ଷ ବର୍ଷ ଧରି ପୁନରାବୃତ୍ତି ହୋଇ ଅନ୍ତଃସାରଶୂନ୍ୟ ହୋଇଯାଏ, ସ୍ମାରକୀ ବକ୍ତୃତା ଅନ୍ତତଃ ସେହି ଅଭାବବୋଧରୁ ମୁକ୍ତି ପାଇଥାଏ । ସ୍ମାରକୀ ବକ୍ତୃତା ଓଡ଼ିଶାର କଳାଶିକ୍ଷା ପରିସରରେ ଏହାହିଁ ପ୍ରଥମ । କଲେଜରେ ଏଥିପାଇଁ ସ୍ୱତନ୍ତ୍ର ଅର୍ଥବ୍ୟବସ୍ଥା ନଥାଏ । ଏଣୁ ବେଶି ଦୂର ଦୂରାନ୍ତରୁ ଅତିଥି ନିମନ୍ତ୍ରଣ କରିବାରେ ବାଧା ଉପୁଜେ । ଆମେ ମୁଖ୍ୟତଃ ଶାନ୍ତିନିକେତନ କଳାଭବନର ପ୍ରଫେସର୍‌ମାନଙ୍କ ଉପରେ ନିର୍ଭର କରୁ ଏବଂ ସେମାନେ ମଧ୍ୟ ଆମ କଲେଜପ୍ରତି ସହାନୁଭୂତି ପ୍ରକାଶ କରି ନିଜ ଭ୍ରମଣଜନିତ ଖର୍ଚ୍ଚକୁ ଯଥାସମ୍ଭବ ସଂକୁଚିତ କରିଥାନ୍ତି । ଥରେ ମୁଁ ଦିଲ୍ଲୀରେ ରହୁଥିବା ଓଡ଼ିଆ ଚିତ୍ରଶିଳ୍ପୀ ଯତୀନ ଦାସଙ୍କୁ ସ୍ମାରକୀ ବକ୍ତୃତା ଦେବା ପାଇଁ ନିମନ୍ତ୍ରଣ କରିଥିଲି । ସେ କିନ୍ତୁ ଯେଉଁସବୁ ସର୍ତ୍ତ ରଖି ମୋତେ ଚିଠି ଲେଖିଲେ ସେଥିରେ ମୋର ତଥା ମୋ ସହକର୍ମୀଙ୍କର ପାକାସି ଉଡ଼ିଗଲା । ଦିଲ୍ଲୀରୁ ଭୁବନେଶ୍ୱର ଯିବା ଆସିବା ଉଡ଼ାଜାହାଜ ଖର୍ଚ୍ଚ ଏବଂ ଭୁବନେଶ୍ୱରରେ ରହିବା ପାଇଁ ହୋଟେଲ ବ୍ୟବସ୍ଥା । ଏତେ ଘଟାଟୋପ ପାଇଁ କଲେଜରେ ଅର୍ଥ କାହିଁ ? ମୋର ମନେହେଲା ଜଣେ ନିଜେ ଶିକ୍ଷକ ନହେଲେ ବା ଶିକ୍ଷକ ମନୋଭାବାପନ୍ନ ନ ହେଲେ ବିଦ୍ୟାଦାନଭାବ ହୃଦୟରେ ଅଭ୍ୟୁଦୟ କିମିତି ବା ହେଇପାରିବ ।

ଆମର ଗୁରୁମାନେ (ଖଲ୍ଲିକୋଟ ଚିତ୍ରକଳା ବିଦ୍ୟାଳୟର ଅଧ୍ୟାପକମାନେ) ଶାନ୍ତିନିକେତନରେ ଅଧ୍ୟୟନ କରିଥିବାରୁ ଆମେ କଳାଭବନକୁ ଗୁରୁପୀଠ ଭାବେ ଗ୍ରହଣ କରିନେଉଥିଲୁ । ଶାନ୍ତିନିକେତନର ଅଧ୍ୟାପକମାନେ ଖୁବ୍ ସାଦାସିଧା କିନ୍ତୁ ଉଚ୍ଚକୋଟୀର ଚିତ୍ରଶିଳ୍ପୀ ଏବଂ ବିଦ୍ୱାନ୍ । ଆମେ କଲେଜରେ ଗୋଟିଏ ଅତିଥି କୋଠରୀ ପରିଷ୍କାର

Digitized by srujanika@gmail.com

ପରିଚ୍ଛନ୍ନ କରି, ସଜଡ଼ା ସଜଡ଼ି କରି ରଖିଥାଉ । ସେଠାରେ ଅତିଥିମାନଙ୍କ ରହିବା ବ୍ୟବସ୍ଥା କରୁ । ଥରେ ଥରେ ଏଭଳି ବି ହେଉଛି ପ୍ରଫେସର୍ ରତନ ପାରିମୁ ଓ ପ୍ରଫେସର୍ ଜ୍ୟୋତି ଭଟ୍ଟ ଗ୍ରାଫିକ୍ ଷ୍ଟୁଡ଼ିଓରେ ଟଟାଣ ଉପରେ ଶେଯ ପାରି ଶୋଇବାକୁ ନ୍ୟୂନ ମଣି ନାହାନ୍ତି । ସେମାନଙ୍କ ଏହି ବଦାନ୍ୟତା ପାଇଁ କଲେଜ ସେମାନଙ୍କଠାରେ ଋଣୀ ହେଇ ରହିଛି । ମୁଁ ଖୁବ୍ ଅଭିନବ ଉପାୟରେ ସେମାନଙ୍କର ଅତିଥି ଚର୍ଚ୍ଚା କରିଥାଏ । ଅତିଥିମାନଙ୍କ ଖାଦ୍ୟପେୟର ଭାର କେତେକ ନିର୍ଦ୍ଦିଷ୍ଟ ଛାତ୍ରୀଙ୍କ ହାତରେ ସମର୍ପି ଦେଇଥାଏ । ସେମାନେ ଛ'ତିଅଣ, ନ'ଅ ଭଜା କରି ଯେତେବେଳେ ଅତିଥିଙ୍କ ଥାଳିରେ ପରଶି ଦିଅନ୍ତି, ଘର ରନ୍ଧାର ସ୍ୱାଦୁ ଅତିଥିଙ୍କୁ ପୁଲକିତ କରିଥାଏ । ମାଛ, ମାଂସ, ଚିକେନ୍, ଚିଙ୍ଗୁଡ଼ି ସହିତ ଅନ୍ୟ ସବୁପ୍ରକାରର ବ୍ୟଞ୍ଜନର ବ୍ୟବସ୍ଥା ହେଉଥାଏ । ଆମ କଲେଜର ଇଜ୍ଜତ ମହତ ଯଥେଷ୍ଟ ବଢ଼ିଯାଏ । ଆଉ ଆମେ କଲେଜରେ ଯେ ଗୋଟିଏ ପରିବାର ଭଳି ଚଳୁ ତାହା ଏଥିରୁ ସ୍ପଷ୍ଟ ହେଇଯାଏ ।

ସ୍ମାରକୀ ବକ୍ତୃତା ଦେବା ପାଇଁ ଆମ କଲେଜକୁ ଯେଉଁ ଅତିଥିମାନେ ଆସିଛନ୍ତି, ସେହି ତାଲିକା ଉପରେ ଆଖି ବୁଲେଇ ଆଣିଲେ ଲାଗିବ ମୁଁ ଅର୍ଥ ସଂକୋଚନ ହେତୁ ଅତିଥିମାନଙ୍କ ଆମ କଲେଜକୁ ଆସିବାରେ ଯେଉଁ କଟକଣା କଥା ଯାହା ଆଗରୁ କହିଛି ତାହା ହୁଏତ ଠିକ୍ ନୁହେଁ । ସ୍ମାରକୀ ବକ୍ତୃତା ଦେବାପାଇଁ ଆସିଥିବା ଦଶଜଣଙ୍କ ମଧ୍ୟରୁ ପ୍ରଫେସର କାଳିନ୍ଦୀ ଭେଦନ ଜେନା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ, ପ୍ରଫେସର ବୀରେଶ୍ୱର ଭଟ୍ଟାଚାର୍ଯ୍ୟ ପାଟଣା କଳା ମହାବିଦ୍ୟାଳୟରୁ, ପ୍ରଫେସର ଜ୍ୟୋତି ଭଟ୍ଟ ଏମ୍.ଏସ୍ ବିଶ୍ୱବିଦ୍ୟାଳୟ ବରୋଦାରୁ ଏବଂ ଅନ୍ୟ ଦୁଇଜଣ ଅତିଥି କାଶ୍ମୀର ଓ ଲକ୍ଷ୍ନୌରୁ । କିଏ କେବେ କେଉଁ କାମରେ ଭୁବନେଶ୍ୱର ଆସୁଛନ୍ତି ମୁଁ ତାକୁ ଲକ୍ଷ୍ୟ ରଖିଥାଏ ଏବଂ ଆମ କଲେଜ କାର୍ଯ୍ୟକ୍ରମ ତାଙ୍କ ଭୁବନେଶ୍ୱର ରହଣି ସମୟାନୁସାରୀ ହେଲେ ମୁଁ ତାଙ୍କୁ ଆଗତୁରା ନିମନ୍ତ୍ରଣ ଜଣାଇଥାଏ । ଭୁବନେଶ୍ୱରରେ ଦିଲ୍ଲୀ ଲଳିତ କଳା ଏକାଡେମୀର ଆଞ୍ଚଳିକ କେନ୍ଦ୍ର ପ୍ରତିଷ୍ଠା ହେଲାଠାରୁ ଭାରତବର୍ଷର ବିଭିନ୍ନ ସହରରୁ ଶିଳ୍ପୀମାନେ ଏକାଡେମୀର କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ଆସିଲେ ଏବଂ ଏହା ଆମ କଲେଜର ଅଭିବୃଦ୍ଧିରେ ମଧ୍ୟ ସହାୟକ ହେଲା ।

ପ୍ରଥମ ସ୍ମାରକୀ ବକ୍ତୃତା ଦେଇଥିଲେ ଡକ୍ଟର ନିର୍ମଳେନ୍ଦୁ ଦାସ । ଡକ୍ଟର ଦାସ ଜଣେ ଉଚ୍ଚକୋଟୀର ଗ୍ରାଫିକ୍ ଶିଳ୍ପୀ ଏବଂ ସେତେବେଳକୁ ସେ ଶାନ୍ତିନିକେତନ କଳାଭବନରେ ଅନ୍ତେବାସୀ ଭାବେ ଗବେଷଣା କରୁଥିଲେ । ପରେ ସେ ଗ୍ରାଫିକ୍ କଳା ବିଭାଗରେ ପ୍ରଫେସର୍ ପଦବୀ ମଣ୍ଡନ କରି କଳାଭବନର ଅଧ୍ୟକ୍ଷ ମଧ୍ୟ ହୋଇଥିଲେ । ନିର୍ମଳେନ୍ଦୁ ମୋର ବ୍ୟକ୍ତିଗତ ବନ୍ଧୁଥିଲେ ଏବଂ ସେ ଭୁବନେଶ୍ୱର ଆସି କଲେଜର ଛାତ୍ରଛାତ୍ରୀଙ୍କୁ ଭାରତରେ ଗ୍ରାଫିକ୍ କଳାର

Digitized by srujanika@gmail.com

ବିକାଶ ଏବଂ ତହିଁରେ କଳାଭବନର ଭୂମିକା ସଂପର୍କରେ ବେଶ ପ୍ରାଞ୍ଜଳ ଭାବେ ନିଜ ବକ୍ତବ୍ୟ ଉପସ୍ଥାପନ କରିଥିଲେ । ତା' ପର ବର୍ଷ କଳାଭବନ କଳା ଇତିହାସ ବିଭାଗର ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ ନାନ୍ଦନିକ ବ୍ୟବଧାନ ସଂପର୍କରେ କହିବାକୁ ଯାଇ ସମଗ୍ର ବିଶ୍ୱକଳା ରୋମନ୍ଥନ କରି କେତୋଟି ନିର୍ବାଚିତ ପ୍ରସଙ୍ଗର ଅବତାରଣା କରିଥିଲେ । ଆମେ ପ୍ରଫେସର ଚକ୍ରବର୍ତ୍ତୀ (କାଞ୍ଚନ ଦା')ଙ୍କର ଲିଖିତ ଭାଷଣଟିକୁ ମୁଦ୍ରିତ କରି ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିତରଣ କରିଥିଲୁ । କଳା ଇତିହାସର ପ୍ରସାର ଦିଗରେ କାଞ୍ଚନ ଦା'ଙ୍କର ଯଥେଷ୍ଟ ଆଗ୍ରହ ରହିଥିଲା ଏଣୁ ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ କଳା ଇତିହାସରେ ବିଶ୍ୱଭାରତୀରୁ ପିଏଚ୍.ଡ଼ି କରିବା ପାଇଁ ଇଚ୍ଛା ପ୍ରକାଶ କଲି ସେ ମୋତେ ଅତ୍ୟନ୍ତ ଆଗ୍ରହର ସହିତ ତାଙ୍କର ଛାତ୍ରଭାବେ ଗ୍ରହଣ କରିଥିଲେ । ମୋର ଗବେଷଣାର କ୍ଷେତ୍ର ଥିଲା ଗଂଜାମ ଜିଲ୍ଲାର ଧରାକୋଟ ଗଡ଼ର ଆଞ୍ଚଳିକ କଳା ପରମ୍ପରା ଓ ତହିଁରେ ଜଗନ୍ନାଥ ମନ୍ଦିରର ଭୂମିକା । ଏଣୁ ସେ ଥରେ ମୋ ସହିତ ଧରାକୋଟ ଆସି ସେଠାକାର ଜଗନ୍ନାଥ ମନ୍ଦିର ସଂପର୍କରେ ପ୍ରତ୍ୟକ୍ଷ ଅନୁଭୂତି ଆହରଣ କରିଥିଲେ । ଗବେଷଣା ସଂପର୍କରେ ଗୋଟିଏ କଉତୁକିଆ କଥା ଏବେ ବି ମୋର ସ୍ମରଣରେ ଅଛି। ମୁଁ ଅଠାଅଶି ଅଣାନବେ ମସିହାବେଳକୁ ଭାରତଉତ୍ସବ କାମରେ ବ୍ୟସ୍ତ ରହି ବିଭିନ୍ନ ଦେଶ ପରିଭ୍ରମଣ କରୁଥାଏ । ଏଣେ କାଞ୍ଚନ ଦା ମୋ ଗବେଷଣାର ଅଗ୍ରଗତି ସଂପର୍କରେ କୌଣସି ଖବର ଅନ୍ତର ନପାଇ ଉତ୍କଣ୍ଠିତ ରହୁଥାନ୍ତି । ମୋର ଦୀର୍ଘଦିନର ଅନୁପସ୍ଥିତିରେ ସେ ଧୈର୍ଯ୍ୟହରା ହୋଇ ମୋ ପାଖକୁ ଚିଠି ଖଣ୍ଡେ ଲେଖିଲେ । ଚିଠିରେ ଶିକ୍ଷକ ସୁଲଭ ଅଭିମାନ, ବିରକ୍ତି ଓ ଶେଷରେ ଉପଦେଶ ସହିତ ଯେଉଁ ବାକ୍ୟଟି ଗୁରୁତ୍ୱପୂର୍ଣ୍ଣ ଥିଲା ତା ହେଲୋ, ''ଦିନୁ ଆମି ତୋମାକେ ଡିଭୋର୍ସ୍ କରବୋ' । ମୁଁ ଜାଣିଥିଲି କାଞ୍ଚନ ଦା' ଖୁବ୍ ଉଦାର ପ୍ରକୃତିର ଲୋକ ଓ ଗ୍ରହଣଶୀଳ । ମୁଁ ତାଙ୍କ ଚିଠିର ଉତ୍ତରରେ ଲେଖିଥିଲି, ''କ୍ଷମା କରିବେ ମୁଁ ଏବେ ଅନ୍ତଃସତ୍ତ୍ୱା । ଏ ବେଳରେ ଡିଭୋର୍ସ ମୋର ସାମାଜିକ ପ୍ରତିଷ୍ଠାରେ ଆଞ୍ଚ ଆଣିବ ।'' କାଞ୍ଚନ ଦା ମୋ କଥାର ଶ୍ଳେଷ ବୁଝିପାରିଲେ । ଅବଶ୍ୟ ମୁଁ ମଧ୍ୟ ମୋ ଗବେଷଣାରେ ତତ୍ପର ହେଲି । କାଞ୍ଚନ ଦା' ଆଉ ଆମ ଗହଣରେ ନାହାନ୍ତି । ତାଙ୍କ ଅବର୍ତ୍ତମାନରେ ଆମ କଲେଜ ପ୍ରତି ଓ ଆମମାନଙ୍କ ପ୍ରତି ଥିବା ତାଙ୍କର ସ୍ନେହ ମନେପଡ଼ୁଛି ।

ତୃତୀୟ ବର୍ଷ ପ୍ରଫେସର୍ ଜ୍ୟୋତି ଭଟ୍ଟ ବରୋଦାରୁ ଏହି ବକ୍ତୃତା ପ୍ରଦାନ କରିବା ପାଇଁ ଆମ କଲେଜକୁ ଆସିଥିଲେ । ଆମେ ତାଙ୍କୁ ଜ୍ୟୋତି ଭାଇ ବୋଲି ସମ୍ବୋଧନ କରୁଥିଲୁ । ଉଭୟ ତୈଳଚିତ୍ର ଓ ଗ୍ରାଫିକ୍ କଳାରେ ସେ ଜଣେ ଧୁରନ୍ଧର ଶିଳ୍ପୀ ଥିଲେ । କେନ୍ଦ୍ର ଲଳିତ କଳା ଏକାଡେମୀର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀରେ ସେ ଏବଂ ମକବୁଲ୍ ଫିଦା ହୁସେନ୍ ଏକା ସାଙ୍ଗରେ ପୁରସ୍କୃତ ହୋଇଥିଲେ । ଓଡ଼ିଶାର ପଲ୍ଲୀଚିତ୍ର ତାଙ୍କୁ ଯଥେଷ୍ଟ ଆକୃଷ୍ଟ କରୁଥିବା ହେତୁ ସେ ଫଟୋ ଉତ୍ତୋଳନ କରିବା ପାଇଁ ବହୁବାର ଓଡ଼ିଶା

Digitized by srujanika@gmail.com

ପରିଭ୍ରମଣରେ ଆସିଛନ୍ତି ଏବଂ ଆମେ ଆମ କଲେଜର ସୀମିତ ସମ୍ବଳ ଭିତରେ ଅତିଥି ଚର୍ଚ୍ଚା କରି ତାଙ୍କ ହୃଦୟ ଜିଣିପାରିଥିଲୁ । ସେ ତାଙ୍କ ଭାଷଣରେ ଫଟୋଗ୍ରାଫୀକୁ ସୃଜନ କଳାର ପରିସରରେ ଗ୍ରହଣ କରାଯିବା ସଂପର୍କରେ ବଳିଷ୍ଠ ଯୁକ୍ତି ବାଢ଼ିଥିଲେ । ଏହି ତୃତୀୟ ସ୍ମାରକୀ ବକ୍ତୃତା ସଭାରେ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ରାଜେନ୍ଦ୍ର ପ୍ରସାଦ ଦାସ ପୌରହିତ୍ୟ କରିଥିଲେ । ତା'ପରବର୍ଷ ଶାନ୍ତିନିକେତନରୁ ଆମେ ପ୍ରଫେସର୍ ଅଜିତ ଚକ୍ରବର୍ତ୍ତୀଙ୍କୁ ନିମନ୍ତ୍ରଣ କରିଆଣିଥିଲୁ । ଅଜିତ୍ ଦା' ଆମର ଶିକ୍ଷାଗୁରୁ ବିପ୍ରଚରଣ ମହାନ୍ତିଙ୍କ ସହପାଠୀ ଥିଲେ । ମୁଁ ଅଜିତ୍ ଦା'ଙ୍କ ଅନୁରୋଧରେ ତାଙ୍କୁ ନେଇ ଅଧ୍ୟାପକ ମହାନ୍ତିଙ୍କ ଘରେ ପହଞ୍ଚିଥିଲି । ଦୁଇବନ୍ଧୁଙ୍କ ଖୋଲାମେଲା ବାକ୍ୟାଳାପ ବେଶ୍ ଉପଭୋଗ୍ୟ ହୋଇଥିଲା । ପ୍ରଫେସର୍ ଚକ୍ରବର୍ତ୍ତୀ ଓ ଅଧ୍ୟାପକ ମହାନ୍ତି ଉଭୟେ କଲିକତା କଳା ମହାବିଦ୍ୟାଳୟର ଭାସ୍କର୍ଯ୍ୟ ବିଭାଗର ଛାତ୍ର ଥିଲେ ମହାବିଦ୍ୟାଳୟର ଶିକ୍ଷା ସମାପ୍ତି ପରେ ଉଭୟେ ଚେକୋସ୍ଲୋଭାକିଆରେ ଭାସ୍କର୍ଯ୍ୟ ସଂପର୍କରେ ଗବେଷଣା ପାଇଁ ଉଚ୍ଚତର ବୃତ୍ତି ପାଇଥିଲେ । ଅଜିତ୍ ଦା' ବୃତ୍ତି ଗ୍ରହଣ କରି ଅଧିକ ଅଧ୍ୟୟନ ପାଇଁ ବିଦେଶ ଗଲେ କିନ୍ତୁ ବିପ୍ର ସାର୍ ଅର୍ଥ ଲୋଭରେ ମୂର୍ତ୍ତିଗଢ଼ିବା ପାଇଁ ଓଡ଼ିଶାରେ ପଡ଼ିରହିଲେ । ବିଭିନ୍ନ ପ୍ରକାର ମୂର୍ତ୍ତି ଗଢ଼ାହେଲା ଅଥଚ ଭାସ୍କର୍ଯ୍ୟର ସଚ୍ଚୋଟ ପରମ୍ପରାଟିଏ ଓଡ଼ିଶାରେ ସମ୍ଭବ ହୋଇପାରିଲା ନାହିଁ । ଅଜିତ୍ ଦା' ବିଶ୍ୱଭାରତୀର କୁଳପତି ହେଇପାରିଲେ ଓ ଶିଳ୍ପୀ କୁଳର ଟେକ ରଖିଲେ । ଏଭଳି ଜଣେ ବିଶିଷ୍ଟ ଅଧ୍ୟାପକ ସ୍ମାରକୀ ବକ୍ତୃତା ଦେବା ପାଇଁ ଆମ କଲେଜକୁ ଆସିଥିବାରୁ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଉତ୍ସାହ ଖେଳିଯାଇଥିଲା ।

ପ୍ରସିଦ୍ଧ ବ୍ରିଟିଶ ଭାସ୍କର ହେନେରୀ ମୁର୍‌ଙ୍କ ଶିଳ୍ପ ଚାତୁରୀକୁ ନେଇ ଅଜିତ ଚକ୍ରବର୍ତ୍ତୀ ଭାଷଣ ଦେଇଥିଲେ । ତାଙ୍କ ଲିଖିତ ଭାଷଣଟିକୁ ଆମେ ଛପେଇ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିତରଣ କରିଥିଲୁ । ସ୍ମାରକୀ ବକ୍ତୃତା ଉତ୍ସବରେ ଭାରତର ଆଉ ଦୁଇଜଣ ବିଶିଷ୍ଟ ଭାସ୍କର୍ଯ୍ୟ ଅଧ୍ୟାପକ ମଧ୍ୟ ଯୋଗ ଦେଇ ହେନେରୀ ମୁରଙ୍କ ଶିଳ୍ପୀଶୈଳୀର ଅନନ୍ୟତା ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । ସେମାନେ ହେଲେ ଭି.ଆର ଖଜୁରିଆ ଏବଂ ଏସ୍.ଜି. ଶ୍ରୀଖଣ୍ଡେ । ହେନେରୀ ମୁରଙ୍କ ଭାସ୍କର୍ଯ୍ୟର ବିଶେଷତ୍ୱ ହେଲା ତାଙ୍କର ରୂପକଳ୍ପନା ଏବଂ ସେଥିରେ ଶୂନ୍ୟତାର ପ୍ରୟୋଗ । ହେନେରୀଙ୍କ ପ୍ରକାଣ୍ଡ ପ୍ରକାଣ୍ଡ ଭାସ୍କର୍ଯ୍ୟଗୁଡ଼ିକୁ ନିରୀକ୍ଷଣ କଲେ ମନେହେବ ସତେ ଯିମିତି ଶୂନ୍ୟତା ଅଦ୍ଭୁତଭାବେ ମୂର୍ତ୍ତିମନ୍ତ ଏବଂ ସୃଜନର ଉତ୍ସ । ସେ ରିକ୍ଲାଇନିଙ୍ଗ୍ ଫିଗରସ୍ ବା ଶାୟିତ ମୂର୍ତ୍ତି ରଚନାରେ ସ୍ୱତନ୍ତ୍ରତା ଦାବୀ କରନ୍ତି । ତାଙ୍କର ଭାସ୍କର୍ଯ୍ୟଗୁଡ଼ିକ କିମିତି ଗୋଟିଏ ଆଦିମତାର ଗନ୍ଧ ବହନ କରେ । ଅଥଚ ସେ ଭୀଷଣ ଭାବେ ସାଂପ୍ରତିକ । ସେ ଅନ୍ୟଜଣେ ବ୍ରିଟିଶ ଭାସ୍କର ବାର୍‌ବରା ହେପ୍‌ୱାର୍ଥଙ୍କର ସହପାଠୀ ଏବଂ ପ୍ରବାଦ ପୁରୁଷ ପିକାଶୋଙ୍କର ସମସାମୟିକ । ମୁଁ ସେହିବର୍ଷ ଲଣ୍ଡନ ପରିଭ୍ରମଣରେ

Digitized by srujanika@gmail.com

ଯାଇ ହେନେରୀଙ୍କ ସିଂହାବଲୋକନ (ରେଟ୍ରୋସ୍‌ପେକ୍‌ଟିଭ୍) ପ୍ରଦର୍ଶନୀ ଦେଖି ଉଦ୍‌ବୁଦ୍ଧ ହୋଇ ଫେରିଥାଏ । ଲଣ୍ଡନରୁ ସାଙ୍ଗରେ ଆଣିଥିବା ହେନେରୀଙ୍କ ପୋଷ୍ଟରର ଏକ ଛୋଟକାଟର ପ୍ରଦର୍ଶନୀ ମଧ୍ୟ ଆମେ କଲେଜରେ ଆୟୋଜନ କରିଥାଉ । ଏ ଦିଗରେ ବ୍ରିଟିଶ୍ କାଉନ୍‌ସିଲ୍‌ର କଲିକତା ଅଫିସ ଆମକୁ ସାହାଯ୍ୟ କରିଥାନ୍ତି ।

ପଞ୍ଚମ ସ୍ମାରକୀ ବକ୍ତୃତା ପ୍ରଦାନ କରିଥିଲେ ବିଶିଷ୍ଟ ସିରାମିକ୍ ଶିଳ୍ପୀ କାଳିନ୍ଦୀ ଭେଦନ ଜେନା । ପ୍ରଫେସର ଜେନା ଦୀର୍ଘଦିନ ଧରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ସିରାମିକ ଶିଳ୍ପର ପ୍ରବର୍ତ୍ତକ ଥିଲେ । ଆମେ ସେତେବେଳେ କହୁଥିଲୁ, "ଦେଖ, ଓଡ଼ିଶାର କିଭଳି ଦୁର୍ଭାଗ୍ୟ । ଓଡ଼ିଆ ଶିଳ୍ପୀ ଜଣେ ଓଡ଼ିଶା ବାହାରେ ସିରାମିକ୍ କଳାକୁ ନେଇ ବିଶ୍ୱ ପ୍ରସିଦ୍ଧ କରିସାରିଲାଣି ଅଥଚ ଓଡ଼ିଶାରେ ସିରାମିକ୍‌ର ନାମ ଗନ୍ଧ ସୁଦ୍ଧା ନାହିଁ" । ଓଡ଼ିଶାରେ ସିରାମିକ୍ ଷ୍ଟୁଡ଼ିଓଟିଏ ହେବା ପାଇଁ ବହୁବର୍ଷ ଲାଗିଗଲା; କାଳିନ୍ଦୀ ଭେଦନ ଜେନା ଭଳି ଅଧ୍ୟାପକ ଜଣେ ତିଆରି ହେବା ପାଇଁ ଆଉ କେତେବର୍ଷ ଲାଗିବ କେଜାଣି ? ଏହି ସ୍ମାରକୀ ବକ୍ତୃତା ପ୍ରଦାନ ଉତ୍ସବରେ ନାଟ୍ୟକାର ରମେଶ ପାଣିଗ୍ରାହୀ ସଭାପତିତ୍ୱ କରିଥିଲେ ।

ଷଷ୍ଠ ସ୍ମାରକୀ ବକ୍ତୃତା ଦେଇଥିଲେ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ । ସେ ଭାରତୀୟ ସଭ୍ୟତା ଓ ସଂସ୍କୃତିର ଉନ୍ମେଷ ଓ ବିକାଶ ସଂପର୍କରେ ଅତି ପ୍ରାଞ୍ଜଳ ଓ ସରଳ ଭାବରେ ଛାତ୍ର ଛାତ୍ରୀଙ୍କୁ ତାଙ୍କ ବକ୍ତବ୍ୟ ଶୁଣେଇ ଥିଲେ । ରାଜେନ୍ଦ୍ର ପ୍ରସାଦ ଦାସ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗରେ କିଛିବର୍ଷ କାର୍ଯ୍ୟ କରିଥିବାରୁ ତାଙ୍କ ଅନୁଭୂତିର ବ୍ୟାପକତା ତାଙ୍କ ବକ୍ତବ୍ୟରୁ ବାରି ହୋଇପଡୁଥିଲା । ଏହା ସହିତ ଇତିହାସ ଓ ସାହିତ୍ୟର ସଂଯୋଗ ତାଙ୍କ ଭାଷଣକୁ ରସାଳ କରିପାରିଥିଲା ।

ଆଧୁନିକ ମଞ୍ଚସଜ୍ଜାର ଶୈଳ୍ପିକ ବିବରଣକୁ ନେଇ ଅସୀମ ବସୁଙ୍କ ସପ୍ତମ ବିଭୂତି କାନୁନ୍‌ଗୋ ସ୍ମାରକୀବକ୍ତୃତା ବେଶ୍ ମନୋଜ୍ଞ ହୋଇପାରିଥିଲା । ଅସୀମ ବସୁ (ଅସୀମ ଦା') ନିଜ ଅନୁଭୂତିରୁ ବିଭିନ୍ନ ମଞ୍ଚପରିପାଟୀର ନିର୍ମାଣ କୌଶଳ, ମଞ୍ଚକଳାରେ ରୂପ (ସ୍ପେସ୍) ର ପ୍ରୟୋଗ କିଭଳି ଚିତ୍ରାୟନର ଅନ୍ୟଏକ ବଳିଷ୍ଠ ବିଭବ ତାହା ଆମକୁ କହିଥିଲେ । ସେ କହିଥିଲେ ପରଦା ଝୁଲେଇ ନାଟକ ଅଭିନୟ କରିବା ଉପନିବେଶ ପରମ୍ପରାର ସନ୍ତକ । ଭାରତୀୟ ନାଟକ ପ୍ରଦର୍ଶନ ତ୍ରିମାତ୍ରିକ, ମଝିରେ ନାଟକ ହୁଏ ଓ ଚତୁର୍ଦ୍ଦିଗ ଦର୍ଶକମାନେ ଘେରି ବସନ୍ତି । ନିଜେ ଏକାଧାରରେ ଚିତ୍ରଶିଳ୍ପୀ, ଅଭିନେତା ଓ ମଞ୍ଚଶିଳ୍ପୀ ହୋଇଥିବାରୁ ଛାତ୍ରଛାତ୍ରୀଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ସେ ଠିକ୍ ଭାବରେ ଦେଇପାରିଥିଲେ ।

ତା' ପରବର୍ତ୍ତୀ ବର୍ଷ ଆମେ ପାଟଣା କଳା ମହାବିଦ୍ୟାଳୟର ପ୍ରଫେସର ବୀରେଶ୍ୱର ଭଟ୍ଟାଚାର୍ଯ୍ୟଙ୍କୁ ଅଷ୍ଟମ ସ୍ମାରକୀ ବକ୍ତୃତା ଦେବା ପାଇଁ ନିମନ୍ତ୍ରଣ କରିଥିଲୁ । ଏଠାରେ ଉଲ୍ଲେଖ

Digitized by srujanika@gmail.com

କରିବା ସମୀଚୀନ ହେବ ଯେ ବୀରେଶ୍ୱର ଭଟ୍ଟାଚାର୍ଯ୍ୟ ଓ ଶ୍ୟାମ ଶର୍ମା ବିହାରର ସ୍ଥାଣୁ ହୋଇପଡ଼ିଥିବା ଆଧୁନିକ କଳାଧାରରେ ସାଂପ୍ରତିକର ଚମକ ଆଣିପାରିଥିଲେ । ବୀରେଶ୍ୱର ଦା' ତାଙ୍କ ଭାଷଣରେ ପାଟଣା କଲମ ଓ ମଧୁବନୀ କଳାର ବିକାଶ ଓ ପ୍ରସାର ସଂପର୍କରେ ଏକ ସୁଚିନ୍ତିତ ଭାଷଣ ଦେଇଥିଲେ । ଆମେ କଲେଜ ତରଫରୁ ମଧୁବନୀ ଚିତ୍ରକଳାର ଗୋଟିଏ ଛୋଟିଆ ପ୍ରଦର୍ଶନୀର ଆୟୋଜନ କରିଥିଲୁ ।

ନବମ ବକ୍ତୃତା ଡକ୍ଟର ଭଗବାନ ପଣ୍ଡା ପ୍ରଦାନ କରିଥିଲେ । ଡକ୍ଟର ପଣ୍ଡା ଜଣେ ସଂସ୍କୃତ ବିଦ୍ୱାନ ଏବଂ ବହୁ ପ୍ରାଚୀନ ତାଳପତ୍ର ପୋଥିର ପାଠ ଉଦ୍ଧାର କରି ବହି ସଂପାଦନା କରିବାରେ ସିଦ୍ଧହସ୍ତ । ପୁଣି ସେ ଆମ ସଂସ୍କୃତି ବିଭାଗରେ ଆମର ସହକର୍ମୀ ଥିଲେ । ଡକ୍ଟର ପଣ୍ଡାଙ୍କ ବିଷୟକ୍ରମ ଥିଲା ସଂସ୍କୃତ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା । ସେ କାଳିଦାସଙ୍କ ରଚିତ ମେଘଦୂତ ଓ ଶକୁନ୍ତଳମ୍ କାବ୍ୟରୁ ନିର୍ବାଚିତ କେତେକ ପଙ୍‌କ୍ତିର ଉଦ୍ଧାର ସହ ସେଗୁଡ଼ିକର ତର୍ଜମା ଓଡ଼ିଆରେ ପ୍ରଦାନ କରିଥିଲେ । ପଣ୍ଡାଙ୍କ ବକ୍ତବ୍ୟର କାବ୍ୟିକ ଛଟା ଛାତ୍ରଛାତ୍ରୀଙ୍କୁ ବେଶ୍ ଆମୋଦିତ କରିଥିଲା । ବିଶେଷ କରି ପାରମ୍ପରିକ ଚିତ୍ର ପ୍ରତି ଆଗ୍ରହ ଥିବା ଅଧିକାଂଶ ଛାତ୍ରଛାତ୍ରୀ ଏହି ଶ୍ଳୋକଗୁଡ଼ିକର ରୂପକଳ୍ପରେ ତଲ୍ଲୀନ ହୋଇଯାଇଥିଲେ ।

ମୋ ସମୟରେ ଶେଷ ବକ୍ତୃତାଟି ପ୍ରଫେସର୍ ଯତୀନ୍ଦ୍ର ମୋହନ ମହାନ୍ତି ପ୍ରଦାନ କରିଥିଲେ । ତାଙ୍କର ବକ୍ତୃତାର ବିଷୟ କ୍ରମ ଥିଲା ଓଡ଼ିଆ ସାହିତ୍ୟ । ସମାଲୋଚନା ସାହିତ୍ୟ କ୍ଷେତ୍ରରେ ପ୍ରଫେସର୍ ମହାନ୍ତିଙ୍କର ଯଥେଷ୍ଟ ଖ୍ୟାତି ଥିଲା । ସେ ଇଂରାଜୀ ସାହିତ୍ୟର ଅଧ୍ୟାପକ ହୋଇଥିବା ହେତୁ ତାଙ୍କ ବକ୍ତବ୍ୟକୁ ରସାଳ କରିବା ପାଇଁ ସେ ଅନେକ ରୋମାଣ୍ଟିକ୍ କବିଙ୍କ ଉଦ୍ଧୃତି ଦେଇଥିଲେ ।

ସ୍ମାରକୀ ବକ୍ତୃତାର ମହନୀୟ ପରମ୍ପରାଟି ମୁଁ କଲେଜ ଛାଡ଼ିବା ପରଠାରୁ ବନ୍ଦ ହୋଇଗଲା । ହୁଏତ ଅଧ୍ୟକ୍ଷମାନେ ବିଚାରିଲେ ଏଭଳି ଆଲୋଚନା ଓ ଚର୍ଚ୍ଚା ଚିତ୍ରକଳାର ଅଭିବୃଦ୍ଧିରେ ସହାୟକ ନୁହେଁ । କିଛି ପ୍ରତିଷ୍ଠିତ ଶିଳ୍ପୀଙ୍କ ଧାରଣା ଯେ ଚିତ୍ରାଭ୍ୟାସ ବ୍ୟତୀତ ସାଧାରଣ ପାଠ ଶୈଳ୍ପିକ ଅଭିବୃଦ୍ଧିରେ ଘୋର ଅନ୍ତରାୟ ସୃଷ୍ଟି କରେ । ଏଣୁ ସେମାନେ କଳା ଇତିହାସର ଏହି ମାର୍ମିକ ଅବଧାରଣା ପ୍ରତି ସେତେଟା ଉତ୍ସାହ ଦେଖାନ୍ତି ନାହିଁ । ଏଭଳି ମାନସିକତା ଶିକ୍ଷାୟତନର ଆଙ୍ଗିକ ତଥା ବୌଦ୍ଧିକ ଅନଗ୍ରସରତାର କାରଣ । ଅବଶ୍ୟ କଲେଜର ଜଣେ ଅଧ୍ୟକ୍ଷ ଶିକ୍ଷଣୀୟ କାର୍ଯ୍ୟକ୍ରମକୁ କିଭଳି ଭାବେ ଗ୍ରହଣ କରୁଛି ତା'ରି ଉପରେ ବିଦ୍ୟାର୍ଥୀଙ୍କ ଭାଗ୍ୟ ଦୋହଲୁ ଥାଏ ।

Digitized by srujanika@gmail.com

# ୨୮. ବିଭାଗୀୟ ପ୍ରକାଶନ: ମୁଦ୍ରା, ଇମେଜ୍ ଓ ଡ୍ରଇଁ

ମହାବିଦ୍ୟାଳୟର ଭୌତିକ ସ୍ଥିତି ସିନା ସଙ୍କୁଚିତ, ଗୋଟିଏ ଭଡ଼ାଘରର ରୋକଡ଼ ପଣତକାନି, ତା'ର ଆସ୍ପୃହା ଏହି କାରଣରୁ ସୀମିତ ହେବାର ଯଥାର୍ଥତା ମୁଁ ଅଧ୍ୟକ୍ଷ ଭାବରେ କେବେ ଉପଲବ୍ଧି କରିନାହିଁ । ମୋର ପରିକଳ୍ପନା ଭିତରେ ଏହି ଅନୁଷ୍ଠାନଟି ଛୋଟିଆ ଓ ଅସହାୟ ହୋଇ କେବେ ଦେଖାଦେଇନି । ମୁଁ ସବୁବେଳେ ଏ ଅନୁଷ୍ଠାନର ବିସ୍ତାରିତ ଓ ପ୍ରସାରିତ ଭାବର ସ୍ନିଗ୍ଧ ସୁନ୍ଦର ରୂପ ଦେଖିଆସିଛି । ଏଣୁ ଗୋଟିଏ ଗୋଟିଏ ଶ୍ରେଣୀଗୃହକୁ ଏବଂ ବିଭାଗମାନଙ୍କର ଜଣେ ଅଧେ ଅଧ୍ୟାପକଙ୍କୁ ଫେକଲ୍‌ଟି ଭାବେ ଗଣ୍ୟକରି, ଏ ଭଳିକି ପ୍ରତି ବିଭାଗର ନିଜସ୍ୱ ସ୍ୱାତନ୍ତ୍ର୍ୟକୁ ଧ୍ୟାନରେ ରଖି ପ୍ରକାଶନମାନ ଚିନ୍ତା କରିଥିଲି ।

ଆଗରୁ କଳାଇତିହାସ ବିଭାଗର କଳା ଓ ନାନ୍ଦନିକତାର ପତ୍ରିକା 'ଚିତ୍ର' ଏବଂ ମହାବିଦ୍ୟାଳୟର ସାହିତ୍ୟ ସଂସଦର ପତ୍ରିକା 'କଳା ଓ କବିତା' କଥା ଉଲ୍ଲେଖ କରିଛି । ଏବେ ଗ୍ରାଫିକ୍ ବିଭାଗ, ଭାସ୍କର୍ଯ୍ୟ ବିଭାଗ ଓ ଚିତ୍ରକଳା ବିଭାଗର ମୁଖପତ୍ର କଥା କହିବା । ଶୈଶବ ଅବସ୍ଥାରେ ପାଦ ଥାପି ଥାପି ଚାଲିବାକୁ ଉଦ୍ୟମ କରୁଥିବା ଗୋଟିଏ ମହାବିଦ୍ୟାଳୟର ଗୋଟିଏ, ଦିଓଟି ନୁହେଁ, ପାଞ୍ଚୋଟି ପତ୍ରିକା ପ୍ରକାଶନ ଆମ ସ୍ଥିତିକୁ ସର୍ବଭାରତୀୟ ସ୍ତରରେ ସୁଦୃଢ଼ କରିଦେଇଥିଲା । ପତ୍ରିକାଗୁଡିକ ଭାରତବର୍ଷର ବିଭିନ୍ନ ରାଜ୍ୟରେ ଥିବା ମହାବିଦ୍ୟାଳୟରେ ପହଞ୍ଚୁଥିଲେ ଆମ କଲେଜ ସଂପର୍କରେ ସେଠି ଭଲ ଧାରଣାଟିଏ ଦାନା ବାନ୍ଧୁଥିଲା । ସେମାନେ ଦୃଢ଼ ହେଉଥିଲେ, ହୁଏତ ଦିନନାଥ ପାଠୀ ଓଡ଼ିଶା ସରକାରଙ୍କ ଠାରୁ ପାଉଥିବା ଲକ୍ଷ ଲକ୍ଷ ଟଙ୍କା ଅନୁଦାନର ସହାୟତାରେ ଏଭଳି ପ୍ରକାଶନମାନ କରିପାରୁଛି ଯାହା ସେମାନେ ହୁଏତ କରିପାରୁନାହାନ୍ତି । ସେତେବେଳକୁ ଖଲ୍ଲିକୋଟ ସତେଇଶି, ଅଠେଇଶି ବର୍ଷ ଅତିକ୍ରମ କରିସାରିଥିଲେ ସୁଦ୍ଧା ପତ୍ରିକା କଥା ଦୂରେ ଥାଉ ଖଣ୍ଡିଏ ବିଜ୍ଞପ୍ତି ପତ୍ର ବା କୌଣସି ଉତ୍ସବର ନିମନ୍ତ୍ରଣ ପତ୍ରଟିଏ ଓଡ଼ିଶା ବାହାରର କଳା ମହାବିଦ୍ୟାଳୟ ମାନଙ୍କୁ ପଠେଇବାରେ ସମର୍ଥ ହୋଇ ପାରି ନଥିଲା । ଏହି ବୈକଲ୍ୟ ଓଡ଼ିଶାର କଳାଶିକ୍ଷା ସଂପର୍କରେ ଖୁବ୍ ନ୍ୟୂନ ଧାରଣାଟିଏ ସୃଷ୍ଟି କରିଦେଇଥିଲା । ଆମ ମହାବିଦ୍ୟାଳୟର ପ୍ରକାଶନ ଗୁଡ଼ିକ ଏହି ହୀନମ୍ମନ୍ୟତାକୁ ପ୍ରତିହତ କରିବା ସଂଗେ ସଂଗେ ଏ ଦେଶରେ ଆମର ସୁନାମ ବୃଦ୍ଧି କରିବାରେ ସହାୟକ ହୋଇ ପାରିଥିଲା ।

Digitized by srujanika@gmail.com

ବ୍ୟକ୍ତିଗତ ଭାବେ ମୁଦ୍ରଣ ଓ ପ୍ରକାଶନ ସହିତ ମୋର ସଂପର୍କ ବହୁ ପୁରୁଣା । ବିଭିନ୍ନ କଳା ସଂଗଠନ ସହିତ ସଂପୃକ୍ତ ରହିଥିବା ଫଳରେ ପ୍ରାୟ ସବୁବେଳେ କିଛି ନା କିଛି ମୁଦ୍ରଣ କାର୍ଯ୍ୟ ଲାଗି ରହିଥିଲା । ପର୍ଯ୍ୟଟନ ନିଗମରେ ଯେଉଁସବୁ ଛପାଛପି କାମ ହେଉଥିଲା ତାହାର ଗୁଣାତ୍ମକ ମୂଲ୍ୟ ଆଦର୍ଶ ସ୍ଥାନୀୟ ଥିଲା । ଓଡ଼ିଶାରେ ମୁଁ ସଂପୃକ୍ତ ଥିବା ଶିଳ୍ପୀସଂସଦ, ଚିତ୍ରମ୍ କଳା ବିଦ୍ୟାଳୟ, ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍, ଓଡ଼ିଶା କଲଚରାଲ୍ ଫୋରମ୍ ଓ କ୍ରାଫ୍‌ଟସ୍ କାଉନ୍‌ସିଲ୍ ତରଫରୁ, ପତ୍ରିକା, ବହି, ପ୍ରଦର୍ଶନୀ ପୁସ୍ତିକା ପ୍ରଭୃତି ବରାବର ପ୍ରକାଶିତ ହେଉଥିଲା । ସତୁରୀ ଓ ଅଶିଏ ଦଶକ ବେଳକୁ ଓଡ଼ିଶାରେ ଅଫ୍‌ସେଟ୍ ମେସିନ୍‌ର ବ୍ୟବହାର ଏତେ ବେଶି ନଥାଏ । ଦିବାକର ମିଶ୍ରଙ୍କ ଗ୍ରାଫ୍‌ଟେକ୍ ସଂସ୍ଥା ଭୁବନେଶ୍ୱରରେ ପ୍ରଥମ ଅଫ୍‌ସେଟ୍ ପ୍ରେସ୍‌ର ପ୍ରଚଳନ କରିଥିଲା । କଲେଜ ପାଇଁ ଆମର ଛାପା ସଂଖ୍ୟା ପାଞ୍ଚଶହ ଛଅ ଶହ, ଏଣୁ ଭରସିକରି ଆମେ ଅଫ୍‌ସେଟ୍‌କୁ ଆଦରି ପାରୁନଥିଲୁ । ଭୁବନେଶ୍ୱରର ଅନ୍ୟାନ୍ୟ ସବୁଗୁଡ଼ିକ ଟ୍ରେଡ୍‌ଲ୍ ପ୍ରେସ୍ ସହିତ ମୋର କେବଳ ପରିଚିତି ନଥିଲା ଘନିଷ୍ଠତା ମଧ୍ୟ ଥିଲା । ରାତି ରାତି ମେସିନ୍ ମ୍ୟାନ୍ ସହିତ ପ୍ରେସ୍ ପାଖରେ ଠିଆହେଇ ଛପା କାର୍ଯ୍ୟ ଦେଖିବା ଓ ତା'ର ଗୁଣାତ୍ମକତାକୁ ନିୟନ୍ତ୍ରଣ କରିବାରେ ମୁଁ ଆନନ୍ଦ ପାଏ । ମୋର ବିଶ୍ୱାସ, ବହିଟିଏ ପତ୍ରିକାଟି ବା ପୁସ୍ତିକାଟିଏ ସ୍ମୃତିର ଆଧେୟ ଓ ବାହକ । କିଏ ନା କିଏ ତାର ପାଠକ ଅଛନ୍ତି । ପ୍ରକାଶନର ଉଦ୍ଦେଶ୍ୟ କେବେ ବ୍ୟର୍ଥ ଯାଏନି । ମୁଦ୍ରଣ ଓ ପ୍ରକାଶନ ମୋର ନିଶା କହିଲେ ଚଳେ । ମୁଁ ଯେଉଁଠାକୁ ଯାଇଛି, ଯେଉଁଠି ଚାକିରି କରିଛି, ପ୍ରକାଶନକୁ ମୁଁ ଛାଡ଼ିପାରିନି କି ପ୍ରକାଶନ ମୋତେ ଛାଡ଼ିନି । ଏମିତି ଗୋଟିଏ ବିଶ୍ୱାସ ଓ ସଂପୃକ୍ତିରୁ କଲେଜରେ ଆରମ୍ଭ ହେଇଯାଇଥିଲା ପ୍ରକାଶନର ପର୍ବ । ପ୍ରକାଶନ କାମରେ ଝିନ୍‌ଝଟ୍ ବେଶି । ତା ପଛରେ ଗୋଡ଼େ ଗୋଡ଼େ ନ ଲାଗିଲେ ତାହା ଠିକ୍ ପଇଠେନି । ଏଣୁ କାଦୁଅରେ ପଶି ପୁଣି ଗୋଡ଼ ଧୋଇବାରେ ଅନେକ ଲୋକ ବିଶ୍ୱାସ କରନ୍ତି ନାହିଁ ।

ଗ୍ରାଫିକ୍‌ର ଓଡ଼ିଆ ପରିଭାଷା (ବର୍ଣ୍ଣନାମୂଳକ କଳା ସମ୍ବନ୍ଧୀୟ ଚିତ୍ର ଓ ଯାନ୍ତ୍ରିକ କଳା) ଯାହା ସ୍ଥିର ହେଇଛି ତାହା ଗ୍ରାଫିକ୍‌ରେ ବ୍ୟବହୃତ କଳା କୌଶଳକୁ ବୁଝାଉ ନାହିଁ । କଳା ବିଦ୍ୟାଳୟମାନଙ୍କରେ ପ୍ରଚଳିତ ଗ୍ରାଫିକ୍ କଳା ଛାପାକାମ ବା ମୁଦ୍ରଣ ଶିଳ୍ପର ଆଦିରୂପ । ଛାପାଶିଳ୍ପର ବହୁତ ଅଗ୍ରଗତି ପରେ ତାର ଆଦିରୂପ ବା ଆଦିମ କୌଶଳକୁ, ଏକ ସୀମିତ ପ୍ରଜନନ ବା ପୁନରୁତ୍ପାଦନ ଭିତ୍ତିରେ ପ୍ରୟୋଗ କରି ଶିଳ୍ପୀମାନେ ତାକୁ 'ମୁଦ୍ରଣକଳା' ଭାବରେ ବ୍ୟବହାର କରିଆସିଛନ୍ତି, ଆସୁଛନ୍ତି ମଧ୍ୟ । ଏହି ଭାବନାକୁ ରୂପଦେବାକୁ ଯାଇ ଆମେ ଗ୍ରାଫିକ୍ ବିଭାଗର ମୁଖପତ୍ରର ନାଁ ରଖୁଥିଲୁ 'ମୁଦ୍ରା' । ପ୍ରତିବର୍ଷ ଗ୍ରାଫିକ୍ କଳା ବିଭାଗ ତରଫରୁ ଛାତ୍ରଛାତ୍ରୀମାନଙ୍କ କାଠ ଖୋଦେଇ, ଲିନୋ ଖୋଦେଇ, ଲିଥୋ, ଏଚିଙ୍ଗ୍

Digitized by srujanika@gmail.com

ଓ ସେରିଗ୍ରାଫ୍ ଥାଇ ଷାଠିଏ ସତୁରି ପୃଷ୍ଠାର 'ମୁଦ୍ରା' ପ୍ରକାଶିତ ହୁଏ । କାଠ ଖୋଦେଇ, ଲିନୋ ଖୋଦେଇ ଓ ସେରିଗ୍ରାଫ୍‌ର ମୂଳ ପ୍ରିଣ୍ଟ୍ ଗୁଡ଼ିକ ଏହି ପ୍ରକାଶନରେ ସ୍ଥାନ ପାଏ । ତା'ଫଳରେ ପ୍ରକାଶନ ଗୁଡିକର ଶୈକ୍ଷିକ ମହତ୍ତ୍ୱ ଯଥେଷ୍ଟ ବୃଦ୍ଧି ପାଏ । ମୂଳପ୍ରିଣ୍ଟ୍‌ର ସମାହାରରେ ପ୍ରକାଶନ ଆମେ ଓଡ଼ିଶାରେ ପ୍ରଥମ କରି ଆରମ୍ଭ କଲୁ । ସର୍ବଭାରତୀୟ ସ୍ତରରେ ମଧ୍ୟ ଏହାର ପ୍ରଚଳନ ନୂଆ ହେବ । କେନ୍ଦ୍ର ଲଳିତ କଳା ଏକାଡେମୀ ଏବେ ସର୍ବଭାରତୀୟ ଶିବିରର ମୌଳିକ ଗ୍ରାଫିକ୍ ପ୍ରିଣ୍ଟ୍‌ଗୁଡ଼ିକୁ ନେଇ ପୋର୍ଟ୍‌ଫୋଲିଓ ତିଆରି କରୁଛି । ସେମାନଙ୍କ ପୋର୍ଟ୍‌ଫୋଲିଓର ବହିରୂପ ହେଲା 'ମୁଦ୍ରା' । ଶହ ଶହ ପ୍ରିଣ୍ଟ୍ ପ୍ରସ୍ତୁତ କରିବା ପାଇଁ ବିଭାଗୀୟ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କୁ ବହୁ ଶ୍ରମ ସ୍ୱୀକାର କରିବାକୁ ପଡୁଥିଲା । ଅବଶ୍ୟ ଲିଥୋ ଓ ଏଚିଙ୍ଗ୍ ପ୍ରିଣ୍ଟ୍ ଗୁଡ଼ିକୁ ଛାପାଖାନାରେ ଛପେଇ ଆଣିବାକୁ ହେଉଥିଲା । କାରଣ ଲିଥୋ ଓ ଏଚିଙ୍ଗ୍ ପଦ୍ଧତିରେ ଏତେ ଗୁଡିଏ ପ୍ରିଣ୍ଟ୍ କଲେଜ ଷ୍ଟୁଡ଼ିଓରେ କରିବା ସମ୍ଭବ ନୁହେଁ । କିନ୍ତୁ ଏସବୁ କାମ ଭିତରେ ପିଲାମାନେ ବହି ନିର୍ମାଣର କୌଶଳ ଶିଖି ଯାଉଥିଲେ ।

ମୋର ମନେପଡୁଛି ଥରେ ମୁଁ ଆମ କଲେଜର କେତୋଟି 'ମୁଦ୍ରା' ନେଇ ଦିଲ୍ଲୀଠାରେ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ରିଚାର୍ଡ୍ ବାର୍ଥଲମିଓଙ୍କୁ ଉପହାର ଦେଇଥିଲି । ରାଜ୍ୟସ୍ତରୀୟ ଗୋଟିଏ କଳା ମହାବିଦ୍ୟାଳୟ ଦ୍ୱାରା ଏଭଳି ପ୍ରକାଶନ ଯେ ସମ୍ଭବ ହୋଇପାରେ, ତାହା ସେ ବିଶ୍ୱାସ କରିପାରି ନଥିଲେ । ତାଙ୍କର ଲଳିତକଳା ଏକାଡେମୀରେ ବହୁ ଶିଳ୍ପୀ, ବହୁ ଅଧ୍ୟାପକଙ୍କୁ ଭେଟିବାର ସୁଯୋଗ ଥିଲେ ମଧ୍ୟ ତାଙ୍କୁ ହୁଏତ ଗ୍ରାଫିକ୍ ପ୍ରିଣ୍ଟ୍‌ର ଏଭଳି ବହି କିଏ ଆଗରୁ ଉପହାର ଦେଇ ନଥିଲେ ।

'ଇମେଜ୍' ଆମ ଭାସ୍କର୍ଯ୍ୟ ବିଭାଗର ମୁଖପତ୍ର ଭାବେ ମୋଟେ ତିନି ଚାରିଥର ପ୍ରକାଶ ପାଇପାରିଥିଲା । ଏଥିରେ ପିଲାମାନେ କରିଥିବା ବିଭିନ୍ନ ଭାସ୍କର୍ଯ୍ୟର ଫଟୋଗ୍ରାଫ୍, ଭାସ୍କର୍ଯ୍ୟ ଗଢୁଥିବା ବେଳର ଦୃଶ୍ୟ ସାଙ୍ଗକୁ ସେହି ବିଭାଗର ବିଭିନ୍ନ ଘଟଣାବଳୀର ବିବରଣୀ ମଧ୍ୟ ପ୍ରକାଶ ପାଉଥିଲା । ଏହା ସହିତ ଅଧ୍ୟକ୍ଷଙ୍କର ଭାସ୍କର୍ଯ୍ୟ ସଂପର୍କରେ ଗୋଟିଏ କଳାଐତିହାସିକ ଆଲୋଚନା ଛାତ୍ରଛାତ୍ରୀଙ୍କ ପାଇଁ ଉପାଦେୟ ହେଉଥିଲା । ଏଭଳି ବିଭାଗୀୟ ପ୍ରକାଶନ ପାଇଁ କଲେଜ ପକ୍ଷରୁ ପାଣ୍ଠିର ବ୍ୟବସ୍ଥା ଯାହା ହେଇପାରୁଥିଲା ତାହା ସାମାନ୍ୟ, ସମୁଦ୍ରକୁ ଶଙ୍ଖେ ପାଣି ଭଳି । ଏଣୁ ଅଧ୍ୟାପକମାନଙ୍କ ସାଙ୍ଗଠନିକ ଦକ୍ଷତା ଓ ଛାତ୍ରଛାତ୍ରୀଙ୍କ ପ୍ରତ୍ୟକ୍ଷ ସହଯୋଗ ଉପରେ ଏହାର ପ୍ରକାଶନ ମୂଳତଃ ନିର୍ଭର କରୁଥିଲା । ଅବଶ୍ୟ ପ୍ରକାଶନ ପାଇଁ ଆବଶ୍ୟକୀୟ ଅର୍ଥ ଭରଣା କରିବାକୁ ଅଧ୍ୟକ୍ଷଙ୍କ ତରଫରୁ କୌଣସି ସମୟରେ ଅସହଯୋଗ ନଥିଲା ।

Digitized by srujanika@gmail.com

ଚିତ୍ର ବିଭାଗର ପତ୍ରିକା ସଦାକାଳେ ରଙ୍ଗିନ ହେବାର ସ୍ୱାଭାବିକତା ଉପରେ ନିର୍ଭର କରେ । ରଙ୍ଗିନ ଚିତ୍ର ଥାଇ ପ୍ରକାଶନ କରିବା ପାଇଁ ଆମ ଆର୍ଥିକ ସମ୍ବଳ ପର୍ଯ୍ୟାପ୍ତ ନଥିବାରୁ ଆମେ ଏହାକୁ କଳାଧଳା ରେଖାଚିତ୍ର ମଧ୍ୟରେ ସୀମିତ କରିଥିଲୁ । ଅବଶ୍ୟ ରେଖା ସମସ୍ତ ଚିତ୍ରାଭ୍ୟାସର ମୂଳ ଉପାଦାନ ହୋଇଥିବାରୁ ଏହି ମୁଖପତ୍ରର ଗୁରୁତ୍ୱ ରଙ୍ଗିନ ହେବା ବା ନହେବା ଉପରେ ଫରକ ପଡୁନଥିଲା । ଜଣେ ଶିଳ୍ପୀର ପାରଦର୍ଶିତା ଓ ମୌଳିକତା ରେଖାଙ୍କନରୁ ହିଁ ଜଣାପଡ଼ିଯାଏ । ରେଖାର ମୌଳିକତା ଓ ନଗ୍ନତା ସହିତ କେବେହେଲେ ସାଲିସ୍ କରାଯାଇପାରିବ ନାହିଁ । ଏଣୁ ରେଖାର ଗୁରୁତ୍ୱ । ବିଶିଷ୍ଟ କଳା ସମାଲୋଚକ ପଲ୍ ଜେମସ୍ ତାଙ୍କର ପ୍ରସିଦ୍ଧ ବହି 'ଗ୍ରେଟ୍ ଡ୍ରଇଂସ୍'ରେ ଡ୍ରଇଁ ସଂପର୍କରେ ଗୋଟିଏ ଚମତ୍କାର କଥା ଲେଖିଛନ୍ତି । ''ଡ୍ରଇଁକୁ କେନ୍ଦ୍ରକରି ସମଗ୍ର ବିଶ୍ୱ ଦୁଇ ଭାଗରେ ବିଭକ୍ତ; ଗୋଟିଏ ହେଲା ଯେଉଁମାନେ ଡ୍ରଇଁକୁ ଭଲପାଆନ୍ତି ଆଉ ଯେଉଁମାନେ ଭଲପାଆନ୍ତି ନାହିଁ । ଯେଉଁମାନେ ଡ୍ରଇଁକୁ ଭଲ ପାଆନ୍ତି ସେମାନଙ୍କ ପାଇଁ ଡ୍ରଇଁ ବ୍ୟତୀତ ଆଉ କିଛି ଉତ୍ତମ ଶିଳ୍ପ-ଉପାଦାନ ଲଭ୍ୟ ନୁହେଁ । ସମଗ୍ର କଳା ପ୍ରକାଶରେ ଡ୍ରଇଁ ବା ରେଖା ହେଉଛି ଭିତ୍ତିସଦୃଶ ।'' ଏଣୁ କଳା ମହାବିଦ୍ୟାଳୟମାନଙ୍କରେ ରେଖାଙ୍କନ ପ୍ରତି ଗୁରୁତ୍ୱ ଦିଆଯାଇ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କୁ ରେଖାଙ୍କନାଭ୍ୟାସ କରିବା ପାଇଁ କୁହାଯାଇଥାଏ । ଏହା ସଂଗୀତ ବିଦ୍ୟାର ରିୟାଜ୍ ଭଳିଆ କଥା ।

ପ୍ରାଚ୍ୟ ଭୂଖଣ୍ଡ ଯଥା ଭାରତ, ଚୀନ, ଜାପାନ ପ୍ରଭୃତି ଦେଶର ପାରମ୍ପରିକ ଚିତ୍ରଶୈଳୀରେ ରେଖା ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଗୋଟିଏ ଅକମ୍ପ ରେଖା ସ୍ଥିର ଦୀପଶିଖା ସହିତ ତୁଳନୀୟ । ପୁଣି ଏହା ସହିତ ମନ ଓ ପ୍ରାଣର ସ୍ଥିର ଭାବକୁ ମଧ୍ୟ ସଂପର୍କିତ କରାଯାଉଛି । ଆମ ପାରମ୍ପରିକ ଚିତ୍ରକାରମାନେ ମଧ୍ୟ ରେଖା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଥାନ୍ତି । ଚିତ୍ରାଙ୍କନରେ ଆରମ୍ଭରୁ ରେଖା ଓ ଶେଷରେ ବି ରେଖା । ଆରମ୍ଭ ରେଖାକୁ ଟିପଣା ଓ ଶେଷ ରେଖାକୁ ସରୁକଳା କୁହାଯାଇଛି ।

ଚିତ୍ରକଳା ବିଭାଗର 'ଡ୍ରଇଁ'କୁ ଆମେ ମୁଦ୍ରିତ ସ୍କେଚ୍‌ବହି ଭାବରେ ସବୁବେଳେ ଜ୍ଞାନ କରି କଲେଜର କାର୍ଯ୍ୟକ୍ରମରେ ଗୁରୁତ୍ୱ ଦେଇଆସିଛୁ । ସ୍କେଚ୍ ସହିତ ଶିଳ୍ପୀର ମାନସିକତା ଏଭଳି ଭାବେ ଜଡ଼ିତ ଯେ, ସ୍କେଚ୍ ପରି ଶେଷରେ ଶିଳ୍ପୀର ଭାଷା ହେଇଯାଏ । ଏବଂ ରେଖାଙ୍କନରୁ ଶିଳ୍ପୀର ବ୍ୟକ୍ତିତ୍ୱ ବି ଫୁଟି ଉଠିଥାଏ ।

କଲେଜର ପ୍ରଥମ 'ଡ୍ରଇଁ' ପ୍ରକାଶନ ଅବସରରେ ମୋର ଅଗ୍ରଲେଖରେ ଯାହା ଉଲ୍ଲେଖ କରିଥିଲି ତା'ର ଏଠି ସାମାନ୍ୟ ଅବତାରଣା ବା ଉଦ୍ଧୃତି ଦେବା ଅସମୀଚୀନ ହେବନାହିଁ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିତ୍ରଶୈଳୀରେ ରେଖାର ପ୍ରାଧାନ୍ୟ ଅଛି ଯଦିଚ ଏହି ଦୁଇପ୍ରକାର ରେଖାର ଗଠନ, ପ୍ରବାହ ଓ ଚାରିତ୍ରିକ ପ୍ରକାଶ ଭିନ୍ନ ଭିନ୍ନ । ଚୀନ ଓ

Digitized by srujanika@gmail.com

ଜାପାନ ଦେଶରେ ଏଭଳିକି ଓଡ଼ିଶାରେ ମଧ୍ୟ ତୂଳୀରେ ରେଖାଙ୍କନ କରାଯାଏ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ କାଳି ଓ କଲମରେ ରେଖା ରୂପାୟିତ ହୁଏ । ଏହାକୁ ମହାବିଦ୍ୟାଳୟ ପରିଭାଷାରେ 'ପେନ୍ ଓ ଇଙ୍କ୍ ଡ୍ରଇଁ' ବୋଲି ସାଧାରଣ ଭାବରେ କୁହାଯାଇଥାଏ । କଲମର ମୁନ ଯେତେ ଧାରୁଆ ଡ୍ରଇଁ ସେତିକି ସୂକ୍ଷ୍ମ ହୁଏ । ଇଟାଲୀ, ନେଦରଲ୍ୟାଣ୍ଡ୍ ଓ ଜର୍ମାନୀରେ ରୂପାର କଲମ (ଯାହାକୁ ସିଲ୍‌ଭର୍ ପଏଣ୍ଟ କୁହାଯାଏ)ର ବହୁଳ ବ୍ୟବହାର ଅଛି । ଏଥିରୁ ଉତ୍‌ପନ୍ନ ରେଖାର ସୂକ୍ଷ୍ମତା ପ୍ରଶଂସନୀୟ । ଯେଉଁ ଶିଳ୍ପୀମାନେ ରେଖାଙ୍କନରେ ବିଶ୍ୱ ପ୍ରସିଦ୍ଧି ଲାଭ କରିଛନ୍ତି, ସେମାନେ ହେଲେ ଆଲ୍‌ବର୍ଟ୍ ଡ୍ୟୁରେର୍, ରେମ୍‌ବ୍ରାଁ, ରାଫେଲ୍, ମାଇକେଲ୍ ଏଞ୍ଜେଲୋ, ପଲ୍ ରୁବେନ୍‌ସ୍ ଏବଂ ଲିଓନାର୍ଡୋ ଡାଭିନ୍‌ଚି ପ୍ରଭୃତି । ଏ ସମସ୍ତ ଶିଳ୍ପୀ ରୀତିଯୁଗୀୟ କଳାକୁ ରେଖାର ଚମତ୍କାରିକତାରେ ଋଦ୍ଧିମନ୍ତ କରିଛନ୍ତି ।

ଆମେ ବିଭାଗୀୟ ପତ୍ରିକା ଗୁଡ଼ିକର ପ୍ରକାଶନରେ ଛନ୍ଦ ରକ୍ଷା କରୁଥିଲୁ । ପ୍ରକାଶନ ସହିତ ପ୍ରକାଶନରେ ସ୍ଥାନିତ ଚିତ୍ର, ଭାସ୍କର୍ଯ୍ୟ ଓ ଗ୍ରାଫିକ୍ କଳାକୁ ନେଇ ପ୍ରଦର୍ଶନୀମାନ ମଧ୍ୟ ଆୟୋଜିତ ହେଉଥିଲା । ଯାହାଫଳରେ ପ୍ରଦର୍ଶନୀ ଓ ପ୍ରକାଶନ ମାଧ୍ୟମରେ ଏକ ସମନ୍ୱୟ ରକ୍ଷା କରାଯାଇପାରୁଥିଲା । ଭାବିବା ଭୁଲ ହେବ ଯେ ଆମର ପ୍ରକାଶନ ଏକ ପ୍ରଦର୍ଶନୀ ପୁସ୍ତିକା । ମୁଁ କଲେଜରୁ ଅନ୍ତର ହେଇଯିବା ଆଗରୁ 'ଇମେଜ୍'ର ପ୍ରକାଶନ ବନ୍ଦ ହେଇସାରିଥିଲା । ଚିତ୍ର ବିଭାଗର ଛାତ୍ରଛାତ୍ରୀ ବିଭିନ୍ନ ଶିବିର ଆୟୋଜନ କରି ରଙ୍ଗିନ ଫୋଲ୍‌ଡର୍ ଓ ବୁକ୍‌ଲେଟ୍ ଛାପି 'ଡ୍ରଇଁ'ର ପରମ୍ପରାକୁ ନଷ୍ଟ କରିଦେଲେ । ରଙ୍ଗିନ ଛପାର ଚମକ ଭିତରେ ରେଖାର ମୌଳିକ ଆବେଦନ ବିଲୁପ୍ତ ହେଇଗଲା । କେବଳ ଗ୍ରାଫିକ୍ କଳା ବିଭାଗର ଅଧ୍ୟାପକ ଡି.ଏନ୍.ରାଓ ସେହି ପୁରୁଣା ସ୍ମୃତିକୁ ଜାବୁଡ଼ି ଧରି ପ୍ରାୟ ଦୁଇହଜାର ମସିହା ଯାଏଁ ପଡ଼ି ଉଠି 'ମୁଦ୍ରା' ପ୍ରକାଶ କରୁଥିଲେ । ସିଏ ଅଧ୍ୟକ୍ଷ ହେଇ ଖଲ୍ଲିକୋଟ ଚାଲିଗଲା ପରେ ମୁଦ୍ରାର ପ୍ରକାଶନ ବନ୍ଦ ହେଇଗଲା । ଅଧ୍ୟକ୍ଷ ହେଇ କଲେଜ ପରିଚାଳନାରେ ରାଓ ମହାଶୟ ଏଭଳି ବ୍ୟସ୍ତ ବିବ୍ରତ ରହିଲେ ଯେ, ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ମଧ୍ୟ 'ମୁଦ୍ରା'ଟିଏ ବା ତତ୍ତୁଲ୍ୟ ପତ୍ରିକାଟିଏ ପ୍ରକାଶ ପାଇପାରିଲା ନାହିଁ । ଆମେ ୧୯୮୪ ମସିହାରେ ଆରମ୍ଭ କରିଥିବା ପ୍ରକାଶନସଂକ୍ରାନ୍ତୀୟ ସମସ୍ତ ପ୍ରଚେଷ୍ଟା ଗୋଟିଏ ଦଶନ୍ଧି ଭିତରେ ବିଲୟ ଭଜିଲା ।

Digitized by srujanika@gmail.com

# ୨୯. କମ୍ପ୍ୟୁଟର୍‌ର ଅନ୍ୟନାମ ବଳଦେବ

ଜଣେ ସର୍ଜ୍ଜନଶୀଳ ଶିଳ୍ପୀଙ୍କୁ କମ୍ପ୍ୟୁଟର କହିଲେ ସୃଜନର କେତେକ କଳ୍ପନାପ୍ରବଣ ଉତ୍ସ ପ୍ରତି ଅବମାନନା କଲାଭଳି ଲାଗିପାରେ । କିନ୍ତୁ କମ୍ପ୍ୟୁଟର୍‌ର ଯେତିକି ଶ୍ରେୟଃ ମୋଟାମୋଟି ସେହି ଗୁଣଗୁଡ଼ିକ ବଳଦେବଙ୍କ ପ୍ରାପ୍ୟ । ଏବେ ବଳଦେବ ନିଜକୁ ଚିତ୍ରଦେବ ବୋଲାଇଲେଣି । ଏହି ଉପାଧି ଜିତେନ୍ଦ୍ର ନାରାୟଣ ଦାଶ (ଦାଶ ବେନହୁର) ବଳଦେବଙ୍କୁ ପ୍ରଦାନ କରିଛନ୍ତି । କମ୍ପ୍ୟୁଟର୍ ଓ ଚିତ୍ରଦେବତା ବା ଚିତ୍ରଦେବ ଏକା ପରିପ୍ରେକ୍ଷୀରେ ବ୍ୟବହୃତ ଭଳି ମନେହୁଏ । ଆମ ଗଂଜାମ ଆଡ଼େ କହନ୍ତି 'ଦେ' ନ ହେଲେ 'ବତା' ଦେବତା (ବତେଇ ଦେ, ଶିଖେଇଦେ) । ବଳଦେବ ଜଣେ ଅଧ୍ୟାପକ ହେଇଥିବାରୁ ଚିତ୍ର ଶିକ୍ଷା ଓ ଚିତ୍ର କୌଶଳ ପିଲାଙ୍କୁ ଅକୁଣ୍ଠରେ ଦାନ କରିବେ ପୁଣି ସେମାନେ ଚିତ୍ର ବିଦ୍ୟା କିଭଳି ଆହରଣ କରିବେ ତାକୁ ବତେଇ ଦେବେ ।

ବି.କେ. କଲେଜରେ ଆଡ଼ହକ୍ ଅଧ୍ୟାପକ ନିଯୁକ୍ତି ପାଇଁ ବଳଦେବ ମହାରଥାଙ୍କୁ ମନୋନୀତ କରିବାର ମୁଖ୍ୟ କାରଣ ହେଲା ଚିତ୍ର ଅଙ୍କନରେ ତାଙ୍କ ଦକ୍ଷତା । କିଏ ଜଣେ ଭଲ ଚିତ୍ର ଆଙ୍କିଲେ ଆମ ଶିକ୍ଷକମାନେ କହୁଥିଲେ ଅମୁକ ପିଲାର ହାତ ଭଲ । ସେହି ଦୃଷ୍ଟିରୁ ବଳଦେବଙ୍କ କ୍ଷେତ୍ରରେ କୁହାଯିବ ତାଙ୍କ ହାତ ଭଲ । କ୍ଲାସ୍‌ରେ ପିଲାମାନେ ବଳଦେବଙ୍କ ପ୍ରତି ଆକୃଷ୍ଟ ହେଇଯିବାର କାରଣ ଥିଲା, ସାର୍‌ଙ୍କ ହାତ ଭଲ । ଏହା ସହିତ ମୁଁ ଆଉ ଗୋଟିଏ ଦୁଇଟି ଗୁଣ ମିଶେଇବି । ବଳଦେବ ଖୁବ୍ ଭାବପ୍ରବଣ ଓ ଦରଦୀ । ସିଏ ବି.ଏ. ଯାଏଁ ପାଠ ପଢ଼ିଥିଲେ ଓ ସାହିତ୍ୟରେ ରୁଚି ରଖୁଥିଲେ । ସର୍ବୋପରି ତାଙ୍କ ଚେହେରା ଖୁବ୍ ଆକର୍ଷଣୀୟ ଥିଲା । କଲେଜ ତଳ ମହଲାରେ ଦକ୍ଷିଣକୁ ଲମ୍ବିଯାଇଥିବା ବାହୁର ଗୋଟିଏ ମାତ୍ର ବଖରା ଓ ତତ୍‌ସଂଲଗ୍ନ ବାରଣ୍ଡା ବଳଦେବଙ୍କ ଡିଜାଇନ୍ ବିଭାଗ ପାଇଁ ଉଦ୍ଦିଷ୍ଟ ଥିଲା । ବଖରାର ଗୋଟିଏ କଣେ ଖଣ୍ଡେ ଟେବୁଲ୍ ଓ ଚୌକି । ପିଲାଏ ଚଟାଣରେ ଦରି ପକେଇ ବସୁଥିଲେ । ବଳଦେବଙ୍କ କ୍ଲାସ୍‌ରୁମ୍‌ର କବାଟଟି ସଦାବେଳେ ବନ୍ଦ ରହୁଥିଲା । ବେଳେବେଳେ ତାଙ୍କ ସହକର୍ମୀମାନେ ଏହି ବନ୍ଦକବାଟକୁ ନେଇ ଅଧ୍ୟକ୍ଷଙ୍କ ନିକଟରେ ଅଭିଯୋଗ କରୁଥିଲେ । ମୁଁ ସେଥିପ୍ରତି କେବେ ଗୁରୁତ୍ୱ ଦେଇନି କିମ୍ବା ବଳଦେବଙ୍କୁ ସେ ସଂପର୍କରେ କୈଫିୟତ ମାଗିନି ।

ମୁଁ କଲେଜରେ ଅଧ୍ୟକ୍ଷ ଥିଲାବେଳେ ଥରେ ଲଣ୍ଡନର ରୟେଲ୍ କଲେଜ୍ ଅଫ୍ ଆର୍ଟସ୍ ପରିଦର୍ଶନରେ ଯାଇଥିଲି । ସେଠାକାର କଲେଜର ଜଣେ ପ୍ରଫେସର୍ କଲେଜ

Digitized by srujanika@gmail.com

ଦେଖିବାରେ ଯେତେ ସାହାଯ୍ୟ କରିବା ପାଇଁ ମୋ ସାଙ୍ଗରେ ଥିଲେ। ଗୋଟିଏ ଶ୍ରେଣୀ ଗୃହ ବନ୍ଦ ଥିଲା। ମୁଁ ତାଙ୍କୁ ପଚାରିଲି ଆଜି କ'ଣ କ୍ଲାସ୍ ବନ୍ଦ ? ସେ କବାଟରେ ଠକ୍ ଠକ୍ କଲେ। ଭିତରେ ହୁଏତ ପିଲା ଓ ଶିକ୍ଷକ ଥିଲେ। ବହୁତ ସମୟ ବିତିଯାଇଥିଲେ ମଧ କବାଟ ଖୋଲି ନଥିଲା। ପ୍ରଫେସର୍ ଜଣକ ମୋତେ କହିଲେ ହୁଏତ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଗୋଟିଏ କୌଣସି ସୃଜନକର୍ମରେ ବ୍ୟସ୍ତ ଅଛନ୍ତି। ସିଏ ମୋତେ କ୍ଲାସ୍ ଦେଖେଇ ପାରୁ ନଥିବାରୁ ଦୁଃଖ ପ୍ରକାଶ କରିଥିଲେ। ବେଳେବେଳେ ବଳଦେବ ସାର୍‌ଙ୍କ କ୍ଲାସ୍‌ର କବାଟ ବନ୍ଦ ଥିଲେ ମୁଁ ଫେରିଯାଏ, ଭାବେ ହୁଏତ ସିଏ କୌଣସି ସୃଜନ କର୍ମରେ ବ୍ୟସ୍ତ ଥିବେ। ଏହି କଥାକୁ ଆଳ କରି ବଳଦେବଙ୍କ କିଛି ସହକର୍ମୀ ବନେଇ ଚୁନେଇ, ହୁଏତ ଅତିରଞ୍ଜିତ କରି ଅଭିଯୋଗମାନ ଆଣନ୍ତି। କହିଥାନ୍ତି ସାର୍ ଜନୈକା ଛାତ୍ରୀ କୋଳରେ ଶୋଇଥିବା ସେମାନେ ଦେଖିଛନ୍ତି ବା କିଏ ଜଣେ ଛାତ୍ରୀ ସାର୍‌ଙ୍କୁ ଘରୁ ଆଣିଥିବା ଜଳଖିଆ ଖୁଏଇ ଦେଉଥିବାର ସେ ଦେଖିଛନ୍ତି। ସତ କହିବାକୁ ଗଲେ ଏଭଳି କିଛି ଘଟଣା ମୋ ନଜରକୁ କେବେ ଆସିନାହିଁ। ଏସବୁ ଆକ୍ଷେପ ଓ ଅଭିଯୋଗରେ ଅଶାଳୀନତା ଓ ଉଚ୍ଛୃଙ୍ଖଳତାର ଲେଶ ମାତ୍ର ନଥିଲା। ବରଂ ଛାତ୍ରଛାତ୍ରୀ ମାନେ ଜଳଖିଆ ଖାଉଥିବା ଅବସ୍ଥାରେ ମୋତେ ଦେଖିଲେ ସ୍ନେହରେ ସମ୍ମାନରେ ଟିଫିନ୍ ବାଟିଟି ବଢ଼େଇ ଦେବେ। ଗୋଟେ ଅଧେ ନଖାଇଲେ ବାଧ କରିବେ, ମୁହଁ ଫୁଲେଇବେ, ଅଭିମାନ କରିବେ। ଅଧ୍ୟକ୍ଷ, ଅଧ୍ୟାପକ, ଛାତ୍ର ଓ ଛାତ୍ରୀଙ୍କ ମଧ୍ୟରେ ଅହଙ୍କାରର ପାଚେରୀ ନଥିଲା, ଆମେ ଗୋଟିଏ ବଡ଼ ପରିବାରର ସଦସ୍ୟ ଭଳି ଚଳୁଥିଲୁ। ବଳଦେବ ହୁଏତ ଏଭଳି ଏକ ବ୍ୟବସ୍ଥା ବା ପରମ୍ପରାର ଆବାହକ ଥିଲେ।

ଛୋଟ ବଡ଼ ଯେତେକ ବରାଦ କାମ କଲେଜ ଭାଗ୍ୟରେ ଜୁଟୁଥିଲା ସେଥିରୁ ଅଧିକରୁ ଅଧିକ କାମ ସଂପାଦନ କରିବା ପାଇଁ ବଳଦେବଙ୍କ ଉପରେ ନିର୍ଭର କରିବାକୁ ହେଉଥିଲା। ଚିତ୍ରକଳା ପାଠ କଲେଜର ସିଲାବସ୍ ମଧ୍ୟରେ ସୀମିତ ହେଇଗଲେ ଶିଳ୍ପୀର ବିକାଶ ଘଟେନାହିଁ। ବଳଦେବ ମହାରଥୀଙ୍କ ଭଳି ଆମେ ଯେତେସବୁ ଖଲ୍ଲିକୋଟ ଆର୍ଟ୍ କଲେଜରେ ପାଠ ପଢ଼ିଥିବା ପିଲା, ଚିତ୍ରକଳା ପରିପ୍ରେକ୍ଷୀରେ ଘୋଡ଼ା ଚଢ଼ାଠୁ ଆମକୁ ଘାସ କାଟିବା ପର୍ଯ୍ୟନ୍ତ ସବୁକଥା ଜଣା। ଏତେ ସବୁ କାମ ତାଙ୍କୁ ହିଁ କରିବାକୁ ପଡୁଛି ବୋଲି ବଳଦେବଙ୍କ ମନରେ ଶୈଳ୍ପିକ ଅଭିମାନଟିଏ ଥାଏ, ଆଉ ବେଳେବେଳେ ମୋ ଉପରେ ସିଏ ବିରକ୍ତ ମଧ୍ୟ ହୁଅନ୍ତି, ଅବଶ୍ୟ ସବୁକଥା ମନେମନେ। ମୁହଁ ଖୋଲି ସେ ମୋତେ ଏ ବାବଦରେ କେବେ କଥା ପଦେ କହି ନାହାନ୍ତି। ମୁଁ ଭଲଭାବେ ହୃଦୟଙ୍ଗମ କରିଥାଏ ଯେ ବି.କେ. କଲେଜ ଉପରେ ବହୁ ହାକିମ, ବନ୍ଧୁ ଓ ଅଭିଭାବକଙ୍କର ମଧ୍ୟ ଆଶା ଭରସା। ମୁଁ କୌଣସି ଅନୁରୋଧକୁ ମନା କରପାରେନି । ପୂରଣ କରିବା ପାଇଁ ପ୍ରାଣପଣେ ଚେଷ୍ଟା କରେ। ଏହା ମୋ ଦୁର୍ବଳତା

Digitized by srujanika@gmail.com

ହୋଇପାରେ । ଏହି ସବୁ ଅନୁରୋଧ ଏବେ କଲେଜ ଅଧକ୍ଷଙ୍କ ପାଖରେ ପହଞ୍ଚିଲେ ଅତ୍ୟନ୍ତ ସ୍ୱାଭାବିକ ଭାବେ ସହକର୍ମୀ ଅଧାପକମାନଙ୍କ ଉପରେ ସ୍ନେହାନୁବନ୍ଧନର ଚାପା ପଡ଼େ । ବଳଦେବଙ୍କ ଭାଗ ସବୁବେଳେ ଭାରି ହୋଇଯାଏ । କଲେଜର ସୁନାମ ହେଲେ ଅଧକ୍ଷ, ଅଧାପକ ଓ ଛାତ୍ରଛାତ୍ରୀ ଗର୍ବରେ ଫୁଲି ଉଠନ୍ତି । ବଳଦେବ ସେଥିରୁ ଆଉ କ'ଣ ବାଦ୍ ପଡ଼ନ୍ତେ ?

ସବୁ ବରାଦକାମ ଯେ ମୁଫତକାମ ତାହା ବିଚାରିବା ଭୁଲ ହେବ । ହୁଏତ ଷାଠିଏ ପ୍ରତିଶତ କାମର ପାରିଶ୍ରମିକ ସଠିକ୍ ଭାବେ ମିଳେନାହିଁ, କିନ୍ତୁ ଅନ୍ତତଃ ଚାଳିଶି ପ୍ରତିଶତ କାମ ଅର୍ଥକର ହୋଇଥାଏ । 'ଅର୍ଥକର' ମାନେ ହାତୀ ଘୋଡ଼ା ପ୍ରାପ୍ତି ନୁହେଁ, ଶିଳ୍ପୀର ଭାଗ୍ୟରେ କେବେ ବି ଜୁଆର ଆସେନି ଏକଥା ଅନୁଭବୀ ହିଁ ଜାଣେ । ଏବେ ବି ବଳଦେବ ଶିଳ୍ପୀ ଭାବେ ଯାହା ଲକ୍ଷ ଲକ୍ଷ ଟଙ୍କା ପାରିତୋଷିକ ପାଉଛନ୍ତି, ତାହାବି ତାଙ୍କ ଶିଳ୍ପୀ ମନକୁ ପାଉ ନଥିବ କାରଣ ତାଙ୍କ ଛାତ୍ର ଜଗନ୍ନାଥ ପଣ୍ଡାଙ୍କ ଗୋଟିଏ ସ୍କେଚ୍ ପାଞ୍ଚଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱରେ ବିକ୍ରୀ ହେଲାଣି । ବଳଦେବ ଓଡ଼ିଶାର ଜଣେ ଅଦ୍ୱିତୀୟ ପ୍ରଚ୍ଛଦଚିତ୍ର ଓ ବହି ଅଳଙ୍କରଣ ଶିଳ୍ପୀ । ଦୁଇ ତିନି ବର୍ଷ ତଳେ ଅସିତ ମୁଖାର୍ଜୀଙ୍କ ମୃତ୍ୟୁ ପରେ ମୋର ଏହି ଉଚ୍ଚାରଣର ଯଥେଷ୍ଟ ଗୁରୁତ୍ୱ ବଢ଼ିଯାଇଛି । ବଳଦେବଙ୍କ ସାଙ୍ଗକୁ ଅସିତ ମୁଖାର୍ଜୀ ପରମ୍ପରାରେ ବଳଦେବଙ୍କ ଛାତ୍ର ରଣଜିତ ପରିଜା, ମାନସ ରଂଜନ ଜେନା ପ୍ରଭୃତି ମୁଣ୍ଡଟେକି ଉଠିଲେଣି । ଏବେ ତ କମ୍ପ୍ୟୁଟର୍ ଶୈଳ୍ପିକ ଗୁଣବତ୍ତାକୁ ତିଳେ ତିଳେ ହତ୍ୟାକରି ସାରିଲାଣି । ଏଣୁ କିଏ ଜଣେ ଭଲ ଶିଳ୍ପୀକୁ କମ୍ପ୍ୟୁଟର୍ ସହିତ ତୁଳନା କରିବାକୁ କୁଣ୍ଠାବୋଧ ହେଉଛି । ଏବେ ବଳଦେବ ବି ନିଜକୁ କମ୍ପ୍ୟୁଟର୍ କହିବା ସମ୍ମାନଜନକ ମଣିବେନି । ଶିଳ୍ପୀ କମ୍ପ୍ୟୁଟର୍ ଅପେକ୍ଷା ବହୁଗୁଣରେ ବଡ଼, ବିଶେଷତଃ ସୃଜନଶୀଳତାରେ ଜଣେ ଶିଳ୍ପୀର ପଟାନ୍ତର ନାହିଁ । କମ୍ପ୍ୟୁଟରକୁ ଯାହା କହିଲେ ସେ କରେ କିନ୍ତୁ ସେ ନିଜେ ଶିଳ୍ପୀର ସ୍ଥାନ ପୂରଣ କରି ପାରେନା । କମ୍ପ୍ୟୁଟରକୁ ନେଇ ଯେତେ ସବୁ କଥା କୁହାଯାଉଛି, କିଛି ବର୍ଷ ତଳେ ଟାଇପ୍ ରାଇଟରକୁ ନେଇ, ଏଭଳିକି ଡଟ୍ କଲମକୁ ନେଇ ଢେର ଅଧିକେ ସେଭଳି କଥା କୁହାଯାଉଥିଲା ।

ବଳଦେବଙ୍କ ପିଲାଙ୍କୁ ଶିଖେଇବା ପ୍ରଣାଳୀ ନେଇ ମୋର ଶତ ପ୍ରତିଶତ ସହମତି ନଥିଲା । ଯେଉଁ ଶିଳ୍ପୀ-ଶିକ୍ଷକମାନେ ନିଜ ସାମର୍ଥ୍ୟକୁ ନେଇ ସଚେତନ ଥାଆନ୍ତି, ସେମାନେ ପିଲାଙ୍କୁ ମାର୍ଗ ଶିଖେଇବା ପରିବର୍ତ୍ତେ ଚିତ୍ରଟିକୁ ନିଜେ ଆଙ୍କି ବସନ୍ତି । ଫଳରେ ଚିତ୍ରଟି ତ ଚମତ୍କାର ଭାବେ ଉତୁରି ପଡ଼େ କିନ୍ତୁ ପିଲାଙ୍କ ନକଲ କରିବାର ପ୍ରବୃତ୍ତି ବଢ଼େ ଓ ଧୀରେ ଧୀରେ ସେମାନେ ଶିକ୍ଷକଙ୍କ ଉପରେ ନିର୍ଭରଶୀଳ ହୋଇଥାଆନ୍ତି । ଆମ କଲେଜର କଳା ଓ କବିତା ବହିର ଅଳଙ୍କରଣରେ ମୁଁ ଏକଥା ଅନୁଭବ କରିଛି । ଅନେକଥର ବଳଦେବଙ୍କୁ କଳା ଓ କବିତା ବହି ଅଳଙ୍କରଣର ଦାୟିତ୍ୱ ଦିଆଯାଇଛି । ପରିଶେଷରେ ଦେଖାଯାଇଛି

Digitized by srujanika@gmail.com

କବିତା ପାଇଁ କେବଳ ଛବି ନୁହେଁ, ସମଗ୍ର କବିତା ବହିଟିକୁ ନିଜର ସୁନ୍ଦର ହାତ ଅକ୍ଷରରେ ବଳଦେବ ଲେଖି ଦେଇଛନ୍ତି । ଫଳରେ ପ୍ରକାଶନଟି ଖୁବ୍ ରୁଚିପୂର୍ଣ୍ଣ ହୋଇପାରିଛି । କିନ୍ତୁ ପ୍ରତିପୃଷ୍ଠାରେ ବଳଦେବଙ୍କ ଶୈଳ୍ପିକ ସ୍ୱାକ୍ଷର ବିଭାଗୀୟ ସାମୂହିକ ନିର୍ଯ୍ୟାସଠାରୁ ବହିଟିକୁ ଦୂରେଇ ଦେଇଛି । ମୁଁ ଥରେ ଅଧେ ଏହି ଅଭାବନୀୟ ଦିଗପ୍ରତି ବଳଦେବଙ୍କ ଦୃଷ୍ଟି ଆକର୍ଷଣ କରିଛି, ହୁଏତ ସେ ମୋ ମତାମତକୁ ସହୃଦୟତାର ସହିତ ଗ୍ରହଣ କରିପାରି ନାହାନ୍ତି ।

ବଳଦେବ ରେଖାଙ୍କନରେ କେବଳ ସିଦ୍ଧହସ୍ତ ନଥିଲେ ଅକ୍ଷର ଲେଖିବାରେ ତାଙ୍କ ପାରଦର୍ଶିତା ଥିଲା । ମନେହୁଏ ତାଙ୍କରି ଲେଖନ ଶୈଳୀରେ ଅସିତ ମୁଖାର୍ଜୀଙ୍କ ପ୍ରଭାବ ପରିସ୍ଫୁଟ ହୋଇଯାଉଥିଲା । କଲେଜରେ ଆମେ ପିଲାଙ୍କୁ ଅକ୍ଷର ଢ଼ଙ୍ଗ ବା କ୍ୟାଲିଗ୍ରାଫି ଶିକ୍ଷା ଦେଉଥିଲୁ । କମ୍ପ୍ୟୁଟରର କୁପ୍ରଭାବରୁ ଏବେ ଏହି ବିଦ୍ୟାଟି ନିରସିଆ ହୋଇଗଲାଣି । ସୁବାସ ପାଣି ସଂସ୍କୃତି ବିଭାଗରୁ ବଦଳି ହେଲାପରେ ଓକାକ୍ (ଓଡ଼ିଶା କମ୍ପ୍ୟୁଟର୍ ଆପ୍ଲିକେସନ୍ ସେଣ୍ଟର୍) ର ଅଧ୍ୟକ୍ଷ ଦାୟିତ୍ୱରେ ରହିଲେ । ସେବେଳକୁ କମ୍ପ୍ୟୁଟରରେ ଶ୍ରୀଲିପି ଅକ୍ଷରର ପ୍ରଚଳନ ଥିଲା । ପୁନାର ଭାଷା ବିଜ୍ଞାନ କେନ୍ଦ୍ରର ସାହାଯ୍ୟ ନେଇ ସେ କମ୍ପ୍ୟୁଟରକୁ ସୁହାଇଲା ଭଳି ଓଡ଼ିଆ ଅକ୍ଷରର ଡ଼ିଜାଇନ୍ ନିର୍ମାଣ ପାଇଁ ବଳଦେବଙ୍କୁ ପୁନା ଯିବାକୁ ହୋଇଥିଲା । ଓଡ଼ିଆ ଅକ୍ଷର ନିର୍ମାଣରେ ବି ଆମ କଲେଜର ଯୋଗଦାନ ଥିଲା ଏକଥା ଏବେ ଭାବିଲେ ଖୁସି ଲାଗେ ।

ସୂଚନା ଓ ଲୋକସଂପର୍କ ବିଭାଗ ସହିତ ମୌଖିକ ଚୁକ୍ତି ଅନୁସାରେ ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁର ପ୍ରଚ୍ଛଦ ଓ ଅଳଙ୍କରଣ କରିବା ପାଇଁ କଲେଜ ପକ୍ଷରୁ କିଛି ବାରଣ ନଥିଲା । ଏହି କାର୍ଯ୍ୟ ପାଇଁ ସେ ମଧ୍ୟ ପାରିଶ୍ରମିକ ଗ୍ରହଣ କରୁଥିଲେ । ଦିଲ୍ଲୀର ଆନ୍ତର୍ଜାତିକ ପ୍ରଦର୍ଶନୀ ମଞ୍ଚ (ଟ୍ରେଡ୍ ଫେୟାର୍ ଅଥରିଟି ଅଫ୍ ଇଣ୍ଡିଆ) ରେ ଓଡ଼ିଶା ମଣ୍ଡପ ନିର୍ମାଣ ପାଇଁ କଲେଜ ବଳଦେବ ମହାରଥାଙ୍କ ଉପରେ ଅଧିକ ଦାୟିତ୍ୱ ନ୍ୟସ୍ତ କରୁଥିଲା । ସେ ତାଙ୍କ ବିଭାଗ ତଥା ଅନ୍ୟ ବିଭାଗର ଛାତ୍ରଛାତ୍ରୀଙ୍କୁ ନେଇ ଦିଲ୍ଲୀ ଯାଇ ସେଠି ଓଡ଼ିଶା ମଣ୍ଡପର ନିର୍ମାଣ ସହିତ ନୂଆ ନୂଆ ଅନୁଭବ ନେଇ ଫେରୁଥିଲେ । ଏସବୁ ବିଭିନ୍ନ ପ୍ରକାର ଶିଳ୍ପ ପ୍ରକଳ୍ପର ଦାୟିତ୍ୱ ମୁଣ୍ଡାଉ ଥିବାରୁ କଲେଜରେ ନିଜ ଛାତ୍ରଛାତ୍ରୀ ତଥା ସହକର୍ମୀଙ୍କ ପାଖରେ ବଳଦେବଙ୍କ ଯଥେଷ୍ଟ ଖାତିରି ଥିଲା ଓ ସମ୍ମାନବୋଧ ଥିଲା । ଏବେ ଓଡ଼ିଶା ମଣ୍ଡପ ବା ଓଡ଼ିଶାର ପ୍ରଜ୍ଞାପନ ମେଢ଼ରେ କଲେଜର ନାଁ ହୁଏତ ରହୁଛି । ଆଶ୍ଚର୍ଯ୍ୟର କଥା ବଳଦେବ କଲେଜର ଅଧ୍ୟକ୍ଷ ଦାୟିତ୍ୱରେ ଥିଲେ ମଧ୍ୟ ଜଣେ କନିଷ୍ଠ ଅଧ୍ୟାପକ ଭିଜୁଏଲାଇଜର୍ ଭାବେ ନିଯୁକ୍ତି ପାଉଛନ୍ତି । ପୁଣି ଶୁଣାଯାଉଛି କିଛି ଅଧ୍ୟାପକ ଏହାକୁ ବ୍ୟକ୍ତିଗତ ବ୍ୟବସାୟ ସ୍ତରକୁ ନେଇ ସାରିଲେଣି । କଲେଜ ଅଧ୍ୟକ୍ଷ ବଳଦେବ ମହାରଥାଙ୍କ ମନୋଭାବ କ'ଣ ତାହା ଜାଣିବାର ଆଉ ଉପାୟ ନାହିଁ ।

Digitized by srujanika@gmail.com

ଠିକ୍ ସମୟରେ କଲେଜକୁ ନ ଆସିବା ବଳଦେବଙ୍କ ସବୁଠାରୁ ବଡ଼ଦୋଷ । କଲେଜରେ ନିୟମିତ ହେବା ଉପରେ ମୁଁ ବେଶି ଗୁରୁତ୍ୱ ଦେଉଥିଲି । ଏବଂ ଅଧିକାଂଶ ସମୟରେ ବଳଦେବ ସେଇ କଥାଟିକୁ ଅବହେଳା କରୁଥିଲେ । ବେଳେବେଳେ ଦଶଟା ପନ୍ଦର ଯାଏଁ ମୁଁ ଅଧ୍ୟାପକ ମାନଙ୍କ ଆସିବାକୁ ଅପେକ୍ଷା କରେ ତା'ପରେ କଲେଜର ଫାଟକ ବନ୍ଦ କରି ଦେଇ ସେଇଠି କିଛି ସମୟ ଠିଆ ହେଇ ରହେ । ମୋର ମନେପଡୁଛି ଥରେ ଅଧେ ବଳଦେବଙ୍କୁ ମୁଁ କଲେଜ ଫାଟକ ପାଖରୁ ଫେରେଇ ଦେଇଛି ଓ ସେ ସେଦିନ ଛୁଟି ଦରଖାସ୍ତ ଦେଇ ଘର ଫେରିଛନ୍ତି । କଲେଜର ଅଧ୍ୟକ୍ଷ ଭାବେ ନୁହେଁ ବନ୍ଧୁ ଭାବେ ଦେଶ ବିଦେଶରୁ ତାଙ୍କ ନିକଟକୁ ଚିଠି ଲେଖି ସମୟାନୁବର୍ତ୍ତୀ ହେବା ପାଇଁ ପରାମର୍ଶ ଦେଇଛି ।

ଭାରତବର୍ଷର ଅଧିକାଂଶ ପ୍ରତିଷ୍ଠିତ କଳା ମହାବିଦ୍ୟାଳୟ ମାନଙ୍କରେ କିଛି ଅଧ୍ୟାପକ ଥାଆନ୍ତି ଯେଉଁମାନେ କଲେଜକୁ ଠିକ୍ ସମୟରେ ଆସନ୍ତି ନାହିଁ । ଫଳରେ କଲେଜରେ ବିଶୃଙ୍ଖଳା ଦେଖାଦିଏ । ସାଧାରଣ କଲେଜର ପାଠପଢ଼ା ଓ କଳା ମହାବିଦ୍ୟାଳୟର ପାଠପଢ଼ା ଶୈଳୀରେ ଆକାଶ ପାତାଳ ଫରକ । ସାଧାରଣ କଲେଜଭଳି ଏଠି ପିରିଏଡ଼ର ବ୍ୟବସ୍ଥା ନାହିଁ । କଳା ମହାବିଦ୍ୟାଳୟରେ ଜଣେ ଅଧ୍ୟାପକ ସକାଳୁ ସଂଧ୍ୟାଯାଏଁ ପିଲାଙ୍କ ସହିତ ରଂଜଘସ ହେବାକୁ ହୁଏ । ନିର୍ଦ୍ଦିଷ୍ଟ ସମୟନିର୍ଘଣ୍ଟର କୌଣସି ଠିକଣା ନଥାଏ । ଏସବୁ ସ୍ୱତନ୍ତ୍ର ଆବଶ୍ୟକତା ପ୍ରତି ସଚେତନ ଥାଇ ମଧ୍ୟ ମୁଁ ଚାହୁଁଥିଲି କଲେଜ ଠିକ୍ ସମୟରେ ଆରମ୍ଭ ହେଉ ଏବଂ ଅଧ୍ୟାପକମାନେ ଠିକ୍ ସମୟରେ କଲେଜକୁ ଆସନ୍ତୁ ।

ବରୋଦା ବିଶ୍ୱବିଦ୍ୟାଳୟ ଅଧିନରେ ଥିବା କଳା ମହାବିଦ୍ୟାଳୟକୁ ଉଚ୍ଛୃଙ୍ଖଳତାରୁ ମୁକ୍ତି ଦେବା ପାଇଁ ବିଶିଷ୍ଟ ଭାସ୍କର ଧ୍ରୁବ ମିସ୍ତ୍ରୀଙ୍କୁ ବିଭାଗୀୟ ଡ଼ିନ୍ କରି ଅଣାଗଲା । ଧ୍ରୁବ ମିସ୍ତ୍ରୀ ଜଣେ ଆନ୍ତର୍ଜାତୀୟ ଖ୍ୟାତି ସଂପନ୍ନ ଭାସ୍କର ଓ ଲଣ୍ଡନରେ ବହୁବର୍ଷ ଧରି ବ୍ୟକ୍ତିଗତ ଭାବେ ମଧ୍ୟ କଳାଭ୍ୟାସ କରୁଥିଲେ ଓ ବ୍ରିଟିଶ ସରକାର ତାଙ୍କୁ ତାଙ୍କ ଦେଶର ପ୍ରତିନିଧିସ୍ତରୀୟ ଭାସ୍କର୍ଯ୍ୟ ଭାବେ ମଧ୍ୟ ସ୍ୱୀକାର କରିସାରିଥିଲେ । ସେ କିନ୍ତୁ ଡ଼ିନ୍ ଭାବେ ଯୋଗଦେଲାପରେ ସମୟାନୁବର୍ତ୍ତିତା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଲେ । ପ୍ରଥମେ ପ୍ରଥମେ ଅଧ୍ୟାପକ ମାନେ ଏଭଳି ବ୍ୟବସ୍ଥାକୁ ସ୍ୱୀକାର କଲେ, ଦୁଇ ଚାରି ବର୍ଷ ପରେ କିନ୍ତୁ ପ୍ରତିବାଦର ସ୍ୱର ତୀବ୍ର ହେଲା ଓ ଧ୍ରୁବମିସ୍ତ୍ରୀ ଡ଼ିନ୍ ପଦରୁ ଇସ୍ତଫା ଦେଲେ ।

ଥରେ ବେତାଳିଆ ହେଇଗଲେ, କଳା ମହାବିଦ୍ୟାଳୟମାନଙ୍କୁ ସମ୍ଭାଳିବା ମୁସ୍କିଲ । ମୁଁ ଶୁଣୁଛି ଏବେ ବି.କେ. କଲେଜର ଅବସ୍ଥା ଅନୁରୂପ ହୋଇଛି । ଭାବୁଛି ବଳଦେବଙ୍କୁ ସମୟାନୁବର୍ତ୍ତୀ ହେବା ପାଇଁ ପରାମର୍ଶ ଦେଇ, ତାଗିଦା ଦେଇ ମୁଁ ଯଥେଷ୍ଟ ଭୁଲ କରିଥିଲି । ତାହା ଅବଶ୍ୟ ଭିନ୍ନ ସମୟ ଥିଲା ।

Digitized by srujanika@gmail.com

# ୩୦. କଲେଜର ବନ୍ଧୁ ଚନ୍ଦ୍ରଶେଖର

ଚନ୍ଦ୍ରଶେଖର ରାଓ ଆମ କଲେଜରେ ଚିତ୍ର ବିଭାଗରେ ଅଧ୍ୟାପକ ଭାବେ ଯୋଗଦେଇ ନ ପାରିବାରୁ ତାଙ୍କ ମନଭିତରେ କ୍ଷୋଭ ଥିଲା । କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନେ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଅବଶ୍ୟ ସେତିକି ଆଶ୍ୱାସନା ତାଙ୍କ ପାଇଁ ଯଥେଷ୍ଟ ନଥିଲା । ସେ ହସ୍ତଶିଳ୍ପ ତାଲିମ୍ କେନ୍ଦ୍ରରେ ପିଲାଙ୍କୁ ଶିକ୍ଷା ଦେଉଥିଲେ, କିନ୍ତୁ ତାଙ୍କ ମନର କୌଣସି ଗୋଟିଏ ନିଭୃତ କୋଣରେ ଆର୍ଟ୍ ଓ କ୍ରାଫ୍‌ଟ୍‌କୁ ନେଇ ବିବାଦଟିଏ ଛପିରହିଥିଲା । ସେ ସ୍ୱୀକାର କରୁଥିଲେ କ୍ରାଫ୍‌ଟ୍ ଅପେକ୍ଷା ଆର୍ଟ୍‌ର କଦର ବେଶି । କ୍ରାଫ୍‌ଟ୍ ଘୋଷାପାଠ ଭଳି । ସେଥିରେ ସୃଜନର ମହତ୍ୱ କମ୍ । ଥରେ ଚନ୍ଦ୍ରଶେଖର ଓ ମୁଁ ଖଲ୍ଲିକୋଟ ଚାରୁକଳା ବିଦ୍ୟାଳୟର ଭାରତୀୟ ଚିତ୍ରକଳା ବିଭାଗରେ ଅଧ୍ୟାପକ ପଦବୀ ପାଇଁ ସାକ୍ଷାତକାର ଦେଇ ମଧ୍ୟ କୃତକାର୍ଯ୍ୟ ହେଇପାରି ନଥିଲୁ । ମୁଁ ଅନୁମାନ କରିପାରୁଛି, ଚନ୍ଦ୍ରଶେଖର ଭାରତୀୟ ଚିତ୍ରକଳା ବିଭାଗ ପାଇଁ ଅତ୍ୟନ୍ତ ଯୋଗ୍ୟ ହୋଇଥାଆନ୍ତେ ଏବଂ ସେ ଖଲ୍ଲିକୋଟରେ ଗଡ୍ଡାଳିକା ପ୍ରଭାବରେ ଗଢ଼ିଆସୁଥିବା ଶାନ୍ତିନିକେତନ ଚିତ୍ରଣ ପଦ୍ଧତିକୁ ବଦଳେଇ ଅନ୍ୟ ଗୋଟିଏ ନୂତନ ଶୈଳୀର ପ୍ରଚଳନ କରିପାରିଥାନ୍ତେ । ଚନ୍ଦ୍ରଶେଖରଙ୍କ ଶୈଳୀରେ ଦାକ୍ଷିଣାତ୍ୟ ଲେପାକ୍ଷୀ ମନ୍ଦିରର ଭିତ୍ତିଚିତ୍ରର ଛାପ ପରିଦୃଶ୍ୟ ହୁଏ । ଏହା ପୁଣି କାଳୀଘାଟ ତଥା ବିଶିଷ୍ଟ ଚିତ୍ରକର ଜାମିନୀ ରାୟଙ୍କ ସରଳରେଖା ତଥା ଓଡ଼ିଶୀ ପଟଚିତ୍ରର ଉଜ୍ଜ୍ୱଳବର୍ଣ୍ଣ ଓ ଭଙ୍ଗିମା ଦ୍ୱାରା ମଧ୍ୟ ପ୍ରଭାବିତ । ଜୀବନର ପ୍ରଥମ ଭାଗରେ ସେ ଶାନ୍ତିନିକେତନ ପଦ୍ଧତି ଅନୁସରଣ କରୁଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆଧୁନିକତାର ସଂସ୍ପର୍ଶରେ ଆସି ନିଜ ଶୈଳୀର ପରିବର୍ତ୍ତନ କରିପାରିଥିଲେ । ସେ ମୁଖ୍ୟତଃ ସିଲ୍‌କ୍ ଓ ମଠା କନା ଉପରେ ଜଳରଙ୍ଗକୁ ସ୍ୱାଭାବିକ ଢଙ୍ଗରେ ଭୂମି ଉପରେ ସଂପ୍ରସାରିତ କରି ଛନ୍ଦୋବଦ୍ଧ ରେଖାଦ୍ୱାରା ବନକ କରୁଥିଲେ । ଓଡ଼ିଶାରେ ପ୍ରଚଳିତ ତଥାକଥିତ ଶାନ୍ତିନିକେତନ ଶୈଳୀ ଅପେକ୍ଷା ତାଙ୍କ ଚିତ୍ରଧାରା ଅଧିକ ବଳିଷ୍ଠ ଓ ରୋଚକ ଥିଲା ।

ତାଙ୍କ ଚିତ୍ର ମଧ୍ୟ ବମ୍ବେ ଓ କଲିକତାରେ ପ୍ରଦର୍ଶନୀମାନଙ୍କରେ ସେବେଳରେ ଯଥେଷ୍ଟ ବିକ୍ରି ହେଉଥିଲା ଓ କଲେଜର କିଛି ଛାତ୍ର ତାଙ୍କର ଅଙ୍କନଶୈଳୀ ପ୍ରତି ଆକୃଷ୍ଟ ହେଉଥିଲେ । ଏଣୁ ସେ ମନେମନେ ବିଚାରୁଥିଲେ ଯେ କଲେଜରେ ଚାକିରି କରୁଥିବା ଅଧିକାଂଶ

Digitized by srujanika@gmail.com

ଶିଳ୍ପୀଙ୍କ ଅପେକ୍ଷା ସେ ଭଲ ଶିଳ୍ପୀ । ଅଧ୍ୟାପକ ଡି.ଏନ୍.ରାଓଙ୍କୁ କେନ୍ଦ୍ରକରି ଏଭଳି ଚିନ୍ତା ଉଗ୍ରରୂପ ଧାରଣ କରିଥିଲା । ଡି.ଏନ୍.ରାଓ ପଟଚିତ୍ର ଓ ପାରମ୍ପରିକ ଚିତ୍ରର କେତେକ ଗହନ ପଦ୍ଧତିକୁ ଆୟତ୍ତ କରିବା ପାଇଁ ଚନ୍ଦ୍ରଶେଖରଙ୍କୁ ବଡ଼ଭାଇ ବୋଲି କେବଳ ସମ୍ବୋଧନ କରୁନଥିଲେ ବଡ଼ଭାଇର ମର୍ଯ୍ୟାଦା ମଧ୍ୟ ଦେଉଥିଲେ । (ବହୁବର୍ଷ ପରେ ଚନ୍ଦ୍ରଶେଖରଙ୍କ ବିୟୋଗରେ ଡି.ଏନ୍.ରାଓ ଦାଢ଼ି ପୁଳାଏ ବଢ଼ାଇ ଘୂରାଫେରା କଲାରୁ ଅନ୍ୟମାନେ ଧରିନେଲେ ଯେ ପେଦାନ୍ନା (ବଡ଼ଭାଇ)ଙ୍କ ମୃତ୍ୟୁରେ ଶୋକ ପ୍ରକାଶର ଏହା ଏକ ତରିକା) । ଏଣୁ ଚନ୍ଦ୍ରଶେଖର ଜଣେ ଉତ୍କୃଷ୍ଟ ଧରଣର ଶିଳ୍ପୀ ହେଇ ମଧ୍ୟ କଲେଜର ଅଧ୍ୟାପକ ହେଇ ନପାରିବା ତାଙ୍କ ପାଇଁ ବିଡ଼ମ୍ବନା ଥିଲା ।

କଲେଜ ପରିସର ବାହାରେ ଆମର ଗୋଟିଏ ଶିଳ୍ପୀଗୋଷ୍ଠୀ ଥିଲା । ତାହାର ନାଁ ଥିଲା ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟ୍ସ୍ ଆସୋସିଏସନ୍ ବା 'ଓ୍ୱା' । ଡି.ଏନ୍.ରାଓ ଏହି ସଂସ୍ଥାର ପ୍ରତିଷ୍ଠାତା ସଭ୍ୟ ଥିଲେ । ଅଧ୍ୟାପକ ଅନନ୍ତ ପଣ୍ଡା ଆରମ୍ଭରୁ ଏହାର ସଭାପତି ଓ ମୁଁ ସଂପାଦକ ଥିଲି । ଅଧ୍ୟାପକ ଅନନ୍ତ ପଣ୍ଡାଙ୍କ ଅନିୟମିତତା ଯୋଗୁଁ ମୁଁ କିଛିଦିନ 'ଓ୍ୱାର' ସଭାପତି ରହିଲି ଓ ଡି.ଏନ୍.ରାଓ ସଂପାଦକ ରହିଲେ । ଡି.ଏନ୍.ରାଓ ଅଧ୍ୟାପକ ଦାୟିତ୍ୱ ନେଲାପରେ ମୋତେ ଲାଗିଲା ସେ ବହୁତ କିଛି ସୁବିଧା ସୁଯୋଗ ପାଇଲେଣି ଏବଂ ଯେହେତୁ ସେଇଠି କେଉଁଠି ଚନ୍ଦ୍ରଶେଖରଙ୍କ ଅଭିମାନଟିଏ ଦାନା ବାନ୍ଧୁଛି ମୁଁ ସଭାପତି ପଦରୁ ନିଜକୁ ଅନ୍ତର କରିଦେଇ ଚନ୍ଦ୍ରଶେଖର ସଭାପତି ହୁଅନ୍ତୁ ବୋଲି ଚାହିଁଲି, ତାହେଲେ ସିଏ ମାନସିକ ସ୍ତରରେ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ ଠାରୁ ଊର୍ଦ୍ଧ୍ୱରେ ରହିବେ । ଚନ୍ଦ୍ରଶେଖର ମୋ ପ୍ରସ୍ତାବ ଗ୍ରହଣ କଲେ ।

ଏତେ ସବୁ ମାନସିକ ଦ୍ୱନ୍ଦ୍ୱ ସତ୍ତ୍ୱେ ଚନ୍ଦ୍ରଶେଖର ଭଲରେ ମନ୍ଦରେ ଆମ କଲେଜକୁ ବରାବର ଆସୁଥିଲେ । କଞ୍ଚନା ଛକରେ ଆମ କଲେଜ ପାଖାପାଖି ତାଙ୍କ ଅନୁଷ୍ଠାନ ମଧ୍ୟ ଥିଲା । ବେଳେବେଳେ ସମୟ ପାଇଲେ ଆମ କଲେଜର ଅଧ୍ୟାପକମାନେ ମଧ୍ୟ ତାଙ୍କ ଅନୁଷ୍ଠାନକୁ ମାଡ଼ି ଯାଉଥିଲେ । ତାଙ୍କ ଅନୁଷ୍ଠାନର ସୁପରିନ୍‌ଟେନ୍‌ଡେଣ୍ଟ ଗୋକୁଳି ବିହାରୀ ପଟ୍ଟନାୟକ ମୋର ଘନିଷ୍ଠ ବନ୍ଧୁ ଥିଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଗୋକୁଳି ବିହାରୀ ଓ ଚନ୍ଦ୍ରଶେଖରଙ୍କ କନ୍ୟାମାନେ ଆମ କଲେଜରେ ଅଧ୍ୟୟନ କରୁଥିଲେ; ଏଣୁ ବେଳେବେଳେ ବନ୍ଧୁଭାବେ, ବେଳେବେଳେ ଅଭିଭାବକ ଭାବେ ଚନ୍ଦ୍ରଶେଖରଙ୍କ ସହିତ କଲେଜର ସଂପର୍କ ଅତୁଟ ରହୁଥିଲା ।

ଚିତ୍ରକଳା ମହାବିଦ୍ୟାଳୟମାନଙ୍କରେ ପ୍ରେମର ଆବାହନ ସଦାକାଳେ ସଘନ । ଏହା ଓଡ଼ିଶା କି ଭାରତବର୍ଷ ନୁହେଁ, ପୃଥିବୀର ସବୁ ମହାବିଦ୍ୟାଳୟରେ ମୋଟା ମୋଟି ଏକାକଥା । ବୟସର ପ୍ରଭାବକୁ କିଭଳି ବାଦ ଦେଇ ହେବ ! ଏହାର ଅନ୍ୟତମ କାରଣ

Digitized by srujanika@gmail.com

ହେଲା ଶିକ୍ଷାକାର୍ଯ୍ୟକ୍ରମରେ ଦେହକୁ ନେଇ ସଚେତନତା । ଏଣୁ ଆମ ବନ୍ଧୁମାନଙ୍କ କନ୍ୟାମାନେ ଏ ପ୍ରଭାବରୁ କିଭଳି ମୁକ୍ତି ପାଇ ପାରନ୍ତେ । ତାଙ୍କ କନ୍ୟାକୁ ନେଇ ଚନ୍ଦ୍ରଶେଖର ବିବ୍ରତ ହେଉଥିଲେ । ଏହା ମଧ୍ୟବିତ୍ତଶ୍ରେଣୀୟ ମାନସିକତା । କେବଳ ତାଙ୍କର କନ୍ୟା ନୁହଁନ୍ତି ଅନ୍ୟାନ୍ୟ ବହୁ ବନ୍ଧୁଙ୍କର କନ୍ୟାମାନେ ଆମର ଛାତ୍ରୀ ଥିଲେ । ଏଣୁ ବ୍ୟକ୍ତିଗତଭାବେ କାହାପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବା ଅଧ୍ୟକ୍ଷଙ୍କ ପକ୍ଷେ ସହଜ ନଥିଲା, ସମ୍ଭବ ବି ନଥିଲା ।

ଅଧ୍ୟାପକ ଡି.ଏନ୍.ରାଓ ଚନ୍ଦ୍ରଶେଖରଙ୍କ କନ୍ୟାର ସ୍ଥାନୀୟ ଗାର୍ଜନ ରହିଥିଲେ । ଅଧ୍ୟକ୍ଷଙ୍କ ଅପେକ୍ଷା ଅଧ୍ୟାପକଙ୍କ ପାଖରେ ବେଶି ଖବର ପହଞ୍ଚେ, ସେମାନେ ଖବର ରଖିଥାନ୍ତି କିଏ କାହାକୁ ଭଲପାଉଛି, କିଏ କାହାର ଘଣି । ଆଜିକାଲିର ପ୍ରେମ ପରିଭାଷାରେ କିଏ କାହାର ବୟ୍‌ଫ୍ରେଣ୍ଡ୍ ତ କିଏ କାହା ଗାର୍ଲ୍‌ଫ୍ରେଣ୍ଡ୍ । ପୁରୀର ଗୋଟିଏ ଛନଛନିଆ ଟୋକା ପ୍ରଦୋଶ ମିଶ୍ର ଚନ୍ଦ୍ରଶେଖରଙ୍କ ବଡ଼ଝିଅ ଗୀତା ସାଙ୍ଗରେ ସାଙ୍ଗ ହେଉଥାଏ । ଝିଅ ଘିଅ, ତରଳି କେଉଁ ଆଡ଼େ ବହିଯିବ ତା'ର ଠିକ୍ ଠିକଣା ନାହିଁ । ଗୀତା ଚିତ୍ରବିଭାଗର ଆଉ ପ୍ରଦୋଷ କଳାଇତିହାସ ବିଭାଗର । ସମୟ ପାଇଲେ ପ୍ରଦୋଷ ଟୁଙ୍ଗ୍‌କିନା ତିନିମହଲା ଉପରେ ଥିବା ଚିତ୍ର ବିଭାଗକୁ ଉଠିଯାଏ । ସେ ଦିହେଁ ଖୋଲାଛାତ ଉପରେ କେଉଁ କାନ୍ଥକଣକୁ ଆଉଜି କଥା ହୁଅନ୍ତି । ଚନ୍ଦ୍ରଶେଖର ରାଓ ଛାତ ଉପରକୁ ଉଠନ୍ତି କିନ୍ତୁ ସେମାନଙ୍କ ଟେର ପାଇ ପାରନ୍ତି ନାହିଁ । ପିଲାମାନଙ୍କୁ ପଚରଉଚରା କରି ପୁଣି ଫେରିଯାଆନ୍ତି । ଚନ୍ଦ୍ରଶେଖର ଥରେ ଛାତ ସାରା ଖୋଜିଲେ, ଆଶ୍ଚର୍ଯ୍ୟ ହେଲେ ଯେ ସେ ଦୁହିଁଙ୍କୁ ସେଇଠି କେଉଁଠି ଦେଖିଥିଲେ ଅଥଚ ସେମାନେ କୁଆଡ଼େ ଉଭେଯେ ଗଲେ । ଛାତ ଉପରେ ଉଦୁଉଦିଆ ଖରା । ପ୍ରେମିକ ଛାତର ପାଣିଟାଙ୍କି ଭିତରେ ଅଟର୍କିଆ ପଶି ଯାଇଛି ତ ପ୍ରେମିକା ଛାତର ତାକା ତଳକୁ ଖସିପଡ଼ି ଲୁଚି ପଡିଛି । କନ୍ୟାପିତା ଖୋଜି ଖୋଜି ନାକେଦମ । ମୁଁ ସେମାନଙ୍କ ମଧ୍ୟରେ ଗଢ଼ିଉଠୁଥିବା ପ୍ରେମ ଖବର ସଂପର୍କରେ ସଚେତନ ଥାଏ । କିନ୍ତୁ ପାଣି ଟାଙ୍କିରେ ପ୍ରେମିକ ପୁଙ୍ଗବ ଲୁଚିପଡ଼ିବା କଥା କଲେଜ ଛାଡ଼ିବାର ବହୁଦିନ ପରେ ସ୍ଥାନୀୟ ଗାର୍ଜନଙ୍କ ଠାରୁ ଶୁଣିଲି । ଥରେ ପ୍ରଦୋଷ ଓ ଗୀତା କଲେଜ ପରିଭ୍ରମଣ ଦଳରେ ସାମିଲ ହେଲେ । ଚନ୍ଦ୍ରଶେଖରଙ୍କ ଚିନ୍ତା ବଢ଼ିଲା । ସିଏ ବି ଦଳରେ ଆମ ସାଙ୍ଗରେ ଯିବାପାଇଁ ଚାହିଁଲେ । ଗଲେ ମଧ୍ୟ । ଆମ ମନରେ ଅବ୍ୟୟ ଥାଏ କାଳେ ପ୍ରଦୋଷ ଗୀତାକୁ ବାହାହେବାକୁ ମନା କରିଦେବ । ପୁଣି ସେଥିରେ ଜାତିଗତ ସମସ୍ୟା ଅଛି । ପୁଅଘର ଶାସନୀ ବ୍ରାହ୍ମଣକୁ ଝିଅଘର କାୟସ୍ଥ । ସେଥିରେ ପୁଣି ଓଡ଼ିଆ ତେଲୁଗୁ ବିଭେଦ । ନା, ଆମ ଗୀତା ଗୁଣବତୀ କନ୍ୟା, ସିଏ ଏମିତି କ'ଣ ଭେଳିକି କରିଦେଇଥିଲା ଯେ ପୁଅର ଆଉ ଚାରା ରହିଲା ନାହିଁ । ପଦ୍ମତୋଳା ବୋଲିଲେ ବିଷଧର ନାଗ ଯିମିତି ଦଣ୍ଡେ ଘଡ଼ିଏ ଖେଳେ, ତା'ପରେ ସାପୁଆ କେଳାର ପେଡ଼ି ଭିତରେ ମଳାବାନ୍ଧି ସୁନାପିଲାପରି ପଡ଼ିରହେ ସିମିତି ଘଟିଲା ।

Digitized by srujanika@gmail.com

ଚନ୍ଦ୍ରଶେଖରଙ୍କ ସବୁ ସନ୍ଦେହ ଦୂରହେଲା । ଗୀତା ଓ ପ୍ରଦୋଷ କଲେଜ ଦିନର ପ୍ରେମିକା ଓ ପ୍ରେମିକ ପ୍ରେମର ଅତୁଟ ବନ୍ଧନରେ ଆବଦ୍ଧ ହେଇ ସ୍ତ୍ରୀ ସ୍ୱାମୀ ହେଲେ । ପରିବାର ଗଢ଼ିଲେ ।

'ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ'ର ବରାଦି କାମ ଗୀତା ଓ ପ୍ରଦୋଷକୁ ଆହୁରି ନିକଟତର ହେବାପାଇଁ ଯଥେଷ୍ଟ ସୁଯୋଗ ଯୋଗାଇ ଦେଇଥିଲା । ରାଜୀବ ଲୋଚନ ସାହୁର କହିବା କଥା ସିଏ ଆଉ କଲେଜର ଜଣେ ଛାତ୍ର ତାରାକାନ୍ତ ଓ ପ୍ରଦୋଷ ପ୍ରତି ସୋମବାର ଲିଙ୍ଗରାଜଙ୍କ ଦର୍ଶନ ପାଇଁ ଯାଆନ୍ତି । ମନ୍ଦିରରୁ ନଡ଼ିଆ ଭୋଗ ସାଙ୍ଗରେ ନେଇ ସିଏ ଦୁର୍ଗା ପଣ୍ଡାଙ୍କ ଘରକୁ ଯାଏ, ପ୍ରଦୋଷ ଯାଏ ଚନ୍ଦ୍ରଶେଖରଙ୍କ ଘରକୁ ଆଉ ତାରାକାନ୍ତ ଅସହାୟଭାବେ ନିଜ ବସାକୁ ଫେରିଯାଏ । ଏ ତିନିହେଁ ଚନ୍ଦ୍ରଶେଖରଙ୍କ ପାଖରୁ ଚିତ୍ରକାମ ଶିଖିବା ପାଇଁ ତାଙ୍କ ଘରକୁ ବହୁ ଆଗରୁ ଯିବା ଆସିବା କରୁଥିଲେ । ସେମାନଙ୍କ ସାଙ୍ଗରେ ଥିଲେ ଆଉ ଦୁଇଜଣ ଛାତ୍ର ଧନେଶ୍ୱର ସାହୁ ଓ ଜଗନ୍ନାଥ ପଣ୍ଡା । ସେମାନେ ଚନ୍ଦ୍ରଶେଖରଙ୍କ ଠାରୁ ଶାନ୍ତିନିକେତନ ଶୈଳୀର ଓ୍ୱାସ୍ ପେଣ୍ଟିଙ୍ଗ୍ (ଧୌତ ଚିତ୍ର) ଓ ଟେମ୍ପେରା (ଲେପ ଚିତ୍ର) ଶିଖୁଥିଲେ । ରାଜୀବ ଲୋଚନ ଚନ୍ଦ୍ରଶେଖରଙ୍କ କାମ ଦ୍ୱାରା ଏତେ ଦୂର ପ୍ରଭାବିତ ହେଇପଡ଼ିଥିଲା ଯେ ସିଏ ଆଜିଯାଏଁ ଚନ୍ଦ୍ରଶେଖରଙ୍କ ଭଳି ଚିତ୍ରଗୁଡ଼ିଏ କରୁଛି । ପ୍ରଦୋଷ ଲକ୍ଷ୍ୟକଲା ଯେ ରାଜୀବ ଲୋଚନ ତାଙ୍କ ଚିତ୍ର ନକଲ କରି ଚନ୍ଦ୍ରଶେଖରଙ୍କ ପ୍ରିୟତମ ଛାତ୍ରଭାବେ ଉଠୁଛି । କାଳେ ଏହାର ପ୍ରଭାବ ଭବିଷ୍ୟତରେ ଅଡୁଆ ସୃଷ୍ଟି କରିପାରେ ଏଣୁ ସେ ଚନ୍ଦ୍ରଶେଖରଙ୍କ ଠାରେ ନିଜ ପ୍ରଭାବ ବିସ୍ତାର କରି ଅନ୍ୟମାନଙ୍କୁ ତାଙ୍କ ପାଖରୁ ଦୂରେଇ ଦେଲା । ଫଳରେ ଚନ୍ଦ୍ରଶେଖରଙ୍କ ଶୈଳୀକୁ ଆଧାର କରି ଗଢ଼ି ଉଠୁଥିବା ଆଉ ଗୋଟିଏ କ୍ଷମତାର ବିନ୍ଦୁ ସଙ୍କୁଚିତ ହେଇପଡ଼ିଲା । ଚନ୍ଦ୍ରଶେଖର କଲେଜର ଶୁଭେଚ୍ଛୁ ଭାବେ ରହିଗଲେ । ଯାହାହେଲେ ବି ଚନ୍ଦ୍ରଶେଖରଙ୍କ ବ୍ରିଟ୍ କଲୋନୀ କେ.ସିକ୍ସ ତୁଳନାରେ ନଗଣ୍ୟ ।

ଯେଉଁ ଛାତ୍ରମାନେ ଚନ୍ଦ୍ରଶେଖରଙ୍କ ବ୍ରିଟ୍ କଲୋନୀରୁ ବିମୁଖ ହେଇ ଫେରିଲେ, ସେମାନେ କେଦାରଗୌରୀ ଗଳିରେ ସେତେବେଳେ ରହୁଥିବା ଗୋକୁଳି ବିହାରୀ ପଟ୍ଟନାୟକଙ୍କ ଘରେ ତାଙ୍କଠାରୁ ପଟଚିତ୍ର ଶିଖିବା ଆଳରେ ପହଞ୍ଚିଲେ । ଅବଶ୍ୟ ଗୋକୁଳି ବାବୁଙ୍କ ଝିଅ ସଂଗୀତା ଆମ କଲେଜରେ ଛାତ୍ରୀ ଥିବାରୁ ପିଲାମାନଙ୍କ ମଧ୍ୟରେ ବନ୍ଧୁତାର ସଂପର୍କ ମଧ୍ୟ ଥିଲା । ତଥାପି ଗୋକୁଳି ବାବୁ ମୂଳତଃ ଜଣେ ଆଧୁନିକ ଶିଳ୍ପୀଭାବେ ତାଲିମ ନେଇ ପରବର୍ତ୍ତୀ ପର୍ଯ୍ୟାୟରେ ଅଭ୍ୟାସବଶତଃ ପଟଚିତ୍ରକୁ ଆଦରି ଥିବାରୁ ସେ ଆମ କଲେଜର ପିଲାମାନଙ୍କୁ ତାଙ୍କ ଚିତ୍ରଶାଳାକୁ ଆକର୍ଷିତ କରୁଥିଲେ । ଏସବୁ ସତ୍ତ୍ୱେ କେ.ଆଠ ତା'ର ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିପାରିଥିଲା ।

Digitized by srujanika@gmail.com

# ୩୧. ସୁଧାଂଶୁ ମୋହନ ରୂପ ଅପଘନ

ଅଶିଏ ଦଶକରେ ଓଡ଼ିଶାର ପ୍ରଶାସନ କ୍ଷେତ୍ରରେ ଚାରିଜଣ ସୁଧାଂଶୁ ଅତି ପରାକ୍ରମୀ ଥିଲେ । ଜଣେ ସୁଧାଂଶୁ ମୋହନ ପଟ୍ଟନାୟକ, ମୁଖ୍ୟ ଶାସନ ସଚିବ । ଆଉ ଜଣେ ସୁଧାଂଶୁ ହେଲେ ସୁଧାଂଶୁ ଭୂଷଣ ମିଶ୍ର, ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭଙ୍କ ସଚିବ । ତୃତୀୟ ସୁଧାଂଶୁ ବା ଏସ୍.ଏମ୍. ପଟ୍ଟନାୟକ, ଯାହାଙ୍କୁ କୌତୁକରେ 'ସ୍ଲୋ ମୋସନ୍' ପଟ୍ଟନାୟକ ବୋଲି ସଚିବାଳୟର କେତେକ ସରକାରୀ କର୍ମଚାରୀ ତାଙ୍କ ଧୀରସୁସ୍ଥିଆ କାମରେ ଅତିଷ୍ଠ ହୋଇ ଅଭିହିତ କରିଥିଲେ । ଶେଷରେ ଚତୁର୍ଥ ସୁଧାଂଶୁ ହେଲେ ସୁଧାଂଶୁ ମୋହନ ରାଉତରାୟ, ସିନିୟର ଗ୍ରେଡ୍‌ର ଓ.ଏ.ଏସ୍. ଅଫିସର, ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭଙ୍କ ଘନିଷ୍ଠ ବନ୍ଧୁ, ଖାସ୍ ଲୋକ । ସୁଧାଂଶୁ ରାଉତରାୟଙ୍କୁ କେବଳ ଜଣେ ଓ.ଏ.ଏସ୍. ଅଫିସର୍ ବା ସଂସ୍କୃତି ବିଭାଗର ଉପଶାସନ ସଚିବ କହିଦେଲେ କଥା ସରିବନି, ସିଏ ଥିଲେ ଜଣେ ପାରିବାର ଲୋକ, କାମିକା ଓ କର୍ମଠ ଅଫିସର, ଏଭଳିକି ମୁଖ୍ୟଶାସନ ସଚିବଙ୍କୁ ବଳି ଶାସନର ମଙ୍ଗ ମୋଡୁଥିବା ଜଣେ ଧୁରନ୍ଧର ଦରଦୀ ବ୍ୟକ୍ତି । ସେ ଯାହା ଚାହୁଁଥିଲେ ତାହା କରେଇ ନେଉଥିଲେ କଳେ ବଳେ କୌଶଳେ ।

ସୁଧାଂଶୁ ବାବୁ ଦେଖିବାକୁ କଳା, ଅଧିକାଂଶ କଳା ବର୍ଣ୍ଣର ଲୋକଙ୍କ ଭଳି ସଦାସର୍ବଦା ସେ ଧଳା ପୋଷାକ ପିନ୍ଧୁଥିଲେ । ନିଦା ଚେହେରା, ଆଖି ଦୁଇଟି ଉଜ୍ଜ୍ୱଳ ଓ ଦୁଷ୍ଟାମିରେ ଭର୍ତ୍ତି । ଆରକ୍ତ ଅଧରରେ ଚିରାଚରିତ ହସ, ଗୋଟିଏ ଦୃଷ୍ଟିରୁ ସୁନ୍ଦର ଅପଘନ କହିହେବ । ନିଜେ ସରକାରୀ ଫାଇଲ୍ ହାତେ ହାତେ ନେଇ ଅନାବଶ୍ୟକ ସରକାରୀ ଦ୍ୱାରବନ୍ଧମାନ ଅବଜ୍ଞାରେ ଅତିକ୍ରମି ଖୋଦ୍ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଅର୍ଡ଼ର କରେଇ ଆଣିବାରେ ତାଙ୍କର ସତ୍‌ସାହସ ଥିଲା । ଆମେ ଶୁଣିବାକୁ ପାଉଥିଲୁ ମୁଖ୍ୟମନ୍ତ୍ରୀଙ୍କ ଦପ୍ତର ଓ ତାଙ୍କ ଘରକୁ ସିଧା ସଳଖ ହଟ୍‌ଲାଇନ୍‌ର ବ୍ୟବସ୍ଥା ଥିଲା । ଆବଶ୍ୟକ ପଡିଲେ ମୁଖ୍ୟମନ୍ତ୍ରୀ ରାତିଅଧିଆ ତାଙ୍କୁ ଲୋଡୁଥିଲେ ଓ ସେ ତାଙ୍କର ନିଜର ଫିଆଟ୍ ଚଳେଇ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ପହଞ୍ଚିଯାଉଥିଲେ । ଏଠି କହିରଖେ ଦେଶ ଓ ଦଶର ସେବା କରୁଥିବା ସବୁ ବିଶିଷ୍ଟ ବ୍ୟକ୍ତିମାନଙ୍କର ଦୁଇ ଦୁଇଟି ଅଫିସ୍ ଥାଏ, ଗୋଟିଏ ହେଲା ସରକାରୀ ଅଫିସ୍ ଓ ଅନ୍ୟଟି ରେସିଡେନ୍ସ ଅଫିସ୍ ବା ନିଜ କୋଠିରେ ଦପ୍ତର । ଏକ ନମ୍ବର ହାଟ ପଛପାଖ କସ୍ତୁରବା ନାରୀ ମହଲ ପାଖାପାଖି ଗୋଟିଏ ଟାଇପ୍

Digitized by srujanika@gmail.com

ପାଞ୍ଚ ସରକାରୀ ଘରେ ସୁଧାଂଶୁ ବାବୁ ରହୁଥିଲେ ଆଉ ରାଜ୍ୟପାଳଙ୍କ ଘର ରାଜଭବନ ପାଖାପାଖି ଗୋଟିଏ ପ୍ରଶସ୍ତ କୋଠା ଥିଲା ମୁଖ୍ୟମନ୍ତ୍ରୀଙ୍କ ନିବାସ । ଉଭୟଙ୍କ ଘର ଭିତରେ ବ୍ୟବଧାନ କିଲୋମିଟରେ ଠାରୁ କମ୍ । ଏଇଥିରୁ ବୁଝି ହେଉଥିଲା ମୁଖ୍ୟମନ୍ତ୍ରୀଙ୍କ ସହିତ ସୁଧାଂଶୁ ବାବୁଙ୍କ ସଂପର୍କ କେତେ ନିବିଡ଼ ।

ସୁଧାଂଶୁ ବାବୁ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟର ଜଣେ ଶୁଭେଚ୍ଛୁ ଥିଲେ । ସଂସ୍କୃତି ବିଭାଗର ଉପଶାସନ ସଚିବ ଭାବେ ସେ ଥିଲେ ଆମ ହାକିମ ପୁଣି କବି ଭାବେ ଥିଲେ ଆମର ବନ୍ଧୁ, ଲେଖକ ସାମୁଖ୍ୟର ଜଣେ ପ୍ରଧାନ ପୃଷ୍ଟପୋଷକ । ଓ.ଏ.ଏସ୍. ଅଫିସରମାନଙ୍କୁ ଯୁଗ୍ମ ଶାସନ ସଚିବ ସ୍ତରରୁ ଅତିରିକ୍ତ ଶାସନ ସଚିବ ପଦକୁ ଉନ୍ନୀତ କରେଇବାରେ ତାଙ୍କର ମୁଖ୍ୟ ଭୂମିକା ଥିଲା । ସଂସ୍କୃତି ବିଭାଗରେ ନିୟମ କାନୁନ୍‌ର ଠିକ୍‌ଠିକଣା ନଥିବାରୁ ପ୍ରଶାସନରେ ଉପଶାସନ ସଚିବଙ୍କ ଗୁରୁତ୍ୱ ଯଥେଷ୍ଟ ବେଶି ଥିଲା । ସଚିବାଳୟ ସ୍ତରରେ ସଂସ୍କୃତି ବିଭାଗରେ ଆମ ବେଳକୁ ଜଣେ ସଚିବ ଓ ତାଙ୍କ ତଳକୁ ଜଣେ ଉପଶାସନ ସଚିବ ବା ବେଳେବେଳେ ଆହୁରି ତଳକୁ ଅନୁଶାସନ ସଚିବ ରହୁଥିଲେ । ସବୁକଥାରେ ସଚିବଙ୍କ ପାଖରେ ପହଞ୍ଚିବା ଏତେ ସୁବିଧାଜନକ ହେଉ ନଥିବାରୁ ଉପଶାସନ ସଚିବଙ୍କ ମର୍ଜିରେ ହିଁ ସଂସ୍କୃତି ବିଭାଗର ଶାସନ ଚାଲୁଥିଲା । ଏଣୁ ଅଧିକାଂଶ ତଳିଆ କର୍ମଚାରୀ ସୁପାରିଶ ଟିକିଏ ଯୋଗାଡ଼ କରିବା ପାଇଁ ବିଭିନ୍ନ ପ୍ରକାରର ଉପଢୌକନ ଓ ଭେଟି ନେଇ ତାଙ୍କ ନିକଟରେ ପହଞ୍ଚୁଥିଲେ । ଏଭଳି ପରିସ୍ଥିତିରେ ଜଣେ ସଚ୍ଚୋଟ ଲୋକ ମଧ୍ୟ ଲାଞ୍ଚୁଆ ହେଇଯିବାର ସମ୍ଭାବନା ଥାଏ । ଶିକ୍ଷାଦାନ ଓ ଶିକ୍ଷା ଆହରଣ ଭଳି ମହତ୍‌କର୍ମ ଭିତରେ ବେଳେ ବେଳେ ଦେଣ ନେଣ ଅତି କଦର୍ଯ୍ୟ ସ୍ତରରେ ପହଞ୍ଚୁଥିଲା । ଏଭଳି କାର୍ଯ୍ୟରେ ଜଣେ ଶିଳ୍ପୀ ବିଚରା କେତେ ବାଟ ଯାଏଁ ଭରସି ପାରିବ । ନିଜ ହାତ ଅଙ୍କା ଚିତ୍ରଟିଏ ବା ନିଜ ବିଶ୍ୱସ୍ତ ଛାତ୍ରଛାତ୍ରୀଙ୍କ ଚିତ୍ରଟିଏ ନେଇ ଶିଳ୍ପୀଜଣକ ଏଭଳି ଅଫିସରମାନଙ୍କ ନାନ୍ଦନିକ ତତ୍ତ୍ୱବୋଧକୁ ବେଳେବେଳେ ଉଜ୍ଜୀବିତ କରିବା ପାଇଁ ଚେଷ୍ଟା କରିଥାଏ । ସେତକରେ କାମ ହେଇଗଲେ ତ ଭଲକଥା, ନ ହେଲେ ଅର୍ଥ ବିନିଯୋଗ ଉପରେ ନିର୍ଭର କରିବାକୁ ହେଉଥିଲା । ବିଭାଗୀୟ ସଚିବମାନଙ୍କ ସହିତ ମୋର ସଂପର୍କ ଭଲ ରହୁଥିବାରୁ ଏଭଳି ମଝିମଝିଆ ଅଫିସରଙ୍କ ଦୌରାତ୍ମ୍ୟ ସହ୍ୟ କରିବାକୁ ପଡୁ ନଥିଲା ।

ସୁଧାଂଶୁ ମୋହନ ରାଉତରାୟଙ୍କ ସଂପର୍କରେ ବହୁ କଥା ଓ ଅକଥା ସେବେଳରେ ଶୁଣିବାକୁ ମିଳୁଥିଲା ତଥାପି ତାଙ୍କ ସହିତ ଆମ ସଂପର୍କ ମର୍ଯ୍ୟାଦାବନ୍ତ ଥିଲା ଓ ଆମେ ପରସ୍ପର ସଂଭ୍ରମ ମଧ୍ୟରେ ଚାଲୁଥିଲୁ । ମୁଖ୍ୟମନ୍ତ୍ରୀଙ୍କ ନିକଟରେ, ବିଭାଗୀୟ ମନ୍ତ୍ରୀ ଓ ସଚିବଙ୍କ ନିକଟରେ ମୁଁ ଅନାୟସରେ ପହଂଚି ଯାଉଥିବାରୁ ମୋତେ ସହ୍ୟ କରି ନପାରି କେତେକ ଅସୂୟାପରବଶ ହେଇ ସେହି ସେହି ଜାଗାମାନଙ୍କରେ ବି.କେ. କଲେଜ ବିରୁଦ୍ଧରେ

Digitized by srujanika@gmail.com

ଅଭିଯୋଗ ବାଢ଼ୁଥିଲେ । ସୁଧାଂଶୁବାବୁ ନିଜର ପ୍ରତ୍ୟୁତ୍ପନ୍ନମତିତାରେ ଓ ବିଚକ୍ଷଣତାରେ ସେସବୁକୁ ପ୍ରତିହତ କରିଦେଉଥିଲେ ।

ମୁଁ ମୋ ନିଜ ଅନୁଭୂତିରୁ କଥାଟିଏ କହେ । ଆମ ବିଭାଗରେ ଜନୈକ ସାହୁ ନାମଧାରୀ ନିର୍ଦ୍ଦେଶକ ଥାଆନ୍ତି । ମୋର ଥରେ ପ୍ରଥମ ଶ୍ରେଣୀ ପାହ୍ୟାକୁ ପ୍ରମୋଶନ ହେବାକୁ ଥାଏ, ଏଣେ ମୋର ସି.ସି.ଆର୍ (ଗୁପ୍ତ ଚରିତ୍ର ପଞ୍ଜିକା) ଭରିବା ବାକିଥାଏ । ସି.ସି. ଆର୍ ପୂରଣ କରିଦେବା ପାଇଁ ମୁଁ ସାହୁଙ୍କୁ ବହୁବାର ଅନୁରୋଧ କରି କୃତକାର୍ଯ୍ୟ ନ ହେବାରୁ ସୁଧାଂଶୁ ବାବୁଙ୍କ ପାଖରେ ଫେରାଦ ହେଲି । ସୁଧାଂଶୁ ବାବୁ ସାହୁଙ୍କ ଠାରୁ ଭିତିରିଆ ଖବର ନେଲେ ଓ ସାହୁଙ୍କୁ ଗୋଟିଏ ନୈଶ୍ୟ ଭୋଜିରେ ଆପ୍ୟାୟିତ କରିବା ପାଇଁ ସେ ମୋତେ ପରାମର୍ଶ ଦେଲେ । ସାହୁ ଓ ସୁଧାଂଶୁ ବାବୁଙ୍କୁ ନେଇ ମୁଁ ସ୍ୱସ୍ତି ହୋଟେଲରେ ପହଞ୍ଚିଲି । ଆମେ ତିନିହେଁ ଭୂରିଭୋଜନ କଲୁ । ମୁଖ୍ୟମନ୍ତ୍ରୀଙ୍କ ଲୋକ ହିସାବରେ ସୁଧାଂଶୁ ବାବୁଙ୍କୁ ଭୁବନେଶ୍ୱରର ଅଧିକାଂଶ ହୋଟେଲବାଲା ଜାଣିଥାନ୍ତି । ମୁଁ ମଧ୍ୟ ଆଗରୁ ପର୍ଯ୍ୟଟନ ନିଗମରେ କାର୍ଯ୍ୟ କରିଥିବାରୁ ହୋଟେଲବାଲାଏ ମୋତେ ବି ଚିହ୍ନିଥାନ୍ତି । ଏଣୁ ହୋଟେଲ ସେଦିନ ମୋ ଠାରୁ ପଇସା ଗ୍ରହଣ କଲା ନାହିଁ । ସାହୁ ତ ଭୋଜନରେ ପ୍ରୀତ ହେଲେ କିନ୍ତୁ ତାଙ୍କ ଜିହ୍ୱାଲାଳସା ସେତିକିରେ ପ୍ରଶମିତ ହେଲାନାହିଁ । ସେ ସେହି ସଂଧ୍ୟାର ଅନୁଭୂତିକୁ ଦୋହରେଇବାକୁ ଚାହିଁଲେ । ମୋର ଗୁପ୍ତଚରିତ୍ର ପଞ୍ଜିକା ସାହୁଙ୍କ ଦୟା ଉପରେ ନିର୍ଭର କରୁଥିଲା ଏଣୁ ଆଉ ଦିନେ ତିନିହେଁ ଓବରାଇରେ ସାନ୍ଧ୍ୟଭୋଜନ କଲୁ । ଏ ଥରକ ମଧ୍ୟ ବିଲ୍ ପଇଠ କରିବା ଜଞ୍ଜାଳରୁ ମୁଁ ବର୍ତ୍ତିଗଲି । ତା'ପରେ ସାହୁ ଅତ୍ୟନ୍ତ ଦୟା ପରବଶ ହେଇ ମୋ କାର୍ଯ୍ୟଟି ସୂଚାରୁରୂପେ ସଂପାଦନ କରିଦେଲେ । ମୁଁ ସୁଧାଂଶୁ ବାବୁଙ୍କ ପାଖରେ କୃତଜ୍ଞ ରହିଲି ।

ଆଉ ବେଳକର ଘଟଣା । ନବୀନ କୁମାର ସାହୁ ପ୍ରତ୍ନତତ୍ତ୍ୱ ବିଭାଗର ଉପଦେଷ୍ଟା ଥାଆନ୍ତି । ସିଏ ଖାରବେଳଙ୍କ ସଂପର୍କରେ ବହିଟିଏ ରଚନା କରି ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଉତ୍ସର୍ଗ କରିଥାନ୍ତି । ପ୍ରଫେସର୍ ସାହୁ ମୋତେ ପାଣ୍ଡୁଲିପିଟି ଦେଖାଇଲେ । ମୁଁ ପଚାରୁ ପଚାରୁ ପଚାରିଦେଲି ଯେ ଏଭଳି ଗୋଟିଏ ଐତିହାସିକ ଗ୍ରନ୍ଥକୁ ଆଉ ଜଣେ ବିଶିଷ୍ଟ ଐତିହାସିକଙ୍କୁ ଉତ୍ସର୍ଗ ନ କରି ଉତ୍ସର୍ଗ ପୃଷ୍ଠାରେ ଜଣେ ରାଜନୈତିକ ବ୍ୟକ୍ତିଙ୍କୁ ସିଏ କାହିଁକି ପ୍ରାଧାନ୍ୟ ଦେଇଛନ୍ତି । ମୁଁ ଡକ୍ଟର ହରେକୃଷ୍ଣ ମହତାବଙ୍କ କଥା ତାଙ୍କୁ ସ୍ମରଣ କରେଇ ଦେଇଥିଲି । ନବୀନ କୁମାର ସାହୁ ଓଲମ୍ ବିଲମ୍ କରି ମୁଁ କହିବା କଥାକୁ ଜାନକୀ ବଲ୍ଲଭଙ୍କ ପାଖରେ ଫୋଡ଼ିଦେଲେ । ଜାନକୀ ବଲ୍ଲଭ ସୁଧାଂଶୁ ମୋହନଙ୍କୁ ଏକଥାର ସତ୍ୟାସତ୍ୟ ଜାଣିବା ପାଇଁ ପଚାରିଲେ । ସୁଧାଂଶୁ ବାବୁ ମୋତେ ଏତେ ଶ୍ରଦ୍ଧା କରୁଥିଲେ ଯେ ମୁଁ ଏଭଳି କଥା କେବେହେଲେ କହି ନଥିବି ବୋଲି ମୁଖ୍ୟମନ୍ତ୍ରୀଙ୍କୁ ଦୃଢ଼ତାର ସହିତ ବୟାନ ଦେଇ ତାଙ୍କ ମନ ପରିବର୍ତ୍ତନ କରିଦେଇଥିଲେ ।

Digitized by srujanika@gmail.com

ବେଳେବେଳେ କୌଣସି ଗୋଟିଏ ସମସ୍ୟାର ସମାଧାନ କରି ନପାରି ଗୋଲ୍‌କିପରର ସାମର୍ଥ୍ୟ ଉପରେ ଅତ୍ୟଧିକ ଭରସା ରଖି ଅସହାୟ ଖେଳାଳିଟିଏ ନିଜ ପକ୍ଷର ସେଣ୍ଟର୍ ଫରୱାଡ୍ ପାଖକୁ ବଲ୍‌ଟି ମାରିଦେଲା ଭଳି ସୁଧାଂଶୁବାବୁ ମୋ ମୁଣ୍ଡ ଉପରେ ସମସ୍ୟାଟି ଥାପି ଦେଉଥିଲେ । କଟକର ଇନ୍‌ଡ଼ୋର୍ ଷ୍ଟାଡ଼ିୟମ୍‌ଠାରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି କ'ଣ ଗୋଟାଏ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ସେଠି ଥିବା ମଞ୍ଚର ସାଜସଜ୍ଜା ପାଇଁ ମହାତ୍ମା ଗାନ୍ଧି, ପଣ୍ଡିତ ଜବାହରଲାଲ୍ ନେହେରୁ, ଇନ୍ଦିରା ଗାନ୍ଧି ଓ ରାଜୀବ ଗାନ୍ଧିଙ୍କର ଚାରୋଟି ପୂର୍ଣ୍ଣାବୟବ ତୈଳଚିତ୍ରର ଆବଶ୍ୟକତା ଅନୁଭବ କରି ସଂଗଠକମାନେ ମୁଖ୍ୟମନ୍ତ୍ରୀ ମହୋଦୟଙ୍କୁ ଅନୁରୋଧ କରିଥାନ୍ତି । ଅନୁରୋଧଟି ବାଟମାରଣା ହୋଇ ହୋଇ ବା ଉପଯୁକ୍ତ ରାସ୍ତା ଦେଇ ହୋଇ ସୁଧାଂଶୁ ମୋହନ ରାଉତରାୟଙ୍କ ନିକଟରେ ପହଞ୍ଚିଥାଏ । ଏବେ ଅନୁମାନ କରିହେଉଛି ନିଜ ତରଫରୁ ହୁଏତ ସୁଧାଂଶୁ ମୋହନ ମୁଖ୍ୟମନ୍ତ୍ରୀଙ୍କୁ ଏହି ଚାରୋଟି ତୈଳଚିତ୍ର କରେଇ ଦେବାର ପ୍ରତିଶ୍ରୁତି ଦେଇଥିବେ । ଦିନେ ହଠାତ୍ ସଂସ୍କୃତି ରାଷ୍ଟ୍ରମନ୍ତ୍ରୀ ଶରତ ରାଉତ ମୋତେ ଡକେଇ ଏହି ତୈଳଚିତ୍ରଗୁଡ଼ିକ କରିବା ପାଇଁ ଅନୁରୋଧ କଲେ । ହାତରେ କମ୍ ସମୟ ଥାଏ । ଆଠଫୁଟ୍ ଉଚ୍ଚା ଓ ଚାରିଫୁଟ ଚଉଡ଼ାର ଚାରୋଟି ତୈଳଚିତ୍ର କରିବା ପାଇଁ ଚାରିଜଣ ଧୁରନ୍ଧର ଶିଳ୍ପୀଙ୍କୁ ମାସେ ଲେଖାଏଁ ସମୟ ଲାଗିବ । ତିନିଚାରି ଦିନ ମଧ୍ୟରେ ଏଗୁଡ଼ିକ ସମ୍ଭବ ନୁହେଁ । ମୁଁ କରେ କ'ଣ । ଏଣେ ସୁଧାଂଶୁ ବାବୁଙ୍କ ତାଗିଦା । ସେ କହିଥାନ୍ତି ଯେ ବାସ୍ତବରେ ମୁଖ୍ୟମନ୍ତ୍ରୀ ଏହି ଚିତ୍ରଗୁଡ଼ିକ ଆମ କଲେଜରୁ ଚାହିଁଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ନାଁ ଶୁଣିଲା ପରେ ଆମ ପାଖରେ ଚିତ୍ରଗୁଡ଼ିକର ମହତ୍ତ୍ୱ ବଢ଼ିଗଲା ଓ ମନ୍ତ୍ରୀଙ୍କର ଅନୁରୋଧ ଆଦେଶ ଭଳି ଲାଗିଲା । ଅଧ୍ୟାପକ ବଳଦେବ ମହାରଥୀଙ୍କ ତତ୍ତ୍ୱାବଧାନରେ ଅଧ୍ୟାପକ ଶିବ ପାଣିଗ୍ରାହୀ, ଅଧ୍ୟାପକ ଡି.ଏନ୍.ରାଓ ନିଜ ନିଜ ଛାତ୍ରଛାତ୍ରୀଙ୍କୁ ନେଇ ଚିତ୍ର କାମରେ ଲାଗିପଡ଼ି ଚାରୋଟି ଦିନରେ ତୈଳଚିତ୍ର ଗୁଡ଼ିକ ଶେଷ କରିଦେଲେ । ନାଁ ସିନା ତୈଳଚିତ୍ର, ଏକ୍ରେଲିକ୍ ରଙ୍ଗରେ କାମ । ରାଜନୈତିକ ନେତା ରଙ୍ଗର ବୈଷମ୍ୟ କ'ଣ ବୁଝନ୍ତି !

ପ୍ଲାଇବୋର୍ଡ଼୍, କାନଭାସ୍ ଓ ରଙ୍ଗପତ୍ର କିଣିବା ପାଇଁ କଲେଜରେ ପାଣ୍ଠି କାହିଁ ? କେଉଁ ସରକାରୀ କାମ ଯେ ଏ ସଂପର୍କରେ ନିର୍ଦ୍ଦେଶକ ବା ସଚିବଙ୍କୁ ଚିଠି ଲେଖି ପାଣ୍ଠିର ଯୋଗାଡ଼ କରିହେବ ? ତକିଆ ବଦଳ କରିବା ପାଇଁ ମଧ୍ୟ କଲେଜରେ ସମ୍ବଳ ନଥିଲା । ପ୍ରାୟ କୋଡ଼ିଏ ତିରିଶି ହଜାର ଟଙ୍କା ଅଧ୍ୟକ୍ଷ ମହାଶୟଙ୍କୁ ଯୋଗାଡ଼ କରିବାକୁ ହେଲା । ବଡ଼ଲୋକଙ୍କ ଆଗକୁ ଓ ଗଧର ପଛପଟକୁ ନ ଯିବା ପାଇଁ ନୀତିବାଣୀରେ କୁହାଯାଇଥିଲେ ମଧ୍ୟ କଲେଜର ସ୍ୱାର୍ଥ ଓ ସୁନାମକୁ ମୁଁ ଉପେକ୍ଷା କରିପାରୁ ନଥିଲି । ସୁଧାଂଶୁ ମୋହନଙ୍କ ସହିତ ଏମିତି ବହୁ ଅନୁଭୂତି ଏବେ ବି ସାଇତା ଅଛି । ଏଗୁଡ଼ିକ ଐକାନ୍ତିକ ଓ ରମଣୀୟ । ବେଳେବେଳେ ଗପ ଭଳି ଲାଗିବା ଆଚମ୍ବିତ ନୁହେଁ ।

Digitized by srujanika@gmail.com

ଆଇ.ଏ.ଏସ୍ ଅଫିସର୍ ଅଓଧ ନାରାୟଣ ତିଓ୍ୱାରୀ ନିଜ ଗାଁ ଖଡ଼ିଆଲଠାରେ ଗୋଟିଏ ବିରାଟ ସାଂସ୍କୃତିକ ସମାରୋହର ଆୟୋଜନ କରିଥାନ୍ତି । ତିଓ୍ୱାରୀ ମହାଶୟଙ୍କ ଅଧୀନରେ ସଂସ୍କୃତି, ପର୍ଯ୍ୟଟନ ଲୋକସଂପର୍କ ବିଭାଗ ଥିବାରୁ ଓଡ଼ିଶାର ବଛା ବଛା ସାହିତ୍ୟିକ, ସଂଗୀତଜ୍ଞ, ଚିତ୍ରଶିଳ୍ପୀ ଓ ନୃତ୍ୟଶିଳ୍ପୀ ଓଗେର ଖଡ଼ିଆଲରେ ପହଞ୍ଚିଥାନ୍ତି । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସେହି ସମାରୋହରେ ମୁଖ୍ୟଅତିଥି ହେବାର କାର୍ଯ୍ୟକ୍ରମ ଥାଏ । ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଥାଆନ୍ତି ହୃଦାନନ୍ଦ ରାୟ, ମହାପାତ୍ର ନୀଳମଣି ସାହୁ, ବିଶ୍ୱଜିତ୍ ଦାସ, ଧୀରେନ୍ ଦାଶ, ଅର୍ଜ୍ଜୁନ ଯୋଷୀ, ନଟବର ଦାସ, ନିଧି ରଣା, ହରିଶ୍ଚନ୍ଦ୍ର ଦାସ, ପ୍ରଶାନ୍ତ ଚନ୍ଦ୍ର ରାୟ ପ୍ରଭୃତି । ଏମାନଙ୍କ ଭିତରୁ କିଏ ପର୍ଯ୍ୟଟନର ଉପନିର୍ଦ୍ଦେଶକ ତ ଆଉ କିଏ ଉତ୍କଳ ପ୍ରସଙ୍ଗର ସଂପାଦକ, କିଏ ନାଟ୍ୟକାର ତ ଆଉ କିଏ ଯାତ୍ରାଗବେଷକ । ସେମାନଙ୍କ ମଧ୍ୟରେ ଥାଆନ୍ତି ସରକାରଙ୍କ ମୁଖ୍ୟ ଫଟୋଗ୍ରାଫର, ଫିଲିମ୍ ଅଫିସର୍, ସଂଗ୍ରହାଳୟ ଓ ପ୍ରତ୍ନତତ୍ତ୍ୱର ଅଧୀକ୍ଷକଦ୍ୱୟ । ମୁଖ୍ୟମନ୍ତ୍ରୀ ଓଡ଼ିଶା ସରକାରଙ୍କ ଡାକୋଟା ବିମାନରେ ଖଡ଼ିଆଳ ପହଞ୍ଚିଲେ, ଧୁମ୍‌ଧାମ୍ ସଭା ହେଲା । ବକ୍ତୃତାବାଜି ହେଲା । ରାତ୍ରୀରହଣି ପାଇଁ ସୁଧାଂଶୁ ବାବୁ ନିଜ ପାଇଁ ଓ ମୋ ପାଇଁ ଖଡ଼ିଆଳ ଡ଼ାକବଙ୍ଗଳାର ଗୋଟିଏ ବଖରା ଠିକଣା କରିଦେଇଥିଲେ । ଆମେ ଦୁହେଁ କ୍ଳାନ୍ତ ହେଇ ସେଠିକି ଫେରିଲୁ । ବଙ୍ଗଳାଟି ଅପେକ୍ଷାକୃତ ନିକାଞ୍ଚନ ଜାଗାରେ ଅବସ୍ଥିତ । ଏମିତିରେ ଖଡ଼ିଆଳ ଜଙ୍ଗଲିଆ ଜାଗା । ସେଠି ସେବେଳେ କୁଆଡେ ବାଘର ବି ପ୍ରାଦୁର୍ଭାବ ଥିଲା । ଆମେ ଦିନସାରା ଖଟି ଖଟି ନୟାନ୍ତ ହେଇ ସାରିଥାଉ । ସୁଧାଂଶୁ ବାବୁ ଲୁଙ୍ଗି ଓ ଗଂଜି ବଦଳେଇ ଦେଇ ଶେଯରେ ଗଡିଗଲେ । ଆଉ ଗୋଟିଏ ଖଟରେ ମୁଁ ସେମିତି ପେଣ୍ଟ୍ ସାର୍ଟ୍ ପିନ୍ଧି ଶୋଇଗଲି । ନିଦ ମାଡ଼ିଆସିଲା; ପ୍ରଥମ ଦି ତିନି ଘଣ୍ଟା ନିଦ ଏତେ ଗାଢ଼ ହେଲା ଯେ କିଛି ବୋଲି କିଛି ବାରି ହେଲାନି । ମୁଁ ବୋଧହୁଏ ପରିସ୍ରା କରିବାକୁ ଉଠିଲି, କିନ୍ତୁ ଶେଯକୁ ଫେରି ଆଉ ମୋଟେ ଶୋଇ ପାରିଲିନି । ଘୁଙ୍ଗୁଡ଼ିର ନିନାଦରେ ଏଥର ଡାକବଙ୍ଗଳାର ଛାତ ପଡ଼ିଲା ଉଠିଲା । ଘୁଙ୍ଗୁଡ଼ିର ସ୍ୱର, ଶବ୍ଦ ବିଚିତ୍ର ଧରଣର, ମୁହୁଃ ମୁହୁଃ ପରିବର୍ତ୍ତନ ହେଉଥାଏ । ବେଳେବେଳେ ତାହା ତୋପର ଆବାଜ ଭଳି ଶୁଣାଯାଉଥାଏ ତ ଆଉ ବେଳେ ରେଳ ଇଞ୍ଜିନ୍‌ର ଗୁଞ୍ଜନ ଭଳି । ଏଣେ ବିଜୁଳି ଚାଲିଯାଇ ଘର ବାହାର ଭିତର ସମ୍ପୂର୍ଣ୍ଣ ଅନ୍ଧାର ହେଇଗଲା । ମୁଁ ନବଦ୍ୱାର ନିଗ୍ରହ କରି ଶୋଇବାର ଉପକ୍ରମ କଲି । ମୋର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହେଲା । ବିଛଣା ଚାଦର ତକିଆ ଗୁଡ଼ିଆ ଗୁଡ଼େଇ କରି ବଖରାର କବାଟ ଖୋଲି ବାରଣ୍ଡାକୁ ଚାଲିଯାଇ ସେଠି ଶୋଇପଡ଼ିଲି । ସେଇ ଡାକବଙ୍ଗଳା ପାଖ ଜଙ୍ଗଲରେ ପାଞ୍ଚଛଅ ଦିନ ତଳେ ବାଟହୁଡ଼ା ଗୋରୁଟିଏ ବାଘର ଶିକାର ବନିଯାଇଥିଲା । ଏତକ ଜଣାଥିଲେ ମୁଁ ଆଉ କିଛି ସମୟ ଘୁଙ୍ଗୁଡ଼ି ସହିତ ସାଲିସ୍ କରିଥାନ୍ତି । ସୁଧାଂଶୁ ବାବୁ ଭୋରରୁ ଉଠି ପଡ଼ି ମୋତେ ଖଟରେ

Digitized by srujanika@gmail.com

ନପାଇ ଲୁଗାପଟା ଅସ୍ତବ୍ୟସ୍ତ ପଡ଼ିଥିବାର ଦେଖି ବାଘର ଉପସ୍ଥିତି ସନ୍ଦେହ କରି ଚିଲ୍ଲେଇଛନ୍ତି । ଗୋଟିଏ ଛୋଟକାଟର ଜନଗହଳିଟିଏ ସଂଗଠିତ ହୋଇଯାଇଛି ଓ ଅନୁସନ୍ଧାନର ପ୍ରଥମ ପର୍ଯ୍ୟାୟରେ ହିଁ ସେମାନେ ମୋତେ ଡାକବଙ୍ଗଳାର ବାରିପଟ ବାରଣ୍ଡାରେ ଆବିଷ୍କାର କରିଛନ୍ତି । ଆମ ମାଡ଼ାମ୍ ଶ୍ରୀମତୀ ପ୍ରଭା ରାଉତରାୟ ଏତେ ସବୁ ଘୁଙ୍ଗୁଡ଼ି କିମିତି ଦେହରେ ଭିଜାଉଥିଲେ କେଜାଣି । ବୋଧହୁଏ କେତେକ କଥା ଅବଲୀଳାକ୍ରମେ ଦେହସୁହା ହୋଇଯାଏ ।

ଆଉ ଅନ୍ୟ ଏକ କାର୍ଯ୍ୟକ୍ରମ ବେଳର ଘଟଣା । ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧିଙ୍କ ଅନୁପ୍ରେରଣାରେ ଦିଲ୍ଲୀଠାରେ ସର୍ବଭାରତୀୟ ସ୍ତରରେ ଅପନାଉତ୍ସବ ପାଳିତ ହେଉଥାଏ । ମୋ ବନ୍ଧୁ ରାଜୀବ ସେଠୀ ଏହି ଉତ୍ସବର ଶୈଳ୍ପିକ ପରିକଳ୍ପନା ଦାୟିତ୍ୱରେ ଥାଆନ୍ତି । ଆମ କଲେଜ ଓଡ଼ିଶା ପକ୍ଷରୁ ଏ ଉତ୍ସବରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମୁଁ ଥାଏ ଓଡ଼ିଶାର କ୍ରିଏଟିଭ୍ ଡାଇରେକ୍ଟର୍ । ଜଣେ ଶିଳ୍ପୀ ନ ହେଲେ କ୍ରିଏଟିଭ୍ ଡାଇରେକ୍ଟର ହେବାରେ ବାଧାଥାଏ । ନହେଲେ ସୁଧାଂଶୁ ବାବୁ ମୋଠାରୁ ଅଧିକା ଦରମା ପାଉଥିବାରୁ ସେ ହିଁ ଏହି ପଦବୀରେ ଅଧିଷ୍ଠିତ ହୋଇଥାନ୍ତେ । ଆମେ ନାଟୁଆ, ଭାଟୁଆ, ଚିତ୍ରକାର, ବଢ଼େଇ ଓ କୁମ୍ଭାର ନେଇ ଅପନାଉତ୍ସବରେ ଯୋଗ ଦେବା ପାଇଁ ଦିଲ୍ଲୀ ପହଞ୍ଚିଲୁ । ଭାରତ ସରକାରଙ୍କ ପର୍ଯ୍ୟଟନ ନିଗମ ଆଇ.ଟି.ଡି.ସି.ର ଅଶୋକ ଯାତ୍ରୀ ନିବାସରେ ଆମର ରହିବା ବନ୍ଦୋବସ୍ତ ହୋଇଥାଏ । ଯାତ୍ରୀ ନିବାସରେ ଶୋଇବା ପାଇଁ ସିମେଣ୍ଟର ପିଣ୍ଡି, ଖଟର ବ୍ୟବସ୍ଥା ନାହିଁ । ସେଠି ରୁମ୍ ଭିତରେ ନା ବେଡ୍ ଟି'ର ବ୍ୟବସ୍ଥା ଅଛି ନା ରୁମ୍ ସର୍ଭିସ୍ । ସବୁକଥାରେ ଲିଫଟ୍‌ରେ ଓହ୍ଲେଇ ତଳେ ଥିବା ରେସ୍ତୋରାଁକୁ ଆସିବାକୁ ହୁଏ । ସାଢ଼େ ସାତରେ ରୁମ୍ କବାଟ ଖୋଲିଲେ ରୁମ୍ ବଏ ମଗ୍‌ରେ ସକାଳ ଚାହା ଦେଇଯାଏ । ଏଭଳି ମୌଳିକ ତଥା ନିମ୍ନତମ ବ୍ୟବସ୍ଥା ସୁଧାଂଶୁ ବାବୁଙ୍କୁ ସୁହାଇଲା ନାହିଁ । ସେ ସେଠି ନାଟୁଆ, ଭାଟୁଆଙ୍କ ସଙ୍ଗରେ ଏକାଠି ରହିବାକୁ ଅମଙ୍ଗ ହେଲେ । ଓଡ଼ିଶା ଭବନ ପାଖ ଚାଣକ୍ୟ ପୁରୀ ଅଞ୍ଚଳରେ ତାଙ୍କ ପାଇଁ ହୋଟେଲ ରୁମ୍‌ଟିଏ ବ୍ୟବସ୍ଥା କରିବାକୁ ହେଲା । ସୁଧାଂଶୁ ବାବୁ ସେମିତିରେ ମୁତ୍‌ଫରକା ଆମ ସାଙ୍ଗରେ ଅପନାଉତ୍ସବ ଉପଭୋଗ କରିବାକୁ ଯାଇଥାନ୍ତି । ଉତ୍ସବରେ ତାଙ୍କର ନିର୍ଦ୍ଦିଷ୍ଟ ଭୂମିକା ନଥାଏ । ତାଙ୍କର ଗସ୍ତ ସରକାରୀ ମଧ୍ୟ ନଥାଏ । ହୋଟେଲରେ ତାଙ୍କ ସହିତ ଏକାଠି ରହିବା ପାଇଁ ସିଏ ମୋତେ ଅନୁରୋଧ କଲେ । ମୁଁ ନାଟୁଆ, ଭାଟୁଆଙ୍କ ଦଳପତି । ଏଣୁ ସେମାନଙ୍କୁ ଅଶୋକ ଯାତ୍ରୀ ନିବାସରେ ନିଃସହାୟ ଛାଡିଦେଇ ସୁଧାଂଶୁ ବାବୁଙ୍କ ସାଙ୍ଗରେ ଷୋଳଶହ ଟଙ୍କିଆ ରୁମ୍‌ରେ ଅୟସ କରିବାର ଅଭିଳାଷ ନଥାଏ । ପୁଣି ନିଜେ ଜଣେ ନାଟୁଆ ହୋଇଥିବାରୁ ମୁଣ୍ଡରେ ଅଫିସରିଆ ପଗଡ଼ି ପିନ୍ଧିବାର ଆକାଂକ୍ଷା ବି ନଥାଏ । ପୁଣି ମୋ ଖଡ଼ିଆଳର

Digitized by srujanika@gmail.com

ରାତ୍ରୀଯାପନ ସ୍ମରଣରେ ଆସିଗଲା । ଏଣୁ ସୁଧାଂଶୁ ବାବୁଙ୍କୁ ତାଙ୍କ ସୁଖସ୍ୱାଚ୍ଛନ୍ଦ୍ୟର ପରିଧି ଭିତରେ ଛାଡିଦେଇ ମୁଁ ଯାତ୍ରୀନିବାସ ଫେରିଆସିଲି ।

ତା ପରଦିନ ଦିଲ୍ଲୀର ଲାଲ୍‌କିଲ୍ଲା ପଡିଆରେ ପ୍ରଧାନମନ୍ତ୍ରୀଙ୍କ ଆଗରେ ବିଭିନ୍ନ ରାଜ୍ୟ ପକ୍ଷରୁ ନୃତ୍ୟ ଗୀତ ପ୍ରଦର୍ଶନ କରିବାର କାର୍ଯ୍ୟକ୍ରମ ଥାଏ । କାର୍ଯ୍ୟକ୍ରମ ସେଠାରୁ ସିଧା ଦୂରଦର୍ଶନ ଯୋଗେ ପ୍ରସାରଣ ହେବାର ବ୍ୟବସ୍ଥା ହୋଇଥାଏ । ସୁଧାଂଶୁ ବାବୁ ଇଚ୍ଛାକଲେ ମୋ ସ୍ଥାନରେ ସିଏ ଦଳପତି ହେଇ ଠିଆହେବେ । ନିୟମ ଥାଏ ଦଳପତି ସଫାରୀ ସୁଟ୍ ପିନ୍ଧି ଠିଆ ହେବେନି ଆଉ ମୁଣ୍ଡରେ ପଗଡ଼ି ବାନ୍ଧିବେ । ସୁଧାଂଶୁ ବାବୁ ଉଭୟ କଥାରେ ଅରାଜି ହେଲେ, ସଫାରୀ ସୁଟ୍ ପିନ୍ଧି ଧାଡ଼ିର ଶୀର୍ଷରେ ଠିଆହେଲେ । ଦଳପତି ଭାବେ ତାଙ୍କର ଅଭିଳାଷ ଥିଲା ସିଏ ପ୍ରଧାନମନ୍ତ୍ରୀଙ୍କ ସହିତ କରମର୍ଦ୍ଦନ କଲାବେଳେ ଭୁବନେଶ୍ୱରରେ ତାଙ୍କ ସହଧର୍ମିଣୀ ପ୍ରଭା ରାଉତରାୟ ଏବଂ ପୁତ୍ରକନ୍ୟା ଟି.ଭି. ପରଦାରେ ତାଙ୍କ ଚିତ୍ର ଦେଖିପାରିବେ ଏବଂ ଜାତୀୟ ସ୍ତରରେ ତାଙ୍କ ପ୍ରାଧାନ୍ୟ ସଂପର୍କରେ ସଚେତନ ହେଇପାରିବେ । ସେବେ, ଏବେ ସଦାକାଳେ ଟି.ଭି. ପରଦାରେ ନିଜର ବା ନିଜ ଲୋକଙ୍କ ମୁହଁ ଦେଖିବାର ପ୍ରଲୋଭନ ଆମମାନଙ୍କର ବଳବତ୍ତର ରହିଛି ।

ରାଜୀବ ସେଠି ବିଭିନ୍ନ ଦଳମାନଙ୍କର ହାଲ୍‌ଚାଲ୍ ବୁଝୁଥାନ୍ତି । ଆମ ଓଡ଼ିଶା ଟିମ୍ ପାଖରେ ପହଞ୍ଚି ମୁଁ ଧାଡ଼ି ଆଗରେ ଠିଆ ହେଇ ନଥିବାରୁ ମୋ ହାତ ଧରି ସାମନାକୁ ଭିଡ଼ିଆଣିଲେ ଓ ମୋ ମୁଣ୍ଡରୁ ପଗଡ଼ିଟି ନେଇ ଚାଲିଗଲେ । ପଗଡ଼ି ନେଲାବେଳକୁ କହିଲେ ସେ ପ୍ରଧାନମନ୍ତ୍ରୀଙ୍କ ପାଇଁ ତାହା ନେଉଛନ୍ତି । ଏଣୁ ମୋତେ ଆଉ ଗୋଟିଏ ଯୋଗାଡ଼ କରିବାକୁ ହେଲା । ସୁଧାଂଶୁ ବାବୁଙ୍କ ମନ ଫିକା ପଡ଼ିଗଲା । ସେ ମୋର ଘନିଷ୍ଠ ବନ୍ଧୁ ହୋଇଥିଲେ ମଧ୍ୟ ମୁଁ ସେଦିନ ତାଙ୍କ ପାଇଁ କିଛି କରିପାରି ନଥିଲି ।

Digitized by srujanika@gmail.com

# ୩୨. ଅପ୍ରମିତବଳ ଭୁଜବଳ

ମୁଁ କଲେଜରେ ଅଧ୍ୟକ୍ଷ ଥିବାବେଳକୁ ରାଜକିଶୋର ଭୁଜବଳ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ସଚିବ ହୋଇ ଯୋଗଦେଲେ । ଭୁବନେଶ୍ୱରରେ କିଛିଦିନ ଚାକିରି କରିଗଲେ ପୁଣି ଚାକିରିଟା ଆର୍ଟିଷ୍ଟ୍ ଚାକିରି ହେଉଥିଲେ ଉଚ୍ଚପଦସ୍ଥ ଅଫିସରଙ୍କ ସହ ସଂପର୍କ ଗଢ଼ି ଉଠିବା କିଛି ଆଶ୍ଚର୍ଯ୍ୟ ନୁହେଁ । ସେହି ମର୍ମରେ ଓଡ଼ିଶା ସରକାରଙ୍କ ଦି' ଡ଼ଜନରୁ ବେଶି ଆଇ.ଏ.ଏସ୍. ଅଫିସରଙ୍କ ସାଙ୍ଗେ ମୋ ଜଣାଶୁଣା । ଭୁଜବଳ ସାହେବ ଓ ମୁଁ ଥରେ ଆଦିବାସୀ ପ୍ରଦର୍ଶନୀରେ ବିଭିନ୍ନ ବିଭାଗ ଏବଂ ବିଭିନ୍ନ ଆଦିବାସୀଙ୍କ ଜୀବନଶୈଳୀ ଓ କଳାକୁ ନେଇ ନିର୍ମିତ ମଣ୍ଡପଗୁଡ଼ିକର କଳାତ୍ମକତାକୁ ବିଚାର କରି ପୁରସ୍କାରଯୋଗ୍ୟ ଷ୍ଟଲ୍‌ଗୁଡ଼ିକୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ କ୍ରମରେ ତାଲିକା କରିବା ଦାୟିତ୍ୱରେ ଥିଲୁ । ସେତେବେଳେ ସିଏ ଆମ ବିଭାଗରେ ଯୋଗଦେଇ ନଥାନ୍ତି । ତା'ର କିଛିଦିନ ପରେ ସେ ଅର୍ଥ ବିଭାଗର ଦାୟିତ୍ୱରେ ରହିଲେ । ଦୈବଯୋଗକୁ ଥରେ ଆମେ ଉଭୟେ ଦିଲ୍ଲୀ ଗସ୍ତରେ ଯାଇ ଓଡ଼ିଶା ଭବନରେ ରହିଥାଉ । ସକାଳୁ ଜଳଖିଆ ଖାଇଲାବେଳେ ରେଷ୍ଟୋରାଁରେ ଦେଖାହେଲା । ସୁଯୋଗ ଉଣ୍ଡି ସଂସ୍କୃତି ବିଭାଗର ଚାକିରି କରୁଥିବା ଅଫିସରଙ୍କ ସ୍ୱଳ୍ପ ଦରମା କଥା ତାଙ୍କ କାନରେ ପକେଇଦେଲି । ଲାଗିଲା ସେ ସହାନୁଭୂତିର ସହ ମୋ କଥାତକ ଶୁଣିଲେ । ମୋ ପ୍ରତି ତାଙ୍କର ଦରଦ ଥିବାର ସୁଯୋଗ ନେଇ ସେତେବେଳର ଆମ ବିଭାଗର ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀଙ୍କୁ କୁହାପୁଚ୍ଛା କରି କଳା ମହାବିଦ୍ୟାଳୟମାନଙ୍କର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କ ଦରମା ସଂକ୍ରାନ୍ତୀୟ ଫାଇଲଟିକୁ ବ୍ୟକ୍ତିଗତ ହେପାଜତରେ ନେଇ ତାଙ୍କ ପାଖରେ ପହଞ୍ଚିଲି । ଏଭଳି କାର୍ଯ୍ୟଟିଏ ବିଧିସମ୍ମତ ନଥିଲା । ଅର୍ଥସଚିବ ଭୁଜବଳ ନିଶ୍ଚୟ ବୁଝିପାରୁଥିଲେ ଯେ ଦରମା ବୃଦ୍ଧି ବା ସମୀକରଣ କଥାଟି ଏତେ ସହଜ ଭାବେ ସଂପାଦନ ହେବାର ନୁହେଁ । ତାହା ଏକ ଜଟିଳ ସମସ୍ୟା । ସେ ହୁଏତ ଜଣେ ଶିଳ୍ପୀର ଭାବପ୍ରବଣତା ଓ ବ୍ୟଗ୍ରତା ହୃଦୟଙ୍ଗମ କଲେ । ଫାଇଲ୍‌ଟିକୁ ତାଙ୍କ ଟେବୁଲ ଉପରେ ରଖିଦେବା ପାଇଁ କହିଲେ ।

ଏଥିଆରି ଭିତରେ କିଛିବର୍ଷ ବିତିଗଲା । ସେ ଆମ ବିଭାଗର ସଚିବ ହେଲା ପରେ ମୋ ମନରେ ଆଶାର ପୁନଃସଂଚାର ହେଲା । ମୁଁ କିନ୍ତୁ ସୁଯୋଗ ଅପେକ୍ଷାରେ ଥାଏ ।

Digitized by srujanika@gmail.com

ଦିନେ କଲେଜର ମ୍ୟୁଜିକ୍ କ୍ଲବ ପକ୍ଷରୁ ଗୋଟିଏ ଓଡ଼ିଶୀ ସଂଗୀତ ସନ୍ଧ୍ୟା କାର୍ଯ୍ୟକ୍ରମର ଆୟୋଜନ କରି ଭୁଜବଳ ମହାଶୟଙ୍କୁ ନିମନ୍ତ୍ରଣ କଲି । ସେ ଅତ୍ୟନ୍ତ ଆଗ୍ରହର ସହିତ କଲେଜକୁ ଆସିଲେ । ଓଡ଼ିଶୀ ଗୀତ ଶୁଣି ପୁଲକିତ ହେଲେ । ସିଏ ତାଙ୍କ ବକ୍ତବ୍ୟରେ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କୁ କହିଲେ ଯେ ଅଧ୍ୟକ୍ଷ ଡ଼କ୍ଟର ପାଠୀ ତାଙ୍କର ଘନିଷ୍ଠ ବନ୍ଧୁ । ଏହି ବାକ୍ୟଟିର ଏଭଳି ଗୁରୁତ୍ୱ ଥିଲା ଯେ ତାହା ସଂସ୍କୃତି ବିଭାଗରେ ମୋର ପ୍ରତିପତ୍ତିକୁ ଯଥେଷ୍ଟ ବଢ଼େଇ ଦେଇଥିଲା । ତଥାପି ଅଧ୍ୟକ୍ଷ ଓ ଅଧ୍ୟାପକଙ୍କ ଦରମା ସଂକ୍ରାନ୍ତୀୟ ସମସ୍ୟାକୁ ତାଙ୍କ ନିକଟରେ ଉତ୍‌ଥାପନ କରିବା ପାଇଁ ଉପଯୁକ୍ତ ମଉକା ପାଉ ନଥାଏ ।

ଥରେ କ'ଣ ହେଲା କେଜାଣି ସଚିବ ରାଜ କିଶୋର ଭୁଜବଳ ବିଭାଗୀୟ ସମୀକ୍ଷା ସଭାରେ ମୋତେ ପ୍ରଶ୍ନ କଲେ, "ଡ଼କ୍ଟର ପାଠୀ ଆପଣ ତ ଦକ୍ଷିଣ ଓଡ଼ିଶାର କଳା ଓ ସଂସ୍କୃତିର ଭୂୟସୀ ପ୍ରଶଂସା କରି କହିଥାନ୍ତି, ଆପଣ ତା'ର ଯଥୋଚିତ ପ୍ରମାଣ ମୋତେ ଦେଇପାରିବେ ? ମୁଁ ସଂସ୍କୃତି ବିଭାଗର ସଚିବ ଭାବରେ ସେସବୁ ଅନୁଭବ କରିବାକୁ ଚାହେଁ" ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଫେରାଇ କହିଲି ଯଦି ସଚିବ ମହାଶୟ ନିଜ କାର୍ଯ୍ୟବ୍ୟସ୍ତତା ମଧ୍ୟରୁ ଦୁଇତିନି ଦିନର ସମୟ ବାହାର କରିପାରିବେ, ତାହେଲେ ସେ ନିଜେ ସ୍ୱଚକ୍ଷୁରେ କଳାର ବିପୁଳ ବିଭବକୁ ଉପଭୋଗ କରିପାରିବେ । ମନେ ହେଲା ଭୁଜବଳ ମୋ କଥାର ମର୍ମ ଘେନିଲେ । ତିନି ଚାରିଦିନ ପରେ ସଚିବଙ୍କ ଗଞ୍ଜାମ ଜିଲ୍ଲା ଗସ୍ତକ୍ରମ ସ୍ଥିର ହେଲା । ସେ ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିରର ଭିତ୍ତିଚିତ୍ର ଦେଖି ବାଟରେ କୃଷ୍ଣସାର ମୃଗ ସେକଂଚୁଆରୀ ଉପଭୋଗ କରି, ପୁରୁଷୋତ୍ତମ ପୁରଠାରେ ଓଷାକୋଠି ଶାଳର ଚିତ୍ରାବଳୀଗୁଡ଼ିକ ଉପରେ ନଜର ପକାଇ ସନ୍ଧ୍ୟାସୁଦ୍ଧା ନରେନ୍ଦ୍ର ପୁରରେ ପହଞ୍ଚିବେ । ଦଳରେ ସାମିଲ ହୋଇଥିଲେ ସଚିବ ଓ ତାଙ୍କ ବ୍ୟକ୍ତିଗତ ସହାୟକ ଗୋଟିଏ ଗାଡ଼ିରେ, ଅନ୍ୟ ଗୋଟିଏ ଗାଡ଼ିରେ କ୍ରୀଡ଼ା ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି ଓ ତାଙ୍କର ସହକାରୀ ଅଫିସର୍, ତୃତୀୟ ଗାଡ଼ିରେ ପାଣି, ପଣା, ଖାଦ୍ୟ ପାନୀୟ ପଇଡ଼, ଫେଣ୍ଟା ସମେତ ଆଉ ଜଣେ ଅଫିସର ଏବଂ ଚତୁର୍ଥ ଗାଡ଼ିରେ ପ୍ରତ୍ନତତ୍ତ୍ୱ ବିଭାଗର କ୍ୟୁରେଟର, ମୋର ସହକର୍ମୀ ଓ ବନ୍ଧୁ ବିଜୟ କୁମାର ରଥ ଓ ମୁଁ । ସଚିବଙ୍କ ଗସ୍ତକ୍ରମର ପଟାଟୋପ ହେବ ଏବଂ ତହିଁରେ ବିଜୟ ରଥ ଓ ମୋର ସଂପୃକ୍ତିକୁ ଲକ୍ଷ୍ୟ କରି ଆମ ବିଭାଗର ବନ୍ଧୁ ଅଫିସର ଅସୂୟାପ୍ରବଣ ହେଇ ଉଠିଲେ । ମନେ ମନେ ଭାବିଲେ ଏ ଗଞ୍ଜାମିଆ ଦି'ଜଣ ସେକ୍ରେଟାରୀଟାକୁ ସାରିଦେଲେ, ପକେଟରେ ପକେଇ ସାରିଲେଣି ।

ପାଇଲଟ୍ କାର୍ ଭଳି ଆମ ଗାଡ଼ି ସବା ଆଗରେ । ବାଟରେ ଯାହା କିଛି ଦର୍ଶନୀୟ ସ୍ଥାନ ପଡ଼ିଲା ଆମେ ଅଟକିଲୁ । ପଛକୁ ପଛ ହେଇ ସମସ୍ତେ ଅଟକିଲେ । ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିରର ଭିତ୍ତିଚିତ୍ରର ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱ ସଂପର୍କରେ କହିସାରି

Digitized by srujanika@gmail.com

ତା'ର ଉପଯୁକ୍ତ ରକ୍ଷଣାବେକ୍ଷଣର ଆବଶ୍ୟକତା ପ୍ରତି ମୁଁ ସଚିବଙ୍କ ଦୃଷ୍ଟି ଆକର୍ଷଣ କରନ୍ତେ ସିଏ ମୋ କଥାକୁ ଲେଖି ରଖିବା ପାଇଁ ତାଙ୍କ ବ୍ୟକ୍ତିଗତ ସହାୟକଙ୍କୁ ଆଦେଶ ଦେଲେ । ସେଭଳି ପୁରୁଷୋତ୍ତମ ସନ୍ନିକଟ ଜଉଗଡ଼ଠାରେ ଅଶୋକଙ୍କ ଶିଳାଲିପିକୁ ଆଧାର କରି ବିଜୟ ରଥ ତାଙ୍କ ପାଣ୍ଡିତ୍ୟପୂର୍ଣ୍ଣ ବୟାନ ଦେଲେ ଓ ତା'ର ସୁରକ୍ଷା ପାଇଁ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗକୁ ଅନୁରୋଧ କରିବା ପାଇଁ ଭୁଜବଳ ସାହେବଙ୍କୁ ଜଣେଇଲେ ।

ଖରାବେଳେ ବିଲ ମଝିରେ ଏକରକମ ଦଉଡ଼ାଧାପଡ଼ା କରି କୃଷ୍ଣସାର ମୃଗ ଦଳଙ୍କ ପିଛା କରିବା ଏହି ଗସ୍ତର କୌତୂହଳୋଦ୍ଦୀପକ ଘଟଣା ଥିଲା । ଆଗରେ କୃଷ୍ଣସାରପଲ ଓ ପଲ ପଛରେ ସଂସ୍କୃତି ସଚିବ (ଏଠାରେ ପର୍ଯ୍ୟଟନ ସଚିବ କହିବା ଅଧିକ ସମୀଚୀନ ହେବ) । ସଚିବଙ୍କ ପଛରେ ଅଙ୍ଗରକ୍ଷକ ଭଳି ବିଜୟ ରଥ ଓ ମୁଁ ଏବଂ ଆମ ପଛରେ ଦଳର ଅନ୍ୟାନ୍ୟ ସଭ୍ୟ । ମୃଗଙ୍କ ପିଛା ଏଭଳି ଧାବମାନ ହେବା ଶୀତତାପ ନିୟନ୍ତ୍ରିତ କୋଠରିରେ ଦିନର ପ୍ରମୁଖ ସମୟତକ କଟାଉଥିବା ଉଚ୍ଚପଦସ୍ଥ ଅଫିସରଙ୍କ ପକ୍ଷେ ନିଶ୍ଚିତ ଭାବେ ଏକ ଅବ୍ୟାପାର । ଆମେ ସମସ୍ତେ ରାମାୟଣରୁ ଅବଗତ ହେଇସାରିଛେ ଯେ କିଭଳି ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ର ମାୟାମୃଗ ପଛରେ ଧାଇଁ ନୟାନ୍ତ ହେଇଥିଲେ । ଓଡ଼ିଶା ସରକାରଙ୍କ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ସଚିବ ହେଲେ ବି ଭୁଜବଳ ମହାଶୟ ଜଣେ ସାଧାରଣ ମନୁଷ୍ୟ ମାତ୍ର । ଘୁମୁସରର ବିସ୍ତୃତ ମୁକ୍ତ କେଦାର ଶ୍ରେଣୀ ମଧ୍ୟରେ ହେଇ ଦିଶି ପରମୁହୂର୍ତ୍ତରେ ଅଦୃଶ୍ୟ ହୋଇଯାଉଥିବା ଏବଂ ମାୟାମୃଗ ଯୁଥର ଭ୍ରମ ସୃଷ୍ଟି କରୁଥିବା କୃଷ୍ଣସାରଗୁଡ଼ିକୁ ଆମ ଦଳର କ୍ରୀଡ଼ା ନିର୍ଦ୍ଦେଶକ ସମେତ ଅନେକ ସଭ୍ୟ ଠାବ କରି ନପାରି ସଚିବଙ୍କୁ ସନ୍ତୁଷ୍ଟ କରିବା ପାଇଁ ହେଇ ଗଲା, ଗଲା, ଯାଉଛି, ଯାଉଛି ବୋଲି ମିଛରେ କହି ବାହାବା ନେବାର ଅପଚେଷ୍ଟା ସରକାରୀ ବ୍ୟବସ୍ଥା ଭିତରେ ଗ୍ରହଣୀୟ ହେଲେ ସୁଦ୍ଧା ତୋଷାମଦକାରୀଙ୍କ ବାରବାଟୀ ଚାଷ କେତେ କରି ହାସ୍ୟାସ୍ପଦ ସେଦିନ ସ୍ପଷ୍ଟ ହୋଇଗଲା ।

ନରେନ୍ଦ୍ରପୁରଠାରେ କଳାକେନ୍ଦ୍ର ପରିଦର୍ଶନ ସେ ଦିନର ଶେଷ ପର୍ଯ୍ୟାୟ ଗସ୍ତକାର୍ଯ୍ୟକ୍ରମର ସ୍ମରଣୀୟ ପ୍ରସ୍ଥ ଥିଲା । କଳାକେନ୍ଦ୍ରର ପ୍ରତିଷ୍ଠାତା ଓ ସଂଚାଳକ ଭଗବାନ ସାହୁଙ୍କୁ ଆଗରୁ ସଚିବଙ୍କ ଗସ୍ତ ସଂପର୍କରେ ସୂଚନା ଦେଇ ଭବ୍ୟ ଅଭ୍ୟର୍ଥନାର ଆୟୋଜନ କରିବା ପାଇଁ ଆମେ ଚେତେଇ ଦେଇଥିଲୁ । ନରେନ୍ଦ୍ରପୁର ଦାଣ୍ଡରେ ଆମ ଗାଡ଼ି ପଟୁଆର ପହଞ୍ଚୁ ନ ପହଞ୍ଚୁଣୁ ରାସ୍ତାଧାରରେ ସଚିବଙ୍କ ଆଗମନକୁ ଅପେକ୍ଷା କରି ରହିଥିବା ଶଙ୍ଖୁଆମାନେ ଶଙ୍ଖନାଦ କରି ପରିବେଶକୁ ଉତ୍ସବମୁଖର କରିଦେଲେ । ତା'ପରେ ସେମାନେ ସଚିବଙ୍କୁ କଳାକେନ୍ଦ୍ର ଭିତରକୁ ପାଛୋଟି ନେଇ ରଣପା ଓ ଢ଼ୋଲ ବାଦନ ଦେଖାଇଲେ । ସଚିବ ଏସବୁ ଭବ୍ୟ ଆଡ଼ମ୍ବର ଓ କଳାକୌଶଳ ଅବଲୋକନ କରି ଉଲ୍ଲସିତ ହେଲେ । ମୋତେ କହିଲେ ବୁଝିଲେ ଡକ୍ଟର ପାଠୀ ଆଜି ଦିନକ ଭିତରେ ମୁଁ

Digitized by srujanika@gmail.com

ଯାହା ସବୁ ଅନୁଭବ କଲି ସେତିକିରୁ ଅନୁମାନ କରିହେଉଛି ଆଗାମୀ ଦିନମାନଙ୍କରେ ଆହୁରି କେତେ କ'ଣ ଅପୂର୍ବ ବିଭବ ଗଞ୍ଜାମ ଜିଲ୍ଲାର କଳା ପରମ୍ପରା ଆମ ପାଇଁ ସଞ୍ଚିତ କରି ରଖିଛି । ଦକ୍ଷିଣ ଓଡ଼ିଶା ଗସ୍ତ ବିବରଣୀ ଏଇଠି ଏତିକିରେ ସମାପ୍ତ କରି ମୁଁ ଏବେ ଫେରିଯାଉଛି ଆଉ ଏକ ଗସ୍ତର ଭାବମୟ ସନ୍ଦର୍ଭ ପାଖକୁ ।

ମୁଁ ଅନୁମାନ କରୁଛି ପାଠକେ ନିଶ୍ଚିତ ଭାବେ ହରିଆନାର ସୁରଜକୁଣ୍ଡ ହସ୍ତଶିଳ୍ପ ମେଳା ସଂପର୍କରେ ସଚେତନ ଥିବେ । ସେ ବର୍ଷର ମେଳାର ଥୀମ୍ ଥାଏ ଓଡ଼ିଶା । ସେହି ଉପଲକ୍ଷେ ଓଡ଼ିଶା ସରକାରଙ୍କ ତରଫରୁ କ'ଣ ସବୁ ବ୍ୟବସ୍ଥା କରାଯିବ- ସେଇନେଇ ଆଲୋଚନା କରିବାକୁ ସଚିବ ଭୁଜବଳ ଓ ତାଙ୍କ ଟେକ୍‌ନିକାଲ୍ ଅଫିସର୍ ଭାବେ ମୁଁ ଗୋଟିଏ ଆମ୍ବାସଡ଼ର୍ କାରରେ ସୁରଜକୁଣ୍ଡ ଯାଉଥାଉ । ମୁଁ ଡ୍ରାଇଭର ପାଖ ସିଟ୍‌ରେ ବସିଥାଏ ଆଉ ସଚିବ ବସିଥାନ୍ତି ପଛ ସିଟ୍‌ରେ । ଗାଡ଼ି କିଛିବାଟ ଗଲାପରେ ମୁଁ ମୋର ସଦ୍ୟପ୍ରକାଶିତ ଗୋଟିଏ ଇଂରାଜୀ ବହି 'ଟ୍ରେଡିସନାଲ୍ ପେଣ୍ଟିଙ୍ଗ୍‌ସ୍ ଅଫ୍ ଓଡ଼ିଶା' ଖଣ୍ଡିଏ ସଚିବଙ୍କୁ ଉପହାରସ୍ୱରୂପ ତାଙ୍କ ହାତକୁ ବଢ଼େଇ ଦେଲି । ବହିଟି ଦିଲ୍ଲୀରେ ଛପା ହେଇଥାଏ । ପ୍ରକାଶ କରିଥାନ୍ତି ୱାର୍କିଙ୍ଗ୍ ଆର୍ଟିଷ୍ଟ୍‌ସ୍ ଆସୋସିଏସନ୍ । ବହିଟିର ପରିଚ୍ଛନ୍ନ ମୁଦ୍ରଣ ଓ ଗୁଣାତ୍ମକ ଛାପା ସଚିବଙ୍କୁ ପ୍ରଭାବିତ କଲା । କିଭଳି ବହିଟି ଛାପା ହେଉଛି ଏବଂ ଛାପିବା ପାଇଁ କେତେ ଅର୍ଥ ବିନିଯୋଗ କରାଯାଇଛି ତାହା ସେ ଜାଣିବାକୁ ଚାହିଁଲେ । ମୋ ଜି.ପି.ଏଫ୍ ଟଙ୍କାରୁ ବହି ଛପା ହେଇଥିବା କଥା ଶୁଣି ସେ ବିସ୍ମିତ ହେଲେ ଓ ମୋ ପ୍ରତି ତାଙ୍କ ସହାନୁଭୂତି ପ୍ରକାଶ କଲେ । ମୋ ଖର୍ଚ୍ଚର କିଛି ଅଂଶ ଭରଣା କରିବା ଉଦ୍ଦେଶ୍ୟରେ ସେ ପର୍ଯ୍ୟଟନ ବିଭାଗ ପକ୍ଷରୁ ବିଦେଶୀ ପର୍ଯ୍ୟଟକଙ୍କୁ ଉପହାର ଦେବା ପାଇଁ ଅଢ଼େଇଶହ ବହି କିଣିବା ପାଇଁ ନିଷ୍ପତ୍ତି ନେଲେ । ଜଣେ ସଚିବଙ୍କ ଏତାଦୃଶ ବିଚାରବନ୍ତ ନିଷ୍ପତ୍ତିରେ ମୁଁ ଅଭିଭୂତ ହୋଇଯାଇଥିଲି । ତାପରେ ସଚିବ ମହାଶୟ ମୋ ବହି ଓଲଟାଇବାରେ ଲାଗିଲେ । ଗାଡ଼ି ସୁରଜକୁଣ୍ଡ ମେଳା ସ୍ଥାନ ଆଡ଼େ ଗଡ଼ି ଚାଲିଲା ।

କିଛି ସମୟ ନିରବରେ କଟିବା ପରେ ସଚିବଙ୍କ ପ୍ରଶ୍ନରେ ମୁଁ ବୁଲିପଡି ପଛକୁ ଅନାଇଲି । ସଚିବଙ୍କ ପ୍ରଶ୍ନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଆଚ୍ଛା ଡ଼କ୍ଟର ପାଠୀ କହିଲେ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ ମଧ୍ୟରୁ କେଉଁ ବିଭାଗଟି ଭଲ ? ପର୍ଯ୍ୟଟନ ବିଭାଗ କାର୍ଯ୍ୟରେ ଆସିଛି, ପୁଣି ସେହି ବିଭାଗ ମୋର ଅଢ଼େଇଶହ ବହି କିଣି ସାରିଲାଣି, ଏଣୁ ଉତ୍ତର ଫେରାଇ କହିଲି, 'ସାର୍ ! ପର୍ଯ୍ୟଟନ ବିଭାଗ' । ମୋ ଉତ୍ତର ସଚିବଙ୍କ ନାପସନ୍ଦ ହେଲା । ସେ ମୋତେ ଚେତେଇ ଦେବା ପାଇଁ ମତ ଦେଲେ ଯେ ସଂସ୍କୃତି ବିଭାଗ ହିଁ ଅତ୍ୟନ୍ତ ଉପାଦେୟ ବିଭାଗ । ସେହି ବିଭାଗରେ ଯେତେ ପଣ୍ଡିତ, ଗବେଷକ, ଶିଳ୍ପୀ ଓ ସଂଗୀତଜ୍ଞ ଅଛନ୍ତି ସେ ତୁଳନାରେ ପର୍ଯ୍ୟଟନ ବିଭାଗ ନିହାତି ସାଧାରଣ ଓ ତୁଚ୍ଛ । ସଚିବଙ୍କ କଥାପଦକ ମୋତେ

Digitized by srujanika@gmail.com

ଲଜ୍ଜିତ କରିଦେଲା । ସଂସ୍କୃତି ବିଭାଗର କର୍ମଚାରୀ ହେଇ ନିଜ ବିଭାଗକୁ ଠିକ୍ ଭାବେ ଆକଳନ କରି ନପାରିଥିବାରୁ ମୁଁ ମନେମନେ ଦୁଃଖିତ ମଧ ହେଲି । କିନ୍ତୁ ସଂସ୍କୃତି ବିଭାଗରେ କାର୍ଯ୍ୟ କରିବା ଭିତରେ ସବୁଠାରୁ ଯନ୍ତ୍ରଣାଦଗ୍ଧ ଅନୁଭବ ହେଲା ପାଣ୍ଡିତ୍ୟ ଓ ପ୍ରତିଭାର ଅନାଦର । ତେଣୁ ସାହସ ସଂଚୟ କରି କହିଲି, ''ସାର୍ ! ସଂସ୍କୃତି ବିଭାଗ ପର୍ଯ୍ୟଟନ ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ ମନେହେଲେ କ'ଣ ହେବ, ମୁଁ ଗୋଟିଏ ଡିଗ୍ରୀ କଲେଜର ଅଧକ୍ଷ ଥାଇ ସୁଦ୍ଧା ଦ୍ୱିତୀୟଶ୍ରେଣୀ ଅଫିସରଙ୍କ ଦରମା ପାଉଛି- ଏହାଠାରୁ ବଳି ଦୁର୍ଭାଗ୍ୟ ଆଉ କ'ଣ ବା ହେଇପାରେ ?''

ମୋ ଉତ୍ତର ଭିତରେ ସଜ ଫୁଲ ମଧରେ ଗୋବର ପୋକର ଉପସ୍ଥିତି ଭଳି ଦୟନୀୟ ସ୍ଥିତିର ଅବବୋଧ ସଚିବ ମହାଶୟଙ୍କ ପ୍ରଶାସନିକ ପାରିବାର ପଣିଆକୁ ଦୋହଲାଇଦେଲା । ସେ ମୋ କଥାକୁ ସହଜରେ ହଜମ କରି ନପାରି ପୁଣି ମୋ ଉତ୍ତରର ସତ୍ୟାସତ୍ୟ ମୋଠାରୁ ଜାଣିବାକୁ ଚାହିଁଲେ । ମୁଁ ଆଉ ଅଧିକା କ'ଣ ବା କରିପାରିଥାନ୍ତି, ମୋ କଥାକୁ ଆଉଥରେ ଦୋହରାଇଲି । ସଚିବ ନିଜ ବିଭାଗରେ ବର୍ଷ ବର୍ଷ ଧରି ବୁଢ଼ିଆଣିଜାଲ ଭଳି ତିଷ୍ଠି ରହିଥିବା ଅବିମୃଶ୍ୟତାକୁ ପ୍ରତିହତ କରିବା ପାଇଁ ମୋତେ ପ୍ରତିଶ୍ରୁତି ଦେଇ କହିଲେ ଆପଣ ଭୁବନେଶ୍ୱର ଫେରିଲା ବେଳକୁ ଅଧକ୍ଷ ପଦବୀଟି ପ୍ରଥମ ଶ୍ରେଣୀ ପାହ୍ୟାକୁ ଉନ୍ନୀତ ହୋଇ ସାରିଥିବ । ଆମେ ଏସବୁ କଥା ହେଉଥିବା ଦିନଟି ଥିଲା ଶନିବାର । ସଚିବ ରବିବାର ଦିନ ଭୁବନେଶ୍ୱର ଫେରି ସୋମବାର ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଅଧୀକ୍ଷକ ହରିଶ୍ଚନ୍ଦ୍ର ଦାସଙ୍କୁ ସଚିବାଳୟରେ ତାଙ୍କ ଅଫିସକୁ ଡାକି ସଂସ୍କୃତି ବିଭାଗର ସଂଗ୍ରହାଳୟ, ଅଭିଲେଖାଗାର, ପ୍ରତ୍ନତତ୍ତ୍ୱ ବିଭାଗ, ସଂଗୀତ ଓ କଳା ମହାବିଦ୍ୟାଳୟର ଅଧକ୍ଷମାନଙ୍କ ପାହ୍ୟାକୁ ଦ୍ୱିତୀୟ ଶ୍ରେଣୀରୁ ପ୍ରଥମ ଶ୍ରେଣୀକୁ ଏବଂ ଅଧାପକମାନଙ୍କୁ ଦ୍ୱିତୀୟ ଶ୍ରେଣୀ ଜୁନିଅରରୁ ସିନିଅର ପଦବୀକୁ ପ୍ରମୋସନ୍ ଦେବା ପାଇଁ ପ୍ରସ୍ତାବଟିଏ ପ୍ରସ୍ତୁତ କରିବା ପାଇଁ କହିଛନ୍ତି । ତାପରେ ଫାଇଲ୍ ସଚିବଙ୍କ ଟେବୁଲ୍‌ରୁ ଗତି କରିବା ଆରମ୍ଭ କରିଛି ।

ଆମମାନଙ୍କ ଭାଗ୍ୟାକାଶରେ ଆଲୋକର ରେଖା ବିକଶିତ ହେବାକୁ ଯାଉଥିବାବେଳେ ସଚିବ ମହାଶୟଙ୍କର ଅନ୍ୟ ବିଭାଗକୁ ବଦଳି ହୋଇଯାଇଛି । ମନେହେଲା ସକାଳୁ ସୂର୍ଯ୍ୟୋଦୟର ନିରୀକ୍ଷଣ ପରେ କଳାମେଘ ଘୋଟିଆସି ଆଲୋକିତ ଆକାଶକୁ ବିଷର୍ଣ୍ଣତାରେ ଛାଇ ଦେଇଛି । ତାପରେ ସଚିବ ହୋଇ ଯୋଗ ଦେଇଛନ୍ତି ସମର ବଲ୍ଲଭ ମହାପାତ୍ର । ମହାପାତ୍ର ମହାଶୟ ଚେହେରା ଦୃଷ୍ଟିରୁ ଯେଭଳି ଅଣ-ସ୍ୱର୍ଣକାତର ଲାଗନ୍ତି କର୍ମପ୍ରବଣତା ପରିମାପକରେ ତାହା ନୁହଁନ୍ତି । ସମରବଲ୍ଲଭ ଆମମାନଙ୍କ ପ୍ରତି ସ୍ନେହଶୀଳ ଥିଲେ ଏବଂ ଆମର ସମସ୍ୟାକୁ ନେଇ ସଚେତନ ଥିଲେ । ରାଜ୍ୟ ସଂଗ୍ରହାଳୟର ହରିଶ୍ଚନ୍ଦ୍ର ଦାସ, ଅଭିଲେଖାଗାରର ଅଧୀକ୍ଷକ ମହେଶ ପ୍ରସାଦ ଦାଶ, ପ୍ରତ୍ନତତ୍ତ୍ୱର ପ୍ରଶାନ୍ତ

Digitized by srujanika@gmail.com

କୁମାର ରାୟ ଏବଂ ମୁଁ ମିଳିମିଶି ସମର ବଲ୍ଲଭଙ୍କ ପାଖରେ ପହଞ୍ଚି ଗୁହାରି କଲୁ । ଆଗରୁ ଥିବା ଦରମା ସମସ୍ୟା ସହିତ କଥା ସାଙ୍ଗରେ ଲଥା ଭଳି ହରିଶ୍ଚନ୍ଦ୍ର ଆଉ ଗୋଟିଏ ନିବେଦନ ଯୋଡ଼ିଲେ । କଥାହେଲା ହରିଶ୍ଚନ୍ଦ୍ର ରାଜ୍ୟ ସଂଗ୍ରହାଳୟରେ ଆଉ ଅଧୀକ୍ଷକ (ସୁପରିଟେଣ୍ଡେଣ୍ଟ) ହେଇ ରହିବା ପାଇଁ ଚାହୁଁ ନାହାନ୍ତି । ସେ ଚାହାନ୍ତି ନିର୍ଦ୍ଦେଶକ ହେବେ । ଆଗରୁ ରାଜକିଶୋର ଭୁଜବଳ ହରିଶ୍ଚନ୍ଦ୍ରଙ୍କୁ ସତର୍କ କରି କହିଥିଲେ ଯେ ସେ ନିର୍ଦ୍ଦେଶକ ବୋଲାଇଲେ ସଂଗ୍ରହାଳୟ, ଅଭିଲେଖାଗାର ଓ ପ୍ରତ୍ନତତ୍ତ୍ୱ ବିଭାଗକୁ ପରିଚାଳନା କରୁଥିବା ସଂସ୍କୃତି ନିର୍ଦ୍ଦେଶକଙ୍କୁ ତାହେଲେ ଡାଇରେକ୍ଟର ଜେନେରାଲ୍ ବା ମହାନିର୍ଦ୍ଦେଶକ କହିବାକୁ ପଡ଼ିବ ଏବଂ ଦରମାଜନିତ ମୂଳ ସମସ୍ୟାଟି ଗୌଣ ହେଇପଡ଼ିବ । ଉପଲକ୍ଷ୍ୟ ଛଳରେ ଭୁଜବଳ ମହାଶୟ ପୁଣି ଚେତେଇ ଦେଇଥିଲେ ଯେ ଇଂଲଣ୍ଡର ପୋଲିସ ବିଭାଗର ମୁଖ୍ୟଙ୍କୁ ଚିଫ୍ କନ୍‌ଷ୍ଟେବଲ୍ କୁହାଯାଉଛି ଏବଂ ଏହି ପଦବୀ ତାଙ୍କ ପ୍ରତିପତ୍ତିକୁ କୌଣସି ଗୁଣରେ ନ୍ୟୂନ କରିଦେଉନାହିଁ । ହରିଶ୍ଚନ୍ଦ୍ର ପୁଣି ମନେମନେ ଭାବୁଥିଲେ ଡ୍ରଇଁମାଷ୍ଟର୍ ଦିନନାଥ କ୍ୟୁରେଟର୍ ପଦବୀରେ ମୋ ସାଙ୍ଗରେ ଦ୍ୱିତୀୟ ଶ୍ରେଣୀ ଅଫିସର ହେଇ କାମ କରୁଥିଲା । ମୁଁ କିନ୍ତୁ ତା'ର ବସ୍ ଥିଲି । ଏବେ କ୍ୟୁରେଟର୍ ପୋଷ୍ଟଗୁଡ଼ିକ ତ ପ୍ରଥମ ଶ୍ରେଣୀକୁ ଉନ୍ନୀତ ହେଉନି, ଡ୍ରଇଁମାଷ୍ଟର୍ କିମିତି ପ୍ରଥମ ଶ୍ରେଣୀ ସୁଯୋଗଟି ମାରିନେବ– ଏଭଳି ଅନେକ ଉପକଥା ଓ କଥା ସାଙ୍ଗରେ ବ୍ୟଥା ମୂଳ ଦରମା ସମସ୍ୟା ସହିତ ଯୋଡ଼ି ହୋଇଯାଇ ପରିସ୍ଥିତିକୁ ଜଟିଳ କରିଦେଲା ।

ସଚିବଙ୍କ ଅନୁସନ୍ଧାନରୁ ଜଣାଗଲା ଯେ ଆମ ଦରମା ଫାଇଲ୍‌ଟି ସରକାରଙ୍କ ବିଭିନ୍ନ ଦପ୍ତରର ଖସଡ଼ା ଗଳି ଦେଇ ଶେଷରେ ମୁଖ୍ୟଶାସନ ସଚିବ ଜ୍ଞାନ ଚାନ୍ଦ୍‌ଙ୍କ ଟେବୁଲ୍‌ରେ ପହଞ୍ଚିଛି । ଜ୍ଞାନ ଚାନ୍ଦ୍ ଫାଇଲ ଉପରେ କାର୍ଯ୍ୟାନୁଷ୍ଠାନ କରିବାକୁ ଯିବା ଆଗରୁ ମହାବିଦ୍ୟାଳୟର ଅଧକ୍ଷମାନଙ୍କ ଯୋଗ୍ୟତା ସଂପର୍କରେ ତଲାସି ଦେଇଛନ୍ତି । ସେତେବେଳକୁ ଅଧକ୍ଷ ଥାଆନ୍ତି ଖଲ୍ଲିକୋଟରେ ବ୍ରୋଞ୍ଜ୍ ଭାସ୍କର୍ଯ୍ୟ ବିଶାରଦ ବିପ୍ରଚରଣ ଏବଂ ସଂଗୀତ ମହାବିଦ୍ୟାଳୟରେ ଓଡ଼ିଶୀ ନୃତ୍ୟର ଆଦିଗୁରୁ ପଙ୍କଜ ଚରଣ । ଜ୍ଞାନ ଚାନ୍ଦ୍ ଆଗରୁ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଶାସକ ଦାୟିତ୍ୱରେ ଥାଇ ହୃଦୟଙ୍ଗମ କରିସାରିଥିଲେ ଯେ ଗୋଟିଏ ମହାବିଦ୍ୟାଳୟର ଅଧକ୍ଷ ପିଏଚ୍.ଡି. ପାଇଥାନ୍ତୁ ବା ନଥାନ୍ତୁ ଅନ୍ତତଃ ଏମ୍.ଏ. ପାସ୍ କରିଥିବା ଦରକାର । ସ୍କ୍ରୀନ୍ ପରଦା ଟାଣିଲାବାଲା, ସାଇନ୍ ବୋର୍ଡ଼ ଲେଖିଲା ବାଲା, ପେଣ୍ଡୁ ଖେଳିଲାବାଲା, ଚିକେନ୍ ମସଲା ରାନ୍ଧିବାବାଲାଙ୍କୁ ନେଇ ତ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ । ଏଣୁ ଜ୍ଞାନ ଚାନ୍ଦ୍ ଏଠି ନିରୋଳା ଜ୍ଞାନ ଖୋଜିଲେ ପାଇବେ ବା କେଉଁଠି । ସମର ବଲ୍ଲଭ ଯେତେ କରି ମୁଖ୍ୟ ଶାସନ ସଚିବଙ୍କୁ ବୁଝେଇଲେ ବି ଫାଇଲ୍‌ରେ ସୁପାରିଶ କରିବା ପାଇଁ ସେ ଅମଙ୍ଗ ହେଲେ । ଅନ୍ତତଃ ଗ୍ରାଉଣ୍ଡ୍ ରିଏଲ୍‌ଟି ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା

Digitized by srujanika@gmail.com

ପାଇଁ ଜଣେ ଅଧ୍ୟକ୍ଷଙ୍କୁ ଭେଟିବା ସକାଶେ ମୁଖ୍ୟଶାସନ ସଚିବ ଚାହିଁଲେ । ଜ୍ଞାନ ଚାନ୍ଦ୍‌ଙ୍କୁ ଭେଟିବା ପାଇଁ ପ୍ରସ୍ତୁତ ରହିବାକୁ ସମର ବଲ୍ଲଭ ମୋତେ ଆଦେଶ ଦେଲେ ।

ମୁଁ ଆଗରୁ ସଚିବାଳୟରେ ଯୋଜନା ଓ ସମନ୍ୱୟ ବିଭାଗରେ କାମ କରୁଥିବାବେଳେ ପଡ଼ିଶା ଅଡ଼ିଶାରେ ଥିବା ମୁଖ୍ୟ ଶାସନ ସଚିବଙ୍କ ଦପ୍ତରକୁ ବିଭିନ୍ନ ଅଡୁଆ ତଡୁଆ କାମରେ ଯାଇଥିବା ହେତୁ ସଂଭ୍ରମ ସାମାନ୍ୟ ହଟିଯାଇଥିଲା । ତଥାପି ମନେହେଲା ଅନୁସଂସ୍ଥାନ ପାଇଁ ଏହା ଯେଉଳି ଅନ୍ୟ ଏକ ସାକ୍ଷାତକାର । ସଂସ୍କୃତି ସଚିବ ସମର ବଲ୍ଲଭ ମୋତେ ଆଗରୁ ସତର୍କ କରିଦେଇଥିଲେ ଯେ ମୁଖ୍ୟଶାସନ ସଚିବଙ୍କ ପ୍ରଶ୍ନର ଉତ୍ତରଗୁଡ଼ିକ ଇଂରାଜୀରେ ଦିଆଯିବ, ଉଚ୍ଚାରଣ ପରିଚ୍ଛନ୍ନ ହେବା ଦରକାର । ମୁଁ କେନ୍ଦ୍ରୀୟ ବିଦ୍ୟାଳୟ ବେଳର ମୋର ସହକର୍ମୀ ଇଂରାଜୀ ପି.ଜି.ଟି. ଲଡୁ କିଶୋର ପଣ୍ଡାଙ୍କୁ ସ୍ମରଣା କଲି ଯିଏ ଆମ ଗଞ୍ଜାମୀ ଉଚ୍ଚାରଣର 'ଗେରେଜ୍' କୁ 'ଗ..ରା...ଜ୍' କହୁଥିଲେ । ସାକ୍ଷାତକାର ବେଳେ ଜ୍ଞାନ ଚାନ୍ଦ୍‌ଙ୍କ ପାଖରେ ସମର ବଲ୍ଲଭ ବି ଉପସ୍ଥିତ ଥିଲେ । ଆଇ.ଏ.ଏସ୍. ପାଇବା ଆଗରୁ ସମର ବଲ୍ଲଭ ଇଂରାଜୀ ସାହିତ୍ୟର ଅଧ୍ୟାପକ ଥିଲେ । ସାକ୍ଷାତକାର ଭଲରେ ଭଲରେ ସରିଲା । ମୁଖ୍ୟଶାସନ ସଚିବଙ୍କ ଅଫିସ୍‌ରୁମ୍ ବାହାରେ ସମର ବଲ୍ଲଭ କହିଲେ, ବୁଝିଲ ଦିନନାଥ ! ତମ ଫାଇଲ୍ ଦସ୍ତଖତ ହେଲା ।

ଏବେ କଲେଜ ଗଢ଼ାଯିବା ବେଳର କଥା ଭାବିଲା ବେଳକୁ ଅପ୍ରମିତବଳ ଭୁଜବଳଙ୍କ ସାହାଯ୍ୟ ଯେତିକି ମନେପଡୁଛି ତାଙ୍କ ପ୍ରତି କୃତଜ୍ଞତାରେ ମନ ସେତିକି ଭରିଯାଉଛି । କୃତଜ୍ଞତାର ଅନ୍ୟ ଗୋଟିଏ ଖିଅ ଆପେ ଆପେ ସମର ବଲ୍ଲଭଙ୍କ ପ୍ରତ୍ୟୁତ୍ପନ୍ନମତିତା ସହିତ ଯୋଡ଼ି ହୋଇ ଯାଉଛି ।

Digitized by srujanika@gmail.com

# ୩୩. ଜୟନ୍ତ ପଣ୍ଡାର ପୃଥିବୀ ମାନଚିତ୍ର

ଜ୍ୟାକ୍ କିମିତି କେଜାଣି କେଉଁଠାରୁ ମୋ ସଂପର୍କରେ ଖବର ସଂଗ୍ରହ କଲା, ସେ ଚିକାଗୋରୁ ସିଧାସଳଖ ଦିଲ୍ଲୀ ହେଇ ଭୁବନେଶ୍ୱରରେ ପହଞ୍ଚି ଆମ କଳ୍ପନା କଲେଜରେ ହାଜର ହେଇଗଲା । ଦିନେ ସକାଳୁ ସକାଳୁ ମୁଁ କଲେଜକୁ ବାହାରିଛି ଅଚାନକ ତା ସହିତ ଭେଟ ହେଲା । ସେ ମୋ ସାଙ୍ଗରେ ମୋ ଅଫିସ୍ ରୁମ୍‌କୁ ଆସିଲା, ଆଉ ଆମେ ଦୁହେଁ ତା ପ୍ରକଳ୍ପ ବିଷୟରେ ଆଲୋଚନା କଲୁ । ସୁଇଡ଼େନ୍‌ରେ ରହୁଥିବା ତା'ର ଜଣେ ବନ୍ଧୁ ପାଖରୁ ମୋ ବିଷୟରେ ସେ ଜାଣିବାକୁ ପାଇଥିଲା ବୋଲି ମୋତେ ସୂଚନା ଦେଲା । ଏଣୁ ଏଣେ ତେଣେ ସାହାଯ୍ୟକାରୀ ଯୋଗାଡ଼ କରିବା ପାଇଁ ଚେଷ୍ଟା ନ କରି ସେ ସିଧା ଆସି ଭୁବନେଶ୍ୱର ପହଞ୍ଚିଛି । ତା' କଥା ଏବଂ ତା' ପ୍ରୟାସ ମୋତେ ଖୁବ୍ ପ୍ରଭାବିତ କଲା ।

ତା ପ୍ରକଳ୍ପ, କଳାପ୍ରକଳ୍ପ କହିବା ଅଧିକ ସମୀଚୀନ ହେବ, ବଡ଼ ଅଜବ ଧରଣର । ସେ ପୃଥିବୀ ମାନଚିତ୍ରରେ ଥିବା ପ୍ରତ୍ୟେକ ଦେଶକୁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପଶୁପକ୍ଷୀର ରୂପ ଦେବା ପାଇଁ ଚାହୁଁଥିଲା । ଧରାଯାଉ ଆଫ୍ରିକା ମହାଦେଶ, ତାହା ଯିମିତି ଜଣାଯିବ ଗୋଟିଏ ଅରଣା ମଇଁଷି (ବାଇସନ୍)ର ମୁଣ୍ଡଭଳି । ଅଷ୍ଟ୍ରେଲିଆ ମନେହେବ ଏକ କଇଁଚ ଏବଂ ୟୁରୋପ ମନେହେବ ଗୋଟିଏ ଧାବମାନ ଘୋଡ଼ା, ଯୁକ୍ତରାଷ୍ଟ୍ର ଆମେରିକା ହୁଏତ ଉଡ୍ଡୀୟମାନ ଏକ ଛଞ୍ଚାଣ । ତା'ର ଆଭିମୁଖ୍ୟ ହେଲା ଯେ ସେ ମାଟିର ଭୌତିକ ରୂପକୁ ଜୀବନ୍ତ କରିଦେବ । ମାଟି କେବଳ ଦେଶ ନୁହେଁ, ଯଦିଓ ମାଟି ଓ ଦେଶର ସଂପର୍କକୁ ନେଇ ବହୁତ କଥା କୁହାଯାଇଛି । ସେ କିନ୍ତୁ ଯେତେଥର ପୃଥିବୀ ମାନଚିତ୍ରଟିକୁ ନିରୀକ୍ଷଣ କରିଛି ଚଳଚିତ୍ରର ଦୃଶ୍ୟଭଳି ପ୍ରତ୍ୟେକ ଦେଶର ଆକାରପ୍ରକାର ତାଠାରେ ବଦଳି ବଦଳି ଯାଇଛି । ତା କଥା ଶୁଣି ମୋତେ ଲାଗିଲା ଏହା ଆକାଶରେ ମିଛେ ମିଛେ ସ୍ୱପ୍ନ ଦେଖିଲା ଭଳିଆ କଥା ବା ଭସା ମେଘର ମୁହୁର୍ମୁହୁଃ ବଦଳୁଥିବା ସ୍ଥାୟୀ ରୂପକୁ ମନରେ ବାନ୍ଧି ରଖିଲା ଭଳିଆ କଥା ।

ଜ୍ୟାକ୍‌ର ପରିକଳ୍ପନାକୁ ଏମିତି ଭାବରେ କହିଦେଲେ ଯୋଜନାଟି ସରଳ ମନେ ହେଉଛି କିନ୍ତୁ ତା ଭିତରେ ଲୁକ୍କାୟିତ ଭାବ ବା ଦର୍ଶନ ଅତି ଜଟିଳ । ସିଏ କହିବା ପାଇଁ ଚାହୁଁଥିଲା ଯାହା ଦୃଶ୍ୟମାନ ରୂପ ତାହା ବାସ୍ତବ ରୂପ ନୁହେଁ । ପ୍ରତ୍ୟେକ ସୃଷ୍ଟ-ଅନିତ୍ୟ-

Digitized by srujanika@gmail.com

ରୂପ ଭିତରେ ଗୋଟିଏ ଅସଲ ନିତ୍ୟ - ରୂପ ଲୁଚି ରହିଛି । ତାହାହିଁ ବସ୍ତୁର ସାରବତ୍ତା । ସେହି ଅସଲରୂପର ସେ ଉଦ୍‌ଘାଟନ କରିବାପାଇଁ ଚାହେଁ । ସେହି ଅସଲ ରୂପ ହିଁ ବସ୍ତୁର ମୌଳିକ ଚରିତ୍ର ଗଠନ କରେ । ଚରିତ୍ର ଏକ ଗୁଣବିଶେଷ ହେଉଥିଲେ ମଧ୍ୟ ତାକୁ ରୂପାନ୍ୱିତ କରିଦେଇ ହେବ । ଆଫ୍ରିକା ମହାଦେଶର ଆଦିମତା, ସେଠାକାର ଅଧିବାସୀମାନଙ୍କର ରଙ୍ଗ, ସେମାନଙ୍କ ଆଭିମୁଖ୍ୟ ସାଙ୍ଗରେ ତାଳମେଳ ଦେଲାଭଳି ରୂପଟିଏ ହେଲା ବାଇସନ୍ । ତା'ର କହିବା କଥା ଏହି ରୂପଟି ହେଉଛି ଭଗବାନଙ୍କର ରୂପ । ସେ ସମସ୍ତ ଦେଶଗୁଡ଼ିକୁ ଭଗବାନଙ୍କ ଅଭିପ୍ରେରିତ ରୂପରେ ସଜେଇ ଦେବା ପାଇଁ ଚାହୁଁଥିଲା । ସେ ଦେଶ ଦେଶ ମଧ୍ୟରେ ଅଯଥା ଭିନ୍ନତାକୁ ସ୍ୱୀକାର କରୁ ନଥିଲା । ପ୍ରଥମେ ପ୍ରଥମେ ତା କଳାପ୍ରକଳ୍ପକର ଉଦ୍ଦେଶ୍ୟ ବୁଝିବାରେ ଅସୁବିଧା ହେଲା । ସିଏ କେବଳ ଉପରଠାଉରିଆ ଭାବେ ଦେଶର ରୂପ ଗୁଡ଼ିକୁ ସ୍ଥିର କରିନାହିଁ । ସେଗୁଡ଼ିକ ତା'ର ଧ୍ୟାନସିଦ୍ଧ ରୂପ । ସେ ପୃଥିବୀ ମାନଚିତ୍ରକୁ ଆଖି ଆଗରେ ରଖି ଧ୍ୟାନସ୍ଥ ହୁଏ । ପୁଣି ଆଖି ବୁଜି ରୂପଗୁଡ଼ିକୁ ମାନସ ପଟରେ ଦେଖିବାକୁ ଚେଷ୍ଟା କରେ । ଏହା ତା'ର ଦିବ୍ୟଦର୍ଶନ ବା 'ଡିଭାଇନ୍ ଭିଜନ୍' । ଡିଭାଇନ୍ ଭିଜନ୍‌ରେ ଯେଉଁ ରୂପ ତା'ର ମାନସ ଚକ୍ଷୁରେ ଆବିର୍ଭୂତ ହୁଏ ତାକୁ ମାନଚିତ୍ର ଉପରେ ପକାଇ ମାନଚିତ୍ରର ଦନ୍ତୁରିତ ରେଖାବିନ୍ୟାସ ସାଙ୍ଗରେ ମିଳାଇବା ପାଇଁ ଚେଷ୍ଟାକରେ । ଯଦି ଉଭୟ ରୂପ ଉଭୟର ସାମଞ୍ଜସ୍ୟ ବହନ କରନ୍ତି ତା ହେଲେ ସିଏ ଧରିନିଏ ଡିଭାଇନ୍ ଭିଜନ୍‌ର ରୂପ ହିଁ ଦେଶର ଅସଲ ରୂପ ।

ମୁଁ ଏଣେ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ କାମରେ ବ୍ୟସ୍ତ ଥାଏ । ନିଶ୍ୱାସ ମାରିବାକୁ ବି ମୋର ସମୟ ନଥାଏ । ଜ୍ୟାକ୍‌ର ରୂପ ପ୍ରକଳ୍ପ ମୋତେ କିନ୍ତୁ ଖୁବ୍ ପ୍ରଭାବିତ କରିଥାଏ । ସନ୍ଧ୍ୟାବେଳେ ଟିକିଏ ଫୁରସତ ମିଳିଲେ ଆମେ କଲେଜ ବାଲ୍‌କୋନୀରେ ବସୁ । ଚାରିପାଞ୍ଚଜଣ କଲେଜ ପିଲା ବି ଆଗ୍ରହ ପ୍ରକାଶ କରି ଆମ ଆଲୋଚନାରେ ଭାଗ ନିଅନ୍ତି । ସେମାନଙ୍କ ଭିତରେ ଥାଆନ୍ତି ଜୟନ୍ତ ପଣ୍ଡା, ରଶ୍ମିରେଖା ଓ ସୁବ୍ରତ ମଲ୍ଲିକ । ମୁଁ ଚାହେଁ ସେମାନେ ଜ୍ୟାକ୍‌ର ରୂପପ୍ରକଳ୍ପର ଦାର୍ଶନିକତାକୁ ଭଲ ଭାବରେ ବୁଝନ୍ତୁ । ତାହେଲେ ଏହାକୁ କାର୍ଯ୍ୟକାରୀ କରିବାରେ ସେମାନେ ଜ୍ୟାକ୍‌ର ସହାୟକ ହେବେ । ଅଧିକାଂଶ ଶିଳ୍ପୀ ଉପରଠାଉରିଆ । ସେମାନେ ବାହ୍ୟରୂପର ଚମକରେ ମୋହଗ୍ରସ୍ତ ହୋଇ ଅନ୍ତର ଫେଡ଼ି ରୂପର ତତ୍ତ୍ୱ ପାଖରେ ପହଞ୍ଚି ପାରନ୍ତିନି । ଜ୍ୟାକ୍ ରୂପର ଆତ୍ମା କଥା କହୁଚି । ଜ୍ୟାକ୍ ଉଦ୍ୟମୀ ଯୁବକ । ତା ନହେଇଥିଲେ ସାତ ସମୁଦ୍ର ପାରି ହେଇ ଏଠି ପହଞ୍ଚି ନଥାନ୍ତା । ତିରିଶ ପାଖାପାଖି ବୟସ ହେବ । ଆମେରିକୀୟ, ବେଶ୍ ହୃଷ୍ଟପୁଷ୍ଟ ଚେହେରା । ଆମେ ତାକୁ କଳ୍ପନା ଛକର ଗୋଟିଏ ସାଧାରଣ ହୋଟେଲରେ ରଖେଇ ଦେଲୁ । ରୂପ ସନ୍ଧାନରେ ତ ସିଏ ମାତି ଥାଏ, ତେଣୁ ହୋଟେଲର ଭଲ ମନ୍ଦ ବାଛ ବିଚାରରେ ତା'ର ଆଗ୍ରହ ନଥିଲା । ଜ୍ୟାକ୍‌କୁ ସାହାଯ୍ୟ କରିବା ପାଇଁ ମୁଁ ଜୟନ୍ତକୁ କହିଲି ।

Digitized by srujanika@gmail.com

ଏମିତିରେ ରଶ୍ମି ଖୁବ୍ ସ୍ମାର୍ଟ ପିଲା । ରଶ୍ମି ଓ ଜୟନ୍ତ ପରସ୍ପରକୁ ଭଲ ପାଉଥିଲେ ଏଣୁ ରଶ୍ମି ଯାହା ଜୟନ୍ତ ତାହା ଭାବି ଜୟନ୍ତକୁ ଜ୍ୟାକ୍‌ର ମାନଚିତ୍ର କାର୍ଯ୍ୟରେ ଲଗାଇଲି । ସେତେବେଳକୁ ଭୁବନେଶ୍ୱରରେ ରୋଲ୍ କାନ୍‌ଭାସ୍ ମିଳୁ ନଥିଲା । ଏଣୁ ଜ୍ୟାକ୍ ଓ ଜୟନ୍ତ ଉଡ଼ାଜାହାଜରେ କଲିକତା ଯାଇ କାନ୍‌ଭାସ୍ ଓ ରଙ୍ଗନେଇ ଫେରିଲେ । ଜୟନ୍ତ ପାଇଁ ଏହା ଥିଲା ପ୍ରଥମ ବିମାନ ଯାତ୍ରା । ଏବଂ ଏହା କଲେଜ ପିଲାଙ୍କ ମଧ୍ୟରେ ଯଥେଷ୍ଟ ଉତ୍ସାହ ସୃଷ୍ଟି କରିପାରିଥିଲା । ସେତେବେଳକୁ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର କାମସବୁ ଷ୍ଟକ୍‌ହୋମ୍ ଚାଲି ଯାଇଥାଏ ଏବଂ ମୁଁ କଳ୍ପନା ଅଞ୍ଚଳରେ ଭଡ଼ାରେ ନେଇଥିବା ଘର ଖାଲି ପଡ଼ିଥାଏ । ଜୟନ୍ତ ସେଠି ମାନଚିତ୍ର କାମ ଆରମ୍ଭ କଲା ।

ଜ୍ୟାକ୍ ତା'ର ପରିକଳ୍ପନାର ଆଧାରରେ ପ୍ରସ୍ତୁତ କରିଥିବା ଶହ ଶହ ସ୍କେଚ୍ ତା'ସାଙ୍ଗରେ ଆଣିଥାଏ । ଜ୍ୟାକ୍ ଓ ଜୟନ୍ତ ପରସ୍ପର ବିଚାର ବିମର୍ଶ କରି କାମରେ ଆଗେଇଲେ । ସେହି ଭଡ଼ାଘରଟି ଧୀରେ ଧୀରେ ଗୋଟିଏ ଷ୍ଟୁଡ଼ିଓରେ ପରିଣତ ହେଇଗଲା । କଲେଜର ବହୁ ଜୁନିଅର୍ ପିଲା ସେଠି ପହଞ୍ଚିଲେ । ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ଆନ୍ତର୍ଜାତିକ ପ୍ରକଳ୍ପ ପରେ ଏହି ମାନଚିତ୍ର ପ୍ରକଳ୍ପ ଓଡ଼ିଶାର ଶିଳ୍ପୀମାନଙ୍କ ପାଖରେ କଲେଜର ସମ୍ମାନ ଆହୁରି ବଢ଼େଇ ଦେଇଥାଏ ।

ଜ୍ୟାକ୍ ତା ପ୍ରକଳ୍ପର ନାଁ ଦେଇଥାଏ 'ଜିଓ ଆର୍ଟ ଫେମିଲି ।' 'ବସୁଧୈବ କୁଟୁମ୍ବକଂ'ର ପରିକଳ୍ପନା । ତା'ର ଚିନ୍ତାରେ ତିନୋଟି କଥା । ଗୋଟିଏ ହେଲା ଭୂଗୋଳ, ଅନ୍ୟଟି କଳା ଓ ଶେଷରେ ପରିବାର । ଏ ଭିତରେ କୋଡ଼ିଏ ପଚିଶି ବର୍ଷ ବିତି ଗଲାଣି । ତଥାପି ଏଭଳି କଳାତ୍ମକ ଚିନ୍ତାଟିଏ ମୋ ନଜରକୁ ଆସିନି । ଶିଳ୍ପୀମାନେ ମାନଚିତ୍ରକୁ ନିଜ ଛବିରେ ବ୍ୟବହାର କରିବା ଦେଖାଯାଇଛି । ଉଡ଼ାଜାହାଜ ଉପରୁ ନିରୂପ ବା ଆବ୍‌ଷ୍ଟ୍ରାକ୍ଟ ଭଳି ଦେଖାଯାଉଥିବା ଦୃଶ୍ୟକୁ ଉଠେଇ ଆଣି ପ୍ରୟୋଗ କରିବା, ଗ୍ଲୋବ୍‌କୁ ନିଜ ଚିତ୍ର ମଧ୍ୟରେ ସ୍ଥାନ ଦେବା ଇତ୍ୟାଦି ପ୍ରଚେଷ୍ଟା ଦେଖାଯାଇଛି କିନ୍ତୁ କଳାରେ ପରିଣତ ହେଇଗଲା ପରେ ତାକୁ ପରିବାରର ଅଂଶ ଭାବେ ବିବେଚନା କରିବା ଦେଖାଯାଇନି । ଜ୍ୟାକ୍‌ର 'ଜିଓ ଆର୍ଟ ଫେମିଲି'ର ପରିକଳ୍ପନା ଭିତରେ ମାନବିକତାର ସନ୍ଧାନ ଏବଂ ତାରି ମାଧ୍ୟମ ଦେଇ ବିଶ୍ୱଭାବନାକୁ ଶ୍ରେୟ କରିବାର ପ୍ରଚେଷ୍ଟା ଅଭିନବ ।

ଜ୍ୟାକ୍ ସହିତ ବହୁଦିନ କଟେଇଲା ପରେ ଜଣାପଡ଼ିଲା ତା'ର ପ୍ରଚେଷ୍ଟାର ଅସଲ ଅନୁପ୍ରେରଣା ଲଣ୍ଡନଠାରେ ଥିବା ଗୋଟିଏ ଟ୍ରଷ୍ଟ୍ । କିଏ ଜଣେ ଗୋଟିଏ ଟ୍ରଷ୍ଟ୍ ଗଢ଼ି ସେଥିରେ କେତେ ନା କେତେ ବିଲିଅନ୍ ପାଉଣ୍ଡ ଜମା କରିଛି । ସେ ଲୋକର ଯଦିଓ ମୃତ୍ୟୁ ଘଟିଛି, ତଥାପି ତାର ଟ୍ରଷ୍ଟର ଆଭିମୁଖ୍ୟରେ ପରିବର୍ତ୍ତନ ଘଟିନାହିଁ । ଆଭିମୁଖ୍ୟ ହେଲା ଯେଉଁ ବ୍ୟକ୍ତି ପୃଥିବୀରେ ଈଶ୍ୱର ଅବତରିଛନ୍ତି ବୋଲି ପ୍ରମାଣ କରିଦେଇ ପାରିବ ସିଏ ଏହି

Digitized by srujanika@gmail.com

ଗଚ୍ଛିତ ଧନର ଅଧିକାରୀ ହୋଇପାରିବ । ଜ୍ୟାକ୍ ତା ପ୍ରକଳ୍ପ ମାଧ୍ୟମରେ ଦର୍ଶେଇ ଦେବାକୁ ଚାହେଁ ଯେ ଈଶ୍ୱର ଅବତରଣ କରିଛନ୍ତି । ସେହି ପୃଥିବୀରେ ଅର୍ଥକୁ ମାନବ ସେବାରେ ବିନିଯୋଗ କରିବାର ସମ୍ଭାବ୍ୟ ସଂକଳ୍ପ ନେଇ ଜ୍ୟାକ୍‌ର ଏହି ଅଭିନବ ପ୍ରକଳ୍ପ । ତା'ର ଚିତ୍ରଚିନ୍ତନ ଭିତରେ ଡିଭାଇନ୍ ଭିଜନ୍ ବା ଦିବ୍ୟ ଦର୍ଶନର ଆଭାସ ନିଶ୍ଚୟ ଅଛି । କଳା ସହିତ ଆଉ ଯେତେ ସବୁ ସର୍ଜନଶୀଳ ମାନବିକ ଅଭିବ୍ୟକ୍ତି ଯେତିକି ନିଃସ୍ୱାର୍ଥପର ଓ ଉତ୍ତରିତ ହେବ, ସେଥିରେ ସେତିକି ଦିବ୍ୟ କମ୍ପନ ଅନୁଭୂତ ହେବ ।

ଜ୍ୟାକ୍ ଓ ଜୟନ୍ତ ମାନଚିତ୍ର କାମ ସାରିବାକୁ ଆହୁରି ବାକି ଅଛି । ଖରାଦିନ ମାଡ଼ିଆସିଲା । ସେ ଜୟନ୍ତକୁ ସାଙ୍ଗରେ ନେଇ ଚିକାଗୋ ଫେରିଗଲା । ଜୟନ୍ତ ଯାହା କହିବା କଥା : ଚିକାଗୋରେ କୁଆଡ଼େ ଜ୍ୟାକ୍‌ର ପ୍ରକାଣ୍ଡ ଘର, ଷ୍ଟୁଡ଼ିଓ । ସେ ଅବିବାହିତ । ଘରେ ମା ଓ ଭଉଣୀ । ଜୟନ୍ତର କାମ ସରୁସରୁ ତିନିମାସ ଲାଗିଗଲା । ଏଣେ କଲେଜ ପିଲା ଜୟନ୍ତ ସଂପର୍କରେ ନାନା କଳ୍ପନାଜଳ୍ପନା କରିବା ଆରମ୍ଭ କରିଦେଲେ । ତା ଅଧ୍ୟାପକ ବ୍ୟୋମକେଶ ମହାନ୍ତି ଜୟନ୍ତର ଫେରିବା ନେଇ ମୋ ଉପରେ ଚାପ ପକେଇଲେ । ମୁଁ କିନ୍ତୁ ଏସବୁ ସାମୟିକ ବାଧାକୁ ଭ୍ରୂକ୍ଷେପ ନକରି ସ୍ୱାଭାବିକ ଭାବେ ଜୟନ୍ତର ଫେରିବାକୁ ଅପେକ୍ଷା କରିଥାଏ ।

ଚିତ୍ରକାମ ସରିଲାପରେ ଜ୍ୟାକ୍ ଚିତ୍ରଟିକୁ ସର୍ବସାଧାରଣଙ୍କ ପାଇଁ ଗ୍ୟାଲେରୀରେ ପ୍ରଦର୍ଶୀତ କଲା । ପୁଣି ଚିତ୍ରଟିକୁ ଦେଶ ଅନୁସାରେ ଭାଗ ଭାଗ କରି ପୋଷ୍ଟର୍‌ମାନ ଛପେଇ ଆଣିଲା । ଏହି ପୋଷ୍ଟର୍ ଗୁଡ଼ିକର ଚାହିଦା ଚିକାଗୋରେ ଏତେ ବଢ଼ିଗଲାଯେ ତାକୁ ଆଉ ଥରେ ଦୁଇଥର ପୁନର୍ମୁଦ୍ରଣ କରିବାକୁ ହେଲା । ଜୟନ୍ତ ଓଡ଼ିଶା ଫେରିଲାବେଳକୁ ତା ରଙ୍ଗ ଫିଟି ଯାଇଥିଲା । ଏବଂ ଚିତ୍ର ପ୍ରଦର୍ଶନୀ ସାରି ଫେରିଥିବାରୁ ଜୟନ୍ତ କଳାମହାବିଦ୍ୟାଳୟର ଛାତ୍ର ହେଇଥିଲେ ମଧ୍ୟ ତା'ର ପତିଆରା ବଢ଼ି ଯାଇଥିଲା । ଆମେ କଲେଜରେ ସେ ଆଣିଥିବା ପୋଷ୍ଟର୍‌ଗୁଡ଼ିକର ପ୍ରଦର୍ଶନୀଟିଏ ଆୟୋଜନ କଲୁ ।

ଏସବୁ ସତ୍ତ୍ୱେ ଜ୍ୟାକ୍‌ର 'ଡିଭାଇନ୍ ଭିଜନ୍'ର ପରିକଳ୍ପନା ଜୟନ୍ତର ଶୈକ୍ଷିକ ଚିନ୍ତାରେ ଦାନା ବାନ୍ଧି ପାରି ନଥିଲା । ଜୟନ୍ତ ସ୍ୱପ୍ନରେ ସୁଦ୍ଧା ଈଶ୍ୱରଙ୍କୁ ଅବତରେଇବାର କଳ୍ପନା କରି ନଥିବ । ମୁଁ ପ୍ରଦର୍ଶନୀ ସମୟରେ ଚିକାଗୋରେ ପହଞ୍ଚିବାର ପ୍ରତିଶ୍ରୁତି ଜ୍ୟାକ୍‌କୁ ଦେଇଥିଲେ ମଧ୍ୟ ପ୍ରତିଶ୍ରୁତି ରକ୍ଷା କରି ପାରି ନଥିଲି । ସ୍ୱାମୀ ବିବେକାନନ୍ଦ ଯେଉଁ ହଲ୍‌ରେ ବିଶ୍ୱର ଧର୍ମଯାଜକମାନଙ୍କୁ ତାଙ୍କର ପ୍ରସିଦ୍ଧ ଭାଷଣ ଦେଇଥିଲେ ସେହି ହଲ୍‌କୁ ଥରେ ଦେଖିବା ଓ ଜ୍ୟାକ୍‌ର ଦିବ୍ୟ ଦର୍ଶନ ମଧ୍ୟରେ ବିବେକାନନ୍ଦଙ୍କ 'ପ୍ରିୟ ଭାଇଭଉଣୀ' ମାନଙ୍କର ସ୍ପନ୍ଦନ ଅନୁଭବ କରିବାର ଅଭିଳାଷ ମନରେ ରହିଗଲା ।

Digitized by srujanika@gmail.com

# ୩୪. ଗ୍ରାଫ଼ଟେକ୍‌ର ନିତ୍ୟାନନ୍ଦ ଭାଇନା

ମୋର ପ୍ରଥମ କଳା ସମାଲୋଚନା ବହି 'ଚିୟତି ଇତି'ର ପ୍ରଚ୍ଛଦ ଛାପିଲା ବେଳଠୁ ମୁଁ କଟକ ଗୋସ୍ୱାମୀ ପ୍ରେସ୍‌ର ମାଲିକ ଦିବାକର ମିଶ୍ରଙ୍କ ସାନଭାଇ ପୀତାମ୍ବର ମିଶ୍ରଙ୍କ ସହିତ ଜଣାଶୁଣା । ଏହା ୧୯୬୧ ମସିହାର କଥା । ଭୁବନେଶ୍ୱରରେ ରଙ୍ଗିନ ଛାପା ପାଇଁ ହାପ୍‌ଟୋନ୍ ବ୍ଲକ୍ ତିଆରି ହେଇପାରୁ ନଥିଲା । କଟକର ଦୁଇ ତିନୋଟି ବ୍ଲକ୍ ତିଆରି ସଂସ୍ଥା ଥିଲା ଏକମାତ୍ର ଭରସା । ଚିତ୍ରଶିଳ୍ପୀ ରୋହିତ ବଟୁ ପ୍ରଥମେ ମୋତେ ଦିବାକର ମିଶ୍ରଙ୍କ ପରିବାର ସହିତ ଚିହ୍ନା କରେଇଦେଇଥିଲେ । ଦିବାକର ମିଶ୍ର ଓ ପୀତାମ୍ବର ମିଶ୍ରଙ୍କ ବଡ଼ଭାଇ । ଉଭୟେ ଛାପାଖାନାରୁ ଜୀବନ ଆରମ୍ଭ କରିଥିଲେ । ଉଭୟେ ଏବଂ ଉଭୟଙ୍କ ପରିବାର ଗୌଡ଼ୀୟ ବୈଷ୍ଣବ । ଦିବାକର ମିଶ୍ରଙ୍କ ବଡ଼ ପୁଅ ନିତ୍ୟାନନ୍ଦ, କୃଶୋଦର, ଲମ୍ବା ଦେହ । 'ନିତାଇଗୌର' ଙ୍କ ଭଳି ଚେହେରା । ବ୍ରହ୍ମେଶ୍ୱର ମନ୍ଦିର ପାଖ 'ଶ୍ରୀପୁରୀରେଣୁ'ର ବିସ୍ତର ଆୟତନ ଭିତରେ ଘର କରି ରହିବା ଆଗରୁ କେଦାରଗୌରୀ ପାଖାପାଖି ଜାଗାଏ ଦି ଜାଗାରେ, ସେମାନେ ଭଡ଼ାଘରେ ରହୁଥିଲେ । ଶ୍ରୀ 'ପୁରୀ ରେଣୁ'ରେ ଏବର କୋଠାଘର ଗଢ଼ାହେଇ ନଥାଏ । ବିସ୍ତୃତ ଉପବନର ଟିକିଏ ଭିତରକୁ ଗୋଟିଏ ଛୋଟିଆ ଘର ଥିଲା ମିଶ୍ର ପରିବାରର ଆସ୍ଥାନ । ମୁଁ ଅନେକ ଥର ସେଠିକି ଯାଇଛି । ନିତ୍ୟାନନ୍ଦଙ୍କ ମା' ଓ ଭଉଣୀମାନଙ୍କ ହାତ ପରଶା ସ୍ୱାଦିଷ୍ଟ ଅନ୍ନ, ବ୍ୟଞ୍ଜନ ଖାଇଛି । ମୋ ଭଳି ଜଣେ ଭୋକିଲା ଖାଦ୍ୟଲୋଭୀ ବ୍ରାହ୍ମଣ ପିଲାକୁ ଖାଇବାକୁ ଦେବାରେ ଦିବାକର ମିଶ୍ର ପରିବାରର କେବେ କୁଣ୍ଠା ନଥିଲା, ଏବେ ବି ନାହିଁ ।

ଆମ କଲେଜ ବ୍ରହ୍ମେଶ୍ୱର ବାଗ ପାଖ ଟଙ୍କପାଣି ରୋଡ଼୍ ସନ୍ନିକଟ ଭଡ଼ାଘରେ ଆରମ୍ଭ ହେଲା ଦିନଠାରୁ ନିତ୍ୟାନନ୍ଦ ମିଶ୍ରଙ୍କ ସାଙ୍ଗରେ ଆମ ସଂପର୍କ ଘନେଇଲା । ୧୯୮୪ ମସିହାରେ ଦୁଇଟି ମନେରଖିଲା ଭଳି ଘଟଣା ଘଟିଲା । ଗୋଟିଏ ହେଲା ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ପାଳନ ଓ ଦ୍ୱିତୀୟ ହେଲା ମୁକ୍ତେଶ୍ୱର ମନ୍ଦିର ପ୍ରାଙ୍ଗଣରେ ପ୍ରଥମ ଓଡ଼ିଶୀ ନୃତ୍ୟ ଉତ୍ସବର ଆୟୋଜନ । ସୁବାସ ପାଣି ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥାଆନ୍ତି । ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଇଁ ରାଜ୍ୟ ସଂଗ୍ରହାଳୟରେ ପ୍ରଦର୍ଶିତ ଓ ସଂରକ୍ଷିତ କେତେ ନିର୍ବାଚିତ ଚିତ୍ରିତ ତାଳପତ୍ର ପୋଥିକୁ ନେଇ ଗୋଟିଏ ବହି ପ୍ରକାଶନ ପାଇଁ ଯୋଜନା ହେଲା । ସଂଧ୍ୟା ହେଲେ ସଂଗ୍ରହାଳୟର ସୁପରିଣ୍ଟେନ୍‌ଡେଣ୍ଟ୍ ହରିଶ୍ଚନ୍ଦ୍ର ଦାସ, ପ୍ରତ୍ନତତ୍ତ୍ୱ

Digitized by srujanika@gmail.com

ବିଭାଗର କ୍ୟୁରେଟର ବିଜୟ ରଥ ଆଉ ମୁଁ ସୁବାସ ପାଣିଙ୍କ ଘରେ ପହଞ୍ଚୁ । ତାଳପତ୍ର ପୋଥି ସଂକ୍ରାନ୍ତରେ ଆଲୋଚନା ହୁଏ । ସୁବାସ ପାଣି ଲେଖନ୍ତି ଆଉ ଚିଏର୍ ଲିଡ଼ର୍‌ସ୍‌ଙ୍କ ଭଳି ଆମେ ତାଙ୍କୁ ଘେରି ବସିଥାଉ ଓ ପ୍ରୋତ୍ସାହନ ଦେଉଥାଉ । ପାଣ୍ଡୁଲିପି ପ୍ରସ୍ତୁତି ସରିଲା । ଏବେ ବହି ଛପା ହେବାକୁ ଯିବ । ସରକାରୀ ଛାପାଖାନାରେ ଛପା ହେଲେ ବହିଟି ଉତ୍କଳ ପ୍ରସଙ୍ଗ ଭଳି ହେଇଯିବ ରସଶୂନ୍ୟ । ନିଶ୍ଚୟ ସେଥିରୁ କ୍ଲାସିକ୍‌ଲ ଭାବ ହଟିଯିବ । ନିତ୍ୟାନନ୍ଦ ମିଶ୍ରଙ୍କ ଗ୍ରାଫ୍‌ଟେକ୍ ପ୍ରେସ୍‌ରେ ଛାପିବା ପାଇଁ ଆମେ ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଲୁ । ନିର୍ଦ୍ଦେଶକ ଛାପାଖାନା ପରିଦର୍ଶନ କଲେ । ନିତ୍ୟାନନ୍ଦ ଭାଇନା ଛାପିବା ପାଇଁ ପାଣ୍ଡୁଲିପି ନେଲେ । ନିତ୍ୟାନନ୍ଦ ମିଶ୍ର ବୟସରେ ମୋ ଠାରୁ ପ୍ରାୟ ଚଉଦ ପନ୍ଦର ବର୍ଷ ସାନ ହେଇଥିଲେ ବି ସ୍ନେହରେ ଭାଇନା ବୋଲି ଏଠି ସମ୍ବୋଧନ କରାଯାଉଛି ।

ମିଶ୍ରଙ୍କ ପରିବାର କୃଷ୍ଣ ଭକ୍ତ । ନିତ୍ୟାନନ୍ଦଙ୍କ ବାପା ଦିବାକର ମିଶ୍ରଙ୍କ ହାତରେ ପାଣ୍ଡୁଲିପିଟି ପଡ଼ିଲା । ସେଥିରେ ମୁଦ୍ରିତ ହେବାକୁ ଥିବା ଗୀତଗୋବିନ୍ଦ ଓ ଉଷାଭିଳାଷର ରତିବନ୍ଧ ଚିତ୍ରଗୁଡ଼ିକୁ ଦେଖି ବଡ଼ ମିଶ୍ରେ ନାପସନ୍ଦ କଲେ । ମତଦେଲେ ତାଙ୍କ ପ୍ରେସ୍‌ରେ ଏଭଳି କାମୋଦ୍ଦୀପକ ଚିତ୍ର ଛାପା ହେଇପାରିବ ନାହିଁ । ସମସ୍ୟା ସୃଷ୍ଟି ହେଲା । ନିତ୍ୟାନନ୍ଦ ଅପେକ୍ଷାକୃତ ଜଣେ ଆଧୁନିକ ବ୍ୟକ୍ତି । ତାଙ୍କର ଏଭଳି ଚିତ୍ର ଛାପିବାରେ ଆପତ୍ତି ନଥିଲା । ରାଧାକୃଷ୍ଣଙ୍କ ପ୍ରେମ ଅଲୌକିକ, ଅପାର୍ଥିବ, ଦୈହିକ ନୁହେଁ । ଏହା ଭାବର କଥା, ଭକ୍ତିର ଗାଥା । ଏଣୁ ଏଭଳି ଭାବେ ଦିବ୍ୟ ପ୍ରେମ ସଂପର୍କକୁ ନିହାତି ସାଂସାରିକ କରିଦେବା ଯଥାର୍ଥ ନୁହେଁ । ଆମେ ଯୁକ୍ତି ଛଳରେ କହିଲୁ ସାହିତ୍ୟରେ ଶୃଙ୍ଗାର ରସ ବର୍ଣ୍ଣନା ଚିତ୍ରର ବର୍ଣ୍ଣନାକୁ ଛାଡ଼ିବ । ଚିତ୍ରର ନିଜର ଅଲଗା ଭାବ ଓ ଭାଷା ଥିବା ଦୃଷ୍ଟିରୁ ଏଭଳି ଅବତାରଣା ଅଯଥାର୍ଥ ନୁହେଁ । ଯେହେତୁ ଚିତ୍ରାବଳୀରେ ରାଧାକୃଷ୍ଣଙ୍କ ରତିଲୀଳା ବର୍ଣ୍ଣନ କରାଯାଇଛି ଏବଂ ଯେହେତୁ ଏ ଚିତ୍ରଗୁଡିକ ଆମ ଐତିହ୍ୟ ଓ ପରମ୍ପରାର ବିମଳ ନିଦର୍ଶନ ଏଣୁ ସେଗୁଡିକର ମୁଦ୍ରଣରେ ଛାପାଖାନାର ନୀତିନିୟମ ବାଧକ ହେବା ଉଚିତ ନୁହେଁ । ଗ୍ରାଫ୍‌ଟେକ୍ ପ୍ରେସ୍ ନୂଆ ନୂଆ ରଙ୍ଗିନ ମୁଦ୍ରଣରେ ଓହ୍ଲାଇଥାନ୍ତି । ଅର୍ଥ ଉପାର୍ଜନ ପାଇଁ ଯଦିଚ ନୁହେଁ ପ୍ରେସ୍‌ର ବୈଷୟିକ ମାନ ବଢ଼େଇବା ପାଇଁ ନିତ୍ୟାନନ୍ଦ ଭାଇନା ଚାହୁଁଥାନ୍ତି ଏଗୁଡ଼ିକ ଛାପାଯାଉ । ନିଷ୍ପତ୍ତି ନିଆଗଲା ଛପାଯିବ । ଫଟୋଗ୍ରାଫ୍ ସାଙ୍ଗକୁ ତାଳପତ୍ର ଚିତ୍ର ଉପରେ ଆଧାର କରି ଆଙ୍କିଥିବା ମୋର କେତେକ ରେଖାଚିତ୍ର ମଧ୍ୟ ବହିରେ ଦିଆଯିବ । ବହି ମଝିରେ ଆଠ ପୃଷ୍ଠା ଆର୍ଟ୍‌ପେପର୍ ଉପରେ ମଲ୍‌ଟି କଲର୍‌ରେ ଛାପାହେଇ ସଂଲଗ୍ନ କରାଯିବ । ସେଇଥିପାଇଁ ଓଡ଼ିଶା ସଂଗ୍ରହାଳୟରୁ ଏବର୍‌ହାର୍ଡ୍ ଫିସର୍ ଉଠେଇ ଥିବା କିଛି ତାଳପତ୍ର ପୋଥିଚିତ୍ରର ଟ୍ରାନ୍ସପେରେନ୍ସି ମୁଁ ଯୋଗାଇ ଦେଲି । ଏସବୁ ରଙ୍ଗିନ୍ ଚିତ୍ର ସହିତ ପୁରୁଣା ଭୁବନେଶ୍ୱରରେ ମୁଁ ଉଠେଇ ଥିବା ଜଣେ ଲେଖନକାରର ଟ୍ରାନ୍ସପେରେନ୍ସି ମଧ୍ୟ ମିଶେଇ ଦିଆଗଲା । ବହିର ପାଠ ଥିବା ପୃଷ୍ଠାଗୁଡ଼ିକ ଲକି ପାର୍ଚ୍ଚମେଣ୍ଟ ନେଚୁରାଲ୍ ଶେଡ୍ କାଗଜରେ

Digitized by srujanika@gmail.com

ଛପାଗଲା । ବହିଟି ଖୁବ୍ ଆକର୍ଷଣୀୟ ହେଲା । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପ୍ରଥମ ରଙ୍ଗିନ ଛାପା ବହି । ବହିଟି ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ଦ୍ୱାରା ସଂଗ୍ରହାଳୟ ପ୍ରାଙ୍ଗଣରେ ଉନ୍ମୋଚିତ ହେଲା । ଏହି ବହି ଭିତରେ ସନ୍ନିବେଶିତ କରିବା ପାଇଁ ଦୁଇଟି ଚିତ୍ରର ଆବଶ୍ୟକତା ହେଲା । ଗୋଟିଏ ହେଲା ମନ୍ଦିରଗାତ୍ରରେ ତାଳପତ୍ର ପୋଥି ପାଠ କରୁଥିବାର ପୁରୁଣା ପ୍ରାମାଣିକ ଭାସ୍କର୍ଯ୍ୟ, ଏବଂ ତା' ସାଙ୍ଗକୁ ତାଳବଣ । ଏସବୁ ଫଟୋ ସଂଗ୍ରହ କରିବା ପାଇଁ ନିର୍ଦ୍ଦେଶକ ଆମକୁ ଗାଡ଼ିଟିଏ ଦେଲେ । ବିଜୟ ରଥ ଓ ମୁଁ ଧରାକୋଟ ଜଗନ୍ନାଥ ମନ୍ଦିର ମୁଖଶାଳାରେ ଖୋଦିତ ଭାସ୍କର୍ଯ୍ୟର ଚିତ୍ର ଏବଂ ସେହି ମନ୍ଦିର ବେଢ଼ାରେ ଅନୁଷ୍ଠିତ ହେଉଥିବା ପୁରାଣ ପାଠର ଦୃଶ୍ୟର ଫଟୋ ଉତ୍ତୋଳନ କରି ଦି' ଦିନରେ ଭୁବନେଶ୍ୱର ଫେରିଲୁ । ଫେରିଲାବେଳେ ବାଟରେ ତାଳବଣର ଫଟୋ ବି ଉଠିଲା । ନିର୍ଦ୍ଦେଶକ ଆମ କଥା ପ୍ରତି ଏତେଟା ଗୁରୁତ୍ୱ ଦେଉଥିବାରୁ ମ୍ୟୁଜିୟମ୍‌ରେ ଆମ ସହକର୍ମୀମାନେ ଆମପତ୍ରି ଅସୂୟା ପ୍ରକାଶ କଲେ । ଏବେ ଏଭଳି ଘଟଣାଟି ଘଟିବାକୁ ଥିଲେ ହୁଏତ ନିତ୍ୟାନନ୍ଦ ଭାଇନା ଆମକୁ ତାଙ୍କ ଲମ୍ବା ନାଲିଗାଡ଼ିଟି ଅକ୍ଳେଶରେ ଦେଇଥାନ୍ତେ ।

ମୁକ୍ତେଶ୍ୱର ଓଡ଼ିଶୀ ନୃତ୍ୟ ଉତ୍ସବ ପାଇଁ ନିତ୍ୟାନନ୍ଦ ଭାଇନା ବାଇକଲର୍ ପୋଷ୍ଟର୍ ମଧ୍ୟ ଛାପିଥିଲେ । ପୋଷ୍ଟର୍ ପାଇଁ ମୂଳ ନକ୍ସାଟି ବଳଦେବ ମହାରଥା ଆମ କଲେଜରେ ପ୍ରସ୍ତୁତ କରିଥିଲେ । ନିତ୍ୟାନନ୍ଦ ଭାଇନା ସଂସ୍କୃତି ବିଭାଗର ବିଭିନ୍ନ ବହି, ଫୋଲ୍ଡର୍, ପୋଷ୍ଟର ଇତ୍ୟାଦି ତାଙ୍କ ପ୍ରେସ୍‌ରେ ଛାପୁଥିଲେ ମଧ୍ୟ ଏସବୁ ଡିଜାଇନ୍‌ର ଏକ୍ସୁଡ଼ିଶାଳ ଥିଲା ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟ ।

ଗ୍ରାଫିକ୍ କଳା ଓ ଛାପାକାର୍ଯ୍ୟରେ ପ୍ରୟୋଗ କରାଯାଉଥିବା ବୈଷୟିକ କୌଶଳ ଶିକ୍ଷା ଦେବା ପାଇଁ ମୁଁ ବେଳେ ବେଳେ ପିଲାଙ୍କୁ ନେଇ ନିତ୍ୟାନନ୍ଦ ଭାଇନାଙ୍କ ଗ୍ରାଫ୍‌ଟେକ୍ ପ୍ରେସ୍‌ରେ ପହଞ୍ଚୁ ଥିଲି । ପ୍ରେସ୍‌ରେ ପହଞ୍ଚିଲା ପରେ ନିତ୍ୟାନନ୍ଦଙ୍କ ସାନଭାଇ ଶ୍ୟାମାନନ୍ଦ ପିଲାମାନଙ୍କୁ ଛାପାଖାନା ବୁଲେଇ ଦେଖାଉଥିଲେ । ଶ୍ୟାମାନନ୍ଦ ପ୍ରିଣ୍ଟିଙ୍ଗ୍‌ରେ ଲଣ୍ଡନ କଲେଜ ଅଫ୍ ପ୍ରିଟିଙ୍ଗ୍ ଟେକ୍‌ନୋଲୋଜି ପଢ଼ିଥିବାରୁ ତାଙ୍କ କଥାରେ ଓଜନ ଥିଲା । କଲେଜରେ ଆମେ ଶିକ୍ଷା ଦେଉଥିବା ଗ୍ରାଫିକ୍ ସଂପର୍କରେ ତାଲିମ ପାଇଥିବାରୁ କଳାର ଶେଷ ପରିଣତି ହେଲା ଛାପାଖାନାର ମୁଦ୍ରଣ କୌଶଳ । ସାଧାରଣତଃ ଦୁଇପ୍ରକାରର ମୁଦ୍ରଣ ପଦ୍ଧତି ଛାପାଖାନାରେ ଅନୁସୃତ ହୁଏ । ଗୋଟିଏ ହେଲା ରିଲିଫ୍ ପ୍ରୋସେସ୍- ସୀସାରେ ଖୋଦେଇ ହେଇଥିବା ଅକ୍ଷରଗୁଡିକର ଉତ୍‌କୀର୍ଣ୍ଣ ଅଂଶ ମାନଙ୍କରେ କାଳି ପ୍ରୟୋଗ କରି କାଗଜ ଉପରକୁ ଛାପା ଉଠେଇବା ଏବଂ ଦ୍ୱିତୀୟ ପଦ୍ଧତି ହେଲା ପ୍ଲେନୋଗ୍ରାଫୀ ବା ଏକାଭଳି ଉଚ୍ଚତାର ଭୂମି ଉପରେ ତେଲ ଓ ପାଣିର ଲୁଚକାଳି ସୃଷ୍ଟିକରି କେବଳ ଅକ୍ଷର ଗୁଡ଼ିକର ଆଭାସକୁ କାଗଜରେ କାଳି ସାହାଯ୍ୟରେ ଧରିନେବା । ନିତ୍ୟାନନ୍ଦ ଭାଇନାଙ୍କର ଛାପାଖାନା ପରିଦର୍ଶନ କଲେଜର ଛାତ୍ରଛାତ୍ରୀଙ୍କ ପାଇଁ ଶିକ୍ଷଣୀୟ ହେଉଥିଲା । କାଳକ୍ରମେ ଗ୍ରାଫ୍‌ଟେକ୍

Digitized by srujanika@gmail.com

ପ୍ରେସରେ ରାଜ୍ୟ ସଂସ୍କୃତି ବିଭାଗର ବିଭିନ୍ନ ବରାଦି କାମ ସାଙ୍ଗକୁ ପର୍ଯ୍ୟଟନର ବିକାଶ ପାଇଁ ଅନେକ ଛାପାକାର୍ଯ୍ୟ ନିତ୍ୟାନନ୍ଦ ଭାଇନା ସଂପାଦନ କଲେ । ଏସବୁ କାମର ପ୍ରାରମ୍ଭିକ ଯୋଜନା, ନକ୍ସା ଇତ୍ୟାଦି ଆମ କଲେଜରେ ରଚନା କରାଯାଉଥିଲା । ଆମମାନଙ୍କର ବନ୍ଧୁ ପ୍ରଫୁଲ୍ଲ ଚନ୍ଦ୍ର ଧୀର ଆବଶ୍ୟକୀୟ ଫଟୋଗ୍ରାଫ୍ ଯୋଗାଇ ଦେଉଥିଲେ । ବେଳେବେଳେ ଦଳଗତ ଭାବେ ଓଡ଼ିଶାର ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଓ ପର୍ଯ୍ୟଟନୀୟ କ୍ଷେତ୍ରକୁ ଯାଇ ଆମେ ଫଟୋ ଉତ୍ତୋଳନ କରୁଥିଲୁ । ବିଜୟ ରଥ ମଧ୍ୟ ପର୍ଯ୍ୟଟନ ପୁସ୍ତିକାର ସହଲେଖକ ଭାବେ ଆମ ଦଳରେ ସାମିଲ୍ ଥିଲେ । ଦଳଗତ ଭାବେ ପରିଯୋଜନା, ନକ୍ସାର ରୂପାୟନ, ପାଠ ଓ ଫଟୋ ସଂଯୋଗ କରିବା ଇତ୍ୟାଦିର କୌଶଳ ହିଁ କଳା ମହାବିଦ୍ୟାଳୟର ବ୍ୟାବହାରିକ କଳା ବିଭାଗର ମୂଳକଥା । ଚୁମ୍ବକରେ କହିବାକୁ ଗଲେ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟ ଗ୍ରାଫ୍‌ଟେକ୍ ପ୍ରେସ୍‌ର ଡିଜାଇନ୍ ଷ୍ଟୁଡ଼ିଓ ଥିଲା ଏବଂ ଛାପାଖାନା ଆମ କଲେଜର ଗ୍ରାଫିକ୍ କଳାର ପ୍ରୟୋଗଶାଳା ଥିଲା । କଲେଜ ଓ ଛାପାଖାନାର ଏ ସଂପର୍କ କେବଳ ବ୍ୟକ୍ତିଗତ ଶ୍ରଦ୍ଧା ସମ୍ମାନର ଅନାବିଳ ତଥା ଅଣ-ଉଲ୍ଲିଖିତ ପୁନାଦି ଉପରେ ତିଷ୍ଠି ରହିଥିଲା ଏବଂ କଳାତ୍ମକତା ଓ ବୈଷୟିକ କୌଶଳର ପରିବେଷଣରେ ଉଭୟ ପକ୍ଷ ସମୃଦ୍ଧ ହେଉଥିଲେ । ଏଭଳି ସଂପର୍କମାନ ଏବେ ନିହାତି ଅଲୋଡ଼ା ହୋଇପଡିଛି ।

ଆନ୍ତର୍ଜାତିକ କଳିଙ୍ଗ ବାଲିଯାତ୍ରାର ମୁଁ କ୍ୟୁରେଟର୍ ଓ ଡିଜାଇନର୍ ଥିଲି । ମୋର ସହକର୍ମୀମାନେ ଓ ଆନୁଷ୍ଠାନିକ ଭାବେ କଲେଜ ମଧ୍ୟ ଏହି ଅବିସ୍ମରଣୀୟ ଯାତ୍ରାର ରଚନାକ୍ଷେତ୍ର ହୋଇ ଯାଇଥିଲା । ଆବଶ୍ୟକୀୟ ସମସ୍ତ ଡିଜାଇନ୍‌ର ଆଦ୍ୟରୂପ କଲେଜରେ ହିଁ ଜନ୍ମ ନେଇଥିଲା । ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ଦଳଗତ ସଂପୃକ୍ତି ଏସବୁ କାର୍ଯ୍ୟକୁ ଉତ୍କର୍ଷରେ ପହଞ୍ଚାଇ ଦେଇଥିଲା । କଳିଙ୍ଗ ବାଲିଯାତ୍ରାର ଲୋଗୋ ପାଇଁ ପୁରୀ ଜଗନ୍ନାଥ ମନ୍ଦିର ଭୋଗମଣ୍ଡପର ପଶ୍ଚିମ କାନ୍ଥରେ ଥିବା ନୌକାବିହାର ରିଲିଫ୍‌କୁ ଆମେ ବ୍ୟବହାର କରିଥିଲୁ । ମନ୍ଦିର ମଧ୍ୟରେ ଫଟୋ ଉଠାଇବା ବାରଣ ହେତୁ ଆମେ ରେଖାଙ୍କନ ମାଧ୍ୟମରେ ଚିତ୍ରଟିକୁ ସଂଗ୍ରହ କରି ନକ୍‌ସାଟିକୁ ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍‌ରେ ଗଢ଼ି ପୁଣି ସେଥିରୁ ଫଟୋନେଇ ପୋଷ୍ଟର୍‌ରେ ବ୍ୟବହାର କରିଥିଲୁ ।

ନିତ୍ୟାନନ୍ଦ ଭାଇନା ବାଲିଯାତ୍ରା ପାଇଁ ଲୋଗୋ ଥାଇ ଗୋଟିଏ ପୋଷ୍ଟର୍ ଏବଂ ଗୋପାଳ ଚରଣ କାନୁନ୍‌ଗୋଙ୍କ ବୋଇତ ବନ୍ଦାଣ ଚିତ୍ର ଥାଇ ଅନ୍ୟ ଏକ ପୋଷ୍ଟର୍ ମଧ୍ୟ ଛାପିଥିଲେ । ତା' ସହିତ ଚିତ୍ର ଓ ଭାସ୍କର୍ଯ୍ୟ ପ୍ରଦର୍ଶନୀ ପାଇଁ 'କଳିଙ୍ଗାୟନ', ନୃତ୍ୟ ଓ ସଂଗୀତ ପ୍ରଦର୍ଶନ ପାଇଁ 'କଳିଙ୍ଗନୃତ୍ୟାୟନ' ଏବଂ ହସ୍ତଶିଳ୍ପ ତଥା ତନ୍ତ ବସ୍ତ୍ରର ପ୍ରଦର୍ଶନ ପାଇଁ 'କଳିଙ୍ଗବିପଣି' ନାମରେ ତିନୋଟି ପୁସ୍ତିକା ସାଙ୍ଗକୁ ଯାତ୍ରା କାର୍ଯ୍ୟକ୍ରମ ବ୍ରୋସିଅର ମଧ୍ୟ ସେ ମୁଦ୍ରଣ କରିଥିଲେ । ଏସବୁ ପୁସ୍ତିକା ଅତିଥିଙ୍କ ହାତରେ ପଇଠ କରିବା ପାଇଁ ବୋମକେଇ ଶାଢ଼ି ଆଞ୍ଚଳର ଆଭାସ ଥାଇ ଗୋଟିଏ ପୋର୍ଟଫୋଲିଓ ମଧ୍ୟ ଆମେ ଡିଜାଇନ୍

Digitized by srujanika@gmail.com

କରିଥିଲୁ ଏବଂ ଗ୍ରାଫ୍‌ଟେକ୍ ଏହାର ମୁଦ୍ରଣ ଓ ପ୍ରସ୍ତୁତି ଭାର ନେଇ ସୁଚାରୁରୂପେ ତାହା ସଂପାଦନ କରିଥିଲେ । ଗୋଟିଏ ଆନ୍ତର୍ଜାତିକ ଶୈକ୍ଷିକ ଘଟଣାକ୍ରମର ଡିଜାଇନର୍ ହେବା ମୋ ପାଇଁ ଯେତିକି ଗୌରବାବହ, କଲେଜର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଏଭଳି ଏକ ଗୁରୁଦାୟିତ୍ୱକୁ ମୁଣ୍ଡରେ ମୁଣ୍ଡାଇ ତାକୁ ସୁଚାରୁରୂପେ ପରିଚାଳନା କରିବା ମଧ୍ୟ ସେତିକି ସମ୍ମାନଜନକ । କଳିଙ୍ଗ ବାଲିଯାତ୍ରାର ମୁଦ୍ରଣକାର୍ଯ୍ୟ ଗ୍ରାଫ୍‌ଟେକ୍ ପ୍ରେସ୍ ଓ ନିତ୍ୟାନନ୍ଦ ଭାଇନାଙ୍କ ପାଇଁ ଯଦିଚ ଆଶାଜନକ ଅର୍ଥାଗମର ପନ୍ଥା ନଥିଲା ତଥାପି ଏସବୁ ମୁଦ୍ରଣ ଓଡ଼ିଶା ଓ ଭାରତ ବାହାରେ ତାଙ୍କର ଓ ତାଙ୍କ ପ୍ରେସ୍‌ର ମର୍ଯ୍ୟାଦା ବଢ଼େଇ ଦେଇଥିଲା । ଆମ ଡିଜାଇନ୍ କାମ ଓ ଛାପାକାମ ଶେଷ ହେଲାପରେ ଡିଜାଇନ୍ ମଧ୍ୟରେ ନିହିତ କଳାର ଦାର୍ଶନିକ ପୃଷ୍ଠଭୂମି ପ୍ରତି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଡିଜାଇନର୍ ମାର୍ତ୍ତଣ୍ଡ ସିଂହ ଆମକୁ ସଚେତନ କରିଦେଇଥିଲେ । ତା' ହେଲା ଓଡ଼ିଶାର ତିନୋଟି ପ୍ରମୁଖ କଳାକର୍ମର ସମାହାର । ସେହି କଳାକର୍ମଗୁଡ଼ିକ ହେଲା ଭାସ୍କର୍ଯ୍ୟ, ଚିତ୍ରକଳା ଓ ବସ୍ତ୍ରକଳା ।

ବିଭାଗୀୟ ବିଭିନ୍ନ ଛାପାକାମ ବାହାରେ ନିତ୍ୟାନନ୍ଦ ଭାଇନା ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍ (ୱା) ଓ ମୋର କେତୋଟି ପ୍ରଦର୍ଶନୀ ପୁସ୍ତିକାର ଛପେଇ କାମରେ ସହାୟକ ହୋଇଛନ୍ତି । ଓଡ଼ିଶାର ଶିଳ୍ପୀଗୁରୁ ଆଚାର୍ଯ୍ୟ ଶରତଚନ୍ଦ୍ର ଦେବଙ୍କ ଜୀବନ ଓ ଚିତ୍ରକଳା ସଂପର୍କୀୟ ଚାରିପୃଷ୍ଠା ରଙ୍ଗିନ ଚିତ୍ର ଥାଇ ଗୋଟିଏ ମନୋଗ୍ରାଫ୍, ଟ୍ରାଇବଲ୍ ଆର୍ଟ୍: ପ୍ରିମିଟିଭିଜିମ୍ ଆଣ୍ଡ୍ ମଡ଼ର୍ଣ୍ଣ ରେଲେଭେନ୍ସ- ଜାତୀୟ ସେମିନାର ପ୍ରବନ୍ଧ, ୱା ସମର ଶୋ ପ୍ରଦର୍ଶନୀର ରଙ୍ଗିନ କ୍ୟାଟ୍‌ଲଗ୍, ଏକକଚିତ୍ର ପ୍ରଦର୍ଶନୀ ହୋମେଜ୍ ଟୁ ବାଲି ଏବଂ ଫେସେସ୍ ନୋନ୍ ଆଣ୍ଡ ଅନ୍‌ନୋନ୍ ଏକକ ପ୍ରଦର୍ଶନୀ ପୁସ୍ତିକା ତଥା ଅନ୍ୟାନ୍ୟ କେତେକ ବହି କାମ ଭାଇନାଙ୍କ ପ୍ରେସ୍‌ରେ ସମ୍ଭବ ହୋଇପାରିଛି । ଏସବୁ ଛାପାକାମ ସଂପାଦନରେ ସେ କେବଳ ମୋତେ ବା 'ୱା' ସଂସ୍ଥାକୁ ସାହାଯ୍ୟ କରିଛନ୍ତି ତା ନୁହେଁ ଓଡ଼ିଶାରେ ସଂଗଠିତ ହେଉଥିବା ସେତେବେଳର ଆଧୁନିକ କଳା ଆନ୍ଦୋଳନକୁ ମଧ୍ୟ ପ୍ରୋତ୍ସାହନ ଦେଇଛନ୍ତି । ଯଦିଓ ଗ୍ରାଫ୍‌ଟେକ୍ ପ୍ରେସ୍ ଏକ ବ୍ୟାବସାୟିକ ସଂସ୍ଥା ତଥାପି 'ୱା' ତା'ର ଦୁର୍ବଳ ଆର୍ଥିକ ସ୍ଥିତି ଯୋଗୁଁ ସମସ୍ତ ଛପାଖର୍ଚ୍ଚ ପଇଠ କରିବାରେ ସକ୍ଷମ ହୋଇପାରିନାହିଁ । ନିତ୍ୟାନନ୍ଦ ମିଶ୍ର ଓ ତାଙ୍କ ପରିବାରର ଅନ୍ୟମାନେ ସଚ୍ଚୋଟପଣିଆ ଓ ବୈଷ୍ଣବୀୟ ଦୀନତାକୁ ଜୀବନର ପରମ ଶ୍ରେୟଃ ମନେ କରୁଥିବାରୁ ଆମର ଆଦର୍ଶ ସ୍ଥାନୀୟ ବନ୍ଧୁ ହୋଇ ରହିଆସିଛନ୍ତି । ଏଣୁ ମହାବିଦ୍ୟାଳୟ ଗଢ଼ିବା ଦିନଗୁଡ଼ିକ ଗ୍ରାଫ୍‌ଟେକ୍ ପ୍ରେସ୍ ଓ ବ୍ୟକ୍ତିଗତ ଭାବେ ନିତ୍ୟାନନ୍ଦ ଭାଇନାଙ୍କ ବଦାନ୍ୟତା ଯୋଗୁଁ ଅଧିକ ଅର୍ଥପୂର୍ଣ୍ଣ ହୋଇପାରିଛି । ବର୍ତ୍ତମାନ ମହାବିଦ୍ୟାଳୟର ଆର୍ଥିକ ସ୍ଥିତିରେ ଯଥେଷ୍ଟ ଉନ୍ନତି ଘଟିଛି । ହୁଏତ ଅଧ୍ୟକ୍ଷ ବା ଅଧ୍ୟାପକମାନେ ଗ୍ରାଫ୍‌ଟେକ୍ ପ୍ରେସ୍ ସହିତ ସଂପର୍କ ରଖିବାର ଆବଶ୍ୟକତା ଅନୁଭବ କରୁନାହାନ୍ତି, ତଥାପି ନିତ୍ୟାନନ୍ଦ ଭାଇନାଙ୍କ ଉଦାରତା ଭୁଲିବାର ନୁହେଁ ।

Digitized by srujanika@gmail.com

# ୩୫. ଓଡ଼ିଆ ଝୋଟିର କରାମତି

ଶାନ୍ତିନିକେତନର କଳାଭବନ, ସଂଗୀତ ଭବନ, ବିଦ୍ୟାଭବନ, ପାଠଭବନ, ପ୍ରାର୍ଥନାଘର ସବୁଠି ଝୋଟିର ଅଖଣ୍ଡ ରାଜତ୍ୱ । ବଙ୍ଗଦେଶରେ ଝୋଟି ତ ନୁହେଁ ଆଲ୍‌ପନା । ମୁଁ ଲକ୍ଷ୍ୟ କରିଛି, ସମାବର୍ତ୍ତନ ଉତ୍ସବର ମଞ୍ଚ ଓ ଚଲାବାଟରେ ମଧ ଖୁବ୍ ଚମତ୍କାର ଆଲ୍‌ପନା ଅଙ୍କା ଯାଇଥାଏ । କଳାଭବନର ଅଧାପକମାନେ ରାତି ରାତି ଉଜାଗର ରହି ଏଗୁଡ଼ିକ ପ୍ରସ୍ତୁତ କରିଥାନ୍ତି । ବସୁଧାର ବନ୍ଦାପନା ସହିତ ସମଗ୍ର ପରିବେଶରେ ଆଲ୍‌ପନା ରୂପ ଓ ଛନ୍ଦ ଭରିଦିଏ । ମୁଁ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ପିଏଚ୍.ଡି. ଛାତ୍ର ଥିଲି କିନ୍ତୁ କଳାଭବନର ବିଧିବଦ୍ଧ ଛାତ୍ର ନଥିଲି । ତଥାପି କାହିଁକି କେଜାଣି ଶାନ୍ତିନିକେତନର ଆଲ୍‌ପନା ମୋତେ ବେଶି ପ୍ରଭାବିତ କରିଛି । କିନ୍ତୁ ଏହି ପ୍ରଭାବ ମୋ ଶୈଳ୍ପିକ ଅବଚେତନାରେ ଯେଉଁ ସ୍ପନ୍ଦନ ସୃଷ୍ଟି କରିଛି ତାହା ହେଲା ଓଡ଼ିଆ ଝୋଟି ପ୍ରତି ଆଗ୍ରହ । ଆଜିକାଲିର ଆଧୁନିକ ଓ ଅତ୍ୟାଧୁନିକ ଶିଳ୍ପୀମାନେ ଝୋଟିକୁ କେବଳ ରିଚୁଆଲ୍ ସହିତ ସଂପର୍କିତ କରିଦେଇ, ତାକୁ ପାରମ୍ପରିକ କହି ହତାଦର କରିବା ଦେଖାଯାଉଛି ।

ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ଥିବାବେଳେ ଏକାଡେମୀର ସର୍ବଭାରତୀୟ ପ୍ରଦର୍ଶନୀମାନଙ୍କରେ ବି.କେ. କଲେଜର ଛାତ୍ରଛାତ୍ରୀ ଯେଉଁମାନେ ମୋ ସହିତ ଦିଲ୍ଲୀରେ ରହୁଥିଲେ ତାଙ୍କ ସହାୟତାରେ ଝୋଟି ଆଙ୍କିଲି । କିଏ କିଏ ପାରମ୍ପରିକ କହି ନାକ ଟେକିଲେ, ଆଉ କାହାକୁ ଝୋଟି ନୂଆନୂଆ ଲାଗିଲା, ସେମାନେ ପସନ୍ଦ କଲେ । ବିଶିଷ୍ଟ ଭାସ୍କର ଶଙ୍ଖ ଚୌଧୁରୀ କହିଲେ, ଦିନନାଥ ତମେ କଣ ଏଠି ଶାନ୍ତିନିକେତନ ପରମ୍ପରା ଆରମ୍ଭ କଲଣି । ମୁଁ ଶଙ୍ଖଦା'ଙ୍କୁ ମନେପକେଇ ଦେଇଥିଲି ରବୀନ୍ଦ୍ର ଭବନରୁ ହିଁ ଆଲପନାର ପରମ୍ପରା ଆରମ୍ଭ ହେଇଥିବା କଥା ।

ବି.କେ. ଚାରୁକଳା ମହାବିଦ୍ୟାଳୟରେ ପିଲାଙ୍କୁ ମୁଁ ଓଡ଼ିଆ ଝୋଟିର ମାଧୁର୍ଯ୍ୟ ଚଖେଇ ଦେଇଥିଲି । ପିଲାଏ ମୋ କଥା ଘେନିଥିଲେ । ବିଶେଷ କାର୍ଯ୍ୟକ୍ରମ ମାନଙ୍କରେ ଝୋଟି ପଡୁଥିଲା । ଗୋଟିଏ ଅଭୁଲା ସ୍ମୃତି ମୋତେ ବେଶି ମନେପଡୁଛି । ୧୯୮୪ ମସିହାର ଦୁଇଟି ଘଟଣା, ଗୋଟିଏ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଓ ଅନ୍ୟଟି ରାଜ୍ୟ ସୂଚନା ଭବନରେ ଗୀତଗୋବିନ୍ଦ ସମାରୋହ । ଆମ କଲେଜ ନୂଆ ନୂଆ

Digitized by srujanika@gmail.com

ଆରମ୍ଭ ହେଉଥାଏ । ଅଓ୍ୱଧ ନାରାୟଣ ତିଓ୍ୱାରୀ ସଂସ୍କୃତି ବିଭାଗର ସଚିବ ଥାଆନ୍ତି । ସୁବାସ ପାଣି ଥାଆନ୍ତି ନିର୍ଦ୍ଦେଶକ । ସଂଗ୍ରହାଳୟର ସାଜସଜ୍ଜା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥାଏ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ମୁଖ୍ୟ ଅତିଥି ହେଇ ଆସିବେ । ମ୍ୟୁଜିୟମ୍ ଗ୍ୟାଲେରୀ ଗୁଡ଼ିକର ନବୀକରଣ ହେଉଥାଏ । ପୁରୁଣା କୋଠାର ପୂର୍ବ ଦିଗରେ ସୁବର୍ଣ୍ଣ ଜୟନ୍ତୀର ସ୍ୱତନ୍ତ୍ର ପ୍ରଦର୍ଶନୀ ଗୃହ ପାଇଁ ନୂଆ କରି କୋଠାଟିଏ ନିର୍ମାଣ ହେଉଥାଏ । ସେଇ ନୂଆ କୋଠାଘରେ ଗ୍ରନ୍ଥାଳୟ ପାଇଁ ବିରାଟ କୋଠରିଟିଏ ନିର୍ଦ୍ଦିଷ୍ଟ କରାଯାଇଥାଏ । ତାରି ଆଗରେ ପ୍ରଦୀପ ଜଳେଇ ପ୍ରଧାନମନ୍ତ୍ରୀ ଉତ୍ସବର ଉଦ୍‌ଘାଟନ କରିବେ ଏବଂ ତା'ପରେ ପ୍ରଦର୍ଶନୀ ଗୃହମାନ ବୁଲି ଦେଖିବେ । ନୂତନ ପ୍ରଦର୍ଶନୀ ଗୃହ ମଧ୍ୟରେ ଥାଏ ସାନ୍ତାଳ ଘର, ଦୈନନ୍ଦିନ ବ୍ୟବହୃତ କଳାସାମଗ୍ରୀ, ପଟଚିତ୍ର ଓ ତାଳପତ୍ର ପୋଥିଚିତ୍ର । ସଂଗ୍ରହାଳୟର ପ୍ରବେଶଦ୍ୱାରଠାରୁ ଆରମ୍ଭ କରି ବାରଣ୍ଡା ଓ ପ୍ରଦର୍ଶନୀ ଘରମାନଙ୍କ ଚଟାଣ ଏବଂ ଉଦ୍‌ଘାଟନସ୍ଥଳୀ ତଥା ସଭାମଞ୍ଚ ଉପରେ ବିଭିନ୍ନ ଧରଣର ଝୋଟି ଆମେ ପିଲାମାନଙ୍କ ସାହାଯ୍ୟ ନେଇ ଆଙ୍କିଥିଲୁ । ଝୋଟିର ନମୁନା ଗୁଡ଼ିକ ପ୍ରଥମେ କାଗଜ ଉପରେ ଅଙ୍କାଯାଇ ସେଗୁଡ଼ିକର ଶୈଳୀ ଠିକଣା କରିଦିଆଗଲା । ଅଧ୍ୟାପକ ବଳଦେବ ମହାରଥୀ, ଡି.ଏନ୍.ରାଓ ଓ ଶିବ ପାଣିଗ୍ରାହୀ ସେମାନଙ୍କ ଦାୟିତ୍ୱରେ ପିଲାମାନଙ୍କୁ ନେଇ ଧଳା ପ୍ଲାଷ୍ଟିକ୍ ରଙ୍ଗରେ ଝୋଟି ଆଙ୍କିଥିଲେ । ସଂଗ୍ରହାଳୟର ଇତିହାସରେ ଏଭଳି ଚିତ୍ରଣ କେବେ ଆଗରୁ ହେଇନଥିଲା । ଝୋଟି ସମଗ୍ର ପରିବେଶକୁ ଉତ୍ସବମୁଖର କରିଦେଲା । ଆମ ପିଲାମାନେ ଝୋଟି ଚିତ୍ର ଆରମ୍ଭ କରିବା ବେଳଠାରୁ ମ୍ୟୁଜିୟମ୍‌ର କର୍ମଚାରୀ, ସଂସ୍କୃତି ବିଭାଗର ଉପରିସ୍ଥ ହାକିମମାନେ ଦଳ ଦଳ ହେଇ ଝୋଟି ଦେଖିବାକୁ ରୁଣ୍ଡ ହୁଅନ୍ତି । ଦର୍ଶକମାନଙ୍କ କଥା ତ ନିଆରା । ଗାଁ ଗହଳରୁ ଆସିଥିବା ଦର୍ଶକମାନେ ମନରେ ପାଞ୍ଚୁଥାନ୍ତି ଆମେ ଗାଁ ଗହଳରେ ପୂଜା ପାର୍ବଣରେ ଯାହା ଆଙ୍କିଥାଉ, ତାହା କ'ଣ ଭାରତର ପ୍ରଧାନମନ୍ତ୍ରୀଙ୍କ ପାଇଁ ଉପଯୁକ୍ତ ହେବ । ସେମାନଙ୍କ ଧାରଣା ଥିଲା ଝୋଟି ଅଙ୍କନ କେବଳ ଝିଅପିଲାଙ୍କ ପାଠ । ତାକୁ ପୁଣି ଆଜିକାଲି ଇଂରାଜୀ ପାଠପଢୁଆ ପେଣ୍ଟ୍ ସାର୍ଟ୍ ପିନ୍ଧା ପିଲାଏ କ'ଣ ଶିଖୁଛନ୍ତି ।

ଭାରତର ପ୍ରଧାନମନ୍ତ୍ରୀ ମ୍ୟୁଜିୟମ୍ ପୋର୍ଟିକୋରେ ଗାଡ଼ିରୁ ଓହ୍ଲେଇଲେ । ଭୂଇଁ ଉପରେ ପାଦ ଦେବାକ୍ଷଣି ଗୋଡ଼ ପଡ଼ିଲା ପଦ୍ମମଣ୍ଡଳ ଝୋଟି ଉପରେ । ତାଙ୍କ ମନରେ ସରସତା ଭରିଗଲା । ତାଙ୍କ ସାଙ୍ଗରେ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ମୁଖ୍ୟ ଶାସନ ସଚିବ ଜ୍ଞାନ ଚାନ୍ଦ, ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ, ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣି ପ୍ରମୁଖ । ଝୋଟିର ପଟୁଆର ଆରମ୍ଭ ହେଇଗଲା ମ୍ୟୁଜିୟମ୍‌ର ଦୁଆର ପାଖରୁ । ଶୁଭ୍ର ସରଳ ଚିତ୍ର ଆଡ଼ମ୍ବରରେ ପ୍ରଧାନମନ୍ତ୍ରୀ ବିହ୍ୱଳିତ ହୋଇଗଲେ । ତାଙ୍କ ତୁଣ୍ଡରେ ଭାବପ୍ରବଣତାର ଉନ୍ମାଦିତ ବାକ୍ୟଟିଏ ଆପେ ଉଚ୍ଚାରିତ ହୋଇଗଲା । ସେ

Digitized by srujanika@gmail.com

ଜାନକୀ ବଲ୍ଲଭଙ୍କୁ ଅନେଇ କହିଲେ, ''ଏଗୁଡ଼ିକ ମୋତେ ଶାନ୍ତିନିକେତନ ଦିନର ସ୍ମୃତିକୁ ଫେରେଇ ନେଉଛି ।'' ଝୋଟିଗୁଡ଼ିକ କେଉଁମାନେ ଆଙ୍କିଛନ୍ତି ଜାଣିବାକୁ ଚାହିଁବାରୁ ତିୱାରୀ ମହାଶୟ ମୋତେ ନେଇ ଇନ୍ଦିରାଙ୍କ ଆଗରେ ହାଜର କରେଇଦେଲେ । ସେ ମୋତେ ଅଭିନନ୍ଦିତ କରିବା ପାଇଁ ମୋ ଆଡ଼କୁ ହାତ ବଢ଼େଇ ଦେଲେ । ମୋତେ ଲାଗିଲା ମୁଁ କେବଳ ନୁହେଁ ମୋର ସମଗ୍ର ମହାବିଦ୍ୟାଳୟ ତଥା ତା'ର ଅଧ୍ୟାପକ ଓ ଛାତ୍ରଛାତ୍ରୀ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେଲେ । ଆମ ମହାବିଦ୍ୟାଳୟ ପକ୍ଷେ ସେ ଦିନଟି ଅତ୍ୟନ୍ତ ଗୌରବାବହ ଥିଲା ।

ଉଦ୍‌ଘାଟନ ପାଇଁ ସଂଗ୍ରହାଳୟର ଭିତର ଅଗଣାରେ ଲିଲିପୁଲ୍ ପାଖରେ ସିମେଣ୍ଟ୍‌ରେ ମଞ୍ଚ ତିଆରି ହେଇଥାଏ । ମଞ୍ଚ ଉପରେ ଚିରାଚରିତ ଭାବେ ବିଛା ଯାଉଥିବା କାର୍ପେଟ୍‌କୁ ବାଦଦେଇ ଆମେ ଝୋଟିରେ ମଣ୍ଡଣି କରିଦେଇଥାଉ । ଝୋଟି ମଝିରେ ମଝିରେ କାଇମାଟିଆ ହଳଦିଆ ସାଙ୍ଗକୁ ଗେରୁ ରଙ୍ଗ ଚିତ୍ରଗୁଡ଼ିକୁ ବର୍ଣ୍ଣ ବିଭୋର କରିଥାଏ । ପ୍ରଧାନମନ୍ତ୍ରୀଙ୍କ ଦଳରେ ଆସିଥିବା ନିରାପତ୍ତା ଅଫିସର ଜୀବନରେ ଏଭଳି ସାଜସଜ୍ଜା କେବେ ଦେଖି ନଥିଲେ ବୋଲି କହିଲେ । ମୁଁ ଉତ୍ତରରେ କହିଥିଲି ଏଭଳି ଝୋଟି ଅଙ୍କନ ଓଡ଼ିଶାର ହିଁ ସ୍ୱତନ୍ତ୍ରତା, ଏଣୁ ଅନ୍ୟ କେଉଁଠାରେ ଏଭଳି ଚିତ୍ର ସେ ଦେଖିନଥିବା ସ୍ୱାଭାବିକ ।

ଝୋଟି ଦେଖି ପ୍ରଧାନମନ୍ତ୍ରୀଙ୍କ ପ୍ରଶଂସା ଛାତ୍ରଛାତ୍ରୀ ତଥା ଅଧ୍ୟାପକଙ୍କ ମନରେ ଉତ୍ସାହ ଆଣିଦେଇଥାଏ । ତା' ପରଦିନ ଆତତାୟୀର ଗୁଳିରେ ତାଙ୍କ ମୃତ୍ୟୁ ଆମ ମନରେ ବିଷାଦ ଭରିଦେଇଥିଲା ।

ନିର୍ଦ୍ଦେଶକ ସୁବାସ ପାଣିଙ୍କ ମନରେ ଆମ ଝୋଟି ଏଭଳି ପ୍ରଭାବ ବିସ୍ତାର କରିଥିଲା ଯେ ଗୀତଗୋବିନ୍ଦ ସମାରୋହ ପାଇଁ ମଧ୍ୟ ଝୋଟିରେ ଚଟାଣକୁ ମଣ୍ଡଣି କରିବା ପାଇଁ ଅନୁରୋଧ ଆସିଲା । ଏତେ ସୁନ୍ଦର ସାଜସଜ୍ଜା ମଧ୍ୟରେ ଅନୁଷ୍ଠିତ ହୋଇଥିବା ଆଉ ଗୋଟିଏ ଗୀତଗୋବିନ୍ଦ ସମାରୋହ ଓଡ଼ିଶା ଭାଗ୍ୟରେ ସମ୍ଭବ ହେଇନି । ଏହାର କାରଣ ସାହିତ୍ୟ, ସଂଗୀତ ଓ କଳାର ଏକ ମଧୁର ସମନ୍ୱୟର ଅଭାବ । ରାଜ୍ୟ ସଂଗ୍ରହାଳୟରେ ଆଙ୍କିଥିବା ଝୋଟିର ଅନୁଭୂତି ପିଲାମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲା ଓ କଲେଜର ପ୍ରଶଂସାରେ ଅତିଥିମାନେ ଶତମୁଖ ହେଇଯାଇଥିଲେ ।

ଆଉ ଦୁଇଟି ବିଶେଷ କାର୍ଯ୍ୟକ୍ରମରେ ଝୋଟି ଅଙ୍କନ କରି ଆମେ କଲେଜର ସୁନାମ ରକ୍ଷା କରିପାରିଛୁ । ସେଥିରୁ ଗୁରୁତ୍ୱପୂର୍ଣ୍ଣ ହେଲା ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଝୋଟି । କଲେଜର ଏଫିଲିଏସନ୍ ବ୍ୟାପାର ନେଇ ଆମେ ଥରେ ଅଡୁଆରେ ପଡ଼ିଥିଲୁ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ କିଭଳି ଉପାୟରେ ପ୍ରଭାବିତ କରି ଆମ କାମଟି ହାସଲ କରିପାରିବୁ ସେଥିନେଇ ଚିନ୍ତା ବଢ଼ିଯାଇଥିଲା ।

Digitized by srujanika@gmail.com

ଝୋଟି ଦ୍ୱାରା ଏଫିଲିଏସନ୍ ବ୍ୟାପାରର ସମାଧାନ ହୋଇପାରିବ ଏକଥା କହିଲାରୁ ମୋ ସହକର୍ମୀମାନେ ମୁରୁକି ହସାଦେଲେ । ଭାବିଲେ ଏହା ଏକ ଉଦ୍ଭଟ ପ୍ରକଳ୍ପ । ମୋର ଗୋଟିଏ ଐତିହାସିକ ଘଟଣାଟିଏ ମନେପଡ଼ିଲା । ମହାତ୍ମା ଗାନ୍ଧି ସାବରମତୀ ଆଶ୍ରମରେ ପଣ୍ଡିତ ଜବାହରଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ସହ ଭାରତର ସ୍ୱାଧୀନତା ସଂପର୍କରେ ଗୋଟିଏ ଗଭୀର ସମସ୍ୟା ନେଇ ଆଲୋଚନାରେ ବ୍ୟସ୍ତ ଥାନ୍ତି । ସମାଧାନର ପନ୍ଥା ମୁଣ୍ଡକୁ ସହଜରେ ଜୁଟୁ ନଥାଏ । ଗାନ୍ଧି ହଠାତ୍ ଆଲୋଚନାରୁ ଉଠିପଡ଼ି ଆଶ୍ରମର ଛେଳିର ମକଚି ହୋଇଯାଇଥିବା ଗୋଡ଼ରେ ମାଟି ଲେପ ଦେଇ କନାପଟି ବାନ୍ଧିବା କାମରେ ଲାଗିଲେ । ଗାନ୍ଧିଙ୍କ ବିନା ଆଲୋଚନା ଅଧୁରା ରହିଲା । ପଣ୍ଡିତ ନେହେରୁ ଗାନ୍ଧିଙ୍କୁ ଖୋଜି ଖୋଜି ଛେଳି ପାଖରେ ପହଞ୍ଚି ତାଙ୍କର ଏଭଳି ଗୋଟିଏ ଅଣଗୁରୁତ୍ୱ କାର୍ଯ୍ୟରେ ମନଯୋଗକୁ ପସନ୍ଦ କରି ନପାରି ପଚାରିଲେ, ବାପୁ ଆପଣ ଏଠି କ'ଣ କରୁଛନ୍ତି । ବାପୁ ହଠାତ୍ ଉତ୍ତର ଦେଲେ ମୁଁ ଦେଶକୁ ସ୍ୱାଧୀନତା ଦେବାର ସରଳପନ୍ଥା ବାହାର କରୁଛି । ମୁଁ କଦାପି ଗାନ୍ଧି ନୁହେଁ ବା ଗାନ୍ଧିଙ୍କ ଏକ ପ୍ରତିଶତ ଆଦର୍ଶ ମୋ ପାଖରେ ନାହିଁ, ତଥାପି ସହକର୍ମୀମାନଙ୍କୁ ମୁଁ ଦମ୍ଭର ସହିତ କହିଥିଲି ଯେ ଝୋଟି ହିଁ ଆମ ଏଫିଲିଏସନ୍ ସମସ୍ୟାର ସମାଧାନ କରିପାରିବ ।

ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମୋ ପ୍ରସ୍ତାବରେ ଅରାଜି ହେବାର କୌଣସି କାରଣ ନଥିଲା । ଆମେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକମାତ୍ର ସହନିବନ୍ଧିତ କଳା ମହାବିଦ୍ୟାଳୟ । ପୁଣି ଆମ କଲେଜ ଖର୍ଚ୍ଚରେ ଆମ ପିଲା ଝୋଟି ଆଙ୍କିବେ । ଆମେ ସିନେଟ ସଭ୍ୟମାନଙ୍କ ଡ୍ରେସିଙ୍ଗ୍ ରୁମ୍ ଠାରୁ ଆରମ୍ଭ କରି ସମାବର୍ତ୍ତନ ମଞ୍ଚଯାଏଁ ରାସ୍ତା ଓ ମଞ୍ଚ ଉପରେ ଦୁଇଦିନ ଦୁଇରାତି ଅନିଦ୍ରା ରହି ଝୋଟି ଚିତ୍ର କରିଦେଲୁ । ସମାବର୍ତ୍ତନ ଉତ୍ସବ ଦିନ କୁଳାଧିପତି, କୁଳପତି ଓ ମୁଖ୍ୟଅତିଥି ତଥା ଅନ୍ୟାନ୍ୟ ମାନ୍ୟଗଣ୍ୟ ଅତିଥିମାନେ ଝୋଟି ଉପରେ ଚାଲିଚାଲି ମଞ୍ଚଯାଏଁ ଆସିଲେ । ମୁଖ୍ୟ ଅତିଥି ବିଶିଷ୍ଟ ବୈଜ୍ଞାନିକ ରାଜା ରମାନାଙ୍କୁ ଓଡ଼ିଆ ଝୋଟି ଖୁବ୍ ପ୍ରଭାବିତ କଲା । ତାଙ୍କ ଭାଷଣ ପାଲି ପଡିଲା । ସମାବର୍ତ୍ତନ ଉତ୍ସବମାନଙ୍କରେ ଭାଷଣ ଆଗରୁ ମୁଦ୍ରିତ ହୋଇଥାଏ । ମୁଖ୍ୟ ଅତିଥି ଲିଖିତ ଭାଷଣ ପଢୁପଢୁ ତାଙ୍କ ଝୋଟି କଥା ମନେପଡିଗଲା । ସେ ଲିଖିତ ଭାଷଣ ବନ୍ଦ କରି ଓଡ଼ିଆ ଝୋଟିର ଭୂୟସୀ ପ୍ରଶଂସା କଲେ ଓ ଆମ କଲେଜର ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କୁ ଅଭିନନ୍ଦନ ଜଣାଇଲେ । ରାଜା ରମାନାଙ୍କ ଭଳି ଦେଶର ଜଣେ ବିଶିଷ୍ଟ ବୈଜ୍ଞାନିକଙ୍କ ତୁଣ୍ଡରେ ଦୁଇଟି ବାକ୍ୟ ଆମ ପାଇଁ ଯଥେଷ୍ଟ ଗୁରୁତ୍ୱ ଥିଲା । କହିବା ବାହୁଲ୍ୟ ଯେ ଏହି ଦୁଇଟି ବାକ୍ୟ ଏଫିଲିଏସନ୍‌ର ଯାବତୀୟ ସମସ୍ୟା ସମାଧାନ କରିଦେଲା ।

ଝୋଟିର ଶେଷ କରାମତି କଳିଙ୍ଗ ବାଲିଯାତ୍ରା ଉତ୍ସବକୁ ନେଇ । କଳିଙ୍ଗର ସାଧବମାନେ ବଣିଜ କରିବାକୁ ବୋଇତ ନେଇ ପାରାଦ୍ୱୀପ ବନ୍ଦରରୁ ବାଲିଦ୍ୱୀପ ଅଭିମୁଖେ

Digitized by srujanika@gmail.com

ଯାତ୍ରା କରିବେ । ଛ'ଟି ବୋଇତ ପାରମ୍ପରିକ ଢ଼ଙ୍ଗରେ ସଜିଆ ହେଉଛି । କଲେଜର ଅଧକ୍ଷ ଏହି ଉତ୍ସବର ମୁଖ୍ୟ ଡିଜାଇନର୍, ଆଧୁନିକ କଳିଙ୍ଗର ନିର୍ମାତା ବିଜୁ ପଟ୍ଟନାୟକ ବୋଇତଗୁଡ଼ିକୁ ବିଦାଗି ଦେବେ । ଓଡ଼ିଶୀ ନୃତ୍ୟାଙ୍ଗନା କୁଙ୍କୁମ ମହାନ୍ତିଙ୍କ ନୃତ୍ୟ ନିର୍ଦ୍ଦେଶନାରେ ମିଛିମିଛିକା ଦଳେ ସାଧବ ଓ ସାଧବାଣୀ ପ୍ରସ୍ତୁତ ହେଉରହିଥାନ୍ତି । ଏତେ ସବୁ ଆଡ଼ମ୍ବର ପାଇଁ ଓଡ଼ିଆ ଝୋଟି ନ ହେଲେ ନ ଚଳେ । ସଂସ୍କୃତି ବିଭାଗର ହାକିମମାନଙ୍କରେ କିରାଣିଆ ମନୋବୃତ୍ତିକୁ ବଦଳେଇ ନାଲି କାର୍ପେଟ୍ ନ ପକେଇ ଝୋଟିରେ ଚିତ୍ରାଙ୍ଗି କରି କାର୍ପେଟ୍ ତିଆରି କରିବା ପାଇଁ ରାଜି କରେଇବାରେ ମୋତେ ଝାଳନାଳ ହେବାକୁ ହେଲା । ସମସ୍ତେ ରାଜି ହେଇଗଲେ କାର୍ପେଟ୍ ନୁହେଁ ଝୋଟି ହିଁ ପଡ଼ିବ । ମନରେ ବିଜୁ ବାବୁଙ୍କୁ ସମସ୍ତଙ୍କ ଭୟଥାଏ । ରଜା ଗୋଜା, ବିଗିଡ଼ିଲେ ସବୁ ଗଲା । ମୁଁ ଦମ୍ଭର ସହିତ କହିଥାଏ ବିଜୁ ବାବୁ ବିଗିଡିଲେ ମୋତେ ତାଙ୍କ ଆଗରେ ଠିଆ କରେଇଦେବ । ଝୋଟିକୁ ନେଇ ବିଜୁ ବାବୁ ଯାହା ପଚାରିବେ, ତାର ଉତ୍ତର ମୁଁ ଦେବି । ଓ୍ୱେଟ୍ ବେସିନ୍‌ର କଙ୍କ୍ରିଟ୍ ଭୂମି ଉପରେ ପାହାଡ଼ା ପଡ଼ିଲା ଭଳିଆ ଝୋଟି ଚିତ୍ର କରାଗଲା । ମଝିମଝିରେ ଗୋଲେଇ କରାହେଇ ଝୋଟି, ଆଉ ବଳକା ଜାଗାରେ ଗେରୁରଙ୍ଗ ଭର୍ତ୍ତି ହେବାରୁ । ବେଶ୍ ଚମତ୍କାର ଦେଖାଗଲା । ବିଜୁ ବାବୁଙ୍କ ନାନ୍ଦନିକତାକୁ ବେଳେବେଳେ କଳକାରଖାନା ଓ ଉଡ଼ାଜାହାଜ ଚଳେଇବା ସଙ୍ଗରେ ଯୋଡ଼ିଦେଇ ଆମେ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ଦେଇଥାଉ । ଏଭଳି ବିଚାର ତାଙ୍କ ଚରିତ୍ରର ସଠିକ ଆକଳନ ନୁହେଁ । ବିଜୁ ବାବୁ ଆସିଲେ, ଝୋଟି ଉପରେ ଚାଲିଲେ ଆଉ ଝୋଟିର୍ ତାରିଫ କଲେ ।

ମୁଁ ଆଜିଯାଏଁ ଝୋଟିକୁ ଓଡ଼ିଶୀ କଳାର ନିର୍ଯ୍ୟାସଭାବେ ବ୍ୟବହାର କରିଆସିଛି । କେବଳ ସେତିକି ନୁହେଁ ତାହା ଶୈକ୍ଷିକ ସଶକ୍ତିକରଣରେ ମୋତେ ସାହାଯ୍ୟ କରିଛି । ଏବେ ତ ଓଡ଼ିଆ ଘରର ଆଧୁନିକ ଝିଅବୋହୂମାନେ ଝୋଟି ଆଙ୍କିବା ଭୁଲିଗଲେଣି । ଓଡ଼ିଶାର ଲଳିତ କଳା ଏକାଡେମୀ ଝୋଟିକୁ ନେଇ ପ୍ରତିଯୋଗିତା କରନ୍ତି କିନ୍ତୁ ତାକୁ ଯେ ଆୟୁଧ (ଟୁଲ୍ ବା ଏମ୍‌ପାଓ୍ୱାର୍‌ମେଣ୍ଟ) ଭାବେ ବ୍ୟବହାର କରାଯାଇପାରିବ ତାହା ସେମାନଙ୍କ ଅବବୋଧକୁ ଏ ଯାଏଁ ଛୁଇଁନି ।

Digitized by srujanika@gmail.com

# ୩୬. ଭାରତ ଉତ୍ସବ ଓ ଭବଘୂରା ଭବନାଥ

ଭାରତ ଉତ୍ସବ ମୋ ଶିକ୍ଷା ଜୀବନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା । କଲେଜ ଜୀବନରେ ମଧ୍ୟ ଏଭଳି ଗୋଟିଏ ମର୍ଯ୍ୟାଦାବନ୍ତ ଆନ୍ତର୍ଜାତିକ ଶିକ୍ଷ ପ୍ରକଳ୍ପ ଆଉଥରେ କେବେ ଜୁଟିବ ତାହା ନିକଟ ଭବିଷ୍ୟତରେ କଳ୍ପନା କରିହେଉନି । ଏବେ ପୁଣି ଭାରତ ଉତ୍ସବର ପରମ୍ପରା କ୍ଷୀଣରୁ କ୍ଷୀଣତର ହୋଇ ଆସିଲାଣି । ଭାରତ ଉତ୍ସବ ଆଉ ହେଉନାହିଁ କହିବା ସମୀଚୀନ ହେବ । ଭାରତର ସାଂସ୍କୃତିକ ବୈଭବକୁ ଭାରତ ବାହାରେ ଅନ୍ୟ ଦେଶମାନଙ୍କରେ ପରିବେଷଣ କରିବାର ଲକ୍ଷ୍ୟ ନେଇ ପୁପୁଲ୍ ଜୟକରଙ୍କ ପ୍ରଚୋଦନାରେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଭାରତ ଉତ୍ସବ (ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ) ଆରମ୍ଭ କରିଥିଲେ । ବ୍ରିଟେନ୍, ଆମେରିକା, ଫ୍ରାନ୍ସ ପ୍ରଭୃତି ଦେଶରେ କ୍ରମାନ୍ୱୟରେ ଏହି ଉତ୍ସବ ଆରମ୍ଭ ହୋଇ ସରିଥାଏ । ସୁଇଡ଼େନ୍ ଓ ପ୍ରାଚୀନ ସୋଭିଏତ୍ ସଂଘ (ୟୁ.ଏସ୍.ଏସ୍.ଆର୍)ରେ ଭାରତ ଉତ୍ସବ ଆୟୋଜନ ସଂକ୍ରାନ୍ତୀୟ ଚିଠି କଲେଜରେ ପହଞ୍ଚିଲା । ଆଲୋଚନା ପାଇଁ ଦିଲ୍ଲୀର ବିଜ୍ଞାନ ଭବନରେ ଉପସ୍ଥିତ ହେବା ପାଇଁ ଚିଠିରେ ଅନୁରୋଧ ଥିଲା । ସେଦିନର ଆନନ୍ଦ ଓ ବିସ୍ମୟ ଅପରିକଳ୍ପନୀୟ । ସମର ବଲ୍ଲଭ ମହାପାତ୍ର ଆମ ସଂସ୍କୃତି ବିଭାଗର ସଚିବ ଥାଆନ୍ତି । ସେ ଏହି ପ୍ରକଳ୍ପର ମହତ୍ତ୍ୱ ଭଲ ଭାବେ ହୃଦୟଙ୍ଗମ କରିଥିବାରୁ ଦିଲ୍ଲୀ ଯିବା ପାଇଁ ମୋତେ ବିନା ବାକ୍ୟବିନିମୟରେ ଅନୁମତି ଦେଲେ । ମୁଁ ଦିଲ୍ଲୀ ଯାଇ ଭାରତ ଉତ୍ସବର ମହାନିର୍ଦ୍ଦେଶକ ଏସ୍.କେ. ମିଶ୍ରଙ୍କ ସହିତ ପ୍ରାରମ୍ଭିକ ଆଲୋଚନା କରି ଫେରି ଆସିଲି ।

ଏହି ଦୁଇ ଦେଶରେ ଭାରତ ଉତ୍ସବର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ମୁଖ୍ୟ ଆକର୍ଷଣ ଥିଲା ଭାରତୀୟ ଲୋକପ୍ରିୟ କଳା (ଇଣ୍ଡିଆନ୍ ପପୁଲାର୍ ଆର୍ଟ)ର ପ୍ରଦର୍ଶନୀ । ଏତେ ବଡ଼ ଆନ୍ତର୍ଜାତୀୟ ପ୍ରକଳ୍ପ କିଭଳି ରୂପାୟନ ହୋଇପାରିବ ତାହା ମୁଁ ଠିକ୍ ଭାବରେ କଳନା କରିପାରୁ ନଥିଲି । ପୁଣି ସେ ସଂକ୍ରାନ୍ତରେ ଯୋଜନା ପ୍ରସ୍ତୁତ କରି ମହାନିର୍ଦ୍ଦେଶକ ଏସ୍.କେ.ମିଶ୍ରଙ୍କ ନିକଟରେ ସାକ୍ଷାତକାର ଦେବାକୁ ହେବ । ଖବର ନେବାରୁ ଜଣାପଡିଲା ଯେ ଭାରତ ଉତ୍ସବ ଅଫିସ ଦିଲ୍ଲୀ ଲଳିତ କଳା ମହାବିଦ୍ୟାଳୟର ଆପ୍ଲାଇଡ୍ ଆର୍ଟ ବିଭାଗର ପ୍ରଫେସର ପି.ଡ଼ି.ଅଭୟଙ୍କର୍ ଓ ମୋ ଠାରୁ ପ୍ରଦର୍ଶନୀ ସଂକ୍ରାନ୍ତରେ ଯୋଜନା ଚାହିଁଛନ୍ତି ।

Digitized by srujanika@gmail.com

ଅରକ୍ଷିତଙ୍କୁ ଦଇବ ସାହା ଭଳି ଗୋଟିଏ ଅଦ୍ଭୁତ ଘଟଣା ଘଟିଲା । ମୋ ସୁଇସ୍‌ବନ୍ଧୁ ଏବର୍‌ହାର୍ଡ୍ ଫିସର୍ ଭାରତ ଗସ୍ତରେ ଆସି ଦିଲ୍ଲୀରେ ଅବସ୍ଥାନ କରୁଥାନ୍ତି । ମୁଁ ତାଙ୍କୁ ଦେଖା କରିବାକୁ ଦିଲ୍ଲୀ ଯାଇଥାଏ । ତାଙ୍କ ସହିତ 'ପାହାଡ଼ୀ ଚିତ୍ରକର' ବହି ପ୍ରକାଶନ ସମ୍ବନ୍ଧୀୟ ଆଲୋଚନା ପାଇଁ ଚଣ୍ଡିଗଡ଼ରୁ ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ ମଧ୍ୟ ଦିଲ୍ଲୀରେ ପହଞ୍ଚିଥାନ୍ତି । ସେମାନଙ୍କ ପାଖରେ ମୁଁ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ପପୁଲାର୍ ଆର୍ଟ୍ ପ୍ରଦର୍ଶନୀ କଥା ପକାଇଲି । ସେମାନେ ଆଗ୍ରହର ସହିତ ପପୁଲାର୍ ଆର୍ଟ୍ ପ୍ରଦର୍ଶନୀର ବିଭିନ୍ନ ଦିଗ ଓ ତା'ର ବିସ୍ତାର ସଂପର୍କରେ ଆଲୋଚନା କଲେ । ସନ୍ଧ୍ୟାରେ କପିଳା ବାତ୍ସ୍ୟାୟନ ଆମ ସାଙ୍ଗରେ ସାନ୍ଧ୍ୟ ଭୋଜନରେ ଯୋଗ ଦେଲେ । ସେ ସକାଳର ଆଲୋଚନାକୁ ଆହୁରି ଅଧିକା ତଥ୍ୟଭିତ୍ତିକ କରିଦେଲେ । ଭାରତୀୟ ଲୋକପ୍ରିୟ କଳା ପ୍ରଦର୍ଶନୀର ମୂଳଦୁଆ ପଡ଼ିଲା । ମୁଁ ଆଲୋଚନାର ନିର୍ଯ୍ୟାସକୁ ଲିପିବଦ୍ଧ କରି ଓଡ଼ିଶୀ କଳା ପରମ୍ପରାର କେତେକ ଅନାଲୋଚିତ ବିଷୟକୁ ମିଶାଇ ଗୋଟିଏ ଯୋଜନା ପ୍ରସ୍ତୁତ କଲି ଓ ତାର କିଛିଦିନ ପରେ ମହାନିର୍ଦ୍ଦେଶକ ଏସ୍.କେ. ମିଶ୍ରଙ୍କୁ ସାକ୍ଷାତ କଲି । ମୁଁ ସାକ୍ଷାତକାର ଦେବାବେଳେ ଦେଖିଲି ନିର୍ଦ୍ଦେଶକ ମିଶ୍ରଙ୍କ ସହିତ ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ ମଧ୍ୟ ବସିଛନ୍ତି । ମୋ ମନରେ ଦମ୍ଭ ଆସିଲା । ମିଶ୍ରେ ମୋ କାଗଜପତ୍ର ତନ୍ନ ତନ୍ନ କରି ଦେଖିଲେ ଓ ମୁଁ ପରେ ଜାଣିବାକୁ ପାଇଲି ଯେ ମୁଁ କୁଆଡ଼େ ଗୋଟିଏ 'ରୁରାଲ୍ ଭରଜିନ୍' ବୋଲି ସିଏ ମୋତେ ମନୋନୀତ କଲେ । ମିଶ୍ରଙ୍କ ଏ ଅଜବ ମନ୍ତବ୍ୟ କାନକୁ କାନ ହେଇ ଏବର୍‌ହାର୍ଡ୍‌ଙ୍କ ପାଖରେ ପହଞ୍ଚିଥାଏ । ଭର୍‌ଜିନ୍‌ର ଲିଙ୍ଗାତ୍ମକ ଅର୍ଥ ଏଠାରେ ଅବାନ୍ତର । ନିର୍ଦ୍ଦେଶକ ହୁଏତ ଫ୍ରେସ୍, ଇନୋଭେଟିଭ୍ ବା ଓରିଜିନାଲ୍ କହିବା ପାଇଁ ଚାହୁଁଥିଲେ । ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ ତାଙ୍କର ଘନିଷ୍ଠ ବନ୍ଧୁ ଏବଂ ଆଇ.ଏ.ଏସ୍‌ରେ ଏକା ବ୍ୟାଚ୍‌ର ହୋଇଥିବାରୁ ମିଶ୍ର ମହାଶୟ ରହସ୍ୟ କରି ମୋ ସଂପର୍କରେ ଏଭଳି ମନ୍ତବ୍ୟ ଦେଇଥିଲେ ।

'ଭର୍‌ଜିନ୍' ମନ୍ତବ୍ୟଟି ଅବଶ୍ୟ କଉତୁକିଆ । ଏହାର କଳାତ୍ମକ ତାତ୍ପର୍ଯ୍ୟ କିନ୍ତୁ ଗହୀରିଆ । ସହରିଆ ଜଣାଶୁଣା ଶିଳ୍ପୀମାନେ ଉପସ୍ଥାପନା କରୁଥିବା ଯୋଜନା ଗୁଡ଼ିକ ଯଦିଓ ରଙ୍ଗବେରଙ୍ଗ, ଚିକ୍କଣିଆ, ମନଲୋଭା ତଥାପି ସେମାନେ ବ୍ୟବହାର କରୁଥିବା କୌଶଳଗୁଡିକ ଅଚଳ ଦୋଅଣି ଭଳି ଘସରା ଏଣୁ ଭାରତ ଉତ୍ସବ ପ୍ରଶାସନ ଏମାନଙ୍କୁ ପସନ୍ଦ କରୁ ନଥିଲେ । ସେମାନେ ସଦା ସର୍ବଦା ନୂତନତାର ସନ୍ଧାନରେ ଥିଲେ । ଏଣୁ ମୋ ଚିନ୍ତାଧାରାର ଉପସ୍ଥାପନା ଶୈଳୀ ଓ ପପୁଲାର୍ ଆର୍ଟ୍‌କୁ ନେଇ ତଥ୍ୟଭିତ୍ତିକ ବୟାନ ସେମାନଙ୍କୁ ଆମୋଦିତ କଲା । ପ୍ରଦର୍ଶନୀର ଭିଜୁଏଲାଇଜର୍, କ୍ୟୁରେଟର୍ ଓ କମିଶନର୍ ଭାବେ ମୋତେ ନିଯୁକ୍ତି ଦିଆଗଲା ।

Digitized by srujanika@gmail.com

ଭାରତ ଉତ୍ସବରେ ମୋ ନିଯୁକ୍ତି ବିଷୟ ମୁଁ ସମର ବଲ୍ଲଭ ମହାପାତ୍ରଙ୍କୁ ଜଣାଇ ସରକାରୀ ଅନୁମତି ଲୋଡ଼ିଲି । କହିବା ବାହୁଲ୍ୟ ଯେ ସମର ବଲ୍ଲଭ ଖୁବ୍ କମ୍ ସମୟ ମଧ୍ୟରେ ସବୁ ବ୍ୟବସ୍ଥା କରିଦେଲେ । ସେ ଦିଲ୍ଲୀ ଯାଇ ପ୍ରଦର୍ଶନୀ ପାଇଁ ଭାରତ ସରକାରଙ୍କ ଉଦ୍ଦିଷ୍ଟ ଅନୁଦାନ କିଭଳି ମୋତେ ମିଳିବ ଓ କିଭଳି ମୁଁ ତାହା ଖର୍ଚ୍ଚ କରିବି ସେ ସଂପର୍କରେ ଆଲୋଚନା କଲେ । ସ୍ଥିର ହେଲା ଭାରତ ସରକାରଙ୍କ ସଂସ୍କୃତି ବିଭାଗ ଅନୁଦାନ ପାଣ୍ଠି ରାଜ୍ୟ ଲଳିତ କଳା ଏକାଡେମୀ ନିକଟରେ ଜମା ରଖିବେ । ମୁଁ କିସ୍ତି, କିସ୍ତିରେ ଆବଶ୍ୟକମତେ ଏକାଡେମୀରୁ ଟଙ୍କା ଆଣିବି ଏବଂ ଟଙ୍କା ଖର୍ଚ୍ଚ ହୋଇଗଲେ ଖର୍ଚ୍ଚର ସମସ୍ତ ଭାଉଚର ଏକାଡେମୀରେ ଦାଖଲ କରି ପୁଣି ଅଧିକା ଟଙ୍କା ପାଇଁ ଆବେଦନ କରିବି । ମୋତେ ଏଭଳି ବ୍ୟବସ୍ଥା ସମୟ ସାପେକ୍ଷ ମନେହେଲା । ପୁଣି ମୋ ପ୍ରତି ଏକାଡେମୀ କର୍ତ୍ତୃପକ୍ଷଙ୍କ ଅନୁଦାର ମନୋଭାବ ଏଭଳି ବ୍ୟବସ୍ଥାକୁ ଅଚଳ କରିଦେବାର ଆଶଙ୍କା ମଧ୍ୟ ରହିଲା । କିନ୍ତୁ ସବୁ ସମ୍ଭାବ୍ୟ ଜଟିଳତା ଓ ଅସହଯୋଗ ସତ୍ତ୍ୱେ ଅର୍ଥ ଦେଣନେଣର ଏଭଳି ବ୍ୟବସ୍ଥା ପରିଶେଷରେ ଉପାଦେୟ ମନେହେଲା ।

ଅର୍ଥ ଅନୁଦାନ ସଂକ୍ରାନ୍ତୀୟ ପ୍ରଥମ ଚିଠି ଯେତେବେଳେ ରାଜ୍ୟ ଲଳିତ କଳା ଏକାଡେମୀରେ ପହଞ୍ଚିଲା, ଏକାଡେମୀର ସଭାପତି, ଉପସଭାପତି, ସଂପାଦକ ତଥା ଅନ୍ୟାନ୍ୟ କିଛି ମେମ୍ବର ବିଚାରିଲେ ଯେ ଏକାଡେମୀ ଦିନନାଥ ପାଠୀଙ୍କୁ ଯେହେତୁ ଅର୍ଥପ୍ରଦାନ କରିବ ତେଣୁ ସେ ପ୍ରଦର୍ଶନୀ ପରିଚାଳନା ସଂକ୍ରାନ୍ତୀୟ ଏକାଡେମୀର ପରାମର୍ଶ ମାନି ଚଳିବାକୁ ବାଧ୍ୟ । ଏକାଡେମୀ କର୍ତ୍ତୃପକ୍ଷ ସଭା ଡକାଇ ଏଥିଲାଗି ନିଷ୍ପତ୍ତି ଗ୍ରହଣ କଲେ ଏବଂ ମୁଁ ରାଜ୍ୟ ସରକାରଙ୍କ କର୍ମଚାରୀ ହୋଇଥିବାରୁ ମୋତେ ନିର୍ଦ୍ଦେଶ ଦେବା ପାଇଁ ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗକୁ ପତ୍ର ଲେଖିଲେ । ଏକାଡେମୀର ପ୍ରସ୍ତାବଟି ଗୋଟିଏ ଟେବୁଲରୁ ଅନ୍ୟ ଗୋଟିଏ ଟେବୁଲକୁ ଭ୍ରମି ଭ୍ରମି ଶେଷରେ ରାଜ୍ୟର ମୁଖ୍ୟ ଶାସନ ସଚିବଙ୍କ ନିକଟରେ ପହଞ୍ଚିଲା । ମୁଖ୍ୟ ଶାସନ ସଚିବ ଲଲାଟେନ୍ଦୁ ପରିଜା ଏ ପ୍ରସ୍ତାବ ଦେଖି ଘୋର ଅସନ୍ତୋଷ ପ୍ରକାଶ କଲେ ଓ ଅତି କଠୋର ଭାଷାରେ ଏକାଡେମୀକୁ ସେମାନଙ୍କର ଅବିବେକୀ ପ୍ରସ୍ତାବ ପାଇଁ ଚେତାବନୀ ଦେଇ ମୃଦୁ ଭର୍ତ୍ସନା କଲେ । ମୁଖ୍ୟ ଶାସନ ସଚିବଙ୍କ କହିବା କଥା ହେଲା ଯେ ଅନୁଦାନ କେନ୍ଦ୍ର ସରକାରଙ୍କର । ସେମାନେ ଦିନନାଥ ପାଠୀଙ୍କର ଶୈକ୍ଷିକ ପ୍ରତିଭା ଓ ସାମର୍ଥ୍ୟର ଆକଳନ କରି ତାଙ୍କୁ ପ୍ରଦର୍ଶନୀର କମିଶନର୍ ନିଯୁକ୍ତି ଦେଇଛନ୍ତି । ଏ କ୍ଷେତ୍ରରେ ତାଙ୍କୁ ପରାମର୍ଶ ଦେବାର ଯଥାର୍ଥତା ଏକାଡେମୀର ନାହିଁ । ଏକାଡେମୀ କେନ୍ଦ୍ର ସରକାରଙ୍କ ଅନୁଦାନ ଅର୍ଥର ସାମୟିକ ବାହକ ମାତ୍ର, ପୋଷ୍ଟ ଅଫିସର ସେଭିଙ୍ଗସ୍ ବ୍ୟାଙ୍କ୍ ଭଳି ।

Digitized by srujanika@gmail.com

ଏକାଡେମୀର ଏଭଳି ମନୋବୃତ୍ତି ଓ ପ୍ରଦର୍ଶନୀରେ ବାଧା ପହଞ୍ଚାଇବାର ଅପକୌଶଳରେ ମୋ ମନରେ କ୍ଷୋଭ ଜାତ ହେଲା । ଏଣେ ଗୋଟିଏ ସମ୍ମାନଜନକ ଆନ୍ତର୍ଜାତିକ ପ୍ରଦର୍ଶନୀର ଗୁରୁଦାୟିତ୍ୱ ଯେଉଁଥିରେ ଭାରତ ସରକାରଙ୍କ ମର୍ଯ୍ୟାଦା ନିହିତ ତେଣେ ମୁଁ କେବଳ ଜଣେ ବ୍ୟକ୍ତି ଭାବରେ ନୁହେଁ ବରଂ ଗୋଟିଏ କଳା ଅନୁଷ୍ଠାନର ମୁଖ୍ୟ ଭାବରେ ମୋର ଅନୁଷ୍ଠାନର ତଥା ଓଡ଼ିଆ ଶିଳ୍ପୀକୁଳର ସମ୍ମାନବୋଧ ଓ ପାରିବାରପଣିଆ ମୋତେ ଅନୁପ୍ରେରିତ କରିବାକୁ ଲାଗିଲା । ଏହି ଦ୍ୱୈତ ଦାୟିତ୍ୱବୋଧ ସହିତ ଯୋଡ଼ି ହୋଇଗଲା କଲେଜକୁ ଦୈନନ୍ଦିନ ସୁଚାରୁ ରୂପେ ପରିଚାଳନା କରିବାର ଆବଶ୍ୟକତା । ଏସବୁ ସମସ୍ୟା ଭିତରେ ମୁଁ ଘାଣ୍ଟି ଚକଟି ହେବାକୁ ଲାଗିଲି ସିନା ଧୈର୍ଯ୍ୟ ନ ହରାଇ ମୋର ଭବିଷ୍ୟତ କର୍ମପନ୍ଥା ସ୍ଥିର କରିନେଲି ।

ପୂର୍ବରୁ କୌଣସି ଓଡ଼ିଆ ଶିଳ୍ପୀ ଭାରତ ଉତ୍ସବରେ ଏଭଳି ଗୁରୁ ଦାୟିତ୍ୱ ତୁଲାଇ ନଥିଲେ । ଏଣୁ ଏକାଡେମୀ ପରିଚାଳନାରେ ଥିବା କିଛି ଶିଳ୍ପୀବନ୍ଧୁ ଅସୂୟାପ୍ରଣୋଦିତ ହୋଇ ପ୍ରଦର୍ଶନୀର କ୍ଷତି ଘଟାଇବା ପାଇଁ ମସୁଧା କରିବା ସ୍ୱାଭାବିକ । ଖବର କାଗଜରେ ଭାରତ ଉତ୍ସବର କମିଶନର ନିଯୁକ୍ତି ସମ୍ବାଦ ଯେତେବେଳେ ପ୍ରକାଶିତ ହେଲା, ସେତେବେଳେ କିଛି ଅସହିଷ୍ଣୁ ତାଚ୍ଛଲ୍ୟ କରି କହିଲେ, ଦିନନାଥ ପାଠୀକୁ ଆଇ.ଏ.ଏସ୍. ଅଫିସର୍ ଭଳିଆ ଲାଗୁଛି । ଡ୍ରଇଂ ମାଷ୍ଟ୍ରମାନେ କେବେ କମିଶନର୍ ହେଲେଣି ନା ହେବେ ! ଦିଲ୍ଲୀରେ ବହୁଦିନ ଧରି ରହି ଅଣଓଡ଼ିଆ ମାନସିକତାରେ ଘାଣ୍ଟି ଚକଟି ହେଉଥିବା ଯତୀନ ଦାସ ଭାରତ ଉତ୍ସବ ମହା ନିର୍ଦ୍ଦେଶକଙ୍କ ନିକଟରେ ମୋର କୁତ୍ସା ରଟନା କଲେ ବୋଲି ମୋର ଜଣେ ଶୁଭେଚ୍ଛୁ ମୋତେ ସୂଚନା ଦେଲେ । ତାଙ୍କ ଅଭିଯୋଗ ହେଲା ଯେ ଭାରତ ସରକାର ଜଣେ ଅନଭିଜ୍ଞ ଟାଉନ୍ ସ୍କୁଲର ପ୍ରିନ୍‌ସପାଲ୍‌ଙ୍କୁ ଏଭଳି ଗୋଟିଏ ଗୁରୁ ଦାୟିତ୍ୱ ଦେଇଦେଲେ । ଯତୀନ ଦାସ ଏବେ ବେଳେବେଳେ ଓଡ଼ିଶା ଆସି ଓଡ଼ିଶାର କଳାକୁ ଟେକି ଧରିବେ ବୋଲି ବାହାସ୍ଫୋଟ ମାରୁଛନ୍ତି ଆଉ ମୋତେ ବାରମ୍ବାର ଭେଳିକି ଦେଖାଇ କହୁଛନ୍ତି, ଆସ ଆମେ ମିଳିମିଶି ଓଡ଼ିଶା ପାଇଁ କାମ କରିବା । ତାଙ୍କ କଥା ଶୁଣିଲେ ଭାରତ ଉତ୍ସବ ବେଳର ତାଙ୍କ ମନୋଭାବ ମନେପଡ଼ିଯାଏ । ସେ କେବଳ ମୋତେ ନ୍ୟୂନ କରିବା ପାଇଁ ଅପଚେଷ୍ଟା କରିନାହାନ୍ତି, ମୋ ଅନୁଷ୍ଠାନର ଇଜ୍ଜତ ତଳେ ପକାଇ ଦେବା ପାଇଁ ମଧ୍ୟ ପ୍ରୟାସ କରିଛନ୍ତି ।

ମହାବିଦ୍ୟାଳୟର ଅଧାପକ ଅଧାପିକା ଓ ଛାତ୍ରଛାତ୍ରୀଙ୍କୁ ଏହି ପ୍ରଦର୍ଶନୀ ପ୍ରକଳ୍ପରେ ସଂପୃକ୍ତ କରି ଅନୁଭବକୁ ଶିକ୍ଷଣୀୟ କରିବାର ଉଦ୍ଦେଶ୍ୟ ନେଇ ମୁଁ କାମ ଆରମ୍ଭ କଲି । ମୁଁ ଯେଉଁ ଦେଶକୁ ଗଲି ଯେଉଁ ସହରରେ ମୋର ଉପସ୍ଥିତି ଲୋଡ଼ା ହେଲା, ତାହା ଷ୍ଟକ୍‌ହୋମ୍ ହେଉ, ମସ୍କୋ ହେଉ, ବା ଲେଲିନ୍‌ଗ୍ରାଡ୍ ହେଉ ବା ଭାରତ ଭିତରେ ଦିଲ୍ଲୀ, ବମ୍ବେ, କଲିକତା ହେଉ ମୋ କଲେଜ ମୋର 'ଅଲଟର୍ ଇଗୋ' ଭଳି ମୋ ସାଙ୍ଗରେ ରହିଲା ।

Digitized by srujanika@gmail.com

ମୋର ପରିଚୟ ଜଣେ ବ୍ୟକ୍ତି ଭାବେ ନୁହେଁ ବରଂ ଓଡ଼ିଶାର ରାଜ୍ୟସ୍ତରୀୟ ଗୋଟିଏ କଳା ଅନୁଷ୍ଠାନର ମୁଖ୍ୟ ଭାବେ ସବୁଆଡ଼େ ପ୍ରକାଶିତ ହେଉଥିଲା ।

ଛାତ୍ରମାନେ ଦଳଦଳ ହୋଇ ଅଧ୍ୟାପକଙ୍କ ନେତୃତ୍ୱରେ ଭାରତର ବିଭିନ୍ନ ସହର ଗସ୍ତ କରି ପ୍ରଦର୍ଶନୀ ପାଇଁ କଳାସାମଗ୍ରୀ ସଂଗ୍ରହ କରିବାରେ ଲାଗିଲେ । ଏଥିରେ ଲୋକପ୍ରିୟ କଳା ଚିହ୍ନଟ କରିବାର ଦକ୍ଷତା ବଢ଼ିଲା ଏବଂ ସେହି ସହରମାନଙ୍କରେ ଘଟୁଥିବା ବିଭିନ୍ନ କଳା ସଂପର୍କୀୟ କାର୍ଯ୍ୟକ୍ରମ ତଥା ସେଠାକାର କଳା ଅନୁଷ୍ଠାନ ପରିଦର୍ଶନ କରିବାର ଅପୂର୍ବ ସୁଯୋଗ ସେମାନଙ୍କୁ ମିଳିଲା । ଏହି ଗସ୍ତମାନ କେବଳ ରେଳଯାତ୍ରା ମଧ୍ୟରେ ସୀମିତ ନଥିଲା । ବିମାନଯାତ୍ରା କେତେକ ଅଧ୍ୟାପକଙ୍କ ଜୀବନରେ ନୂଆ ଅନୁଭବ ଓ ନୂଆ ଶିହରଣ ଆଣିଦେଲା । ଅଧ୍ୟାପକ ଡି.ଏନ୍.ରାଓଙ୍କ ପତ୍ନୀ ବିୟୋଗ ଘଟିଥାଏ । ହାଇଦ୍ରାବାଦରୁ ଫେରି ମୋତେ ଖୁବ୍ ଭାବପ୍ରବଣ ହୋଇ କହିଲେ ଯେ ସେ ଆକାଶରେ ଉଡୁଥିବାବେଳେ ଭାସମାନ ମେଘମାଳା ମଧ୍ୟରେ ତାଙ୍କର ଦିବଙ୍ଗତ ପତ୍ନୀ ଲକ୍ଷ୍ମୀଙ୍କୁ ଦେଖିଛନ୍ତି । ଜଣେ ଶିଳ୍ପୀର ମର୍ମବେଦନା ଓ ତା ସହିତ କଳ୍ପନାର ବିସ୍ତାରିତ ରୂପକଳ୍ପକୁ ମୁଁ ଭଲଭାବରେ ହୃଦୟଙ୍ଗମ କରିପାରୁଥିଲି ।

ଧୀରେ ଧୀରେ କଲେଜ ପରିସର କଳାସାମଗ୍ରୀରେ ଭରପୂର ହେବାକୁ ଲାଗିଲା । ହାତଟଣା ରିକ୍ସା, ଅଟୋରିକ୍ସା, ପାନକେବିନ୍, ସେଲୁନ୍, କଳାକୁଞ୍ଜର ନଡ଼ା କଣ୍ଢେଇ, ଠାକୁରାଣୀ ଯାତ୍ରାର ପଟୁଆର ମୁଖା, ଭୂତ ସଭାର ଚିତ୍ରିତ କାଠ କଣ୍ଢେଇ, ଟେରାକୋଟା ଘୋଡ଼ା, ଗୁଜୁରାଟର କାଠ ଖୋଦେଇ, ସିନ୍ଦୁକ, ନୂଆଁଣିଆ ଚଉକି, ମେଜ, ତାମିଲନାଡୁରୁ ଆସିଥିବା ସିନେମା ବ୍ୟାନର ବମ୍ବେର ହିନ୍ଦୀ ସିନେମା ପୋଷ୍ଟର୍ ଏଭଳି କେତେ ପ୍ରକାର ଚିତ୍ର ବିଚିତ୍ର କଳାକାରିଗରି ଆସି କଲେଜରେ ଜମା ହେଲା । କଲେଜ ଘର ଓ ପରିସର ନିଅଣ୍ଟିଆ ହେବାରୁ କଳ୍ପନା ଛକର ଅନତିଦୂରରେ ଗୋଟିଏ ଘର ଭଡ଼ା ନିଆଗଲା । ବେଶ୍ ଛଅ ଆଠ ମାସ ଲୋକପ୍ରିୟ କଳା ପ୍ରଦର୍ଶନୀ ବସ୍ତୁର ଔଜ୍ଜ୍ୱଲ୍ୟରେ ଓ ତାର ମହକରେ କଲେଜ ଧନ୍ୟ ହେଇଗଲା, ତା ସହିତ ଧନ୍ୟ ହେଇଗଲେ ଛାତ୍ରଛାତ୍ରୀ ଅଧ୍ୟାପକ ଅଧ୍ୟାପିକା ଓ ନିଜେ ଅଧ୍ୟକ୍ଷ ।

ଅଧ୍ୟାପକ ଓ ଛାତ୍ରମାନେ ଭାରତସାରା ଭାରତଉତ୍ସବ କାମରେ ଗସ୍ତ କରୁଥିଲେ । ତା' ସହିତ ପ୍ରଦର୍ଶନୀର କ୍ୟୁରେଟର୍ ଭାବେ ମୋତେ ମଧ୍ୟ ବିଭିନ୍ନ କଳା ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ନିକଟରେ ପହଞ୍ଚି କଳାସାମଗ୍ରୀ କ୍ରୟ ସହିତ ଧାର ସୂତ୍ରରେ ଆଣିବା ପାଇଁ ବ୍ୟବସ୍ଥା କରିବାକୁ ହେଉଥିଲା । ଭାରତ ଉତ୍ସବ ପାଇଁ ସମଗ୍ର ଭାରତ ବର୍ଷର କୋଣ ଅନୁକୋଣ ମୁଁ ଖେଦି ଯାଇଥିଲି । ଆମ ଦେଶର କଳା ଅନୁଷ୍ଠାନ, କଳା ସଂପଦ ଓ କଳାକାରଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରିବାର ଏହା ଥିଲା ମୋ ପାଇଁ ଅପୂର୍ବ

Digitized by srujanika@gmail.com

ସୁଯୋଗ । ମୁଁ ଯେଉଁଠାକୁ ଯାଉଥିଲି ସେଠି ଆମ କଲେଜର ପ୍ରଦର୍ଶନୀ ପୁସ୍ତିକା, କଳା ଓ ନାନ୍ଦନିକତାର ପତ୍ରିକା 'ଚିତ୍ର', ବିଭାଗୀୟ ପ୍ରକାଶନ 'ମୁଦ୍ରା', 'ଇମେଜ', 'ଡ୍ରଇଁ' ପ୍ରଭୃତି ଉପହାର ଦେଇ କଲେଜର ସୁଗନ୍ଧ ବିତରଣ କରୁଥିଲି ।

ଭାରତ ଉତ୍ସବ- ଲୋକପ୍ରିୟ କଳା ପ୍ରଦର୍ଶନୀ ଯୋଗାଡ଼ରେ ୧୯୮୭, ୧୯୮୮ ଦୁଇବର୍ଷ ଭୀଷଣ ବ୍ୟସ୍ତ ରହିବାକୁ ହେଲା । ମୋତେ କଲେଜରେ ବେଳେବେଳେ ମାସ ମାସ ଧରି ଅନୁପସ୍ଥିତ ରହିବାକୁ ପଡୁଥିଲା । ଭାରତ ଭିତରେ ଗସ୍ତ ସାଙ୍ଗକୁ ବିଦେଶ ଗସ୍ତ ମିଶିଯାଇ ଭାରତ ଉତ୍ସବ ମୋତେ ଡ୍ରଇଁମାଷ୍ଟ୍ରର ଅସହାୟତାରୁ ଉନ୍ନୀତ କରିଦେଇ ଭବଘୂରା ଦିନନାଥ (ଭବନାଥ)ର ଏକ ମର୍ଯ୍ୟାଦାବନ୍ତ ସ୍ଥିତିରେ ପହଞ୍ଚାଇ ଦେଇଥିଲା । ମନେ ହେଉଥିଲା ଗୋଟିଏ ଦେଶରୁ ଅନ୍ୟ ଏକ ଦେଶକୁ ଗୋଟିଏ ବିମାନ ବନ୍ଦରରୁ ଅନ୍ୟ ଏକ ବିମାନ ବନ୍ଦରକୁ ମୁଁ ଅହରହ ଧାଉଁଛି । କ୍ଲାନ୍ତି ନାହିଁ, ଆଖିରେ ଦିଗନ୍ତ ବିସ୍ତାରୀ ସ୍ୱପ୍ନ । ମନରେ ଓଡ଼ିଶାର କଳାକୁ ବିଶ୍ୱରେ ଚିହ୍ନଟ କରିବାର ପ୍ରତିଜ୍ଞା, ଆଉ ହୃଦୟର ନିଭୃତ କୋଣରେ ସଦା ଝଙ୍କୃତ ହେଉଥିବା କଲେଜ ଓ ତାର ଆସ୍ପୃହାକୁ ଏକ ବୃହତ୍ତର ପ୍ରେକ୍ଷାପଟରେ ପ୍ରତିଷ୍ଠା କରିବାର ପ୍ରତିଜ୍ଞା ମୋତେ ସଦା ଉଦ୍‌ବେଳିତ କରି ରଖିଥାଏ । ବିଦେଶ ଗସ୍ତର ସମସ୍ତ ଟିକେଟ, ସେଠାକାର ରହଣି, ଖାଦ୍ୟପାନୀୟ ଓ ଯାତାୟାତର ବ୍ୟବସ୍ଥା ଭାରତ ଉତ୍ସବ କର୍ତ୍ତୃପକ୍ଷ କରୁଥିଲେ । ଗସ୍ତର ଅବ୍ୟବହିତ ପୂର୍ବରୁ ସବୁ ଆବଶ୍ୟକ କାଗଜପତ୍ର ମୋ ପାଖରେ ପହଞ୍ଚି ଯାଉଥିଲା ନତୁବା ବେଳେବେଳେ ଭାରତ ଉତ୍ସବର ଉପଶାସନ ସଚିବ ସ୍ୱତନ୍ତ ଶେଖୋଁଙ୍କ ଠାରୁ ସଂଗ୍ରହ କରିବାକୁ ହେଉଥିଲା । ଏ ବ୍ୟବସ୍ଥାମାନ ଏତେ ସୁରୁଖୁରୁରେ ଜଞ୍ଜାଳବିହୀନ ଭାବେ ଘଟିଯାଉଥିଲା ଯେ ସେହି ଆଦେଶନାମା ଓ କାର୍ଯ୍ୟକ୍ରମର ଫର୍ଦ୍ଦଗୁଡିକୁ ଦେଖିଲେ ମନରେ ଗର୍ବବୋଧ ଆସୁଥିଲା ଏବଂ ଓଡ଼ିଶା ଲଳିତ କଳା ଏକାଡେମୀର ଅବ୍ୟବସ୍ଥା, ଅପାରଗତା ଓ ଅସୂୟାପ୍ରଣୋଦିତ ସମସ୍ତ ଷଡ଼ଯନ୍ତ୍ର ଅତି ସହଜରେ ଭୁଲି ହୋଇଯାଉଥିଲା ।

ଭାରତ ଉତ୍ସବର କମିଶନରଙ୍କୁ ଭାରତ ସରକାର ପ୍ରଥମ ଶ୍ରେଣୀ ସ୍ୱତନ୍ତ ପାହ୍ୟାର ଅଫିସର୍ ଭାବେ ମାନ୍ୟତା ଦେଉଥିଲେ । ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ମୋତେ ଯାହା ଦରମା ଦେଉଥାଉ ପଛେ ମୁଁ ଉଡ଼ାଜାହାଜରେ ଏକ୍‌ସିକ୍ୟୁଟିଭ୍ (ପ୍ରଥମ ଶ୍ରେଣୀ ଧରାଯାଉ) ଶ୍ରେଣୀରେ ଭ୍ରମଣ କରୁଥିଲି । ମୋ ବନ୍ଧୁ ଏବରହାର୍ଡ୍ ମୋତେ ଥରେ କୌତୁକରେ ପଚାରିଲେ, ଦିନନାଥ ଆଜିକାଲି ତମେ ଏକ୍‌ସିକ୍ୟୁଟିଭ କ୍ଲାସ୍‌ରେ ଟ୍ରାଭଲ୍ କରୁଛ ? ମୁଁ ତ ଇକୋନୋମିରୁ ଉପରକୁ ଉଠିପାରିନି । ତାଙ୍କର ମନ୍ତବ୍ୟ ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ସୁଇସ୍ ବନ୍ଧୁମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା- ଦେଖ ଚିତ୍ରଶିଳ୍ପୀ ଦିନନାଥ କିଭଳି ଭାରତ ସରକାରଙ୍କ କମିଶନର୍ ହୋଇଛି ଏବଂ ଏକ୍‌ସିକ୍ୟୁଟିଭ କ୍ଲାସରେ ଟ୍ରାଭଲ୍ କରୁଛି ।

Digitized by srujanika@gmail.com

ଓଡ଼ିଶା ଫେରିଲେ ମୋ ଗସ୍ତ ସଂପର୍କରେ ମୋ ବନ୍ଧୁମାନଙ୍କୁ ବା ବିଭାଗୀୟ ଅଫିସରମାନଙ୍କୁ ମୁଁ ଠିକ୍ ତଥ୍ୟ ଜଣେଇବାକୁ ଭୟ କରେ । ଏଠି ତ ଶାଗଖିଆକୁ ପେଙ୍କଖିଆ ଚିହ୍ନନ୍ତି ନାହିଁ । ଏଣୁ ଏମାନଙ୍କ ଆଗରେ ସବୁ ସତ କଥା କହିବା ବୁଦ୍ଧିମାନ ଲୋକର କାର୍ଯ୍ୟ ହେବନାହିଁ । ହୁଏତ ସେମାନେ ପ୍ରଶ୍ନ କରିପାରନ୍ତି ତମେ ଜଣେ ପ୍ରଥମ ଶ୍ରେଣୀର ସାଧାରଣ ଅଫିସର୍ ହେଇ କିଭଳି ଏକ୍‌ସିକ୍ୟୁଟିଭ କ୍ଲାସରେ ଗସ୍ତ କରୁଛ ? ତମେ କ'ଣ ବିଭାଗୀୟ ସଚିବଙ୍କ ଅନୁମତି ନେଇଛ ? ବିଭାଗୀୟ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ତମ ଗସ୍ତକୁ କ'ଣ ଅନୁମୋଦନ କରିଛନ୍ତି ? ଏସବୁ ଅଡୁଆ ତୁଟଉ ତୁଟଉ ଲୋକପ୍ରିୟ କଳା ପ୍ରଦର୍ଶନୀ ଅଦିନ ବନ୍ୟାରେ ଭାସିଯିବ ।

ଭାରତ ଉତ୍ସବର ଦିନଗୁଡିକ ଅତି ଆନନ୍ଦରେ କଟିଗଲା । ଯଦି ଲଳିତ କଳା ଏକାଡେମୀ ଟଙ୍କା ପଇଠ କରିବାରେ ବିଳମ୍ବ କରନ୍ତି ମୁଁ ଭାରତ ସରକାରଙ୍କୁ ସିଧା ଚିଠି ଲେଖି ଜଣାଇଦିଏ । ସେଠାରୁ ସଂସ୍କୃତି ବିଭାଗର ନିର୍ଦ୍ଦେଶକଙ୍କ ପାଖରୁ ତାଗିଦା ଦେଇ ଚିଠି ଆସିଯାଏ । ଥରେ ନିର୍ଦ୍ଦେଶକ ରବିନାରାୟଣ ବହିଦାରଙ୍କ ପାଖକୁ ଭାରତ ସରକାରଙ୍କ ପାଖରୁ କଡ଼ା ଚିଠିଖଣ୍ଡେ ଆସିଲା । ସେ ମୋତେ ତାଙ୍କ ଅଫିସକୁ ଡକେଇ ପଠେଇଲେ ଆଉ ଅନୁନୟ ହୋଇ କହିଲେ, ''ଦିନନାଥ ବାବୁ ଆପଣ ଏମିତି ଚିଠି ଲେଖି ଓଡ଼ିଶା ସରକାରଙ୍କୁ ବଦନାମ କରନ୍ତୁ ନାହିଁ ।'' ମୁଁ ଠଉରେଇ ନେଲି ବାଘର ଭୟ ଫାଗକୁ । ଏକାଡେମୀ ବେଶି ହଇରାଣ କଲେ ମୁଁ ମୋ ଅମୋଘ ଅସ୍ତ୍ର ପ୍ରୟୋଗ କରିଦିଏ ।

ଭାରତ ଉତ୍ସବରେ ସାମିଲ ହେଇ ବିଦେଶ ଯିବା ପାଇଁ ବେଶ୍ କିଛି ଅଫିସର ମୋତେ ଅନୁରୋଧ କରିଛନ୍ତି । ସେହି ତାଲିକାରେ ଉଭୟ ଓ.ଏ.ଏସ୍ ଏବଂ ଆଇ.ଏ.ଏସ୍. ଅଫିସରମାନେ ଥିଲେ । ନିଜକୁ ଅତି ସଚ୍ଚୋଟ ଓ ନୀତିବାନ୍ ବୋଲି ଦେଖେଇ ହେଉଥିବା କିଛି ଅଫିସରଙ୍କ ଏଭଳି ଅହେତୁକ ଅନୁରୋଧ ଏବେ ମନେପଡ଼ିଲେ ମନରେ ସେମାନଙ୍କ ପ୍ରତି ଦୟା ଆସେ । ଭାରତ ଉତ୍ସବର ଶିଳ୍ପୀ ତାଲିକାରେ ଅନ୍ତର୍ଭୁକ୍ତ କରିବା ପାଇଁ କଲେଜର କିଛି ଅଧ୍ୟାପକ ଓ ବଛାବଛା ଛାତ୍ରଙ୍କ ନାଁ ମୁଁ ଭାରତ ସରକାରଙ୍କ ନିକଟକୁ ପଠାଇଥିଲି । ସେଥିରେ ଥିଲେ ଡି.ଏନ୍.ରାଓ, ଶିବ ପାଣିଗ୍ରାହୀ ଓ ବଳଦେବ ମହାରଥୀ । ଛାତ୍ରଙ୍କ ତାଲିକାରେ ଥିଲେ ସଂଗ୍ରାମ ମହାରଣା, ବାଳକୃଷ୍ଣ ନନ୍ଦ ଓ ମାନସ ରଂଜନ ଜେନା । ଏହି ଛ'ଟି ନାଁ ଭିତରୁ ଭାରତ ସରକାର କେବଳ ସଂଗ୍ରାମ ମହାରଣାର ଗସ୍ତକୁ ଅନୁମୋଦନ ଦେଲେ । ଏଥିରେ ଅନ୍ୟମାନଙ୍କ ମନରେ କ୍ଷୋଭ ଜାତ ହେବା ସ୍ୱାଭାବିକ । କଲେଜ ବାହାରୁ ଏ ଦଳରେ ଯାଇଥିଲେ ଅସୀମ ବସୁ, ପୁରୁଣା ଭୁବନେଶ୍ୱରର ରୋହିତ ବଟ୍ଲୁ, କଟକ ମାଟି କାରିଗର ପ୍ରଦୀପ ସେନାପତି, ବଡ଼େଇ ନୃସିଂହ ମହାରଣା, ମାଡ୍ରାସ୍‌ର ବ୍ୟାନର୍ ପେଣ୍ଟର୍ ଭେଦାଚଳମ୍, ମୋତେ ଛାଡ଼ି ଏ ଦଳରେ ଶିଳ୍ପୀ ବୋଇଲେ କେବଳ ଅସୀମ

Digitized by srujanika@gmail.com

ବନ୍ଧୁ । ଏଣୁ କଲେଜ ବାହାରର କିଛି ଓଡ଼ିଆ ଶିକ୍ଷୀଙ୍କ ସ୍ୱରରେ ସ୍ୱର ମିଳାଇ ଆମର ଜଣେ ଅଧେ ଅଧ୍ୟାପକ କହିଲେ, ''ଶଳେ ବଢ଼େଇ, କମାର, ଅଚଳ ଅଟୋ ରିକ୍ସା, ଭଙ୍ଗା ସାଇକେଲ୍ ରିକ୍ସା, ପାନ କେବିନ୍, ନଡ଼ା ବିଡ଼ା ଓ ଚାହା ପିଇବା ପାଇଁ ମାଟିଖୁରୀ ଯାଏଁ ଯେତେ ସବୁ ଅଲୋଡ଼ା ଦରବ ଷ୍ଟକ୍‌ହୋମ୍ ଗଲେ ଅଥଚ ଆମେ କେଇଜଣ ଅଧ୍ୟାପକ ଯାଇପାରିଲୁ ନାହିଁ ।'' ସେମାନଙ୍କ ଅବଶୋଷ ରହିଗଲା । 'ବାଙ୍‌ମୟ ଚିତ୍ରପଟ' ଅଭିନନ୍ଦନ ଗ୍ରନ୍ଥରେ ସେମାନେ ସେମାନଙ୍କ କ୍ଷୋଭ ପ୍ରକାଶ କରିଛନ୍ତି ।

ବିଦେଶ ଭ୍ରମଣର ନିଶା ଭାରି ପ୍ରବଳ । ମୁଁ ଭାରତ ଉତ୍ସବ ବୋଲି ନୁହଁ, ବିଭିନ୍ନ କାମରେ ପ୍ରତିବର୍ଷ ବିଦେଶ ଭ୍ରମଣ ଅନାୟାସରେ କରୁଥିବାରୁ ମୋ କଥା ଅଧ୍ୟାପକଙ୍କ ଦେହସୁଆ ହେଇସାରିଥିଲା । ଏଣୁ ସେମାନଙ୍କ ମନରେ କ୍ଷୋଭ ସିନା ଥିଲା, ପ୍ରତିବାଦର ସ୍ୱର ଉଠୁ ନଥିଲା । ସେମାନେ କଲେଜ ପରିଚାଳନାରେ ଅଡୁଆ ସୃଷ୍ଟି କରୁ ନଥିଲେ । ଏବର ଭଳି କଲେଜର ପରିସ୍ଥିତି ହେଇଥିଲେ ବେନାମୀ ଚିଠି ଓ ଛାତ୍ର ଧର୍ମଘଟ କଲେଜର ଶୃଙ୍ଖଳିତ କାର୍ଯ୍ୟଧାରାକୁ ତଳିତଳାନ୍ତ କରିଦେଇଥାନ୍ତା । କଲେଜର ଅଧ୍ୟାପକମାନେ ସିନା ଷ୍ଟକ୍‌ହୋମ୍ କିମ୍ବା ମସ୍କୋ ଯାଇପାରିଲେନି, ତାଙ୍କ ହାତଗଢ଼ା ଶିଳ୍ପ କିନ୍ତୁ ବିଦେଶ ଭୂଇଁରେ ଚମକ ଦେଖାଇବାରେ ସମର୍ଥ ହେଲା । ସେଥିରେ ଥିଲା ଚନ୍ଦ୍ରଶେଖର ରାଓ ଓ ବଳଦେବ ମହାରଥୀଙ୍କ ତତ୍ତ୍ୱାବଧାନରେ ଚିତ୍ରିତ ଭାରତୀୟ ରାଜରାସ୍ତାର ପରଦାଚିତ୍ର, ଡି.ଏନ୍.ରାଓଙ୍କ ଗ୍ରାଫିକ୍ ପ୍ରିଣ୍ଟ, ଅମରେଶ ବାଁସୁରୀ ଓ ଦିଲ୍ଲୀପ ମହନ୍ତଙ୍କ ଫଟୋ ଡକ୍ୟୁମେଣ୍ଟେସନ୍, ବାଳକୃଷ୍ଣ ନନ୍ଦ ଓ ମାନସ ଜେନାଙ୍କ ହାତ ଅକ୍ଷର ଲେଖା କ୍ୟାବିନ୍ ଏବଂ ଏଭଳି ଅନେକ କଳାକୃତି । ଛାତ୍ରମାନଙ୍କ ପ୍ରତିନିଧି ଭାବେ ସଂଗ୍ରାମ ମହାରଣାର ପ୍ରଥମ ବିଦେଶ ଗସ୍ତ ମହାବିଦ୍ୟାଳୟର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ହେଇ ରହିଗଲା ।

Digitized by srujanika@gmail.com

# ୩୭. ଷ୍ଟକ୍‌ହୋମ୍‌ରେ ଲୋକପ୍ରିୟ କଳାର ପ୍ରଦର୍ଶନୀ

ଭାରତ ଉତ୍ସବର କମିଶନର୍ ଭାବେ ମୋ ଅନୁଭୂତି ଗଳ୍ପ ସଂକଳନ 'ଭବଘୂରା ଭବନାଥରେ' ମୁଁ ବର୍ଣ୍ଣି ଦେଇଛି । ଏଠାରେ ସେସବୁର ପୁନରାବୃତ୍ତି ମୋର ଉଦ୍ଦେଶ୍ୟ ନୁହେଁ । ଏଭଳି କିଛି କଥା ଅଛି ଯାହାର ସ୍ମରଣ ଏବେ ବି ମୋତେ ସେ ଦିନର ମଧୁମୟ ସଂପାନ ଭିତରକୁ କୋଳେଇ ନେଇଯାଏ । ମନେପଡ଼ିଯାଏ ଷ୍ଟକ୍‌ହୋମ୍ ସହରର ସିଟି ଟାଓ୍ୱାର୍, ନୋବେଲ ପୁରସ୍କାର ବିତରଣ କରାଯାଉଥିବା ଟାଉନ୍ ହଲ, ନୋବେଲ ବିଜେତା ସମ୍ବର୍ଦ୍ଧିତ ହେଉଥିବା ହଲ୍‌ର ଗୋଲ୍‌ଡେନ୍ ଗିଲ୍‌ଡେନ୍ କାନ୍ଥ ଓ ଛାତ, କୁଲ୍‌ଟୁର୍ ହ୍ୟୁସେଟ୍ । ପୁଣି ସ୍ମରଣରେ ଉଙ୍କିମାରେ ଷ୍ଟକ୍‌ହୋମ୍‌ର ସିଟି ହୋଟେଲ୍, ରାଜା ଓ ରାଣୀ ବଗିଚା, ସମୁଦ୍ର କୂଳ, କୂଳରେ ଲଙ୍ଗର ପକାଇଥିବା ପ୍ରକାଣ୍ଡ ପୋତମାନଙ୍କରେ ପଶି ସେଗୁଡ଼ିକୁ ଆବିଷ୍କାର କରିବାର ବିସ୍ମୟ । ସହଯୋଗୀ କ୍ୟୁରେଟର୍ ଶିଶି ନିଲ୍‌ସନ୍ ଓ ମାର୍ଗାରିଏତା ଜେଟେରେଷ୍ଟ୍ରମ୍‌ଙ୍କ ଅକପଟ ସ୍ନେହ, ସୌହାର୍ଦ୍ଦ, କୁଲ୍‌ଟୁର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ବୋ' ସିଲ୍‌ଭାନ୍‌ଙ୍କ ଉଦ୍ରୋଚିତ ବ୍ୟବହାର ଏବଂ ଆର୍ଚିପେଲିଆଗୋର ସହସ୍ର ଦ୍ୱୀପଭ୍ରମଣକାଳୀନ ଅପାଶୋରା ଆନନ୍ଦ ।

ପ୍ରଦର୍ଶନୀର କିଛିଦିନ ଆଗରୁ, ବୋଧହୁଏ ସପ୍ତାହେ ଆଗରୁ ହେବ କୁଲ୍‌ଟୁର୍ ହ୍ୟୁସେଟ୍ (ଷ୍ଟକ୍‌ହୋମ୍‌ର ସାଂସ୍କୃତିକ ଭବନ) ସ୍ଥିର କଲେ ଯେ ରାଜାବଗିଚାରେ ସାମ୍ବାଦିକ ସମ୍ମିଳନୀ ଅନୁଷ୍ଠିତ ହେବ ଏବଂ ପ୍ରତ୍ୟେକ ପଞ୍ଜୀକୃତ ପ୍ରଦର୍ଶନୀର କ୍ୟୁରେଟର୍ ମାନେ ନିଜ ନିଜ ପ୍ରଦର୍ଶନୀର କୌଣସି ଗୋଟିଏ ଉଲ୍ଲେଖନୀୟ କଳା ସାମଗ୍ରୀ ଉପସ୍ଥାପନ କରି ପ୍ରଦର୍ଶନୀ ସଂପର୍କରେ ଆଠ ମିନିଟିଆ ସୂଚନାଟିଏ ଦେବେ । ମୋ ମୁଣ୍ଡରେ ବଜ୍ର ପଡ଼ିଲା । ଓଡ଼ିଶା ଲଳିତ କଳା ଏକାଡେମୀର କିସ୍ତି ଦେବାରେ ବିଳମ୍ବ ସାଙ୍ଗକୁ ସୁଇଡ଼େନ୍‌ରେ ଲୋକପ୍ରିୟ କଳାକୁ ନେଇ ଆସୁଥିବା ପାଣିଜାହାଜ ପହଞ୍ଚିବାରେ ବିଳମ୍ବ ମୋର ସମସ୍ତ ଆକଳନକୁ ବିଗାଡ଼ି ଦେଇଥାଏ । ଅଧୈର୍ଯ୍ୟ ନ ହେଇ ଆମେ ଓଡ଼ିଆ ଶିକ୍ଷୀତକ ରଣକୌଶଳ ସ୍ଥିର କଲୁ । ମୁଁ ବ୍ଲକ୍‌ଉଡ୍‌ରେ ଆଠଫୁଟିଆ ନୃସିଂହ ମୁଖାଟିଏ ତିଆରି କରିବା ପାଇଁ ପ୍ରସ୍ତାବ ଦେଲି । ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ନୃସିଂହମୁଖା ମାନେ ପ୍ରହଲ୍ଲାଦ ନାଟକର ହିରଣ୍ୟ ବିଦାରଣ ବେଳର ନୃସିଂହ ଚରିତ୍ର ପିନ୍ଧିଥିବା ମୁଖା । ବ୍ଲକ୍-ବୋର୍ଡ଼୍‌ରେ ଚିତ୍ରଟି ମୁଁ ଗାରେଇ ଦେବା ପରେ ସଂଗ୍ରାମ ଓ ନୃସିଂହ ମହାରଣା ଚଟାପଟ୍ କଟ୍‌ଆଉଟ୍‌ଟିଏ ପ୍ରସ୍ତୁତ

Digitized by srujanika@gmail.com

କରିଦେଲେ । ମୁଁ ନିଜେ ଚିତ୍ରକାମରେ ଲାଗିଗଲି । ସଂଧ୍ୟା ପୂର୍ବରୁ ନୃସିଂହ ବିଜେ ହେଇଗଲେ । ଶିଶି ଆଉ ମାର୍ଗାରିଏତା ଏଭଳି ଭୟାନକ ଲୋଳିତଜିହ୍ୱାଯୁକ୍ତ ନୃସିଂହ ମୁଣ୍ଡ ଦେଖି ଯୁଗପତ୍ ବିସ୍ମିତ ହେଲେ । ମତ ଦେଲେ ମୁଖା ଦେଖି ସାମ୍ବାଦିକ ସମ୍ମିଳନୀ ଉଲ୍ଲସି ଉଠିବ । ସାମ୍ବାଦିକ ସମ୍ମିଳନୀକୁ ନେବାବେଳେ ମୁଖାଟିକୁ ଆମେ ଧଳା କନାରେ ଢ଼ାଙ୍କି ଦେଲୁ । ମୁଖା ପଛପଟେ ଗୋଟିଏ ଲମ୍ବା ବାଉଁଶ ବନ୍ଧାଗଲା । ଓଡ଼ିଆ କାରିଗର ଦଳ ଏବଂ ସୁଇଡ଼ିସ୍ କାରିଗର ପୁଞ୍ଜା ଆଗପଛ ହେଇ ବାଉଁଶକୁ କାନ୍ଧେଇଲେ । ମୁଁ ଦଳପତି ଭାବେ କାଣ୍ଡିଆର ଗଳବନ୍ଧ ପିନ୍ଧି ଆଗେ ଆଗେ ଚାଲିଲି । ରୀତିମତ ଗୋଟିଏ ପଟୁଆର । ରାସ୍ତାରେ ଯାଉଥିବା ଲୋକେ ଉତ୍ସୁକ ହେଇ ଆମକୁ ଅନେଇ ରହିଲେ । ମୁଁ କହି କହି ଯାଉଥାଏ, ‘‘ଆମେ ସବୁ ଭାରତୀୟ, ଓଡ଼ିଶାରୁ ଆସିଛୁ, ଆର୍ଟସ୍କୁଲର ଛାତ୍ର । ଆମର ପ୍ରଦର୍ଶନୀ ହେଲା ଭାରତୀୟ ଲୋକପ୍ରିୟ କଳା ।’’ ଥୋକେ ବିଚାରିଲେ ଭାରତରୁ ଆସିଥିବା କ’ଣ ଗୋଟିଏ ବିରାଟ କଳାକୃତିକୁ ଶିଳ୍ପୀମାନେ ରାଜାବଗିଚାକୁ ବୋହି ଚାଲିଛନ୍ତି । ଚାଲ, ଦେଖିବାକୁ ଯିବା । ଧୀରେ ଧୀରେ ପଟୁଆରରେ ଦେଖଣାହାରୀଙ୍କ ସଂଖ୍ୟା ବଢ଼ିଲା । ଆମେ ସାମ୍ବାଦିକ ସମ୍ମିଳନୀରେ ପହଞ୍ଚିଲା ବେଳକୁ ଆମ ସାଙ୍ଗରେ ପଚାଶ ଷାଠିଏ ଲୋକ ସଭାକୁ ଅଧିକ ଗହଳିଆ କରିଦେଲେ । ପ୍ରଥମେ ପଡ଼ିଲା ମୋ ପାଳି । ସମ୍ମିଳନୀ ଆରମ୍ଭର ପାଞ୍ଚମିନିଟ୍ ଆଗରୁ ମୁଁ ମଞ୍ଚ ଉପରକୁ ଉଠିଲି । ଦର୍ଶକଙ୍କ ଆଡ଼କୁ ନୃସିଂହ ମୁଖାକୁ ପିଠିକଡ଼ିଆ କରି ସଂଗ୍ରାମ ଓ ରୋହିତ ମଞ୍ଚ ଉପରେ ଠିଆ ହେଲେ । ଢ଼ଙ୍କା ହେଇଥିବା କନାକୁ ହଟେଇ ଦିଆଗଲା । ଦର୍ଶକ ଉଦ୍‌ଗ୍ରୀବ । ମୁଁ ମୁଖାକୁ ପାଞ୍ଚ ଛଅ ଫୁଟ ଛାଡ଼ି ଠିଆ ହେଇଥାଏ । ସମୟ ହେବାର ଇଙ୍ଗିତ ପାଇବା ସଂଗେ ସଂଗେ ମୁଁ ଆରମ୍ଭ କଲି, ‘‘ପ୍ରିୟ ଭଦ୍ରମହିଳା ଓ ଭଦ୍ରବ୍ୟକ୍ତିଗଣ !’’ ଆପଣମାନେ ମଞ୍ଚ ଉପରେ ଖୁବ୍ ଶୀଘ୍ର ଯାହା ଦେଖିବାକୁ ଯାଉଛନ୍ତି ତାହା ଭାରତୀୟ ଲୋକପ୍ରିୟ କଳା ପ୍ରଦର୍ଶନୀକୁ ଭାରତରୁ ଆସିଥିବା କେତେ ଶହ କଳାକୃତି ମଧ୍ୟରୁ ଗୋଟିଏ । ମୁଁ ଏତକ ବାକ୍ୟ କହିସାରିଲା ବେଳକୁ ସଂଗ୍ରାମ ଓ ରୋହିତ, ନୃସିଂହ ଚିତ୍ରିତ ମୁଖାଟିକୁ ଘୂରେଇ ସାରିଲେଣି । ଦର୍ଶକଙ୍କ ମଧ୍ୟରୁ ଓ୍ୱା, ଓ୍ୱା, କଂଗ୍ରାଚୁଲେସନ୍, ଫେଣ୍ଟାଷ୍ଟିକ୍ ଭଳି ଅସଂଖ୍ୟ ପ୍ରଶଂସାବାଚକ ଶବ୍ଦ ଗୁଞ୍ଜରିତ ହେଲା । ମୋ ଛାତି କୁଣ୍ଢେମୋଟ ହେଇଯାଉଥାଏ । ମୁଁ ଭାବବିହ୍ୱଳ ହେଇ ପ୍ରଦର୍ଶନୀ ସଂପର୍କରେ ଆଉ ଦୁଇଚାରି ବାକ୍ୟ ମୋଟେ କହିପାରିଥିବି । ଘନ ଘନ କରତାଳି ମଧ୍ୟରେ ମୋ ଭାଷଣ ଅସ୍ପଷ୍ଟ ହେଇଯାଉଥାଏ ଏବଂ ଲେଲିହାନ୍ ଜିହ୍ୱାକୁ ପ୍ରଦର୍ଶନ କରି ରକ୍ତରଂଜିତ ବିସ୍ତାରିତ ଚକ୍ଷୁରେ ନୃସିଂହ ଉଜ୍ଜ୍ୱଳି ଉଠୁଥାନ୍ତି ।

କୁଲ୍‌ଟୁର୍ ହ୍ୟୁସେଟ୍‌ର ପ୍ରକାଣ୍ଡ କୋଠା ଭିତରେ ଅନେକ ପ୍ରଶସ୍ତ କୋଠରି । ଆମ ପ୍ରଦର୍ଶନୀ ପାଇଁ ପଞ୍ଚମ ମହଲା ନିର୍ଦ୍ଦିଷ୍ଟ କରାଯାଇଥିଲା । ମୁଁ ପ୍ରଦର୍ଶନୀକୁ ଏକ ଐତିହାସିକ

Digitized by srujanika@gmail.com

ବିବର୍ତ୍ତନ କ୍ରମରେ ସଜାଡ଼ିଥିଲି । ଆରମ୍ଭରେ ପ୍ରାଗୈତିହାସିକ ଗୁମ୍ଫାଚିତ୍ର । ତା'ପରେ ଆଦିବାସୀ ସଂସ୍କୃତିର ନିଦର୍ଶନ ସ୍ୱରୂପ ଆମ ସଉରା ଘରର ଆଭ୍ୟନ୍ତରୀଣ ଦୃଶ୍ୟ । ସେଇଠୁ ଆରମ୍ଭ ହୁଏ ଗ୍ରାମ୍ୟ ସଂସ୍କୃତିର ଝଲକ । ଗାଁ ମୁଣ୍ଡର ଗଛତଳେ ଠାକୁରାଣୀଙ୍କ ଆସ୍ଥାନ, ପୋଡ଼ାମାଟିର ଘୋଡ଼ା । ଠାକୁରାଣୀ ଆସ୍ଥାନର ଅପର ପଟରେ ଗୋଟିଏ ସମ୍ଭ୍ରାନ୍ତ ଗୁଜରାଟୀ ଘର ଭିତରର ସାଜସଜ୍ଜା, କାଠସିନ୍ଦୁକ, ପେଡ଼ିପାଟରା, ପିତଳର ଗରାହାଣ୍ଡି, ଟିପମରା କନ୍ଥା । ଘର ପାଖାପାଖି ଠିଆ ହେଉଛି ମନ୍ଦିରଟିଏ । ମନ୍ଦିର ବେଢ଼ାର କାରୁକାର୍ଯ୍ୟପୂର୍ଣ୍ଣ କାନ୍ଥ । ମନେ ହେଉଥିଲା ସତେ ଅବା ପଥରରେ ନିର୍ମିତ ମୂର୍ତ୍ତିମାନ ଉଭା ହେଉଛନ୍ତି । ମନ୍ଦିର ପାଖରେ ପହଞ୍ଚିଲା ବେଳକୁ ଆଦିମତାର ଓ ପ୍ରାଚୀନତାର ସମ୍ଭାରକୁ ପଛରେ ପକାଇ ଆମେ ପହଞ୍ଚୁଛେ ମଧ୍ୟଯୁଗୀୟ କଳାର ବେଷ୍ଟନୀ ମଧ୍ୟରେ । ମନ୍ଦିର ପାଖାପାଖି ବୌଦ୍ଧ ବିହାରର ଅବଶେଷ ଏବଂ ତାପରେ ମୋଗଲ ସ୍ଥାପତ୍ୟର ରୈଖିକତା ଓ ଦରବାରର ବିଳାସ, ପରସିଆନ୍ କାର୍ପେଟ୍, କାନ୍ଥରେ ମିନିଏଚର ଚିତ୍ର । ଭେଲଭେଟ୍ ପିନ୍ଧା ହୋଇଥିବା ଗଦି ଓ ମାଣ୍ଡି ଥାଇ ଡିଭାନ୍ ଏବଂ ଡିଭାନ୍ ଆଗରେ ରୂପାର ନୂଆଣିଆ ଷ୍ଟୁଲ ଉପରେ ହୁକା ଓ ବିଭିନ୍ନ ପାନ ପାତ୍ର ସହିତ ପାନୀୟ ଭରା ଅନେକ ରଙ୍ଗଢ଼ଙ୍ଗର ବୋତଲ । ଥାଳିରେ ଲବଙ୍ଗ, ଅଳେଇଚ ଓ ଜାତି ଜାତିକା ଶୁଖିଲା ଫଳ, ଦ୍ରାକ୍ଷା ପ୍ରଭୃତି । ଏଗୁଡ଼ିକ ସବୁ କିନ୍ତୁ ମାଟିରେ ତିଆରି । ମୁଁ କହିବାକୁ ଭୁଲିଯାଇଛି, ସଉରା ଘର ଭିତରେ ଝିଟିପିଟି, ଏଣ୍ଡୁଅ ଓ ଗୁଜରାଟୀ ଘର ଭିତରେ ଅସରପା ସବୁ ମାଟିର, ବଙ୍ଗଳାର ବିଷ୍ଣୁପୁର ଓ ନଦିୟା ଅଞ୍ଚଳର କାରିଗରୀ । ଇତିହାସର ପୃଷ୍ଠା ଓଲଟାଇଲା ଭଳି ଏବେ ଦୃଶ୍ୟ ବଦଳିଯିବ, ମୋଗଲ ଦରବାରରୁ ଇଷ୍ଟ ଇଣ୍ଡିଆ କମ୍ପାନୀ । ସାଦାସିଧା କୋଠା, ରୋମାନ୍ ଆର୍ଚ୍ଚ ଆଉ ପ୍ରଶସ୍ତ ବଖରା, କାନ୍ଥରେ ବିଭିନ୍ନ ଏଚିଙ୍ଗ୍ର ଗ୍ଲାସ୍ ପେଣ୍ଟିଙ୍ଗ୍, ହାଇଦ୍ରାବାଦର ପ୍ରସିଦ୍ଧ ଫଟୋଗ୍ରାଫର ଦୀନ୍ ଦୟାଲ୍ଙ୍କ ଫଟୋଗ୍ରାଫ୍, ଲୋନାଭ୍ଲା ପ୍ରେସ୍‌ରେ ଲିଥୋ ପଦ୍ଧତିରେ ମୁଦ୍ରିତ ଦେଢ଼ଶହ ବର୍ଷର ପୁରୁଣା ରାଜା ରବି ବର୍ମାଙ୍କ କ୍ୟାଲେଣ୍ଡର୍, ଇମିଟେସନ୍ ଧଳା ମାର୍ବଲ ମୂର୍ତ୍ତି ଇତ୍ୟାଦି ।

ଏହାପରେ ଦର୍ଶକମାନଙ୍କୁ ବାଟ କଢ଼େଇ ଦିଆଯିବ ଗୋଟିଏ ସହର ଭିତରକୁ । ଚିତ୍ରିତ ପରଦା ଦ୍ୱାରା ଦର୍ଶେଇ ଦିଆଯାଇଛି ପଥପ୍ରାନ୍ତ ବଡ଼ରୁ ସାନ କୋଠାର ଧାଡ଼ି । ମନେ ହେବ ଯେଉଁଭଳି ସହରଟି ଲମ୍ବିଯାଇଛି ବହୁଦୂର, ସତେ ଯେଉଁଭଳି ଦିଗ୍‌ବଳୟକୁ ଛୁଉଁଛି । ରାସ୍ତାମୋଡ଼ରେ କୁନାଭାଇନାର କ୍ୟାବିନ୍ ଭିତରେ ବିଟିଲ୍ ସପ୍ (ପାନଦୋକାନ) । ଏଠି ତ ଖାଲି ପାନ ମିଳୁନି, ମିଳୁଛି ଗୁଡ଼ାଖୁ, ଭୃଙ୍ଗରାଜ ଓ ଲକ୍ଷ୍ମୀ ବିଳାସ ତେଲ । ତେଲର ସୁଗନ୍ଧରେ ପାନ କ୍ୟାବିନ୍ ଫାଟି ପଡୁଛି । ତା' ପାଖକୁ ନବଘନ ବାରିକର ହେୟାର୍ କଟିଙ୍ଗ୍ ସେଲୁନ୍ । ସେଲୁନ୍‌ରେ ନବଘନର ବାପ ଅଜା ଅମଳର କୀଳା ହୁଗୁଳି ଯାଇଥିବା କାଠ ଚୌକୀ ଓ ତାପରେ ଲୁମ ଉପୁଡ଼ା କୁକୁର ଚମଡ଼ା ଭଳି ଦିଶୁଥିବା ଟରକିସ୍ ଟାୱାଲ୍ ।

Digitized by srujanika@gmail.com

ପ୍ରଦର୍ଶନୀ ସମୟରେ କ୍ୟାବିନ୍ ଆଗରେ ଦର୍ଶକଙ୍କ ଭିଡ଼ ଜମୁଥିଲା । ସୁଇଡ଼ିସ୍ ଦର୍ଶକ ପାନ ଭାଙ୍ଗିବା ଓ ଖିଲ କଳରେ ଯାକିବା ଶିଖୁଥିଲେ । କ୍ୟାବିନ୍ ଭିତରେ ମୁହଁ ପୂରାଇ ଲକ୍ଷ୍ମୀବିଳାସ ତେଲର ବାସ୍ନା ଶୁଂଘୁଥିଲେ । ମୁଁ ପରିହାସ କରି କହୁଥିଲି ଲକ୍ଷ୍ମୀବିଳାସ ତେଲ ସଂପର୍କ ଯୋଡ଼େ, ଏଭଳିକି ବିବାହ ବିଚ୍ଛେଦ ହେଇଥିଲେ ମଧ ବୀଜରୁ ଅଙ୍କୁର ଉଦ୍‌ଗମିଲା ଭଳି ପ୍ରେମ ଗଜା ଧରେ । ମୋ ରହିବା ଭିତରେ ସୁଇଡ଼ିସ୍ ଟେଲିଭିଜନ କେତେ ନା କେତେ ଥର ଏହି କ୍ୟାବିନ୍ ଓ ପାନଭଙ୍ଗାର ଚିତ୍ର ଉତ୍ତୋଳନ କରିଛି । କେବଳ ଷ୍ଟକ୍‌ହୋମ୍ ନୁହେଁ, ସୁଇଡ଼େନ୍ ସାରା ପ୍ରଚାରିତ ହେଇଯାଇଛି - ଦେଶୀ ଓ ବଙ୍ଗାଳୀ ପାନର ମହିମା । କଳା ସହିତ ଚଳଣି ଓ ସଂସ୍କୃତି କିଭଳି ଜୀବନବୋଧକୁ ପ୍ରଭାବିତ କରେ ତାହା ଏହି ପ୍ରଦର୍ଶନୀରୁ ପାଇ ହେବ ।

ଏହି ସହର ଦୃଶ୍ୟର ମଝାମଝି ଗୋଟିଏ ଗୋଲେଇ ଉପରେ ସ୍ଥାପିତ ହେଇଥିଲା ନଚା କଣ୍ଢେଇ । ଗୋଲେଇ ଭିତରେ ଘୂରାଣି ଯନ୍ତ୍ର ଖଞ୍ଜା ହେଇଥିଲା ଓ ହିନ୍ଦୀ ସିନେମା ସଂଗୀତ 'ମେରା ମନ ଡ଼ୋଲେ, ମେରା ତନ୍ ଡ଼ୋଲେ'ର ତାଳେ ତାଳେ କଣ୍ଢେଇଟି ଘୂରି ଘୂରି ଅଙ୍ଗଭଙ୍ଗି ପ୍ରଦର୍ଶନ କରି ଅପୂର୍ବ ଛନ୍ଦରେ ନାଚୁଥିଲା ଏବଂ ଗୋରା ସାହେବ ଦର୍ଶକଙ୍କ ମନ ମୋହୁଥିଲା । ପ୍ରଥମେ ପ୍ରଥମେ ଘୂରାଣି ଯନ୍ତଟି ଏମିତି ବିଚିକିଚିଆ ଶବ୍ଦ କରୁଥାଏ ଯେ କାନ ଅତଡ଼ା ପଡିଯାଉଥାଏ । କୁଲ୍‌ଟୁର୍ ହ୍ୟୁସେଟ୍ କର୍ତ୍ତୃପକ୍ଷ ମୋର ମତାମତ ନେଇ ନଚା କଣ୍ଢେଇର ମୋଟରଟିକୁ ବଦଳେଇ ଦେଲେ । କଣ୍ଢେଇ ନାଚିଲା ଅଥଚ ସହରୀ ଯାନ୍ତ୍ରିକ କୋଳାହଳ ଥମିଗଲା । ଆମ ସହର ବଜାରମାନଙ୍କରୁ ଶବ୍ଦର ଅତ୍ୟାଚାର କମିଗଲେ ମନେହୁଏ ସେଥିରୁ ଭାରତୀୟତାର ଗନ୍ଧ କମିଗଲା । ଶବ୍ଦ ପ୍ରଦୂଷଣକୁ ବିଚାର କରି ଭାରତୀୟ ଧାରା ଭିତରେ କିଛିଟା ପାଶ୍ଚାତ୍ୟ ଶୃଙ୍ଖଳା ମିଶେଇବାକୁ ପଡ଼ିଲା ।

ସବା ତଳ ମହଲା ମୁଖ୍ୟ ପ୍ରବେଶ ଦ୍ୱାରର ଡ଼ାହାଣ ପଟେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ପନ୍ଦର ଷୋହଳ ଫୁଟିଆ ମେଢ଼ ଶୋଭା ପାଉଥିଲା । ସଂପୂର୍ଣ୍ଣ କଟକୀ କାରିଗରଙ୍କ କଳାକୌଶଳର ଅଭୁଲା ନିଦର୍ଶନ । ଆମେ ଏଠୁ ମୂର୍ତ୍ତିମାନଙ୍କର ମୁଣ୍ଡ ହାତ ଗୋଡ଼ ମାଟିରେ ଗଢ଼ି କନା ପକାଇ ଖଡ଼ି ମଣ୍ଡ ଚଢ଼େଇ ସାଙ୍ଗରେ ନେଇ ଯାଇଥିଲୁ । ଷ୍ଟକ୍‌ହୋମ୍‌ରେ ମୂର୍ତ୍ତି ଗଢ଼ିବା ପାଇଁ ମାଟି ଖୋଜିବାରେ ଆମେ ନାକେଦମ୍ ହେଇଗଲୁ । ଶହ ଶହ କିଲୋମିଟର ଏଣେତେଣେ ଗାଡ଼ି ଛୁଟେଇଲୁ । କିଛି ଫଳ ହେଲାନାହିଁ । ଶେଷରେ ସ୍ଥାନୀୟ ଆର୍ଟ୍‌କଲେଜକୁ ଯାଇ ଭାସ୍କର୍ଯ୍ୟ ବିଭାଗରେ ପଚରା ଉଚରା କଲାପରେ ଜଣାପଡ଼ିଲା ମାଟି ପ୍ୟାରିସ୍‌ରୁ ପ୍ୟାକେଟ୍ ହିସାବରେ ଆମଦାନୀ ହେଉଛି । ଆମେ ଧାରସୂତ୍ରରେ ଆର୍ଟ୍‌କଲେଜରୁ ମାଟି ଆଣିଲୁ । ନଡ଼ା, ରସି ଆମ ସାଙ୍ଗରେ ଆସି ଯାଇଥିଲା । ଏବେ ମୂର୍ତ୍ତି ଗଢ଼ିବା ଆରମ୍ଭ ହେଲା । ବିଦେଶ ମାଟିରେ ଦୁର୍ଗା କ'ଣ ସହଜରେ ଉଭା ହେଉଛନ୍ତି ? ଦୁର୍ଗାଙ୍କର ନଡ଼ାରେ

Digitized by srujanika@gmail.com

ଭିଡ଼ା ଦଶହାତ, ଅଧା ମହିଷ ଅଧା ଅସୁରର ବିଚିତ୍ର ରୂପମାନଙ୍କୁ ଦେଖି ସିଟି ପୋଲିସ ଆମକୁ କାମରେ ଆଗେଇବା ପାଇଁ ବାରଣ କଲା । ପୋଲିସର ଯୁକ୍ତି ହେଲା ଏଭଳି ବିଚିତ୍ର ବିଗ୍ରହ ଦେଖିଲେ ସାଧାରଣ ଲୋକେ ଭେଟଣା ହେଇଯିବେ ଏବଂ ଡ୍ରାଇଭରମାନେ ଗାଡ଼ି ଚଲେଇଲାବେଳେ ଦୁର୍ଘଟଣା ଘଟିବାର ସମ୍ଭାବନା ଅଛି । ମୋତେ ପୋଲିସ ଷ୍ଟେସନ୍କୁ ଯାଇ ଦୁର୍ଗାଙ୍କ ଅପାର ମହିମା ସମ୍ପର୍କରେ ବୁଝେଇବାକୁ ପଡ଼ିଲା । କିଭଳି ଦୁର୍ଗା ଭାରତୀୟ ସଂସ୍କୃତିର ପ୍ରତୀକ, କିଭଳି ସେ ମହିଷାସୁର ପରି ଗୋଟିଏ ଦୁଷ୍ଟକୁ (ଇଭିଲ୍, ଓ୍ୱିକେଡ୍ ପ୍ରଭୃତି ଶବ୍ଦ ବ୍ୟବହାର କରିବାକୁ ହେଲା) ନିଧନ କରିବା ପାଇଁ ସମସ୍ତ ଦେବତାଙ୍କ ଅସ୍ତ୍ରାୟୁଧରେ ଭୂଷିତା ଓ ଶକ୍ତିସଂପନ୍ନା ହେଇ ଆବିର୍ଭୂତା ହେଇଛନ୍ତି । ମହିଷମର୍ଦ୍ଦିନୀ ଦୁର୍ଗା କିଭଳି ଦାୟିତ୍ୱ ଓ ଶକ୍ତିର ଉତ୍ସ ସେକଥାର ମର୍ମ ସେଦିନ ପୋଲିସ ବୁଝିଥାଇପାରେ ବା ନଥାଇପାରେ କିନ୍ତୁ ମୋର ଶେଷ ଅମୋଘ ଯୁକ୍ତିଥିଲା ଯେ ଦୁର୍ଗା ଷ୍ଟକ୍ହୋମ୍ ସହର କେବଳ ନୁହେଁ ସମଗ୍ର ସୁଇଡ଼େନ୍ ଦେଶକୁ ଆସିବା ପାଇଁ ପ୍ରଚଣ୍ଡ ମାର୍ତ୍ତଣ୍ଡଙ୍କୁ ପ୍ରବର୍ତ୍ତାଇ ପାରିବେ । ଖରାଶବ୍ଦ କାନରେ ପଡ଼ିବାରୁ ସିଟି ପୋଲିସ ଆମକୁ ଅନୁମତି ଦେଇଦେଲା ଏବଂ ଦୁର୍ଗା ଆବିର୍ଭୂତା ହେଲେ ।

ବିଲ୍‌ବୋର୍ଡ୍‌କୁ ନେଇ ସମସ୍ୟା ଅବଶ୍ୟ ଅଲଗା ଧରଣର । ଲୋକପ୍ରିୟ କଳା ପ୍ରଦର୍ଶନୀର ଏହା ଥିଲା ଏକ ଆକର୍ଷଣୀୟ କଳାକୃତି । ଦୁଇଶହ ଫୁଟ ଲମ୍ବା ଓ ପଚିଶି ଫୁଟ ଚଉଡା ବ୍ୟାନର୍‌ରେ ଚିତ୍ରିତ ହେଲେ ଚିତ୍ରତାରକା ଶ୍ରୀଦେବୀ, ଶତ୍ରୁଘ୍ନ ସିହ୍ନା, ଅମିତାଭ ବଚ୍ଚନ ପ୍ରଭୃତି । ଶ୍ରୀଦେବୀ ବିଲ୍‌ବୋର୍ଡ୍ ଉପର ଫ୍ରେମକୁ ଟପି ଆହୁରି ଦୁଇ ଅଢ଼େଇ ଫୁଟ ଉଚ୍ଚାକୁ ଉଠିଯାଇଥିଲେ । ସେତେବେଳେ ବୋଫର୍ସ୍ ତୋପ କିଣାବିକାକୁ ନେଇ ଲାଞ୍ଚ ଅଭିଯୋଗ ଭାରତବର୍ଷର ମଗଜକୁ ଘାଣ୍ଟିଚକଟି ଦେଇଥାଏ । ଏଣୁ ଭାରତ ଉତ୍ସବ ପ୍ରଦର୍ଶନୀ ଉଦ୍‌ଘାଟନ କରିବା ପାଇଁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି ନ ଆସି ମାନବ ସମ୍ବଳ ବିକାଶମନ୍ତ୍ରୀ ନରସିଂହ ରାଓ ଆସିବେ ବୋଲି ନିର୍ଦ୍ଧାରିତ ହୋଇଥିଲା । ମୁଁ ଯଦିଓ ଏସବୁ ସଂପର୍କରେ ଜାଣିଥାଏ ତଥାପି ବିଲ୍‌ବୋର୍ଡ୍‌ର ଥୀମ୍ ସହ ବୋଫର୍ସ୍ ତୋପର ସଂପର୍କକୁ ନେଇ ମୋ ବିନା ସଚେତନରେ ଗୋଟିଏ ଚିତ୍ର ରଚିତ ହେଇଯିବ ଏବଂ ଷ୍ଟକହୋମ୍ ନାଗରିକଙ୍କ ମାନସିକତାରେ ସେହି ଚିତ୍ର ବୋଫର୍ସ୍ ପ୍ରସଙ୍ଗକୁ ପୁନର୍ଜୀବିତ କରିଦେଇପାରିବ ଏହା ମୋ ସୁବିସ୍ତୃତ କଳ୍ପନାରେ ମଧ୍ୟ ସ୍ଥାନ ପାଇନଥିଲା । ବିଲ୍‌ବୋର୍ଡ୍ ପେଣ୍ଟର୍ ଭେଦାଚଲମ୍, ଅସୀମ ଦା' ଓ ମୁଁ ବିଭିନ୍ନ ଫିଲିମ୍ ଫେଆର୍‌ରେ ପ୍ରକାଶିତ ତାରକାମାନଙ୍କ ଚିତ୍ର ପସନ୍ଦ କରୁ କରୁ କାହିଁକି ହାତରେ ବନ୍ଧୁକ ଧରି ଦେଖଣାହାରୀଙ୍କୁ ଲକ୍ଷ୍ୟ କରିଥିବା ଶତ୍ରୁଘ୍ନଙ୍କ ଫଟୋଟି ଆମ ସମସ୍ତଙ୍କ ପସନ୍ଦ ହେଲା ତା'ର କାରଣ ଏଯାଏଁ ମୁଁ ସ୍ଥିର କରିପାରିନି । ତା'ସାଙ୍ଗକୁ ଓକିଲର କଳାକୋଟ ପିନ୍ଧି ଅମିତାଭଙ୍କ ବ୍ୟାନର୍‌ରେ ଉପସ୍ଥିତି ଚିତ୍ରରଚନାର ଅର୍ଥକୁ ଭିନ୍ନମୋଡ଼ ଦେଲା । ମନେହେଲା ଆମେ ବୋଫର୍ସ୍ କମାଣ ସଂକ୍ରାନ୍ତୀୟ

Digitized by srujanika@gmail.com

ପ୍ରସଙ୍ଗଟିକୁ ଏକ ଭିନ୍ନ ବାଗରେ ଉପସ୍ଥାପନା କରି ଭାରତୀୟ ମାନସିକତାର ଗୋଟିଏ ଝଲକ ପ୍ରକାଶିତ କରୁଛୁ । ଶିଶି ବିଲ୍‌ବୋର୍ଡ଼ର ଥୀମ୍ କ'ଣ ପଚାରିବାରୁ ଆମେ କହିଦେଲୁ 'ମିଷ୍ଟର ଇଣ୍ଡିଆ' । ତାପରେ ଅସଂଖ୍ୟ ପ୍ରଶ୍ନବାଣ ଆମକୁ ଶରବିଦ୍ଧ କଲା । ଆମେ ସ୍ଥିର କଲୁ ଅମିତାଭ ବଚ୍ଚନ ହିଁ ମିଷ୍ଟର୍ ଇଣ୍ଡିଆ ହୋଇପାରିବେ । ସେହି ସମୟରେ ଗୋଟିଏ ହିନ୍ଦୀ ଫିଲ୍ମ ପ୍ରସ୍ତୁତ ହୋଇଥିଲା ଯାହାର ଟାଇଟଲ୍ ଥିଲା 'ମିଷ୍ଟର୍ ଇଣ୍ଡିଆ' ଆଉ ଫିଲମ୍‌ର ନାୟକ ସବୁବେଳେ ଅଦୃଶ୍ୟ ରହୁଥିଲେ । ସେ ସମସ୍ତଙ୍କୁ ଦେଖିପାରୁଥିଲେ ଅଥଚ ଅନ୍ୟ ସମସ୍ତେ ତାଙ୍କୁ ଦେଖିପାରୁ ନଥିଲେ । ଏବେ ପର୍ଯ୍ୟନ୍ତ ବୋଫର୍ସ୍ କମାଣ ପ୍ରସଙ୍ଗଟି ସେଇଆ । ତେଣୁ ତାଙ୍କୁ ବିଲ୍‌ବୋର୍ଡ୍‌ରେ ଆଉ କୁଆଡ଼େ ପାଇ ହୁଅନ୍ତା ।

ପ୍ରଦର୍ଶନୀର ପ୍ରସ୍ତୁତି ସମୟରେ ଆମେ ଭାରତୀୟ ଶିଳ୍ପୀଦଳ ସୁଇଡିସ୍ କାରିଗର ଦଳଙ୍କ ସହିତ ମିଳିମିଶି କାର୍ଯ୍ୟ କରିଛୁ । ଏହି କାର୍ଯ୍ୟ କରିବା ଅବସରରେ ଆମେ ସେମାନଙ୍କଠାରୁ ଯେତିକି କୌଶଳ ଶିଖିଛୁ ସେମାନେ ଆମଠାରୁ ଢ଼େର ବେଶି କାଏଦା ମଧ୍ୟ ଆହରଣ କରିଛନ୍ତି । ଏହି ଦେଣନେଣ ଆନ୍ତର୍ଜାତିକ ପ୍ରଦର୍ଶନୀର ଆୟୋଜନକୁ ସରସ ସୁନ୍ଦର କରିଦେଇଛି । ବର୍ତ୍ତମାନ ପ୍ରଦର୍ଶନୀ କଥା କହିଲେ ଆଉ ଭୟ କରିବା ପ୍ରଶ୍ନ ନାହିଁ । ଭାରତୀୟ ଲୋକପ୍ରିୟ କଳା ପ୍ରଦର୍ଶନୀ ପାଇଁ ଯୋଗାଡ଼ ଚାଲୁଥିବା ବେଳେ ନା କଲେଜରେ ଟେଲିଫୋନର ବ୍ୟବସ୍ଥା ଥିଲା ନା ଗାଡ଼ିଘୋଡ଼ା ଥିଲା । ଏବେ ଏସବୁ କଥା ଭାବିଲାବେଳକୁ ଆଚମ୍ବିତ ଲାଗୁଛି ମୁଁ ସେତେବେଳେ କେମିତି ଏତେ କରି ସାହସ କରିପାରୁଥିଲି । ବାହାରୁ ଟ୍ୟାକ୍ସି ଭଡ଼ା ଆସୁଥିଲା । ସେ ବାବଦରେ ଷାଠିଏ ସତୁରି ହଜାର ଟଙ୍କା ଖର୍ଚ୍ଚ ହୋଇଥିବ । କିଛି ବନ୍ଧୁ ପୁରୁଣା କାର୍‌ଟିଏ କିଣିବା ପାଇଁ ପରାମର୍ଶ ଦେଇଥିଲେ । ପୁରୁଣା କାର୍ ନୁହେଁ, ନୂଆ କାର୍ କିଣି ଭଡ଼ାଦେଇଥିଲେ ବେଶ୍ ଦି' ପଇସା ଲାଭ ମିଳିଥାନ୍ତା । ଆଉ କେତେଜଣ କହିଥିଲେ ଲାମ୍ବ୍ରେଟର୍ ତ ପୁରୁଣା ହୋଇଗଲାଣି ତାକୁ ପପୁଲାର୍ ଆର୍ଟ୍ ଭିତରେ ଭର୍ତ୍ତି କରିଦିଅ, ଭଙ୍ଗା ଅଟୋ ଷ୍ଟକ୍‌ହୋମ୍ ଗଲା, ପୁରୁଣା ଲାମ୍ବି କ'ଣ ଯାଇପାରିବନି । ମୁଁ କିନ୍ତୁ ବନ୍ଧୁମାନଙ୍କ ପରାମର୍ଶ ମାନିପାରିନି । ମୁଁ ଲାଭକ୍ଷତିର ହିସାବ କରି ଏତେବଡ଼ ଆନ୍ତର୍ଜାତିକ ପ୍ରକଳ୍ପ ଭିତରେ ପଶି ନଥିଲି । ମୁଁ ଧରି ନେଇଥିଲି ଏହା ଶିଳ୍ପୀ ଜୀବନରେ ଗୋଟିଏ ଅପୂର୍ବ ସୁଯୋଗ । ଏତେବଡ଼ ଦେଶ, ତା' ଭିତରେ ଓଡ଼ିଶା, ପୁଣି ତା'ର ଗୋଟିଏ ଆର୍ଟ୍ କଲେଜର କିବା ଜଣେ ଅଧ୍ୟକ୍ଷ । ଜୀବନରେ ଏତେବଡ଼ ପ୍ରଦର୍ଶନୀ ନିଜେ କେବେ ପରିକଳ୍ପନା କରି ରୂପାୟନ କରିବାର ସୁଯୋଗ ପାଇନଥିଲି । ୧୯୮୦ ମସିହାରେ ଜୁରିକ୍ ସହରର ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ରେ ଓଡ଼ିଶାର କଳା ଓ ସଂସ୍କୃତିର ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । ତା'ର ଆୟୋଜନରେ ନିଜକୁ ସାମିଲ କରିବାର ସୁଯୋଗ ପାଇଥିଲି । କିନ୍ତୁ ମୋ ବନ୍ଧୁ ଏବର୍‌ହାର୍ଡ୍ ଫିସର୍ ମ୍ୟୁଜିୟମ୍‌ର ନିର୍ଦ୍ଦେଶକ ଭାବେ ସେହି ପ୍ରଦର୍ଶନୀର ଦାୟିତ୍ୱରେ

Digitized by srujanika@gmail.com

ଥିଲେ । କିନ୍ତୁ ସୁଇଡ଼େନ୍‌ରେ ଅନୁଷ୍ଠିତ ପ୍ରଦର୍ଶନୀର ସମସ୍ତ ଦାୟିତ୍ୱ ମୋ ମୁଣ୍ଡ ଉପରେ ବୋଝେଇ ହେଇ ରହିଥିଲା । ଯାହାହେଉ ତା'ର ସଫଳତା କେବଳ ମୋ ପାଇଁ ନୁହେଁ, ଆମ କଲେଜ, ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ପ୍ରଶାସନ ତଥା ସମଗ୍ର ଭାରତବର୍ଷ ପାଇଁ ସୁନାମ ଆଣିଦେଇଥିଲା ।

ମୁଁ ସ୍ୱୀକାର କରୁଛି ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ପ୍ରଦର୍ଶନୀ ଆୟୋଜନ କରୁଥିବାରୁ କଲେଜର ଭାସ୍କର୍ଯ୍ୟ ବିଭାଗ ପାଇଁ ଟାରପୋଲିନ୍ ଛାତର ଗୋଟିଏ ଅସ୍ଥାୟୀ ଷ୍ଟୁଡ଼ିଓ ନିର୍ମାଣ କରିଦେଇ ପାରିଥିଲି । ପିଲାମାନଙ୍କୁ ଭାରତବର୍ଷର ବିଭିନ୍ନ ସହର ଓ କଳା ଅନୁଷ୍ଠାନମାନଙ୍କୁ ପଠାଇ ପାରିଥିଲି ଏବଂ କଲେଜର ବିଭିନ୍ନ ପ୍ରଦର୍ଶନୀର କାଟ୍‌ଲାଗ୍ ପ୍ରକାଶନକୁ ସୁଗମ କରି ଦେଇଥିଲି । କହିବାରେ କୁଣ୍ଠା ନାହିଁ ଯେ ଫେଷ୍ଟିଭାଲ୍ ଇଣ୍ଡିଆ ପପୁଲାର୍ ଆର୍ଟ୍ ପ୍ରଦର୍ଶନୀ ପଇସାରେ ମୁଁ କେବଳ ପୃଥିବୀ ପରିକ୍ରମା କରିନି ଭାରତ ବର୍ଷର ପ୍ରାୟ ସବୁ କଳା ଅନୁଷ୍ଠାନରେ ପହଞ୍ଚିଛି । ଆମ ଅଫିସିଆଲ୍ ଡେଲିଗେସନ୍‌ରେ ଭାରତ ବର୍ଷର ବିଶିଷ୍ଟ ଶିଳ୍ପୀ, କଳା ଐତିହାସିକ, କବି ଓ ପଦାଧିକାରୀ ମାନେ ରହିଥିଲେ । ଆମ ଦଳରେ ଥିଲେ ଜାତୀୟ ସଂଗ୍ରହାଳୟର ମହାନିର୍ଦ୍ଦେଶକ ଲକ୍ଷ୍ମୀ ପ୍ରସାଦ ସିହାରେ, ଜାତୀୟ ଆଧୁନିକ କଳା ସଂଗ୍ରହାଳୟର ନିର୍ଦ୍ଦେଶକ ଆନିସ୍ ଫାରୁକୀ, ଜାତୀୟ ହସ୍ତତନ୍ତ ଓ ହସ୍ତଶିଳ୍ପ ସଂଗ୍ରହାଳୟର ନିର୍ଦ୍ଦେଶକ ଜ୍ୟୋତିନ୍ଦ୍ର ଜୈନ, ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ନିର୍ଦ୍ଦେଶକ ନାଗରାଜ ରାଓ, ବିଶିଷ୍ଟ ଡିଜାଇନର୍ ମାର୍ତ୍ତଣ୍ଡ ସିଂହ, ରାଜୀବ ସେଠୀ, ବିଶିଷ୍ଟ ଚିତ୍ରଶିଳ୍ପୀ ମକ୍‌ବୁଲ୍ ଫିଦା ହୁସେନ୍, ଚଣ୍ଡୀଗଡ଼ ରକ୍ ଗାର୍ଡେନ୍‌ର ଡିଜାଇନ୍‌ର୍ ନେକ୍‌ଚାନ୍ଦ ଏବଂ ଆଉ କେତେ ନା କେତେ ଜଣ ନାମଜାଦା ବ୍ୟକ୍ତି ବିଶେଷ । ଏମାନଙ୍କ ଗହଣରେ ବିଭୂତି କାନୁନ୍‌ଗୋ , ଚାରୁକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଦିନନାଥ ପାଠୀଙ୍କ ଅବସ୍ଥିତି ନିଶ୍ଚିତ ଭାବେ ମର୍ଯ୍ୟାଦାବନ୍ତ ଥିଲା ।

ମୁଁ ଥରେ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ କାର୍ଯ୍ୟକ୍ରମରେ ଯାଇ ମସ୍କୋ ହୋଟେଲରେ ଅବସ୍ଥାନ କରୁଥିଲି । ଝରକା ଖୋଲିଲେ କ୍ରେମ୍‌ଲିନ୍ ସ୍କୋଆର୍ ମନରେ ସମାଜବାଦ ପ୍ରତି ପ୍ରତ୍ୟୟ ଜାଗରୁକ କରିଦେଉଥାଏ । ବୈଷ୍ଣବ ଚରଣ ପରିଡ଼ା ସେତେବେଳେକୁ ମସ୍କୋରେ ରହୁଥିଲେ । କୁଆଡୁ କିମିତି ଖବର ପାଇଲେ କେଜାଣି ମୋତେ ଭେଟିବାକୁ ହୋଟେଲରେ ପହଞ୍ଚିଲେ । ମୁଁ ଟ୍ରାଉଜର୍ ପଞ୍ଜାବୀ ପିନ୍ଧି ହୋଟେଲ ଦୁଆର ମୁହଁରେ ତାଙ୍କୁ ଅପେକ୍ଷା କରିଛି । ସେ ହୁଏତ ବିଶ୍ୱାସ କରିପାରିଲେନି ପଞ୍ଚଚାଳିଶି ଛୟାଳିଶି ବର୍ଷର ଓଡ଼ିଆ ଯୁବକ ଜଣେ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ତରଫରୁ ଭାରତବର୍ଷର ପ୍ରତିନିଧିତ୍ୱ କରୁଥିବ । ସେ ଅଭ୍ୟର୍ଥନା ଡେସ୍କରେ ପହଞ୍ଚି ମୋତେ ତଲାସିଛନ୍ତି ଆଉ ଅଭ୍ୟର୍ଥନା ଦାୟିତ୍ୱରେ ଥିବା କର୍ମଚାରୀ ମୋ ଆଡ଼କୁ ସଂକେତ ଦେଖାଇ ଦେଇଛନ୍ତି । ଭେଟଭାଟ ବେଶ୍ ସୌହାର୍ଦ୍ଦପୂର୍ଣ୍ଣ

Digitized by srujanika@gmail.com

ହେଉଛି । ବୈଷ୍ଣବ ଚରଣ ପରିଡ଼ା ମୋତେ ତାଙ୍କ ଘରକୁ ନିମନ୍ତ୍ରଣ କରିନେଇ ରାତ୍ରି ଭୋଜନରେ ଆପ୍ୟାୟିତ କରିଛନ୍ତି । ତାଙ୍କର ଓ ତାଙ୍କ ପତ୍ନୀଙ୍କ ବ୍ୟବହାର ଆଜିଯାଏଁ ମୋର ସ୍ମରଣରେ ରହିଛି ।

କିନ୍ତୁ ଏଭଳି ବି ହୋଇଛି, ଓଡ଼ିଆ ଶିଳ୍ପୀ ମହାନନ୍ଦିଆ ଆମ ଓଡ଼ିଆ ଶିଳ୍ପୀଦଳଙ୍କୁ ଭେଟିବା ପାଇଁ ବା ସେମାନଙ୍କ ଦ୍ୱାରା ଆୟୋଜିତ ପ୍ରଦର୍ଶନୀ ଦେଖିବା ପାଇଁ ଥରେ ହେଲେ ଷ୍ଟକ୍‌ହୋମ୍ ଆସିନାହାନ୍ତି । ପ୍ରଦର୍ଶନୀ ଉଦ୍‌ଘାଟନକୁ ଆସି ନ ହେଲା ବୁଝିହେଉଛି ଓଡ଼ିଆ ପ୍ରାଣ ତ ନିଶ୍ଚୟ ସ୍ପନ୍ଦିତ ହେଉଥିବ, ସେ କିନ୍ତୁ ଆମ ପ୍ରଦର୍ଶନୀଠାରୁ ନିଜକୁ ଦୂରେଇ ରଖିଛନ୍ତି । ଏହା ବି ଏକ ବିଚିତ୍ର ଅନୁଭବ ।

ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ଉଦ୍‌ଘାଟନ ଉତ୍ସବର ଅନୁଭୂତି ଅବିସ୍ମରଣୀୟ । ଆମେ ନେଇଥିବା ପିପିଲି ଚାନ୍ଦୁଆ ରାଜାବଗିଚାରେ ଖଞ୍ଜା ଗଲା । ନାଲି ରଙ୍ଗର ଲିଚୁ ମାଳ ଗଛମାନଙ୍କରେ ଲମ୍ବେଇ ଦିଆଗଲା । ପାଣି ଜାହାଜରେ ଲୋକପ୍ରିୟ କଳାର ସାମଗ୍ରୀ ସାଙ୍ଗରେ ପ୍ରାୟ ଦୁଇହଜାର ଫୁଟର ଲିଚୁ ମାଳ ସେଠି ପହଞ୍ଚିଥିଲା । ଅକ୍ଟୋବର ମାସର ଥଣ୍ଡା ପରିବେଶ । ସେଥିରେ ମଧ୍ୟ କେରଳରୁ ଆସିଥିବା ଢେଣ୍ଡବାଦକମାନେ ଖୋଲା ଦେହରେ ବାଦ୍ୟ ପରିବେଷଣ କରୁଥାନ୍ତି । ସମୁଦ୍ରରୁ ହାବୁକା ହାବୁକା ଶୀତଳ ପବନ ବହିଆସୁଥାଏ । ଉତ୍ସବ ସକାଳ ପହରୁ ଆରମ୍ଭ ହେଉଥାଏ । ବଗିଚା ସାରା ବିଭିନ୍ନ କିସମର ଖାଦ୍ୟ ଷ୍ଟଲ୍ ଖୋଲା ଯାଇଥାଏ । ଜିଲାପି ସାଙ୍ଗରେ ଆଳୁଦମ୍ ପତ୍ରଠୋଲାରେ ବିକା ହେଉଥାଏ । ଗରମ ଗରମ ଜିଲାପି । ଲମ୍ବା ଧାଡ଼ି । ଧାଡ଼ିରେ ଠିଆ ହେଇଥାନ୍ତି ସୁଇଡ଼ିସ୍ ପ୍ରଧାନମନ୍ତ୍ରୀ ଏବଂ ଆମର ମାନବ ସମ୍ବଳ ବିକାଶ ମନ୍ତ୍ରୀ ନରସିଂହ ରାଓ । ଅନ୍ୟ କେଉଁଠି ଦହିବରା ତ ଆଉ କେଉଁଠି ଗୁଜୁରାଟର ଖାକରା । କ'ଣ ନ ମିଳୁଥାଏ ସେଠି । ଭାରତସାରାର ବିଭିନ୍ନ ପ୍ରାନ୍ତର ଖାନା । ତା ଭିତରେ କେଳାକେଳୁଣୀ ନାଟ ଓ ବାଉଁଶ ରାଣୀ ଖେଳରେ ସମସ୍ତେ ସମ୍ମୋହିତ ହେଇ ଯାଇଥାନ୍ତି । ତା ସାଙ୍ଗରେ ପଞ୍ଜାବର ଭାଙ୍ଗ୍ରା ପରିବେଶକୁ ଉତ୍ତାଳ କରି ରଖିଥାଏ । ଉଦ୍‌ଘାଟନ ଉତ୍ସବରେ ମୋଟେ ଭାଷଣର ବ୍ୟବସ୍ଥା ନାହିଁ । ରାଜସ୍ଥାନର ଘାଘରା ଓ ଚୋଳିପିନ୍ଧା ନର୍ତ୍ତକୀଟିଏ ସୁଇଡିସ୍ ପ୍ରଧାନମନ୍ତ୍ରୀ ଓ ଆମ ମନ୍ତ୍ରୀ ନରସିଂହ ରାଓଙ୍କୁ ମଞ୍ଚ ଉପରକୁ ପାଛୋଟି ନେଲା । ମଞ୍ଚ ଉପରେ ପ୍ରଦୀପଟିଏ ଥୁଆ ହୋଇଥାଏ । ଉଭୟ ଅତିଥି ହାତଧରାଧରି ହେଇ ପ୍ରଦୀପଟିକୁ ପ୍ରଜ୍ୱଳିତ କଲେ । କରତାଳିରେ ଖଣ୍ଡମଣ୍ଡଳ ଫାଟି ପଡ଼ିଲା । ତା'ପରେ କେନ୍ଦରା ବଜେଇ ପଗଡ଼ି ପିନ୍ଧା ରାଜସ୍ଥାନୀ ଗାୟକଟିଏ ଉତ୍ସବ ପାଇଁ ସ୍ୱତନ୍ତ୍ର ଭାବେ ରଚିତ ଗୀତଟିଏ ଗାଇଲା । ଗୀତଟିର ମର୍ମଥିଲା, "ହେ ସୁଇଡ଼ିସ୍ ବନ୍ଧୁଗଣ ଆମ ଦେଶ ଭାରତ ବର୍ଷରୁ ବିପୁଳ ସାଂସ୍କୃତିକ ସମ୍ଭାର ନେଇ ଆପଣମାନଙ୍କ ନିକଟରେ ଆମେ ପହଞ୍ଚିଛୁ । ଆସ ଉପଭୋଗ କର । ଯଦି ଅଧିକା

Digitized by srujanika@gmail.com

ଦେଖିବା ପାଇଁ, ଜାଣିବା ପାଇଁ ଚାହିଁ ଭାରତବର୍ଷ ଆପଣଙ୍କୁ ସ୍ୱାଗତ କରିବା ପାଇଁ ଅପେକ୍ଷାରେ ଅଛି ।''  ଏତେ ଉତ୍ସାହ, ଉନ୍ମାଦନା, ବେଶ ପୋଷାକର ଝଲକ, ବାଦ୍ୟ, ଗୀତ, ନୃତ୍ୟ, ଗନ୍ଧ ଓ ସ୍ୱାଦର ଅପୂର୍ବ ସମାହାର କେବଳ ରାଜାବଗିଚାକୁ ଉତ୍‌ଖାତ କରିନଥିଲା ପ୍ରତ୍ୟେକ ସୁଇଡ଼ିସ୍ ବାସୀଙ୍କ ହୃଦୟରେ ଭାରତ ପ୍ରତି, ତା'ର ସାଂସ୍କୃତିକ ବିଭବ ପ୍ରତି ସ୍ନେହ ଓ ସମ୍ମୋହନ ସୃଷ୍ଟି କରିଦେଇଥିଲା ।

ଇଏତ ଗଲା ଭାରତ ଉତ୍ସବର ଉଦ୍‌ଘାଟନ ଦିନର ଅଭୁଲା କାହାଣୀ । ଆମ ଲୋକପ୍ରିୟ କଳାର ଉଦ୍‌ଘାଟନ ଉତ୍ସବ ଓ ତା' ପରର ଭାରତୀୟ ଶିଳ୍ପୀଙ୍କୁ ସମ୍ବର୍ଦ୍ଧନା ଆମ ପ୍ରଦର୍ଶନୀର ସାର୍ଥକତାକୁ ଓ ତା'ର ଲୋକପ୍ରିୟତାକୁ ପ୍ରତିପାଦିତ କରୁଥିଲା । ଗୋଲ୍‌ଡେନ୍ ଗିଲ୍‌ଡେଡ୍‌କରା ସ୍ୱର୍ଣ୍ଣାଭ କୋଠରୀରେ ଆମ ପାଇଁ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ଆମେ ଶୁଣିବାକୁ ପାଇଲୁ, ସେଠି କାଳେ ନୋବେଲ ପୁରସ୍କାର ବିଜେତାମାନଙ୍କୁ ସମ୍ବର୍ଦ୍ଧିତ କରାଯାଏ । କୁଲ୍‌ଟୁର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ, ସହଯୋଗୀ କ୍ୟୁରେଟର୍ ଓ ଅନ୍ୟାନ୍ୟ ବନ୍ଧୁଙ୍କ ପ୍ରଶଂସାରେ ଆମେ ସତେ ଯିମିତି ପୋତିହୋଇଗଲୁ । ସନ୍ଧ୍ୟାବେଳେ ପୁଣି ରାତ୍ରି ଭୋଜନର ବ୍ୟବସ୍ଥା । କେତେ ପ୍ରକାରର ସୁସ୍ୱାଦୁ ଖାଦ୍ୟ ସହିତ ଜାତିଜାତିକା ପାନୀୟ । ବିଭିନ୍ନ ଆକାରର ଓ ବିଭିନ୍ନ ରଙ୍ଗର ବୋତଲସବୁ ଟେବୁଲ ଉପରେ ସଜଡ଼ା ହୋଇଥାଏ । ରୋହିତ, ସଂଗ୍ରାମ ଓ ଅନ୍ୟ ଭାରତୀୟ ଶିଳ୍ପୀମାନେ ପାନୀୟର ଲୋଭ ସମ୍ବରଣ କରିପାରି ନଥିଲେ । ଏଣେ ହୃଦୟର ଉଲ୍ଲାସ ଓ ଭାବର ପ୍ରାବଲ୍ୟ ସେମାନଙ୍କୁ ସ୍ୱାଭାବିକ ଭାବେ ପାନୀୟ ଗୁଡ଼ିକର ନିଶାସକ୍ତ ବଳୟ ଭିତରକୁ ବାଟ କଢ଼େଇ ନେଇଯାଉଥିଲା । ମୁଁ ସେଗୁଡ଼ିକୁ ସଂଦର୍ଶନ କରି ଏତେ ଉଲ୍ଲସିତ ହୋଇଯାଇଥିଲି ଯେ ବିଗତ ଦିନର ଆୟୋଜନଜନିତ ସମସ୍ତ ଜଞ୍ଜାଳ ଓ ମାନସିକ ବ୍ୟଗ୍ରତା ଭୁଲି ଯାଇଥିଲି ।

Digitized by srujanika@gmail.com

# ୩୮. ଉତ୍ସବ ଶେଷର ଯନ୍ତ୍ରଣା

ଖୁବ୍ ଧୁମ୍‌ଧାମ୍‌ରେ ଏବଂ ମର୍ଯ୍ୟାଦା ସହିତ ଷ୍ଟକ୍‌ହୋମ୍‌ରେ ଭାରତ ଉତ୍ସବ ଆରମ୍ଭ ହେଲା । ଆମ ଲୋକପ୍ରିୟ କଳା ପ୍ରଦର୍ଶନୀର ସାଫଲ୍ୟରେ ସବୁଠାରୁ ଖୁସୀ ଜଣାପଡୁଥିଲେ କୁଲ୍‌ଟୁର୍ ହ୍ୟୁସେଟ୍‌ର କର୍ତ୍ତୃପକ୍ଷ । ସେମାନେ କହୁଥିଲେ ବିଗତ କୋଡ଼ିଏ ବର୍ଷ ମଧ୍ୟରେ କୁଲ୍‌ଟୁର୍ ହ୍ୟୁସେଟ୍‌ରେ ଏଭଳି ମନୋଜ୍ଞ, ଶୃଙ୍ଖଳିତ ଓ ଶିକ୍ଷଣୀୟ ପ୍ରଦର୍ଶନୀଟିଏ ସମ୍ଭବ ହୋଇ ନଥିଲା । ଉତ୍ସବର ବିଭିନ୍ନ ସମସ୍ୟାକୁ ସମାଧାନ କରିବାର କୌଶଳ ଏବଂ ଶୈଳିକ ଅମନନୀୟତାକୁ ଭୁଲି ବାସ୍ତବତା ଓ ସମ୍ଭାବ୍ୟତାକୁ ଅଗ୍ରାଧିକାର ଦେବାର ସାହସକୁ ଆଧାର କରି କର୍ତ୍ତୃପକ୍ଷ ପ୍ରଦର୍ଶନୀର କ୍ୟୁରେଟର୍‌ଙ୍କ ଉପରେ ଖୁସି ଥିଲେ । ସେମାନଙ୍କ ସହିତ ଆମ ସଂପର୍କ କେବଳ ଆନୁଷ୍ଠାନିକତା ଭିତରେ ସୀମିତ ନଥିଲା । ତାହା ସାଧାରଣ ସୌଜନ୍ୟରୁ ଉତୁରି ପଡ଼ି ବ୍ୟକ୍ତିସ୍ତରର ସୌହାର୍ଦ୍ଦକୁ ଆବୋରି ପଡ଼ିଥିଲା । ସୁଇଡିସ୍ କାରିଗର ଓ ଭାରତୀୟ କାରିଗରଙ୍କ ମଧ୍ୟରେ ଭାଷାଗତ ସାମ୍ୟ ଓ ସଂପର୍କର ସୁଯୋଗ ନଥିଲେ ମଧ୍ୟ ହୃଦୟର ସ୍ପନ୍ଦନ ସେମାନଙ୍କୁ ବନ୍ଧୁତାର ଦୃଢ଼ ରଜ୍ଜୁରେ ଆବିଷ୍ଟ କରି ରଖିଥିଲା । ସେମାନଙ୍କ ଠାରୁ ଅଶ୍ରୁଳ ବିଦାୟ ନେଇ ଆମେ ଷ୍ଟକ୍‌ହୋମ୍‌ରୁ ଭାରତ ଫେରିଲୁ । ନୂଆଦିଲ୍ଲୀ ରେଳ ଷ୍ଟେସନରେ ଆମେ ଭେଦାଚଳମ୍‌ଙ୍କୁ ବିଦାୟ ଦେବା ପାଇଁ ଠିଆ ହୋଇଛୁ । ମେଡ୍ରାସ୍ ମେଲ୍‌କୁ ଅପେକ୍ଷା । ଭେଦାଚଳମ୍ ହଠାତ୍ ଭାବପ୍ରବଣ ହେଇ ଉଠିଲେ । ଅସୀମ ଦା'ଙ୍କୁ କୁଣ୍ଢେଇ ପକାଇ ଆଖି ଛଳ ଛଳ କଲେ ଆଉ ସବୁଦିନକୁ ମନେ ରଖିଲା ଭଳି ବାକ୍ୟଟିଏ କହିଲେ, ''ୟୁ ଆର୍ ଲାଇକ୍ ମାଇ ମଦର୍ ସାର୍'' । ଏହି ବାକ୍ୟରେ ଲିଙ୍ଗଗତ ପ୍ରମାଦ ଥିଲେ ମଧ୍ୟ ସେଥିରୁ କୃତଜ୍ଞତାର ଅନାବିଳ ଭାଷା ଉତୁରି ପଡୁଥିଲା । ଷ୍ଟକ୍‌ହୋମ୍‌ରେ ଆମ ଶିଳ୍ପୀଦଳଙ୍କ ଗୋଟିକ କଳା ଅନୁଷ୍ଠାନର ମେସ୍‌ରେ ରହୁଥିଲେ । ଅସୀମ ଦା' ଟିକିଏ ସଅଳ ଉଠିବା ଲୋକ, ଉଠିବା ସାଙ୍ଗେ ସାଙ୍ଗେ ତାଙ୍କର ଚାହା କପେ ଦରକାର । ନିଜେ କିଚେନ୍‌କୁ ଯାଇ କେବଳ ନିଜ ପାଇଁ ନୁହଁ ସମଗ୍ର ଦଳ ପାଇଁ ସେ ଚାହା କରନ୍ତି ଓ ଜଣ ଜଣକୁ ନିଦରୁ ଉଠେଇ ହାତରେ ଉଷୁମୁ ଚାହା କପେ କପେ ଧରେଇ ଦିଅନ୍ତି । ଦାଦା ବୟସ୍କ ଲୋକ ଏବଂ ବିଶିଷ୍ଟ ଶିଳ୍ପୀ । ଏଣୁ ତାଙ୍କ ପ୍ରତି ଜଣେ କୃତଜ୍ଞ ରହିବା ସ୍ୱାଭାବିକ । ମେଡ୍ରାସ୍‌ରେ ଭେଦାଚଳମ୍‌ଙ୍କ ମା' ଅଥବା ସ୍ତ୍ରୀ ଚାହା ପରିବେଷଣ କରୁଥିଲେ । ସୌଜନ୍ୟ ପ୍ରକାଶ କରିବା ପାଇଁ ଏଣୁ

Digitized by srujanika@gmail.com

ସେ ଦାଦାଙ୍କୁ କ'ଣ ତାଙ୍କ ସ୍ତ୍ରୀ (ୱାଇଫ୍) କହିପାରିଥାନ୍ତେ କି ? ଏଣୁ ମା' ବା ମଦର ସମ୍ବୋଧନ କରିବା ସମୀଚୀନ ଥିଲା ।

ଉଦ୍‌ଘାଟନର ପ୍ରାୟ ଛ ମାସ ପରେ ପ୍ରଦର୍ଶନୀ ଉଜେଇବା ପାଇଁ ମୁଁ ଷ୍ଟକ୍‌ହୋମ୍‌ରେ ପହଞ୍ଚିଲି । ଏହାହିଁ ଥିଲା ମୋ ପାଇଁ ସେମାନଙ୍କଠାରୁ ଅସଲ ବିଦାୟ ନେବାର ବେଳା । ପ୍ରାୟ ବର୍ଷେ ଦେଢ଼ ବର୍ଷର ସଂପର୍କ ତୁଟେଇ ମୋତେ ଭାରତ ଫେରିବାକୁ ହେବ । ଏଣେ ଲଳିତ କଳା ଏକାଡେମୀ କର୍ତ୍ତୃପକ୍ଷଙ୍କ ପ୍ରରୋଚନାରେ ସଂସ୍କୃତି ବିଭାଗର ଏକାଉଣ୍ଟସ୍ ଅଫିସର୍ ମୋତେ ଖ୍ରିନ୍‌ଭିନ୍ କରି ପ୍ରଦର୍ଶନୀ ହିସାବ ତଥା ପ୍ରଦର୍ଶିତ ବସ୍ତୁଗୁଡ଼ିକର ସ୍ଥିତି ସରଜମିନ୍ ତଦନ୍ତ କରିବା ପାଇଁ ଛୁରୀ, କଇଁଚି ନେଇ ବସିଥିଲେ । ପୁଅ ଏବେ ଯାଏ କୁଆଡ଼େ ? ପ୍ରଦର୍ଶନୀର କମିଶନର୍ ବୋଲାଉଛି । ଆମର କୌଣସି କଥାକୁ ତା'ର ଖାତରି ନାହିଁ । ଷ୍ଟକ୍‌ହୋମ୍ ବୁଲାବୁଲି ତ ଗହନ କଥା । ପୁଣି ଆଉ କେତେ ଆନୁଷଙ୍ଗିକ ଉପଚାର ତ ପୁଣି ଅଛି । ଲଳିତ କଳା ଏକାଡେମୀ ଓଡ଼ିଶା ସରକାରଙ୍କୁ ବୁଝେଇ ଦେଲେ ଯେ ଦିନନାଥ ପାଠୀ ଭାରତ ସରକାରଙ୍କ କମିଶନର୍, କ୍ୟୁରେଟର୍ ହେଇଥାଇପାରନ୍ତି । ସେଭଳି ନିଯୁକ୍ତି ତ କ୍ଷଣସ୍ଥାୟୀ । ସିଏ ତ ଓଡ଼ିଶା ସରକାରଙ୍କ ସ୍ଥାୟୀ କର୍ମଚାରୀ । ଏଣୁ ସେ ପ୍ରଦର୍ଶନୀ ପାଇଁ ଯେତିକି ଅର୍ଥ ବ୍ୟୟ କରିଛନ୍ତି ତାହା ଓଡ଼ିଶା ସରକାରଙ୍କ ଫିନାନ୍‌ସିଆଲ୍ ରୁଲ୍ (ବ୍ୟୟନୀତି) ଅନୁଯାୟୀ ସମୀକ୍ଷା ହେବା ବାଞ୍ଛନୀୟ । ପୁଣି ସେ ପ୍ରଦର୍ଶନୀ ପାଇଁ ଯେତେ ସବୁ କଳା ସାମଗ୍ରୀ କିଣିଛନ୍ତି ତା'ର ମଧ୍ୟ ଅନୁଧାନ କରାଯିବା ଆବଶ୍ୟକ । ଲଳିତ କଳା ଏକାଡେମୀ କର୍ତ୍ତୃପକ୍ଷ ମନ୍ଦ ଉଦ୍ଦେଶ୍ୟ ରଖି ମୋତେ ହଇରାଣ ହରକତ କରିବା ପାଇଁ ଏଭଳି ଯୋଜନା କଲେ । ସେମାନେ ଠିକ୍ ଠଉରେଇଥିଲେ ଯେ ଦିନନାଥ ପାଠୀ ଭଙ୍ଗା ଅଟୋରିକ୍ସାଠୁ ଆରମ୍ଭ କରି କାଠ କଣ୍ଢେଇ, ନଡ଼ା, ମାଟି, ଛୁଞ୍ଚି ସୂତା ଯାଏଁ କେତେ ପ୍ରକାରର ଟିକି ନିଖି ସାମଗ୍ରୀ କିଣିଛି, ଏତେ ସବୁ ଅଜବ ଜିନିଷର ଠିକଣା ହିସାବ ରଖିବା ତା'ପକ୍ଷେ ସମ୍ଭବ ନୁହେଁ । ଏଣୁ ସିଏ ଜାଲରେ ଛନ୍ଦିହେବା ଖୁବ୍ ସ୍ୱାଭାବିକ । ଏ ଭିତରେ ମୁଁ ଭାରତ ସରକାରଙ୍କୁ ଜଣେଇଥିଲି ଯେ ଲୋକପ୍ରିୟ କଳା ପ୍ରଦର୍ଶନୀରେ ବ୍ୟବହୃତ ସାମଗ୍ରୀଗୁଡ଼ିକର କୌଣସି ସ୍ଥାୟୀ କଳାତ୍ମକ ମୂଲ୍ୟ ନାହିଁ ଏବଂ ଏଗୁଡ଼ିକ ସୁନା ରୂପା ଭଳି ମୂଲ୍ୟବାନ ବସ୍ତୁରେ ଗଢ଼ା ହେଇ ନଥିବାରୁ ଏହାର ଉପାଦାନ ମୂଲ୍ୟ ବି ନାହିଁ । ଏଣୁ ଏଗୁଡ଼ିକୁ ଦାନସୂତ୍ରରେ କୁଲଟର୍ ହ୍ୟୁସେଟକୁ ଦେଇଦିଆଯାଉ । ମୋ ପ୍ରସ୍ତାବର ଗୁରୁତ୍ୱ ହୃଦୟଙ୍ଗମ କରି ପ୍ରଦର୍ଶନୀର ସମସ୍ତ ସାମଗ୍ରୀ ଷ୍ଟକ୍‌ହୋମ୍‌ରେ ଦାନ ସୂତ୍ରରେ ଦେଇ ଦେବା ପାଇଁ ଭାରତ ସରକାରଙ୍କ ଅନୁମତି ମୋତେ ମିଳିଗଲା । ମୋର ଅଶି ପ୍ରତିଶତ ସମସ୍ୟାର ସମାଧାନ ହୋଇଗଲା । ଏହି ଅନୁମତି ଚିଠିର ସୁରାକ ପାଇଗଲା ପରେ ଇତର ପକ୍ଷର ଶିବିରରେ ଭାଳେଣି ପଡ଼ିଲା । ସେମାନେ ଅନୁମାନ କରିନେଲେ ଯେ ଦିନନାଥ ପାଠୀଙ୍କ

Digitized by srujanika@gmail.com

ବେକରେ ଝୁଲୁଥିବା ଫାଶ ହୁଗୁଳା ହେଇଗଲା ଏବଂ ସେ ଯେକୌଣସି ମୁହୂର୍ତ୍ତରେ ଫାଶ ଭିତରୁ ଅନାୟାସରେ ନିଜ ବେକକୁ ଖସାଇ ଦେଇପାରିବେ ।

ତା'ପରେ ଏକାଡେମୀ ପ୍ରଦର୍ଶନୀ ହିସାବପତ୍ର ଅଡିଟ୍ କରିବା ପାଇଁ ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗର ଅଡିଟରମାନଙ୍କୁ ନିଯୁକ୍ତି ଦେଲେ । ସାଧାରଣତଃ ଧରିନିଆ ଯାଇଥାଏ ଯେ ମାଲ୍‌ପାଣି ନ ହେଲେ ଅଡିଟରମାନେ ଜିରାରୁ ଶିରା ବାହାର କରିବା ଲୋକ । ଆମ ଅଡିଟରମାନେ ଚାରିକଣିଆ କଣାରେ ଗୋଲ ସ୍କ୍ରୁ ଖଞ୍ଜିଲା ଭଳି ପ୍ରତ୍ୟେକ ଖର୍ଚ୍ଚର ତର୍ଜମା କରିବା ଆରମ୍ଭ କଲେ । ଓଡ଼ିଶା ସରକାରଙ୍କ ଗସ୍ତ ସଂକ୍ରାନ୍ତୀୟ ଏକ ନିୟମ ଅଛି ଯେ ରାଜ୍ୟ ବାହାରକୁ ଗସ୍ତରେ ଗଲେ ସରକାରଙ୍କ ଅନୁମତି ସାପେକ୍ଷ । ଏହା ଏଭଳି ଏକ ସମୟ ସାପେକ୍ଷ ବ୍ୟବସ୍ଥା ଯେ ଯଦି କୌଣସି ଏକ ଜରୁରୀ କାର୍ଯ୍ୟରେ ଜଣେ କର୍ମଚାରୀଙ୍କୁ ଓଡ଼ିଶା ବାହାରକୁ ଯିବାକୁ ହୁଏ, ତାହେଲେ ତାଙ୍କ ପାଖରେ ସରକାରୀ ଆଦେଶ ପହଞ୍ଚିବା ବେଳକୁ ଆବଶ୍ୟକ କାର୍ଯ୍ୟର ଆଉ କୌଣସି ଗୁରୁତ୍ୱ ରହି ନଥାଏ । ଆମ କଲେଜର କିଛି ଅଧ୍ୟାପକ ଯେ ରାଜ୍ୟ ବାହାରକୁ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ କାମରେ ଯାଇଥିଲେ ତାହା କେବଳ ନୁହେଁ ବରଂ ଉଡ଼ାଜାହାଜରେ ସରକାରଙ୍କ ବିନାନୁମତିରେ ଗସ୍ତ କରିଥିଲେ । ମୁଁ ଏହି ଅଭିଯୋଗର ଉତ୍ତର ଦେବାକୁ ଯାଇ କହିଥିଲି ଯେ ଯଦି ସରକାରଙ୍କ ଏହି ନିୟମ ପାଳନ ଏକାନ୍ତ ଆବଶ୍ୟକ, ତାହେଲେ ବର୍ତ୍ତମାନ ବିଳମ୍ବରେ (ପୋଷ୍ଟଫେକ୍ଟୋ) ଅନୁମତି ପ୍ରଦାନ କରାଯାଇପାରେ । ଗସ୍ତ ତ ସରିଛି । ପ୍ରଦର୍ଶନୀ ବି ଶେଷ ହୋଇଛି । ଏଣୁ ଅଡିଟରମାନଙ୍କ ମୋ ପରାମର୍ଶ ଗ୍ରହଣ କରିବା ଛଡ଼ା ଅନ୍ୟ ଉପାୟ ନଥିଲା ।

ସେମାନଙ୍କ ଅଭିଯୋଗ ତ ଅସଂଖ୍ୟ । ସବୁଗୁଡ଼ିକ ପ୍ରତି ଧ୍ୟାନଦେଲେ ପାଠକଙ୍କ ମନରେ କ୍ଳାନ୍ତି ଆସିଯିବ । ଏଣୁ ଆଉ ଦୁଇ ଚାରୋଟିର ଅବତାରଣା କରି ସ୍ମୃତି ଉପଭୋଗରୁ କ୍ଷାନ୍ତ ରହିବି । ଅଡିଟରମାନଙ୍କ ଦ୍ୱିତୀୟ ପ୍ରଶ୍ନ ହେଲା : ନୂଆ ଅଟୋରିକ୍ସା ବଜାରରେ ମିଳୁଥିବା ସ୍ଥଳେ ପ୍ରଦର୍ଶନୀ ପାଇଁ ପ୍ରାୟ ସମାନ ମୂଲ୍ୟ ଦେଇ ପୁରୁଣା ଓ ଭଙ୍ଗା ଅଟୋରିକ୍ସାଟିଏ କାହିଁକି କିଣାଯାଇଛି ? ମୋର କୈଫିୟତ ହେଲା ଯଦିଓ ଅଟୋରିକ୍ସାଟିଏ କିଣା ଯାଇଛି ତାହା ଅଟୋରିକ୍ସାର ସ୍ୱାଭାବିକ କାର୍ଯ୍ୟ ପାଇଁ ନୁହେଁ । ଭଙ୍ଗା ଦଦରା ଅଟୋରିକ୍ସାଟିଏ ଏକ କଳା ସାମଗ୍ରୀର ଆବଶ୍ୟକତା ପୂରଣ କରୁଥିବାରୁ ତାକୁ କଳାପୂର୍ଣ୍ଣ ବସ୍ତୁ ମନେକରି ବରଂ ଅଧିକ ମୂଲ୍ୟ ଦେଇ କିଣାଯାଇଛି । ଏଣୁ ଅଡ଼ିଟରମାନଙ୍କ ଅଭିଯୋଗ ଗ୍ରହଣୀୟ ନୁହେଁ । ଏଭଳି ଉତ୍ତରରେ ସେମାନେ ଆଉ ଅଧିକା କ'ଣ କରିପାରିଥାନ୍ତେ ।

ପୁଣି ପ୍ରଦର୍ଶନୀର କମିଶନରଙ୍କୁ ପ୍ରଶ୍ନ କରାଗଲା: ଓଡ଼ିଶା ପର୍ଯ୍ୟଟନ ନିଗମର ଟ୍ୟାକ୍ସି ଥାଉ ଥାଉ ପ୍ରଦର୍ଶନୀ କାମ ପାଇଁ କାହିଁକି ବେସରକାରୀ ଟ୍ରାଭଲ୍ ଏଜେଣ୍ଟଠାରୁ ଟ୍ୟାକ୍ସି ଭଡ଼ାରେ ନିଆଯାଇଛି । ପର୍ଯ୍ୟଟନ ବିଭାଗର ଅନୁମୋଦିତ ଭଡ଼ା ଅନୁସାରେ ଟ୍ୟାକ୍ସି ଭଡ଼ା

Digitized by srujanika@gmail.com

କାହିଁକି ପଇଠ କରାଗଲା ନାହିଁ ? ମୋର ଉତ୍ତର ଅତ୍ୟନ୍ତ ସରଳ ଥିଲା । ମୁଁ ଯେତେବେଳେ ଗାଡ଼ି ଲୋଡ଼ିଲି ଠିକ୍ ସେତିକି ବେଳେ ପର୍ଯ୍ୟଟନ ନିଗମରେ ଗାଡ଼ି ନଥିଲା ଏବଂ ପର୍ଯ୍ୟଟନ ନିଗମର ଅନୁମୋଦିତ ଭଡ଼ାରେ ଗାଡ଼ି ମିଳିଲାନି । ଏକ ଆନ୍ତର୍ଜାତିକ ପ୍ରଦର୍ଶନୀର ସମୟ ନିର୍ଘଣ୍ଟ ଅତ୍ୟନ୍ତ କଠୋର ହେତୁ ମୁଁ ଟ୍ୟାକ୍ସି ଭଡ଼ାର ସରକାରୀ ନୀତିନିୟମ ପାଳନ କରିପାରିଲି ନାହିଁ ।

ବର୍ତ୍ତମାନ ମୁଁ ଯେଉଁ ଅଭିଯୋଗର ପ୍ରସଙ୍ଗଟି ଉଲ୍ଲେଖ କରିବି ତାହା ହାସ୍ୟାସ୍ପଦ ମନେ ହେବ । ମୁଁ ପଶ୍ଚିମବଙ୍ଗର ବିଷ୍ଣୁପୁର ଅଞ୍ଚଳରୁ ମାଟିରେ ତିଆରି ପାନ, ଗୁଆ, ଲବଙ୍ଗ ଇତ୍ୟାଦି ମସଲା ଆଣିଥିଲି । ସେଗୁଡ଼ିକ ଥିଲା ଅଦ୍ଭୁତ କାରିଗରୀର ନିଦର୍ଶନ । ଏଗୁଡ଼ିକ ସତ ସତ ପାନଗୁଆ ଠାରୁ ଯଥେଷ୍ଟ ଅଧିକ ଦାମ ଦେଇ କିଣା ଯାଇଥିଲା । ଏବଂ ଏଗୁଡ଼ିକୁ କିଣି ଆଣିବା ପାଇଁ ଟ୍ୟାକ୍ସି ଖର୍ଚ୍ଚ ମଧ ଲାଗିଥିଲା । ଅଡିଟର୍ ମହାଶୟ ତ ବୁଦ୍ଧିଆ । ସେ କହିଲେ ସତ ସତ ପାନଗୁଆ ପ୍ରଦର୍ଶନ ନ କରି ଏସବୁ ନକଲି ମାଟିର ପଦାର୍ଥ ପ୍ରଦର୍ଶନୀରେ ସ୍ଥାନିତ କରିବା ଫଳରେ ସରକାରଙ୍କ ରାଜକୋଷରୁ କେବଳ ଯେ ଅଧିକ ଅର୍ଥ ବ୍ୟୟିତ ହେଲା ତା ନୁହେଁ, ତା ସାଙ୍ଗକୁ ଭାରତୀୟ ସଂସ୍କୃତିର ଅପପ୍ରଚାର ମଧ କରାଗଲା ।

ଅଡିଟର୍‌ମାନେ ଦୋଷଦର୍ଶୀ । ସେମାନଙ୍କ କଳାତ୍ମକ ଜ୍ଞାନ ନ ରହିବା ସ୍ୱାଭାବିକ । କିନ୍ତୁ ଜଣେ ପ୍ରତିଷ୍ଠିତ ଶିଳ୍ପୀର ଭାବମୂର୍ତ୍ତିକୁ ଖଣ୍ଡିତ କରିବାର କ୍ଷମତା ସେମାନଙ୍କର ଅଛି । ଏହାସତ୍ତ୍ୱେ ଏଭଳି କ୍ଷମତାର ସ୍ଥାୟିତ୍ୱ ଅର୍ବାଚୀନ ଏବଂ ଏଭଳି ଏକ ମର୍ଯ୍ୟାଦାବନ୍ତ ପ୍ରଦର୍ଶନୀ କ୍ଷେତ୍ରରେ ଏପ୍ରକାରର ଅବିବେକୀ ନୀତି ନିୟମର ପ୍ରୟୋଗ ହାସ୍ୟାସ୍ପଦ ମନେହେବ ।

ମୁଁ ଅଭିଯୋଗମାନଙ୍କର ଯୁକ୍ତିସଙ୍ଗ ଉତ୍ତର ଦେବା ପରେ ଅନେକ ଗୁଡ଼ିଏ ପ୍ରଶ୍ନ ଅଭିଯୋଗ ଫର୍ଦ୍ଦରୁ ହଟିଗଲା । ସଂଖ୍ୟା କମି କମି ଶେଷରେ ଚାଳିଶି ପାଖରେ ଅଟକିଲା ସିନା ଆଉ ତଳକୁ ଖସିଲାନି । ଭାରତ ସରକାର ପ୍ରଦର୍ଶନୀ ପାଇଁ ଅର୍ଥ ବ୍ୟବସ୍ଥା କରିଥିବା ବେଳେ କେବଳ ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତଟି ହେଲା ଯେ ହିସାବ ପତ୍ର ଜଣେ ପଞ୍ଜୀକୃତ ଚାର୍ଟେଡ୍ ଏକାଉଣ୍ଟେଟ୍‌ଙ୍କ ଦ୍ୱାରା ସମୀକ୍ଷା କରାଯିବ । ଓଡ଼ିଶା ଲଳିତ କଳା ଏକାଡେମୀ ଭାରତ ସରକାରଙ୍କ ସର୍ତ୍ତକୁ ଗୁରୁତ୍ୱ ନଦେଇ ପାଣିଗୋଳିଆ କରିବାକୁ ଲାଗିଲେ । ନୂଆଦିଲ୍ଲୀର ବିଜ୍ଞାନ ଭବନ ଆନେକ୍ସିରେ ଥିବା ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ଅଫିସ୍‌ରେ ଉପଶାସନ ସଚିବଙ୍କ ସହିତ କୌଣସି ଗୋଟିଏ ସମସ୍ୟା ସଂପର୍କରେ (ହୁଏତ ହିସାବ ସମୀକ୍ଷା ହେଇଥିବା ଖୁବ୍ ସମ୍ଭବ) ଆଲୋଚନା କରି ଫେରିଲା ବେଳକୁ ଲଳିତ କଳା ଏକାଡେମୀର ବଡ଼ବାବୁ ରବି ମହାପାତ୍ରଙ୍କ ସହିତ ଅଫିସ୍ ବାହାରେ ଭେଟ ହେଲା । ସେ ବିଡ଼ାଏ ଫାଇଲ ଧରି ବିରସ ମନରେ ଠିଆ ହୋଇଥିଲେ । ମୋତେ ଭେଟିପଡି କହିପକେଇଲେ, ''ହେ, ପାଠୀବାବୁ ଦେଖନ୍ତୁ ମୁଁ କି ହିନସ୍ତାରେ ପଡ଼ିଛି । ସେକ୍ରେଟାରୀ

Digitized by srujanika@gmail.com

କହିବାରୁ ଏତେଗୁଡ଼ାଏ ଫାଇଲ୍ ବୋହି ଦିଲ୍ଲୀ ଆସିଥିଲି । ଏଗୁଡ଼ିକ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ଅଫିସ୍‌ରେ ଦାଖଲ କରିବାକୁ ମୋତେ କୁହାଯାଇଥିଲା । ସେମାନେ ମୋତେ ଏ ଫାଇଲ୍ ବିଡ଼ା ସାଙ୍ଗରେ ଦେଖି ଦୂର୍ ଦୂର୍ ମାର୍ ମାର୍ କଲେ । କହିଲେ ପ୍ରତି ପ୍ରଦର୍ଶନୀ ସଂକ୍ରାନ୍ତୀୟ ଫାଇଲ୍ ଯଦି ଆମେ ରଖୁଥାନ୍ତୁ । ତାହେଲେ ଆମକୁ ଗୋଟିଏ ଗୋଦାମ ଘର ଆବଶ୍ୟକ ହୁଅନ୍ତା । ସେମାନେ ତାଗିଦା ଦେଇ ଆହୁରି କହିଲେ, ଯାଅ, ଆଉ ଆମକୁ ଖଣ୍ଡିଏ କାଗଜରେ ଲେଖି ଆଣିଦିଅ ଦିନନାଥ ପାଠୀ ପ୍ରଦର୍ଶନୀ ପାଇଁ ଏକାଡେମୀରୁ ନେଇଥିବା ଅର୍ଥରୁ କେତେ ଖର୍ଚ୍ଚ କରିଛନ୍ତି ଆଉ କେତେ ଅବଶିଷ୍ଟ ଅଛି । ଅବଶିଷ୍ଟ ଟଙ୍କାର ଗୋଟିଏ ଚେକ୍ ମଧ ଚିଠି ସାଙ୍ଗରେ ଯୋଡ଼ିଦେଇ ହିସାବ ପତ୍ର ଶୀଘ୍ର ତୁଟାଅ ।''

ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ଆଭିମୁଖ୍ୟ ପରିଷ୍କାର ଥିଲା । ସେମାନେ ଓଡ଼ିଶା ଲଳିତ କଳା ଏକାଡେମୀର ପ୍ରରୋଚନାରେ କରାଯାଇଥିବା ଓଡ଼ିଶା ସରକାରଙ୍କ ଅଡ଼ିଟ ରିପୋଟ୍ ଚାହୁଁ ନଥିଲେ । କିନ୍ତୁ ଏକାଡେମୀ ହିସାବ ନ ତୁଟେଇ ତୁନି ହେଇ ରହିଲେ । ମୋ ତରଫରୁ ଆଉ କିଛି କରଣୀୟ ନଥିଲା । ସଂସ୍କୃତି ବିଭାଗର ନିର୍ଦ୍ଦେଶକମାନେ ଜଣକ ପରେ ଜଣେ ବଦଳିଲେ । ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ହିସାବ ସତେ ଯିମିତି ଏମାନଙ୍କ ଅଲୋଡ଼ା ସନ୍ଦର୍ଭ ହେଇ ପଡ଼ିରହିଲା । ଏକାଡେମୀ କିଛିଦିନ ପରେ ଭାରତ ସରକାରଙ୍କ ନିକଟରେ ଅନ୍ୟ ଗୋଟିଏ ପ୍ରସ୍ତାବ ବାଢ଼ିଲେ । ସେମାନେ ଯେହେତୁ ଟଙ୍କା ଗ୍ରହଣ କରିଛନ୍ତି, ନିଜ ହେପାଜତରେ ରଖିଛନ୍ତି, ପୁଣି କିସ୍ତିରେ ଦେଇଛନ୍ତି, କ୍ୟୁରେଟର୍ ଦେଇଥିବା ଭାଉଚର୍‌ର ଦାୟିତ୍ୱ ନେବା ସହିତ ହିସାବ ସମୀକ୍ଷା କରିଛନ୍ତି ତେଣୁ ସର୍ଭିସ୍ ଚାର୍ଜ୍ ବାବଦକୁ ପ୍ରଦର୍ଶନୀର ଅବଶିଷ୍ଟ ଅର୍ଥ ଏକାଡେମୀର ପ୍ରାପ୍ୟ । କିନ୍ତୁ ଭାରତ ସରକାର ଏକାଡେମୀର ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ ।

ପ୍ରଦର୍ଶନୀର ସାଫଲ୍ୟଜନିତ ସ୍ମୃତି ଉପରେ ଅଳନ୍ଧୁର ପରଦା ଭଳି ଏକାଡେମୀର ଅସୂୟାପ୍ରଣୋଦିତ ଅଭିଯୋଗ ଜମିବାକୁ ଉପକ୍ରମ କରୁଥାଏ । ଏହି ପ୍ରଦର୍ଶନୀ ପ୍ରକଳ୍ପ ନିଜର ଏକ ଆନ୍ତର୍ଜାତିକ କାର୍ଯ୍ୟକ୍ରମ ବୋଲି ଏକାଡେମୀ ବିବେଚନା କରୁ ନଥିଲେ । ବସ୍ତୁତଃ ସେମାନେ ହିଁ ଏହି ପ୍ରଦର୍ଶନୀ ପାଇଁ ଅର୍ଥ ଦେଉଥିଲେ ଓ ଖର୍ଚ୍ଚର ହିସାବ ବୁଝାଶୁଝା କରୁଥିଲେ । ମୁଁ ପୁଣି ଜଣେ ଓଡ଼ିଆ ଶିଳ୍ପୀ । ମୋର ସମସାମୟିକ ବନ୍ଧୁ ଏବଂ କିଛି ବୟୋଜ୍ୟେଷ୍ଠ ଶିଳ୍ପୀ ଏକାଡେମୀ ପରିଚାଳନା ଦାୟିତ୍ୱରେ ଥିଲେ । ଏସବୁ ସତ୍ତ୍ୱେ ସେମାନେ ପ୍ରଦର୍ଶନୀର ଅଭୂତପୂର୍ବ ସାଫଲ୍ୟରେ କାହିଁକି ଭାଗୀଦାର ହେଇପାରିଲେନି, ସେକଥା ଏବେ ଭାବିଲା ବେଳକୁ ଆଶ୍ଚର୍ଯ୍ୟ ଲାଗେ । ସେମାନେ ପ୍ରଥମରୁ ଭାବି ନେଇଥିଲେ ଯେ ଦିନନାଥ ପାଠୀ ଜଣେ ଇତର ଲୋକ । ଏଣୁ ତାଙ୍କର କୃତିତ୍ୱ ବା ସାଫଲ୍ୟ ସହିତ ରାଜ୍ୟ ଲଳିତ କଳା ଏକାଡେମୀର କୌଣସି ସଂପର୍କ ନାହିଁ । ସଂସ୍କୃତି ବିଭାଗର ଅଧିକାରୀମାନେ ବିଚାରିଲେ

Digitized by srujanika@gmail.com

ଯେ ଦିନନାଥ ପାଠୀ ଆମର ଜଣେ ଅଧସ୍ତନ କର୍ମଚାରୀ । ଅତଏବ ଆନ୍ତର୍ଜାତିକ ପ୍ରକଳ୍ପ, ବିଦେଶ ମାଟିରେ କଳା ମାଧ୍ୟମରେ ଓଡ଼ିଆ ଅସ୍ମିତାର ଦୃଢ଼ ଉପସ୍ଥାପନା ଏବଂ ମହାବିଦ୍ୟାଳୟର ସୁନାମ ଏସବୁ ଅତି ମାମୁଲି କଥା ।

ଥରେ କଥା ପ୍ରସଙ୍ଗରେ ଏକାଡେମୀର ସଂପାଦକ ମୋ ବନ୍ଧୁ ଜଗଦୀଶ କାନୁନ୍‌ଗୋ ଅଭିମାନରେ କହିଲେ, ''ବଢ଼େଇ, କମାର, ପାନ କ୍ୟାବିନ ପର୍ଯ୍ୟନ୍ତ ଅନେକ ଅକିଞ୍ଚନ ସୁଇଡ଼େନ୍ ଯାଇପାରିଲେ ଅଥଚ ଆମେ ଏତେ ଘନିଷ୍ଠ ବନ୍ଧୁ ହେଇ ମଧ୍ୟ ଏବଂ ପ୍ରଦର୍ଶନୀର ସାଫଲ୍ୟ ପାଇଁ ପ୍ରକାରାନ୍ତରେ କାମ କରି ମଧ୍ୟ ବିଦେଶ ଯାତ୍ରା ଆମ ଭାଗ୍ୟରେ ଜୁଟିଲାନି ।'' ମୁଁ ବନ୍ଧୁଙ୍କୁ କହିଥିଲି, ''ଏଥିପାଇଁ ଏକାଡେମୀର ଆଭିମୁଖ୍ୟ ହିଁ ଦାୟୀ । ଆପଣ ବ୍ୟକ୍ତିଗତ ଭାବେ ହୁଏତ ପ୍ରଦର୍ଶନୀର ବା ମୋର ଶୁଭ ମନାସୁ ଥିଲେ । କିନ୍ତୁ ଅର୍ଥ ପ୍ରଦାନ ବ୍ୟାପାରରେ ଏକାଡେମୀ ଯେଭଳି ମୋତେ ହଇରାଣ ହରକତ କଲେ ଏବଂ ଠିକ୍ ସମୟରେ ଅର୍ଥ ମିଳୁ ନଥିବାରୁ ପ୍ରଦର୍ଶନୀ ଆୟୋଜନରେ ଯେଭଳି ବ୍ୟାଘାତ ସୃଷ୍ଟି ହେଲା ତାହା ଘୋର ନିନ୍ଦନୀୟ । ପ୍ରଦର୍ଶନୀର ଅର୍ଥ ପରିଚାଳନାକୁ ନେଇ ଏକାଡେମୀ ଓ ଫେଷ୍ଟଭାଲ୍ ଅଫ୍ ଇଣ୍ଡିଆ ଭିତରେ ଯେଉଁ ମନୋମାଳିନ୍ୟ ଦେଖାଗଲା ଆଉ ଆମର ଏହି କଳି ତକରାଳ ନର୍ଦ୍ଦମାର ଦୁର୍ଗନ୍ଧ ଭଳି ସୁଇଡ଼େନ ଯାଏଁ ଯେଭଳି ବ୍ୟାପି ଗଲା ତାଠୁ ବଳି ଆଉ ଲଜ୍ଜାର କଥା କ'ଣ ହେଇପାରେ !''

ଆଇ.ସି.ସି.ଆର୍‌ର ମହାନିର୍ଦ୍ଦେଶକ ଲଳିତ ମାନସିଂହ ଷ୍ଟକ୍‌ହୋମ୍‌ରେ ମୋତେ ଯେଉଁ ସାରଗର୍ଭକ ଚେତାବନୀଟିଏ ଦେଇଥିଲେ ମୁଁ ଏକାଡେମୀର ସଂପାଦକଙ୍କୁ ତାହା ଜଣେଇ ଦେଇଥିଲି । ଲଳିତ ମାନସିଂହ କ୍ଷୋଭ ପ୍ରକାଶ କରି କହିଥିଲେ : ''ଦିନନାଥ ଭାରତ ଉତ୍ସବର ସମଗ୍ର ଇତିହାସରେ ପ୍ରଥମ ଥର ପାଇଁ ଜଣେ ଓଡ଼ିଆ ଶିଳ୍ପୀଙ୍କୁ ଏତେବଡ଼ ଗୌରବ ମିଳିଥିଲା ଏବଂ ଓଡ଼ିଶା ଲଳିତ କଳା ଏକାଡେମୀକୁ ଏହି ଆନ୍ତର୍ଜାତିକ ପ୍ରକଳ୍ପରେ ସାମିଲ କରି ସମଗ୍ର ଓଡ଼ିଶାର ଶିଳ୍ପୀକୁଳକୁ ଆମେ ସମ୍ମାନିତ କରିଥିଲୁ । କିନ୍ତୁ ଏକାଡେମୀ ଏତେ ନୀଚ ସ୍ତରକୁ ଖସି ଆସି ବ୍ୟକ୍ତିଗତ ଅସୂୟାକୁ ଯେଭଳି ଦେଶ ବିଦେଶରେ ପ୍ରକାଶିତ କରିଦେଲେ, ମନେରଖନ୍ତୁ ଭବିଷ୍ୟତରେ ଆଉ କୌଣସି ଓଡ଼ିଆ ଶିଳ୍ପୀ ଏଭଳି ଗୌରବର ଅଧିକାରୀ ହୋଇପାରିବେ ନାହିଁ ।'' ଲଳିତ ମାନସିଂହଙ୍କ କଥାକୁ ସଂପାଦକ ବନ୍ଧୁ ଭଲ ଭାବରେ ହେଜିଥିଲେ । ସେ ମଧ୍ୟ ବୁଝିଯାଇଥିଲେ କାହିଁକି ରାଜ୍ୟ ଲଳିତ କଳା ଏକାଡେମୀର ସଂପାଦକ ଦିନନାଥଙ୍କ ସହପାଠୀ ହୋଇ ମଧ୍ୟ ଷ୍ଟକ୍‌ହୋମ୍ ଗସ୍ତରେ ଯାଇପାରି ନଥିଲେ । ରାଜ୍ୟ ଲଳିତ କଳା ଏକାଡେମୀ ଭାରତ ଉତ୍ସବ ପ୍ରଶାସନର ସମସ୍ତ ନିର୍ଦ୍ଦେଶକୁ ଅବମାନନା କରି ମୋ ବିରୁଦ୍ଧରେ ହେଇଯାଇଥିବା ଷଡ଼ଯନ୍ତ୍ରକୁ ଫାଇଲ୍‌ର ଶୀତଳ ପୃଷ୍ଠା ଭିତରେ ବନ୍ଧେଇ ରଖିବାକୁ ସାଧ୍ୟମତେ ଚେଷ୍ଟା କରୁଥିଲେ । ଦିନେ ନୁହେଁ ମାସେ ନୁହେଁ

Digitized by srujanika@gmail.com

ବର୍ଷ ବର୍ଷ ଧରି ଆଠ ବର୍ଷ ମୁଁ ମାନସିକ ସନ୍ତାପ ଭିତରେ ସଢ଼ିଲି । ହିସାବପତ୍ର ଅଛିଣ୍ଡା ରହିଲା । ମୁଁ ଶେଷରେ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ନିଯୁକ୍ତି ପାଇ ନୂଆଦିଲ୍ଲୀ ବାହାରିଲି । ସେତେବେଳକୁ ବିମଳେନ୍ଦୁ ମହାନ୍ତି ସଂସ୍କୃତି ନିର୍ଦ୍ଦେଶକ ଥିଲେ । ସେ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ହିସାବ ପତ୍ରର ସମାଧାନ ପାଇଁ ମୋ ମତାମତ ଚାହିଁଲେ । ମୁଁ ଭାରତ ସରକାରଙ୍କ ସଂସ୍କୃତି ବିଭାଗ ଅଧିନରେ କାମ କରିବାକୁ ଥିବାରୁ ଫେଷ୍ଟିଭାଲ୍ ସଂକ୍ରାନ୍ତୀୟ ମୋର ସମସ୍ତ କାଗଜପତ୍ର ସେଠାକୁ ପଠେଇ ଦେବା ପାଇଁ ମୁଁ ବିମଳେନ୍ଦୁ ମହାନ୍ତିଙ୍କୁ ପ୍ରବର୍ତ୍ତାଇଲି । ସେ ମୋ କଥାରେ ସହମତି ପ୍ରକାଶ କରି କେନ୍ଦ୍ର ସଂସ୍କୃତି ବିଭାଗକୁ ଚିଠି ଲେଖିଲେ ।

ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀରେ ସଚିବ ଭାବେ ଯୋଗ ଦେଲା ପରେ ଦିନେ ସଂସ୍କୃତି ବିଭାଗର ଉପଶାସନ ସଚିବଙ୍କୁ ଭେଟି ମୋ ସମସ୍ୟା କଥା ଜଣେଇଲି । ଦୈବ ଯୋଗକୁ ସେ ହିଁ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ଫାଇଲ୍ ସବୁ ବୁଝୁଥିଲେ ଓ ମୋ ଫାଇଲଟି ତାଙ୍କ ନିକଟରେ ଥିଲା । ସେ ଦୟା ପରବଶ ହୋଇ ସଂଗେ ସଂଗେ ଓଡ଼ିଶା ଲଳିତ କଳା ଏକାଡେମୀକୁ ଚିଠି ଖଣ୍ଡେ ଲେଖିଲେ । ସେ ସେଥିରେ ଉଲ୍ଲେଖ କଲେ ଯେ ଦିନନାଥ ପାଠୀ ନଅ ଲକ୍ଷ ପଞ୍ଚଚାଳିଶ ହଜାର ଟଙ୍କାର ଖର୍ଚ୍ଚର ହିସାବ ଦେଇସାରିଛନ୍ତି ଏବଂ ଭାରତ ସରକାର ସେ ହିସାବକୁ ଗ୍ରହଣ କରି ସାରିଛନ୍ତି । ଏଣୁ ଏକାଡେମୀ ନିକଟରେ ଜମାଥିବା ଆଉ ପଞ୍ଚାବନ ହଜାର ଟଙ୍କା ତୁରନ୍ତ ଭାରତ ସରକାରଙ୍କୁ ଫେରାଇ ଦେଇ ଦୀର୍ଘ ଦିନର ସମସ୍ୟାର ସମାଧାନ କରାଯାଉ ।

ଭାରତ ସରକାରଙ୍କ ଚିଠି ଅମୋଘ ଅସ୍ତ୍ର ଭଳି କାମ ଦେଲା । ଲଳିତ କଳା ଏକାଡେମୀ ସେମାନଙ୍କ ପାଖରେ ଥିବା ଅବଶିଷ୍ଟ ଟଙ୍କା ଫେରାଇବାକୁ ବାଧ ହେଲେ କିନ୍ତୁ ରାଜ୍ୟ ସଂସ୍କୃତି ବିଭାଗର ଅଡିଟର୍ ମାନେ ଆଣିଥିବା ଚାଳିଶି ଦଫା ଅଭିଯୋଗ ସେମିତି ପୁରୁଣା ବାରୁଦ ଭଳି ଫାଇଲ ଗଦା ଭିତରେ ପଡ଼ିରହିଲା । ସମୟ ଗଡ଼ି ଚାଲିଲା ଏବଂ ମୋର ଅବସର ନେବା ସମୟ ପାଖେଇଲା । ମୁଁ ଭାବିଲି ସଂସ୍କୃତି ବିଭାଗକୁ ଯାଇ ଅଡିଟର୍ ବିଭାଗର ମୁଖ୍ୟଙ୍କ ସହିତ ସିଧାସଳଖ ଆଲୋଚନା କରିବି । ମୁଁ ବିଭାଗକୁ ଯାଇ ଦେଖେ ତ ସେଠିକି ଆକାଉଣ୍ଟସ୍ ଅଫିସର୍ ଭାବେ ଯିଏ ବଦଳି ହେଇ ଆସିଛନ୍ତି ସିଏ ଆମ ଗାଁ ଦିଗପହଣ୍ଡିର ଲୋକ । ମୋ ମନରେ ବିଶ୍ୱାସ ଜନ୍ମିଲା । କଳାମେଘରେ ବେଳେବେଳେ ଏମିତି ରଜତ ରେଖାଟିଏ ଦେଖାଦିଏ । ସିଏ କହିଲେ ଯେ ଫାଇଲ୍ ସଂପର୍କରେ ତାଙ୍କର ଆଉ କିଛି ଅଛପା ନାହିଁ । ମୋ ପ୍ରତି ତାଙ୍କର ପରାମର୍ଶ ହେଲା ଯେ ଆକାଉଣ୍ଟସ୍ ଅଫିସର୍ ଆମ ଗାଁ ଲୋକ ବୋଲି ମୁଁ କେଉଁଠି ପ୍ରକାଶ କରିବି ନାହିଁ ଏବଂ ଯାହା କାର୍ଯ୍ୟାନୁଷ୍ଠାନ କରିବା କଥା ସିଏ କରିବେ । ତାହାହିଁ ହେଲା । ଭାରତ ସରକାର ସମସ୍ତ ଖର୍ଚ୍ଚର ହିସାବ

Digitized by srujanika@gmail.com

ଗ୍ରହଣ କରିସାରିଥିବାରୁ ଏବଂ ମୁଁ ରାଜ୍ୟ ସରକାରଙ୍କ ଚାକିରିରୁ ଅବସର ନେଇ ସାରିଥିବାରୁ ଅଡିଟ୍ ରିପୋର୍ଟ୍‌ରେ ଥିବା ଅଭିଯୋଗର ଆଉ କୌଣସି ଯଥାର୍ଥତା ନାହିଁ ବୋଲି ଆକାଉଣ୍ଟସ୍ ଅଫିସର୍ ଯୁକ୍ତି ବାଢ଼ିଲେ ।

ସବୁ ଜଞ୍ଜାଳ ତୁଟିଲା । ସାପ ବାଡ଼ିଆଖାଇ ମଲା । କିନ୍ତୁ ତା'ର ଲାଙ୍ଗୁଡ଼ରେ ଏବେ ବି ଜୀବନ ସଞ୍ଚାର ହେବାର ସମ୍ଭାବନା ଦେଖାଗଲା । ଯିମିତି ଲୋକେ କହନ୍ତି 'ସାପ ମାରି ଲାଙ୍ଗୁଡ଼ରେ ବିଷ' । ପ୍ରଦର୍ଶନୀର କାଗଜ ପତ୍ର ରଖିବା ପାଇଁ ମୁଁ ଦେଶୀ କମ୍ପାନୀର ଷ୍ଟିଲ୍ ଆଲମାରୀଟିଏ କିଣିଥିଲି । ସେଇ ଗୋଟିଏ ଭାରତ ଉତ୍ସବର ଶେଷ ସନ୍ତକ ଭାବେ ମୋ ପାଖରେ ରହିଥାଏ । ସରକାରୀ ହିସାବ ତ ଅନ୍ୟଥା ହେବାର ନୁହେଁ । ସେଇ ଆଲମାରୀ ଖଣ୍ଡିକ ଏକାଡେମୀକୁ ଫେରେଇ ଦେବା ପାଇଁ ମୁଁ ଚିଠି ଖଣ୍ଡେ ପାଇଲି । କେବେ ଆଲମାରୀ ନେଇ ଏକାଡେମୀ ଅଫିସରେ ଦାଖଲ କରିବ ବୋଲି ଦି ଚାରୋଟି ଚିଠି ମୁଁ ଲେଖିଲା ପରେ ମଧ୍ୟ ଏକାଡେମୀରୁ କୌଣସି ଉତ୍ତର ପାଇଲି ନାହିଁ । ଦିନେ ଟ୍ରଲିରେ ଆଲମାରୀଟି ବୋଝେଇ କରି ଲଳିତ କଳା ଏକାଡେମୀରେ ପହଞ୍ଚିଲି । କିନ୍ତୁ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା, ସେମାନେ ବିଭିନ୍ନ ଆଳ ଦେଖାଇ ଆଲମାରୀଟି ଗ୍ରହଣ କରିବାକୁ ମନା କଲେ । ପୁଣି ଏ ସମସ୍ୟା ନେଇ ଆମ ଗାଁର ଆକାଉଣ୍ଟସ୍ ଅଫିସର୍ ବନ୍ଧୁଙ୍କ ନିକଟରେ ପହଞ୍ଚିଲି । ସେ ମୋତେ ମୃଦୁ ଭର୍ତ୍ସନା କରି କହିଲେ, ଚିଠିରେ ଏକାଡେମୀକୁ ଆଲମାରୀ ଫେରେଇବା କଥା ଲେଖାଅଛି । ସଂସ୍କୃତି ବିଭାଗ ଅଧୀନରେ ଅନେକ ଏକାଡେମୀ କାମ କରୁଛି । ତମେ ଯେ କୌଣସି ଏକାଡେମୀକୁ ଫେରେଇ ଦେଲେ ଚଳିବ ।

କେବେଠାରୁ ଭାରତ ଉତ୍ସବ ଶେଷ ହେଇଯାଇଛି । ତା'ର ମହାର୍ଘ ସ୍ମୃତି ଏବେ ବି ମୋ ପାଖରେ ସଜଫୁଲ ପରି ସତେଜ । ତା ସହିତ ଉତ୍ସବର ଯନ୍ତ୍ରଣା ବି ଆଲୁଅ ସହିତ ଅନ୍ଧାର ଭଳି ମୋ ସ୍ମୃତିର କେଉଁ କୋଣରେ ଲେସି ହେଇ ରହିଛି ।

Digitized by srujanika@gmail.com

# ୩୯. ବବି କକ୍ସ୍‌ଙ୍କ ହାତତନ୍ତ

ବବି କକ୍ସ୍ ଲଣ୍ଡନର ଜଣେ ପ୍ରସିଦ୍ଧ ଟେପେଷ୍ଟ୍ରି ଡିଜାଇନର୍ । ତନ୍ତରେ ଲୁଗା ବୁଣା ହେଲା ପରି ଠିଆକଡ଼ ଓ ପଟକଡ଼ର ବିଭିନ୍ନ ବର୍ଣ୍ଣର ସୂତା ସାହାଯ୍ୟରେ ଯେଉଁ ଛବି ଖଣ୍ଡିଏ ବୁଣାଯାଏ ତାକୁ ଟେପେଷ୍ଟ୍ରି କୁହାଯାଏ । ଟେପେଷ୍ଟ୍ରିକୁ ସାଧାରଣତଃ କାନ୍ଥରୁ ପରଦାଭଳି ଝୁଲେଇ ଦିଆ ହେଇଥାଏ । ବର୍ଣ୍ଣ ପ୍ରୟୋଗରେ କାନ୍‌ଭାସ୍ ଉପରେ ଯେଭଳି ରୂପ ଓ ରଙ୍ଗର ଲୁଚକାଳି ଖେଳ ଦେଖେଇ ଦିଆଯାଇପାରେ, ଅନୁରୂପ ବୁଣା ସୂତାକୁ ଆଧାର କରି ଟେପେଷ୍ଟ୍ରିରେ ରୂପ ଓ ବର୍ଣ୍ଣର ଯାଦୁ ପରିବେଷଣ କରାଯାଇପାରେ ।

କଲିକତାସ୍ଥିତ ବ୍ରିଟିଶ୍ କାଉନ୍‌ସିଲ ପୂର୍ବ ଭାରତର ବିଭିନ୍ନ ସହରରେ ବବି କକ୍ସ୍‌ଙ୍କ କାର୍ଯ୍ୟକ୍ରମ ଆୟୋଜନ କରିଥାଏ । କାର୍ଯ୍ୟକ୍ରମ ଭିତରେ ଥାଏ ଭାଷଣ ଓ ଟେପେଷ୍ଟ୍ରିବୁଣା କୌଶଳ ପ୍ରଦର୍ଶନ । ଭୁବନେଶ୍ୱର ସହରରେ ତାଙ୍କ କାର୍ଯ୍ୟକ୍ରମର ଆୟୋଜନ ଦାୟିତ୍ୱ ଆମ ମହାବିଦ୍ୟାଳୟ ଉପରେ ବ୍ରିଟିଶ୍ କାଉନ୍‌ସିଲ୍ ଥାପି ଦେଇଥାନ୍ତି । କଳାଶିକ୍ଷା କ୍ଷେତ୍ରରେ ଏଭଳି କାର୍ଯ୍ୟକ୍ରମ ଅତ୍ୟନ୍ତ ଅଭିନବ ।

ବବି କକ୍ସ୍‌ଙ୍କ ସ୍ୱାମୀ ପିଟର୍ ଡାରଟିଙ୍ଗ୍‌ଟନ୍ କଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ ଏବଂ ତାଙ୍କ ମାଧ୍ୟମରେ ବବି କଳାଶିକ୍ଷା ସହିତ ସଂପୃକ୍ତ ଥିଲେ । ଆଶ୍ଚର୍ଯ୍ୟ ଲାଗେ ଓଡ଼ିଶାରେ ବସ୍ତ୍ର ଶିଳ୍ପକୁ ଆମେ କାହିଁକି କଳାଶିକ୍ଷା ମଧ୍ୟରେ ସ୍ଥାନ ଦେଇନାହୁଁ ଯଦିଓ ଓଡ଼ିଶାର ବାନ୍ଧଶାଢ଼ିର ପ୍ରସିଦ୍ଧି ଆମକୁ ସାରା ବିଶ୍ୱରେ ମାନ୍ୟତା ଆଣି ଦେଇଛି । ଓଡ଼ିଶୀ କଳାର ପର୍ଯ୍ୟାଲୋଚନା କଲାବେଳେ ତିନୋଟି ଶୈଳୀ ବା କାରିଗରୀ ଆମକୁ ପ୍ରଭାବିତ କରିଥାଏ । ସେଗୁଡ଼ିକ ହେଲା ପଥରଶିଳ୍ପ, ଚିତ୍ରକଳା ଓ ବୟନକଳା । ଏକଥା ମୁଁ ଅନ୍ୟତ୍ର ପ୍ରକାଶ କରିଛି । ଉପନିବେଶୀୟ କଳାଶିକ୍ଷାରେ ପ୍ରଭାବିତ ହୋଇ ଆମେ ଆମ କଳାର ଏସବୁ ବିଭବକୁ ନ୍ୟୁନମାନର କଳା ବା 'ମାଇନର୍ ଆର୍ଟସ୍' ବୋଲି ତୁଚ୍ଛ କଲାବେଳକୁ ସେ ଦେଶର ବୟନ କଳାକୁ ଉତ୍‌କର୍ଷ ବିବେଚନା କରୁଥିବା ଜଣେ ଶିଳ୍ପୀ ଆମ ମନରେ ଆମର ହଜିଲା ଅସ୍ମିତାକୁ ଜାଗରୁକ କରିବା ପାଇଁ ଭୁବନେଶ୍ୱରରେ ପହଞ୍ଚିଥିବା ଗୋଟିଏ ଉଲ୍ଲେଖନୀୟ ଘଟଣା ।

Digitized by srujanika@gmail.com

ଦୁଇଶହ ଅଢ଼େଇଶହ ଶ୍ରୋତା ଏକା ସାଙ୍ଗରେ ବସି ଭାଷଣ ଶୁଣିବା ପରି ଆମ କଲେଜରେ ଉପଯୁକ୍ତ ବ୍ୟବସ୍ଥା ନଥିବା ହେତୁ ଆମେ ସୂଚନା ଭବନରେ ବବିଙ୍କ ଭାଷଣର ବନ୍ଦୋବସ୍ତ କରିଥିଲୁ । ବବିଙ୍କ ପ୍ରଥମ ଭାରତ ଭ୍ରମଣର ଅନୁଭୂତି ତାଙ୍କ ଭାଷଣର ବିଷୟ ଥିଲା । ସେ କିଭଳି ସ୍ଥଳ ଭାଗରେ ନିଜ ସ୍ୱାମୀଙ୍କ ସହିତ କାର୍ ଚଳେଇ ଭାରତରେ ପହଞ୍ଚିଥିଲେ ଏବଂ ମଧ୍ୟ ପ୍ରାଚ୍ୟର ଭୂମଧ୍ୟସାଗରୀୟ ଦେଶ ସମୂହ ଯଥା, ଇରାନ୍, ଆଫଗାନିସ୍ଥାନ, କାନ୍ଦାହାର, କାବୁଲ ଓ ପାକିସ୍ଥାନରେ ସେଠାକାର କଳା ଦ୍ୱାରା ପ୍ରଭାବିତ ହୋଇଥିଲେ- ତାହା ହିଁ ତାଙ୍କର ବକ୍ତବ୍ୟକୁ ରସାଣିତ କରିଥିଲା । ସେହି ଲୋକମାନେ ପିନ୍ଧୁଥିବା ରଙ୍ଗ ବେରଙ୍ଗର ଆଜାନୁଆଚ୍ଛାଦିତ ପୋଷାକ ଓ ବିଭିନ୍ନ ମାଳି, କଣ୍ଠି, ମୁଦ୍ରା, ପିଟା ସୁନା ଓ ବ୍ରୋଞ୍ଜର ଅଳଙ୍କାର କିଭଳି ଭାବେ ସେମାନଙ୍କ ଦେଶ ଓ ସଂସ୍କୃତିର ଅସ୍ମିତା ବହନ କରୁଥିଲା ତାହା ସ୍ଲାଇଡ୍‌ସ ମାଧ୍ୟମରେ ଦେଖେଇଲା ବେଳେ ଚିତ୍ରଗୁଡିକ ପରଦା ଉପରେ ଜୀବନ୍ତ ହେଇ ଉଠୁଥିଲା ।

ତାଙ୍କ ଗସ୍ତର କ୍ରମ ଭଳି ତାଙ୍କ ଭାଷଣ ମଧ୍ୟ ଧୀରେ ଧୀରେ କରାଚି ଓ ଲାହୋରର ବିପଣୀ ଅତିକ୍ରମ କରି ଚାନ୍ଦନୀଚୌକର ଦିଲ୍ଲୀ ଭିଡ଼ ଭିତରେ ଭାରତର ଆତ୍ମାକୁ ଖୋଜିଲା । ଦୋକାନମାନଙ୍କରେ ଝୁଲିଥିବା ମାଳି, ଚେନ୍ ଓ ନାନାଦି ବ୍ୟବହାରିକ ସାମଗ୍ରୀର ମନଲୋଭା ବର୍ଣ୍ଣ ସାଙ୍ଗକୁ ଫଗୁପୂର୍ଣ୍ଣମୀ ଅବ୍ୟବହିତ ପୂର୍ବର ଫଗୁ ପସରାର ଔଜ୍ଜ୍ୱଲ୍ୟ ତାଙ୍କୁ ଭାରତୀୟତାର ଉଷ୍ମ ପରଶରେ ପୁଲକିତ କରିଦେଇଥିଲା । ସେ ଏସବୁ ବିଭବକୁ କଳାର ସାମଗ୍ରୀ ବୋଲି ଯେତେବେଳେ ଅଭିହିତ କଲେ ଆମ ଛାତ୍ରଛାତ୍ରୀ ତଥା ଶିଳ୍ପୀମାନଙ୍କର ମଗଜରେ ବସା ବାନ୍ଧିଥିବା ଭାସ୍କର୍ଯ୍ୟ ସମ୍ପର୍କୀୟ ଭୁଲ ଧାରଣା ଅପସରି ଯାଇଥିଲା । ଆମେ ଗୋଟିଏ ଗଛକୁ କେବେହେଲେ ଭାସ୍କର୍ଯ୍ୟ ଜ୍ଞାନ କରି ତାକୁ କଳାର ମାନ୍ୟତା ଦେବା ଦେଖାଯାଇନି । କିନ୍ତୁ କଳା ଓ ପ୍ରକୃତିର କେବଳ ସମନ୍ୱୟ ନୁହେ ସେମାନଙ୍କ ସମତା ଆମ ମନରେ ଆତ୍ମ ବିଶ୍ୱାସ ଆଣିଦିଏ । ବବିଙ୍କ ଭାଷଣରୁ ଉପଲବ୍ଧ କରିହେଲା କଳାକୁ ନେଇ ଏକ ନୂତନ ଦୃଷ୍ଟିଭଙ୍ଗି । ସିଏ ଯେତେବେଳେ ଆମକୁ ଧାରଣାଦେଲେ ଯେ ଆମ ସହରମାନଙ୍କର ରାସ୍ତାକଡ଼ର ଉଠା ଦୋକାନୀର ବିକ୍ରୟ ସାମଗ୍ରୀର କଳାତ୍ମକତା, ଆମେ ଦୃଷ୍ଟିଭଙ୍ଗୀର ବ୍ୟାପକତାକୁ ଆପଣେଇଲୁ । ସେ ଫଗୁଭର୍ତ୍ତି ଥାଳିରୁ ବିବର୍ତ୍ତନ ମଧ୍ୟ ଦେଇ ପହଞ୍ଚିଲେ ଲଣ୍ଡନରେ ରହୁଥିବା ଭାରତୀୟ ଶିଳ୍ପୀ ଅନୀସ୍ କପୁର୍‌ଙ୍କ ବର୍ଣ୍ଣବିଭୋର ଅର୍ଦ୍ଧ ବର୍ତ୍ତୁଳାକାର ଭାସ୍କର୍ଯ୍ୟ ପାଖକୁ । ଅନୀସ୍ କପୁର୍ ତାଙ୍କର ଭାସ୍କର୍ଯ୍ୟଗୁଡିକୁ ରୂପର ମୌଳିକତାରେ ଓ ବର୍ଣ୍ଣାଳିର ଔଜ୍ଜ୍ୱଲ୍ୟରେ ଖୁବ୍ ରସବନ୍ତ କରିପାରିଛନ୍ତି । ଭୁବନେଶ୍ୱରରେ ରହୁଥିବା ଶିଳ୍ପୀମାନେ ସେଦିନ ପ୍ରଥମ କରି ଅନୀସ୍ କପୁରଙ୍କ ଅଭୂତପୂର୍ବ ଭାସ୍କର୍ଯ୍ୟ ଚାକ୍ଷୁସ କରିଥିଲେ ।

Digitized by srujanika@gmail.com

ତା' ପରଦିନ ବବି ଆମ କଲେଜରେ ଟେପେଷ୍ଟ୍ରି ବୁଣିବାର କୌଶଳ ଶିକ୍ଷା ଦେଲେ । ପଦ୍ଧତିଟି ଅପେକ୍ଷାକୃତ ସରଳ । ଆଗରୁ ଚାଟଶାଳୀମାନଙ୍କରେ ବ୍ୟବହୃତ ସିଲଟ ଭଳି କାଠର ଗୋଟିଏ ଫ୍ରେମ୍ । ଆକାରରେ କିନ୍ତୁ ବଡ଼, ଅଢ଼େଇରେ ଦୁଇ ଫୁଟର । ଫ୍ରେମ୍ ଧାରରେ ସୁତା ଗଳିଲାଭଳି ଧାଡ଼ିଏ କଣା । ସେହି କଣାଗୁଡ଼ିକ ବ୍ୟବହାର କରି ଠିଆ ବାଗରେ ଓ ପଟବାଗରେ ସୁତା ବାନ୍ଧିବାକୁ ହୁଏ । ଡିଜାଇନ୍ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ମତେ ସୁତାର ପରସ୍ତ ସୃଷ୍ଟି କରାଯାଏ । ବେଳେବେଳେ ସୁତାରେ ଗଣ୍ଠି ପକେଇ, ରଙ୍ଗେଇ, ଗଛ, ଲତା, ପଶୁ, ପକ୍ଷୀ, ମଣିଷ ଇତ୍ୟାଦିର ରୂପ ଭିଆଇ ହୁଏ । ଅସଲ କଥା ହେଲା ସୂତାଗୁଡ଼ିକ ମଧ୍ୟରେ ବର୍ଣ୍ଣ ସୌସାଦୃଶ୍ୟ ଆଣିବା ପାଇଁ ରଙ୍ଗ ନିର୍ବାଚନ । ଆମ କଲେଜ ପିଲାଏ ଟେପେଷ୍ଟ୍ରି ବୁଣାରେ ବେଶ୍ ଆଗ୍ରହ ଦେଖାଇଲେ । ନିଜେ ନିଜେ ଫ୍ରେମ୍ ଓ ସୂତା ଯୋଗାଡ଼ କଲେ । ଫ୍ରେମ୍‌ର ଆକାର ପ୍ରକାରରେ ମଧ୍ୟ ପରିବର୍ତ୍ତନ ଦେଖାଦେଲା । ଦୁଇ ଅଢ଼େଇ ସାଇଜ୍ ବଢ଼ି ବଢ଼ି ପାଞ୍ଚ ତିନିଫୁଟରେ ପହଞ୍ଚିଲା । ବବିଙ୍କ ପ୍ରତ୍ୟାବର୍ତ୍ତନ ପରେ ମଧ୍ୟ କଲେଜରେ ଟେପେଷ୍ଟ୍ରି ବୁଣାର ଝୁଙ୍କ କମିଲା ନାହିଁ । ବ୍ୟାବହାରିକ କଳା ବିଭାଗରେ ଯଦିଓ ଏହି ନୂତନ ବୟନ କୌଶଳ ଶିକ୍ଷା ଦିଆଗଲା, ସମଗ୍ର ମହାବିଦ୍ୟାଳୟ ଟେପେଷ୍ଟ୍ରି ପ୍ରେମରେ ମାତି ଉଠିଲା । ବିଦ୍ୟୁତ୍ ଲତା ପାଟଶାଣୀ (ବିନି)ର ଟେପେଷ୍ଟ୍ରି ବୁଣା ମୋର ଏବେ ବି ମନେ ଅଛି । ବବି ମଧ୍ୟ ତାର କାମ ଖୁବ୍ ପସନ୍ଦ କଲେ । ବ୍ରିଟିଶ୍ କାଉନ୍‌ସିଲ୍ ସ୍କଲର୍‌ସିପ୍ ଯୋଗାଇଦେଇ ତାଙ୍କ ଷ୍ଟୁଡ଼ିଓରେ ଆହୁରି ଉନ୍ନତ ଧରଣର ଟେପେଷ୍ଟ୍ରି କଳା ଶିକ୍ଷା ଦେବା ପାଇଁ ବିନିକୁ ସୁଯୋଗ ଦିଆଯାଉ ବୋଲି ମୁଁ ବବିଙ୍କ ପାଖରେ ଯୁକ୍ତି ବାଢ଼ିଥିଲି । ଲଣ୍ଡନ ଫେରିଲା ପରେ ବବି ମଧ୍ୟ ବିନି ପାଇଁ ସ୍କଲର୍‌ସିପ୍ ଯୋଗାଡ଼ କରିଦେଇଥିଲେ । ବିନିର ଗୋଟିଏ ଟେପେଷ୍ଟ୍ରି ଲଣ୍ଡନରେ ପ୍ରଦର୍ଶିତ ହୋଇଥିଲା । ଏସବୁ ସତ୍ତ୍ୱେ କୌଣସି ଗୋଟିଏ ଘରୋଇ କାରଣରୁ ଲଣ୍ଡନରେ ଶିକ୍ଷାନେବା ବିନି ପାଇଁ ସମ୍ଭବ ହେଲାନାହିଁ । ବୟନ କଳାର ଏହି ବିଭବକୁ କଳାଶିକ୍ଷାରେ ସ୍ଥାନିତ କରିବା ନେଇ ମୁଁ ମଧ୍ୟ ଅନେକ ସ୍ୱପ୍ନ ଦେଖିଥିଲି । ପରବର୍ତ୍ତୀ ସମୟରେ ଓଡ଼ିଆ ଶିଳ୍ପୀ ସୁକାନ୍ତି ପଟ୍ଟନାୟକ ଫ୍ରେମରେ ସିଧା ଓ ପଟବୁଣାକୁ ନେଇ ଆମ କଲେଜରେ ଟେପେଷ୍ଟିର କୌଶଳ ପ୍ରଦର୍ଶନ କରିଥିଲେ । ବ୍ୟାବହାରିକ କଳା ବିଭାଗର ସଂଜ୍ଞା ଓ ଭାବମୂର୍ତ୍ତି ବଦଳାଇ ପାଠ୍ୟକ୍ରମ ମଧ୍ୟରେ ଟେକ୍ସଟାଇଲ୍, ବୟନକଳା, ସିରାମିକ୍ ଓ ଗ୍ଲାସ୍ ପଢ଼ାଇବା ବ୍ୟବସ୍ଥା ମୁଁ କରିଥିଲି । କଳା ବିଦ୍ୟାଳୟ ମାନଙ୍କରେ ପାଠ୍ୟକ୍ରମର ବିଭିନ୍ନତାକୁ ନେଇ ବିଭାଜନ ଆଣିବା ସମ୍ଭବ ନୁହେଁ । କେତେଜଣ ଅଧ୍ୟାପକ ମତ ଦେଲେ ଟେକ୍ସଟାଇଲ୍ ଇତ୍ୟାଦି କାରୁକଳା ପର୍ଯ୍ୟାୟଭୁକ୍ତ । ଏଭଳି ରକ୍ଷଣଶୀଳ ଚିନ୍ତା ଉପନିବେଶୀୟ କଳା ଧାରାର ଅଂଶ ବିଶେଷ । ବ୍ୟାବହାରିକ କଳା ବିଭାଗରେ ପ୍ରଚ୍ଛଦ ଚିତ୍ର ଓ ସିନେମା ପୋଷ୍ଟର ଶିକ୍ଷାଦେବାର ସମୟ ଗଡିଯାଇଛି । ଯାହାହେଉ ଅନେକଦିନ ପରେ ଏବେ ମୁଁ ଶୁଣୁଛି ଯେ ବି.କେ. କଳା ମହାବିଦ୍ୟାଳୟରେ ଅଧ୍ୟାପକ ଜୟନ୍ତ ଦାସ

Digitized by srujanika@gmail.com

ପିଲାଙ୍କୁ ସିରାମିକ୍ ପଢ଼ାଉଛନ୍ତି । ଶୋଭନ କୁମାର ଓ ଚୁଗୁଲି କୁମାର ସାହୁ ପ୍ରଭୃତି ଆମ ମହାବିଦ୍ୟାଳୟର ପ୍ରାକ୍ତନ ଛାତ୍ରମାନେ ଚୀନ, ଜାପାନ ଦେଶରୁ ସିରାମିକ କଳାରେ ଉଚ୍ଚତର ଗବେଷଣା କରି ଫେରିଲେଣି । କିନ୍ତୁ ଶିକ୍ଷାରେ ବୟନ କଳାକୁ ନେଇ ଆମେ ଆନୁଷ୍ଠାନିକ ସ୍ତରରେ ପାରିଲୁ ନାହିଁ ।

ବବି କକ୍‌ସଙ୍କ ସୁପାରିଶ କ୍ରମେ ବ୍ରିଟିଶ୍ କାଉନ୍‌ସିଲ୍ ଲଣ୍ଡନରେ କଳା ମହାବିଦ୍ୟାଳମାନଙ୍କରେ କଳାଶିକ୍ଷାର ସ୍ଥିତି ଓ ପ୍ରଗତି ସଂପର୍କରେ ଅନୁଧ୍ୟାନ କରିବା ପାଇଁ ମୋତେ ଫେଲୋସିପ୍ ଦେଲେ, ଯେଉଁଠାରୁ ଆମେ ଆଧୁନିକ କଳାଶିକ୍ଷାର ଧାରା ଗ୍ରହଣ କରିଛୁ ସେଠି ଅଧ୍ୟାପକମାନେ କିଭଳି ଅଧ୍ୟାପନା କରୁଛନ୍ତି ତାର ଗୋଟିଏ ଝଲକ ପାଇ ହେଲା । ଡାରଟିଙ୍ଗ୍‌ଟନ୍ ସମୁଦ୍ରକୂଳିଆ ସହରରେ ବବି କକ୍‌ସଙ୍କ ଆତିଥ୍ୟ ଗ୍ରହଣ କରିବାର ସୁଯୋଗ ମିଳିଥିଲା । ବବି ତାଙ୍କ ନିଜ ରହିବା ଘରକୁ ଲାଗି ଟେପେଷ୍ଟ୍ରି ବୁଣିବା ପାଇଁ ଷ୍ଟୁଡ଼ିଓଟିଏ ଗଢ଼ିଛନ୍ତି । ଷ୍ଟୁଡ଼ିଓର ଛାତ ଦି'ମହଲା କୋଠାଘରର ଉଚ୍ଚାହେବ । ତା ଭିତରେ ଦଶବାର ଫୁଟ ଉଚ୍ଚର ତନ୍ତ । ତଳୁ ବାରଫୁଟ ଉଚ୍ଚାରେ ମେଜ୍‌ନିନ୍ ଫ୍ଲୋର୍ ବ୍ୟବସ୍ଥା । ବହୁତ ବଡ଼ ଟେପେଷ୍ଟ୍ରି ବୁଣିବା ଆବଶ୍ୟକ ହେଲେ ବବି ମେଜନିନ୍ ଫ୍ଲୋର୍ ଉପରୁ ବୁଣା ବୁଣି କାର୍ଯ୍ୟ କରନ୍ତି । ମୋଟାମୋଟି ଭାବେ ଓଡ଼ିଆ ତନ୍ତୀମାନେ ଲୁଗା ବୁଣିବା ବେଳେ ଗୋଡ଼ ରଖିବା ପାଇଁ ଭୂମିକୁ ଯେଭଳି ଖାଲୁଆ କରିଥାନ୍ତି ସେଭଳି ଏହା ଆଉ ଅନ୍ୟପ୍ରକାରର ଏକ ବ୍ୟବସ୍ଥା । ବବି ଆମ ପିଲାଙ୍କୁ ବୁଝେଇ ଥିବା ସିଲଟ ପଟା ତନ୍ତ ଏବଂ ତାଙ୍କ ଷ୍ଟୁଡିଓ ତନ୍ତ ଭିତରେ ଆକାଶ ପାତାଳ ତଫାତ । ବବି ମୋତେ ଧାରଣା ଦେଲେ ହୁଏତ ଆମ ମହାବିଦ୍ୟାଳୟରେ ବୟନକଳା ପାଠ୍ୟକ୍ରମ ପ୍ରବର୍ତ୍ତନ ହେଲେ ଟେପେଷ୍ଟ୍ରି ବୁଣିବା ପାଇଁ ବଡ଼ ତନ୍ତ ସାଙ୍ଗକୁ ଓଡ଼ିଆ ତନ୍ତୀଙ୍କ ଦେଶି ପିଟ୍‌ଲୁମ୍‌ର ବ୍ୟବସ୍ଥା କରିବାକୁ ପଡ଼ିପାରେ ।

Digitized by srujanika@gmail.com

# ୪୦. ଗବେଷଣାର ପାଦଟୀକା : ଓଡ଼ିଶା ରିସର୍ଚ୍ଚ ସୋସାଇଟି

ମୁଁ ସ୍କୁଲରେ ପଢୁଥିବାବେଳେ ମୋ ଭାଇନା ଲୋକନାଥ ପାଠୀଙ୍କ ସାଙ୍ଗରେ ଥିଏଟର୍ ପରଦା ଚିତ୍ର କରିବା ପାଇଁ ଗାଁଗଣ୍ଡାକୁ ଗଲାବେଳେ ବିଭିନ୍ନ ପାରମ୍ପରିକ କଳାକୃତିର ଅବକ୍ଷୟ ଦୃଷ୍ଟିରେ ପଡୁଥିଲା । କେଉଁଠି ମଠ ମନ୍ଦିରର ଭିତ୍ତିଚିତ୍ରରୁ ରଙ୍ଗ ପରସ୍ତ ବାହାରି ପଡୁଛି ତ କେଉଁଠି ମନ୍ଦିରର ପରିଚାଳକମାନେ ଭିତ୍ତିଚିତ୍ରର ଅଧାଅଧି ଚୂନ ଢଳେଇରେ ପୋତି ପକେଇଲେଣି । କେଉଁଠି ଖୋଦେଇକରା ଶେଣି ଓରା ପାଣିଖାଇ କୋତରା ହୋଇଗଲାଣି ତ ଆଉ କେଉଁଠି ତା ଉପରେ କଦର୍ଯ୍ୟ ବାର୍ଣ୍ଣିସ୍ ରଙ୍ଗ ଦେଇ କାରିଗରିର ସୂକ୍ଷ୍ମକାମକୁ ନଷ୍ଟ କରିସାରିଲେଣି । ଏସବୁ ଆଖିରେ ପଡ଼ିଲେ ମନରେ ବିଦ୍ରୋହ ହୁଏ । ସମୟ ସୁଯୋଗ ମିଳିଲେ ଏ ସବୁର ପ୍ରତିକାର କରିବା, ତା' ସଂକ୍ରାନ୍ତରେ ଗବେଷଣା କରିବା ଓ ସେଗୁଡ଼ିକ ପ୍ରକାଶ କରିବା ପାଇଁ ମୁଁ ମନେ ମନେ ପ୍ରତିଜ୍ଞା କରେ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କଳା ବିଭାଗର କ୍ୟୁରେଟର୍ ଭାବେ ଯୋଗଦେଲାପରେ ନିଜର ପ୍ରତିଜ୍ଞା ପୂରଣ କରିବାର ସମୟ ପହଞ୍ଚିଲା । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ କରାଯାଉଥିବା ଐତିହାସିକ ଗବେଷଣାକୁ ସ୍ଥାନଦେବା ପାଇଁ 'ଓଡ଼ିଶା ହିଷ୍ଟୋରିକାଲ୍ ରିସର୍ଚ୍ଚ ଜର୍ଣ୍ଣାଲ୍' ନାମରେ ଗୋଟିଏ ଗବେଷଣା ପତ୍ରିକା ପ୍ରକାଶ କରୁଥିଲେ । ଏହି ପତ୍ରିକାର ଗୋଟିଏ ଉପଦେଷ୍ଟା କମିଟୀ ଥିଲା ଏବଂ ଏଥିରେ ବରିଷ୍ଠ କ୍ୟୁରେଟର୍ ଓ ଐତିହାସିକମାନେ ସଭ୍ୟ ରହୁଥିଲେ । ସେମାନେ ଆମକୁ ଇତର ଓ ଅନଭିଜ୍ଞ ଲୋକ ଭଳି ବ୍ୟବହାର କରୁଥିଲେ । ମୋତେ ସେମାନଙ୍କ ବ୍ୟବହାର ଭଲ ନ ଲାଗିବା ସ୍ୱାଭାବିକ । ଏଣୁ ମୁଁ ସମଭାବାପନ୍ନ ଆଉ ଦୁଇଜଣ ବନ୍ଧୁଙ୍କୁ ସାଥିରେ ନେଇ ଗୋଟିଏ ଗବେଷଣା ଅନୁଷ୍ଠାନ ଗଢ଼ିଲି ଓ ତା'ର ଆନୁକୂଲ୍ୟରେ ଗୋଟିଏ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ପତ୍ରିକାର ନାଁ ରହିଲା 'ଜର୍ଣ୍ଣାଲ୍ ଅଫ୍ ଦ ଓରିଶା ରିସର୍ଚ୍ଚ ସୋସାଇଟି ।' ମୋ ସାଙ୍ଗରେ ମୋର ଦୁଇଜଣ ଘନିଷ୍ଠ ବନ୍ଧୁ ଏହି ଜର୍ଣ୍ଣାଲ୍‌ର ସଂପାଦକ ହେଇ ରହିଲେ । ଜଣେ ହେଲେ ପ୍ରତ୍ନତତ୍ତ୍ୱବିତ୍ ବିଜୟ କୁମାର ରଥ ଓ ଅନ୍ୟଜଣେ ଲିପିତତ୍ତ୍ୱବିତ୍ ସ୍ନିଗ୍ଧା ତ୍ରିପାଠୀ । ଆମ ଟିମ୍‌ଟି ଗବେଷଣା ଦୃଷ୍ଟିରୁ ଖୁବ୍ ପ୍ରଭାବଶାଳୀ ମନେହେଲା । ଗବେଷଣାର

Digitized by srujanika@gmail.com

ସମ୍ମାନ ଦୃଷ୍ଟିରୁ ଆମେ ବିଭିନ୍ନ ସମୟରେ ଐତିହାସିକ ରାଜେନ୍ଦ୍ର ପ୍ରସାଦ ଦାସ ଓ କରୁଣା ସାଗର ବେହେରାଙ୍କୁ ଆମ ଟିମ୍‌ରେ ସାମିଲ କରୁଥିଲୁ । ଏହି ଜର୍ଣ୍ଣାଲ୍‌ର ବିଶ୍ୱସ୍ତରୀୟ ଏକ ଉପଦେଷ୍ଟା କମିଟୀ ମଧ୍ୟ ଥିଲା । ଏଥିରେ ଆନ୍ତର୍ଜାତିକ ସ୍ତରରେ ଜଣାଶୁଣା କିଛି ବିଶିଷ୍ଟ କଳାଐତିହାସିକ ଓ ସଂସ୍କୃତିଐତିହାସିକମାନେ ରହିଥିଲେ । ସେମାନଙ୍କ ସଂଗେ ମୋର ବ୍ୟକ୍ତିଗତ ସଂପର୍କ ଥିଲା । ସେମାନେ ହେଲେ କପିଳା ବାତ୍ସ୍ୟାୟନ, ବ୍ରଜେନ୍ଦ୍ର ନାଥ ଗୋସ୍ୱାମୀ, ଡ଼େବୋରା ସ୍ୱାଲୋ (ଦେବୀ) ଏବର୍‌ହାର୍ଡ୍ ଫିସର୍ ଓ ଜୋଆନା ୱିଲିୟମ୍‌ସ୍ । ଏଭଳି ବ୍ୟକ୍ତିବିଶେଷଙ୍କ ସହିତ ସଂପର୍କ ଓଡ଼ିଶାରେ ହେଉଥିବା ଗବେଷଣାକୁ ବିଶ୍ୱସ୍ତରରେ ପହଞ୍ଚାଇ ଦେଉଥିଲା ଏବଂ ଆମ ନିଜ ଗବେଷଣାର ଅଭିବୃଦ୍ଧିରେ ମଧ୍ୟ ସହାୟକ ହେଉଥିଲା ।

ଏହି ଜର୍ଣ୍ଣାଲ୍‌ର ସଫଳତାକୁ ଆଧାର କରି ମୁଁ ଆମ କଲେଜରେ 'ଚିତ୍ର' ନାମରେ କଳା ଓ ନାନ୍ଦନିକତାର ଗୋଟିଏ ଇଂରାଜୀ ପତ୍ରିକା ପ୍ରକାଶ ଆରମ୍ଭ କରିଥିଲି ।'ଜର୍ଣ୍ଣାଲ୍ ଅଫ୍ ଦ ଓରିଶା ରିସର୍ଚ୍ଚ ସୋସାଇଟି' ଏବଂ 'ଚିତ୍ର' ଓଡ଼ିଶାର କଳାଇତିହାସ ଓ ସାଂସ୍କୃତିକ ଗବେଷଣାକୁ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ପରିଚିତ କରିବାରେ ସଫଳ ହୋଇପାରିଥିଲା । ଆମେ ତିନିଜଣ ସମ୍ପାଦକ ନିଜ ନିଜ ଅର୍ଥ ବ୍ୟୟ କରି ଏହି ରିସର୍ଚ୍ଚ ଜର୍ଣ୍ଣାଲ୍ ପ୍ରକାଶ କରୁଥିଲୁ । ଏଣୁ ଏହା ନିୟମିତ ଭାବେ ପ୍ରକାଶ ପାଇ ପାରୁ ନଥିଲା । ମୁଁ ପ୍ରତିବର୍ଷ ବିଦେଶ ଗସ୍ତରେ ଗଲାବେଳେ ସାଙ୍ଗରେ ଜର୍ଣ୍ଣାଲ୍‌ର କିଛି କପି ନେଇଯାଉଥିଲି । ହାତରୁ ହାତ ହୋଇ ଏହା ବିଶ୍ୱର ବିଭିନ୍ନ ଗବେଷକଙ୍କ ପାଖରେ ପହଞ୍ଚ ଯାଉଥିଲା । ଆମ ଜର୍ଣ୍ଣାଲ୍‌ର ସଫଳତା ଦେଖି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କିଛି ବନ୍ଧୁ ନିଜ ନିଜର ଗବେଷଣା ପ୍ରବନ୍ଧ ଏଥିରେ ପ୍ରକାଶ କରିବା ପାଇଁ ଚାହିଁଲେ । ଆମେ ତିନିହେଁ ନିଷ୍ପତ୍ତି ନେଇଥିଲୁ ଯେ ଯିଏ ଯାହା ଲେଖାଦେବ ତାହା ଜର୍ଣ୍ଣାଲରେ ପ୍ରକାଶିତ ହେବନାହିଁ । ଅପରନ୍ତୁ ଜର୍ଣ୍ଣାଲ ପାଇଁ ଲେଖା ଆମେ ଅନୁରୋଧ କରି ଆଣିବୁ । ଏଭଳି ବ୍ୟବସ୍ଥାରେ ଆମର କିଛି ବନ୍ଧୁ ଆମ ପ୍ରତି ଅସନ୍ତୋଷ ପ୍ରକାଶ କଲେ । କିନ୍ତୁ ଆମେ ଏହି ପତ୍ରିକାକୁ ନିୟମିତ କରିପାରିଲୁ ନାହିଁ । ମୁଁ ଦିଲ୍ଲୀ ଚାଲିଗଲା ପରେ ସମସ୍ତେ ଏକାଠି ହେବା ସମ୍ଭବ ହେଲାନି । ବିଶେଷ କରି ଆମେ ତିନିହେଁ ସରକାରୀ ଚାକିରିରୁ ଅବସର ନେଲା ପରେ ପରେ ଆମ ଭିତରେ ଦେଖାସାକ୍ଷାତର ମାତ୍ରା ମଧ୍ୟ କମି ଆସିଲା ଏବଂ ପତ୍ରିକାଟିକୁ ବଞ୍ଚେଇବା କଷ୍ଟସାଧ୍ୟ ହେଲା ।

ଆମେ ଯଦିଓ ସମୁଦାୟ ପାଞ୍ଚୋଟି ସଂଖ୍ୟା ହିଁ ଏ ଯାଏଁ ପ୍ରକାଶ କରିଛୁ ତଥାପି ଏହା ମୃତ ବୋଲି ଘୋଷଣା କରିବାକୁ ପ୍ରସ୍ତୁତ ନୋହୁଁ । ଏହି ସଂଖ୍ୟାମାନଙ୍କରେ ଧାରାବାହିକ ଭାବେ ଆମେ ଓଡ଼ିଶା ବିବ୍‌ଲିଓଗ୍ରାଫି ପ୍ରସ୍ତୁତ କରିଛୁ । ଜର୍ମାନ୍ ଐତିହାସିକ ହରମାନ୍ କୁଲ୍‌କେଙ୍କ 'ଓରିଶା ବିବ୍‌ଲିଓଗ୍ରାଫି'ର ଏହା ପରିପୂରକ ଥିଲା । ଆମେ ଏଥିରେ ଗୋଟିଏ ନୂଆ ଫିଚର୍ ମଧ୍ୟ ଅନ୍ତର୍ଭୁକ୍ତ କରିଥିଲୁ । ତାହା ହେଲା ଜଣେ ଐତିହାସିକଙ୍କ ସହିତ

Digitized by srujanika@gmail.com

ସାକ୍ଷାତକାର । ଏହି କ୍ରମରେ ଆମେ ବିଶିଷ୍ଟ ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସତ୍ୟନାରାୟଣ ରାଜଗୁରୁ, ସୁଶୀଲ ଚନ୍ଦ୍ର ଦେଙ୍କ କୃତି ଓ ବ୍ୟକ୍ତିତ୍ୱ ସଂପର୍କରେ ଆଲୋକପାତ କରିଛୁ । ତା' ସହିତ ନୋଟ୍‌ସ୍ ଆଣ୍ଡ୍ କମେଣ୍ଟ୍‌ସ୍ ଓ ଗ୍ରନ୍ଥ ସମୀକ୍ଷା ମଧ ଧାରାବାହିକ ଭାବେ ପ୍ରକାଶ କରିବା ପାଇଁ ଚେଷ୍ଟା କରିଛୁ । ନୋଟ୍‌ସ୍ ଆଣ୍ଡ୍ କମେଣ୍ଟ୍‌ସ୍ ସ୍ତମ୍ଭରେ ସବୁବେଳେ ନୂଆ ନୂଆ ପ୍ରତ୍ନତାତ୍ତ୍ୱିକ ଆବିଷ୍କାରକୁ ନେଇ ଆଲୋଚନା କରାଯାଇଥାଏ । ପଞ୍ଚମ ସଂଖ୍ୟାରେ ବିଜୟ ରଥଙ୍କ ଦ୍ୱାରା ପ୍ରଥମ କରି ଆଲୋଚିତ ହୋଇଥିଲା ଭୁବନେଶ୍ୱର ବଡ଼ଗଡ଼ର ପତିତପାବନ ମନ୍ଦିର, କଟକ ଜିଲ୍ଲାର ଅମନକୁଦ ଠାରେ ଥିବା କୁଣ୍ଡଳେଶ୍ୱର ମନ୍ଦିର, ଖୋର୍ଦ୍ଧା ଜିଲ୍ଲା ପଞ୍ଚଗାଁରେ ଥିବା ଦଧିବାମନ ମନ୍ଦିର ଏବଂ କଟକ ଜିଲ୍ଲାର ବାଙ୍କିହାଟି ଠାରେ ରହିଥିବା କ୍ଷମେଶ୍ୱର ମନ୍ଦିର । ସେଭଳି ଚତୁର୍ଥ ସଂଖ୍ୟାରେ ଖେମୁଣ୍ଡି ରାଜ୍ୟରୁ ପ୍ରାପ୍ତ ଶ୍ରୀଚୈତନ୍ୟ ଦେବଙ୍କ ତାମ୍ରପତ୍ର ପ୍ରଶସ୍ତି ଉପରେ ଆଲୋଚନା । ଏହା ଥିଲା ଶଶାଙ୍କ ଶେଖର ପଣ୍ଡାଙ୍କ ଗବେଷଣାର ନିର୍ଯ୍ୟାସ । ତୃତୀୟ ସଂଖ୍ୟାରେ ଟିପ୍‌ପଣୀରେ ଅନ୍ତର୍ଭୁକ୍ତ ହୋଇଛି କରୁଣା ସାଗର ବେହେରାଙ୍କ କୋଣାର୍କ ନିକଟବର୍ତ୍ତୀ ତ୍ରିବେଣୀଶ୍ୱର ମନ୍ଦିର ସଂପର୍କରେ ସୂଚନା । ତା' ସାଙ୍ଗକୁ ପ୍ରଫେସର୍ ବେହେରା ରାଣୀପୁର-ଝରିଆଲ୍‌ର ଚଉଷଠି ଯୋଗିନୀ ମନ୍ଦିର ଉପରେ ମଧ୍ୟ ଆଲୋକପାତ କରିଛନ୍ତି । ଏହି କ୍ରମରେ ଅଠେଇଶି ଗୋଟି ରାଗମାଳା ଚିତ୍ରକୁ ନେଇ ମୋର ଗୋଟିଏ ଛୋଟ ପ୍ରବନ୍ଧ ସ୍ଥାନ ପାଇଛି । ଏହି ସଂଖ୍ୟାର ନୋଟ୍‌ସ୍ ଆଣ୍ଡ୍ କମେଣ୍ଟ୍‌ସ୍ ପରିଚ୍ଛେଦଟି ଅପେକ୍ଷାକୃତ ଦୀର୍ଘ । ପୁଣି ଏଥିରେ ପିପିଲି ପାଖ ଅରାଗଡ଼, ଜଙ୍କିଆ ନିକଟରେ ଥିବା ଗଙ୍ଗପାହାଡ଼ର ପଥର ଗୁମ୍ଫା, ଖୋର୍ଦ୍ଧା ପାଖ ମଲାଗୁଣି ନଦୀପାଖର ଗୋଳବାଇର ପ୍ରତ୍ନତାତ୍ତ୍ୱିକ ସଂପଦ, ଦୟାନଦୀ ତଟର କୁରକୀ ମୁଣ୍ଡିଆ ଏବଂ ବୁଢ଼ାନଦୀ କୂଳର ନମିତିଗିରିର ପ୍ରତ୍ନତାତ୍ତ୍ୱିକ ଅବଶେଷର ସୁବିସ୍ତୃତ ଆଲୋଚନା ସ୍ଥାନ ପାଇଛି । ଦ୍ୱିତୀୟ ସଂଖ୍ୟାରେ ଟିପ୍‌ପଣୀ ପୃଷ୍ଠାରେ ପୁରୀ ଜଗନ୍ନାଥ ମନ୍ଦିରର ବାଡ଼ରୁ ଚୂନ ପଲସ୍ତରା ଛଡ଼େଇ ଦେଲା ପରେ ଭାସ୍କର୍ଯ୍ୟର ଯେଉଁ ସଂପଦ ଦୃଷ୍ଟିଗୋଚର ହେଇଛି ତାରି ଉପରେ ଏକ ଅନୁଶୀଳନ ଦେଇଛନ୍ତି କରୁଣା ସାଗର ବେହେରା । ସେ ସେଥିରେ ଉଲ୍ଲେଖ କରିଛନ୍ତି ମନ୍ଦିର ସ୍ଥାପତ୍ୟର ପଞ୍ଚକର୍ମ ଯଥା- ଖୁରା, କୁମ୍ଭ, ପଟା, କଣି ଓ ବସନ୍ତର ଏବଂ ତାହାର କାରିଗରୀ କୌଶଳ । ତା' ସହିତ ସେ ମେକେଞ୍ଜି ସଂଗ୍ରହରେ ଥିବା କୋଣାର୍କର ଏକ ବିବାଦୀୟ ରେଖାଚିତ୍ର ସଂପର୍କରେ ନିଜର ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଛନ୍ତି ।

ଜର୍ଣ୍ଣାଲ୍‌ର ଏହି ସଂଖ୍ୟାଗୁଡ଼ିକରେ ଆନ୍ତର୍ଜାତିକ ଖ୍ୟାତିର ଯେଉଁ ଲେଖକ ଓ ଲେଖିକା ଭାରତୀୟ ତଥା ଓଡ଼ିଶାର ସଂସ୍କୃତିର ବିଭିନ୍ନ ବିଭବ ଉପରେ ଗବେଷଣାତ୍ମକ ପ୍ରବନ୍ଧମାନ ପ୍ରକାଶ କରିଛନ୍ତି ତାହା ଏବେ ଆଉ ଥରେ ପୃଷ୍ଠା ଓଲଟାଇ ପଢ଼ିଲେ ମନରେ ଗର୍ବବୋଧ

Digitized by srujanika@gmail.com

ହୁଏ । ସେମାନଙ୍କ ମଧ୍ୟରେ ଅଛନ୍ତି ଷ୍ଟିଟେନ୍‌କ୍ରୋନ୍, ବି.ଏନ୍.ମୁଖାର୍ଜୀ, ଅଜୟ ମିତ୍ର ଶାସ୍ତ୍ରୀ, ଡି.ସି. ସରକାର, ମେରିଆ ଲୁଇ ନାବ୍‌ହୋଲଜ୍, ଏବରହାର୍ଡ୍ ଫିସର୍, କେ.ଭି. ସୌନ୍ଦରରାଜନ୍, ପ୍ରଭାତ ମୁଖାର୍ଜୀ, ଏମ୍.ଏନ୍.ଦେଶପାଣ୍ଡେ, ଜୋଆନା ୱିଲିଅମ୍‌ସ, ସି.ଭି. ରାମଚନ୍ଦ୍ର ରାଓ, ସି. ସୋମସୁନ୍ଦର ରାଓ, ବି.ବନ୍ଦୋପାଧ୍ୟାୟ, ଅମରେନ୍ଦ୍ର ନାଥ, ପଲ୍ ୟୁଲ୍, ରୁଥ ମିଶେଲ୍ ଗେବ୍‌ଲେର୍, ଇଦା ବାଗୁସ୍ ରତା, ହର୍‌ୟାତି ସୋବାଡ଼ିଓ, ହାରିଆତି ଶାନ୍ତିକୋ, ସେଦ୍ୟାବତୀ, ଆଡ୍ରିଆନ୍ ବି.ଲାପିଏନ୍, କେ.କେ.ବାସା, ଇନ୍ ଗାଇ, ଆର. ବାଳକୃଷ୍ଣନ୍, ଅଞ୍ଜନ ଚକ୍ରବର୍ତ୍ତୀ, ତାଜୋକ୍ ରାଇ ସୁଧାର୍ଜେ, ୱାୟାନ୍ ଅର୍ଡ଼ିକା ପ୍ରଭୃତି । ଏମାନଙ୍କ ସହିତ ଆମେ ତିନିଜଣ ମଧ୍ୟ ଆମ ଗବେଷଣାର କାର୍ଯ୍ୟସବୁ ଏଥିରେ ପ୍ରକାଶ କରିଥିଲୁ । ମୋର ଚାରୋଟି ପ୍ରବନ୍ଧ ଓଡ଼ିଶାର କଳା ଐତିହାସିକ ଗବେଷଣା ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଗୁଡ଼ିକ ହେଲା, 'ଓଡ଼ିଶାର ପାରମ୍ପରିକ ଚିତ୍ରକର', 'ଗୀତ ଗୋବିନ୍ଦ ବାନ୍ଧ ଖଣ୍ଡୁଆ', 'ଶିଳ୍ପ ଶାସ୍ତ୍ର ଗବେଷଣାର ଏକ ନୂଆ ଦିଗ' ଏବଂ 'ଆନ୍ଧ୍ରପ୍ରଦେଶର କାଞ୍ଚେଲି ମଠରେ ଥିବା ଓଡ଼ିଆ ଭିତ୍ତିଚିତ୍ର' । ଗୀତଗୋବିନ୍ଦ ବାନ୍ଧକଳା ସଂକ୍ରାନ୍ତୀୟ ଲେଖାଟି ମୁଁ ଏବର୍‌ହାର୍ଡ୍‌ଙ୍କ ସହଯୋଗରେ ପ୍ରସ୍ତୁତ କରିଥିଲି । ଆନ୍ଧ୍ର ପ୍ରଦେଶରେ ଥିବା କାଞ୍ଚେଲି ମଠର ଭିତ୍ତିଚିତ୍ର ଆମ ଓଡ଼ିଆ ଭିତ୍ତିଚିତ୍ରର ଅଭ୍ୟୁଥାନରେ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ପ୍ରସଙ୍ଗ । ଏହି ଲେଖାରେ ଚିତ୍ରଶୈଳୀକୁ ଆଧାର କରି କରାଯାଇଥିବା ବିଭିନ୍ନ ଶାଳ (ୱାର୍କସପ୍)ର ଚିହ୍ନଟ ଖୁବ୍ ଉପାଦେୟ । ଦକ୍ଷିଣ ଓଡ଼ିଶାର ବାହାଘର ଭିତ୍ତିଚିତ୍ର ପ୍ରବନ୍ଧ କଳାଶୈଳୀର ପର୍ଯ୍ୟାଲୋଚନା ଦୃଷ୍ଟିରୁ କଳାଛାତ୍ରଙ୍କ ଅଧ୍ୟୟନ ପାଇଁ ମୂଲ୍ୟବାନ । କାଞ୍ଚେଲି ମଠ କାନ୍ଥରେ ମୁଁ ଲଙ୍କାଗଡ଼ର ଗୋଟିଏ ଅଦ୍ଭୁତଚିତ୍ର ଦେଖିବାକୁ ପାଇଥିଲି । ଏଭଳି ଚିତ୍ର ମୁଁ ସମଗ୍ର ଓଡ଼ିଶୀକଳାରେ ଦେଖିନାହିଁ । ଗୋଟିଏ ଦୃଷ୍ଟିରୁ ଏହାକୁ ଠିଆବଡ଼ିଆ ପଟଚିତ୍ର ସହିତ ତୁଳନା କରାଯାଇପାରେ । କିନ୍ତୁ ଲଙ୍କାଗଡ଼ର ସଂକ୍ଷିପ୍ତତା ଅଥଚ ରୂପପ୍ରବଣତା ଦର୍ଶକର ସହସା ଦୃଷ୍ଟି ଆକର୍ଷଣ କରେ । ଲଙ୍କାଗଡ଼ଟି ଗୋଟିଏ ଚଉଖୁଣ୍ଟିଆ ନଅର ଭଳି । ତା' ଭିତରେ ନଅଗୋଟି ସମାନ ସମାନ ବଖରା ଓ ମଝି ବଖରାରେ ଦଶାନନ ରାବଣ ଯୁଦ୍ଧକୁ ବିଜେ କରିବା ଭଙ୍ଗିରେ ଦଣ୍ଡାୟମାନ । ଉପରମୁଣ୍ଡର ଆଉ ଗୋଟିଏ କୋଠରୀରେ ସଭାସଦମାନଙ୍କ ଗହଣରେ ସେ ଆସୀନ । ନଅଟିରୁ ବାଁପଟର ଦୁଇଟି କୋଠରୀ ଜନଶୂନ୍ୟ ଏବଂ ଅନ୍ୟ କୋଠରୀମାନଙ୍କରେ ଅସୁର ସୈନ୍ୟଙ୍କ ଗହଳ । କପିଶ୍ରେଣୀ ଲଙ୍କାଗଡ଼କୁ ଚତୁର୍ଦ୍ଦିଗୁଁ ବେଢ଼ି ଗଲେଣି । ସେମାନେ ସ୍ୱର୍ଣ୍ଣଲଙ୍କାର ପାଚେରି ଅତିକ୍ରମ କରିବାର ଉପକ୍ରମ କରୁଛନ୍ତି । ଏହି ଚିତ୍ରର ପୂର୍ବ ସମୟର ଦୃଶ୍ୟ-ରାବଣର ଛତ୍ରଛେଦର କିଛି ଅଂଶ ମଧ୍ୟ ଦେଖାଯାଉଛି । ଜର୍ଣ୍ଣାଲ୍ ଅଫ୍ ଦ ଓରିଶା ରିସର୍ଚ୍ଚ ସୋସାଇଟିର ସ୍ୱଳ୍ପ ପ୍ରକାଶନ ପ୍ରତି ଲକ୍ଷ୍ୟ କଲେ ଜର୍ଣ୍ଣାଲ୍ ଅଫ କଳିଙ୍ଗ ହିଷ୍ଟୋରିକଲ୍ ରିସର୍ଚ୍ଚର ପାଞ୍ଚୋଟି ସଂଖ୍ୟାକଥା ମୋର ମନେ ପଡ଼ିଯାଏ । ପ୍ରାକ୍ ସ୍ୱାଧୀନତା କାଳରେ

Digitized by srujanika@gmail.com

କଳାହାଣ୍ଡି ମହାରାଜାଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ କଳିଙ୍ଗ ରିସର୍ଚ୍ଚ ସୋସାଇଟି ଆନୁକୂଲ୍ୟରେ ଏହି ଜର୍ଣ୍ଣାଲଟି ପ୍ରକାଶ ପାଉଥିଲା । କେଦାରନାଥ ମହାପାତ୍ର ସେଠାରେ ପ୍ରତ୍ନତତ୍ତ୍ୱବିତ୍ ଭାବରେ କାର୍ଯ୍ୟ କରୁଥିଲେ ଏବଂ ତାଙ୍କ ସଂପାଦନାରେ ହିଁ ଏହି ପତ୍ରିକା ପ୍ରକାଶ ପାଉଥିଲା । ଯିଏ ଓଡ଼ିଶା ଇତିହାସ ସଂପର୍କରେ ଗବେଷଣା କରିବ ସେ ଏହି ପତ୍ରିକାଗୁଡ଼ିକୁ ଅନୁଧ୍ୟାନ କରିବାକୁ ଏକ ରକମ ବାଧ୍ୟ । ମୁଁ ନିଶ୍ଚିତ ଭାବେ କହିବି ଯେ ଆମ ଜର୍ଣ୍ଣାଲ୍‌ରେ ଏଭଳି କିଛି ଲେଖା ପ୍ରକାଶ ପାଇଛି ଯାହାକୁ ଗବେଷଣା କାର୍ଯ୍ୟରେ ଅଣଦେଖା କରିବା କଷ୍ଟକର ।

ଓଡ଼ିଶାରେ ଏ ଅବଧି କଳା ଇତିହାସ ସଂପର୍କରେ ଗବେଷଣାକୁ ପ୍ରାଧାନ୍ୟ ଦିଆଯାଇନାହିଁ । ଆଜିକାଲି ବିଶ୍ୱବିଦ୍ୟାଳୟମାନଙ୍କରେ ଚାକିରି ଖଣ୍ଡେ ପାଇବା ଉଦ୍ଦେଶ୍ୟରେ ବା ପଦୋନ୍ନତି ପାଇବା ଆଶାରେ ନାମକୁ ମାତ୍ର ଗବେଷଣା ହେଉଛି । ଗବେଷଣାରେ ତଲ୍ଲୀନତାର ଅଭାବ । ଚିତ୍ରଶିଳ୍ପୀମାନେ ଛବି ଆଙ୍କି ବଜାରରେ ବିକିଲେ ପ୍ରଚୁର ଅର୍ଥ ପାଇବେ, ସେମାନେ ଗବେଷଣାରେ ଅବା କାହିଁକି ମୁଣ୍ଡ ପୂରେଇବେ । କିନ୍ତୁ କିଛି ବିଶିଷ୍ଟ ଚିତ୍ରକର ଯଥା ରତନ ପାରିମୁ, ଗୁଲାମ ମହମ୍ମଦ ଶେଖ, ଭିଭାନ୍ ସୁନ୍ଦରମ୍ ଓ ବାଲାନ୍ ନାମ୍ବିଆର ପ୍ରଭୃତି ଗବେଷଣା ଲବ୍ଧ ଜ୍ଞାନକୁ ନିଜ ଶିଳ୍ପ ରଚନାରେ ବ୍ୟବହାର କରନ୍ତି । ଏମାନେ ସମସ୍ତେ ଅଣଓଡ଼ିଆ ହେଇଥିଲେ ମଧ୍ୟ ଭାରତୀୟ ଶିଳ୍ପ ଗବେଷଣା ପରମ୍ପରାକୁ ଆଗେଇ ନେଉଥିବାରୁ ପ୍ରଶଂସନୀୟ । ଆମର କେତେକ ନିଜକୁ ବଡ଼ ବୋଲାଉଥିବା ବାହାଦୁରିଆ ତଥାକଥିତ ଓଡ଼ିଆ ଶିଳ୍ପୀ ମଝିମଝିରେ ଖବର କାଗଜକୁ ବିବୃତି ଦେଇ କହନ୍ତି ଯେ ସେମାନେ ଓଡ଼ିଆ ପଟଚିତ୍ର ଦ୍ୱାରା ପ୍ରଭାବିତ । ଏହା କେବଳ ଧୂଆଁବାଣ । ଅଧିକାଂଶ ଉପଲବ୍ଧି କରିସାରିଲେଣି ଯେ ଶିଳ୍ପ ଗବେଷଣା ଏତେ ସହଜ ବ୍ୟାପାର ନୁହେଁ । ମୁଁ ଆଜିଯାଏଁ ଶିଳ୍ପଗବେଷଣାରେ ତଲ୍ଲୀନ ରହିଥିବାରୁ ବିଶ୍ୱସ୍ତରୀୟ କିଛି ମୂର୍ଦ୍ଧନ୍ୟ ପଣ୍ଡିତଙ୍କ ସହିତ ସଂପର୍କରେ ଅଛି । ସେମାନଙ୍କ ନାମ ଏଠାରେ ସ୍ମରଣ କରିବା ଯଥାର୍ଥ ହେବ । ସେମାନେ ହେଲେ ଏବର୍‌ହାର୍ଡ୍ ଫିସର୍, ଥୋମାସ୍ ଇ ଡୋନାଲ୍‌ଡ୍‌ସନ୍, ଯୋଆନା ୱିଲିୟମ୍‌ସ, ବ୍ରଜେନ୍ଦ୍ରନାଥ ଗୋସ୍ୱାମୀ, ମାଇଲୋ ବିଚ୍, ସୀତାକାନ୍ତ ମହାପାତ୍ର, ଜଗନ୍ନାଥ ପ୍ରସାଦ ଦାସ, କପିଳା ବାତ୍ସ୍ୟାୟନ ଓ ହରମାନ୍ କୁଲ୍‌କେ ପ୍ରଭୃତି ।

Digitized by srujanika@gmail.com

# ୪୧. ଗୀତଗୋବିନ୍ଦ ଉତ୍ସବ

ଗୀତଗୋବିନ୍ଦର ରଚୟିତା ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲିକୁ କେନ୍ଦ୍ର କରି ପଶ୍ଚିମବଙ୍ଗ ଓ ଓଡ଼ିଶା ମଧ୍ୟରେ ଅନେକ ଦିନ ଧରି ବିବାଦ ଲାଗି ରହିଛି । ଏହି ବିବାଦର ଆଧାର କାବ୍ୟ ପରମ୍ପରାର ଉତ୍କର୍ଷ ନୁହେଁ । ନାନ୍ଦନିକତା ମଧ୍ୟ ଏହି ବିବାଦର ମଞ୍ଜି ନୁହେଁ । ଏହି ବିବାଦ ସଂପୂର୍ଣ୍ଣ ରାଜନୈତିକ । ଜୟଦେବ ଜଣେ ସଂସ୍କୃତ କବି ଏବଂ ସେ ଯେଉଁ ସମୟରେ ଗୀତଗୋବିନ୍ଦ ରଚନା କରିଥିଲେ ସେତେବେଳେ ନା ଥିଲା ବଙ୍ଗଳା ନା ଓଡ଼ିଶା । ଏଭଳି କଥାଟିଏ ଯେତିକି ସହଜରେ କହିହେଉଛି ବିବାଦଟି ସେତିକି ସହଜରେ ତୁଟିବାର ନୁହେଁ । ଏଣୁ ଉଭୟ ରାଜ୍ୟର ଐତିହାସିକ ଓ ଗବେଷକମାନେ ନିଜ ନିଜ ପାଣ୍ଡିତ୍ୟର ପରାକାଷ୍ଠା ପ୍ରଦର୍ଶନ କରି ପ୍ରମାଣ କରିଦେବା ପାଇଁ ଚାହାନ୍ତି ଯେ ଜୟଦେବ ଗୋଟାପଣ ତାଙ୍କର ।

କିନ୍ତୁ ସମୟ ଯେତିକି ଆଗଉଛି ସେତିକି ମିଥ୍ୟା ଉପରେ ପଡ଼ୋଶୀ ରାଜ୍ୟ ଗଢ଼ିଥିବା ସୌଧ ଉଜୁଡ଼ି ପଡୁଛି । ମନେ ହେଉଛି ଆଗରୁ ପଶ୍ଚିମବଙ୍ଗରେ ଜୟଦେବଙ୍କ ଜନ୍ମସ୍ଥାନକୁ କେନ୍ଦ୍ରକରି ଯେତେ ସବୁ ପ୍ରଚେଷ୍ଟା କରାଯାଉଥିଲା, ଏବେ ସେସବୁରେ ଆଉ ନୂଆ କିଛି ସଂଯୋଗ ହେଉନି । ଏ ବିବାଦରେ ମୁଁ ଆମ ଓଡ଼ିଆ ଗବେଷକଙ୍କ ଦଳରେ ସାମିଲ ହେଇଛି ମୂଳତଃ ଓଡ଼ିଶାର ସଂସ୍କୃତିରେ ଗୀତଗୋବିନ୍ଦର ପ୍ରଭାବକୁ ଆକଳନ କରିବା ପାଇଁ, ଗୀତଗୋବିନ୍ଦ କାବ୍ୟର କଳାତ୍ମକ ମୂଲ୍ୟର ବିଶ୍ଳେଷଣ କରିବା ପାଇଁ; ଜୟଦେବଙ୍କ ଜନ୍ମସ୍ଥାନ ଓଡ଼ିଶାରେ ଖୋଜିବାହାର କରିବା ପାଇଁ ନୁହେଁ । ଏହି ଦଳରେ କେବଳ ଗବେଷକ ବା ଐତିହାସିକ ମାନେ ସାମିଲ ହୋଇଛନ୍ତି ତା ନୁହେଁ ବରିଷ୍ଠ ପ୍ରଶାସକମାନେ ମଧ୍ୟ ଅଣ୍ଟାଭିଡ଼ି ବାହାରିଛନ୍ତି ।

ସୁବାସ ପାଣି ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥିବାବେଳେ ପ୍ରଥମ କରି ଗୋଟିଏ ଗୀତଗୋବିନ୍ଦ ଉତ୍ସବର ପରିକଳ୍ପନା କରିଥିଲେ ଏବଂ ଏହି ଉତ୍ସବର ଭିଜୁଏଲାଇଜର୍ ଭାବେ ଦାୟିତ୍ୱ ନେବା ପାଇଁ ମୋତେ ଅନୁରୋଧ କରିଥିଲେ । ଏହି ଉତ୍ସବ ସଂପର୍କରେ ଏକ ଅନୁଶୀଳନାତ୍ମକ ପ୍ରବନ୍ଧଟିଏ କିଏ ଯଦି କେବେ ଲେଖେ ସେ ହୁଏତ କହିବାକୁ କୁଣ୍ଠା କରିବନି ଯେ ସୁବାସ ପାଣି ଗୀତଗୋବିନ୍ଦ ଗବେଷଣାରେ ନିଜର ସଂପୃକ୍ତିକୁ ଘୋଷଣା କରିବା

Digitized by srujanika@gmail.com

ପାଇଁ ଏବଂ ଗୀତଗୋବିନ୍ଦ ସଂପର୍କରେ ନିଜର ସୁଚିନ୍ତିତ ଭାଷଣଟିଏ ଓଡ଼ିଶାର ବୁଦ୍ଧିଜୀବୀଙ୍କୁ ଶୁଣେଇବା ପାଇଁ ଏହି ଉତ୍ସବଟିର ପରିକଳ୍ପନା କରିଥିଲେ । ସିଏ ଯାହା ହେଉନା କାହିଁକି ଏହା ହିଁ ଥିଲା ଓଡ଼ିଶାର ଏକ ସୁପରିକଳ୍ପିତ ରୁଚିପୂର୍ଣ୍ଣ ଉତ୍ସବ । ଉତ୍ସବଟି ରାଜ୍ୟ ସୂଚନା ଭବନରେ ଆୟୋଜିତ ହୋଇଥିଲା । ସେତେବେଳକୁ ସୂଚନା ଭବନକୁ ଜୟଦେବଙ୍କ ନାଁରେ ନାମିତ କରାଯାଇ ନଥାଏ । ଉତ୍ସବଟିକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟ ନେଇ ତାକୁ ସୂଚନା ଭବନରେ ଅନୁଷ୍ଠିତ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ନତୁବା ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ହିଁ ଏଭଳି ଉତ୍ସବ ପାଇଁ ପ୍ରକୃଷ୍ଟ ଜାଗା । କାରଣ ସଂଗ୍ରହାଳୟରେ ହିଁ ଦୁଇ ଚାରୋଟି ଚିତ୍ରିତ ଗୀତଗୋବିନ୍ଦ ତାଳପତ୍ର ପୋଥି ଅଛି । ସେଥିରୁ କାଳୀଚରଣ ପଟ୍ଟନାୟକ ଦାନସୂତ୍ରରେ ମ୍ୟୁଜିୟମ୍‌କୁ ଦେଇଥିବା ତାଳପତ୍ର ପୋଥିଟି ହିଁ ସବୁ ଦୃଷ୍ଟିରୁ ଉତ୍କୃଷ୍ଟ ପୋଥି । ଏଥିରେ ଥିବା ପୁଷ୍ପିକାକୁ ଅବଲମ୍ବନ କରି ପୋଥିଟିର ଯଦିଓ ସଠିକ ସମୟ ନିରୂପଣ କରିବା କଷ୍ଟସାଧ୍ୟ ତଥାପି 'ଧନଞ୍ଜୟାକ୍ଷ ଧରଣୀ ଦେବଙ୍କ ନାଁ ଏହି ବହିର ଲେଖନକାର ଓ ଚିତ୍ରକାର ଭାବରେ ଉତ୍‌କୀର୍ଣ୍ଣ । ପୁଷ୍ପିକାର ଶବ୍ଦ ସଂଯୋଜନା ଧ୍ୱନିମୟ । ଏହି ଯେଭଳି 'ଟୀକାପୁତ୍ତଳିକାନ୍ୱିତମ୍ ବିଲିଖିତମ୍' । ଏହି ପୋଥିଟି ମୁକୁନ୍ଦଦେବଙ୍କ ସମୟରେ ଲେଖା ଯାଇଥିବାରୁ ଏବଂ ଓଡ଼ିଶା ଇତିହାସରେ ଅନ୍ତତଃ ପକ୍ଷରେ ଚାରୋଟି ମୁକୁନ୍ଦଦେବ ରାଜତ୍ୱ କରିଥିବାରୁ କାଳ ନିର୍ଦ୍ଧାରଣ କରିବା କଷ୍ଟକର ବ୍ୟାପାର । ଆମର ଓଡ଼ିଆ ଗବେଷକମାନେ ଏହାକୁ ସପ୍ତଦଶ ଶତାବ୍ଦୀର ସବୁଠାରୁ ପ୍ରାଚୀନ ଗୀତଗୋବିନ୍ଦ ପୋଥି ବୋଲି ଘୋଷଣା କରୁଥିବାବେଳେ, ବିଦେଶୀ ଗବେଷକମାନେ ଏହାକୁ ବିଂଶ ଶତାବ୍ଦୀର ବୋଲି କହିବାକୁ ପଛାଉ ନାହାନ୍ତି । କାଳ ନିର୍ଣ୍ଣୟରେ ଏଭଳି ବିସଙ୍ଗତ ଘଟୁଥିବା ବେଳେ ମୁଁ ଚିତ୍ରଶୈଳୀର ବିଶ୍ଳେଷଣ ଉପରେ ନିର୍ଭର କରି ଏହାକୁ ଊନବିଂଶ ଶତାବ୍ଦୀର ପୋଥି ବୋଲି ଚିହ୍ନଟ କରିଛି ।

ଏବେ ପୁଣି ଆମେ ଗୀତଗୋବିନ୍ଦ ଉତ୍ସବ ପାଖକୁ ଫେରିବା ଉଚିତ ହେବ । ଧରଣୀଧରଙ୍କ ଏହି ଗୀତଗୋବିନ୍ଦ ପୋଥିରୁ ଫଟୋ ଉତ୍ତୋଳନ କରାଯାଇ ତାକୁ ଏନ୍‌ଲାରଜ୍ କରି ପ୍ରିଣ୍ଟ କରି ଅଣାଗଲା । ଏବଂ ଏଗୁଡିକ ହିଁ ମୂଳତଃ ପ୍ରଦର୍ଶନୀର ଚିତ୍ର ସଂପଦ ଭାବେ ଦର୍ଶକଙ୍କ ମନ ମୋହିବାରେ ସକ୍ଷମ ହେଲା । କହିବା ବାହୁଲ୍ୟ ଯେ ସୁବାସ ପାଣି ଓ ମୁଁ ବସି ଏହି ଚିତ୍ରଗୁଡିକର ନିର୍ବାଚନ କରିଥିଲୁ । ଏହି ଚିତ୍ରଗୁଡିକୁ ଆଧାର କରି ବର୍ତ୍ତମାନ ତିନିଖଣ୍ଡି ବହି ପ୍ରକାଶ ପାଇଲାଣି । ଗୋଟିଏ ବହି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପ୍ଲାଟିନମ୍ ଜୁବିଲି ଉପଲକ୍ଷେ ପ୍ରକାଶ କରିଛି ଏବଂ ଏହା ସଂକଳିତ ଓ ସଂପାଦିତ ହୋଇଛି ପୋଥି ବିଭାଗର କ୍ୟୁରେଟର୍ ଭାଗ୍ୟଲିପି ମଲ୍ଲଙ୍କ ଦ୍ୱାରା । ଅନ୍ୟ ବହିଟି ଅଜିତ କୁମାର ତ୍ରିପାଠୀ ଓ ପ୍ରଫୁଲ୍ଲ ତ୍ରିପାଠୀଙ୍କ ଦ୍ୱାରା ସଂପାଦିତ ହୋଇ ଭାରତ ସରକାରଙ୍କ ପ୍ରକାଶନ ବିଭାଗ ଦ୍ୱାରା ପ୍ରକାଶିତ ହୋଇଛି । ତୃତୀୟ ବହିଟି ବିଜୟ କୁମାର ରଥ ଓ ମୋ ଦ୍ୱାରା ସଂପାଦିତ ହୋଇ

Digitized by srujanika@gmail.com

ନିୟୋଗି ବୁକ୍‌ସ୍ ଦ୍ୱାରା ପ୍ରକାଶିତ ହୋଇଛି । ମୋର କହିବା କଥା ଏସବୁ ପ୍ରକାଶନ ପରେ ଧରଣୀଧରଙ୍କ ପୋଥିର ଯେଉଁ କେତୋଟି ଚିତ୍ର ମାତ୍ର ଆମ ପ୍ରଦର୍ଶନୀରେ ସ୍ଥାନ ପାଇଥିଲା ଏବେ କିନ୍ତୁ ସବୁ ଚିତ୍ର ଗୁଡ଼ିକ ଲୋକଙ୍କ ନିକଟରେ ପହଞ୍ଚିପାରିଛି । ସେତେବେଳେ ଗୀତଗୋବିନ୍ଦ ଉତ୍ସବର ଉଦ୍ଦେଶ୍ୟ ଏହା ହିଁ ଥିଲା ।

ପ୍ରଦର୍ଶନୀଟିକୁ ସରସ ସୁନ୍ଦର କରିବା ପାଇଁ ଆମେ ଚମତ୍କାର କାଠ ଖୋଦେଇ ହୋଇଥିବା ତିନୋଟି ବିମାନ ସ୍ଥାନିତ କରିଥିଲୁ । ଏହି ସବୁ ବିମାନରେ ମଦନ ମୋହନ, ରାଧାକୃଷ୍ଣ ଦୋଳ ଉତ୍ସବରେ ଫଗୁଖେଳିବାକୁ ବିଜେ ହୁଅନ୍ତି । ଓଡ଼ିଶାର ପୁରପଲ୍ଲୀରେ ଏଭଳି ବିମାନର ବହୁଳ ବ୍ୟବହାର ଦେଖାଯାଏ । ତଥାପି ପୁରୀ ଜିଲ୍ଲାରେ ଏହାର ଚଳଣି ମର୍ଯ୍ୟାଦାବନ୍ତ । ଆମେ ନିମାପଡ଼ା ଗୋପ ଅଞ୍ଚଳରୁ ବିମାନଗୁଡ଼ିକ ସଂଗ୍ରହ କରି ଆଣି ସେଗୁଡ଼ିକୁ କୁଞ୍ଜ ଭଳି ସଜେଇଥିଲୁ । ବାସ୍ତବିକ ଦେଖିବାକୁ ଗଲେ ତାଳପତ୍ର ପୋଥିରେ ଅଙ୍କିତ, କୁଞ୍ଜ ଓ କେଳି ମଣ୍ଡପ ଗୁଡ଼ିକ ଏହି କାଠ କୁଞ୍ଜର ଢାଞ୍ଚା ବହନ କରେ । ଏଥିରୁ ଗୀତଗୋବିନ୍ଦ ପରମ୍ପରାର ଐତିହ୍ୟ ଏବଂ ଓଡ଼ିଶାର ଜନଜୀବନରେ ଏହାର ପ୍ରଭାବକୁ ସହଜରେ ଆକଳନ କରିହୁଏ । ସଂଗ୍ରହାଳୟର କଳା ବିଭାଗରେ ସଂରକ୍ଷିତ ଜଳାପିତଳର ହାତେ ଉଚ୍ଚର ରାଧାମୂର୍ତ୍ତି ପ୍ରଦର୍ଶନୀରେ ସବୁଠାରୁ ଲୋଭନୀୟ କଳାକୃତି ଭାବେ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । କୃଷ୍ଣଙ୍କ ପ୍ରେୟସୀ ପ୍ରେମମୟୀ ରାଧା ଜୟଦେବଙ୍କ ନିଜସ୍ୱ ସୃଷ୍ଟି । ଗୀତଗୋବିନ୍ଦ କାବ୍ୟରେ ତାଙ୍କ ଗୁରୁତ୍ୱ ଏହାର ପ୍ରମାଣ ଦିଏ ।

ପାରମ୍ପରିକ ଚିତ୍ରକାର ଭାଗବତ ମହାରଣା ଓ ତାଙ୍କ ଶାଳର କାରିଗରମାନଙ୍କ ସହାୟତାରେ ତାଳପତ୍ର ପୋଥିରେ ବର୍ଣ୍ଣିତ କୁଞ୍ଜଗୁଡିକର ମୁଁ ପୁନରାଙ୍କନ କରାଇଥିଲି । ପ୍ଲାଇବୋର୍ଡ୍ ଉପରେ ଟସର କନା ମଡ଼େଇ ଚକୋଲଟ୍ ରଙ୍ଗ ସାହାଯ୍ୟରେ ଚମତ୍କାର ରେଖା ବିନ୍ୟାସ କରି ଏଗୁଡ଼ିକ ଅଙ୍କନ କରାଯାଇଥିଲା । ପରିକଳ୍ପନା ଓ ପୁନର୍ବିନ୍ୟାସର ଅନନ୍ୟତାରେ ଏହି ଚିତ୍ରଗୁଡ଼ିକ ଖୁବ୍ ଲୋଭନୀୟ ଦେଖାଯାଉଥିଲା ଏବଂ ଆଶା କରାଯାଉଥିଲା ଉତ୍ସବ ଉଜେଇ ଦେଲାପରେ ଏହି ରେଖାଚିତ୍ର ଗୁଡିକ ମ୍ୟୁଜିୟମ୍‌ର କଳା ବିଭାଗରେ ସ୍ଥାନ ପାଇବ । କିନ୍ତୁ ଅତ୍ୟନ୍ତ ଦୁଃଖର କଥା ମ୍ୟୁଜିୟମ୍ କର୍ତ୍ତୃପକ୍ଷ ସେଗୁଡ଼ିକୁ ଅଫିସ୍ ଘରର ପାର୍ଟିସନ୍ ୱାଲ୍ ଭଳି ବ୍ୟବହାର କଲେ । ଦିନେ ମୁଁ କଳା ବିଭାଗର କ୍ୟୁରେଟର୍ ଜୟନ୍ତୀ ରଥଙ୍କୁ ଦେଖା କରିବାକୁ ତାଙ୍କ ଅଫିସରୁମ୍‌ରେ ପହଞ୍ଚିଲା ବେଳକୁ ମୋ ଆଖିରେ ଯାହା ପଡ଼ିଲା ସେଥିରେ ମୋ ହଲକ ଶୁଖିଗଲା । ମୁଁ ଗୀତଗୋବିନ୍ଦ ଉତ୍ସବ ପାଇଁ କରେଇଥିବା ଏହି ରେଖାଚିତ୍ରର ବୋର୍ଡ୍‌ଗୁଡ଼ିକ ଦି ଇଞ୍ଚିଆ କଣ୍ଟାରେ କାଠପଟାକାନ୍ଥରେ ପିଟା ହେଇଛି । ମନେହେଲା ମୋ ଛାତିରେ କିଏ କଣ୍ଟାଗୁଡ଼ିଏ ଫୋଡ଼ି ଦେଇ ମୋତେ କାନ୍ଥରେ ଟାଙ୍ଗି ଦେଇଛି । ଅନ୍ତତଃ ଏକ ସଂଗ୍ରହାଳୟରେ ଏଭଳି ଅଘଟଣା ଘଟିବାର ନଥିଲା ।

Digitized by srujanika@gmail.com

ଗୀତଗୋବିନ୍ଦ ପ୍ରଦର୍ଶନୀର ଅନ୍ୟ ଗୋଟିଏ ଆକର୍ଷଣ ଥିଲା ଆମ କଲେଜ ପିଲାଙ୍କ ଦ୍ୱାରା ଅଙ୍କିତ ଓଡ଼ିଆ ଝୋଟି । ରାଜ୍ୟ ସଂଗ୍ରହାଳୟରେ ସ୍ୱର୍ଣ୍ଣ ଜୟନ୍ତୀ ଉପଲକ୍ଷେ ଚଟାଣ ଉପରେ ଝୋଟି ଚିତ୍ର କରି ଆମ ପିଲାଏ ଭାରତର ପ୍ରଧାନମନ୍ତ୍ରୀଙ୍କ ପ୍ରଶଂସା ଭାଜନ ହୋଇଥିଲେ । ନିର୍ଦ୍ଦେଶକ ସୁବାସ ପାଣି ମଧ୍ୟ ଆମ କଲେଜ ପିଲାଙ୍କ ଦ୍ୱାରା ଅଙ୍କିତ ଝୋଟିର ଉତ୍କର୍ଷ ପ୍ରତି ସଚେତନ ଥିଲେ । ଏଣୁ ରାଜ୍ୟ ସୂଚନା ଭବନରେ ଗୀତଗୋବିନ୍ଦ ଉତ୍ସବ ଅବସରରେ ଆମ କଲେଜର ଛାତ୍ରଛାତ୍ରୀ ଆଉଥରେ ରେଖାଙ୍କନର ପରାକାଷ୍ଠା ଦେଖାଇଥିଲେ । ମୋର ଏବେ ଯାହା ମନେପଡୁଛି ପ୍ରଥମ ବ୍ୟାଚ୍‌ର ପିଲାମାନେ ଯଥା ଆର୍ତ୍ତବନ୍ଧୁ ରାଉତ, ନମିତା ଆଚାର୍ଯ୍ୟ, କବିତା ମହାନ୍ତି, ରୀନା ପୃଷ୍ଟି, ଅତସୀ ବସୁ, ରବି ବନିକ୍, ସୁଶାନ୍ତ ପଟ୍ଟନାୟକ ଓ ଅନ୍ୟାନ୍ୟ ମାନେ ଖୁବ୍ ଦକ୍ଷତାର ସହିତ ସୂଚନା ଭବନର ଚଟାଣକୁ ରୂପବର୍ଣ୍ଣାଢ୍ୟ କରିଦେଇଥିଲେ ।

ଉତ୍ସବ ମଉଚ୍ଛବ ହେଉ ବା ପ୍ରଦର୍ଶନୀ ହେଉ ମୁଁ କଲେଜକୁ ସଦାବେଳେ ସେଥିରେ ସଂପୃକ୍ତ କରିବାକୁ ଚେଷ୍ଟା କରୁଥିଲି । ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ ନୁହେଁ, କଲେଜର ସୁନାମ ବଢ଼େଇବା ପାଇଁ ଏବଂ ପିଲାମାନଙ୍କୁ ନୂଆ ନୂଆ ଅନୁଭୂତି ଦେବା ପାଇଁ ପ୍ରଚେଷ୍ଟା । ଶିକ୍ଷା ପରିସରକୁ ବ୍ୟାପକ କରିବା ପାଇଁ ଯେକୌଣସି ସୁଯୋଗକୁ ମୁଁ ହାତଛଡ଼ା କରୁନଥିଲି । ଷ୍ଟୁଡିଓର ସୀମିତ ବାତାବରଣ ଭିତରେ କଳାଶିକ୍ଷା ସଂପୂର୍ଣ୍ଣ ହୁଏନାହିଁ ବୋଲି ମୋର ଧାରଣା ଥିଲା, ଏବେ ବି ଅଛି । ମୁଁ ଏବେ ଶୁଣୁଛି କଲେଜର କିଛି ଅଧ୍ୟାପକ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ଏଭଳି ସମସ୍ତ କାର୍ଯ୍ୟକୁ ବ୍ୟବସାୟିକ ଢଙ୍ଗରେ ସଂପାଦନ କରି ବ୍ୟକ୍ତିଗତ ଅଭିବୃଦ୍ଧିରେ ନିୟୋଜିତ ହୋଇଛନ୍ତି । ଅବଶ୍ୟ ସମୟ ବଦଳିଛି ଏବଂ ତା' ସହିତ ଆଭିମୁଖ୍ୟରେ ବି ପରିବର୍ତ୍ତନ ହୋଇଛି ।

Digitized by srujanika@gmail.com

# ୪୨. ପ୍ରିଣ୍ଟୋରିଶା-୯୧

ବିଶେଷ କରି ସଂସ୍କୃତି ଓ କଳା କ୍ଷେତ୍ରରେ ଆଜିକାଲି ଇଂରାଜୀ ଶବ୍ଦ ସହିତ ଓଡ଼ିଆ ବା ସଂସ୍କୃତର ସମନ୍ୱୟରେ ଏକ ନୂତନ ଶବ୍ଦ ସୃଷ୍ଟି କରିବା ଏକ ଫେଶନ୍‌ରେ ପରିଣତ ହୋଇଯାଇଥିବାରୁ ଆମେ ଗ୍ରାଫିକ୍ ବା ପ୍ରିଣ୍ଟ ସହିତ ଓଡ଼ିଶା ଶବ୍ଦକୁ ମିଶେଇ ଗୋଟିଏ ନୂଆ ଶବ୍ଦ ଗଢ଼ି କହୁଥିଲୁ 'ପ୍ରିଣ୍ଟୋରିଶା' । ଓଡ଼ିଶା ସବୁକାଳେ, ଏବେ ବି, ଗ୍ରାଫିକ୍ କଳାରେ ପଛୁଆ । ଆମେ ଅଧ୍ୟୟନ କରୁଥିବା ଖଲ୍ଲିକୋଟ କଳାମହାବିଦ୍ୟାଳୟରେ ଆମବେଳେ ଗ୍ରାଫିକ୍ କଳା ବୋଲି ଯାହା ଶିକ୍ଷା ଦିଆଯାଉଥିଲା ତାହା ବୈଷୟିକ ପରାକାଷ୍ଠା ଦୃଷ୍ଟିରୁ ଅତ୍ୟନ୍ତ ସଙ୍କୁଚିତ ଥିଲା । ଲିନୋ ଓ କାଠ ଖୋଦେଇ ଥିଲା ଗ୍ରାଫିକ୍ କଳାର ଚରମ ଅଭିବ୍ୟକ୍ତି । କଲିକତା ଓ ଶାନ୍ତିନିକେତନରୁ ଶିକ୍ଷାଲାଭ କରିଥିବା କିଛି ବରିଷ୍ଠ ଓଡ଼ିଆ ଶିଳ୍ପୀ ଗ୍ରାଫିକ୍ କଳାରେ ପାରଙ୍ଗମ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ମୁରଲୀଧର ଟାଲି, ଲକ୍ଷ୍ମୀଧର ଦାସ, ରବିନାରାୟଣ ନାୟକ, ବିନୋଦ ରାଉତରାୟ ଓ ବନବିହାରୀ ପରିଡ଼ା । ରବି ନାରାୟଣ ନାୟକ ଖଲ୍ଲିକୋଟ କଳା ବିଦ୍ୟାଳୟରେ କାରୁକଳାରେ ଇନ୍‌ଷ୍ଟ୍ରକ୍‌ଟର୍ ଭାବେ କାର୍ଯ୍ୟ କରୁଥିବାରୁ ଗ୍ରାଫିକ୍ କଳାରେ ଶିକ୍ଷା ଦେବାର ସୁଯୋଗ ତାଙ୍କୁ ଜୁଟି ନଥିଲା । ବିନୋଦ ରାଉତରାୟ ବହୁବିଳମ୍ବରେ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଲେ । ତାଙ୍କ ଗ୍ରାଫିକ୍ ଚିତ୍ରରେ ଶାନ୍ତିନିକେତନୀୟ ଗ୍ରାଫିକ୍ କଳାର ଯଦିଓ ମୌଳିକ ଆବେଦନ ଥିଲା ତଥାପି ତାହା ରକ୍ଷଣଶୀଳ ମନେହେଉଥିଲା । ଶାନ୍ତିନିକେତନରେ ପରବର୍ତ୍ତୀ କାଳରେ କଳାର ଅନେକ ବିଭାଗରେ ପରିବର୍ତ୍ତନ ଘଟିଯାଇଛି । ନନ୍ଦଲାଲଙ୍କ ଅମଳରେ ଥିବା ଅସ୍ପୃଶ୍ୟ ତୈଳଚିତ୍ର ମଧ୍ୟ କଳାଭବନରେ ସଗର୍ବ ପ୍ରବେଶ କରିଛି । ଅଥଚ ସେହି ପରିବର୍ତ୍ତନ ଶାନ୍ତିନିକେତନର ପ୍ରାକ୍ତନ ଓଡ଼ିଆ ଶିଳ୍ପୀଙ୍କୁ ପ୍ରଭାବିତ କରିପାରିନାହିଁ । ଏମାନେ ପ୍ରସିଦ୍ଧ ଗ୍ରାଫିକ୍ ଶିଳ୍ପୀ ସୋମନାଥ ହୋର୍, ସନତ କର ବା ନିର୍ମଳେନ୍ଦୁ ଦାସଙ୍କ ଲିଥୋଗ୍ରାଫ୍ ଓ ଏଚିଙ୍ଗ୍‌ର ସାଂପ୍ରତିକ ଭାବଭୂମି ଦ୍ୱାରା ଅନୁପ୍ରାଣିତ ହୋଇପାରି ନାହାନ୍ତି ।

ଓଡ଼ିଶାର ଶିଳ୍ପୀ ଅଜିତ କେଶରୀ ରାୟ ଲଣ୍ଡନରୁ ଉଡ୍ ଏନ୍‌ଗ୍ରେଭିଙ୍ଗ ଶିକ୍ଷା କରି ଆସିଥିଲେ ମଧ୍ୟ ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ସେ ଭାରତୀୟ ଚିତ୍ର ବିଭାଗରେ

Digitized by srujanika@gmail.com

ଅଧ୍ୟାପକ ହୋଇଥିବାରୁ ଗ୍ରାଫିକ୍ କଳା ପରିସରକୁ ସେତେଟା ଋଦ୍ଧିମନ୍ତ କରି ପାରି ନଥିଲେ । ଗ୍ରାଫିକ୍ କଳାର ନୂତନ ଧାରା ବସ୍ତୁତଃ ଭୁବନେଶ୍ୱରରେ ନବ ପ୍ରତିଷ୍ଠିତ ଆଞ୍ଚଳିକ ଲଳିତ କଳା କେନ୍ଦ୍ରଠାରେ ହିଁ ପ୍ରବର୍ତ୍ତିତ ହୋଇଥିଲା । ଏହା ଅଶିଏ ଦଶକର ପ୍ରଥମ ଚରଣର ଘଟଣା । ଆଞ୍ଚଳିକ ଲଳିତ କଳା କେନ୍ଦ୍ର ଓ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ ଏକା ସମୟରେ ଆରମ୍ଭ ହୋଇଥିବାରୁ ଗ୍ରାଫିକ୍ କଳାର ଏହି ନୂତନ ଧାରା ଆମ କଲେଜକୁ ଯଥେଷ୍ଟ ପ୍ରଭାବିତ କରିପାରିଥିଲା । ରାମହରି ଜେନା କଲିକତାଠାରେ ଗ୍ରାଫିକ୍ କଳାରେ ସ୍ୱତନ୍ତ୍ର ତାଲିମ ପାଇ ଫେରିବା ପରେ ଭୁବନେଶ୍ୱର କଳା କେନ୍ଦ୍ରରେ ଯୋଗଦେଲେ ଏବଂ ସିଏ ହିଁ ଏହି ନୂତନ ଧାରାର ଉତ୍ସ ହୋଇଗଲେ ।

ଓଡ଼ିଶାରେ ଗ୍ରାଫିକ୍‌କଳାରେ ଆଧୁନିକତା ଆଣିବାରେ ଆଞ୍ଚଳିକ ଲଳିତ କଳା କେନ୍ଦ୍ର ପରେ ପରେ ଆମ କଲେଜର ଭୂମିକା ଉଲ୍ଲେଖନୀୟ । ୧୯୫୭ ମସିହାରେ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲେ ମଧ୍ୟ ତାହା ଗତାନୁଗତିକତାର ଗଣ୍ଡିରୁ ମୁକୁଳି ପାରି ନଥିଲା । ସେଠାରେ ଚିତ୍ରକଳାରେ ଆଧୁନିକତାର ପ୍ରଥମ ସ୍ୱର ସ୍ପଷ୍ଟ ହୋଇଥିଲେ ମଧ୍ୟ ଗ୍ରାଫିକ୍ କଳା ତଦନୁରୂପ ନୂତନ ସୋପାନରେ ପାଦ ଦେଇ ପାରିନଥିଲା । ଆମ କଲେଜ ହିଁ ଏହି ସ୍ଥାଣୁତାରେ ସ୍ପନ୍ଦନ ଆଣିବାରେ ସକ୍ଷମ ହୋଇଥିଲା । ଠିକ୍ ଏହି ସମୟରେ ଓ୍ୱିଙ୍ଗ୍ କମାଣ୍ଡର୍ ବାବଲା ସେନାପତି ବମ୍ବେରେ ଥିବା ତାଙ୍କ ସିଲ୍କ୍ ସ୍କ୍ରୀନ୍ ଷ୍ଟୁଡ଼ିଓ ଉଠେଇ ଆଣି ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିରପାଖ ତାଙ୍କ ଘରେ ତାକୁ ପୁଣି ଚାଲୁ କରେଇଲେ । ବାବୁଲାଙ୍କ କଥା ବିସ୍ତାରିତ କରି ଆଗରୁ କୁହାଯାଇଛି ।

ଅଶିଏ ଦଶକରେ ଓଡ଼ିଶାର ଗ୍ରାଫିକ୍ କଳା କ୍ଷେତ୍ରରେ ସଂଗଠିତ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ କଳାର ସ୍ଥିତିକୁ ଅଗ୍ରସର ଅଭିମୁଖେ ନେଇଗଲା । ଆମେ କିଛି ବନ୍ଧୁ ଏହି ସଂଗଠନର ନିର୍ଯ୍ୟାସକୁ ସ୍ୱୀକୃତି ଦେବା ପାଇଁ ଓ ଅଭିନନ୍ଦିତ କରିବା ପାଇଁ ଗୋଟିଏ ଆଖିଦୃଶିଆ କାର୍ଯ୍ୟକ୍ରମର ପରିକଳ୍ପନା କଲୁ । କିଛି ବର୍ଷ ହେଲା ସ୍ଥାଣୁ ଅବସ୍ଥାରେ ପଡ଼ିରହିଥିବା କଳା ସଂଗଠନ ଶିଳ୍ପୀ ସଂସଦକୁ ଜୀବନ୍ୟାସ ଦିଆଗଲା । ଅଧ୍ୟାପକ ଡି.ଏନ୍.ରାଓଙ୍କୁ ଏହି ସଂସ୍ଥାର ସଭାପତି କରାଗଲା । କଲେଜର ଛାତ୍ରୀ ଅତସୀ ବସୁ ଏହାର ଉପସଭାପତି ରହିଲେ । ଦୁଇଜଣ ଯୁଗ୍ମ ସଂପାଦକ ବଛାଗଲେ । ସେମାନେ ହେଲେ ଗ୍ରାଫିକ୍‌କଳା ବିଭାଗର ଛାତ୍ର ଅରୁଣ କୁମାର ଜେନା ଓ ବାଳକୃଷ୍ଣ ନନ୍ଦ । କୋଷାଧ୍ୟକ୍ଷ ରହିଲେ ଦିଲ୍ଲୀପ କୁମାର ତ୍ରିପାଠୀ । କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ ରହିଲେ ବିନୋଦ ବିହାରୀ କର, ସଂଗ୍ରାମ କେଶରୀ ମହାରଣା, ସୁଶାନ୍ତ ପଟ୍ଟନାୟକ, ଗଜେନ୍ଦ୍ର କୁମାର ପାଢ଼ୀ, ଗଜେନ୍ଦ୍ର କୁମାର ସାହୁ ଓ ରୀନା ପୁଷ୍ଟି । ଏମାନଙ୍କ ମଧ୍ୟରୁ ଗଜେନ୍ଦ୍ର ପାଢ଼ୀ ଓ ଗଜେନ୍ଦ୍ର ସାହୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଛାତ୍ର ଥିଲେ । ଏଭଳି ବ୍ୟବସ୍ଥା ଆୟୋଜନର ଅଳଙ୍କରଣ ଦୃଷ୍ଟିରୁ ଖୁବ୍ ରୋଚକ ଥିଲା । ଆଶା କରାଯାଉଥିଲା ପ୍ରିଣ୍ଟୋରିଶା-୯୧ ପ୍ରଦର୍ଶନୀ ଭୁବନେଶ୍ୱରଠାରେ ଅନୁଷ୍ଠିତ ହେଲାପରେ ଓଡ଼ିଶାର

Digitized by srujanika@gmail.com

ବିଭିନ୍ନ ସହରରେ ପ୍ରଦର୍ଶିତ ହେବ । ଆମେ ଏକବର୍ଷ ବ୍ୟାପୀ ପ୍ରଦର୍ଶନୀର ପରିକଳ୍ପନା କରିଥିଲୁ । ଆମ ଚିନ୍ତାର ବ୍ୟାପକ ପ୍ରେକ୍ଷାପଟ ସଂପର୍କରେ ଧାରଣା ଦେବାପାଇଁ ମୁଁ ଏଠି ପ୍ରଦର୍ଶନୀ କାର୍ଯ୍ୟକ୍ରମର ବିସ୍ତାର କରୁଛି । ପ୍ରିଣ୍ଟୋରିଶା-୯୧ ର ଆବାହକ ଥିଲେ ରାମହରି ଜେନା ଓ ଡି.ଏନ୍.ରାଓ, କମିଶନର୍ ଥିରେ ଅଧ୍ୟାପକ ଅଜିତ କେଶରୀ ରାୟ । ଆମର ବନ୍ଧୁ ତଥା ଛାତ୍ରମାନଙ୍କର ସଂଗଠନ ସାମର୍ଥ୍ୟରେ ବିଶ୍ୱାସ ରଖି ସେମାନଙ୍କୁ ପ୍ରତି ସହର ପାଇଁ ଉଦ୍ଦିଷ୍ଟ ଭ୍ରାମ୍ୟମାଣ ପ୍ରଦର୍ଶନୀ ମାନଙ୍କର ଆମେ ଆବାହକ ମନୋନୀତ କରିଥିଲୁ । ଭଦ୍ରକ ପାଇଁ ଅଶୋକ କୁମାର ମହାନ୍ତି, ଭଂଜନଗର ପାଇଁ ଦିଲ୍ଲୀପ କୁମାର ତ୍ରିପାଠୀ, ବ୍ରହ୍ମପୁର ପାଇଁ ବାଳକୃଷ୍ଣ ନନ୍ଦ, କଟକ ପାଇଁ ମହେନ୍ଦ୍ର ପ୍ରସାଦ ମହାପାତ୍ର, ବଲାଙ୍ଗିର ପାଇଁ ସଂଗ୍ରାମ କେଶରୀ କର, ଭବାନୀ ପାଟଣା ପାଇଁ ଅକ୍ଷୟ କୁମାର ପଟ୍ଟନାୟକ, ଖଲ୍ଲିକୋଟ ପାଇଁ ଗଜେନ୍ଦ୍ର କୁମାର ପାଢ଼ୀ, ସମ୍ବଲପୁର ପାଇଁ ସୁଶାନ୍ତ ପାଣିଗ୍ରାହୀ ଏବଂ ଭୁବନେଶ୍ୱର ପାଇଁ ଅମର କୁମାର ଜେନା । ଏ ସମସ୍ତ ଶିଳ୍ପୀଙ୍କ ସଂଗେ ପରାମର୍ଶ କରି ଏହି କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରଠାରେ ପ୍ରଥମ ପ୍ରଦର୍ଶନୀ ୧୯୯୧ ମସିହା ଫେବୃୟାରୀ ପନ୍ଦର ତାରିଖରେ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥିଲା । ତାପରେ ଭଞ୍ଜନଗରରେ ଦିଲ୍ଲୀପ ତ୍ରିପାଠୀ ଏହାକୁ ଯଥାସମ୍ଭବ ଆୟୋଜନ କରିଥିଲା । କଥା ଥିଲା ଆବାହକ ମାନେ ପ୍ରଦର୍ଶନୀ ପାଇଁ ନିଜେ ଦାୟିତ୍ୱ ନେବେ । କିନ୍ତୁ ଦେଖାଗଲା ଅଧିକାଂଶ ଆବାହକ କରଛଡ଼ା ଦେଲେ ଏବଂ ଆମର ପରିକଳ୍ପନା ଅନୁଯାୟୀ ପ୍ରଦର୍ଶନୀ ଗୁଡିକ ଆୟୋଜିତ ହୋଇପାରିଲା ନାହିଁ ।

ଗ୍ରାଫିକ୍ କଳାର ଏଭଳି ଗୋଟିଏ ପ୍ରଦର୍ଶନୀ ଓଡ଼ିଶାରେ ପ୍ରଥମ । ସରକାରଙ୍କ ବିନା ଆର୍ଥିକ ସହାୟତାରେ ଏହା ସମ୍ଭବ ହୋଇପାରିଥିଲା । ପ୍ରଦର୍ଶନୀ ପାଇଁ ଲୋଗୋ ତିଆରି କରିଥିଲେ ରାମହରି ଜେନା । ଡି.ଏନ୍.ରାଓ, ଗ୍ରାଫିକ୍ ପ୍ରିଣ୍ଟଗୁଡିକ ସଂଗ୍ରହ କରିବା ଦାୟିତ୍ୱରେ ଥିଲେ । ଗ୍ରାଫିକ୍ କଳା ବିଭାଗର ଛାତ୍ରଛାତ୍ରୀ ବାନରସେନା ଭଳି ସବୁ କାମକୁ ଅଣ୍ଟାଭିଡ଼ି ବାହାରୁଥିଲେ ଏବଂ କଲେଜ ସବୁପ୍ରକାର ଆନୁଷ୍ଠାନିକ ସାହାଯ୍ୟ ଯୋଗାଇ ଦେଉଥିଲା । ଏସବୁ କାର୍ଯ୍ୟକ୍ରମର ରୂପରେଖକୁ ଆକଳନ କଲେ ସନ୍ଦେହ ହେଉଥିଲା ଯେ କଲେଜ ଏସବୁ ଅର୍ଥବ୍ୟବସ୍ଥା କରୁଛି କିଭଳି ? ଏସବୁର ମୂଳରେ ଥିଲା ନିଷ୍ଠା, ପ୍ରବଣତା ଓ ସର୍ବୋପରି ଅଧ୍ୟକ୍ଷଙ୍କ ପୃଷ୍ଠପୋଷକତା । ମୁଁ ଯଦି ସେତେବେଳେ କଲେଜକୁ ମାଧ୍ୟମ କରି ଅର୍ଥ ଉପାର୍ଜନର ପନ୍ଥା ଆପଣେଇ ଥାଆନ୍ତି ତା' ହେଲେ ଅଧ୍ୟକ୍ଷ ଭାବେ ମୋତେ ଲାମ୍ବି ସ୍କୁଟର୍ ଠେଲିବାକୁ ପଡ଼ିନଥାନ୍ତା । ଅବଶ୍ୟ ମୁଁ କେବେହେଲେ ଶୀତତାପ ନିୟନ୍ତ୍ରିତ ଗାଡ଼ିରେ ଚଢ଼ିବା ଜୀବନର ଲକ୍ଷ୍ୟ ରଖି ନଥିଲି ।

ପ୍ରିଣ୍ଟୋରିଶା-୯୧ ପାଇଁ କଳାଧଳାର ଗୋଟିଏ ଚମତ୍କାର କାଟ୍‌ଲଗ୍ ଦିଲ୍ଲୀରୁ ଛାପାହୋଇ ଆସିଥିଲା । ଆମେ ଯେଉଁ କେତେଜଣ ଆୟୋଜକ ଭୂମିକାରେ ଥିଲୁ, ନିଜର ବଡ଼ିମା ଦେଖାଇ ନିଜ ନାଁକୁ ସବୁବେଳେ ଅଗ୍ରାଧିକାର ଦେଉ ନଥିଲୁ । ଆମ ଛାତ୍ରଛାତ୍ରୀ

Digitized by srujanika@gmail.com

ଏସବୁ ଆୟୋଜନର ଶ୍ରେୟ ପାଆନ୍ତୁ ବୋଲି ସେମାନଙ୍କୁ ପ୍ରଶଂସାର ପାତ୍ର କରିଦେଉଥିଲୁ । ମୁଁ ଚାହିଁଥିଲେ ସାଧାରଣ ଅଧକ୍ଷଙ୍କ ଭଳି ଟେବୁଲ ପାଖରେ ବସି ଫଟୋ ଉଠେଇ ମୂଳ ପୃଷ୍ଠାରେ ଛାପିଦେଇ ପାରନ୍ତି କିନ୍ତୁ ମୋ ଧାରଣାରେ ତାହା ସୌଜନ୍ୟ ବାହାରର କଥା ।

ଏହି ପ୍ରଦର୍ଶନୀରେ ବରିଷ୍ଠ ଶିଳ୍ପୀ ଅଧ୍ୟାପକ ଅଜିତ କେଶରୀ ରାୟଙ୍କ ଠାରୁ ଆରମ୍ଭ କରି ସର୍ବକନିଷ୍ଠ ଅରୁଣ କୁମାର ଜେନାଙ୍କ ଯାଏଁ ଏକତିରିଶି ଜଣ ଶିଳ୍ପୀ ଯୋଗ ଦେଇଥିଲେ । ଅଜିତ କେଶରୀଙ୍କ ସମସାମୟିକ ଆଉ ଯେଉଁ ବରିଷ୍ଠ ଗ୍ରାଫିକ୍ ଶିଳ୍ପୀ ପ୍ରିଣ୍ଟୋରିଶା-୯୧ରେ ଗ୍ରାଫିକ୍ ଚିତ୍ର ପ୍ରଦର୍ଶିତ କରିଥିଲେ ସେମାନେ ହେଲେ ରବିନାରାୟଣ ନାୟକ, ବିନୋଦ ରାଉତରାୟ ଏବଂ ବନବିହାରୀ ପରିଡ଼ା । ମୋ ସମସାମୟିକ ତଥା କନିଷ୍ଠଙ୍କ ମଧ୍ୟରେ ଥିଲେ ଡି.ଏନ୍.ରାଓ, ବିପିନ ବିହାରୀ ସାହୁ, ଅଶୋକ କୁମାର ମହାନ୍ତି, ଶରତ କୁମାର ରଥ, ରାମହରି ଜେନା, ଚଇତା ବସ୍ତୁ ଜେନା ଏବଂ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଥିଲେ ଅମର କୁମାର ଜେନା, ସଂଗ୍ରାମ କେଶରୀ କର, ରୀନା ପୁଷ୍ଟି, ଅତସୀ ବସୁ, ବାଳକୃଷ୍ଣ ନନ୍ଦ, ଦିଲ୍ଲୀପ କୁମାର ତ୍ରିପାଠୀ, ମାନସ ରଂଜନ ଜେନା, ବିଦ୍ୟୁତଲତା ପାଟଶାଣୀ, ପ୍ରଶାନ୍ତ ଦାସ, ସଂଗ୍ରାମ ମହାରଣା, ବିନୋଦିନୀ ପଣ୍ଡା, ଛବିବାଳା ରାଉତ, ଜ୍ୟୋତିର୍ମୟୀ ଦାସ ଏବଂ ସଂଯୁକ୍ତା ଦାସ । କାଟ୍‌ଲାଗ୍‌ର ଅଗ୍ରଲେଖ – ଅଜିତ କେଶରୀ ରାୟଙ୍କ ନିଜ ଅନୁଭୂତି ଓ ମୋର ଓଡ଼ିଶାରେ ଗ୍ରାଫିକ୍ କଳାର ଇତିହାସ ପଢ଼ିଲେ ଓଡ଼ିଶାର ଗ୍ରାଫିକ୍ କଳାର ଘଟଣାବହୁଳ କାହାଣୀ ଜାଣିହେବ ।

Digitized by srujanika@gmail.com

# ୪୩. ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସ୍ୱର୍ଣ୍ଣଜୟନ୍ତୀ

୧୯୮୪ ମସିହାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସ୍ୱର୍ଣ୍ଣ ଜୟନ୍ତୀ ଉତ୍ସବ ପାଳିତ ହେବ ବୋଲି ସରକାର ସ୍ଥିର କଲେ । ଉତ୍ସବକୁ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଉଦ୍‌ଘାଟନ କରିବେ । ଏଣୁ ସଂଗ୍ରହାଳୟର ସାଜସଜ୍ଜା ଅତ୍ୟନ୍ତ ରୁଚିପୂର୍ଣ୍ଣ ହେବା ଆବଶ୍ୟକ । ସଂଗ୍ରହାଳୟରେ ଯେଉଁ ଦୁଇ ତିନିଜଣ ଶିଳ୍ପୀ ଚାକିରି କରୁଥିଲେ ସେମାନେ ଏତେ ବଡ଼ଧରଣର ପ୍ରକଳ୍ପରେ କେବେ ହାତ ଦେଇ ନଥିଲେ । ମୁଁ ସଂଗ୍ରହାଳୟର କଳା ବିଭାଗର କ୍ୟୁରେଟ୍‌ର ଭାବେ ଅନେକ ବର୍ଷ ଧରି କାମ କରିଥିଲେ ମଧ ମୋର ପୁରୁଣା ସହକର୍ମୀମାନେ ସ୍ୱର୍ଣ୍ଣଜୟନ୍ତୀ ଉତ୍ସବରେ ମୋ ସଂପୃକ୍ତି ଚାହୁଁ ନଥିଲେ । ୧୯୮୪ ବେଳକୁ ମୁଁ କିନ୍ତୁ ବହୁ ଜାତୀୟ ଓ ଅନ୍ତର୍ଜାତୀୟ ପ୍ରଦର୍ଶନୀମାନଙ୍କରେ ଓଡ଼ିଶା ମଣ୍ଡପର ନିର୍ମାଣ ଦାୟିତ୍ୱ ନେଇ ତାର କଳାତ୍ମକ ସାଜସଜ୍ଜା ସୁଚାରୁ ରୂପେ ପରିଚାଳନା କରିପାରିଥିଲି । ଏଣୁ ସଂସ୍କୃତି ସଚିବ ଅଧ୍ୱଧ ନାରାୟଣ ତିୱାରୀ ଚାହୁଁଥିଲେ ମୁଁ ସ୍ୱର୍ଣ୍ଣଜୟନ୍ତୀ ଉତ୍ସବରେ ଭିଜୁଏଲାଇଜର୍ ରୂପେ ମୁଖ୍ୟଭୂମିକା ଗ୍ରହଣ କରେ ।

କହିବାକୁ ଗଲେ ସରକାରୀ ଆଦେଶ ଫଳରେ ହିଁ ମୁଁ ସ୍ୱର୍ଣ୍ଣଜୟନ୍ତୀ ଉତ୍ସବରେ ସାମିଲ ହୋଇପଡ଼ିଲି ଆଉ ମୋ ସହିତ କଲେଜର ଅଧ୍ୟାପକ ଓ ଛାତ୍ରଛାତ୍ରୀ ମଧ ଅବଲୀଳାକ୍ରମେ ଉତ୍ସବ ସହିତ ଯୋଡ଼ି ହୋଇଗଲେ । ସ୍ୱର୍ଣ୍ଣଜୟନ୍ତୀ ଉତ୍ସବ ଅବସରରେ ସଂଗ୍ରହାଳୟରେ ତିନୋଟି ନୂଆ ଚିତ୍ରବୀଥି ଖୋଲାହେବାକୁ ଥାଏ । ତା ସହିତ ନୂଆ ନୂଆ ପ୍ରକାଶନ, ସଂଗ୍ରହାଳୟର ନିର୍ବାଚିତ ଚିତ୍ରିତ ତାଳପତ୍ର ପୋଥିଗୁଡ଼ିକୁ ନେଇ ବହି, ସଂଗ୍ରହାଳୟ ଗବେଷଣା ପତ୍ରିକାର ସ୍ୱତନ୍ତ୍ର ସଂଖ୍ୟା, ଉତ୍ସବ ପାଇଁ 'ଲୋଗୋ'ର ପରିକଳ୍ପନା, ଆଗରୁ ରହିଥିବା ଗ୍ୟାଲେରୀମାନଙ୍କର ନବୀକରଣ, ସଂଗ୍ରହାଳୟର ସାଜସଜ୍ଜାରେ ନୂତନ କଳାତ୍ମକତା – ଏମିତି ହେଇ ବହୁପ୍ରକାରର ଅଜବ କାମ; ନିମନ୍ତ୍ରଣପତ୍ର ଡିଜାଇନ୍ କରିବାଠାରୁ ସଭାମଞ୍ଚରେ ଚଉକି ସଜାଣ କରିବା ଯାଏଁ ।

ସଂଗ୍ରହାଳୟର ବନ୍ଧୁମାନେ ଆମ କଲେଜର ଓ ମୋର ଏତେଟା ସଂପୃକ୍ତି ମୋଟେ ପସନ୍ଦ କରୁନଥିଲେ ମଧ ପରିସ୍ଥିତିର ଗୁରୁତ୍ୱ ଓ ଗାମ୍ଭୀର୍ଯ୍ୟ ହେଜି 'ବାପ ରାଣ ଢ଼ିଙ୍କି ଗିଳି' ନ୍ୟାୟରେ ସବୁ କଥା ଗ୍ରହଣ କରିନେବାକୁ ବାଧ ହେଉଥିଲେ । ଏଣେ ସଚିବ ତିୱାରୀ ଓ

Digitized by srujanika@gmail.com

ନିର୍ଦ୍ଦେଶକ ସୁବାସ ପାଣିଙ୍କ ଭିତରେ ନିଜ ନିଜ ପତିଆରାକୁ ନେଇ ଶୀତଳ ସଂଘର୍ଷ ଲାଗି ରହିଥିଲା । ଉଭୟଙ୍କ ସହିତ ମୋର ଉତ୍ତମ ସଂପର୍କ ରହିଥିଲା । ଏଣୁ କାମ କରିବାରେ ଓ କରାଇନେବାରେ ମୋର କୌଣସି ଅସୁବିଧା ହେଉନଥିଲା । ବରଂ ମୁଁ ଭାବୁଥିଲି ମ୍ୟୁଜିୟମ୍ ବନ୍ଧୁଙ୍କୁ ଠିକ୍ ବାଟକୁ ଆଣିବା ଓ କଲେଜର ପ୍ରାଧାନ୍ୟ ବଢ଼େଇବା ପାଇଁ ଉତ୍ସବ ଏକ ସୁବର୍ଣ୍ଣ ସୁଯୋଗ । ଉଭୟ ସଚିବ ଓ ନିର୍ଦ୍ଦେଶକ ମ୍ୟୁଜିୟମ୍‌ର ଅଧକ୍ଷଙ୍କ ଦକ୍ଷତା ଉପରେ ପୂରା ନିର୍ଭର କରିପାରୁ ନଥିଲେ । ଏଣୁ ସଚିବ ପ୍ରାୟ ପ୍ରତିଦିନ ସଂଗ୍ରହାଳୟ ବୁଲିବାକୁ ଆସି ଜୟନ୍ତୀ କାମ ତଦାରଖ କରୁଥିଲେ । ଏହି ଦିନିକିଆ ପରିଦର୍ଶନଗୁଡିକ ସଂଗ୍ରହାଳୟରେ ନୂଆ ନୂଆ କାମର ଉଦ୍ଭବ କରେଇ ଦେଉଥିବାରୁ ସଂଗ୍ରହାଳୟର କର୍ମଚାରୀମାନେ ଏକରକମ ଆତଙ୍କିତ ଅବସ୍ଥାରେ ରହୁଥିଲେ । ଏଣେ ପ୍ରକାଶନ ଗୁଡିକର ପ୍ରସ୍ତୁତି ପାଇଁ ଦିନବେଳେ ନିର୍ଦ୍ଦେଶକଙ୍କ ଅଫିସରେ ଓ ସଂଧ୍ୟାବେଳେ ତାଙ୍କ ଘରେ ବୈଠକ ବସୁଥିଲା । ଜୟନ୍ତୀ ଉତ୍ସବର ଲୋଗୋ ଭାବେ ବିଷ୍ଣୁପୁର ମନ୍ଦିରରେ ଖୋଦିତ ହୋଇଥିବା ରାସଲୀଳା ଫଳକର ଗୋଟିଏ ରେଖାଚିତ୍ର ରଖାଯାଉ ବୋଲି ମୁଁ ପ୍ରସ୍ତାବ ଦେଇଥିଲି ଏବଂ ତାହା ଗୃହୀତ ମଧ୍ୟ ହୋଇଥିଲା । ବହିଟି ଡିଜାଇନ କରିବାକୁ ମୁଁ ପୂର୍ଣ୍ଣ ସ୍ୱାଧୀନତା ପାଇଥିଲି । ଜୟନ୍ତୀ ଉତ୍ସବ ସମାପନ ପରେ ଏହି ବହିଟି ମୁଁ ଯେତେବେଳେ କପିଳା ବାତ୍ସ୍ୟାୟନଙ୍କୁ ଉପହାର ଦେଲି ସେ ପ୍ରଥମେ ବହିଟି ପଛଆଡୁ ଖୋଲି ପଣ୍ଡିତ ନୀଳମଣି ମିଶ୍ର ପ୍ରସ୍ତୁତ କରିଥିବା ଚିତ୍ରିତ ତାଳପତ୍ର ପୋଥିର ତାଲିକାଟିକୁ ମନଦେଇ ପଢ଼ିଲେ ଏବଂ ମତଦେଲେ ତାହା ହିଁ ଏହି ବହିର ସାରାଂଶ । ଡ଼କ୍ଟର ବାତ୍ସ୍ୟାୟନଙ୍କ କଥାର ମର୍ମ ମୁଁ ହେଜି ପାରିଲି । ମୁଁ ସବୁବେଳେ କହିଥାଏ ସଂଗ୍ରହାଳୟ ଓ ସଂସ୍କୃତି ବିଭାଗ ରୂପ ଗୁଣ ସଂପନ୍ନ ଗୋଟିଏ ଅନୂଢ଼ା ଯୁବତୀ ଭଳି । ତାକୁ ଯିଏ ଯିମିତି ବ୍ୟବହାର କରିପାରିଲା । କାରଣ ଅନେକ ସଂସ୍କୃତି ନିର୍ଦ୍ଦେଶକ ଓ ସଚିବ ଏ ବିଭାଗର ଦାୟିତ୍ୱ ଗ୍ରହଣ କଲାପରେ ଏ ଯୁବତୀର ପ୍ରେମରେ ପଡ଼ି ଜଣେ ଜଣେ ସ୍କଲାର୍ ହେବା ପାଇଁ ଚାହିଁଛନ୍ତି । କିଏ କିଏ ପୂର୍ବ ସୁକୃତରୁ ଏଭଳି ସୁବର୍ଣ୍ଣ ସୁଯୋଗର ସଦ୍‌ବ୍ୟବହାର କରିପାରିଛନ୍ତି ତ ଅନ୍ୟମାନଙ୍କ ଆଶା ତଥାପି ଅପୂରଣୀୟ ରହିଯାଇଛି ।

ଉତ୍ସବ ବେଳର ସଂଗ୍ରହାଳୟର ବନ୍ଧୁମାନଙ୍କର କାର୍ଯ୍ୟପ୍ରଣାଳୀ ଓ କାର୍ଯ୍ୟ ସଂପର୍କୀୟ ବୁଝାମଣାର ସବୁ ବିସଙ୍ଗତିକୁ ଏଠି ପ୍ରକାଶ କରିବା ସମ୍ଭବ ନୁହେଁ । ମାତ୍ର ଗୋଟିଏ ଦୁଇଟି ଘଟଣାର ଉଲ୍ଲେଖ ଜରୁରୀ ମନେହୁଏ । ପ୍ରଥମ ଘଟଣା ପ୍ରତ୍ନତତ୍ତ୍ୱ ବିଭାଗରେ ପ୍ରଦର୍ଶିତ ଭାସ୍କର୍ଯ୍ୟଗୁଡ଼ିକର ପେଡେଷ୍ଟେଲରେ ଖଞ୍ଜାଯାଇଥିବା ଲେବଲ୍ ବା ନାମାଙ୍କନ ଫଳକସମୂହର ନବୀକରଣକୁ ନେଇ ଏବଂ ଦ୍ୱିତୀୟଟି 'କୋଲାଜ୍' ଶବ୍ଦର ବନାନ ବିଭ୍ରାଟକୁ ନେଇ । ମୁଁ ଘଟଣାଟିକୁ ଫଳେଇ କରି କହେ । ପ୍ରଥମ ଥର ବିଦେଶ ଗସ୍ତରୁ ଫେରିବା ପରେ ଆଖିଦେଖା ଅନୁଭବକୁ ନେଇ ଭାସ୍କର୍ଯ୍ୟଗୁଡ଼ିକ ଉଭା ହେଉଥିବା ପେଡେଷ୍ଟେଲ ଉପରେ କିଭଳି ନାମାଙ୍କନ ଫଳକ ଲଗାଯିବା କଥା ତାହା ଗୋଟିଏ ଲିଖିତ ରିପୋର୍ଟ କରିଥାରେ ସଂଗ୍ରହାଳୟର

Digitized by srujanika@gmail.com

ଅଧ୍ୟକ୍ଷ ହରିଶ ଚନ୍ଦ୍ର ଦାସଙ୍କୁ ଜଣେଇଥିଲି । ଏହି ରିପୋର୍ଟ ସଂସ୍କୃତି ସଚିବ ଓ ମନ୍ତ୍ରୀଙ୍କ ନିକଟରୁ ସୁପାରିଶ ହୋଇ ଫେରିଥିଲେ ମଧ୍ୟ ସଂଗ୍ରହାଳୟର ପଦାଧିକାରୀମାନେ କହିଲେ ଯେହେତୁ ଦିନନାଥ ପାଠୀ ବ୍ୟକ୍ତିଗତ ଭାବେ ବିଦେଶ ଗସ୍ତ କରିଛନ୍ତି ତେଣୁ ତାଙ୍କର ପ୍ରସ୍ତାବ ସରକାରୀ ସ୍ତରରେ ଗ୍ରହଣୀୟ ନୁହେଁ । ଏଣୁ ମୋର ପରାମର୍ଶ ଗ୍ରହଣୀୟ ହେଇ ନଥିଲା । ପ୍ରତ୍ନତତ୍ତ୍ୱ ବିଭାଗର କ୍ୟୁରେଟର୍ ରମେଶ ପ୍ରସାଦ ମହାପାତ୍ର ଶିବଙ୍କ ଭାସ୍କର୍ଯ୍ୟ ତଳେ 'ଲର୍ଡ଼ ଶିବ' ଏବଂ ପାର୍ବତୀଙ୍କ ପେଡଷ୍ଟଲ୍‌ରେ 'ଲେଡି ପାର୍ବତୀ' ଲେଖା ନାମାଙ୍କନ ଫଳକକୁ ସହ୍ୟ କରୁଥିଲେ । ପୁଣି ଏହି ଫଳକଗୁଡ଼ିକ ଟିଣ ପାତିଆ ଉପରେ ଚଟିଆ ନେଳୀ ବାର୍ଣ୍ଣିସ୍ ରଙ୍ଗ ଦିଆଯାଇ ଧଳାରେ ଲେଖା ଯାଉଥିଲା । ସଂଗ୍ରହାଳୟର ମାର୍କସ୍‌ମେନ୍ କମ୍ ଲେବଲ୍ ରାଇଟର୍ ହରିଶ ଚନ୍ଦ୍ର ସିଂହବାବୁ ଉଚ୍ଚକୋଟିର ତୈଳଚିତ୍ର ଆଲେଖ୍ୟ ଅଙ୍କନ କରୁଥିଲେ ମଧ୍ୟ ଅକ୍ଷର ଲେଖା ବା କ୍ୟାଲିଗ୍ରାଫିରେ ପୁରୁଣା ଭୁବନେଶ୍ୱର ରୋହିତ ବଟୁ ବା ଗୋଡ଼ିପୋଖରୀ ସାହିର ବିଷ୍ଣୁ ଆଚାର୍ଯ୍ୟ ଭଳି ଧୁରୀଣ ନଥିଲେ । ଏ ଉଭୟେ ମୋର ବନ୍ଧୁ ହୋଇଥିବାରୁ ଓ ନାମାଙ୍କନ ଫଳକଗୁଡିକର ପରିବର୍ତ୍ତନ ସମ୍ଭାବନାର ପରିସର ମଧ୍ୟରେ ଥିବାହେତୁ ମୁଁ ଯେତେଥର ନାମାଙ୍କନ ଫଳକଗୁଡିକୁ ଦେଖୁଥିଲି ମୋ ଅସହାୟତା ମୋତେ ହିଁ ବେଶି ଘାରୁଥିଲା । ସ୍ୱର୍ଣ୍ଣ ଜୟନ୍ତୀ ଉତ୍ସବ ସଂଗ୍ରହାଳୟର ଭାସ୍କର୍ଯ୍ୟ ଓ ମୋ ପାଇଁ ସୁବର୍ଣ୍ଣ ସୁଯୋଗ ଆଣିଦେଲା । ଏବେ ପରିବର୍ତ୍ତନର ବେଳ । ଭୁବନେଶ୍ୱର ଏକାମ୍ର ନଗରୀର ଅଧିଷ୍ଠାତ୍ରୀ ଦେବତା ପ୍ରଭୁ ଲିଙ୍ଗରାଜ - ଶିବ ଓ ପାର୍ବତୀ ମୂର୍ତ୍ତିଗୁଡିକରେ କାୟାପ୍ରବେଶ କରି ପରିବର୍ତ୍ତନର ବାଟ ଖୋଲିଦେଲେ ।

ମୁଁ ସଂସ୍କୃତି ସଚିବ ଅଖିଳ ନାରାୟଣଙ୍କୁ କହିଲି ଯେ ଧଳା ଉପରେ କଳା ଅକ୍ଷରରେ ସଂଗ୍ରହାଳୟର ପ୍ରଦର୍ଶିତ ଲେବଲ୍ ଲେଖାଯିବା ଏକ ଆନ୍ତର୍ଜାତିକ ପରମ୍ପରା । ଯେହେତୁ ଭାରତର ପ୍ରଧାନମନ୍ତ୍ରୀ ସମସ୍ତ ଗ୍ୟାଲେରୀ ବୁଲି ଦେଖିବାର କାର୍ଯ୍ୟକ୍ରମ ଅଛି ଲେବଲ୍ ଗୁଡ଼ିକ ଯଥାଶୀଘ୍ର ବଦଳିବା ଆବଶ୍ୟକ । ସଚିବ ତିୱାରୀ ସାହେବ ହିଁ ଭରିଲେ ଏବଂ ଏହି 'ହଁ' ହିଁ ଆଦେଶ ହେଇ ସଂଗ୍ରହାଳୟର ବନ୍ଧୁମାନଙ୍କ ମୁଣ୍ଡରେ କଣ୍ଟାର ମୁକୁଟ ଭଳି ବାହାରକୁ ଶୋଭା ଦିଶୁଥିଲେ ମଧ୍ୟ ଅନ୍ତର ଭେଦିଲା । ସେତେବେଳେ ଡି.ଟି.ପି.ର ଏତେ ପ୍ରଚଳନ ନଥିଲା । ଏଣୁ ଅକ୍ଷର ଗୁଡିକ ଲେଟର୍ ପ୍ରେସ୍‌ର କମ୍ପୋଜ୍ ହେଇ ପ୍ରତ୍ୟେକରୁ ତିନି ଚାରି ସିଟ୍ ଲେଖା ଆସିଲା । ଲେବଲ୍ ଗୁଡିକ କିମିତି ଠିକ ଭାବେ ଲଗାଯାଇ ପାରିବ ତାର ମାର୍ଗ ବତେଇ ଦେଇ ଓ ଆମ କଲେଜର ଛାତ୍ରଛାତ୍ରୀଙ୍କ ଦ୍ୱାରା ଏହି କାର୍ଯ୍ୟଟି ସୁଚାରୁରୂପେ ସଂପାଦିତ ହୋଇପାରିବ ବୋଲି ଭରସା ଦେଲି । ପ୍ରତ୍ନତତ୍ତ୍ୱ ବିଭାଗର କ୍ୟୁରେଟର୍ ରମେଶ ବାବୁ ଲେବଲ୍ ପ୍ରସଙ୍ଗକୁ ନେଇ ମୋ ଉପରେ ବିଗିଡ଼ି ଯାଇଥିବା ହେତୁ ଲେବଲ୍ ଲଗେଇବା କାର୍ଯ୍ୟ ମ୍ୟୁଜିୟମ୍ ଗବେଷଣା ପରିସରଭୁକ୍ତ ଏବଂ ଏହା ଗବେଷଣାର ଧାର ଧରି ନଥିବା ସାଧାରଣ ଶିକ୍ଷୀଙ୍କ

Digitized by srujanika@gmail.com

କାମ ନୁହେଁ କହି ମୋ ପରାମର୍ଶକୁ ଏଡ଼ାଇ ଦେଲେ । କିନ୍ତୁ ତାଙ୍କର କ୍ଷୋଭ କିଭଳି ଭାବେ ତାଙ୍କୁ ଶେଷରେ ହଇରାଣ ହରକତ କରିଦେଇପାରେ କ୍ୟୁରେଟର୍ ମହାପାତ୍ରେ ସେତକ ମୂଳରୁ ହେଜି ପାରି ନଥିଲେ ।

କ୍ୟୁରେଟର୍ ମହାପାତ୍ରଙ୍କ ଏବେ ଜଂଜାଳ ଆରମ୍ଭ ହେଇଗଲା । ମ୍ୟୁଜିୟମ୍ କେୟାରଟେକର୍ ବିଜୟ ମହାପାତ୍ର, ଟେକ୍‌ସିଡେରମିଷ୍ଟ୍ ପରମାନନ୍ଦ ରାଉତ (ମୃତ ଜନ୍ତୁଜାନ୍ତାମାନଙ୍କ ଛାଲକୁ ଜିଅନ୍ତା ଭଳି ଆକୃତି ଦେଇ, ସେଗୁଡ଼ିକର ପେଟ ଭିତରେ ଚଷ୍ଟ, ଭୂସି, ନଡ଼ା ପାଳ ଭର୍ତ୍ତି କରି ପେଡେଷ୍ଟଲ୍‌ମାନଙ୍କ ଉପରେ ଠିଆ କରେଇବା ବ୍ୟକ୍ତି) ଓ ଆଉ ଜଣେ ଦୁଇଜଣ ଗ୍ୟାଲେରୀ ଏଟେଣ୍ଡେଣ୍ଟ୍‌କୁ ନେଇ କ୍ୟୁରେଟ୍‌ର ମହାପାତ୍ରେ ତାଙ୍କ ପ୍ରକଳ୍ପକୁ ଆଗକୁ ବଢ଼େଇଲେ । ଜଣେ ଲେବଲ୍‌କୁ ସାଇଜ୍ କରି କାଟିବ, ଜଣେ ଲେବଲ୍ ପିଠିରେ ଅଠା ଲଗେଇବ, ଆଉ ଜଣେ କ୍ୟୁରେଟରଙ୍କ ହାତକୁ ବଢ଼େଇବ । କ୍ୟୁରେଟରେ ହାତରେ ଧରିଥିବା ଅଠାଲଗା ଲେବଲ୍ ପେଡ଼େଷ୍ଟଲ୍ ଉପରେ ନିର୍ଦ୍ଦିଷ୍ଟ ଜାଗା ପାଖାପାଖି ହେଲେ ଚତୁର୍ଥ ସହକାରୀ ଜଣଙ୍କ କହିବ, ସାର୍ ହଁ ହଁ ହେଲା ହେଲା ନତୁବା ନାଁ ହେଲାନି କିମ୍ବା ଡାହାଣ ବା ଟିକିଏ ତଳ ବା ଉପରକୁ ଯିବ । କ୍ୟୁରେଟର୍ ସେମାନଙ୍କ 'ହଁ'ରେ ପରତେ ଯିବେନି ନିଜେ 'ଓଡ଼ିଶୀ' ଚଉକ ପୋଜ୍‌ରୁ ଉଠି ଠିଆ ହେବେ, ମୂର୍ତ୍ତି ପାଖରୁ ପଛକୁ ଘୁଞ୍ଚି ଆସି ନିଜେ ଲେବଲ୍‌କୁ ନିରେଖିବେ । ଆବଶ୍ୟକ ମତେ ପୁଣି 'ଚଉକ' ପୋଜ୍‌ରେ ରହି ସ୍ଥାନ ସଂଶୋଧନ କରିବେ । ପ୍ରତି ଲେବଲ୍ ଲଗେଇବା ପାଇଁ କ୍ୟୁରେଟର୍ ମହାପାତ୍ରଙ୍କୁ ଓଡ଼ିଶୀ ନୃତ୍ୟର ସବୁ ମୌଳିକ ଭଙ୍ଗି- ଠିଆ, ଉଠା, ବସା, ଚଉକ ଓ ଚାଲିକୁ ଥରେ ନୁହେଁ ଦୁଇତିନି ଥର ଲେଖା ଅଭିନୟ କରିବାକୁ ହେଉଥିଲା । ଫଳରେ ସଂଧ୍ୟାବେଳକୁ ତାଙ୍କ ଅଣ୍ଟାରେ ରଙ୍କୁ ଧରିଲା, ବାତୁଆ ଦେହ ହେତୁ ଗୋଡ଼କୁ ରକ୍ତ ଗଡ଼ିଲା । ଆମ କଲେଜ ପିଲା ମହାପାତ୍ରେଙ୍କ ନୃତ୍ୟ ଅଭିନୟ ଦେଖି ମୁରୁକି ହସା ଦେଲେ, କହିଲେ, 'ସାର୍ ଆମକୁ ଆପଣ ଦାୟିତ୍ୱ ଦେଇଥିଲେ, ଆପଣଙ୍କୁ ଏତେ କୃଚ୍ଛସାଧନା କରିବାକୁ ପଡ଼ି ନଥାନ୍ତା ।

ମହାପାତ୍ରେ ଲେବଲ୍ ଲଗାଇବା ଜନିତ ସବୁପ୍ରକାର ଅପମାନକୁ ସହିନେଲେ । ସେ ଜାଣିଗଲେ ଯେ ପାଠୀ ରାଗ ଶୁଝାଉଛି । ତାଙ୍କର ଗତ୍ୟନ୍ତର ନଥିଲା । ଉତ୍ସବମୁଖର ସଂଗ୍ରହାଳୟ । ସେ ଅଧୀକ୍ଷକ ହରିଶ୍ଚନ୍ଦ୍ରଙ୍କୁ ନିଜପଟକୁ ଆଣି ମୋତେ ହାଲୁକା ଅଥଚ ଅନ୍ତରଙ୍ଗ ଭାବେ ଅନୁରୋଧ କରି କହିଲେ, 'ପାଠୀ ବାବୁ, ଯାହା ଆକ୍ରୋଶ ଥିଲା ତାହା ତ ପରିଶୋଧ ହେଇଗଲା, ଆଜି ସଂଧ୍ୟାରେ ତନ୍ଦୁରୀ ଚିକେନ୍ ବ୍ୟବସ୍ଥା କର । କହିବା ବାହୁଲ୍ୟ ଯେ ଆମେ ଦଳବଦ୍ଧ ହୋଇ ମ୍ୟୁଜିୟମ୍ ଲନ୍‌ରେ ସମସ୍ତ ବିଭେଦ ଭୁଲି ତନ୍ଦୁରୀ ଚିକେନ୍ ଭୋଜିରେ ନିଜ ନିଜକୁ ଆପ୍ୟାୟିତ କଲୁ ।

Digitized by srujanika@gmail.com

ଏବେ ଅନ୍ୟ ଘଟଣାଟି ଶୁଣନ୍ତୁ । ସଂଗ୍ରହାଳୟର ନବନିର୍ମିତ ଜୁବଲୀ କୋଠାଘର ଉନ୍ମୋଚନ ହେବ । ମୁଁ ପ୍ରସ୍ତାବ ଦେଇଥିଲି ଯେ କାରୁକଳା ବିଭାଗରୁ ପିତଳ ଦୀପ ପଦ୍ମମଣ୍ଡଳ ଝୋଟି ଉପରେ ଥୁଆ ହେବ । ମଣିଷେ ଉଚ୍ଚର ପିତଳ ଢଳେଇ କାମ ଥାଇ ଖାଣ୍ଟି ଓଡ଼ିଆ ଦୀପରୁଖା । ଏବେ ଆମ ଓଡ଼ିଆ ଅସ୍ମିତା ଭୁଲିଯାଇ ଆମେ ତାମିଲନାଡୁର ହଂସମୁଖୀ ଦୀପରୁଖାକୁ ଆଦରି ନେଇଛୁ । ପୁଣି ପିତଳରୁଖା ଯାଇ ଆଲୁମିନିୟମ୍ ରୁଖା ଆସିଲାଣି । ଉଦ୍‌ଘାଟନବେଳେ ସଂଗ୍ରହାଳୟରେ ପିତଳ ରୁଖା ରହିବ ଯେ ତା'ର ପୃଷ୍ଠଭାଗ କାନ୍ଥ ସୁଚାରୁ ରୂପେ ମଣ୍ଡଣି ନ ହେଲେ ଫଟୋଗ୍ରାଫ୍ ଉଠିଲା ବେଳକୁ ସବୁ ଖାଲି ଖାଲି ମନେହେବ ।  ସଚିବ ଅଓ୍ୱଧ ନାରାୟଣ ଓ ନିର୍ଦ୍ଦେଶକ ସୁବାସ ପାଣିଙ୍କୁ ଓଡ଼ିଶାର ବଛାବଛା ସାଂସ୍କୃତିକ ମୋଟିଫ୍ ଥାଇ ଗୋଟିଏ କୋଲାଜ୍ ପ୍ରସ୍ତୁତ କରାଯିବା କଥା ମୁଁ କହିବାରୁ ଉଭୟେ ରାଜି ହୋଇଗଲେ ।

ଆମ କଲେଜରେ କୋଲାଜ୍‌ଟି ପ୍ରସ୍ତୁତ ହେଲା । କୋଣାର୍କ ଚକ, ମୁକ୍ତେଶ୍ୱର ତୋରଣ, ରତ୍ନଗିରି ବୁଦ୍ଧ, ବଣ୍ଠା ରମଣୀ, ଛଉ ଭଙ୍ଗୀରେ ଶ୍ରୀହରି ନାୟକ, ନୃତ୍ୟଭଙ୍ଗୀରେ ସଂଯୁକ୍ତାଙ୍କ ସହିତ ବାଘରାଣୀ ଖଇରୀ ଓ ଚିଲିକାକୁ ଫି ବର୍ଷ ପରିଭ୍ରମଣରେ ଆସୁଥିବା ବିଦେଶୀ ପକ୍ଷୀଙ୍କ ମଧ୍ୟରେ ଦଳେ ଆମ ଦେଶି ପକ୍ଷୀ ଥାଇ କୋଲାଜ୍‌ଟି ଆକର୍ଷଣୀୟ ମନେହେଲା । ଆମେ ରଙ୍ଗୀନ ଫଟୋଗ୍ରାଫ୍ ଏବଂ ଆବଶ୍ୟକ ମତେ ହାତରେ ଚିତ୍ରଣ କରି ଦଶଫୁଟ ଉଚ୍ଚା ଓ ଦଶଫୁଟ ଚଉଡ଼ାର କୋଲାଜ୍‌ଟିକୁ ତିଆରି କରି ସଂଗ୍ରହାଳୟକୁ ଉଠେଇ ଆଣି ଉଦ୍ଦିଷ୍ଟ କାନ୍ଥରେ ଖଞ୍ଜି ଦେଲୁ । ତା ଆଗରେ ପିତଳ ଦୀପ ଥୁଆ ହେଲାପରେ ସେଇ ଖଣ୍ଡକ ବର୍ଣ୍ଣ ମାଧୁର୍ଯ୍ୟରେ ଏମିତି ଚମକି ଉଠିଲା ଯେ ସଂଗ୍ରହାଳୟ ସତେ କମ୍ପିଗଲା । ଅଓ୍ୱଧ ନାରାୟଣ ଏବଂ ସୁବାସ ପାଣିଙ୍କ ମନରେ ଆମ କଲେଜର କାମ ପ୍ରତି ଆହୁରି ଆତ୍ମବିଶ୍ୱାସ ବଢ଼ିଗଲା । ସଂଗ୍ରହାଳୟର ମୋର ପ୍ରାକ୍ତନ ସହକର୍ମୀଙ୍କ ମନରେ ଏବେ ଅସୂୟାର ମାତ୍ରା ଜୋର ଧରିଲା । ପ୍ରଧାନମନ୍ତ୍ରୀ ଦୀପ ପ୍ରଜ୍ଜ୍ୱଳନ କରି ଫେରିଗଲେ । ତା' ପରଦିନ ନିଜ ସୁରକ୍ଷାକର୍ମୀଙ୍କ ଗୁଳିରେ ନିଜ ବାସଭବନ ହତା ଭିତରେ ପ୍ରଧାନମନ୍ତ୍ରୀ ଟଳି ପଡିଲେ । ସବୁ ଘଟଣା ଇତିହାସରେ ରୂପାନ୍ତରିତ ହୋଇଗଲା । ଆଗରୁ କରାଯାଇଥିବା ନିଷ୍ପତ୍ତିକ୍ରମେ କୋଲାଜ୍ ପ୍ରସ୍ତୁତି ବାବଦକୁ ଦଶ ହଜାର ଟଙ୍କାର ଗୋଟିଏ ବିଲ୍ ସଂଗ୍ରହାଳୟ ଅଧ୍ୟକ୍ଷଙ୍କ ନିକଟକୁ ମୁଁ ପଠେଇ ଦେଲି । ତା'ର କିଛିଦିନ ପରେ ଏମିତି ସଂଗ୍ରହାଳୟ ଆଡେ ବୁଲିବାକୁ ଯାଇ ଅଧ୍ୟକ୍ଷଙ୍କ ଅଫିସରେ ପଶିଗଲି । ଅଧ୍ୟକ୍ଷ ଖୁବ୍ ଗମ୍ଭୀର ଭାବେ ନିଜ ଚୌକିରେ ଗାଲରେ ହାତଦେଇ ବସିଛନ୍ତି । ତାଙ୍କ ଟେବୁଲର କଡ଼େ ଚିନ୍ତାମଗ୍ନ ଅବସ୍ଥାରେ ନିଜ ନିଜ ଆସନରେ ହଜି ଯାଇଛନ୍ତି କ୍ୟୁରେଟର୍ ରମେଶ ପ୍ରସାଦ ମହାପାତ୍ର ଓ ଭୁବନେଶ୍ୱର ସାମଲ । ପରେ ଅବଶ୍ୟ ଜାଣି ହେଲା ସେମାନେ 'କୋଲାଜ୍' ବିଲ୍‌କୁ ନେଇ ଆଲୋଚନା କରୁଛନ୍ତି ।

Digitized by srujanika@gmail.com

ମୋତେ ତାଙ୍କ ଅଫିସରେ ଦେଖିଦେଇ ଅଧୀକ୍ଷକ ବାଘ ହରିଣ ଉପରକୁ ଝାମ୍ପ ଦେଲା ଭଙ୍ଗିରେ ପ୍ରଶ୍ନବାଣଟିଏ ଫିଙ୍ଗିଦେଲେ । କ'ଣ ପାଠୀବାବୁ ଆପଣ ଶେଷରେ କଲେଜର କୌଣସି ଗୋଟିଏ ବିଲ୍‌କୁ ଆମ ପାଖକୁ ପଠେଇ ଦେଇ କହୁଚନ୍ତି କ'ଣ ନା 'କୋଲାଜ୍' । ମୁଁ ହଠାତ୍ ତାଙ୍କ ପ୍ରଶ୍ନର ମର୍ମ ବୁଝିପାରିଲି ନାହିଁ । ପରେ ମୋର ହୃଦ୍‌ବୋଧ ହେଲା ଯେ ସେମାନେ କୋଲାଜ୍ ଶବ୍ଦର ବନାନକୁ ନେଇ ଭ୍ରମରେ ପଡ଼ିଛନ୍ତି । କୋଲାଜ୍ ଓ କଲେଜର ବନାନ ଭିତରେ ଇଂରାଜୀ 'a' ଏବଂ 'e' ର ପ୍ରଭେଦ । ଯିମିତି ଭଂଜଙ୍କ କବିତା: ''ବିଷ୍ଣୁପଦୀ ବିଷ୍ଣୁପଦ ଈକାର ଭେଦ ଶବଦ । ତରଣୀର ଗତାଗତ ତହିଁ ଉଚିତ'' ଧାଡ଼ିରେ ବନାନଗତ ପ୍ରଭେଦ ଅଛି । ଏଇ ପ୍ରଭେଦ ନ ବୁଝିଲେ କବିତାର ଉଦ୍ଦେଶ୍ୟ ଅବୁଝା ରହିଯିବ ।

ଆର୍ଟିଷ୍ଟ୍ ଭାବେ ଆମେ ଅଧ୍ୟୟନ କାଳରେ କଲେଜର ପ୍ରଥମ ବର୍ଷରେ ହିଁ କୋଲାଜ୍ ସଂପର୍କରେ ସଚେତନ ଏବଂ ତାର ବନାନ ଆମ ମୁଖପଇଠ । ମୁଁ ଖୁବ୍ ଆତ୍ମପ୍ରତ୍ୟୟର ସହିତ କହିଲି 'କୋଲାଜ୍'ର ବନାନ କଲେଜ ଅପେକ୍ଷା ଭିନ୍ନ: ଆପଣ ଇଂରାଜୀ ଅଭିଧାନ ଦେଖିପାରନ୍ତି । ସଂଗେ ସଂଗେ ଅଧୀକ୍ଷକଙ୍କ ଷ୍ଟେନୋ ଅକ୍ସଫୋର୍ଡ୍ ନେଇ ପହଞ୍ଚିଗଲା । ରମେଶ ପ୍ରସାଦ ମହାପାତ୍ର ମୂଳ ଆଡୁ ପୃଷ୍ଠା ଓଲଟାଇ 'c' ପାଖରେ ପହଞ୍ଚି 'କୋଲାଜ୍' ଶବ୍ଦକୁ ଖୋଜିଲେ, ପାଇଲେ ନି । ମୋ ପ୍ରତି ସେମାନଙ୍କ ସନ୍ଦେହ ପୁଣି ବଢ଼ିଗଲା । ମୁଁ ସୂଚେଇ ଦେଲି 'କୋଲାଜ୍' ଫ୍ରେଞ୍ଚ ଶବ୍ଦ ହେତୁ ଡିକ୍ସିନାରୀର ପଛଆଡୁ ଦେଖିବାକୁ ହେବ । ତାପରେ ସେ ସମସ୍ତେ ଆକ୍ରମଣାତ୍ମକ ଭୂମିକାରୁ ଓହରି ଆସି, ନିଜ ନିଜ ମୁଖ ଭଙ୍ଗିମାନ ପରିବର୍ତ୍ତନ କରି ମୋତେ ଆଶ୍ୱାସନାର କଥା ଶୁଣେଇଲେ । ମୋର ଜିତାପଟ ହେଲା ବୋଲି ମହାପାତ୍ରେ କହିଲେ । ସଂଧ୍ୟାବେଳେ ଚିରାଚରିତ ଢଙ୍ଗରେ ଭୋଗରାଗର ବ୍ୟବସ୍ଥା ମୋତେ କରିବାକୁ ହେଲା ।

ସ୍ୱର୍ଣ୍ଣଜୟନ୍ତୀ ଉତ୍ସବର ସବୁଠାରୁ ସ୍ମରଣୀୟ ଘଟଣା ଥିଲା ସଂଗ୍ରହାଳୟ ଚଟାଣରେ ଓଡ଼ିଆ ଝୋଟି । ସେହି ସ୍ମରଣୀୟ ଘଟଣାକୁ ଆହୁରି ଅଧିକ ସ୍ମରଣୀୟ କରିଦେଲା ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କ ଆକସ୍ମିକ ମର୍ମନ୍ତୁଦ ମୃତ୍ୟୁ । ସମଗ୍ର ବିଶ୍ୱକୁ ସ୍ତବ୍ଧ ଚକିତ କରିଦେଲା ଭଳି ଏହି ଘଟଣାର ଆଜିସୁଦ୍ଧା ଅନ୍ତ ହୋଇନାହିଁ । ଏହି ଘଟଣା ସହିତ ସ୍ମୃତିର କେଉଁ ଏକ ନିଭୃତ କୋଣରେ ପଦ୍ମମଣ୍ଡଳ ଝୋଟିର ରୂପସୌନ୍ଦର୍ଯ୍ୟ ଛପି ରହି ମୋତେ ଉନ୍ମାଦିତ କରିଦେଉଛି ।

Digitized by srujanika@gmail.com

# ୪୪. ମଧ୍ୟରାତ୍ରୀ ଚିତ୍ରାଳାପ

ଉତ୍ସବ ମାଧ୍ୟମରେ ନୂତନ ବର୍ଷକୁ ସ୍ୱାଗତ କରିବାର ଆବଶ୍ୟକତା ଭୁବନେଶ୍ୱରରେ ଚାକିରି କରିବା ପରେ ମୁଁ ଶିଖିବା ଆରମ୍ଭ କଲି । ସଚିବାଳୟରେ ବିଭିନ୍ନ ବିଭାଗର ନବବର୍ଷ-ପତ୍ରର ଡିଜାଇନ୍ ମୋତେ କରିବାକୁ ପଡୁଥିଲା ବନ୍ଧୁତା ଖାତିରିରେ । ଜାନୁଆରୀ ପହିଲାଦିନ ଫୁଲତୋଡ଼ା ଦେଇ ଆମେ ବରିଷ୍ଠ ସହକର୍ମୀ ଓ ହାକିମମାନଙ୍କୁ ସ୍ୱାଗତ କରୁଥିଲୁ । ଏଇଥିପାଇଁ ତଳିଆ କର୍ମଚାରୀଙ୍କ ମଧ୍ୟରେ ପ୍ରବଳ ଉତ୍ସାହ ଦେଖାଯାଉଥିଲା । କିଛିବର୍ଷ ଉତ୍ତାରେ ସଚିବାଳୟର କବିଭାବାପନ୍ନ କର୍ମଚାରୀମାନେ ତଥା ଛୋଟ ବଡ଼ କବିମାନେ ନିଜ ସରକାରୀ ଘରମାନଙ୍କରେ କବିତା ପାଠୋତ୍ସବମାନ ଅନୁଷ୍ଠିତ କରି ବିଭିନ୍ନ ସ୍ତରର ବନ୍ଧୁମାନଙ୍କୁ ନିମନ୍ତ୍ରଣ କରୁଥିଲେ । ଡିସେମ୍ବର ଏକତିରିଶି ରାତିରେ ଏହି କବିତା ପାଠୋତ୍ସବମାନ ଆୟୋଜନ କରାଯାଉଥିଲା । ଏଭଳି କାର୍ଯ୍ୟକ୍ରମ ମାନଙ୍କରେ ମୋର ଅସମ୍ଭବ ଆଗ୍ରହ ଥିଲା ।

ତା'ପରେ ଭୁବନେଶ୍ୱରର ରାଜଧାନୀ ସାହିତ୍ୟ ସଂସଦ ପକ୍ଷରୁ ଏକ ନମ୍ବର ମାର୍କେଟ ବିଲ୍‌ଡିଙ୍ଗ୍ କୋଠା ଆଗରେ ଖୋଲାରେ ନିଆଁଜାଳି ରାତିଅଧିଆ କବିତା ଆସରରେ ମୁଁ ଯୋଗଦେଇଛି । ଅଖିଳ ମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ ପ୍ରଭୃତି ନିଦା ସାହିତ୍ୟିକମାନେ ଏସବୁ ଆସରରେ ଯୋଗଦେବାର ମୁଁ ଦେଖିଛି । ମୋଟାମୋଟି ଭାବେ ଏ ଉତ୍ସବଗୁଡିକ ଥିଲା ଗୋଦାବରୀଶ ସାହିତ୍ୟ ସଂସଦ ଓ ରାଜଧାନୀ ସାହିତ୍ୟ ସଂସଦର ମିଳିତ ଆୟୋଜନ ।

ମୁଁ ଭାବିଲି କବିତାକୁ ନେଇ ଯଦି ଆସର ଅନୁଷ୍ଠିତ ହୋଇପାରୁଛି, ଚିତ୍ରକୁ ଅବଲମ୍ବନ କରି ସେଭଳି ମଧ୍ୟ-ରାତ୍ରୀର ନବବର୍ଷ ସ୍ୱାଗତ ଆସର ମଧ୍ୟ ହେଇପାରିବ । ଅଧ୍ୟାପକ ବନ୍ଧୁମାନେ ମୋ ପ୍ରସ୍ତାବକୁ ସ୍ୱୀକୃତି ଦେଲେ ଆଉ ଆମେ କାର୍ଯ୍ୟକ୍ରମକୁ ଫଳବତୀ କରିବାରେ ଲାଗିପଡିଲୁ । ଆମେ ଏହି କାର୍ଯ୍ୟକ୍ରମର ନାମକରଣ କଲୁ 'ମିଡ୍‌ନାଇଟ୍ ପେଣ୍ଟିଙ୍ଗ୍ ରିସାଇଟଲ୍' ବା 'ମଧ୍ୟରାତ୍ରୀ ଚିତ୍ରାଳାପ' । 'ରିସାଇଟଲ୍' ଶବ୍ଦକୁ ନେଇ କଲେଜ ବାହାରର କବିବନ୍ଧୁମାନେ ଆପତ୍ତି ଉଠେଇଲେ । ସେମାନଙ୍କର କହିବା କଥା ହେଲା କବିତା ବା ଗୀତ ସିନା ଉଚ୍ଚାରିତ ହେଇପାରିବ, ପାଠ ହେଇପାରିବ ବା ବୋଲାଯାଇପାରିବ, ଚିତ୍ର

Digitized by srujanika@gmail.com

କିଭଳି ଆବୃତ୍ତି କରାଯାଇପାରିବ ? ବନ୍ଧୁମାନେ କବି ହୋଇ ମଧ୍ୟ ରିସାଇଟଲ୍‌ର ଆକ୍ଷରିକ ଅର୍ଥକୁ ନେଇ ଘଟଣାଟିକୁ ତର୍ଜମା କରିବାକୁ ଲାଗିଲେ । ବର୍ଣ୍ଣ ମୂଳତଃ ଅକ୍ଷର ଓ ଯାହା ବର୍ଣ୍ଣିଳ ତାହା ବିଭିନ୍ନ ଅକ୍ଷରର ଓ ଅର୍ଥର ସମାହାର, ଏକଥା ସେମାନେ ଦେଖି ପାରିଲେ ନାହିଁ । ବର୍ଣ୍ଣ ଦ୍ୱିଅର୍ଥକ, ଏହା ଉଭୟତଃ ଅକ୍ଷର ଓ ରଙ୍ଗ ବା ଶବ୍ଦ ଓ ଦୃଶ୍ୟମୟତା । ଚିତ୍ର କେବଳ ବର୍ଣ୍ଣଯୁକ୍ତ ଗୋଟିଏ ପଟ ବା କାଗଜ ନୁହେଁ । ଏହା ମଧ୍ୟ ଭାବର ଓ ଭାଷାର ଦ୍ୟୋତନା ଦିଏ । ଯିମିତି କବି ଭାଷା ସିମିତ ଚିତ୍ର ଭାଷା ମଧ୍ୟ । ଏଣୁ ଆମେ ଚିତ୍ରର ସଂଳାପ କିଛି କହି ଭୁଲ କରିନାହୁଁ । ଏବେ ରିସାଇଟଲ୍ ଶବ୍ଦକୁ ଅନେକ ଭାବରେ ବ୍ୟବହାର କରାଯାଇପାରୁଛି । ଆଜିକାଲି ଡାନ୍ସ ପରଫରମାନ୍‌ସ ବା ନୃତ୍ୟ ଅନୁଷ୍ଠାନ ନ ହୋଇ ରିସାଇଟଲ୍ ବା ଆବୃତ୍ତି ହେଉଛି । ଆମ ଭିତରୁ କିଏ ଜଣେ ବନ୍ଧୁ କହିଲେ ଯଦି କବିର କଲମରେ କଥା କହିବାର ଶକ୍ତି ଅଛି ଆମ ତୂଳୀର ମୂନରେ ଜୀବନୀ ଶକ୍ତି ପର୍ଯ୍ୟାପ୍ତ ପରିମାଣରେ ଭରପୂର ଏବଂ ତାହା କଥା କହେ, ସଂପର୍କ ଯୋଡ଼େ, ତେଣୁ ଚିତ୍ରକୁ ସାଇଲେଣ୍ଟ୍ ପୋଏଟ୍ରି ବା ନୀରବ କାବ୍ୟ ବୋଲି ଅଭିହିତ କରାଯାଇଛି ।

ଏଥିରେ ସବୁ ଅଧ୍ୟାପକ ଯୋଗ ଦେବାର ସୁବିଧା ନଥିଲା । ବ୍ୟୋମକେଶ ମହାନ୍ତି କଟକରେ ରହୁଥିଲେ । ଚନ୍ଦ୍ରମଣି ବିଶ୍ୱାଳଙ୍କ ଏଭଳି କାର୍ଯ୍ୟକ୍ରମରେ ଆଗ୍ରହ ନଥିଲା, ବିଶ୍ୱାସ ବି ନଥିଲା । ତାଙ୍କର ଧାରଣା ଥିଲା ସିଲାବସ୍ ବର୍ହିଭୂତ କାର୍ଯ୍ୟକ୍ରମ କଲେଜରେ ଅନୁଷ୍ଠିତ ହେବା ବିଧେୟ ନୁହେଁ । ଏହା ସଂପୂର୍ଣ୍ଣ ଖଲ୍ଲିକୋଟ ମାନସିକତା । ଶାନ୍ତିନିକେତନର କଳା ଭବନରେ ଗୀତ, ସଂଗୀତ, ନାଟ, ତାମସା ବା ଏଭଳି ଅନେକ ସ୍ୱୀକୃତ କାର୍ଯ୍ୟକ୍ରମ ସିଲାବସ୍ ବହିର୍ଭୂତ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦୃଷ୍ଟିରେ ଶିକ୍ଷାର ବ୍ୟାପକତା ଓ ବିଶ୍ୱାୟନତା ଶାନ୍ତିନିକେତନକୁ ବିଶ୍ୱରେ ଏକ ଅନନ୍ୟ ବିଶ୍ୱବିଦ୍ୟାଳୟ କରି ଗଢ଼ି ଦେଇଥିଲା । ସେଭଳି ଗୋଟିଏ ଅନୁଷ୍ଠାନରୁ ଶିକ୍ଷାଲାଭ କରିଥିବା ଖଲ୍ଲିକୋଟର ବହୁ ଅଧ୍ୟାପକ ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟରେ ଶୈକ୍ଷିକ ପରମ୍ପରାଟିଏ ମଧ୍ୟ ଗଢ଼ିବାରେ ସମର୍ଥ ହୋଇ ନଥିଲେ । ଆର୍ଟ୍ କଲେଜର ସରକାରୀ ସିଲାବସ୍ ଉପଯୁକ୍ତ ଶିଳ୍ପୀ ଗଢ଼ିପାରେ ନାହିଁ, ପୁଣି ଚିତ୍ରକଳାର ବ୍ୟାପକ ଅବବୋଧ ଭିତରେ ସଂକୀର୍ଣ୍ଣତାର ସ୍ଥାନ ନାହିଁ । ଏଭଳି ଗୋଟିଏ ସଂକୀର୍ଣ୍ଣ ମନୋବୃତ୍ତିକୁ ଆମେ ଖଲ୍ଲିକୋଟ ମାନସିକତା କହୁଛୁ । କଟକରେ ରହୁଥିବା ଅଧ୍ୟାପକ ଶିବ ପାଣିଗ୍ରାହୀ ବେଳେବେଳେ ମଧ୍ୟରାତ୍ରୀ ଆସରରେ ଯୋଗ ଦିଅନ୍ତି ତ ଆଉ କେବେ କେବେ ଆସି ପାରନ୍ତି ନାହିଁ । ଆମେ ସମଭାବାପନ୍ନ ବହୁ ବନ୍ଧୁଙ୍କୁ ମଧ୍ୟରାତ୍ରୀ ଚିତ୍ର ଆଳାପରେ ଯୋଗଦେବା ପାଇଁ ନିମନ୍ତ୍ରଣ କରିଥାଉ । ସେମାନଙ୍କ ମଧ୍ୟରେ ଥାଆନ୍ତି ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ, କାଶୀନାଥ ଜେନା, ରାମହରି ଜେନା, ଅଧ୍ୟାପକଙ୍କ ମଧ୍ୟରୁ ଯେଉଁମାନେ ଆଗଭର ହୋଇ ଯୋଗଦେଇଥାନ୍ତି ସେମାନେ ହେଲେ ଡି.ଏନ୍.ରାଓ, ବଳଦେବ

Digitized by srujanika@gmail.com

ମହାରଥୀ, ଗଜେନ୍ଦ୍ର କୁମାର ପାଢ଼ୀ, ଗଜେନ୍ଦ୍ର ପ୍ରସାଦ ସାହୁ , ଜୟନ୍ତ କୁମାର ଦାସ ଇତ୍ୟାଦି । ବହୁ ଛାତ୍ରଛାତ୍ରୀ ଆଗଭର ହୋଇ ଏହି କାର୍ଯ୍ୟକ୍ରମରେ ଯୋଗଦେଇଥାନ୍ତି । ସେମାନଙ୍କ ମଧ୍ୟରେ ଥାଆନ୍ତି ଅଞ୍ଜନ କୁମାର ସାହୁ, ସୁବ୍ରତ କୁମାର ମଲ୍ଲିକ, ଜୟନ୍ତ କୁମାର ପଣ୍ଡା, ରଶ୍ମୀରେଖା ପଣ୍ଡା, ଅପର୍ଣ୍ଣା ରାୟ, ଶୋଭନ କୁମାର, ସଜଲ ପାତ୍ର, ଅତସୀ ବସୁ, ଅଶ୍ୱିନୀ ମହାନ୍ତ, ସୁଶାନ୍ତ ମହାନ୍ତି, ସଂଗ୍ରାମ କର, ଜ୍ୟୋତି ପାଣିଗ୍ରାହୀ, କମଳାକ୍ଷ କାନୁନ୍‌ଗୋ, ଦିଲ୍ଲୀପ ଦାସ, ମହେଶ ଆଚାର୍ଯ୍ୟ, ଅମରେଶ ବାଁଶୁରୀ, ଦିଲ୍ଲୀପ କୁମାର ତ୍ରିପାଠୀ ପ୍ରଭୃତି । ସହଯୋଗୀଙ୍କ ସଂଖ୍ୟା ବେଳେ ବେଳେ ପଚାଶ ଷାଠିଏକୁ ଟପିଯାଏ । କଲେଜର ସମ୍ବଳ ଥିଲେ ଆମେ ଯତ୍ ସାମାନ୍ୟ ରଙ୍ଗ ସାହାଯ୍ୟ ଦେଇଥାଉ । ଅନ୍ୟଥା କି ଅଧ୍ୟାପକ କି ଛାତ୍ର ସମସ୍ତେ ନିଜ ନିଜ କାନଭାସ୍, ତୂଳୀ ଓ ରଙ୍ଗ ସାଙ୍ଗରେ ଆଣିଥାନ୍ତି ।

ଏ ଭଳି ଆସରର ମୁଖ୍ୟ ଆକର୍ଷଣ ହେଲା ଦୁଇଟି; ଗୋଟିଏ ଚିତ୍ର, ଅନ୍ୟଟି ଖାଦ୍ୟ । ସାମୂହିକ ଖନ୍ଦା ଲାଗେ । ଭାତ ଡାଲମା ହୁଏ । କଲେଜର ଭୁବନା, ଫକୀର, ମଙ୍ଗରାଜ ଅଶୋକ ସେହି ଦାୟିତ୍ୱ ମୁଣ୍ଡେଇଥାନ୍ତି । ଅଧ୍ୟକ୍ଷ ନିରାମିଷଭୋଜୀ ବୋଲି ମାଛ ମାଂସ ପଶେନି । କିନ୍ତୁ ବେଳେବେଳେ ଚିକେନ୍ ବା ମଟନ୍ ହେବାରେ ବାଧକତା ନଥାଏ । ଭୋଜି ପାଇଁ ଚାନ୍ଦା ହୁଏ କିନ୍ତୁ ଶେଷରେ କଲେଜ ବା ଅଧ୍ୟକ୍ଷ ତାକୁ ସମ୍ଭାଳନ୍ତି । ଏବେ ଏସବୁ ଭାବି ବସିଲା ବେଳକୁ ଆଚମ୍ବିତ ଲାଗେ । ସେତେବେଳେ କିମିତି ଏତେ ସବୁ ଆୟୋଜନ ସମ୍ଭବ ହୋଇପାରୁଥିଲା । ଦିନସାରା ଛାତ୍ରମାନେ ଓ କଲେଜର କର୍ମଚାରୀମାନେ ଡାଲି, ଚାଉଳ ପରିବା ତେଲ ଯୋଗାଡ଼ରେ ଲାଗିଯାଆନ୍ତି । ଭୁବନା ରୁମ୍‌ରେ ସବୁ ଦାଖଲ ହୁଏ । ସନ୍ଧ୍ୟାହେଲେ କାନଭାସ୍ ଆଉ ରଙ୍ଗ ତୂଳୀ ନେଇ ବାଘ ପାଣିକୁ ଗଡ଼ିଲା ଭଳି ଜଣ ଜଣ ହୋଇ ଶିଳ୍ପୀ ବନ୍ଧୁଏ ଗଡ଼ନ୍ତି । ମୁଁ ଆଉ ଘରକୁ ନ ଫେରି ରାତିରେ କଲେଜରେ ସମସ୍ତଙ୍କ ଆସିବାକୁ ଅପେକ୍ଷାରେ ଥାଏ ।

ଗପର ଆସର ଜମେ । ବିଦାୟୀ ବର୍ଷର ସୁଖଦୁଃଖ, ଜଞ୍ଜାଳ ଝଂଝଟ ଗପର ମୁଖ୍ୟ ଉପାଦାନ ହୁଏ । ସମସ୍ତଙ୍କ ମନ ଭିତରେ ଗର୍ବବୋଧ ଥାଏ ଆମେ ସମସ୍ତେ ମିଳି ମିଶି କଲେଜ ଗଢୁଛୁ । ସମସ୍ତେ ଅନୁମାନ କରିପାରନ୍ତି କାଶୀ ସାର୍ (କାଶୀନାଥ ଜେନା) କଟକ ଆଡୁ ସାମାନ୍ୟ ଚଢ଼େଇ ଦେଇ ଆସିଛନ୍ତି । ଆର୍ଟିଷ୍ଟଙ୍କ ଅଭ୍ୟାସ ଭିତରେ ନିଶାପାଣି ସାମାନ୍ୟ କଥା । ନିଶାପାଣିର ଶୈଳ୍ପିକ ପରିଭାଷା ହେଲା ଟିକିଏ ମୁଡ୍ କରିବା । ପିଲାମାନେ କାଶୀ ସାର୍‌ଙ୍କ ସାଙ୍ଗରେ ଗପ ଜମାନ୍ତି, ଥଟ୍ଟା, ତାମସା ବି ଚାଲେ । ଛାତ୍ର ଓ ଅଧ୍ୟାପକ ଭିତରର ତଥା କଥିତ ପାଚେରି ଭୁଶୁଡି ପଡେ, କିନ୍ତୁ ସଂଭ୍ରମ ଥାଏ । ବନ୍ଧୁମାନେ ଅଧ୍ୟକ୍ଷଙ୍କ ନିକଟରେ ବହୁ ଅସଂଗତି ଲୁଚେଇବା ପାଇଁ ଚାହୁଁଥାନ୍ତି, କିନ୍ତୁ କୌଣସି କଥା ଲୁଚିରହେନି । ଅତ୍ୟନ୍ତ ଦୁଃଖର କଥା କାଶୀ ଆଉ ଆମ ଗହଣରେ ନାହିଁ ।

Digitized by srujanika@gmail.com

ପ୍ରଥମ ମହଲାର ଫାଷ୍ଟ୍‌ଇଅର୍ ଶ୍ରେଣୀ ଗୃହ, ତତ୍‌ସଂଲଗ୍ନ ବାରଣ୍ଡାରେ ଆସର ପାଇଁ କାନ୍‌ଭାସ୍ କାଟ୍ରୁକୁ ଡେରିଆ ହେଇ ଥୁଆଯାଏ । କାନଭାସ ଅଦଳ ବଦଳ ହେଇଯିବା ଭୟରେ ଅଧିକାଂଶ କାନ୍‌ଭାସ୍ ଉପରେ ପ୍ରଥମେ ସନ୍ତକ କରିଦିଅନ୍ତି । ଖା' ପିଅ ସରୁ ସରୁ ଏଗାର ସାଢ଼େ ଏଗାର ହୁଏ । ତାପରେ ମଧ୍ୟରାତ୍ରର ସେହି ଅନାଗତ, ଅଥଚ ବହୁ ଆକାଂକ୍ଷିତ ସ୍ୱପ୍ନର ନବମୁହୂର୍ତ୍ତଟିକୁ ଅପେକ୍ଷା । ବ୍ରିଟିଶ ସରକାର ଅଗଷ୍ଟ ଚଉଦ ମଧ୍ୟରାତ୍ରୀରେ ଘଣ୍ଟାରେ ବାରଟା ବାଜି ମିନିଟ୍‌କଣ୍ଟା ଆଗକୁ ଆଗେଇଲା କ୍ଷଣରେ ଆମକୁ ବହୁ ଈପ୍‌ସିତ ସ୍ୱାଧୀନତା ଫେରାଇଦେଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହର ଲାଲ ନେହେରୁ ଭାରତୀୟଙ୍କ ଭାଗ୍ୟର ଅଭ୍ୟୁଦୟ କଥା ତାଙ୍କ ଭାଷଣରେ କହିଥିଲେ ଯାହା ଏବେ ଇତିହାସ । ବି.କେ. ଚାରୁକଳା ମହାବିଦ୍ୟାଳୟରେ ବର୍ଷ ବର୍ଷ ଧରି ଡ଼ିସେମ୍ବର ଏକତିରିଶି ମଧ୍ୟରାତ୍ରୀରେ ଘଣ୍ଟାରେ ଠିକ୍ ବାରଟା ବାଜିବା ପରେ ପରେ ନବବର୍ଷକୁ ସ୍ୱାଗତ କରି କାନଭାସ୍ ଉପରେ ତୂଳୀର ପ୍ରଥମ ବର୍ଣ୍ଣମାଧୁରୀ ଚୁମ୍ବି ଦେଲାପରେ ସମସ୍ତେ ଏକା ସ୍ୱରରେ ନବବର୍ଷକୁ ସ୍ୱାଗତ କରୁଥିଲେ ଓ ପରସ୍ପରକୁ ଆଲିଙ୍ଗନ କରୁଥିଲେ ପୁଣି ନିଜ ନିଜ ପ୍ରତିଜ୍ଞା ଓ ପ୍ରତିଶ୍ରୁତି ଦୋହରାଉଥିଲେ ଆମେ ବିଭେଦ ଭୁଲି ଆଗେଇବା, ଗୋଟିଏ ବଳିଷ୍ଠ ଶିଳ୍ପୀ ସମାଜ ଗଢ଼ିବା, ଏହି କଲେଜର ସୁନାମ ଆମର ଧ୍ୟେୟ ହେବ । 'ମିଡ୍ ନାଇଟ୍ ପେଣ୍ଟିଙ୍ଗ୍ ରିସାଇଟେଲ୍' ଘଟଣାଟି ଏ ଜାତିର ଇତିହାସ ହେଇନଥିଲେ ମଧ୍ୟ ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟର ଇତିହାସରେ ସ୍ମରଣୀୟ ହେଇରହିବ ।

ସକାଳ ହେବା ପୂର୍ବରୁ ଚିତ୍ରସବୁ ଶେଷ ହେଇଯାଉଥିଲା । କାନ୍ଥରେ ସେଗୁଡିକ ପ୍ରଦର୍ଶନ କରିଦେଇ ଶିଳ୍ପୀମାନେ ଯେଝା ଘରକୁ ବାହୁଡୁଥିଲେ । ନବବର୍ଷର ପ୍ରଥମ ସକାଳରେ କଲେଜ ଖୋଲିବା ସାଂଗେ ସାଂଗେ ଏତେ ବର୍ଣ୍ଣ ଓ ରୂପର ଝଲକ ଛାତ୍ରଛାତ୍ରୀଙ୍କୁ ନବବର୍ଷର ଶୁଭେଚ୍ଛାରେ ମୋହି ଦେଉଥିଲା ।

Digitized by srujanika@gmail.com

# ୪୫. ଭୁବନେଶ୍ୱରରେ ଇନ୍‌ଟାକ୍

ଭାରତ ସ୍ୱାଧୀନ ହେବା ଆଗରୁ ଇଂରେଜ ସରକାର ଭାରତର ମନ୍ଦିର, ମଠ, ବିହାର, ସ୍ତୂପ, ଗୁମ୍ଫା, ମସଜିଦ ପ୍ରଭୃତି ସକଳ ସ୍ଥାପତ୍ୟ ଓ କଳାକୃତି ତଥା ପ୍ରତ୍ନତାତ୍ତ୍ୱିକ ସଂପଦର ରକ୍ଷଣାବେକ୍ଷଣ ପାଇଁ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଗଠନ କରିଥିଲେ । ଭାରତ ସ୍ୱାଧୀନତା ଲାଭ କଲାପରେ ଏହି ସଂସ୍ଥାର ଗୁରୁତ୍ୱ ଆହୁରି ବୃଦ୍ଧି ପାଇଲା ଏବଂ ପ୍ରତି ରାଜ୍ୟରେ ଅନୁରୂପ ସଂଗଠନମାନ ରୂପନେଲା । କିନ୍ତୁ ଦେଖାଗଲା ଭାରତବର୍ଷରେ ଯେତେ ପ୍ରାଚୀନ, ମଧ୍ୟଯୁଗୀୟ ଏଭଳିକି ଶହେ ଦେଢ଼ଶହ ବର୍ଷ ତଳର ପୁରୁଣା କୀର୍ତ୍ତି ଅଛି ସେଗୁଡ଼ିକର ଉପଯୁକ୍ତ ଯତ୍ନ ନେବା ପାଇଁ ଅମ ଦେଶରେ ସମ୍ବଳର ଅଭାବ । ଏଣୁ କିଛି ସଂସ୍କୃତିସଚେତନ ବ୍ୟକ୍ତି ସମୟର କରାଳ ଗର୍ଭରୁ ଏବଂ ଅବକ୍ଷୟରୁ ଏହି ଦୁର୍ମୂଲ୍ୟ ଐତିହ୍ୟର ଉଦ୍ଧାର ପାଇଁ ଗୋଟିଏ ବେସରକାରୀ ସଂସ୍ଥାର ପରିକଳ୍ପନା କଲେ । ଏହାର ପୃଷ୍ଠପୋଷକ ଥିଲେ ଇନ୍ଦିରା ଗାନ୍ଧି, ମାର୍ତ୍ତଣ୍ଡ ସିଂହ, ପୁପୁଲ୍ ଜୟକର, କପିଳା ବାତ୍ସାୟନ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ । ଓଡ଼ିଶାର ବିଜୟାନନ୍ଦ (ବିଜୁ) ପଟ୍ଟନାୟକ ମଧ୍ୟ ପ୍ରତିଷ୍ଠାତା ସଭ୍ୟ ଭାବେ ଏହାର ଅଭିବୃଦ୍ଧିରେ ସହାୟକ ହୋଇଥିଲେ । ବିଗତ ଶତାବ୍ଦୀର ଅଶିଏ ଦଶକ ପ୍ରାରମ୍ଭରେ ଏହି ସଂସ୍ଥାର ରୂପରେଖ ପରିସ୍ଫୁଟ ହେଇସାରିଥିଲା । ଏହାକୁ କୁହାଯାଉଥିଲା ଇଣ୍ଡିଆନ୍ ନ୍ୟାସନାଲ୍ ଟ୍ରଷ୍ଟ ଫର୍ ଆର୍ଟ୍ ଆଣ୍ଡ୍ କଲଚରାଲ୍ ହେରିଟେଜ୍ ବା କ୍ଷୁଦ୍ରରେ ଇନ୍‌ଟାକ୍ । ଇନ୍‌ଟାକ୍ କେବଳ ଭାରତୀୟଙ୍କ ମଧ୍ୟରେ ବା ଭାରତବର୍ଷ ମଧ୍ୟରେ ସୀମିତ ନଥିଲା । ପୃଥିବୀର ଯେକୌଣସି ସଚେତନ ନାଗରିକ ଏହାର ସଭ୍ୟ ହେଇପାରୁଥିଲେ । ବ୍ରିଟେନ୍‌ରେ ଏହାର ଗୋଟିଏ ଶାଖା ମଧ୍ୟ ପ୍ରତିଷ୍ଠିତ ହେଇଥିଲା । ଏହାକୁ କୁହାଯାଉଥିଲା ଯୁକେ ଇନ୍‌ଟାକ୍ ଟ୍ରଷ୍ଟ । ଧନାଢ଼୍ୟ ବ୍ୟକ୍ତିମାନେ ଅକୁଣ୍ଠ ଚିତ୍ତରେ ଇନ୍‌ଟାକ୍‌କୁ ଅର୍ଥଦାନ କରୁଥିଲେ । ମୋ ବନ୍ଧୁ ଏବରହାର୍ଡ୍ ଫିସର୍ ଇନ୍‌ଟାକ୍ କଥା ଏବଂ ମାର୍ତ୍ତଣ୍ଡ ସିଂହଙ୍କ ଯୁକେ ଇନ୍‌ଟାକ୍ ଟ୍ରଷ୍ଟ ର ଅଭିବୃଦ୍ଧି ସଂପର୍କରେ ମୋତେ ପ୍ରଥମେ ସୂଚନା ଦେଇଥିଲେ । ଭାରତବର୍ଷର କିଛି ରାଜା ମହାରାଜା ମଧ୍ୟ ଇନ୍‌ଟାକ୍ ପାଣ୍ଠିକୁ ଅର୍ଥ ଦାନ କରିଥିଲେ ।

ଅଶି ଦଶକର ପ୍ରାରମ୍ଭରେ ଇନ୍‌ଟାକ୍ ସହିତ ଆଗରୁ ସଂପୃକ୍ତ ଥିବା ଯେଉଁ ବ୍ୟକ୍ତି ଜଣକ ବମ୍ବେରୁ ତାଙ୍କ ସିଲ୍କ ସ୍କ୍ରୀନ୍ ଷ୍ଟୁଡିଓ ସମେତ ଆସି ଭୁବନେଶ୍ୱରରେ ପହଞ୍ଚିଲେ, ସିଏ ହେଲେ ଅବସରପ୍ରାପ୍ତ ଓ୍ୱିଙ୍ଗ୍ କମାଣ୍ଡର୍ ବାବୁଲା ସେନାପତି, ଓଡ଼ିଶାର ପ୍ରଥମ

Digitized by srujanika@gmail.com

ଆଇ.ସି.ଏସ୍. ନୀଳମଣି ସେନାପତିଙ୍କ ପୁଅ । ତାଙ୍କ କଥା ଆଗରୁ ମଧ୍ୟ କହିଚି । ବମ୍ବେରେ ରହୁଥିବାବେଳେ ସେ ମୋ ସଂପର୍କରେ ମୁଲକ୍‌ରାଜ୍ ଆନନ୍ଦ ଏବଂ ଲାନ୍‌ସ୍ ଡେନ୍‌ଙ୍କ ଠାରୁ ସୂଚନା ପାଇଥିଲେ । ଆମ ଭିତରେ ପ୍ରଥମ ଦେଖାରେ ହିଁ ବନ୍ଧୁତା ଆରମ୍ଭ ହେଲା । ସେ କଲେଜକୁ ମଝିରେ ମଝିରେ ଆସନ୍ତି, କ୍ଲାସ ନିଅନ୍ତି । ସେ ଇନ୍‌ଟାକ୍‌ର ଗୋଟିଏ ଶାଖା ଭୁବନେଶ୍ୱରରେ ଖୋଲିବା କଥା କହିଲେ । ଆମ ଦୁହିଁଙ୍କ ଚିନ୍ତାର ତାଳମେଳ ହେଲା । ନୀଳମଣି ସେନାପତିଙ୍କ କୋଠାର ତଳ ବଖରାରେ ଇନ୍‌ଟାକ୍‌ର ଅଫିସ ଖୋଲିଲା । ଆମ ବନ୍ଧୁ ବିଜୟ ରଥ ପ୍ରତ୍ନତତ୍ତ୍ୱ ବିଭାଗର ଲୋକ, ମନ୍ଦିର ବିଶେଷଜ୍ଞ । ଆମେ ବିଜୟଙ୍କୁ ଆମ ଦଳରେ ସାମିଲ କଲୁ । ଧୀରେ ଧୀରେ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେବ, ତାଙ୍କ ରାଣୀ ବିଜୟ ଲକ୍ଷ୍ମୀ ସିଂହଦେବ,ଅବସରପ୍ରାପ୍ତ ମୁଖ୍ୟ ଶାସନ ସଚିବ ନଳିନୀ କାନ୍ତ ପଣ୍ଡା, ସୁବାସ ପାଣି, କ୍ଷୀରୋଦ ପଟ୍ଟନାୟକ , ଅନନ୍ତ ମହାପାତ୍ର ପ୍ରମୁଖ ଯୋଗ ଦେଲେ । ଇନ୍‌ଟାକ୍‌ର କଳେବର ବୃଦ୍ଧି ପାଇଲା ।

ବାବୁଲାଙ୍କ ଘରେ ଇନ୍‌ଟାକ୍‌ର ସଭା ବସେ । ବାବୁଲା ସମସ୍ତଙ୍କୁ ଜଳଯୋଗରେ ଆପ୍ୟାୟିତ କରନ୍ତି । ଇଂଲିଶ୍ ଆଦବ କାଏଦା । ସଭା ଶେଷରେ ଟୋଷ୍ଟ, ଅଣ୍ଡା ଆମଲେଟ୍ ବେଳେବେଳେ ଛତୁ ଆମଲେଟ୍ ଏବଂ ଚାହା ପରିବେଷଣ କରାଯାଏ । ବାବୁଲାଙ୍କ ଘରେ ପୁରୁଣା ଚମତ୍କାର ପଟଚିତ୍ର ସାଙ୍ଗକୁ ସୁଧୀର ଖାସ୍ତଗିର୍‌ଙ୍କ ପେଣ୍ଟିଙ୍ଗ୍, ପୁରୁଣା ପିତଳ ବାସନ, ପୋରସ୍‌ଲିନ୍ ଓ ବ୍ରିଟିଶ୍ ଅମଳର ଆସବାବପତ୍ର ଭରିହୋଇଥାଏ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ମଧୁର ସମନ୍ୱୟ । ପାଗ ଭଲଥିଲେ ବାବୁଲାଙ୍କ ବାଉଁଶ କୁଞ୍ଜ ଭିତରେ ଇନ୍‌ଟାକ୍‌ର ସଭା ହୁଏ । ସଭା ଶେଷରେ ବାବୁଲା ଗୋଲ ଗୋଲ ଅକ୍ଷରରେ ସଭାର ବିବରଣୀ ଲେଖନ୍ତି । ତା ପରଦିନ ସେ ବିବରଣୀ ନେଇ କଲେଜରେ ପହଞ୍ଚନ୍ତି । ତାଙ୍କର ଗୋଟିଏ ପୁରୁଣା ଫିଆଟ୍ ଗାଡ଼ି ଥାଏ । ସେଇଟା ତାଙ୍କ ବାପା ବ୍ୟବହାର କରୁଥିଲେ । ସେଇ ପୁରୁଣା ଫିଆଟ୍‌ଟି ଚଲେଇ ବାବୁଲା ସବୁଆଡ଼େ ଯିବା ଆସିବା କରନ୍ତି ।

ବାବୁଲା ଥାଆନ୍ତି ଇନ୍‌ଟାକ୍ ସଂସ୍ଥାର ପ୍ରଥମ ଆବାହକ ଆଉ ବିଜୟ ରଥ ହେଇଥାଆନ୍ତି ସେକ୍ରେଟାରୀ । କଲେଜ କାମର ଚାପ ହେତୁ ଇନ୍‌ଟାକ୍‌ର କୌଣସି ପଦପଦବୀରେ ରହିବା ପାଇଁ ମୁଁ ମନା କରିଦେଇଥାଏ । ବାବୁଲା କିନ୍ତୁ ଇନ୍‌ଟାକ୍‌ର ସବୁକାମରେ ମୋତେ ଓ କଲେଜକୁ ଛନ୍ଦି ଦେଇଥାନ୍ତି । ଆମେ ସଭା ବିବରଣୀରେ ସେକ୍ରେଟାରୀଙ୍କ ଦସ୍ତଖତ ପାଇଁ ବିଜୟ ରଥଙ୍କ କ୍ୱାର୍ଟସ୍‌କୁ ଯାଉ । ପୁଣି ସେଠୁ ଜେରକ୍ସ କପି କରି ଅନ୍ୟାନ୍ୟ ସଭ୍ୟଙ୍କ ଘରକୁ ଯାଇ ବିବରଣୀ ବାଣ୍ଟିଦେଇ ଆସୁ । ସେତେବେଳେ ଏସବୁ ଛୋଟିଆ ମୋଟିଆ କାମ କରିବାକୁ ଭଲ ଲାଗୁଥିଲା । ଗର୍ବବୋଧ ଥିଲା ଯେ ଆମେ ଇନ୍‌ଟାକ୍ ଗଢୁଛୁ ।

Digitized by srujanika@gmail.com

ତାପରେ ପ୍ରାଚୀ ହୋଟେଲର ଗୋଟିଏ ସୁସଜ୍ଜିତ ରୁମ୍‌ରେ ଇନ୍‌ଟାକ୍‌ର ମାସିକ ଅଧିବେଶନମାନ ଅନୁଷ୍ଠିତ ହେଲା । ଜଳଖିଆର କାଏଦା ବଦଳିଲା । ବାବୁଲାଙ୍କର ଘରୋଇ ପରିବେଶ ଏବେ ହୋଟେଲର ନୈର୍ବକ୍ତିକ ଆବାହାୱା ଭିତରେ ମିଶିଗଲା । ମଝିମଝିରେ ଦିଲ୍ଲୀରୁ ବିଭିନ୍ନ ପଦାଧିକାରୀ ମାନେ ଆସି ଭୁବନେଶ୍ୱରରେ ପ୍ରାଚୀ ହୋଟେଲରେ ସଭା ଆୟୋଜନ କରି ଇନ୍‌ଟାକ୍‌ର ଆଭିମୁଖ୍ୟ ଓ କାର୍ଯ୍ୟକ୍ରମର ଗୁରୁତ୍ୱକୁ ନେଇ ଭାଷଣ ଦେଉଥିଲେ । ମାର୍ତ୍ତଣ୍ଡ ସିଂହ ଏମିତି ଗୋଟିଏ ସଭାରେ ଅତି ଚମତ୍କାର ଭାଷଣଟିଏ ଦେବା କଥା ମୋର ପ୍ରାଞ୍ଜଳ ମନେ ଅଛି । ତାଙ୍କର ଲମ୍ବା କୁର୍ତ୍ତା, ଆଜାନୁଲମ୍ବିତ ଉତ୍ତରୀୟ ଓ ଇଂରାଜୀ ଭାଷାର ଚମତ୍କାର ଉଚ୍ଚାରଣ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ସେ ଇନ୍‌ଟାକ୍‌ର ଜଣେ ପ୍ରଭାବଶାଳୀ କର୍ମକର୍ତ୍ତା ଥିଲେ । ଏବେ ସେ ମୁଖ୍ୟ ଇନ୍‌ଟାକ୍‌ରୁ ଅବସର ନେଇ ଇନ୍‌ଟାକ୍ ୟୁକେ ଟ୍ରଷ୍ଟରେ ମନୋନିବେଶ କରିଛନ୍ତି ।

ଆମ ସମୟରେ ଇନ୍‌ଟାକ୍‌ରେ ଆଜିକାଲିକା ଭଳି ଏତେ ଅର୍ଥ ବ୍ୟବସ୍ଥା ନଥିଲା । ଏଣୁ ଇନ୍‌ଟାକ୍‌ର ବିଭିନ୍ନ କାର୍ଯ୍ୟକ୍ରମର ଆୟୋଜନ ପାଇଁ ସଭ୍ୟମାନଙ୍କୁ ବିଭିନ୍ନ ଉପାୟରେ ଅର୍ଥ ସଂଗ୍ରହ କରିବାକୁ ହେଉଥିଲା । ଅର୍ଥ ସଂଗ୍ରହ ପାଇଁ ଯେତିକି ହଇରାଣ ହରକତ ହେବାକୁ ପଡୁଥିଲା ସେତିକି ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ପାଇଁ କାମ କରିବାରେ ଆନନ୍ଦ ମଧ ଥିଲା । ମନେ ହେଉଥିଲା ଆମେ ଦେଶ ପାଇଁ କିଛି ଗୋଟିଏ କାର୍ଯ୍ୟ କରିପାରିଛୁ । ଆମ ସମୟରେ ଭୁବନେଶ୍ୱର ଇନ୍‌ଟାକ୍ ଚାପ୍‌ଟର୍‌ରେ ଆମେ ଦୁଇ ଚାରୋଟି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ହାତକୁ ନେଇଥିଲୁ । ସେଗୁଡିକ ମଧ୍ୟରେ ଥିଲା ବିଷୁବ ସଂକ୍ରାନ୍ତିରେ ଓଡ଼ିଆ ଐତିହ୍ୟ ଦିବସ ପାଳନ । ଏହି ଐତିହ୍ୟ ଦିବସ ପାଳନ ଅବସରରେ ସ୍କୁଲର ଛାତ୍ର ଛାତ୍ରୀଙ୍କ ମଧ୍ୟରେ ଶିଶୁ ଚିତ୍ରାଙ୍କନ ପ୍ରତିଯୋଗିତା, ଐତିହ୍ୟ ପଦଯାତ୍ରା, ଐତିହ୍ୟ ସଂକ୍ରାନ୍ତୀୟ ଫଟୋ ପ୍ରଦର୍ଶନୀ ଓ ସାନ୍ଧ୍ୟ ସଭାର ଆୟୋଜନ କରାଯାଉଥିଲା । ଶିଶୁ ଚିତ୍ରାଙ୍କନ ପ୍ରତିଯୋଗିତାର ଦାୟିତ୍ୱ ମୋ ଉପରେ ଏବଂ ଆମ କଲେଜ ଉପରେ ନ୍ୟସ୍ତ ରହୁଥିଲା । ଏହି କାର୍ଯ୍ୟକ୍ରମରେ ଶିଳ୍ପୀ ବନ୍ଧୁ ରାମହରି ଜେନା ଓ ଆମ କଲେଜର ଅଧ୍ୟାପକ ଡ଼ି.ଏନ୍.ରାଓଙ୍କ ଅକୁଣ୍ଠ ସାହଚର୍ଯ୍ୟ ମିଳୁଥିଲା ।

ସବୁଦିନ ପାଇଁ ମନେ ରଖିଲା ଭଳି ମାଉସୀମା ମନ୍ଦିର ସଂଲଗ୍ନ ବଗିଚା ଭିତରେ ଆମେ ଥରେ ଗୋଟିଏ ଚିତ୍ରାଙ୍କନ ପ୍ରତିଯୋଗିତାର ଆୟୋଜନ କରିଥିଲୁ । ଇନ୍‌ଟାକ୍ ଓ ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ମିଳିତ ସହଯୋଗରେ ଗୋଟିଏ ଅଭିନବ ଉପାୟରେ ଏହି ପ୍ରତିଯୋଗିତା କରାଯାଇଥିଲା । ପ୍ରତିଯୋଗୀମାନଙ୍କୁ ତଳେ ଆଣ୍ଠେଇ ପଡ଼ି କାଗଜ ଉପରେ ଚିତ୍ର ଅଙ୍କନ କରିବାକୁ ପଡ଼ି ନଥିଲା । ଆମେ ବାଉଁଶ ଠିଆ ବାଗରେ ପୋତି ତା ଉପରେ ଲମ୍ବା ଧଳାଥାନ ଟାଙ୍ଗିଦେଇ ଗୋଟିଏ ଲମ୍ବା କାନ୍‌ଭାସ୍ ତିଆରି କରିଦେଇଥିଲୁ । ପ୍ଲାଷ୍ଟିକ୍

Digitized by srujanika@gmail.com

ବାଲ୍‌ତି ମାନଙ୍କରେ ବିଭିନ୍ନ ରଙ୍ଗ ଭର୍ତ୍ତି ହେଉଥାଏ ଏବଂ ଲମ୍ବା ହାଣ୍ଡେଲ୍‌ର ବ୍ରସ୍ ଆୟୋଜକଙ୍କ ତରଫରୁ ଯୋଗାଇ ଦିଆଯାଉଥାଏ । ପ୍ରତିଯୋଗୀଙ୍କ ମଧ୍ୟରେ ସେଦିନର ଉତ୍ସାହ କହିଲେ ନସରେ । ଏହି ପ୍ରତିଯୋଗିତା କେବଳ ସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟରେ ସୀମିତ ନଥିଲା, ସେମାନଙ୍କ ସାଙ୍ଗରେ ଯେଉଁ ଅଭିଭାବକମାନେ ଆସିଥିଲେ, ସେମାନଙ୍କୁ ମଧ୍ୟ ଏହି ଚିତ୍ରରଚନା କାର୍ଯ୍ୟକ୍ରମରେ ଭାଗନେବା ପାଇଁ ଅନୁରୋଧ କରାଯାଇଥିଲା । ଆମ କଲେଜର ଅନେକ ଆଗ୍ରହୀ ଛାତ୍ରଛାତ୍ରୀ ଏହି ଚିତ୍ରରଚନାର ପରିଚାଳନା କରୁଥିଲେ । ସାଂପ୍ରତିକ ଚିତ୍ରକଳା ପରିଭାଷାରେ ଏଭଳି କାର୍ଯ୍ୟକ୍ରମକୁ ହେପେନିଙ୍ଗ୍ ବା ଅସଂଯୋଜିତ ନାଟକୀୟ ଘଟଣା ବୋଲି କୁହାଯାଉଛି । ରାଜ୍ୟ ଲଳିତ କଳା ଏକାଡେମୀ ବହୁ ଚିତ୍ରାଙ୍କନ ପ୍ରତିଯୋଗିତା କରୁଛନ୍ତି କିନ୍ତୁ ଇନ୍‌ଟାକ୍‌ର ହେପେନିଙ୍ଗ୍‌ର ଆଭିମୁଖ୍ୟ ଓ ବିନ୍ୟାସ ଖୁବ୍ ଚମକପ୍ରଦ ଘଟଣା ଥିଲା ।

ଇନ୍‌ଟାକ୍‌ର ଐତିହ୍ୟ ପଦଯାତ୍ରାର ପରିସୀମା ପୁରୁଣା ଭୁବନେଶ୍ୱରର ମନ୍ଦିର ପରିଦର୍ଶନ ମଧ୍ୟରେ ସୀମିତ ରହୁଥିଲା । ପ୍ରଥମେ ପ୍ରଥମେ କରୁଣା ସାଗର ବେହେରାଙ୍କ ଭଳି ବିଶିଷ୍ଟ ଐତିହାସିକ ମାନେ ପଦଯାତ୍ରୀଙ୍କ ସାଙ୍ଗରେ ଯାଇ ମନ୍ଦିରର ଇତିହାସ ଓ କଳାପ୍ରକରଣ ସଂପର୍କରେ ତଥ୍ୟ ଯୋଗାଇ ଦେଉଥିଲେ । ଏଣୁ ଏହି କାର୍ଯ୍ୟକ୍ରମଟି ଅତ୍ୟନ୍ତ ଶିକ୍ଷଣୀୟ ହେଉଥିଲା । ପ୍ରତ୍ନତତ୍ତ୍ୱବିତ୍ ବିଜୟ କୁମାର ରଥ ଆୟୋଜକମାନଙ୍କ ମଧ୍ୟରୁ ମୁଖ୍ୟ ହୋଇଥିବାରୁ ତାଙ୍କ ଉପସ୍ଥିତି ମଧ୍ୟ ଉତ୍ସାହପ୍ରଦ ଥିଲା । ନାଗରିକମାନଙ୍କୁ ବିଶେଷ କରି ସ୍କୁଲ କଲେଜରେ ଅଧ୍ୟୟନ କରୁଥିବା ଯୁବ ସଂପ୍ରଦାୟକୁ ଆମ ଦେଶର ଐତିହ୍ୟ ସହିତ ପ୍ରତ୍ୟକ୍ଷ ପରିଚୟ କରେଇବା ଏହି ପଦଯାତ୍ରାର ଉଦ୍ଦେଶ୍ୟ ଥିଲା । ଏଭଳି ଯାତ୍ରାକୁ ସଂଗଠିତ ଓ ଅର୍ଥପୂର୍ଣ୍ଣ କରିବା ପାଇଁ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପକ୍ଷରୁ ଗୋଟିଏ ପଦଯାତ୍ରା ମାନଚିତ୍ର ପ୍ରସ୍ତୁତ କରାଯାଇ ଏବଂ କଲେଜରେ ସିଲ୍‌କ୍ ସ୍କ୍ରୀନ୍ ପଦ୍ଧତିରେ ମୁଦ୍ରଣ କରାଯାଇ ପ୍ରତି ପଦଯାତ୍ରୀଙ୍କୁ ବିତରଣ କରାଯାଇଥିଲା । ଏହି ମାନଚିତ୍ରରେ ମନ୍ଦିରସଂକ୍ରାନ୍ତୀୟ ତଥ୍ୟ ମଧ୍ୟ ପ୍ରଦାନ କରାଯାଇଥିଲା । ତାପରେ ଚିତ୍ରାଙ୍କନର ସ୍ଥାନ ପରିବର୍ତ୍ତନ କରାଯାଇ କେଦାର ଗୌରୀ ମନ୍ଦିର ସନ୍ନିକଟ ଗୁଆଝରେ ତୋଟା ଓ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ପରିସର ମଧ୍ୟରେ ଆୟୋଜନ କରାଗଲା । ମନେହେଲା ଏହି ସବୁ କାର୍ଯ୍ୟକ୍ରମ ଯାହା ସୃଜନ ପରମ୍ପରାର ନବ ପୁଲକ ଭାବେ ବିବେଚିତ ହେଉଥିଲା ତାହା ଧୀରେ ଧୀରେ ଉତ୍ସାହହୀନ ଗତାନୁଗତିକତାରେ ପରିଣତ ହୋଇଗଲା । ପରବର୍ତ୍ତୀ ସମୟରେ ଇନ୍‌ଟାକ୍‌ରେ ବହୁ ସଭ୍ୟ ଯୋଗ ଦେଇଛନ୍ତି କିନ୍ତୁ ସଂପୃକ୍ତିର ପ୍ରଗାଢ଼ତା ପରାହତ ହୋଇରହିଛି ।

ବିଭିନ୍ନ ସମୟରେ ବିଭିନ୍ନ ଉଲ୍ଲେଖନୀୟ କାର୍ଯ୍ୟକ୍ରମମାନ ପରିକଳ୍ପନା କରାଯାଇଛି । ବିଭିନ୍ନ କାରଣରୁ ବିଶେଷ କରି ରାଜନୈତିକ ଦୃଢ଼ ଇଚ୍ଛାଶକ୍ତିର ଅଭାବରୁ ତାହା କାର୍ଯ୍ୟକାରୀ

Digitized by srujanika@gmail.com

କରାଯାଇ ପାରିନାହିଁ । ଇନ୍‌ଟାକ୍‌ର ଅନ୍ୟତମ ଆଭିମୁଖ୍ୟ ଥିଲା ପୁରୁଣା ଭୁବନେଶ୍ୱର ଯାହାକୁ ଏକାମ୍ର ଭୁବନେଶ୍ୱର କହିବା ଅଧିକ ଯୁକ୍ତିଯୁକ୍ତ ହେବ ତାକୁ ତାର ପୂର୍ବ ଗୌରବ ଫେରାଇ ଦେବା । ଏଥିପାଇଁ ଯୋଜନା ମଧ୍ୟ ପ୍ରସ୍ତୁତ କରାଯାଇଛି । ଏକାମ୍ର ଭୁବନେଶ୍ୱରରେ ଥିବା ମନ୍ଦିରଗୁଡ଼ିକର ଚାରିପାଖର ଜବରଦଖଲକୁ ଉଚ୍ଛେଦ କରିବା ପାଇଁ ଯାହା ଚେଷ୍ଟା କରାଯାଇଛି ତାହା ଯଥେଷ୍ଟ ବୋଲି ମନେହୁଏ ନାହିଁ । କେବଳ ଭାରତବର୍ଷ ନୁହେଁ, ପୃଥିବୀର ବଡ଼ ବଡ଼ ସହର ମାନଙ୍କର ପୁରୁଣା ଅଞ୍ଚଳ ଐତିହ୍ୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଏଣୁଏହିସବୁ ପୁରୁଣା ଅଞ୍ଚଳର କୋଠାବାଡ଼ି, ରାସ୍ତାଘାଟ ଗଳିକନ୍ଦି, ଦୋକାନବଜାରର ଆଦିମ ସୌନ୍ଦର୍ଯ୍ୟକୁ ପରିବର୍ତ୍ତନ ନକରି ଅତୁଟ ରଖାଯାଇଥାଏ । ଏହି ପରିପ୍ରେକ୍ଷୀରେ ବିଚାର କଲେ ଆମ ଏକାମ୍ର ଭୁବନେଶ୍ୱର କେତେ ଅସହାୟ ତାହା ସହଜରେ ଅନୁମେୟ । ଇନ୍‌ଟାକ୍ ସଂସ୍ଥା ଏସବୁ କାର୍ଯ୍ୟ ହାତକୁ ନେଇ ସୁଚାରୁ ରୂପେ ଏକାମ୍ର ନଗରୀକୁ ଏକ ଐତିହ୍ୟ ନଗରୀଭାବେ ଗଢ଼ିତୋଳିବା କଥା । ଆଗାମୀ ସମୟ କହିବ ଇନ୍‌ଟାକ୍ କେତେଦୂର କୃତକାର୍ଯ୍ୟ ହୋଇଛି ।

ଓଡ଼ିଶାର ଅସଂରକ୍ଷିତ ମନ୍ଦିରମାନଙ୍କ ତାଲିକାକୁ ଆଧାର କରି ବିଜୟ ରଥଙ୍କ ଦ୍ୱାରା ପ୍ରସ୍ତୁତ ଦୁଇଟି ଗ୍ରନ୍ଥ, ପରବର୍ତ୍ତୀ କାଳରେ ପୁରୀ ଓ ଭୁବନେଶ୍ୱରର କେତେକ ମନ୍ଦିରର ସଦାଶିବ ପ୍ରଧାନଙ୍କ ଦ୍ୱାରା କରାଯାଇଥିବା ପଞ୍ଜୀକରଣ ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଏହାର ବହୁବର୍ଷ ଆଗରୁ ସତ୍ୟ ମହାପାତ୍ରଙ୍କ ସହାୟତାରେ ଆମେ ଗୋଟିଏ ଉଲ୍ଲେଖନୀୟ ପଦକ୍ଷେପ ନେଇଥିଲୁ । ଗାଁ ଗହଳରେ ଓ ଛୋଟ ବଡ଼ ସହରମାନଙ୍କରେ ଥିବା ମନ୍ଦିର ଓ କୀର୍ତ୍ତିରାଜିର ଉଚିତ ସଂରକ୍ଷଣ ପାଇଁ ସଚେତନତା ବୃଦ୍ଧି କରିବା ଉଦ୍ଦେଶ୍ୟ ନେଇ ଓଡ଼ିଆ ଭାଷାରେ ଆମେ ଗୋଟିଏ ଛୋଟ ପୁସ୍ତିକା ପ୍ରସ୍ତୁତ କରି ତାହା ପ୍ରକାଶ କରିଥିଲୁ । ଏହି ପୁସ୍ତିକାରେ ମନ୍ଦିରର ସଂରକ୍ଷଣ ପାଇଁ କ'ଣ କରଣୀୟ ଏବଂ କ'ଣ ବର୍ଜନୀୟ ସେ ସମ୍ପର୍କରେ ସବିଶେଷ ସୂଚନା ଦିଆଯାଇଥିଲା । ପୁସ୍ତକଟିର ଶୀର୍ଷକ ଥିଲା 'ମନ୍ଦିର ଆମର ସୁରକ୍ଷା ଆମର' । କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ ସଚିବ ବାଲ୍ମୀକି ପ୍ରସାଦ ସିଂହ ଏହି ପୁସ୍ତିକାଟିକୁ ତାଙ୍କ ଭୁବନେଶ୍ୱର ଗସ୍ତ କାଳରେ ଲୋକର୍ପଣ କରି ଏଭଳି ଉଦ୍ୟମର ଭୂୟସୀ ପ୍ରଶଂସା କରିଥିଲେ ଏବଂ କେନ୍ଦ୍ର ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଏଭଳି ପୁସ୍ତିକାର ଅନ୍ତତଃ ପାଞ୍ଚହଜାର କପି କ୍ରୟ କରି ଲୋକମାନଙ୍କ ମଧ୍ୟରେ ବିତରଣ କରୁ ବୋଲି ନିର୍ଦ୍ଦେଶ ଦେଇଥିଲେ । ଆମର ଏହି ପୁସ୍ତିକା ନିର୍ମାଣ କାର୍ଯ୍ୟରେ ରାଜେନ୍ଦ୍ର ପ୍ରସାଦ ଦାସ, କରୁଣା ସାଗର ବେହେରା ଓ ବିଜୟ ରଥ ସାହାଯ୍ୟ କରିଥିଲେ ।

ଗତ ଅଶିଏ ଦଶକରେ ଯେଭଳି ଭାବରେ କାୟୋମନୋବାକ୍ୟ ସହିତ ଇନ୍‌ଟାକ୍ ଭୁବନେଶ୍ୱରରେ ତା'ର କାର୍ଯ୍ୟ ଆରମ୍ଭ କରିଥିଲା ଏବେ ସେହି ଆନ୍ତରିକତାର ଅଭାବ ପରିଲକ୍ଷିତ ହେଉଛି । ଏବେ ନୂଆଦିଲ୍ଲୀରୁ ପ୍ରତ୍ୟେକ ପ୍ରକଳ୍ପ ପାଇଁ ପ୍ରଚୁର ଅର୍ଥ ଆସି ଏଠି

Digitized by srujanika@gmail.com

ପହଞ୍ଚୁଛି । ସାଧାରଣ ଲୋକଙ୍କ ମଧ୍ୟରେ ଧାରଣା ବଳବତ୍ତର ହେଉଛି ଯେ ଇନ୍‌ଟାକ୍ ଫାଇବ୍‌ଷ୍ଟାର୍ ସଂସ୍କୃତିକୁ ପ୍ରୋତ୍ସାହନ ହେଉଛି । ବଡ଼ବଡ଼ିଆ ମାନେ ନିଜ ଅସ୍ମିତାର ପ୍ରୋତ୍ସାହନ ପାଇଁ ଇନ୍‌ଟାକ୍‌କୁ ଆବୋରି ବସୁଛନ୍ତି । ବ୍ୟକ୍ତିଗତ ଭାବେ ଜୀବନର ପ୍ରାରମ୍ଭିକ ଅବସ୍ଥାରେ ଏବଂ ଚାକିରି କାଳରେ ମଧ୍ୟ ମୁଁ ଇନ୍‌ଟାକ୍‌ର ଆଭିମୁଖ୍ୟକୁ ସୁହାଇଲା ଭଳି କାର୍ଯ୍ୟ କରୁଛି । ଆଦିବାସୀ କଳା, ଲୋକ କଳା, ପାରମ୍ପରିକ କଳା ଓ ହସ୍ତଶିଳ୍ପର ପଞ୍ଜୀକରଣ ସହିତ ସେଗୁଡ଼ିକର ପ୍ରକାଶନ କାର୍ଯ୍ୟରେ ହିଁ ମୁଁ ମୋ ଜୀବନର ଗୁରୁତ୍ୱପୂର୍ଣ୍ଣ ସମୟ ବିତେଇଛି । ମୁଁ ମୋ କାର୍ଯ୍ୟ ପ୍ରଣାଳୀ ସହିତ ଇନ୍‌ଟାକ୍‌ର ଆଭିମୁଖ୍ୟକୁ ମିଳେଇ ଦେଖିଛି ଯେ ଓଡ଼ିଆ ସଂସ୍କୃତିର ରକ୍ଷଣାବେକ୍ଷଣ ପାଇଁ ବ୍ୟକ୍ତିଗତ ସ୍ତରରେ ଯେତିକି ପ୍ରଚେଷ୍ଟା ଦରକାର ସେତିକି କରିବା ପାଇଁ ମୁଁ କେବେ ପଛେଇ ନାହିଁ । ଇନ୍‌ଟାକ୍‌ର ପଦପଦବୀ ମଣ୍ଡନ କରିବା ମୋର କେବେ ଉଦ୍ଦେଶ୍ୟ ନଥିଲା, ଏବେ ମଧ୍ୟ ନାହିଁ ।

Digitized by srujanika@gmail.com

# ୪୬. ବ୍ରିଟିଶ୍ କାଉନ୍‌ସିଲ୍ ଫେଲୋ : ଲଣ୍ଡନର ଆର୍ଟ୍ କଲେଜ ପରିଦର୍ଶନ

ବ୍ରିଟିଶ କାଉନ୍‌ସିଲ୍‌ର କଲିକତା ଅଫିସ୍ ସାଂଗରେ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଆମ କଲେଜର ସଂପର୍କ ଧୀରେ ଧୀରେ ବଢ଼ିଲା । ବ୍ରିଟିଶ ଭାସ୍କର ହେନେରୀ ମୁର୍‌ଙ୍କ ପୋଷ୍ଟର୍ ଓ ଫଟୋଗ୍ରାଫ୍ ପ୍ରଦର୍ଶନୀ ବେଶ ସୁରୁଖୁରୁରେ ଦି' ସପ୍ତାହ ଧରି ଆମ କଲେଜରେ ପ୍ରଦର୍ଶିତ ହେଲା । ୧୯୮୯ ମସିହାରେ ଡାରଟିଙ୍ଗ୍‌ଟନ୍ କଲେଜରୁ ପିଟର ... ଭି କକ୍‌ସ୍ ଆସି ଆମ କଲେଜ ପରିଦର୍ଶନ କରି ଏବଂ ଟେପେଷ୍ଟ୍ରି କର୍ମଶାଳା ସାରି ଫେରିଥିଲେ । ତାଙ୍କ ଗସ୍ତ ସଫଳ ହେଇଥିବା ସେ ବ୍ରିଟିଶ କାଉନ୍‌ସିଲ୍‌କୁ ଜଣେଇଥିଲେ । ମୋ ସମ୍ପର୍କରେ ବବି ଅତ୍ୟନ୍ତ ରୁଚିପୂର୍ଣ୍ଣ ମନ୍ତବ୍ୟ ଦେଇ ଥିବାରୁ ବ୍ରିଟିଶ୍ କାଉନ୍‌ସିଲ୍ ମୋତେ ଗୋଟିଏ ଭିଜିଟରସ୍ ଫେଲୋସିପ୍ ଯୋଗାଇ ଦେଇଥିଲା । ଲଣ୍ଡନର୍ ଆର୍ଟ୍ କଲେଜଗୁଡ଼ିକ ପରିଦର୍ଶନ କରି ଲଣ୍ଡନରେ ପ୍ରଚଳିତ କଳାଶିକ୍ଷା ସଂପର୍କରେ ଧାରଣା କରିବା ପାଇଁ କାଉନ୍‌ସିଲ୍ ମୋତେ ନିମନ୍ତ୍ରଣ କଲା । ମୋ ପାଇଁ ଏହି ଫେଲୋସିପ୍ ଗୋଟିଏ ଅପୂର୍ବ ସୁଯୋଗ ଆଣି ଦେଇଥିଲା ।

ବ୍ରିଟିଶ୍ କାଉନ୍‌ସିଲ୍ ଖର୍ଚ୍ଚ ପାଇଁ ଯେତିକି ପାଉଣ୍ଡ ଦେଉଥିଲେ ସେଥିରେ ସାଧାରଣ ଭାବେ ଲଣ୍ଡନରେ ଖାଇ ପିଇ କୋଡ଼ିଏ ଦିନ ରହିହେବ । ସହରରେ ଓ ଦେଶ ଭିତରେ ଗସ୍ତ କରିବା ପାଇଁ ଅବଶ୍ୟ ବ୍ରିଟିଶ୍ କାଉନ୍‌ସିଲ୍ ସମସ୍ତ ବ୍ୟବସ୍ଥା କରିଦେଇଥିଲା । ଏସବୁ ଖର୍ଚ୍ଚ ଭିତରେ ଆନ୍ତର୍ଜାତିକ ବିମାନଭଡ଼ା ଅନ୍ତର୍ଭୁକ୍ତ ନଥିଲା । ଏହି ସମସ୍ୟାରୁ ଉଦ୍ଧାର କରିଦେବା ପାଇଁ ମୁଁ ମୋ ବନ୍ଧୁ ଏବରହାର୍ଡ୍ ଫିସରଙ୍କୁ ଅନୁରୋଧ କରିଥିଲି । ସେ ମୋ ଜୁରିକ୍ ଭ୍ରମଣ ସହିତ ଲଣ୍ଡନକୁ ଯୋଡ଼ିଦେବାରୁ ସମସ୍ୟାଟିର ଆପୋଷ ସମାଧାନ ହେଇଗଲା ।

ବ୍ରିଟିଶ୍ କାଉନ୍‌ସିଲ୍‌ର ସମୟାନୁବର୍ତିତା ଓ ଆତିଥ୍ୟ ମୋତେ ତାଙ୍କର ଆପଣାର କରିନେଲା । ମୁଁ ଲଣ୍ଡନରେ ପହଂଚିବାର ପ୍ରଥମ ଦିନ ବ୍ରିଟିଶ୍ କାଉନ୍‌ସିଲ୍‌ର ସ୍ପ୍ରିଙ୍ଗ୍ ଗାର୍ଡେନ୍ ଅଫିସରେ ଏଲିଜାବେଥ୍ ଡାଭେଙ୍କ ସହିତ ଦେଖାହେଲା । ସେ ଭିଜିଟରସ୍ ଡିପାର୍ଟମେଣ୍ଟର ପ୍ରୋଗ୍ରାମ୍ ନିର୍ବାହିକା । ପ୍ରାରମ୍ଭିକ କଥାଭାଷା ପରେ ସେ ମୋତେ ମୋ କାର୍ଯ୍ୟକ୍ରମର ଗୋଟିଏ

Digitized by srujanika@gmail.com

ଟାଇପ୍‌କରା କପି ଧରେଇ ଦେଲେ । ଲଣ୍ଡନ ରହଣିର ପ୍ରଥମ ଶନି, ରବି ଓ ସୋମବାର ନିଜ ମନ ମୁତାବକ ଆର୍ଟ୍ ଗ୍ୟାଲେରୀ ଓ ସଂଗ୍ରହାଳୟ ବୁଲିବାର ସ୍ୱାଧୀନତା ମୋତେ ମିଳିଲା । ପୁରୁଣା ସ୍ମୃତି ଆଉଥରେ ନୂଆ ହୋଇ ମୋତେ ଆକର୍ଷିତ କଲା । ମୁଁ ଲଣ୍ଡନ ସହରଠାରୁ ଅଳ୍ପଦୂରରେ ଜଣେ ବୟସ୍କ ବ୍ରିଟିଶ ମହିଳାଙ୍କ ଘରେ ଭଡ଼ାରେ ରହୁଥାଏ । ଗୋଟିଏ ବଖରା, ଟଏଲେଟ୍ ଓ ସାୱାର । ଦିନକୁ ଭଡ଼ା ପନ୍ଦର ପାଉଣ୍ଡ । ବାହାରେ ଦିନବେଳା କଲେଜ କ୍ୟାଣ୍ଟିନ୍ ନହେଲେ ମ୍ୟୁଜିୟମ୍ କ୍ୟାଣ୍ଟିନ୍‌ରେ ଖାଏ । ଏହିସବୁ ଜାଗାରେ ଖାଇବା ଭଲ ଓ ଶସ୍ତା । ରାତିରେ କରନ୍‌ଫ୍ଲେକ୍ସ, ମୁଷଲୀ, ଖୀର, କଦଳୀ ମଲ୍‌ରୁ କିଣିନେଇ କାମ ଚଳେଇଦିଏ । ସକାଳର ବ୍ରେକ୍‌ଫାଷ୍ଟ୍ ଓ ଚାହା ଘରର ମାଲକାଣୀ ବ୍ୟବସ୍ଥା କରିଦିଅନ୍ତି ।

କେନ୍‌ସିଙ୍ଗ୍‌ଟନ୍ ଗୋର୍‌ରେ ଥିବା ରଏଲ୍ କଲେଜ୍ ଅଫ୍ ଆର୍ଟ୍‌ରୁ ମୋ ଆର୍ଟ୍ କଲେଜ ବୁଲା ଆରମ୍ଭ ହେଲା । ରଏଲ୍ କଲେଜ ଅଫ୍ ଆର୍ଟ୍‌ର ପୁରୁଣା ରାଜରାଜୁଡ଼ା ଘର ମୋତେ କଲିକତାର ଆର୍ଟ୍ କଲେଜ ଆଉ ଆମ ଖଲ୍ଲିକୋଟର ପୁରୁଣା କୋଠା ମନେ ପକାଇ ଦେଲା । ପ୍ରଫେସର୍ ପଲ୍ ହକ୍ସଲେ ମୋତେ ପାଛୋଟି ନେଇ କଲେଜ ବୁଲେଇ ଦେଖାଇଲେ । ମୁଁ ଗୋଟିଏ ବିଦେଶୀ କଲେଜର ଅଧ୍ୟକ୍ଷ (ଡିନ୍) ହୋଇଥିବାରୁ ମାନ୍ୟରେ କମ୍ ହେଉ ନଥିଲା ଏଠି ଓଡ଼ିଶାରେ ମୋ ଦରମା ଓ ପଦବୀର ମର୍ଯ୍ୟାଦା ଯାହା ହେଉଥାଉ ନା କାହିଁକି । ଜୁନ୍ ମାସ, ପିଲାଏ ବାର୍ଷିକ ପରୀକ୍ଷା ଓ ପ୍ରଦର୍ଶନୀ ପାଇଁ ପ୍ରସ୍ତୁତ ହେଉଥାନ୍ତି । ସମଗ୍ର କଲେଜର ଶ୍ରେଣୀଗୃହମାନଙ୍କରେ ପ୍ରଦର୍ଶନୀ ପାଇଁ ସାଜସଜ୍ଜା ଚାଲିଥାଏ । ପୁରୁଣା କୋଠାର କାଠପଟାଦିଆ ଚଟାଣଗୁଡ଼ିକରୁ ପଲିସ୍ ଛାଡ଼ିଯାଇ ବିବର୍ଣ୍ଣ ହୋଇଯାଇଥିବାରୁ ପିଲାମାନେ ତା' ଉପରେ ଏନାମଲ୍ ବୋଳୁଥାନ୍ତି । ଏଭଳି କାମଚଳେଇ ନେବାର ପ୍ରବୃତ୍ତିଟି କେମିତି ବେଖାପିଆ ବେଖାପିଆ ମନେହେଲା । ପ୍ରଫେସର୍ ପଲ୍ ମୋ ମନକଥା ହେଜିପାରି ପ୍ରଥମରୁ କହି ପକେଇଲେ ଯେ ସେମାନେ ଖୁବ୍ ଶୀଘ୍ର ଆଉ ଗୋଟିଏ ନୂଆ କେମ୍ପସ୍‌କୁ ଘୁଞ୍ଚିଯିବେ । ଲଣ୍ଡନ୍‌ର ଆର୍ଟ୍ କଲେଜ ମାନଙ୍କରୁ ପରୀକ୍ଷା ବ୍ୟବସ୍ଥା ଉଠିଗଲାଣି । ପିଲାମାନେ ବାର୍ଷିକ ପ୍ରଦର୍ଶନୀରେ ବର୍ଷସାରା କରିଥିବା କାମରୁ ବାଛି ବାଛି କେତୋଟି ନିର୍ଦ୍ଦିଷ୍ଟ ଚିତ୍ର, ଗ୍ରାଫିକ୍ ଓ ଭାସ୍କର୍ଯ୍ୟ ପ୍ରଦର୍ଶିତ କରିଥାନ୍ତି । କଲେଜର ପ୍ରଫେସର୍‌ମାନଙ୍କ ସହ ବାହାର ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରିତ ଅଧ୍ୟାପକମାନେ ଏକାଠି ବସି ପିଲାଙ୍କ କଳାକୃତିଗୁଡ଼ିକର ମୂଲ୍ୟାୟନ କରନ୍ତି ଓ ମାର୍କ୍ ବଦଳରେ ଗ୍ରେଡ୍ ଦିଆଯାଏ । ଏଠି ବହୁଦିନରୁ ପରୀକ୍ଷାରେ ନମ୍ବର ଦେବା ବ୍ୟବସ୍ଥା ଉଚ୍ଛେଦ କରାଯାଇଛି ।

ପଲ୍ ମୋତେ କ୍ଲାସ୍‌ରୁମ୍‌ଗୁଡ଼ିକ ବୁଲେଇ ଦେଖେଇଲାବେଳକୁ ସବୁ ବଖରାଗୁଡ଼ିକ ପ୍ରାୟତଃ ବନ୍ଦ ଥାଏ । ପଲ୍ ସଂଭ୍ରମର ସହିତ କବାଟରେ ଠକ୍ ଠକ୍ କରନ୍ତି । ଭିତରୁ

Digitized by srujanika@gmail.com

ଜବାବ୍ ଆସିଲେ କହନ୍ତି, ''ମୁଁ ପଲ୍, ଭିତରକୁ ଯାଇପାରେକି ।'' ପ୍ରତି କ୍ଲାସ୍‌ରେ ପିଲାଙ୍କ ସହିତ ମୋତେ ପରିଚିତ କରେଇ ଦିଅନ୍ତି । ଯଦିଓ ଇଂରେଜମାନେ ଆମକୁ 'ଷ୍ଟିଲ୍ ଲାଇଫ୍', 'ଲାଇଫ୍ ଷ୍ଟଡ଼ି' ଓ 'ନେଚର୍ ଷ୍ଟଡ଼ି'ରୁ କଳାଶିକ୍ଷା ଆରମ୍ଭ କରିବା ପାଇଁ ପାଠ୍ୟଖସଡ଼ା ତିଆରିଥିଲେ ସେଠି ପିଲାମାନଙ୍କର କାମ ଦେଖିଲା ପରେ ଲାଗିଲା ସେମାନେ ଟେବୁଲ ଉପରେ ପନିପରିବା, ଫଳମୂଳ ବା ଅନ୍ୟକିଛି ବ୍ୟବହାରିକ ଦ୍ରବ୍ୟ ରଖି ତାକୁ 'ଷ୍ଟିଲ୍ ଲାଇଫ୍'ର ଆଖ୍ୟା ଦେଇ ଅନୁକରଣ କରି ଛବି ଆଙ୍କିବାର ଅଭ୍ୟାସକୁ ପଛରେ ପକାଇ ବିଶ୍ୱ ସାଂପ୍ରତିକ କଳାର ନୂତନ ଆବାହାଓ୍ୱା ଭିତରେ ନିଜକୁ ମଜେଇ ସାରିଲେଣି । ଆମେ ଏଠି ଭାଲୁଲାଙ୍ଗୁଡ଼ ଧରି ନଈ ପାରି ହେବାର ଉପକ୍ରମ କରୁଛୁ । ବ୍ରିଟିଶ କଳାଶିକ୍ଷା ଭାରତ ବର୍ଷରେ ଦେଢ଼ଶହରୁ ଅଧିକ ବର୍ଷ ପୁରୁଣା ହୋଇଗଲାଣି । ବମ୍ବେର ଜେ.ଜେ କଲେଜ ଅଫ୍ ଆର୍ଟ୍, ମେଡ୍ରାସ୍ ଓ କଲିକତାର ଆର୍ଟ୍ କଲେଜ ଭାରତ ବର୍ଷରେ ବ୍ରିଟିଶ କଳାଶିକ୍ଷାର ଅଗ୍ରମାରମ୍ଭ କରିଥିଲେ । ବହୁବର୍ଷ ପରେ ଖଲ୍ଲିକୋଟଠାରେ ଆମେ ମୋଟାମୋଟି ସେଇ ପୁରୁଣା ଧାରାରୁ ହିଁ କଳାଶିକ୍ଷା ଆରମ୍ଭ କରିଛୁ । ଯଦିଓ ଆମ ବିଭୂତି କାନୁନ୍‌ଗୋ କଲେଜର ସିଲାବସ୍‌ରେ 'ଷ୍ଟିଲ୍ ଲାଇଫ୍', 'ଲାଇଫ୍ ଷ୍ଟଡ଼ି'ର ସ୍ଥିତି ରହିଥିଲା ତଥାପି ତାକୁ ଯେତେ ସମ୍ଭବ ଆମେ ସାମାନ୍ୟକରଣ କରିବା ପାଇଁ ଚେଷ୍ଟା କରୁଥିଲୁ ।

ରୟଲ୍ କଲେଜ୍ ଅଫ୍ ଆର୍ଟ୍‌ର ଲିଫ୍ଟ୍‌ରେ ମୁଁ ପ୍ରଫେସର୍ ପଲ୍‌ଙ୍କ ସାଙ୍ଗରେ ତଳ ମହଲାରୁ ଉପରକୁ ଉଠୁଥିଲି । ଲିଫ୍ଟ କାନ୍ଥସାରା ଅଶ୍ଳୀଳ ଢଙ୍ଗର ଗ୍ରାଫିଟି ସବୁ ଅଙ୍କା ଯାଇଥିଲା । ଖାସ୍ କରି ବ୍ରିଟିଶ୍ ଭାସ୍କର ହେନେରୀ ମୁର୍‌ଙ୍କ ଭାସ୍କର୍ଯ୍ୟକୁ ଲିଙ୍ଗ ଓ ଜନନେନ୍ଦ୍ରିୟ ଭଳିଆ ସଜେଇ କାନ୍ଥରେ ଚିତ୍ର ହେଇଥିଲା । ମୁଁ ଏଗୁଡ଼ିକ କଣେଇ କଣେଇ ଦେଖୁଥିବା ପଲ୍ ଜାଣିପାରିବାରୁ ସେ ମୋତେ କୈଫିୟତ୍ ଦେବାକୁ ଲାଗିଲେ । ଲଣ୍ଡନ ହେଉ ବା ଓଡ଼ିଶାର ରେଭେନ୍‌ସା ହେଉ ବା ଆମ କଲେଜ ବି ହେଇଥାଉ ଯୌନ ରହସ୍ୟ ପ୍ରତି ଯୁବମାନସର ପ୍ରତିକ୍ରିୟା ପ୍ରାୟ ସମାନ । ମୁଁ ଏଭଳି ମତାମତଟିଏ ଦେବାପରେ ପଲ୍ ଆଶ୍ୱସ୍ତି ଅନୁଭବ କଲେ । ମୁଁ କଲେଜରୁ ଫେରିଲା ବାଟରେ ହଷ୍ଟେଲ୍ ଆଡ଼େ ଘେରାଏ ବୁଲି ଆସିଲି । ମୁଁ ଲକ୍ଷ୍ୟ କଲି ହଷ୍ଟେଲର ଗୋଟିଏ ବଖରାରେ ଜଣେ ଛାତ୍ର ଗୀତଗୋବିନ୍ଦର ଗୋଟିଏ ପାହାଡ଼ୀ ଚିତ୍ରକୁ ଅନୁକରଣ କରି କିଛି ଆଙ୍କିବାକୁ ଚେଷ୍ଟା କରୁଛି । ଜଣେ ଆଧୁନିକ କଳାର ଛାତ୍ର ହୋଇ ଏଭଳି ଗୋଟିଏ ମଧ୍ୟଯୁଗୀୟ ଚିତ୍ରର ମାୟାରେ କାହିଁକି ପଡ଼ିଛ, ପ୍ରଶ୍ନର ଉତ୍ତରରେ ସେ ମୋତେ କହିଲା ଯେ ପିକାଶୋ ତ ପୁଣି ଆଦିମ ଆଫ୍ରିକୀୟ କଳାଦ୍ୱାରା ଉଦ୍‌ବୁଦ୍ଧ ହୋଇ ଆଧୁନିକ ହୋଇଥିଲେ । ଏଣୁ ଏଥିରେ ଆଚମ୍ବିତ ହେବାର କାରଣ ନାହିଁ । ପିଲାଟି ସହିତ ଦୁଃଖସୁଖ ଭିତରେ ସିଏ ଯେତେବେଳେ ନିଜେ ଜଣେ ପାକିସ୍ତାନର ନାଗରିକ ବୋଲି କହିଲା, ମୋ ବିସ୍ମୟର ସୀମା ରହିଲାନି । ଆମେ ପାଶ୍ଚାତ୍ୟ

Digitized by srujanika@gmail.com

କଳାର ମୋହରେ ଆକ୍ରାନ୍ତ ହୋଇପଡ଼ିଥିବାରୁ ଆମ ଦେଶୀୟ କଳାର ମହନୀୟତା ଭୁଲି ଯାଇଛୁ । କିନ୍ତୁ ଲଣ୍ଡନର କଳା ମହାବିଦ୍ୟାଳୟର ଅଧ୍ୟାପକମାନେ ସୃଜନଶୀଳ କଳାର ଉତ୍କର୍ଷକୁ ପ୍ରାଚ୍ୟ ପରଂପରାରେ ବେଶୀ ବେଶୀ ଦେଖିପାରୁଥିଲେ । ସେଣ୍ଟ ମାର୍ଟିନ୍ ସ୍କୁଲ୍ ଅଫ୍ ଆର୍ଟ୍ ରୟଲ୍ କଲେଜ ତୁଳନାରେ ଆୟତନରେ ଛୋଟ । ମୁଁ ସ୍କୁଲ ଗେଟ୍‌ରେ ପଶିବା ପୂର୍ବରୁ ରାସ୍ତା ଧାରେ ଧାରେ ଦେଖିଲି ଦଳ ଦଳ ଛାତ୍ରଛାତ୍ରୀ ବଡ଼ ବଡ଼ ପୋର୍ଟଫୋଲିଓ ବ୍ୟାଗ୍ ଧରି ଚାଲିଛନ୍ତି । ଗେଟ୍ ଭିତର ପଟେ ତାଙ୍କର ଅଧ୍ୟାପକ ମାଇକଲ୍ ଥୋରପ୍ ମୋ ଆସିବାକୁ ଅପେକ୍ଷା କରି ରହିଥିଲେ । ସ୍କୁଲରେ ପିଲାଙ୍କ ବାର୍ଷିକ ପ୍ରଦର୍ଶନୀ ପାଇଁ ଭରପୂର ଆୟୋଜନ ଚାଲିଥିଲା । ସାଜସଜ୍ଜାର ପରିଚ୍ଛନ୍ନତା ଓ ପ୍ରଦର୍ଶନୀ ପୁସ୍ତିକା ଗୁଡ଼ିକର ଗୁଣାତ୍ମକତା ମୋତେ ମୁଗ୍ଧ କଲା ।

ମୁଁ ଲଣ୍ଡନରେ ଦୁଇତିନୋଟି କଲେଜ ପରିଦର୍ଶନ କରିସାରିଲା ପରେ ମୋର ହୃଦ୍‌ବୋଧ ହେଲା କଲେଜରେ ହେଉଥିବା ପାଠପଢ଼ା ଯଦିଓ ଆମ ଏଠିକାର କଲେଜମାନଙ୍କଠାରୁ ଉନ୍ନତ ତଥାପି ଗ୍ୟାଲେରୀମାନଙ୍କରେ ପ୍ରଦର୍ଶିତ କଳାକୃତିର ସୃଜନ ପରିପାଟୀରେ ଅଧିକ ରୁଚିବନ୍ତ । ସରକାରୀ ବିଧିବ୍ୟବସ୍ଥା ଭାରତ, ଲଣ୍ଡନ ଏବଂ ସବୁଠାରେ ସାଂପ୍ରତିକ ସଚେତନତାଠାରୁ ଅନେକ ପଛରେ । କିନ୍ତୁ ମୋର ମନେହେଲା ଲଣ୍ଡନ କଲେଜମାନଙ୍କରେ ଅନୁସୃତ ପାଠ୍ୟକ୍ରମରେ ବୁଦ୍ଧିଦୀପ୍ତ ପ୍ରଗାଢ଼ତାର ଭାଗ ବେଶି । କଥାଟିକୁ ସାଧାରଣ ଭାବରେ ପ୍ରକାଶ କରିବାକୁ ହେଲେ ଏତିକି କୁହାଯାଇପାରିବ ଯେ ଏଠାକାର ଶିକ୍ଷକମାନେ କେବଳ ଜଣେ ଜଣେ କାରିଗର ବା ଛାଇତାପିଆ ନୁହନ୍ତି, ପାଠ ଶାଠ ପଢ଼ି ଜଣେ ଜଣେ ଉଚ୍ଚଶିକ୍ଷିତ ଅଧାପକ ଭଳି ଲାଗନ୍ତି ।

ତା' ପରଦିନ ମୁଁ ସକାଳୁ ସକାଳୁ ଚେଲ୍‌ସି କଲେଜ ଅଫ୍ ଆର୍ଟ୍ ଓ ଡିଜାଇନ୍‌ରେ ପହଞ୍ଚିଲି । ସେଠାରେ କଲେଜର ଅଧକ୍ଷ ୱିଲିୟମ୍ କାଲାୱେଙ୍କ ସହିତ ଭେଟହେଲା । ୱିଲିୟମ୍‌ଙ୍କ ପ୍ରକାଣ୍ଡ ଚେହେରା, ହାତର ପନ୍‌ଝା ଦୁଇଟି ବେଶ୍ ଦୃଢ଼ । କରମର୍ଦ୍ଦନ କଲାବେଳକୁ ଜଣାପଡ଼ିଲା ୱିଲିୟମ୍ ଜଣେ ଭାସ୍କର । ଏହି କଲେଜରେ ମୁଁ ଦୁଇଟି ନୂଆକଥା ଦେଖିଲି । ପ୍ରଥମଟି ହେଲା ଚିତ୍ରକଳା ମହାବିଦ୍ୟାଳୟରେ ଥିଏଟରମାନଙ୍କରେ ବ୍ୟବହୃତ ହେଉଥିବା ମଂଚସଜା ଓ ମଂଚପରିପାଟୀର ଶୈକ୍ଷିକ କୌଶଳ ଶିକ୍ଷା । ଏବଂ ଏହି ଦ୍ୱିତୀୟଟି ହେଲା ଫାଇନ୍ ଆର୍ଟ୍‌ର ସରହଦ ଭିତରେ ଇଣ୍ଡଷ୍ଟ୍ରିଅଲ୍ ଡିଜାଇନ୍‌ର ଆଦର । ଆମ ଚିତ୍ରଶିକ୍ଷାବ୍ୟବସ୍ଥା ମଧ୍ୟରେ ଡିଜାଇନ୍‌ର ତଥାକଥିତ ସଜ୍ଞାକୁ ସୀମିତ କରିଦେଇ ଓଡ଼ିଆ ଭାଷାରେ ସାଧାରଣତଃ 'କଳା' ଏବଂ 'ଶିଳ୍ପ'କୁ ବୁଝିବା ପାଇଁ ଏକାଭଳି ପରିଭାଷା 'କଳା' ବ୍ୟବହାର କରୁଥିବାରୁ ଇଣ୍ଡଷ୍ଟ୍ରିଅଲ୍ ଡିଜାଇନ୍‌ର ଶିଳ୍ପସମ୍ବନ୍ଧୀୟ ଗୁରୁତ୍ୱ 'କଳା' ଶବ୍ଦରୁ ପାଇହୁଏ ନାହିଁ । ମନେହୁଏ ଇଣ୍ଡଷ୍ଟ୍ରିବାଲା ଶିଳ୍ପ ଶବ୍ଦଟିକୁ ଏକଚାଟିଆ କରିନେଇଛନ୍ତି ।

Digitized by srujanika@gmail.com

ମଂଚସଜ୍ଜା ଓ ମଂଚ ପରିପାଟୀ ଶିକ୍ଷାକ୍ରମ ମଧ୍ୟରେ ସ୍ଥାନ ଦେବା ପାଇଁ ମୁଁ ଓଡ଼ିଶା ସରକାରଙ୍କୁ ପ୍ରସ୍ତାବ ମଧ୍ୟ ଦେଇଥିଲି । ସେତେବେଳେ ମୋ ପ୍ରସ୍ତାବର ଗୁରୁତ୍ୱ ସରକାର ବୁଝିଲେନି । ଏବେ ଶୁଣିବାକୁ ମିଳୁଛି ଯେ ଇଷ୍ଟର୍ଣ୍ଣ ମିଡ଼ିଆ ତରଫରୁ ଥିଏଟର୍ ଆର୍ଟ୍ ସଂପର୍କରେ ଶିକ୍ଷାଦେବା ପାଇଁ ଗୋଟିଏ ସ୍କୁଲ ଖୋଲିଛି ଏବଂ ତାହା ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ସହିତ ନିବନ୍ଧିତ ମଧ୍ୟ ହୋଇଛି । କିନ୍ତୁ ମୁଁ ସରକାରଙ୍କୁ ଯେଉଁ ପ୍ରସ୍ତାବ ଦେଇଥିଲି ତାର ଆଭିମୁଖ୍ୟ ଥିଲା ଚିତ୍ରକଳାର ବୃହତ୍ତର ପରିସୀମା ମଧ୍ୟରେ ଥିଏଟର୍ ଆର୍ଟ୍‌କୁ ଅନ୍ତର୍ଭୁକ୍ତ କରି ଏକ ସାମଗ୍ରିକ ଅବବୋଧକୁ ଆପଣାର କରିବା । ଚେଲ୍‌ସି କଲେଜରେ ଇଣ୍ଡଷ୍ଟ୍ରିଅଲ୍ ଆର୍ଟ୍ ବିଭାଗରେ ଛାତ୍ରଛାତ୍ରୀମାନେ କାଗଜରେ ଆଙ୍କିଥିବା ଛୋଟ ମିନିକାର୍ ଓ ହେଲିକେପ୍‌ଟରର ଡିଜାଇନ୍ ଓ ତାର ମଡ଼େଲ ମଧ୍ୟ ଦେଖିବାକୁ ମିଳିଥିଲା । ଆଗରୁ ଏଭଳି ରେଖାଚିତ୍ରକୁ ସାଇଣ୍ଟିଫିକ୍ ଡ୍ରଇଁ କୁହାଯାଉଥିଲା । ଏଭଳି ରେଖାଚିତ୍ର ଆଙ୍କିବା ପାଇଁ ଅସୀମ ଧୈର୍ଯ୍ୟ ଆବଶ୍ୟକ ।

ଲଣ୍ଡନ ନଗରୀର ଚାରୋଟି ପ୍ରମୁଖ କଳା ଅନୁଷ୍ଠାନ ସହିତ ଅକ୍ସନେଡେନ୍ ଷ୍ଟ୍ରିଟ୍‌ରେ ଥିବା କ୍ରାଫ୍ଟ୍ କାଉନ୍‌ସିଲ୍ ଅଫିସ୍‌ରେ ପହଞ୍ଚି ସେମାନେ କାରୁଶିଳ୍ପର ଉନ୍ନତି କଳ୍ପେ ଗ୍ରହଣ କରିଥିବା ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ଅବଗତ ହେଲି ଏବଂ ଆମେ ଓଡ଼ିଶା କ୍ରାଫଟ୍‌ସ୍ କାଉନ୍‌ସିଲ୍ ପକ୍ଷରୁ କାର୍ଯ୍ୟକାରୀ କରୁଥିବା ହସ୍ତଶିଳ୍ପ ଓ ଶିଳ୍ପୀ ପଞ୍ଜୀକରଣ କଥା ସେମାନଙ୍କୁ କହିଲି ।

ଲଣ୍ଡନରେ ପ୍ରଥମଦଫା କାମ ଶେଷ ହେଲାପରେ ମୁଁ ଡାର୍‌ଟିଙ୍ଗ୍‌ଟନ୍ କଲେଜ ପରିଦର୍ଶନ କରିବା ପାଇଁ ଟ୍ରେନ୍ ଯୋଗେ ଏକ୍ସେଟର୍ ଚାଲିଲି । ଏଠି ମୋତେ ପାଛୋଟି ନେବା ପାଇଁ ବବି କକ୍‌ସ୍ ନିଜେ ଗାଡ଼ି ଧରି ପହଂଚିଥିଲେ । ସେ ରାତିକ ଓ ତା'ପରଦିନ ମୁଁ ତାଙ୍କ ଘରେ ଅତିଥି ହେଲି । ଡାର୍‌ଟିଙ୍ଗ୍‌ଟନ୍ ଗୋଟିଏ ସମୁଦ୍ରକୂଳିଆ ସହର । ବବିଙ୍କ ଘରଟି ବେଶ୍ ରୁଚିପୂର୍ଣ୍ଣ । କେବଳ ମୋତେ ଅଡୁଆ ଲାଗୁଥିଲା ତାଙ୍କ ଘରେ ଓ ପାଇଖାନା ଚଟାଣରେ ପଡ଼ିଥିବା ଲିନୋନିୟମ୍ । ଜଗନ୍ନାଥଙ୍କ ମୁଖାକୃତି ସହିତ ସାମଞ୍ଜସ୍ୟ ରଖି ଲିନୋ ଉପରେ ଛପା ହୋଇଥିବା ମୋଟିଫ୍‌ଗୁଡ଼ିକ ମୋ ସଂସ୍କାରକୁ ଉପହାସ କଲାଭଳି ଲାଗୁଥିଲା । ବବି ଓ ପିଟର୍ ତ ମୋତେ ଅପମାନିତ କରିବା ପାଇଁ ଏଭଳି ଲିନୋନିୟମ୍ ପକାଇ ନାହାନ୍ତି, ଏଣୁ ମୁଁ ଚଳେଇ ନେଲି; ରହଣିକୁ ତିକ୍ତ କରିବା ପାଇଁ ଚାହିଁଲିନି । ଡାରଟିଙ୍ଗ୍‌ଟନ୍‌ରୁ ତା'ପରଦିନ ଟ୍ରେନ୍ ଯୋଗେ ଲଣ୍ଡନ ଫେରିଲାବେଳକୁ ଦେଖିଲି ଟ୍ରେନ୍‌ର ଚଟାଣ ସାରା ସେଇ ଏକାଭଳି ଲିନୋନିୟମ୍ ଦ୍ୱାରା ଆଚ୍ଛାଦିତ ।

ବବିଙ୍କ ଘରେ ତାଙ୍କ ଟେପେଷ୍ଟ୍ରି ଷ୍ଟୁଡ଼ିଓଟି ସବୁଠାରୁ ଆକର୍ଷଣୀୟ ସ୍ଥାନ । ବବି ମୋତେ ତନ୍ନ ତନ୍ନ କରି ତାଙ୍କ ଷ୍ଟୁଡ଼ିଓରେ ପ୍ରତ୍ୟେକଟି ବୁଣା କାର୍ଯ୍ୟ ଦେଖାଇଲେ । ଏତେବଡ଼ ଷ୍ଟୁଡ଼ିଓ ମୁଁ ଆଗରୁ କେବେ ଦେଖି ନଥିଲି । ତା' ପରଦିନ ଡାର୍‌ଟିଙ୍ଗ୍‌ଟନ୍‌ର

Digitized by srujanika@gmail.com

କଲେଜ ଦେଖା ଷ୍ଟୁଡ଼ିଓର ଅନୁଭୂତିକୁ ବଳିଗଲା । କଲେଜଟି ଚାରିପାଞ୍ଚୋଟି ଖଞ୍ଜାଘରର ସମଷ୍ଟି । ପ୍ରତି ଖଞ୍ଜାରେ ଚଉଖୁଣ୍ଟିଆ ଖୋଲା ଅଗଣା, ଲନ୍ ଓ ବଗିଚା । ଅଗଣା ଚାରିପଟେ ପ୍ରଶସ୍ତ ବାରଣ୍ଡା । ମୁଁ ପିଟରଙ୍କ ସାଙ୍ଗରେ ଯାଉଛି ଗୋଟିଏ କ୍ଲାସ୍ ରୁମ୍‌ରୁ ସିତାରର ଝଙ୍କାର ଶୁଣି ଚକିତ ହୋଇଗଲି । ତା'ପରେ ପରେ ତବଲାର ସଂଗତ ସାଂଗକୁ ରବୀନ୍ଦ୍ର ସଂଗୀତର ମୂର୍ଚ୍ଛନା ମୋତେ ଆନମନା କରିଦେଲା । ପିଟର୍‌ଙ୍କ ଆଡ଼େ ପ୍ରଶ୍ନବାଚୀ ଢଙ୍ଗରେ ଅନେଇବାରୁ ସେ ଡାରଟିଙ୍ଗ୍‌ଟନ୍‌ର ଶ୍ରୀନିକେତନ, ଶାନ୍ତିନିକେତନ ଏବଂ ରବୀନ୍ଦ୍ରନାଥଙ୍କ ସହିତ ନିବିଡ଼ ସମ୍ପର୍କର ଇତିହାସ ଖୋଲିଦେଲେ । ଶ୍ରୀନିକେତନ ଗଢ଼ିବାରେ ଆଲମ୍‌ହର୍ଷ୍ଟ ପରିବାରର ଭୂମିକା ମୋତେ ସ୍ମରଣ କରାଇଦେଲେ । ଆଲମ୍‌ହର୍ଷ୍ଟ ଶ୍ରୀନିକେତନରୁ ଫେରିବା ପରେ ଡାର୍‌ଟିଙ୍ଗଟନ୍‌ରେ ଗୋଟିଏ ମିନି ଶାନ୍ତିନିକେତନ ଗଢ଼ିବାର ପ୍ରଚେଷ୍ଟା କରିଥିଲେ ଏବଂ ଏହି ଅନୁଷ୍ଠାନଟି ତାର ଫଳ । ମୁଁ ଯେତିକି ଯେତିକି ଡାରଟିଙ୍ଗ୍‌ଟନ୍‌କୁ ବୁଲି ଦେଖିଲି ସେତିକି ସେତିକି ଶାନ୍ତିନିକେତନର ଅମ୍ଳାନ ଛବିଟିଏ ମୋ ଆଖି ଆଗରେ ଭାସି ଉଠିଲା । ନୁଆଁଣିଆ ଚାଳଥାଇ ମାଟିଘରଟିଏ ପ୍ରତୀକାତ୍ମକ ଭାବେ ସେଇଠି ଗଢ଼ାଯାଇଥିଲା ଯାହା ସ୍ମୃତିର ଅଭୁଲା - ସ୍ଥାପତ୍ୟ ଭଳି ସଂପର୍କର ଯଶୋଗାନ କରୁଥିଲା । ଖବର ନେବାରୁ ଜଣାପଡ଼ିଲା ମଝି ମଝିରେ ଶାନ୍ତିନିକେତନରୁ ଅଧ୍ୟାପକମାନେ ପରିଦର୍ଶନରେ ଏଠିକି ଆସନ୍ତି । ଖାସ୍ କରି ପିଟର୍ ମୋତେ ଶଙ୍ଖ ଚୌଧୁରୀଙ୍କ କଥା କହିଲେ । ସେ ଥରେ ଆସି ଏଠାରେ ଚଟାଣ ସାରା ଝୋଟି ଆଙ୍କିଥିବା କଥା ଜଣାଇଲେ । ମଝି ମଝିରେ ସେଇ ଶାନ୍ତିନିକେତନର ଆଲ୍‌ପନା ପୁନର୍ନିର୍ବିତ ହୋଇ ବିଭିନ୍ନ କାମରେ ଲାଗୁଛି । ମୋତେ ଆଚମ୍ବିତ ଲାଗିଲା କେନ୍ଦ୍ର ଲଳିତ କଳା ଏକାଡେମୀରେ ଅଧକ୍ଷ ଶଙ୍ଖ ଚୌଧୁରୀ କିନ୍ତୁ ଡାରଟିଙ୍ଗ୍‌ଟନ୍‌ରେ ପହଂଚିଲେ ସଚ୍ଚା ଆଶ୍ରମବାସୀ ପାଲଟି ଯାଆନ୍ତି, ଆଲ୍‌ପନା ଆଙ୍କନ୍ତି, ବୈତାଳିକ କରନ୍ତି ।

ଏଠି ସଂରକ୍ଷିତ ହୋଇଥିବା ରବୀନ୍ଦ୍ରନାଥ ଓ ଲେଡି ରାନୁ ମୁଖାର୍ଜୀଙ୍କ ପ୍ରେମ ପତ୍ରର ତାଡ଼ା ମୋତେ କୌତୁହଳୀ କରିଦେଲା । ମୁଁ ଏ ଚିଠି ସଂପର୍କରେ ଆଗରୁ ସାମାନ୍ୟ ସୂଚନା ପାଇଥିଲି ଏବଂ ଏଠି ସ୍ୱଚକ୍ଷୁରେ ସେଗୁଡ଼ିକୁ ଦେଖିଲାପରେ ନିଧି ରତ୍ନ ପାଇଲାଭଳି ଲାଗିଲା ଅଥଚ ମୁଁ ବଂଗଳା ଅକ୍ଷର ଭଲଭାବରେ ପଢ଼ିପାରୁ ନଥିବାରୁ ମୋର ଅସହାୟତା ବଢ଼ିଗଲା । ମୋର ମନେପଡ଼ିଗଲା ୧୯୭୨ ମସିହାରେ ଲେଡି ମୁଖାର୍ଜୀଙ୍କୁ ତାଙ୍କ କଲିକତା ବାସଭବନରେ ସାକ୍ଷାତ କରିଥିବା ବେଳର କଥୋପକଥନ । ସେତେବେଳେ ଲେଡି ମୁଖାର୍ଜୀ ଗୋଟିଏ ଫଟୋଗ୍ରାଫ୍‌କୁ ଦେଖାଇ ମୋର ମତାମତ ଜାଣିବା ପାଇଁ ଚାହିଁଥିଲେ । ଫଟୋଟିର ଡାହାଣ ପଟେ ଗୁରୁଦେବ ରବୀନ୍ଦ୍ରନାଥ ଓ ତାଙ୍କ ଆଗରେ ଜଣେ ଅନିନ୍ଦ୍ୟ ସୁନ୍ଦରୀ ମହିଳା ପରସ୍ପରକୁ ଚହାଁଚହିଁ ହେଇ ବସିଥିଲେ । ମହିଳାଙ୍କ ଫଟୋ ପାଖରେ ମୁଁ ସନ୍ଦିଗ୍ଧ ମନରେ ଅଟକି ଯିବାରୁ ରାନୁ ମୁଖାର୍ଜୀ ମୋତେ ଫଟୋଟିର ପରିଚୟ ଦେଇକରି

Digitized by srujanika@gmail.com

ମୋର ସନ୍ଦିଗ୍ଧତାକୁ ପ୍ରଶମିତ ନ କରି ବରଂ ଦ୍ୱିଗୁଣିତ କରିଦେଇଥିଲେ । ମୁଁ କଥୋପକଥନର ରହସ୍ୟ ଭେଦି ନପାରି ନୀରବ ରହିଲି । ରାନୁ ନିଜଆଡୁ ସଫେଇ ଦେଇ କହିଲେ ଯେ ସେ ଭାବୁଛନ୍ତି ଗୁରୁଦେବଙ୍କୁ ପ୍ରେମ ଯାଚଞ୍ଚା କରିବେ । କିନ୍ତୁ ଗୁରୁଦେବଙ୍କ ପ୍ରକାଣ୍ଡ ବ୍ୟକ୍ତିତ୍ୱ ଆଗରେ ସଂଭ୍ରମରେ ସଢ଼ିଯାଉଛନ୍ତି । ଅନ୍ୟପକ୍ଷରେ ରବୀନ୍ଦ୍ରନାଥ ମଧ୍ୟ ରାନୁ ମୁଖାର୍ଜୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପ୍ରେମ ନିବେଦନ କରିବାକୁ ଚାହୁଁଛନ୍ତି ଅଥଚ ରାନୁ ବୟସରେ ଏତେ ଛୋଟ ଯେ ଗୁରୁଦେବ ମଧ୍ୟ ପ୍ରେମର ଦୁଆର ନିକଟରେ ଅଟକି ରହୁଛନ୍ତି । ରାନୁ ମୁଖାର୍ଜୀଙ୍କ ବକ୍ତବ୍ୟରେ ମୁଁ ହତଚକିତ ହୋଇଯାଇଥିଲି ଏବଂ ଏଠି ଡାରଟିଙ୍ଗଟନ୍ କଲେଜରେ ମୋର ସେଭଳିଆ ଦୋଦୋପାଞ୍ଚ ଅବସ୍ଥାଟିଏର ଉଦ୍ଭବ ଘଟିଲା । ଡାରଟିଙ୍ଗଟନ୍‌ର ଶାନ୍ତିନିକେତନୀୟ ପରିବେଶ ଛାଡ଼ିଯିବାକୁ ମନ କହୁ ନଥିଲା କିନ୍ତୁ ବ୍ରିଟିଶ୍ କାଉନ୍‌ସିଲ୍‌ର କାର୍ଯ୍ୟକ୍ରମ ମୋ ପାଇଁ ଭିନ୍ନ ଥିଲା । ମୁଁ ସେଠାରୁ ଯାଇ ଲିଭରପୁଲ୍‌ରେ ପହଂଚି ଆଟେନ ହୋଟେଲରେ ରାତିଟି କଟେଇଲି । ଲିଭରପୁଲ୍‌ରେ 'ଆର୍ଟସ୍, ମିଡ଼ିଆ ଏବଂ ଡିଜାଇନ୍ ଅନୁଷ୍ଠାନ'ର ମୁଖ୍ୟ ପ୍ରଫେସର ରୋଜର୍ ବ୍ରେକ୍‌ଓ୍ୱେଲ୍‌ଙ୍କ ସହିତ ଦେଖାହେଲା । ସୂକ୍ଷ୍ମକଳା ଓ ପଲିଟେକ୍‌ନିକ୍‌ରେ ଶିକ୍ଷା ଦିଆଯାଉଥିବା ବ୍ୟାବହାରିକ କଳା ବା ଇଣ୍ଡଷ୍ଟ୍ରିଆଲ କଳାକୁ ନେଇ ଭାରତୀୟ କଳା ବିଦ୍ୟାଳୟର ଅଧ୍ୟାପକଙ୍କ ମୁଣ୍ଡରେ ଦାନା ବାନ୍ଧିଥିବା ଉପନିବେଶୀୟ କଳାର ଭ୍ରମଧାରଣାକୁ ହଟେଇ ଦେବା ପାଇଁ ବ୍ରିଟିଶ କାଉନ୍‌ସିଲ୍ ଏଭଳି କଳା ଅନୁଷ୍ଠାନମାନ ପରିଦର୍ଶନର ବ୍ୟବସ୍ଥା କରିଥିଲେ । ଲିଭରପୁଲ୍‌ର କଳା ବିଦ୍ୟାଳୟଟି ଏପ୍ଲାଇଡ୍ ଆର୍ଟ୍ ବା ବ୍ୟାବହାରିକ କଳାର ଏକ ମାନ୍ୟତାପ୍ରାପ୍ତ ଅନୁଷ୍ଠାନ । କଳାଶିକ୍ଷାର ପ୍ରଗତି ସହିତ ତାଳ ଦେଇ ନପାରି ବା କଳାଜଗତରେ ଘଟୁଥିବା ପରିବର୍ତ୍ତନ ସଂପର୍କରେ ଅଜ୍ଞ ରହି ବ୍ୟାବହାରିକ କଳା ବୋଲି ଆମେ ଓଡ଼ିଶାରେ ପ୍ରଚ୍ଛଦ ଚିତ୍ର, ବିଜ୍ଞାପନ ଚିତ୍ର ଓ ପୋଷ୍ଟର୍ ଆଙ୍କିବା ଶିକ୍ଷା ଦେଉଛୁ । ଅଥଚ ଏଠି ଶହେବର୍ଷ ତଳେ ଏସବୁ ଆମକୁ ଶିଖାଇଥିବା ବ୍ରିଟିଶ ଅଧ୍ୟାପକମାନେ ନିଜର ପୁରୁଣା ଆଭିମୁଖ୍ୟ ବଦଳେଇ ସାରିଲେଣି । ଲିଭରପୁଲ୍‌ରେ ଆଲ୍‌ବର୍ଟ୍ ଡକ୍‌ରେ ଜାହାଜ ସଂଗ୍ରହାଳୟ ଓ ଟେଟ୍ ଗ୍ୟାଲେରୀ ଦେଖିବାର ଅପୂର୍ବ ସୁଯୋଗ ମିଳିଥିଲା ।

ମୁଁ ପୁଣି ଲଣ୍ଡନ ଫେରିଆସି ୱିମ୍ବଲଡ଼ନ୍ ଆର୍ଟ୍‌ସ୍କୁଲ ପରିଦର୍ଶନ କଲି । ସ୍କୁଲର ଅଧ୍ୟକ୍ଷ ଡକ୍ଟର ସି ପେଣ୍ଟରଙ୍କ ବିଚକ୍ଷଣ ପ୍ରଶାସନିକ ଦକ୍ଷତା ମୋତେ ତାଙ୍କ ପ୍ରତି ଆକୃଷ୍ଟ କରିଦେଇଥିଲା । ଡକ୍ଟର ପେଣ୍ଟର ମନେହେଲା ଜଣେ ଯୋଗ୍ୟ ବ୍ୟକ୍ତି ଯିଏ ମୋତେ ବୁଝେଇ ଦେଇଥିଲେ ଯେ ଗୋଟିଏ ଚିତ୍ରର ତଳ ଉପର ଭିତରେ ପ୍ରଭେଦ ନ ରହିବା ଭଲ ତାହେଲେ ଚିତ୍ରଟିକୁ କାନ୍ଥରେ ଯେମିତି ବାଗରେ ଝୁଲେଇଲେ ବି ଚଳିବ । ଅବଶ୍ୟ ଏଭଳି ବ୍ୟବସ୍ଥା ଆବଷ୍ଟ୍ରାକ୍ଟ ବା ନିରୂପ ଚିତ୍ର କ୍ଷେତ୍ରରେ ହିଁ ସମ୍ଭବ ।

Digitized by srujanika@gmail.com

ତା'ପରଦିନ ବ୍ରିଟିଶ କାଉନ୍‌ସିଲ୍ ଲଣ୍ଡନଠାରୁ ଅନତିଦୂରରେ ଥିବା ଆଉ ଗୋଟିଏ 'ଆର୍ଟ୍ ଓ ଡିଜାଇନ୍'ର କଲେଜ ଦେଖାଇବା ପାଇଁ କାର୍ଯ୍ୟକ୍ରମ ରଖିଥିଲେ । ଏଥରକ ଆର୍ଟ୍ କଲେଜ ଦେଖାର ଏହା ଥିଲା ଶେଷ କାର୍ଯ୍ୟକ୍ରମ - ୱେଷ୍ଟ୍‌ସ୍‌ରେ କଲେଜ ଅଫ୍ ଆର୍ଟ୍ ଆଣ୍ଡ୍ ଡିଜାଇନ୍ । ନିୟମିତ ସିଲାବସ୍ ମଧ୍ୟରେ ସ୍ୱତନ୍ତ୍ର ବିଷୟ ପ୍ରତି ଅଧିକ ଗୁରୁତ୍ୱ ଦେଇ ଏଠାରେ ଅନର୍ସକ୍ଲାସର ବ୍ୟବସ୍ଥା ଥିଲା । ବି.ଏ. ଫାଇନ୍ ଆର୍ଟ୍ ଅନର୍ସ କୋର୍ସ୍‌ର କୋର୍ସ୍‌ଲିଡ଼ର୍ ଜେମସ୍ ଟିଏରନେ ଏଭଳି ବ୍ୟବସ୍ଥାର ଉପକାରିତା ମୋତେ ପ୍ରାଞ୍ଜଳ ଭାବେ ବୁଝାଇ ଦେଇଥିଲେ । କଳାଶିକ୍ଷାରେ ଚିତ୍ର, ଭାସ୍କର୍ଯ୍ୟ, ଗ୍ରାଫିକ୍ କଳା ବା ବ୍ୟାବହାରିକ କଳା ମଧ୍ୟରେ ଥିବା ତଥାକଥିତ ଭିନ୍ନତା କଳାକୁ ଠିକ୍ ଭାବରେ ନ ବୁଝିପାରିଥିବାର ଫଳ । ଏଗୁଡ଼ିକ ମଧ୍ୟରେ ତିଷ୍ଠି ରହିଥିବା ପ୍ରତିବନ୍ଧକ ଅମୂଳକ । ଏଣୁ ଭାସ୍କର୍ଯ୍ୟର ଛାତ୍ରଜଣକ ଜଳରଙ୍ଗର ଚିତ୍ର ସଂପର୍କରେ ଧାରଣା ରଖିବା ଏକାନ୍ତ ଆବଶ୍ୟକ । ଅନର୍ସ କାର୍ଯ୍ୟକ୍ରମ ଛାତ୍ର ବା ଛାତ୍ରୀର ଶିକ୍ଷଣୀୟ ବଳୟକୁ ସଂପ୍ରସାରିତ କରିଦେଇଥାଏ । କଲେଜ ଦେଖା ସରିଲାପରେ ଜେମ୍‌ସ ମୋ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଥିଲେ । ମୋ ଖାଇବା କୌଣସି ବାହାରର ରେସ୍ତୋରାଁରୁ ଆଣିବାକୁ ପଡ଼ି ନଥିଲା । କଲେଜ କ୍ୟାଣ୍ଟିନ୍‌ରେ ସବୁ ପ୍ରକାର ସୁସ୍ୱାଦ ଖାଦ୍ୟର ବ୍ୟବସ୍ଥା ଥିଲା । ଭୋଜନ ବାଢୁଥିବାବେଳେ ଆମେ ପରସ୍ପର ନିଜ ନିଜ କଲେଜ ସଂପର୍କରେ ବିଭିନ୍ନ ଦିଗରୁ ଆଲୋଚନା କଲୁ । ଠାଏଁ ଠାଏଁ ତାଳମେଳ ପଡୁଥିଲା ତ ଅଧିକାଂଶ କ୍ଷେତ୍ରରେ ଆମେ ଯେମିତି ଉତ୍ତରମେରୁ ଓ ଦକ୍ଷିଣମେରୁରେ ସ୍ୱତଃ ଅବସ୍ଥାପିତ ହେଇଯାଉଥିଲୁ । ୱେଷ୍ଟ୍‌ସ୍‌ରେ କଲେଜର ମଧ୍ୟାହ୍ନ ଭୋଜନ ମୋ ପାଇଁ ଥିଲା ଫେଆରୱେଲ୍ ଲଞ୍ଚ୍ । ଇଂରାଜୀ ଲୋକେ ଆଦବ କାଏଦା ପ୍ରତି ଖୁବ୍ ସଚେତନ ଓ ଜଣେ ବିଦେଶାଗତ ଅତିଥିଙ୍କୁ କିଭଳି ସମ୍ମାନ ଦେଖାଇ ପ୍ରଭାବିତ କରିହେବ ତାହା ଭଲ ଭାବରେ ଜାଣନ୍ତି ।

ଏ ଭିତରେ କୋଡ଼ିଏ ବର୍ଷରୁ ଅଧିକ ସମୟ ବିତିଯାଇଛି । ଲଣ୍ଡନର ଆର୍ଟ୍ କଲେଜମାନଙ୍କରେ ପାଠ୍ୟକ୍ରମ ଓ ଅନ୍ୟାନ୍ୟ ବ୍ୟବସ୍ଥାରେ ପରିବର୍ତ୍ତନ ହେଇଯାଇଛି । ସେମାନେ ଦ୍ରୁତ ଗତିରେ ଆଗକୁ ଯେତିକି ପ୍ରସାରିତ ହେଇଛନ୍ତି ଆମର ଏଠି ସେତିକି ପରିମାଣରେ ଅଧୋଗତି ଦେଖାଯାଇଛି । ଲଣ୍ଡନରେ କଲେଜଗୁଡ଼ିକ ପରିଦର୍ଶନ କଲାବେଳେ ମନରେ କେତେକଥା ଉଙ୍କିମାରିଥିଲା । ସେଥିରୁ ଅଶି ପ୍ରତିଶତ ଆମ କଲେଜରେ ସମ୍ଭବ ହେଇପାରି ନାହିଁ । ଆମର ଦୁଇଜଣ ଛାତ୍ର ଅଦ୍ୱୈତ ପ୍ରସାଦ ଗଡ଼ନାୟକ ଓ ଜଗନ୍ନାଥ ପଣ୍ଡା ଲଣ୍ଡନର ଦୁଇଟି ଅଲଗା ଅଲଗା ଆର୍ଟ୍ କଲେଜରେ କଳାରେ ଉଚ୍ଚତର ଶିକ୍ଷାପାଇ ଫେରିଆସିଛନ୍ତି । ସେମାନଙ୍କ ଭବିଷ୍ୟତ ସ୍ୱପ୍ନ କ'ଣ ତାହା ଏ ଯାଏଁ ସ୍ପଷ୍ଟ ନୁହେଁ । ଅଦ୍ୱୈତ କିଟ୍ ବିଶ୍ୱବିଦ୍ୟାଳୟରେ ଗୋଟିଏ ଚିତ୍ରକଳା ବିଭାଗ ଖୋଲିବା ପ୍ରଚେଷ୍ଟାରେ

Digitized by srujanika@gmail.com

ଥାଇ ସେଠାରେ ପ୍ରକାଣ୍ଡ ପ୍ରକାଣ୍ଡ ଭାସ୍କର୍ଯ୍ୟର ଉଦ୍ୟାନଟିଏ ରଚନା କରିସାରିଲାଣି । ଜଗନ୍ନାଥ ଗ୍ୟାଲେରୀଭିତ୍ତିକ କଳାଭ୍ୟାସ ସହିତ ସଂପୃକ୍ତ । ମୋର ଧାରଣା ଏ ଉଭୟେ ଆମ କଲେଜରେ ଯଦି ଅଧ୍ୟାପକ ଭାବେ ଅବସ୍ଥାପିତ ହୋଇପାରନ୍ତେ ତା'ହେଲେ କଳାଶିକ୍ଷାର ଅଭୂତପୂର୍ବ ଉନ୍ନତି ସାଧିତ ହୋଇପାରନ୍ତା । ଅଦ୍ୱୈତ କହୁଥିଲା ତା' କଳା ବିଭାଗରେ ବ୍ରୋଞ୍ଜ୍ କାଷ୍ଟିଙ୍ଗ୍ ପାଇଁ ବା ଭାସ୍କର୍ଯ୍ୟର ଅନ୍ୟାନ୍ୟ କୌଶଳ ଶିକ୍ଷା କରିବା ପାଇଁ ଯେତିକି ସାଜସରଞ୍ଜାମ ଅଛି, ସେଗୁଡ଼ିକର ସଦୁପଯୋଗ କରିବା ପାଇଁ ବି.କେ.ର କେହିହେଲେ ଛାତ୍ର ସେଠି ପହଞ୍ଚୁ ନାହାନ୍ତି । ମୁଁ ମନେମନେ ଭାବୁଛି, ଯଦି ମୁଁ ଅଧକ୍ଷ ଦାୟିତ୍ୱରେ ଏବେ ଥାଆନ୍ତି ତା'ହେଲେ ଅଦ୍ୱୈତର ସହଯୋଗରେ ସଉରା ଚିତ୍ର ପ୍ରସାରକୁ ପଛରେ ପକାଇ କିଛି ଗୋଟିଏ ନୂଆ ଟାଣୁଆ କାର୍ଯ୍ୟକ୍ରମ ଆରମ୍ଭ କରିଦିଅନ୍ତି । ଆମେ ଆଜିଯାଏ ଓଡ଼ିଶାର ଆର୍ଟ୍ କଲେଜମାନଙ୍କରେ ଗୋଟିଏ ରେସ୍ତୋରାଁ ଆଉ ଗୋଟିଏ ଆର୍ଟ୍ ମେଟେରିଅଲ୍ ସପ୍ (ରଙ୍ଗ ଦୋକାନ) ଖୋଲିପାରିଲୁନି । ଅନ୍ୟସବୁ ପରିକଳ୍ପନା ପଛକୁ ଥାଉ ।

ଧନ୍ୟ ଧନ୍ୟ ଉତ୍କଳ ଦେଶ, ଧନ୍ୟ ଆମର ଆଭିମୁଖ୍ୟ ।

Digitized by srujanika@gmail.com

# ୪୭. ଭି ଆଣ୍ଡ୍ ଏ ର ସ୍କଲାର : ଲଣ୍ଡନରେ ମ୍ୟୁଜିୟମ ଦେଖା

ଲଣ୍ଡନରେ ଅନେକ ସଂଗ୍ରହାଳୟ ଅଛି କିନ୍ତୁ ସେଥିରୁ ଦୁଇଟି ଭାରତୀୟ କଳା ପରିପ୍ରେକ୍ଷୀରେ ଗୁରୁତ୍ୱପୂର୍ଣ୍ଣ । ପ୍ରଥମଟି ହେଲା ବ୍ରିଟିଶ୍ ମ୍ୟୁଜିୟମ୍ ଓ ଦ୍ୱିତୀୟଟି ହେଲା ଭିକ୍ଟୋରିଆ ଆଣ୍ଡ୍ ଆଲବର୍ଟ୍ ମ୍ୟୁଜିୟମ୍ ଯାହା ଭି ଆଣ୍ଡ ଏ ନାମରେ ପ୍ରସିଦ୍ଧି ଲାଭ କରିଛି । ଏହି ଦୁଇଟି ବ୍ୟତୀତ ଇଣ୍ଡିଆ ଅଫିସ୍ ଲାଇବ୍ରେରୀରେ ମଧ୍ୟ ଭାରତୀୟ କଳାର ଅନେକ ଦୁର୍ମୂଲ୍ୟ ସାମଗ୍ରୀ ଗଚ୍ଛିତ ଅଛି । ମୋ ବନ୍ଧୁ ଏବର୍‌ହାର୍ଡ୍ ଫିସର୍ ଏବଂ ତାଙ୍କର ଅଣୟୁରୋପୀୟ ସଂଗ୍ରହାଳୟ ମ୍ୟୁଜିୟମ୍ ରିଟ୍‌ବର୍ଗ୍ ସହିତ ସଂପର୍କିତ ହେଲାପରେ ଆନ୍ତର୍ଜାତିକ ସ୍ତରରେ ବିଭିନ୍ନ ସଂଗ୍ରହାଳୟ ଓ ସଂଗ୍ରହାଳୟର ନିର୍ଦ୍ଦେଶକମାନେ ଆଉ ଅପରିଚିତ ରହିଲେ ନାହିଁ । ଓଡ଼ିଶାର ଚିତ୍ରକଳା ସଂପର୍କରେ ଏବର୍‌ହାର୍ଡ୍ ଫିସର୍‌ଙ୍କ ସହ ମିଶି କରିଥିବା ଗବେଷଣା ଓ ପ୍ରକାଶନ ଆନ୍ତର୍ଜାତିକ ସ୍ତରେ କଳା ଗବେଷକଙ୍କ ନିକଟରେ ଜଣେ କଳା ଐତିହାସିକ ଭାବେ ମୋର ଅସ୍ମିତାଟିଏ ସୃଷ୍ଟି କରି ଦେଇଥିଲା । ଲଣ୍ଡନର କଳା ଐତିହାସିକ ଡେବୋରା ସ୍ୱାଲୋ, ରୋଜ୍ ମେରୀ କ୍ରିଲ, ଜନ୍ ଗାଏ ଓ ଜେରେମିଆ ପି ଲଷ୍ଟିଙ୍କ ସହିତ ମୋ ବନ୍ଧୁତା ଥିଲା । କିନ୍ତୁ ଡେବୋରା ସ୍ୱାଲୋ (ଦେବୀ) ଥିଲେ ମୋର ଅନ୍ତରଙ୍ଗ ।

ଭିକ୍ଟୋରିଆ ଆଣ୍ଡ୍ ଆଲବର୍ଟ୍ ମ୍ୟୁଜିୟମ୍ ନବେ ଦଶକରେ କେତେକ ନିର୍ବାଚିତ ଭାରତୀୟ କଳାକୃତିକୁ ନେଇ ଗୋଟିଏ ସ୍ୱତନ୍ତ୍ର ଗ୍ୟାଲେରୀର ପରିକଳ୍ପନା କରି ତାକୁ ଜବାହାରଲାଲ ନେହେରୁଙ୍କ ନାଁରେ ନାମକରଣ କରିଥିଲେ । ଭାରତ ଓ ଦକ୍ଷିଣପୂର୍ବ ଏସିଆ ସହିତ ଗବେଷଣା ମାଧ୍ୟମରେ ସଂପର୍କକୁ ଦୃଢ଼ୀଭୂତ କରିବା ପାଇଁ ଏହି ନେହେରୁ ଗ୍ୟାଲେରୀକୁ ମ୍ୟୁଜିୟମ୍ କର୍ତ୍ତୃପକ୍ଷ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଭାବେ ବିବେଚନା କରୁଥିଲେ ଏବଂ ଦକ୍ଷିଣପୂର୍ବ ଏସିଆ ଓ ଭାରତୀୟ ଗବେଷକମାନଙ୍କୁ ଭି ଆଣ୍ଡ୍ ଏ ନେହେରୁ ସ୍କଲାର୍‌ସିପ୍ ପ୍ରଦାନ କରୁଥିଲେ । ଦିନେ ଦେବୀଙ୍କ ନିକଟରୁ ଖଣ୍ଡିଏ ଚିଠି ଓ ତା' ସହିତ ଗୋଟିଏ ଫର୍ମ ଆସି କଲେଜରେ ପହଞ୍ଚିଲା । ଲଣ୍ଡନ ଯାଇ ଆଉଥରେ ସଂଗ୍ରହାଳୟଗୁଡ଼ିକୁ ଦେଖି ଆସିବାର ସମ୍ଭାବନାଟିଏ ଉଙ୍କି ମାରିଲା । କହିବା ବାହୁଲ୍ୟ ଯେ ମୋତେ ଖାଲି ସ୍କଲାର୍‌ସିପ୍‌ଟିଏ ମିଳିଲାନି ଓ ତା' ସହିତ ସୁଯୋଗଟିଏ ମଧ୍ୟ ମିଳିଲା । ଦିଲ୍ଲୀରେ ସାକ୍ଷାତକାର ହେଲା

Digitized by srujanika@gmail.com

ଏବଂ ସଂଗ୍ରହାଳୟ ପରିଚାଳନାରେ ମୋର ଦୀର୍ଘ ଅନୁଭୂତି ହେତୁ ବ୍ୟକ୍ତିଗତ ଭାବେ ସାକ୍ଷାତକାର ଦେବା ଆବଶ୍ୟକ ହେଲାନି ।

ବ୍ରିଟିଶ୍ କାଉନ୍‌ସିଲ୍ କ୍ଷେତ୍ରରେ ଯିମିତି ଆର୍ଥିକ ସଂକୋଚନ, ଭି ଆଣ୍ଡ୍ ଏରେ ମଧ୍ୟ ଠିକ୍ ସେଭଳି ବ୍ୟବସ୍ଥା । ଏଥରକ ମଧ୍ୟ ମୋତେ ଏବରହାର୍ଡ଼୍‌ଙ୍କୁ ଆନ୍ତର୍ଜାତିକ ଗସ୍ତ ପାଇଁ ଅନୁରୋଧ କରିବାକୁ ପଡ଼ିଲା । ଭୁବନେଶ୍ୱରରୁ ଦିଲ୍ଲୀ ଦେଇ ଜୁରିକ୍, ଜୁରିକ୍‌ରୁ ଲଣ୍ଡନ । ଲଣ୍ଡନରେ ମୋର ମୁଖ୍ୟ କର୍ମଭୂମି ଥିଲା ଭି ଆଣ୍ଡ୍ ଏ ମ୍ୟୁଜିୟମ୍ । କିନ୍ତୁ ଲଣ୍ଡନରେ ପହଞ୍ଚି ଆମେ ପ୍ରଥମେ ଗୋଟିଏ ହୋଟେଲ୍‌ରେ ରହିଲୁ । ଏମ୍.ଏସ୍. ୟୁନିଭରସିଟି ବରୋଦାରୁ ପ୍ରଫେସର୍ ରତନ ପାରିମୁ ମଧ୍ୟ ଏହି ସ୍କଲାର୍‌ସିପ୍ ପାଇ ଲଣ୍ଡନରେ ପହଞ୍ଚିଥିଲେ । ହୋଟେଲ ଲାଉଞ୍ଜରେ ଆମେ ପରସ୍ପରକୁ ଭେଟି ବନ୍ଧୁତାର ସଂପର୍କକୁ ପୁଣିଥରେ ଉଜ୍ଜୀବିତ କରିଥିଲୁ । ରତନ ପାରିମୁ ଅନେକଦିନ ତଳେ ଲଣ୍ଡନରେ କଳା ଇତିହାସ ଅଧ୍ୟୟନ କରୁଥିଲେ । ଏଥାରି ଭିତରେ ସେ ଆଉ ଲଣ୍ଡନ ଆସିବାର ସୁଯୋଗ ପାଇ ନଥିଲେ । ଏଣୁ ରତନ ପାରିମୁ ମୁକ୍ତ ବିହଙ୍ଗମ ଭଳି ପ୍ରଥମେ ଘୂରି ବୁଲିଲେ । ଆମେ ଉଭୟେ ଯାଇ ୱିକ୍‌ଲି ଅଣ୍ଡର୍ ଗ୍ରାଉଣ୍ଡ୍ ମେଟ୍ରୋ ଟିକେଟ୍ କରିବା ପାଇଁ ପାସ୍‌ପୋର୍ଟ୍ ଫଟୋ ଉଠେଇଲୁ । ପାରିମୁ ମୋତେ ସାଂଗରେ ନେଇ ଟ୍ରାଫ୍‌ଲ୍‌ଗାର୍ ସ୍କୋଆର୍‌ରେ ପିଜା ଖୁଆଇଲେ । ଆମେ ଦୁହେଁ ଲଣ୍ଡନର ସନ୍ଧ୍ୟାକୁ ପ୍ରାଣଭରି ଉପଭୋଗ କଲୁ । ନ୍ୟାସନାଲ୍ ପୋର୍ଟ୍ରେଟ୍ ଗ୍ୟାଲେରୀରେ ତାଙ୍କ ସହିତ ୟୁରୋପିଏନ୍ ଚିତ୍ରକଳା ଜଗତର ମାଷ୍ଟର୍ ଆର୍ଟିଷ୍ଟ୍‌ମାନଙ୍କୁ ଦେଖିବାକୁ ଚାହିଁଥିଲି । ରତନ ପାରିମୁ ମୋତେ ପାଶ୍ଚାତ୍ୟର ଆଧୁନିକ ଶିଳ୍ପୀଙ୍କ ପ୍ରତ୍ୟେକ ଛବିକୁ ଆଉଥରେ ଚିହ୍ନେଇ ଦେଲେ । ଶିଳ୍ପୀମାନଙ୍କର ନାଁ ସବୁକୁ ଠିକ୍ ଭାବରେ କିମିତି ଉଚ୍ଚାରଣ କରିହେବ ବୁଝାଇ ଦେଲେ ଯିମିତି ରେମ୍‌ବ୍ରାଂଟ୍ ନୁହେଁ ରେମ୍‌ବ୍ରାଁ । ଜର୍ଜ ସିଉରତ୍ ନୁହେଁ ଜର୍ଜ ସିଉରା, ମୋନେଟ୍ ନୁହେଁ ମୋନେ, ଗଗିନ୍ ନୁହେଁ ଗଗାଁ ଇତ୍ୟାଦି । ମୁଁ କଲେଜରେ କଳା ଇତିହାସ ପଢ଼ାଉଥିବାରୁ ଏସବୁ ନୂଆ ପାଠ ମୋ ପାଇଁ ଅତି ଉପାଦେୟ ମନେହେଲା ।

ମୁଁ ପ୍ରତ୍ୟହ ଭି ଆଣ୍ଡ୍ ଏ ରେ ପ୍ରବେଶ କରିବା ପୂର୍ବରୁ ମ୍ୟୁଜିୟମ୍ ବାହାର କାନ୍ଥରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ହୋଇଥିବା ବୋମାମାଡ଼ର କ୍ଷତଚିହ୍ନ ଆଖିରେ ପଡୁଥାଏ । ପର୍ଯ୍ୟଟକମାନେ ଓ ଗବେଷକମାନେ ଏହି ସ୍ମୃତିର ରୋମନ୍ଥନ କରିବେ ବୋଲି ମ୍ୟୁଜିୟମ୍ କର୍ତ୍ତୃପକ୍ଷ ଜାଣିଶୁଣି ଏହି କ୍ଷତଗୁଡ଼ିକର ମରାମତି କରି ନଥିଲେ । ଭିକ୍ଟୋରିଆ ଆଣ୍ଡ୍ ଆଲବର୍ଟ୍ ମ୍ୟୁଜିୟମ୍ ଆର୍ଟ ଓ ଡିଜାଇନ୍‌ର ଜାତୀୟ ସଂଗ୍ରହାଳୟ । ପୃଥିବୀର ବଛାବଛା ଫର୍ନିଚର୍, ସିରାମିକ୍‌ସ୍, ଗ୍ଲାସ୍‌ର ସାମଗ୍ରୀ, କଂସା ପିତଳ କାମ, ଅଳଂକାର, ବସ୍ତ୍ର ଓ ପୋଷାକ ପରିଚ୍ଛଦ, ଚିତ୍ର, ପ୍ରିଣ୍ଟ୍, ଡ୍ରଇଁ, ପୋଷ୍ଟର୍, ଫଟୋଗ୍ରାଫ୍ ଓ ଭାସ୍କର୍ଯ୍ୟ ଏଠାରେ ସଂରକ୍ଷିତ ଅଛି । ଏଠି ସଂରକ୍ଷିତ ଚୀନ, ଜାପାନ ଓ ମଧ୍ୟପ୍ରାଚ୍ୟ ଦେଶ ସମୂହର ଶ୍ରେଷ୍ଠ କଳାକୃତିଗୁଡ଼ିକ

Digitized by srujanika@gmail.com

ଦର୍ଶକର ପ୍ରାଣକୁ ସ୍ପର୍ଶ କରେ । କଳା ସଂରକ୍ଷଣ, ବିଶେଷ କରି କାଗଜରେ ଅଙ୍କିତ ଚିତ୍ରଗୁଡ଼ିକର ସଂରକ୍ଷଣ ପାଇଁ ଭି ଆଣ୍ଡ୍ ଏ ରେ ଗୋଟିଏ ସ୍ୱତନ୍ତ୍ର ତାଲିମର ବ୍ୟବସ୍ଥା ଅଛି । ସେଠାରେ ଆମକୁ ସଂରକ୍ଷଣର ସାଧାରଣ କୌଶଳଗୁଡ଼ିକ ଶିକ୍ଷା ଦିଆହେଲା ।

ନେହେରୁ ଗ୍ୟାଲେରୀ ଭାରତର କଳା ସଂପଦକୁ ପୁନଃ ଆବିଷ୍କାର କରିବା ପାଇଁ ଉଦ୍ଦିଷ୍ଟ ଏବଂ କଳା ସାମଗ୍ରୀ ସହିତ ଊନବିଂଶ ଶତାବ୍ଦୀର ଇତିହାସର ଉନ୍ମୋଚନ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । 'ଟିପୁଙ୍କ ବାଘ' ଏହି ଗ୍ୟାଲେରୀରେ ପ୍ରଦର୍ଶିତ ବହୁ ଚର୍ଚ୍ଚିତ କଳା ସାମଗ୍ରୀ ମଧ୍ୟରୁ ଅନ୍ୟତମ । ଏହାକୁ ଦେଖିଲେ ସୁଲତାନ ଟିପୁଙ୍କ ପରାକ୍ରମ ଓ ବ୍ରିଟିଶ ଶାସନ ପ୍ରତି ତାଙ୍କ ତାଚ୍ଛଲ୍ୟ ସ୍ପଷ୍ଟ ହୋଇଯାଏ । 'ଟିପୁଙ୍କ ବାଘ' ଛଅ ଫୁଟିଆ, ଗୋଟିଏ ପ୍ରକାଣ୍ଡ ଚିତ୍ରିତ ଭାସ୍କର୍ଯ୍ୟ । ବାଘଟି ଗୋଟିଏ ଭୂପତିତ ସୈନିକ ଉପରେ ମାଡ଼ିବସି ତା'ଗଳାକୁ ଝୁଣୁଛି । ସୈନିକର ଦେହର ରଙ୍ଗ, ତାର ନାଲିଆ କୋଟ୍ ଓ ବିଶେଷ କରି ତାର ଚଉଡ଼ା ଟୋପିକୁ ଲକ୍ଷ୍ୟ କଲେ ତାହା ଯେ ନିଶ୍ଚିତ ଭାବେ ଜଣେ ବ୍ରିଟିଶ ସୈନିକର ପ୍ରତିମୂର୍ତ୍ତି ଏହା ଅବିସମ୍ବାଦିତ । ସୈନିକଟିର ପ୍ରାଣାତୁର ଅବସ୍ଥା ତା'ର ବିସ୍ଫାରିତ ଚକ୍ଷୁ ଦୁଇଟିରୁ ଜଣାପଡ଼ିଯାଉଛି । ବାଘର ପେଟ ଟି ଫମ୍ପା ଓ ତାର ପିଠିଟିରେ ଗୋଟିଏ କବାଟ ଭଳି କବ୍‌ଜା ଖଞ୍ଜା ହୋଇଛି । ବାଘର ପେଟ ଭିତରେ ଅଠରଟି ବୋତାମ ଯାହା ଦେହରୁ ପାଇପଗୁଡ଼ିଏ ସଂଗୀତ ପରିବେଷଣ ପାଇଁ ଉଦ୍ଦିଷ୍ଟ । ବାଘର ବାଁ ପଟ କାନ୍ଧ ପାଖରେ ଗୋଟିଏ ହେଣ୍ଡେଲ୍, ଯାହାକୁ ମୋଡ଼ିଲେ ସୈନିକର ବାଁ ହାତଟି ଅସହାୟ ଭାବେ ସାହାଯ୍ୟ ପାଇଁ ଉପରକୁ ଉଠି ଆସୁଛି । ଟିପୁଙ୍କ ଦରବାରର କିଛି ସ୍ମୃତି ଯଥା ଟିପୁଙ୍କ କୋଟ୍, ପରସିଆନ୍ ଅଭିଲେଖ ଥାଇ ଷିଲ୍‌ର ଗୋଟିଏ ଖଣ୍ଡା, ୟୁରୋପରେ ତିଆରି ଗୋଟିଏ ପକେଟ୍ ୱାଚ୍, ଶ୍ରୀରଙ୍ଗପାଟଣା ନଅରକୁ ପ୍ରତିନିଧିତ୍ୱ କରୁଥିବା କେତେକ ହାତଅଙ୍କା ଚିତ୍ର ମଧ୍ୟ ନେହେରୁ ଗ୍ୟାଲେରୀରେ ସ୍ଥାନ ପାଇଛି । ମୁଁ ଉଲ୍ଲେଖ କରିବାକୁ ଭୁଲି ଯାଇଛି ଯେ କିଭଳି ହେଣ୍ଡେଲ୍‌ଟି ମୋଡ଼ି ଦେଲେ ସୈନିକ ତା' ବାଁ ହାତ ଉଠାଇବା ସହିତ ବାଘର ହେଷ୍ଟାଳ ଓ ସୈନିକର ବିକଳ କ୍ରନ୍ଦନ ଏକ କରୁଣାତ୍ମକ ପରିବେଶ ସୃଷ୍ଟି କରୁଛି । 'ଟିପୁଙ୍କ ବାଘ' ବ୍ରିଟିଶ ମାନସିକତାକୁ ଊନବିଂଶ ଶତାବ୍ଦୀ ସାରା ଯଥେଷ୍ଟ ଆଘାତ ଦେଇଛି ଏବଂ ଏବେ ମଧ୍ୟ ଏହା ଜଣେ ଦକ୍ଷିଣ ଭାରତୀୟ ସୁଲତାନର ଶୌର୍ଯ୍ୟ ଓ ପ୍ରତିପତ୍ତିର ଯଶୋଗାନ କରୁଛି ।

ନେହେରୁ ଗ୍ୟାଲେରୀର ଅନ୍ୟ ଗୋଟିଏ ଚର୍ଚ୍ଚିତ କଳା ସାମଗ୍ରୀ ହେଲା ରଣଜିତ ସିଂହଙ୍କ ସିଂହାସନ । ଏହି ସିଂହାସନଟି କାଠର ଛାଂଚ ଉପରେ ସୁନାପାତ ଦେଇ ଗଢ଼ା ଯାଇଛି । ଇତିହାସ କହେ ୧୮୧୮ ମସିହାରେ ମୁଲ୍‌ତାନର କାରିଗର ହାଫିଜ୍ ମହମ୍ମଦ ତାକୁ ନିର୍ମାଣ କରିଥିଲେ ।

Digitized by srujanika@gmail.com

ଭି ଆଣ୍ଡ ଏ ର ନେହେରୁ ଗ୍ୟାଲେରୀ ମୂଳତଃ ଉପନିବେଶ ସମୟର ସଂଗୃହିତ କଳା ସାମଗ୍ରୀର ପ୍ରଦର୍ଶନୀ । ଏହି ପ୍ରଦର୍ଶନୀ ଦେଖିଲେ ବ୍ରିଟିଶ କଳାସମାଲୋଚକ ମାନଙ୍କର ଭାରତୀୟ କଳାପ୍ରତି ମନୋଭାବର ବିବର୍ତ୍ତନ ଲକ୍ଷ୍ୟ କରିହୁଏ, ଲଣ୍ଡନର ସାଉଥ୍ କେନ୍‌ସିଙ୍ଗ୍‌ଟନ୍‌ରେ ପ୍ରତିବର୍ଷ ଭାରତୀୟ କଳାସାମଗ୍ରୀକୁ ନେଇ ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା, ପ୍ରଦର୍ଶନୀ ସଂକ୍ରାନ୍ତରେ ସମୀକ୍ଷାମାନ ପକାଶ ପାଉଥିଲା ଏବଂ ଭାରତୀୟ କଳା ଉପରେ ବିବାଦୀୟ ମନ୍ତବ୍ୟମାନ ଦିଆଯାଉଥିଲା । ଜର୍ଜ ସି.ଏମ୍. ବାର୍ଡ଼ ଉଡ୍, ଇ.ବି. ହାଭେଲ୍, ରବର୍ଟ୍, ସ୍କେଲ୍‌ଟନ୍, କୁମାରସ୍ୱାମୀଙ୍କ ସୁଚିନ୍ତିତ ଶାଣିତ ବକ୍ତବ୍ୟ ମଧ୍ୟରେ ବ୍ରିଟିଶ ସମାଲୋଚନା ଆକ୍ଷେପ ଗୁଡ଼ିକ ଉଭେଇ ଯାଉଥିଲା ଓ ଶେଷରେ ବ୍ରିଟିଶ୍ କର୍ତ୍ତୃପକ୍ଷ ନିରପେକ୍ଷ ସିଦ୍ଧାନ୍ତରେ ପହଞ୍ଚୁଥିଲେ ଏବଂ ସାଉଥ୍ କେନ୍‌ସିଙ୍ଗ୍‌ଟନ୍‌ର ସଂଗୃହୀତ କଳାପୁଞ୍ଜିକୁ ନେଇ ୧୯୦୨ ମସିହାରେ ଭିକ୍ଟୋରିଆ ଆଣ୍ଡ୍ ଆଲବର୍ଟ୍ ମ୍ୟୁଜିୟମ୍‌ର ପରିକଳ୍ପନା କରାଗଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ବ୍ରିଟିଶ ସାମ୍ରାଜ୍ୟର କଳା ସଂପଦକୁ ଭାଙ୍ଗି ଚୂରମାର କରିଦେବା ପାଇଁ ଅପଚେଷ୍ଟା କରାଯାଇଥିଲା । 'ଟିପୁଙ୍କ ବାଘ' ମଧ୍ୟ ବୋମା ମାଡ଼ରେ ଘାଏଲା ହେଇଯାଇଥିଲା । ଭି ଆଣ୍ଡ ଏ ରେ ରହଣି ଭିତରେ ମୁଁ 'ଟିପୁଙ୍କ ବାଘ' ଓ ତା'ର ଇତିହାସକୁ ଯେଭଳି ଉନ୍ମୋଚନ କରିପାରିଲି ଏବଂ ସେଇ ଐତିହ୍ୟର ସ୍ମୃତିକୁ ନେଇ ଯେତେବେଳେ ମ୍ୟୁଜିୟମ୍ କାନ୍ଥର ବୋମା କ୍ଷତିଗ୍ରସ୍ତ କଣାଗୁଡ଼ିକୁ ଦେଖିଲି ସେଗୁଡ଼ିକ ବେଶି ବେଶି ଅର୍ଥପୂର୍ଣ୍ଣ ମନେହେଲେ । ହେନେରୀ ମୁର୍‌ଙ୍କ ଭାସ୍କର୍ଯ୍ୟ ଭଳି ସେହି କଣାଗୁଡ଼ିକ ମଧ୍ୟରେ କାହାଣୀ ଭରିଗଲା ।

ଭି ଆଣ୍ଡ୍ ଏ ର ଆଉ ଗୋଟିଏ କଳା ସାମଗ୍ରୀ ମତେ ବିସ୍ମୟରେ ଭରିଦେଲା । ସାମଗ୍ରୀ ଗୋଟିଏ ନୁହେଁ, ଦଳବଦ୍ଧ ଭାବରେ ପନ୍ଦର କୋଡ଼ିଏ ଗୋଟି ଭାସ୍କର୍ଯ୍ୟ । ଏଗୁଡ଼ିକ ଗୋଟିଏ ସୋ କେଶ୍ ମଧ୍ୟରେ ଶୋଭା ପାଉଥିଲେ ଏବଂ ତା' ଭିତରେ ଲେଖାଯାଇଥିଲା ରସଲ୍‌କୋଣ୍ଡା ବ୍ରୋଞ୍ଜ୍, ଓଡ଼ିଶା । ଓଡ଼ିଶା ଲେଖା ହୋଇ ନଥିଲେ ଓଡ଼ିଶାର ବୋଲି ଚିହ୍ନଟ କରିବା ମୋ ପାଇଁ ମୁସ୍କିଲ ହୋଇଥାନ୍ତା । ଏବେ ତ ରସଲ୍‌କୋଣ୍ଡା ଭଞ୍ଜନଗର ହେଇଗଲାଣି । ନିଜକୁ ଲଜ୍ଜିତ ଲାଗିଲା ଯେ ରସଲ ସାହେବ ଅମଳରୁ ଏ ଦୁର୍ଲଭ ବ୍ରୋଞ୍ଜ୍ ଗୁଡ଼ିକ ତିଷ୍ଠି ରହିଛି ଅଥଚ ଆମେ ନିଜକୁ ଏଠି କଳା ପଣ୍ଡିତ ବୋଲାଉଛେ, ଏଗୁଡ଼ିକୁ ଚିହ୍ନିନେ । ମୁଁ ମନସ୍ଥ କଲି ଓଡ଼ିଶା ଫେରିଲେ ଏଗୁଡ଼ିକୁ ଠାବ କରିବି । କଲି ମଧ୍ୟ ।  କିନ୍ତୁ ବିଶ୍ୱ ବଜାରରେ ଏଗୁଡ଼ିକର ଚାହିଦା ବଢ଼ିଯାଇଥିବାରୁ ପାଣ କାରିଗରମାନେ ସେତେବେଳକୁ ଫେକିଙ୍ଗ୍ କରିବା ଆରମ୍ଭ କରିଦେଲେଣି । ମୁଁ ଚିହ୍ନିରା ଗ୍ରାହକ ହେଇ ମଧ୍ୟ ଠକାମିରେ ପଡ଼ିଲି । ଆମେ ଭାବୁଛୁ ଆମେ ସହରୀ ଲୋକ ତ ଆମ ଭିତରେ ଆବିଳତା ପଶିଯାଇଛି ଓ ଆମେ ଦୁର୍ନୀତିଗ୍ରସ୍ତ ହେଇଯାଇଛୁ । କିନ୍ତୁ ନିରୀହ ବୋଲାଉଥିବା ଏବଂ ମଳିମୁଣ୍ଡିଆ ଭଳି ଦେଖାଯାଉଥିବା ଲୋକେ ଠକାମିରେ

Digitized by srujanika@gmail.com

ଏତେ ପାରିବାର କାନ୍ଧବ୍ରୋଞ୍ଜ୍ ସଂଗ୍ରହ ବେଳେ ଏହି ନିରାଟ ସତ୍ୟର ମୁଁ ଉନ୍ମୋଚନ କରିପାରିଲି ।

ଏହି ସଂଗ୍ରହାଳୟର ଆଧୁନିକ କଳା ବିଭାଗଟିରେ ଭାରତବର୍ଷର ପ୍ରସିଦ୍ଧ ଚିତ୍ରକର ତଥା ଭାସ୍କରମାନଙ୍କର କଳାକୃତି ସଂଗୃହୀତ ହୋଇଛି । ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ ଢଙ୍ଗଦ୍ୱାରା ପ୍ରଭାବିତ କଳାଠାରୁ ଆରମ୍ଭ କରି ଉପନିବେଶୀୟ ଚିତ୍ରକଳା ସହିତ କଂପାନୀ ଡ୍ରଇଁଗୁଡ଼ିକ ଭାରତୀୟ କଳାର ଅବକ୍ଷୟର ଇତିହାସ କହେ । ଏସବୁ କଳା ସଂପଦ କ୍ଷୟିଷ୍ଣୁ ଧାରାର ଅସ୍ମିତା ବହନ କରୁଥିଲେ ମଧ୍ୟ କଳା ଇତିହାସର ଏକ କ୍ରମିକତାକୁ ପ୍ରଚୋଦିତ କରେ । ପାଟଣା ଓ କଲିକତା ଭଳି କଟକର କଂପାନୀ ସ୍କୁଲ ଏତେ ବଳିଷ୍ଠ ନଥିଲେ ମଧ୍ୟ ଏହା ଯେ ଓଡ଼ିଶାର କଳା ଇତିହାସକୁ ପରିପୁଷ୍ଟ କରେ, ଏକଥାକୁ ଅସ୍ୱୀକାର କରିହେବନି । ଏହା ସହିତ ଜଗନ୍ନାଥଙ୍କ ରଥଯାତ୍ରା, ଦୋଳମଣ୍ଡପ, ଝୁଲଣ ପ୍ରଭୃତି ଡ୍ରଇଁଗୁଡ଼ିକ ମେକେଞ୍ଜି କଲେକ୍‌ସନ୍ ନାମରେ ଏହି ମ୍ୟୁଜିୟମ୍‌ରେ ସଂଗୃହୀତ ହୋଇଛି । ଆଧୁନିକ ଚିତ୍ରଶିଳ୍ପୀଙ୍କ ଭିତରେ ଧ୍ରୁବ ମିସ୍ତ୍ରୀ, ପ୍ରଫେସର୍ ଗୁଲାମ ଶେଖ, ଗୁଲାମ ରସୁଲ ସନ୍ତୋଷ, ମକବୁଲ୍ ଫିଦା ହୁସେନ୍, ଜ୍ୟୋତି ଭଟ୍ଟଙ୍କ କାମ ମୁଁ ଦେଖିବାକୁ ପାଇଲି । ଓଡ଼ିଆ ଶିଳ୍ପୀଙ୍କ କୌଣସି କାମ ଦେଖି ନପାରି ମନଟା ଟିକିଏ ଖଟା ଲାଗିଲା । ଦେବୀଙ୍କ ପ୍ରରୋଚନାରେ ମୁଁ ମୋର ଗୋଟିଏ ଗ୍ରାଫିକ୍ ପ୍ରିଣ୍ଟ ସଂଗ୍ରହାଳୟକୁ ଉପହାର ଦେଲି । ଏହି ପ୍ରିଣ୍ଟଟି ମ୍ୟୁଜିୟମ୍ ରିଟ୍‌ବର୍ଗରେ ଅନୁଷ୍ଠିତ ମୋର ଗୋଟିଏ ଏକକ ପ୍ରଦର୍ଶନୀ - 'ଫେସେସ୍ ନୋନ୍ ଆଣ୍ଡ୍ ଅନ୍‌ନୋନ୍‌ରେ' ପ୍ରଦର୍ଶିତ ହୋଇଥିଲା ।

ପ୍ରତି ମାସରେ ସଂଗ୍ରହାଳୟରେ କଳା ସମ୍ପର୍କରେ ଗୋଟିଏ ସେମିନାର୍‌ର ଆୟୋଜନ କରାଯାଏ । ଏମିତି ଗୋଟିଏ ସେମିନାର୍‌ରେ ଆମ ରାଜ୍ୟ ସଂଗ୍ରହାଳୟର ନିର୍ଦ୍ଦେଶକ ଡକ୍ଟର ହରିଶ୍ଚନ୍ଦ୍ର ଦାସ ଅପଦସ୍ତ ହେଇଥିବା କଥା ଡକ୍ଟର କପିଳା ବାତ୍ସ୍ୟାୟନ ମୋତେ କହିଛନ୍ତି । ସେମିନାର୍‌ଟି ବଡ଼ଧରଣର ଥିଲା ଓ ଭାରତ ଉତ୍ସବ ଅବସରରେ ଭି ଆଣ୍ଡ ଏ ରେ ଆୟୋଜିତ ହୋଇଥିଲା । ଓଡ଼ିଶାର ସ୍ଥାପତ୍ୟ କଳା ସଂପର୍କରେ ହରିଶ୍ଚନ୍ଦ୍ର ଦାସ ଭାଷଣ ଦେବାର ବ୍ୟବସ୍ଥା ହୋଇଥିଲା । ହରିଶ୍ଚନ୍ଦ୍ର ପର୍ସି ବ୍ରାଉନ୍‌ଙ୍କ ଇଣ୍ଡିଆନ୍ ଆର୍କିଟେକ୍‌ଚର୍ ବହିଟି ପଢ଼ି ନିଜ ଭାଷଣଟି ପ୍ରସ୍ତୁତ କରିଥିଲେ । ଏଣୁ ଲଣ୍ଡନର ପଣ୍ଡିତମାନଙ୍କ ପାଖରେ ତାଙ୍କ ଭାଷଣ କିଛି ପ୍ରତିକ୍ରିୟା ସୃଷ୍ଟିକରିପାରି ନଥିଲା । କିଏ ଜଣେ ଶ୍ରୋତା ପ୍ରଶ୍ନଟିଏ ପଚାରିଦେଇଥିଲେ, ''ହ୍ୱାଟ୍ ଇଜ୍ ୟଓର୍ ପ୍ରୋବ୍ଲେମ୍ ଡକ୍ଟର ଦାସ ।'' ଏଭଳି ପ୍ରଶ୍ନ ସହିତ ଆମେ ପରିଚିତ ନୋହୁ । ଶେଷରେ କପିଳା ବାତ୍ସାୟନଙ୍କୁ ପ୍ରଶ୍ନୋତ୍ତର ଭିତରେ ଧସେଇ ପଶିବାକୁ ହେଲା । ମୁଁ ଏହି ଅଭାବନୀୟ ପରିସ୍ଥିତି ସଂପର୍କରେ ସଚେତନ ଥାଇ

Digitized by srujanika@gmail.com

ନିଜ ଭାଷଣଟିଏ ମୋ ଗବେଷଣାକୁ ଆଧାର କରି ପ୍ରସ୍ତୁତ କରିଥିଲି । ମୋ ଭାଷଣର ବିଷୟବସ୍ତୁ ଥିଲା 'ଓଡ଼ିଶାର ଚିତ୍ରକଳା' । ଏଣୁ ଭାଷଣଟି ମ୍ୟୁଜିୟମ୍‌ର ବନ୍ଧୁମାନଙ୍କ ମନକୁ ବେଶ୍ ପାଇଲା । ଦେବୀ ଆଗରୁ ମୋ ସାଂଗରେ ବୁଗୁଡ଼ା, ଧରାକୋଟ ପ୍ରଭୃତି ସ୍ଥାନ ଭ୍ରମଣ କରି ଭିତ୍ତିଚିତ୍ରଗୁଡ଼ିକ ଦେଖିଥିଲେ ଏବଂ ଓଡ଼ିଶୀ କଳାର ସ୍ୱାତନ୍ତ୍ର୍ୟ ସହିତ ପରିଚିତ ଥିଲେ ।

ମୁଁ ପୁଣି ଥରେ ଲଣ୍ଡନର ଅନ୍ୟାନ୍ୟ ସଂଗ୍ରହାଳୟ ଗୁଡ଼ିକୁ ଦେଖିବାର ସୁଯୋଗ ପାଇଲି । ବ୍ରିଟିଶ୍ ମ୍ୟୁଜିୟମ୍ ବିଶ୍ୱକଳାର ଏକ ପ୍ରକାଣ୍ଡ ଗନ୍ତାଘର । ଏଣୁ ଏକାଥରକେ ଏହି ମ୍ୟୁଜିୟମ୍ ଦେଖିବାର ଧୃଷ୍ଟତା ମଧ୍ୟ କରିବା ଉଚିତ ନୁହେଁ । ସେଠି ପହଂଚି ଦେଖିବା ସମୟରେ ମୋତେ ଲାଗିଲା ଯେ ମୂଳ ସ୍ଥାପତ୍ୟ ବ୍ୟବସ୍ଥାରେ କିଛି କିଛି ପରିବର୍ତ୍ତନ ଅଣାଯାଇଛି । ମୌଳିକ ପ୍ରଦର୍ଶନୀ ବ୍ୟବସ୍ଥା ମଧ୍ୟ ବଦଳି ଯାଇଛି । ବ୍ରିଟିଶ ମ୍ୟୁଜିୟମ୍‌ରେ ଆଗରୁ ଯେଉଁ ହାତଲେଖା ପୋଥିଗୁଡ଼ିକ ଥିଲା ତାହା ସଂଗ୍ରହାଳୟରୁ କାଢ଼ି ନିଆଯାଇ ଅନ୍ୟତ୍ର ପ୍ରଦର୍ଶିତ ହୋଇଛି । ଏଗୁଡ଼ିକ ମୂଳତଃ ଐତିହାସିକ ଦଲିଲ ଓ ନଥିପତ୍ର ପର୍ଯ୍ୟାୟର ଏବଂ ଏଥିରେ ଦୃଶ୍ୟାତ୍ମକତା ବା କଳାତ୍ମକତାର ଆଭାସ କମ୍ ଥିବାରୁ ଚିତ୍ର ଓ ଭାସ୍କର୍ଯ୍ୟ ସହିତ ତୁଳନୀୟ ନୁହେଁ ବୋଲି ଅନ୍ୟଗୋଟିଏ ଅନୁଷ୍ଠାନକୁ ହସ୍ତାନ୍ତର କରାଯାଇଛି । ମୋତେ ଆମ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ତିରିଶି ହଜାର ତାଳପତ୍ର ପୋଥି କଥା ମନେପଡ଼ିଲା । ନିଶ୍ଚିତ ଭାବେ ଏଗୁଡ଼ିକ ସଂଗ୍ରହାଳୟର ସାମଗ୍ରୀ ନୁହେଁ । କିନ୍ତୁ ଅଯଥା ଏଗୁଡ଼ିକୁ ଆମେ ଆବୋରି ବସିଛୁ ଏବଂ ସଂଗ୍ରହାଳୟର ସଂପଦ ବୋଲି ଗର୍ବ କରୁଛୁ ।

ମୁଁ ବ୍ରିଟିଶ୍ ମ୍ୟୁଜିୟମ୍‌ର ନବନିର୍ମିତ 'ବିଶ୍ୱକେନ୍ଦ୍ର' ବା ଗ୍ଲୋବାଲ୍ ହଲ୍ ଭିତରେ ପଶି ଚାରି ଆଡ଼କୁ ନଜର ବୁଲେଇ ଆଣିଲି । ମନେହେଲା ସଂଗ୍ରହାଳୟର ସାରାଂଶ ଏଠି ଫଟୋଚିତ୍ର ଆକାରରେ ପ୍ରଦର୍ଶିତ । ଅନ୍ୟଭାବରେ କହିବାକୁ ଗଲେ ଏଠାରେ ଦଣ୍ଡେ ଠିଆ ହୋଇ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲେ ବିଶ୍ୱ ସଂସ୍କୃତିର ନିର୍ବାଚିତ କଳା ସାମଗ୍ରୀଗୁଡ଼ିକ ଆଖିରେ ପଡ଼ିବ ଏବଂ ଏଇଠାରୁ ଗ୍ୟାଲେରୀ ପରିଦର୍ଶନର ସମୁଚିତ ଯୋଜନାଟିଏ କରିହେବ ।

ମ୍ୟୁଜିୟମ୍‌ର ପାଠାଗାରରେ ପହଂଚିଲାବେଳକୁ ମୋ ପାଇଁ ଉଦ୍ଦିଷ୍ଟ ଟେବୁଲ ଉପରେ ଓଡ଼ିଶାର କଳା ସଂପର୍କରେ ପ୍ରକାଶିତ ମୋର ବହି, 'ଟ୍ରେଡ଼ିସନାଲ୍ ପେଣ୍ଟିଙ୍ଗସ୍ ଅଫ୍ ଓରିଶା' ରଖାଯାଇଛି । ସେଠି ବହିଟି ଦେଖି ଯେତିକି ଆନନ୍ଦିତ ହେଲି ତା'ଠାରୁ ଅଧିକା ବିସ୍ମିତ ହେବାକୁ ହେଲା । ବିସ୍ମିତ ଏଇଥି ପାଇଁ ଯେ ବହିଟି କୌଣସି ପ୍ରସିଦ୍ଧ ପ୍ରକାଶକ ଦ୍ୱାରା ପ୍ରକାଶିତ ନ ହୋଇଥିଲେ ମଧ୍ୟ ଲଣ୍ଡନରେ, ପୁଣି ବ୍ରିଟିଶ୍ ମ୍ୟୁଜିୟମ୍‌ରେ ପହଂଚି ଯାଇଛି । ଏଠାରେ କଳାର ଅପୂର୍ବ ଗନ୍ତାଘର ଦେଖି ମନ ଚହଲିଗଲା ଶିଳ୍ପୀମାନଙ୍କ ପାରଦର୍ଶିତାରେ । କେତେ ବିଭବ, କେତେ ଶୈଳୀ ଏବଂ କେତେ କରି ପ୍ରକାଶର ଭଙ୍ଗୀ

Digitized by srujanika@gmail.com

ଏଠି ଏହି ଦୁଷ୍ପ୍ରାପ୍ୟ କଳା ସାମଗ୍ରୀ ମଧ୍ୟରେ ରୂପାୟିତ ହୋଇଯାଇଛି । ମୁଁ ଏଗୁଡ଼ିକ ପାଖରେ ଠିଆ ହୋଇ ସବୁବେଳେ ଭାବୁଥାଏ ମୋ ସହକର୍ମୀ ଅଧ୍ୟାପକଙ୍କ ଭିତରୁ କିଏ କିଏ ଏଗୁଡ଼ିକୁ ଦେଖିବା ଉଚିତ ।

ମୁଁ ଲଣ୍ଡନ୍‌ରୁ ଫେରି କଲେଜରେ ଅନେକ ସ୍ଲାଇଡ୍ ଶୋ କରିଛି, ମ୍ୟୁଜିୟମ୍ ମାନଙ୍କରୁ ଆଣିଥିବା କ୍ୟାଟ୍‌ଲଗ୍, ପିକ୍‌ଚର୍ ପୋଷ୍ଟ୍‌କାର୍ଡ଼ ଏବଂ ପ୍ରଦର୍ଶନୀ ମାନଙ୍କର ପୋଷ୍ଟର୍ ଆଣି କଲେଜରେ ଦେଖାଇଛି । ପିଲାଙ୍କୁ ଅନୁପ୍ରାଣିତ କରିଛି । ମୁଁ ଅବଶ୍ୟ ଦାବି କରିପାରିବିନି ଯେ ଆମ କଲେଜର ପ୍ରାକ୍ତନ ଛାତ୍ର ଅଦ୍ୱୈତ ଗଡ଼ନାୟକ ଓ ଜଗନ୍ନାଥ ପଣ୍ଡା ଲଣ୍ଡନଠାରେ ଉଚ୍ଚତର ଶିକ୍ଷା ପାଇବା ପଛରେ ଏ ସବୁ ପ୍ରଚୋଦନା ସାହାଯ୍ୟ କରିଛି । କିନ୍ତୁ ଏତିକି କହିହେବ ଯେ ସେମାନେ ସେମାନଙ୍କ ଲଣ୍ଡନ ପାଠପଢ଼ା ବେଳେ ଯଦି କିଛି ଆଧାର ସହିତ ସଂପର୍କିତ ହେବାକୁ ଚାହିଁଥିବେ ତା'ହେଲେ ମୋର ଏହି ଲଣ୍ଡନ ସ୍ମୃତିକୁ ଆଉଥରେ ମନେ ପକାଇଥିବେ । ଜଗନ୍ନାଥର ଲଣ୍ଡନରେ ଅଧ୍ୟୟନ କାଳରେ ଖାସ୍ ମୁଁ ତାକୁ ରୟାଲ୍ କଲେଜ ଅଫ୍ ଆର୍ଟ୍‌ର ପରିସର ମଧ୍ୟରେ ଜଣେ ଛାତ୍ର ଭାବରେ ଦେଖିବାର ଅଭିଳାଷ ରଖି ସେଠି ପହଞ୍ଚି ତା'ର ଆତିଥ୍ୟ ଗ୍ରହଣ କରିଥିଲି । ଆମେ ଉଭୟେ ସାଙ୍ଗ ହୋଇ ଅନେକ ଚିତ୍ରପ୍ରଦର୍ଶନୀ ଓ ସଂଗ୍ରହାଳୟ ଦେଖିଛୁ । ଜଗନ୍ନାଥ ପଣ୍ଡା ଓ ପ୍ରଣତ ମହାପାତ୍ରର ଆଖିରେ ଆଉ ଅନୁଭୂତିରେ ପୁଣି ଥରେ ଲଣ୍ଡନର କଳାକୁ ଆକଳନ କରିବାର ଆନନ୍ଦକୁ ମୁଁ ଆପଣେଇ ପାରିଛି ।

ଅନ୍ୟ ଏକ ସମୟର ଲଣ୍ଡନ ପରିଦର୍ଶନବେଳର ଗୋଟିଏ ଅଜବ ଅନୁଭୂତି ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ । ମୋ ଉପରେ ଗୋଟିଏ ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ପାଇଁ କହି ଲଣ୍ଡନଠାରେ ଅଧ୍ୟୟନ କରୁଥିବା ଜଗନ୍ନାଥ ପଣ୍ଡା ମୋତେ ଚମକାଇ ଦେଲା । ମୁଁ ସାଙ୍ଗେ ସାଙ୍ଗେ ଏହି ପରିକଳ୍ପିତ ଚଳଚ୍ଚିତ୍ରର ଚରିତ୍ରଟିଏ ହୋଇଗଲି । ମୁଁ ହାଇଡ୍ ପାର୍କର ହ୍ରଦ କୂଳେକୂଳେ ବଲିଉଡ୍ ହୀରୋଭଳି ଚଲାବୁଲା କଲି। ରାଜହଂସମାନଙ୍କୁ ନିଜ ହାତରେ ଖୁଆଇଲି । ଜଗନ୍ନାଥ ତା' ମୁଭି କେମେରାରେ ଫଟୋ ଉଠାଇଲା । ମୁଁ ଆଶା କରୁଛି ଏସବୁ ଉତ୍ତୋଳିତ ଚିତ୍ର ଜଗନ୍ନାଥ ପାଖରେ ସାଇତା ଥିବ । ନିଜ ବ୍ୟସ୍ତତା ଭିତରେ ରହି ଜଗନ୍ନାଥ ଚଳଚ୍ଚିତ୍ରଟି ସଂପୂର୍ଣ୍ଣ କରିବାକୁ ସୁବିଧା ସୁଯୋଗ ପାଇନି । ତଥାପି ମୁଁ ଆଶା ରଖିଛି ଚଳଚ୍ଚିତ୍ରଟି ସଂପୂର୍ଣ୍ଣ ହେବ ।

Digitized by srujanika@gmail.com

# ୪୮. ବାଲିଦ୍ୱୀପରେ କଳିଙ୍ଗ କାରିଗର : କଳା ଓ ସଂପର୍କ

ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ନିଜର ଅବଦାନ ପାଇଁ ସେହି ଦେଶ ପକ୍ଷରୁ 'ଭୂମିପୁତ୍ର' ସମ୍ମାନରେ ପ୍ରଶଂସିତ ହୋଇଥିବା ବିଜୁ ପଟ୍ଟନାୟକଙ୍କ ମନରେ କଳିଙ୍ଗ ଓ ବାଲିର ନୌବାଣିଜ୍ୟ ସଂପର୍କକୁ ନେଇ ଗୋଟିଏ ଖିଆଲ ପଶିଲା । ସେ ଏହି ସଂପର୍କର ସାଂସ୍କୃତିକ ଉତ୍ତରଣକୁ ପୁଣିଥରେ ପ୍ରତ୍ୟକ୍ଷ ଅନୁଭବ ଭିତରେ ଅନୁରଣିତ କରିବା ପାଇଁ ମନ ବଳାଇଲେ । ତା'ପରେ ନିଷ୍ପତ୍ତି ହେଲା କଳିଙ୍ଗ ବାଲିଯାତ୍ରାର ପୁନରାବୃତ୍ତି ହେବ । ପୂର୍ବ କାଳରେ ଯେଭଳି ଓଡ଼ିଆ ବଣିକ, କାରିଗର, ନର୍ତ୍ତକ, ନର୍ତ୍ତକୀ, ବୋଇତରେ ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ମଳୟ ଦ୍ୱୀପପୁଞ୍ଜକୁ ଯାଉଥିଲେ ଏବେ ଆଉଥରେ ସେହି ଐତିହାସିକ ଯାତ୍ରାର ରୋମନ୍ଥନ ହେବ । ଅବଶ୍ୟ ଅସଲ ଯାତ୍ରା ଆରମ୍ଭ ହେଲାବେଳକୁ ବୋଇତରେ ଏତେବାଟ ଜଳଯାତ୍ରା ଅସମ୍ଭବ ମନେହେଲା । କଳିଙ୍ଗ ବାଲିଯାତ୍ରାର ପ୍ରତୀକ ଭାବରେ ନୌବାହିନୀର ଗୋଟିଏ ଛୋଟିଆ ପାଲଟଣା ୟାଟ୍ ଆଇ.ଏନ୍.ଏସ୍.ଭି 'ସମୁଦ୍ର' ପାରାଦ୍ୱୀପ ବନ୍ଦରରୁ ଯାତ୍ରା ଆରମ୍ଭ କରି ଗୋପାଳପୁର, ଭାଇଜାଗ୍, ମାନ୍ଦ୍ରାଜ ବନ୍ଦର ବାଟ ଦେଇ ବାଲିର ଡେନ୍‌ପାସାର ବନ୍ଦରରେ ପହଞ୍ଚିଥିଲା । ଏହି ୟାଟ୍‌ରେ ଯେଉଁମାନେ ଯାତ୍ରା କରିଥିଲେ ସେମାନେ ହେଲେ ଲେଫ୍‌ଟେନାଣ୍ଟ ଆର ଶର୍ମା, ପି.ପଣ୍ଡା, ଏନ୍ କେ ଗ୍ରୋଭର୍, ଭି.ଏସ୍.ଗୁଲିଆ, ଏମ୍.ଏମ୍. ମିଶ୍ର ଓ ନିବେଦିତା ଆଚାର୍ଯ୍ୟ ।

ଏହି ଯାତ୍ରାର ଆନୁଷଙ୍ଗିକ ସମସ୍ତ କଳାତ୍ମକ କାର୍ଯ୍ୟ ଓ ନାନ୍ଦନିକ ବିଭବର ତଦାରଖ ଦାୟିତ୍ୱ ମୋରି ଉପରେ ନ୍ୟସ୍ତ କରାଯାଇଥିଲା ଏବଂ ମୁଁ ଏହି ପ୍ରକଳ୍ପର ପାଟବିନ୍ଧାଣୀ (ଭିଜୁଏଲାଇଜର୍) ଭାବେ ନିଯୁକ୍ତି ପାଇଥିଲି । ମୋ ସହିତ କଲେଜର ଅଧ୍ୟାପକ ଏବଂ ଛାତ୍ରଛାତ୍ରୀମାନେ କଳିଙ୍ଗ କାରିଗରଙ୍କ ଭୂମିକା ନିର୍ବାହ କରିଥିଲେ । ଭାରତ ଉତ୍ସବ ଭଳି ଗୋଟିଏ ଆନ୍ତର୍ଜାତିକ ପ୍ରକଳ୍ପର ଦାୟିତ୍ୱ ଗ୍ରହଣ କରି ତାକୁ ସୁଚାରୁ ରୂପେ ନିର୍ବାହ କରିବା ପରେ ଆଉ ଗୋଟିଏ ସେଭଳି ସୁଯୋଗ କଲେଜ ଭାଗ୍ୟରେ ଜୁଟିଥିଲା ।

ପ୍ରଥମେ ଯାତ୍ରାର ଲୋଗୋ ଡିଜାଇନ୍‌ଟିକୁ ଆମର ଐତିହାସିକ ଓ ଗବେଷକମାନଙ୍କ ଦ୍ୱାରା ସ୍ୱୀକୃତ କରେଇ ନେବାରେ ଅନେକ ପ୍ରତିବନ୍ଧକ ସୃଷ୍ଟି ହେଲା । ସ୍ୱୀକୃତି ପ୍ରଦାନ କରିବା ଦଳରେ ଥିଲେ ପ୍ରଫେସର୍ ଲକ୍ଷ୍ମଣ କୁମାର ମହାପାତ୍ର, ପ୍ରଫେସର୍

Digitized by srujanika@gmail.com

କରୁଣା ସାଗର ବେହେରା ଓ ସଂସ୍କୃତି ବିଭାଗର ସଚିବ ଅଶୋକ କୁମାର ମିଶ୍ର । ମୁଁ ପୁରୁଣା ନୌବନ୍ଦର ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ଯେତେ ପ୍ରକାରର ପରିକଳ୍ପନା କଲି ସେ ସବୁଥିରେ ସେମାନେ କୋଣାର୍କ ଚକର ସଂପୃକ୍ତି ଚାହୁଁଥିଲେ । ଲୋଗୋ ମାନଙ୍କରେ କୋଣାର୍କ ଚକର ବହୁଳ ବ୍ୟବହାର ଫଳରେ ତାହା ଘସରା ଦୋଅଣି ଭଳି ଅଚଳ ହୋଇଯାଇଥିଲା । ଏମାନେ ସମସ୍ତେ କଳା ସମୀକ୍ଷକ ପାଲଟି ଯାଇ ପ୍ରତି ଉପସ୍ଥାପନ ବେଳେ ମୋତେ ଆତାକାତା କରିଦେଉଥିଲେ । ମୁଁ ଏଥିରୁ ମୁକ୍ତି ଚାହୁଁଥିଲି । ଠିକ୍ ଏଭଳି ଏକ ସନ୍ଦିଗ୍ଧ ମୁହୂର୍ତ୍ତରେ ମୋର ଅତି ପରିଚିତ ପ୍ରଖ୍ୟାତ ଡିଜାଇନର୍ ମାର୍ତ୍ତଣ୍ଡ ସିଂହ ଭୁବନେଶ୍ୱରରେ ପହଞ୍ଚିଲେ । ମୁଁ କଳିଙ୍ଗ ବାଲିଯାତ୍ରା ପାଇଁ ତିନୋଟି ଡିଜାଇନ୍ କରିଥିଲି । ପୁରୀ ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପରେ ଥିବା ଗୋଟିଏ ନୌକାବିହାରର ଭାସ୍କର୍ଯ୍ୟକୁ ଆଧାର କରି ଆମେ ଉତ୍ସବର ଲୋଗୋ ପ୍ରସ୍ତୁତ କରିଥିଲୁ । ଯାତ୍ରାର ପୋଷ୍ଟର୍ ପାଇଁ ବିଶିଷ୍ଟ ଓଡ଼ିଆ ଶିଳ୍ପୀ ଗୋପାଳ ଚରଣ କାନୁନ୍‌ଗୋଙ୍କ ବୋଇତବନ୍ଦାଣ ଚିତ୍ର ମୁଁ ବ୍ୟବହାର କରିଥିଲି ଏବଂ ଗୋଟିଏ ପୋର୍ଟ୍‌ଫୋଲିଓ ଡିଜାଇନ୍ ପାଇଁ ବମ୍ଫକେଇ ଶାଢ଼ିର ଆଞ୍ଚଳକୁ ସିଧା ସ୍କେନିଙ୍ଗ୍ କରି ଛାପିବାର ବନ୍ଦୋବସ୍ତ କରିଥିଲି । ମାର୍ତ୍ତଣ୍ଡ ସିଂହ (ମାପୁ) ତିନୋଟି ଯାକ ଡିଜାଇନ୍ ପସନ୍ଦ କଲେ ଏବଂ ମୋତେ ସାଙ୍ଗରେ ନେଇ ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟ ଦପ୍ତରରେ ପହଞ୍ଚିଲେ । ମାପୁ ବିଜୁ ପଟ୍ଟନାୟକଙ୍କୁ ଅଙ୍କଲ୍ କହି ସମ୍ବୋଧିତ କରୁଥିଲେ । ସେ ମୁଖ୍ୟମନ୍ତ୍ରୀଙ୍କୁ କହିଲେ, ''ଦିନନାଥ ଓଡ଼ିଶା ସରକାରଙ୍କ ଆର୍ଟ୍ କଲେଜର ଅଧକ୍ଷ । ସେ ଆପଣଙ୍କ କଳିଙ୍ଗ ବାଲିଯାତ୍ରା ପାଇଁ ତିନୋଟି ଡିଜାଇନ୍ କରିଛନ୍ତି । ଓଡ଼ିଶା ତିନୋଟି କଳା ପାଇଁ ବିଶ୍ୱ ପ୍ରସିଦ୍ଧ, ପ୍ରଥମଟି ହେଲା ଭାସ୍କର୍ଯ୍ୟକଳା, ଦ୍ୱିତୀୟ ହେଲା ଚିତ୍ରକଳା ଓ ତୃତୀୟଟି ହେଲା ବୟନକଳା । ଦିନନାଥଙ୍କ ଡିଜାଇନ୍ ତିନୋଟି ଓଡ଼ିଶୀ କଳାର ତିନୋଟି ବିଭବକୁ ପ୍ରତିନିଧିତ୍ୱ କରୁଛି ।'' ଏତକ ଶୁଣି ବିଜୁପଟ୍ଟନାୟକ ପ୍ରସନ୍ନ ଦିଶିଲେ ଏବଂ ମୋର ଡିଜାଇନ୍‌ଗୁଡ଼ିକୁ ତତ୍‌କ୍ଷଣାତ୍ ସ୍ୱୀକୃତି ଦେଇଦେଲେ ।

କଳିଙ୍ଗ ବାଲିଯାତ୍ରା ଉତ୍ସବର ତିନୋଟି ମୂଳ ବିଭାଗ ଥିଲା । ପ୍ରଥମଟି ହେଲା ପରାଦ୍ୱୀପ ବନ୍ଦରରେ ବୋଇତ ବନ୍ଦାଣ ଉତ୍ସବ ଉପଲକ୍ଷେ ସାଜସଜ୍ଜା । ଦ୍ୱିତୀୟଟି ହେଲା ବାଲିଦ୍ୱୀପରେ ନୌବନ୍ଦରେ ବୋଇତକୁ ଅଭ୍ୟର୍ଥନା ଜଣେଇବା ପାଇଁ ସଭା ଓ ତା'ର ସାଜସଜ୍ଜା । ବାଲିଦ୍ୱୀପରେ ପ୍ରଦର୍ଶନୀ, ହସ୍ତଶିଳ୍ପର ବିପଣି ଓ ନୃତ୍ୟ ପ୍ରଦର୍ଶନ । ଏବଂ ତୃତୀୟଟି ହେଲା ଏହି ଉତ୍ସବ ଉପଲକ୍ଷେ ବିଭିନ୍ନ ପ୍ରକାଶନ, ପ୍ରଚାର ପତ୍ର ଓ ପୋଷ୍ଟର୍ ଆଦିର ପାଠ ଠାରୁ ଆରମ୍ଭ କରି ଡିଜାଇନ୍ ଓ ମୁଦ୍ରଣ ଯାଏଁ ସମସ୍ତ କାର୍ଯ୍ୟର ତଦାରଖ ।

ମୁଁ ଛାତ୍ରଦଳଙ୍କୁ ନେଇ ପାରାଦ୍ୱୀପ ବନ୍ଦରରେ ପହଞ୍ଚିବା ପୂର୍ବରୁ ଡଙ୍ଗାଗୁଡ଼ିକୁ ପାରମ୍ପରିକ ଢଙ୍ଗରେ ସଜେଇବା ପାଇଁ ବାଉଁଶ, କାଗଜ ଓ କାଗଜ ମଣ୍ଡର ହଂସ, ମୟୂର,

Digitized by srujanika@gmail.com

ମଗର ଇତ୍ୟାଦି ଗଢ଼େଇ ନେଇଥିଲି । ମଞ୍ଚସଜାଣ ପାଇଁ ଚାନ୍ଦୁଆକାମର କୁମ୍ଭ ଝାଲର ତିଆରି ସରିଥିଲା । ଉତ୍ସବର ଲୋଗୋକୁ ବିଭିନ୍ନ ସାଇଜର କନା ଉପରେ ସିଲ୍କ୍ ସ୍କ୍ରୀନ୍‌ରେ ପ୍ରିଣ୍ଟକରି ସାଙ୍ଗରେ ଧରିଥିଲି । ଆମ କଲେଜର କିଛି ଅଧ୍ୟାପକ କାମରେ ସାହାଯ୍ୟ କରିବାକୁ ପାରାଦ୍ୱୀପ ଯାଇଥିଲେ, ଅଧିକନ୍ତୁ ଆମେ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟରୁ ଅଧ୍ୟାପକ ପଞ୍ଚାନନ ସୁରଙ୍କ ନେତୃତ୍ୱରେ କିଛି ଛାତ୍ରଙ୍କୁ ଡକେଇ ଆଣିଥିଲୁ । ଉଦ୍ଦେଶ୍ୟ ଥିଲା ଖଲ୍ଲିକୋଟ ମହାବିଦ୍ୟାଳୟକୁ ଏକ ଆନ୍ତର୍ଜାତିକ କଳା ପ୍ରକଳ୍ପର ସ୍ୱାଦ ଚଖେଇବା । ବନ୍ଦର କର୍ତ୍ତୃପକ୍ଷ ପାରାଦ୍ୱୀପରେ ରହିବାର ସୁବନ୍ଦୋବସ୍ତ କରିଥିଲେ । ଆଗରୁ କହିଛି ମୁଖ୍ୟମନ୍ତ୍ରୀଙ୍କୁ ପାଛୋଟି ନେବାପାଇଁ ୱେଟ୍ ବେସିନ୍‌ର ଚଟାଣ ଉପରେ କାର୍ପେଟ୍ ବିଛେଇବା ପ୍ରସ୍ତାବକୁ ମୁଁ ବିରୋଧ କରି କାର୍ପେଟ୍ ବଦଳରେ ଓଡ଼ିଆ ଝୋଟି ଚିତ୍ରେଇବା ପାଇଁ ବନ୍ଦୋବସ୍ତ କରିଥିଲି । ବାସ୍ତବିକ ଗେରୁ ରଙ୍ଗ ଉପରେ ଧଳା ରଙ୍ଗର ପଦ୍ମମଣ୍ଡଳର ଝୋଟିଗୁଡ଼ିକ ଖୁବ୍ ଆକର୍ଷକ ଦେଖାଗଲା । ସେଭଳି ମଞ୍ଚଉପରେ ଅତିଥିମାନେ ଟେଣ୍ଟ ହାଉସ୍‌ର ଆଲୁମିନିୟମ୍ ଚୌକିରେ ନ ବସି ଡିଭାନ୍ ଉପରେ ଗୋଲିଆ ମାଣ୍ଡିରେ ଭରା ଦେଇ ବସିଲେ ମଞ୍ଚର ପଛପଟର ପରଦା ଓ ତାରି ଉପରେ ଅଙ୍କିତ ଲୋଗୋ ଦର୍ଶକଙ୍କୁ ପରିଷ୍କାର ଦେଖାଯିବ । ସରକାରୀ ଅଫିସରମାନେ ପ୍ରଥମେ ପ୍ରଥମେ ମୋ ପ୍ରସ୍ତାବରେ ରାଜି ହେଲେନି । କହିଲେ ମୁଖ୍ୟମନ୍ତ୍ରୀ ଏତେ ସମୟ ବିନା ଆଉଜାଣିରେ ବସିପାରିବେ ନାହିଁ । ମୁଁ ଯୁକ୍ତି ବାଢ଼ିଥିଲି ଯେ ଡିଜାଇନ୍‌ର ଆବଶ୍ୟକତା ଦୃଷ୍ଟିରୁ ଡିଭାନ୍ ହିଁ ଉପଯୁକ୍ତ ଆସନ ଏବଂ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇ ଦେଲେ ସେ ନିଶ୍ଚୟ ବୁଝିବେ । ଶେଷରେ ମୋ କଥା ରହିଲା । ମଞ୍ଚଉପରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଏଣ୍ଡୋନେସିଆନ୍ ଏମ୍ବାସିର ହାରୁନ୍ ସୁଧିରୋହୁସୋଡ଼ୋ ଓ ତାଙ୍କ ପତ୍ନୀ, ଆଇ.ଟି.ସି କଂପାନୀର ଅଶୋକ ଭାଟିଆ ଓ ତାଙ୍କ ପତ୍ନୀ ଗୀତା ଭାଟିଆ, ନୌସେନାର ପ୍ରତିନିଧି, ମନ୍ତ୍ରୀ ଦାମୋଦର ରାଉତ, ଅନଙ୍ଗ ଉଦୟ ସିଂହଦେବ ଓ ସଂସ୍କୃତି ସଚିବ ଅଶୋକ କୁମାର ମିଶ୍ର ଆସନ ପାରି ବସିଲେ ।

ସବୁଠାରୁ ଅଡୁଆ ଓ ଅବାଗିଆ କଥା ହେଲା ଡଙ୍ଗାରେ ଖଞ୍ଜା ହେଇଥିବା ପାଲଗୁଡ଼ିକ ଉପରେ ୱିଲ୍‌ସ୍ ସିଗାରେଟ୍‌ର ବିଜ୍ଞାପନ ପ୍ରଦର୍ଶନ କରିବା । ଆଇ.ଟି.ସି. ସିଗାରେଟ କଂପାନୀ କଳିଙ୍ଗ ବାଲିଯାତ୍ରା ଉତ୍ସବ ଆୟୋଜନ କରିବା ପାଇଁ ଲକ୍ଷାଧିକ ଟଙ୍କା ଅନୁଦାନ ଦେଇଥିଲେ ଏଣୁ ପାଲ ଦେହରେ ବିଜ୍ଞାପନ ରଖିବାକୁ ସରକାର ବାଧ୍ୟ । ମଞ୍ଚ ଉପରୁ ତ ବିଜ୍ଞାପନ ହଟେଇ ଦିଆଗଲା, ଡଙ୍ଗା ଉପରେ ଅନ୍ତତଃ ନ ରହିଲେ କଂପାନୀ ପଇସାର ଇଜ୍ଜତ ଆଉ ରହିଲା କେଉଁଠି । ମୁଁ ବାସ୍ତବତା ଓ ନାନ୍ଦନିକତାକୁ ଭିତ୍ତିକରି ମୋ ଯୁକ୍ତି ଉପସ୍ଥାପନ କଲି । ଆମେ ଯେହେତୁ ପ୍ରାଚୀନ କଳିଙ୍ଗ ବୋଇତ ଗୁଡ଼ିକର କାଳ୍ପନିକ ସ୍ୱରୂପରେ ଡଙ୍ଗାଗୁଡ଼ିକୁ ସଜ୍ଜିତ କରୁଛେ ତେଣୁ ତାରି ଭିତରେ ସିଗାରେଟ୍ କଂପାନୀର

Digitized by srujanika@gmail.com

ବିଜ୍ଞାପନ କେବଳ ଉପଭୋକ୍ତା ମାନସିକତାକୁ ପ୍ରଦର୍ଶିତ କରିବନି ବରଂ କଳିଙ୍ଗ ସଂସ୍କୃତିର ଶୁଦ୍ଧତା ଉପରେ ମଧ୍ୟ ଆଞ୍ଚ ଆଣିଦେବ । ବହୁ ବିଚାର ବିମର୍ଶ ପରେ ବିଜ୍ଞାପନଗୁଡ଼ିକୁ ପାଲ ଉପରୁ କାଢ଼ି ନିଆଗଲା ।

ଡଙ୍ଗାଗୁଡ଼ିକ ଚିତ୍ରିତ ପଶୁପକ୍ଷୀର ମୁଖାପିନ୍ଧି ସକାଳ ପାହିବା ଆଗରୁ ସଜେଇ ହେଇ ପଡ଼ିଲେ । ସକାଳୁ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ଅତିଥିମାନେ ଆସିଲେ । କୁଙ୍କୁମ ମହାନ୍ତିଙ୍କ ନେତୃତ୍ୱରେ ସାଧବାଣୀ ବେଶରେ ଓଡ଼ିଶୀ ନୃତ୍ୟାଙ୍ଗନାମାନେ ମୁଖ୍ୟମନ୍ତ୍ରୀଙ୍କୁ ବନ୍ଦାପନା କଲେ । ସକାଳର ସୁନେଲି କିରଣରେ ଡଙ୍ଗାଗୁଡ଼ିକ ଓ ସେମାନଙ୍କ ଉପରେ ଠିଆ ହୋଇଥିବା ସାଧବମାନେ ଅପୂର୍ବ ଦେଖାଗଲେ । ଆକାଶରୁ ହେଲିକପ୍ଟର୍ ପୁଷ୍ପବୃଷ୍ଟି କଲା । ଜେଟ୍ ବିମାନରୁ ତ୍ରିରଙ୍ଗା ପତ୍ରିକାର ପରିକଳ୍ପନା କରି କମଳାରଙ୍ଗ, ଧଳା ଓ ଶାଗୁଆ ରଙ୍ଗର ଧୂଆଁ ଛଡ଼ାଗଲା । ଜଳ, ସ୍ଥଳ ଓ ଆକାଶରେ କଳିଙ୍ଗ ବାଲିଯାତ୍ରାର ପ୍ରଥମ ପରଶ ଉଚ୍ଚାଟିତ ହୋଇଉଠିଲା । ବନ୍ଦାପନା ଉତ୍ସବର ଗହଳି ଶେଷ ହେଇଗଲା ପରେ ମୁଁ ଏକୁଟିଆ ସମୁଦ୍ର କୂଳରେ ଠିଆ ରହି ବହୁତ ସମୟ ଯାଏଁ ଏହି ଆଡ଼ମ୍ବରକୁ ଉପଭୋଗ କଲି । ମୁଖ୍ୟମନ୍ତ୍ରୀ ଉତ୍ସବ ଉଦ୍‌ଘାଟନ କଲାପରେ ବାହୁଡ଼ି ଗଲେ । ସରକାରୀ ଅଫିସରମାନେ ବୋଇତ ଭସାଣର ବର୍ଣ୍ଣାଢ଼୍ୟ ଆଡ଼ମ୍ବର ଦେଖିବାକୁ ରହିଲେନି । ଏହି ଅଫିସରଙ୍କ ଦଳରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ସତ୍ୟାନନ୍ଦ ଆଚାର୍ଯ୍ୟ ମଧ୍ୟ ଥିଲେ। ମୁଁ ତାଙ୍କୁ ଏହି ଅନନ୍ୟ ଦୃଶ୍ୟ ଉପଭୋଗ କରିବା ପାଇଁ ବାଧ୍ୟ କରିଥିଲି । ସେ ଏ ଅପୂର୍ବ ଦୃଶ୍ୟ ଦେଖିସାରି କୋଟିନିଧି ପାଇଲା ପରି ହେଲେ ।

କଳିଙ୍ଗ ଦେଶର କାରିଗର, ନର୍ତ୍ତକୀ, ସଂଗୀତଜ୍ଞ, ସରକାରୀ ଅଫିସର ଓ ଗବେଷକମାନେ ଉଡ଼ାଜାହାଜ ଯୋଗେ ବାଲି ଦ୍ୱୀପରେ ପହଞ୍ଚିଲେ । ଡେନ୍‌ପାସାର୍‌ର ବେନୁଆ ବନ୍ଦରରେ ନୌବାହିନୀର ଛୋଟିଆ ଡଙ୍ଗାଟି ଲାଗିଲା । ଏଠି ମଧ୍ୟ କିଛି ଡଙ୍ଗାକୁ ସଜେଇ ଦେଇ ମିଛେ ମିଛେ ସେଗୁଡ଼ିକ ଗୋଟିଏ ଦୀର୍ଘ ଜଳଯାତ୍ରାରୁ ଫେରିଲା ଭଳି ଭାବଦୃଶ୍ୟଟିଏ ସୃଷ୍ଟି କରିଦିଆଗଲା । ଓଡ଼ିଶାର ହସ୍ତଶିଳ୍ପ ଓ ତନ୍ତଲୁଗାର ବିପଣି ଖୋଲାଗଲା । ଆମ କଲେଜର ପିଲାମାନେ ଓଡ଼ିଶୀ ଶାଢ଼ି ଉପରେ କୋଣାର୍କ ଭାସ୍କର୍ଯ୍ୟର ବିଭିନ୍ନ ରୂପକୁ ସ୍କ୍ରୀନ୍ ପଦ୍ଧତିରେ ଓ ହାତ ଚିତ୍ରରେ ଆଙ୍କି ଦେଇଥାନ୍ତି । ଏହି ଚିତ୍ରଗୁଡ଼ିକ ମଧ୍ୟରେ ଗଣେଶ, କାର୍ତ୍ତିକେୟ, ଶିବ, ସରସ୍ୱତୀ ପ୍ରଭୃତି ଦେବାଦେବୀଙ୍କ ଚିତ୍ର ମଧ୍ୟ ଶୋଭା ପାଉଥାଏ । ବେନୁଆ ବନ୍ଦରରୁ ଆରମ୍ଭ କରି ବାଲିଦ୍ୱୀପର ରାଜରାସ୍ତା ଧାରେ ଧାରେ ଏହି ଶାଢ଼ିଗୁଡ଼ିକ ଲମ୍ୱା ଲମ୍ୱା ପତାକା ଭଳି ସକାଳର ହାଲୁକା ପବନରେ ଲହରେଇ ଉଠୁଥାନ୍ତି । ମନେହେଉଥାଏ ସମଗ୍ର ସହରଟି କଳିଙ୍ଗର ସୌଦାଗରଙ୍କୁ ପାଛୋଟି ନେବା ପାଇଁ ଉତ୍ସବମୁଖର ଓ ବର୍ଣ୍ଣିଳ ହୋଇ ଉଠିଛି । ଅନ୍ୟାନ୍ୟ କାରିଗରଙ୍କ ମଧ୍ୟରେ ମୋତେ ସାହଚର୍ଯ୍ୟ

Digitized by srujanika@gmail.com

ଦେବା ପାଇଁ ମୋ ସାଂଗରେ ଥାଆନ୍ତି ପ୍ରତ୍ନତତ୍ତ୍ୱ ବିଭାଗର କ୍ୟୁରେଟେର୍ ଓ ମୋର ଘନିଷ୍ଠ ବନ୍ଧୁ ବିଜୟ କୁମାର ରଥ ଏବଂ ଆମ କଲେଜର ଦୁଇଜଣ ଛାତ୍ର ସଂଗ୍ରାମ ମହାରଣା ଓ ବାଳକୃଷ୍ଣ ନନ୍ଦ । ହସ୍ତଶିଳ୍ପ ବିପଣିର ତଦାରଖ କରିବା ପାଇଁ ଓଡ଼ିଶା କ୍ରାଫଟ୍‌ସ୍ କାଉନ୍‌ସିଲ୍ ପକ୍ଷରୁ ମୋ ପୁଅ ସୌଭାଗ୍ୟ ପାଠୀ ଏବଂ ସରକାରୀ ଅର୍ଥର ହିସାବ ପତ୍ର ପରିଚାଳନା କରିବା ପାଇଁ ଆମ କଲେଜର ରାଜକୁମାର ସୁବୁଦ୍ଧି ମଧ୍ୟ ଦଳରେ ସାମିଲ ହୋଇଥାନ୍ତି । ଇଣ୍ଡୋନେସିଆ କର୍ତ୍ତୃପକ୍ଷଙ୍କ ସହିତ ଓଡ଼ିଶା ପକ୍ଷରୁ ଭାରତ ସରକାର ଏହି ଉତ୍ସବ ପାଇଁ ନିର୍ଦ୍ଦିଷ୍ଟ ଚୁକ୍ତିପତ୍ର ସ୍ୱାକ୍ଷର କରି ନଥିବାରୁ ଆମେ ଉତ୍ସବ ଆୟୋଜକ କରିବା ପାଇଁ ସ୍ଥାନୀୟ ସାହାଯ୍ୟରୁ ବଞ୍ଚିତ ହେଉଥାଉ । ଏଭଳିକି ପିଇବାପାଣି ବୋତଲ ମଧ୍ୟ ନିଜେ କିଣିବାକୁ ହେଉଥିଲା ।

ବେଳେବେଳେ ପରିସ୍ଥିତି ଜଟିଳ ମଧ୍ୟ ହୋଇପଡୁଥାଏ । ବେନୁଆ ବନ୍ଦରରେ ପିପିଲି ଚାନ୍ଦୁଆ ଖଞ୍ଜିବା ଦରକାର ହେଲା । ନିଶୁଣିଟିକୁ ଦମ୍ଭିଲା କରି ଧରିଲେ ତ କିଏ ଜଣେ ଉପରକୁ ଉଠି ଚାନ୍ଦୁଆଟିକୁ ବାନ୍ଧିବ । ସଂଗ୍ରାମ, ବାଳକୃଷ୍ଣ ଓ ଅନ୍ୟମାନେ ଅନ୍ୟତ୍ର ପ୍ରଦର୍ଶନୀ କାମରେ ଲାଗିଥାନ୍ତି । ମୋ ପାଖରେ ଏକମାତ୍ର ସହାୟକ ଥାଆନ୍ତି ହସ୍ତଶିଳ୍ପ ବିଭାଗର କମିଶନର୍ ବରିଷ୍ଠ ଆଇ.ଏ.ଏସ୍ ଅଫିସର ଚିନ୍ମୟ ବସୁ । ମୁଁ ତାଙ୍କୁ କହିଲି, ''ଆପଣ ନିଶୁଣିରେ ଚଢ଼ି ଚାନ୍ଦୁଆଟିକୁ ବାନ୍ଧନ୍ତୁ ନତୁବା ନିଶୁଣିକୁ ଦମ୍ଭିଲା କରି ଧରିଲେ ମୁଁ ଚଢ଼ିବି ।'' ଜଣେ ବରିଷ୍ଠ ଆଇ.ଏ.ଏସ୍ ଅଫିସରଙ୍କ ପାଇଁ ପ୍ରସ୍ତାବର ଉଭୟ ଦିଗ ଅସମ୍ମାନଜନକ ଥିଲା । ସେ ଜଣେ ଆଇ.ଏ.ଏସ୍. ଅଫିସରଙ୍କ ବିଭୂତି ସଂପର୍କରେ ମୋତେ ସଚେତନ କରିଦେବା ପାଇଁ ନୀତି ବାକ୍ୟ ଶୁଣେଇ କହିଲେ, ''ଦିନନାଥ ତମେ ବୋଧହୁଏ ଜାଣିଥିବ ଜଣେ କମିଶନର୍ ଭାବେ ଡଜନେ ଖଣ୍ଡେ ଜିଲ୍ଲାପାଳ ମୋ ଅଧୀନରେ କାମ କରନ୍ତି ଆଉ ଏଠି ନିଶୁଣିରେ ଚଢ଼ିବାପାଇଁ ତମେ ଜଣେ ସାଧାରଣ ଶିକ୍ଷୀ ହୋଇ ମୋତେ ଆଦେଶ କରୁଛ ।'' ମୁଁ ତାଙ୍କୁ ଚେତେଇ ଦେଇଥିଲି ଯେ ''ଆତୁରେ ନିୟମ ନାସ୍ତି ।'' ''ସ୍ୱଦେଶେ ପୂଜ୍ୟତେ ରାଜା'' ଭଳି ଏଠାକାର ପରିସ୍ଥିତି । ଏମିତିରେ ଚିନ୍ମୟ ବସୁ ଜଣେ ଉତ୍ତମ ଲୋକ । ସେ ପରିସ୍ଥିତିର ଗମ୍ଭୀରତା ବୁଝିପାରି ନିଶୁଣି ସମ୍ଭାଳିଲେ ଆଉ ମୁଁ ସିଡ଼ିରେ ଚଢ଼ି ଚାନ୍ଦୁଆ ଖଞ୍ଜିଲି ।

ବାଲି କଳା ମହାବିଦ୍ୟାଳୟର ଅଧ୍ୟକ୍ଷ ମାଡ଼େବନ୍ଦମ୍ ବାଲି ସରକାରଙ୍କ ପକ୍ଷରୁ ଉତ୍ସବ ପରିଚାଳନାର ଦାୟିତ୍ୱରେ ଥିଲେ । ଆମେ ଉଭୟେ ଶିକ୍ଷୀ ହୋଇଥିବାରୁ ପ୍ରଥମ ଦେଖାରେ ହିଁ ପରସ୍ପର ନିବିଡ଼ ଭାବେ ସମ୍ପର୍କିତ ହୋଇଯାଇଥିଲୁ । ମାଡ଼େ ବନ୍ଦମ୍‌ଙ୍କ ପତ୍ନୀ ଜଣେ ନୃତ୍ୟଶିକ୍ଷୀ । ଏଣୁ ସେ ନାଚ ଗୀତ ଆୟୋଜନର ଭାର ସମ୍ଭାଳୁ ଥିଲେ । ଏଠାରେ ଓଡ଼ିଶା ପ୍ରଦର୍ଶନୀର ବ୍ୟବସ୍ଥା କଲାବେଳେ ଓଡ଼ିଶାର ଆଉଜଣେ ଆଇ.ଏ.ଏସ୍ ଅଫିସର

Digitized by srujanika@gmail.com

ଭାସ୍କର ଚାଟାର୍ଜୀଙ୍କ ସଂଗେ ମୋର ମତାନ୍ତର ହେଲା । ଭାସ୍କରଙ୍କ ମତ ହେଲା ପ୍ରଦର୍ଶନୀର ଆରମ୍ଭରେ ହସ୍ତଶିଳ୍ପର ସାମଗ୍ରୀ ପ୍ରଦର୍ଶିତ ହେବ ଓ ବିକ୍ରୀ ହେବ । ମୋର ଯୋଜନା ଥିଲା ଯେ ଦର୍ଶକମାନେ ପ୍ରଥମେ ଓଡ଼ିଶାର ପ୍ରାକୃତିକ ତଥା ସାଂସ୍କୃତିକ ବିଭବ ସହିତ ପରିଚିତ ହେବେ ଏବଂ ପ୍ରଦର୍ଶନୀ ଦେଖି ଫେରିଲାବେଳେ ହସ୍ତଶିଳ୍ପର ସାମଗ୍ରୀ ଦେଖିବେ, କିଣିବେ ଏବଂ ଓଡ଼ିଶାର ସ୍ମୃତି ନେଇ ଘରକୁ ଫେରିବେ । କାରଣ ପ୍ରଦର୍ଶନୀ ଗୃହରେ ପଶିବା ବେଳଠାରୁ ହାତରେ ଥଳିଆ ଓ ପ୍ରକାଶନ ପୁସ୍ତିକା ନେଇ ବୁଲିବା ସୁବିଧାଜନକ ହେବନି । ଭାସ୍କର ଚାଟାର୍ଜୀଙ୍କ ମନୋଭାବ ହେଲା ଯେହେତୁ ମୋ ଦରମାଠାରୁ ତାଙ୍କ ଦରମା ବେଶି ତେଣୁ ତାଙ୍କ କଥା ଗ୍ରହଣୀୟ ହେବ । ମୋର ଯୁକ୍ତି ହେଲା ମୁଁ ଓଡ଼ିଶା ସରକାରଙ୍କ ଭିଜୁଏଲାଇଜର୍ ଏବଂ ଜୀବନରେ ଅନେକ ଆନ୍ତର୍ଜାତିକ ପ୍ରଦର୍ଶନୀ ଠିକ୍ ଭାବେ ପରିଚାଳନା କରିବାର ଅଭିଜ୍ଞତା ଅଛି, ଏଣୁ ମୋରି ପ୍ରସ୍ତାବ ଗ୍ରହଣୀୟ । ଭାସ୍କର ବାବୁ ମୋ ବିରୁଦ୍ଧରେ ମୋର ସଚିବ ଅଶୋକ କୁମାର ମିଶ୍ରଙ୍କ ପାଖରେ ଅଭିଯୋଗ ବାଢ଼ିଲେ । ମୁଁ ଅଶୋକ ମିଶ୍ରଙ୍କୁ ମୋ ପ୍ରଦର୍ଶନୀ ଡିଜାଇନ୍‌ର ଗୁରୁତ୍ୱ ବୁଝେଇ ଦେଲି । ସେ ବୁଝିଲେ ଓ ଭାସ୍କର ଚାଟାର୍ଜୀଙ୍କୁ ଠିକଣା ବାଗରେ ବୁଝାଇ ଦେଲେ । ପ୍ରଦର୍ଶନୀ ସୁରୁଖୁରୁରେ ଚାଲିଲା । ଫଟୋଗ୍ରାଫର୍ ପ୍ରଫୁଲ୍ଲଚନ୍ଦ୍ର ଧୀର ଓଡ଼ିଶା ସାରା ପରିଭ୍ରମଣ କରି ଫଟୋ ଉଠାଇଥିଲେ ଏବଂ ବିଶାଖାପାଟଣାରେ ସେଗୁଡ଼ିକୁ ପ୍ରିଣ୍ଟ୍ କରି ଆଣିଥିଲେ । ଗୁଣାତ୍ମକ ମାନ ଦୃଷ୍ଟିରୁ ଫଟୋଗୁଡ଼ିକ ଚମତ୍କାର ଦେଖାଯାଉଥିଲା ଏବଂ ଦର୍ଶକମାନଙ୍କର ପ୍ରଶଂସା ଭାଜନ ହୋଇଥିଲା । ଭାସ୍କର ଚାଟାର୍ଜୀଙ୍କ ହରାପଟ ହୋଇଯିବାରୁ ସେ ଅପମାନିତ ଅନୁଭବ କରିଥିଲେ ଏବଂ ପ୍ରତିଶୋଧର ମୌକା ଖୋଜୁଥିଲେ ।

ଆମେ ବାଲି ରାଜରାସ୍ତାରେ ଖଞ୍ଜିଥିବା ଶାଢ଼ିଗୁଡ଼ିକ ରାତାରାତି ଚୋରି ହୋଇଗଲା । ଏବଂ ଘଟଣାକୁ ଆଳ କରି ଭାସ୍କର ଚାଟାର୍ଜୀ ମୋ ବିରୁଦ୍ଧରେ ଅଭିଯୋଗ ବାଢ଼ିବା ପାଇଁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିକଟରେ ଫେରାଦ ହେଲେ । ବିଜୁ ପଟ୍ଟନାୟକ କଳିଙ୍ଗ ବାଲିଯାତ୍ରାକୁ ନେଇ ଯେଉଁ ସ୍ୱପ୍ନ ଦେଖିଥିଲେ ତା'ର ସଫଳ ରୂପାୟନରେ ମଜଗୁଲ ଥିଲେ । ଏଣୁ ଏଭଳି ହତାଶିଆ ଅଭିଯୋଗକୁ ଫୁତ୍କାରରେ ଉଡ଼େଇ ଦେଇ ମନ୍ତବ୍ୟ ଦେଲେ । ''ହଁ ଏଭଳି କିଛି ଘଟୁ ବୋଲି ମୁଁ ଚାହିଁଥିଲି । ବାଲିର ଲୋକମାନେ ଓଡ଼ିଶାର ଶାଢ଼ି ଚୋରାଇ ନେଲେ । ଏହାଠାରୁ ବଳି ଆଉ ଗୌରବର କଥା କ'ଣ ହୋଇପାରେ ।'' ଭାସ୍କର ବାବୁ କଳିଙ୍ଗ ବୀରଙ୍କ ଏଭଳି ଦମ୍ଭୋକ୍ତି ଶୁଣି ନିଜର ହୀନମନ୍ୟତା ହେଜି ପାରିଲେ ।

ଏଭଳି ପ୍ରଦର୍ଶନୀ ଆୟୋଜନବେଳେ ବେଶ୍ କିଛି ଆଇ.ଏ.ଏସ୍ ଅଫିସରଙ୍କ ସହିତ ମୋର ମତାନ୍ତର ଘଟିଛି । ଅହମଦାବାଦର ଶ୍ରେୟାସ୍ ଫାଉଣ୍ଡେସନ୍ ଓଡ଼ିଶା ଉତ୍ସବରେ

Digitized by srujanika@gmail.com

ଏଭଳି ଘଟଣାଟିଏ ଘଟିଥିଲା । ଓଡ଼ିଶା ଉତ୍ସବ ଦାୟିତ୍ୱରେ ଥାଆନ୍ତି ଆଇ.ଏ.ଏସ୍ ଅଫିସର୍ ସରିତା ଜୟନ୍ତ ଦାସ । କୌଣସି କାରଣରୁ ଓଡ଼ିଶାର ପର୍ଯ୍ୟଟନ ମଣ୍ଡପଟିକୁ ଉତ୍ସବର ପ୍ରବେଶ ଦ୍ୱାର ପାଖରେ ରଖିବାକୁ ସରିତା ଚାହିଁଲେ ନାହିଁ । ହୁଏତ ପର୍ଯ୍ୟଟନ ସଚିବଙ୍କ ସହିତ ତାଙ୍କର ତାଳମେଳ ନଥିଲା । କିନ୍ତୁ ଆମକୁ ଆତିଥ୍ୟ ଦେଇଥିବା ଶ୍ରେୟାସ୍ ଫାଉଣ୍ଡେସନ୍‌ର ଅଧକ୍ଷା ଲୀନା ମଙ୍ଗଳଦାସ (ଲୀନାବେନ୍)ଙ୍କୁ ସରିତାଙ୍କ କଥାଟି ଅଡୁଆ ଲାଗିବାରୁ ସିଏ ତାକୁ ଗ୍ରହଣ କରି ନପାରି ପର୍ଯ୍ୟଟନ ମଣ୍ଡପଟିକୁ ପ୍ରବେଶ ଦ୍ୱାରରେ ସଜେଇବା ପାଇଁ ମୋତେ କହିଲେ । ସରିତାଙ୍କ ଧାରଣା ହେଲା ଯେ ତାଙ୍କଠାରୁ କମ୍ ଦରମା ପାଉଥିବା ଶିକ୍ଷୀଟିଏ ତାଙ୍କ କଥାକୁ ଅବଜ୍ଞା କରୁଛି । ସେ ଖୁବ୍ ଚଢ଼ାଗଳାରେ ମୋ ସହିତ ଧମକ ଦେଲାଭଳି କଥାଭାଷା କଲେ । ସେ ଏତେ ଜୋର୍‌ରେ ରାଗିଯାଇଥିଲେ ଯେ ମୋର କୌଣସି ପ୍ରତ୍ୟୁତ୍ତର ଶୁଣିବା ଅବସ୍ଥାରେ ନଥିଲେ । ମନେହେଉଥିଲା, ଅତ୍ୟଧିକ କ୍ରୋଧରେ ତାଙ୍କ ମାନସିକ ଭାରସାମ୍ୟ ଦୋହଲି ଯାଇଥିଲା ଏବଂ ହିତାହିତ ଜ୍ଞାନ ହରେଇ ସେହି ଏକାଭଳି ଉଚ୍ଚା ଗଳାରେ ସେ ଲୀନା ବେନ୍‌ଙ୍କଠାରୁ ପର୍ଯ୍ୟଟନ ମଣ୍ଡପର ସ୍ଥାନ ପରିବର୍ତ୍ତନର କୈଫିୟତ ଚାହିଁଲେ । ଲୀନା ବେନ୍ ଗାନ୍ଧିବାଦୀ ଲୋକ, ବୟସ୍କା ମହିଳା । ସେ ଅତି ଧୀର ଓ ଶାନ୍ତ ଭାବରେ ସରିତାଙ୍କୁ ସବୁକଥା ବୁଝେଇ ଦେଲେ । ବାହାରକୁ ସିନା ଲୀନା ବେନ୍ ଶାନ୍ତ ଲାଗୁଥିଲେ, କିନ୍ତୁ ସରିତାଙ୍କ ଅଭଦ୍ରୋଚିତ ବ୍ୟବହାରରେ ସେ ଅତିଷ୍ଠ ହୋଇପଡ଼ିଥିଲେ । ସରିତା ରାଗରେ ତମତମ ହୋଇ ଚାଲିଗଲା ପରେ ଲୀନା ବେନ୍ ଭାରତର ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇ ଦେଶାଇଙ୍କୁ ଟେଲିଫୋନ୍ କରି ଜଣେ ଆଇ.ଏ.ଏସ୍ ଅଫିସରଙ୍କ ଏତାଦୃଶ ଅସୌଜନ୍ୟ ବ୍ୟବହାର ସଂପର୍କରେ ଅବଗତ କରାଇଥିଲେ । ଲୀନା ବେନ୍ ଓ ମୋରାରଜୀ ଭାଇଙ୍କର ଭଲ ସଂପର୍କ ଥିଲା । ସରିତାଙ୍କ ପାଇଁ ଏହି ଟେଲିଫୋନ୍ ଖୁବ୍ ମହଙ୍ଗା ପଡ଼ିଲା । ସେ ରାତାରାତି ଶିଳ୍ପ ବିଭାଗର ସଚିବ ପଦରୁ ରାଜସ୍ୱ ପର୍ଷଦର ସଚିବ ହୋଇ ବଦଳି ହୋଇଗଲେ । ଏବେ ମଧ୍ୟ ମୋର ଶୈଳ୍ପିକ ପରିଯୋଜନାରେ ଆଇ.ଏ.ଏସ୍ ବା ସେ ଜାତୀୟ ବ୍ୟୁରୋକ୍ରାଟ୍‌ମାନେ ଅଙ୍କୁଶ ଲଗେଇବା ପାଇଁ ଚେଷ୍ଟାକଲେ ମୁଁ ପାରୁପର୍ଯ୍ୟନ୍ତ ତାକୁ ପ୍ରତିହତ କରେ ।

ଏବେ ପୁଣି ବାଲିଦ୍ୱୀପ ପ୍ରସଙ୍ଗକୁ ଫେରିଯିବା ଠିକ୍ ହେବ । ବିଜୟ ରଥ ଓ ମୁଁ ଓବରାଏ ହୋଟେଲରେ ସାମ୍ବାଦିକ ସମ୍ମିଳନୀ ପାଇଁ ମଞ୍ଚ ସଜାଉ ଥାଉ । ଭାଷଣ ଦେବା ପାଇଁ ଉଦ୍ଦିଷ୍ଟ ପୋଡ଼ିଏମ୍ ଉପରେ ମୁଁ ବମକେଇ ପାଟକୁ ମଣ୍ଡଣି କରୁଥାଏ । ବିଜୁ ପଟ୍ଟନାୟକ ହୋଟେଲ ପରିସର ଭିତରେ ପ୍ରାତଃ ଭ୍ରମଣ କରିବାକୁ ବାହାରିଥାନ୍ତି । ବମକେଇ ପାଟଟି ତାଙ୍କୁ ଆକର୍ଷିତ କଲା । ସେ ଆମକୁ ଡାକି ସାଜସଜ୍ଜା ସଂପର୍କରେ ଜାଣିବାକୁ ଚାହିଁଲେ । ମୁଁ ପାଞ୍ଚୋଟି ବମକେଇ ପାଟ ଆଣିଛି ବୋଲି କହିବାରୁ ବାଲି ଗଭର୍ଣ୍ଣରଙ୍କ ସ୍ତ୍ରୀ ଏବଂ

Digitized by srujanika@gmail.com

ଇଣ୍ଡୋନେସିଆର ପ୍ରେସିଡେଣ୍ଟଙ୍କ ସ୍ତ୍ରୀଙ୍କୁ ଉପହାର ଦେବା ପାଇଁ ଦୁଇଟି ଶାଢ଼ି ଅଲଗା ରଖିବାକୁ ନିର୍ଦ୍ଦେଶ ଦେଲେ ଏବଂ ବିଜୟ ରଥ ଓ ମୋ କାମର ଭୂୟସୀ ପ୍ରଶଂସା କଲେ । ଆମକୁ କାଗଜଖଣ୍ଡେ ମାଗି ତା' ଉପରେ ସେଇଠି ଠିଆ ଠିଆରେ ଲେଖିଦେଲେ, ''ଦିନନାଥ ପାଠୀ ଓ ବିଜୟ ରଥ ଦୁଇଜଣ ଭଲ ଅଫିସର । ସେମାନେ ଭଲ କାମ କରୁଛନ୍ତି । ସେମାନଙ୍କୁ ଚାକିରିରେ ପ୍ରମୋଶନ ମିଳିବା ଉଚିତ୍ ।'' ଆମ ଦି'ଜଣଙ୍କର ଖୁସି କହିଲେ ନ ସରେ । ବିଜୁ ପଟ୍ଟନାୟକଙ୍କ ସୁପାରିଶର ଜେରକ୍ସ କପି ରଖି ମୂଳ ଚିଠିଟି ସଂସ୍କୃତି ସଚିବ ଅଶୋକ କୁମାର ମିଶ୍ରଙ୍କ ହାତକୁ ବଢ଼େଇ ଦେଲୁ । ମିଶ୍ରେ ଏକ ଉତ୍ସବ ମାନସିକତାରେ ଥିଲେ ମଧ୍ୟ ଆମ ସହିତ କରମର୍ଦ୍ଦନ କରି ବଧେଇ ଜଣେଇଲେ । ଆମେ ଭାବିଲୁ ସତେ ଯେମିତି ଆମର ପଦୋନ୍ନତି ହୋଇଗଲା । ଭୁବନେଶ୍ୱର ଫେରିଲାପରେ ସୁପାରିଶ ଚିଠିରୁ ମହକ କମିଗଲା ଏବଂ ଆମେ ବାଲିଦ୍ୱୀପର ଦକ୍ଷ ଓଡ଼ିଆ ଅଫିସର ହେଇ ଆଉ ରହିଲୁନି । ବିମଳେନ୍ଦୁ ମହାନ୍ତି ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥାଆନ୍ତି । ନିଜର ହାର୍ଟ ଅପରେସନ୍ ହୋଇଥିବା ହେତୁରୁ ସେ ବାଲିଯାତ୍ରାରେ ସାମିଲ ହୋଇ ନଥାନ୍ତି । ତାଙ୍କ ହାତରେ ଚିଠିଟା ପଡ଼ିଲା ପରେ ଆମକୁ ଥରେ ଦି'ଥର ବହୁତ ଦରଦ ଦେଇ କଥା କହିଥିବେ, ''ଡକ୍ଟର ପାଠୀ, ବିଜୟ, ମୁଁ ନିଶ୍ଚୟ ଚିଠି ଉପରେ କାର୍ଯ୍ୟାନୁଷ୍ଠାନ କରିବି ।'' ମୁଁ ଭାବେ ହୁଏତ ଅଧକ୍ଷ ପଦଟା ପ୍ରଫେସର୍ ପାହ୍ୟାକୁ ଉନ୍ନୀତ ହୋଇଥିବ ଓ ବିଜୟ ରଥ ପ୍ରତ୍ନତତ୍ତ୍ୱ ବିଭାଗର ନିର୍ଦ୍ଦେଶକ ହୋଇଯିବେ । ବିମଳେନ୍ଦୁ ମହାନ୍ତି ଆମ ଦି ଜଣଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ, ଏଣୁ ତାଙ୍କ ପ୍ରତି ଆକ୍ଷେପ କରି ଏବେ କିଛି ଅଭିଯୋଗ କରିବା ଠିକ୍ ହେବ ନାହିଁ । କେବଳ କୁହାଯିବ ଆମର ଭାଗ୍ୟ ଉଦୟ ହେଲା ନାହିଁ ।

ପ୍ରଦର୍ଶନୀର ସରକାରୀ ବ୍ୟବସ୍ଥାରେ ଉଦ୍ଦିଷ୍ଟ ଥିବା ଉତ୍ସବର ଆନୁଷଙ୍ଗିକ ଅର୍ଥ ବିଜୟ ରଥଙ୍କ ପାଖରେ ରହିବ ଅଥଚ ଅର୍ଥ ଖର୍ଚ୍ଚ କରିବାର କ୍ଷମତା ରହିବ ମୋ ପାଖରେ । ଆମ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ଅଫିସରଙ୍କ ଧାରଣା ଯେ ଦିନନାଥ ପାଠୀ ଜଣେ ବଦ୍‌ଖର୍ଚ୍ଚୀ ବ୍ୟକ୍ତି ଏଣୁ ତାଙ୍କ ପାଖରେ ପଇସା ରହିଲେ ସେ ବିଚାରଶୂନ୍ୟ ଭାବେ ଖର୍ଚ୍ଚ କରିଦେବେ । ଅବଶ୍ୟ ବିଜୟ ରଥ ମିତବ୍ୟୟୀ । ବାଲିରେ ସରକାରୀ ଅଫିସରଙ୍କ ଉପରେ କେତେକ କଟକଣା ଥାଏ । ତାରକା ହୋଟେଲରେ ରହଣି ଓ ଶୀତତାପ ନିୟନ୍ତ୍ରିତ ଗାଡ଼ିରେ ଭ୍ରମଣ ପାଇଁ ଅନୁମତି ନଥିଲା । ମୁଁ ବିଜୟ ରଥଙ୍କୁ କହିଥାଏ, ''ରଥେ ଦେଖ ଆମେ ସରକାରୀ ପଇସାରେ ସାଙ୍ଗହୋଇ ବିଦେଶ ଆସିଚେ, ଏଣୁ ବିଦେଶ ଭ୍ରମଣର ସବୁ ପ୍ରକାର ମଜା ନେବା ଉଚିତ । ତମେ ହାତଖୋଲା ପଇସା ଖର୍ଚ୍ଚ କର, ମୁଁ ତ ଭାଉଚର୍‌ରେ ଦସ୍ତଖତ କରିବାକୁ ଅଛି । ଏଣୁ ଆଉ ଭୟ କାହିଁକି ।'' ସେତେବେଳକୁ ଇଣ୍ଡିଆ ଏଗେନ୍‌ଷ୍ଟ କରପ୍‌ସନ୍ ସଂସ୍ଥା ଗଢ଼ା ହେଇ ନଥାଏ । ଏଣୁ ବିଜୟ ରଥ ମୋ ପ୍ରସ୍ତାବରେ ଅମଙ୍ଗ ହେଲେନି । ଆମେ

Digitized by srujanika@gmail.com

ଆମ ବାଲି ରହଣିକୁ ସ୍ମରଣୀୟ କରିବାରେ ଲାଗିଲୁ । ବିଜୟ ରଥ, ହରିଶ୍ଚନ୍ଦ୍ର ଦାସ, ରାଜକୁମାର ସୁବୁଦ୍ଧି, ସୌଭାଗ୍ୟ, ସଂଗ୍ରାମ ଓ ବାଳକୃଷ୍ଣ ସମସ୍ତେ ପ୍ରମ୍ୟନମ୍ ହୋଟେଲର ଶୀତତାପ ନିୟନ୍ତ୍ରିତ କୋଠରି ମାନଙ୍କରେ ରହୁଥିଲେ ଓ ଶୀତତାପ ନିୟନ୍ତ୍ରିତ ଗାଡ଼ି ମଧ୍ୟ ବ୍ୟବହାର କରୁଥିଲେ । ଓଡ଼ିଆ କାରିଗରମାନେ ପୁରୀ କେଡ଼ାଟାନ୍ ହୋଟେଲରେ ଏବଂ ମନ୍ତ୍ରୀ ଓ ଅଫିସରମାନେ ଅପେକ୍ଷାକୃତ ଏକ ବିଳାସପୂର୍ଣ୍ଣ ହୋଟେଲରେ ଆସ୍ଥାନ ଜମେଇଥିଲେ । ଆମେ ଚାହିଁଥିଲେ ମନ୍ତ୍ରୀ ଓ ଅଫିସରଙ୍କ ସହିତ ଏକା ହୋଟେଲରେ ରହିପାରିଥାନ୍ତୁ । ଆମେ ଆମର ସ୍ୱାଧୀନତା ଚାହୁଁଥିଲୁ ଏବଂ ବିଦେଶ ଭୂଇଁରେ ଅଫିସରଙ୍କ ବଟସ୍ଥର ହେବାକୁ ପସନ୍ଦ କଲୁନାହିଁ ।

କଳିଙ୍ଗ ବାଲିଯାତ୍ରାର ଅନେକ ସ୍ମରଣୀୟ ଘଟଣା ମଧ୍ୟରୁ ମୋର ଏକକ ଚିତ୍ର ପ୍ରଦର୍ଶନୀ, ''ହୋମେଜ୍ ଟୁ ବାଲି'' ମୋ ଶୈକ୍ଷିକ ଜୀବନରେ ଗୋଟିଏ ଭିନ୍ନ ସ୍ମୃତି ଭରିଦେଇଥିଲା । ବାଲିଦ୍ୱୀପ ହିନ୍ଦୁ ମାନଙ୍କର ଦେଶ ଏବଂ ଏଠିକାର ମାତୃପୂଜନର ପରଂପରା ମୋତେ ଏ ଦେଶକୁ ପ୍ରଥମ ଆସିଥିବା ବେଳର ସଜଳ ଅନୁଭୂତି ଥିଲା । ଏଣୁ ମୁଁ ବିଭିନ୍ନ ଦେବଦେବୀଙ୍କୁ ଆଧାର କରି କିଛି ଜଳରଙ୍ଗର ଚିତ୍ର କରିଥିଲି । ଏହି ଚିତ୍ରଗୁଡ଼ିକ ବିଭିନ୍ନ ଦେବଦେବୀଙ୍କ ଉପରେ ଯଦିଓ ଆଧାରିତ ଥିଲା କିନ୍ତୁ ସେଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ଦେବୀ ବା ଦେବତା ରୂପର ପ୍ରତିଫଳନ ନଥିଲା । ଚିତ୍ରଗୁଡ଼ିକ ଦେଖିଲେ ସେଥିରୁ ଗୋଟିଏ କଥା ବାରିହେଇପଡୁଥିଲା, ତାହାହେଲା ପଦ୍ମାସନର ଆସୀନ ନିର୍ଲିପ୍ତ ଭଙ୍ଗିର ବିଭିନ୍ନ ଯୋଗମୁଦ୍ରା । କାଗଜ ଉପରେ ଉଜ୍ଜ୍ୱଳ କାଳି ବ୍ୟବହାର କରି ମୁଁ ଏହି ଚିତ୍ରଗୁଡ଼ିକୁ ଅଙ୍କନ କରିଥିଲି । ଏହି ଦେବଦେବୀମାନଙ୍କୁ ଚଉଷଠୀ ଯୋଗିନୀମାନଙ୍କ ସହିତ ସଂପର୍କିତ କରାଯାଇପାରେ ଏବଂ ମୋର ମଙ୍ଗଳା ସିରିଜ୍‌ର ରେଖା ପ୍ରଧାନ ଚିତ୍ରଙ୍କ ସାଂଗରେ ମଧ୍ୟ ତୁଳନା କରାଯାଇପାରେ । ଏହି ଏକକ ପ୍ରଦର୍ଶନୀଟି ବାଲିର ରାଜ୍ୟପାଳ ଇଦା ବାଗୁସ୍ ଓକା ଏବଂ ଆମ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ମିଳିତ ଭାବେ ଉଦ୍‌ଘାଟିତ ହୋଇଥିଲା ।

କଳିଙ୍ଗ ବାଲିଯାତ୍ରା ଉପଲକ୍ଷେ ଅନୁଷ୍ଠିତ ଆନ୍ତର୍ଜାତିକ ଆଲୋଚନା ଚକ୍ରରେ ହରିଶ୍ଚନ୍ଦ୍ର ଦାସ ଇଲେକ୍ଟ୍ରିକ୍ କରେଣ୍ଟ ନଥିବା ଯୋଗୁ ଓଡ଼ିଶାର ମନ୍ଦିରମାନଙ୍କର ସ୍ଲାଇଡ୍‌ସ୍ ପ୍ରଦର୍ଶନ କରି ନପାରି କିଭଳି ଅପଦସ୍ତ ହୋଇଥିଲେ ଓ ତାହା ତାଙ୍କର ପାଣ୍ଡିତ୍ୟପଣିଆକୁ କିଭଳି ଉପହସିତ କରିଥିଲା ତାହା ଅବଶ୍ୟ ଆଲୋଚନାଯୋଗ୍ୟ ନୁହେଁ । ଏହି ସେମିନାରରେ ଇଣ୍ଡୋନେସିଆ ପକ୍ଷରୁ ଇଦା ବାଗୁସ୍ ରତା, ହରଯାତୀ ସୋଇବାଦିଓ, ହରିଆନି ସାନ୍ତିକୋ, ସେଦ୍ୟାବତୀ ପ୍ରମୁଖ ଐତିହାସିକ ଉପସ୍ଥିତ ଥିଲେ । ସେମାନେ ବାଲି ତଥା ଇଣ୍ଡୋନେସିଆର ସଂସ୍କୃତିରେ ଭାରତ ତଥା ଓଡ଼ିଶାର ପ୍ରାଧାନ୍ୟକୁ ସ୍ୱୀକାର କରୁଥିଲେ ମଧ୍ୟ ସେ ଦେଶର ସଂସ୍କୃତି ଉପରେ ଓଡ଼ିଶାର ଏକତରଫା ପ୍ରଭାବ ସପକ୍ଷରେ ନଥିଲେ । ଏହା ସାଂସ୍କୃତିକ ଆଦାନ ପ୍ରଦାନର ଏକ ସମନ୍ୱିତ ପ୍ରତିଫଳନ ବୋଲି ତାଙ୍କର ବିଶ୍ୱାସ ଥିଲା । ସେମିନାରରେ ମୁଁ ଓଡ଼ିଶାର ଚିତ୍ରକଳା ସଂପର୍କରେ

Digitized by srujanika@gmail.com

ଦୀର୍ଘ ଭାଷଣଟିଏ ଦେଇ ପ୍ରହ୍ଲାଦ ନାଟକର ନୃସିଂହ ମୁଖା ଓ ବାଲିମୁଖାର ସାମଞ୍ଜସ୍ୟ ପାଖରେ କଥା ଶେଷ କରିଥିଲି ।

ଏହି ଉତ୍ସବ ପାଇଁ ପାଞ୍ଚ ଛଅଗୋଟି ପୁସ୍ତିକା ଆମ କଲେଜରେ ଡିଜାଇନ୍ କରାହୋଇ ଭୁବନେଶ୍ୱର ଗ୍ରାଫଟେକ୍ ପ୍ରେସ୍‌ରେ ମୁଦ୍ରିତ ହେଇଥିଲା । ଯାହା ହାତରେ ଖଣ୍ଡିଏ ପୁସ୍ତିକା ପଡ଼ିଲା ସିଏ ଆମ କଲେଜ କଥା ପଚାରିଲା । ସେମାନଙ୍କ ଧାରଣା ହେଲା ଆମ କଲେଜଟି ଓଡ଼ିଶାର ରାଜଧାନୀରେ ପ୍ରତିଷ୍ଠିତ ହୋଇଥିବା ଏକ ମସ୍ତବଡ଼ କଳା ଅନୁଷ୍ଠାନ ଯେଉଁଠି ଏଡ଼େ ସୁନ୍ଦର ସୁନ୍ଦର, ପୁସ୍ତିକା, କାଟ୍‌ଲଗ୍ ଓ ପୋଷ୍ଟର୍ ଡିଜାଇନ୍ କରିବା ପାଇଁ ଆପ୍ଲାଇଡ୍ ଆର୍ଟ୍‌ର ଷ୍ଟୁଡ଼ିଓ ଅଛି । ବେନୁଆ ବନ୍ଦର ନିକଟରେ ଖୋଲିଥିବା କଳିଙ୍ଗ ବିପଣିର ପଟଚିତ୍ର, କାଠ ଖୋଦେଇ, ପୋଡ଼ାମାଟିର କାମ, ଲାଖପେଡ଼ି, ତାରକସିର ଅଳଙ୍କାର, ସୋନପୁର, ସମ୍ବଲପୁର ଓ ନୂଆପାଟଣା ବାନ୍ଧଶାଢ଼ିର ବେପାର ପ୍ରତି ସନ୍ଧ୍ୟାରେ ଜମୁଥିଲା । ବାଲିଯାତ୍ରାର ଲୋଗୋ ଥାଇ ଚେନ୍ ଓ ଲକେଟ୍ ଆମେ ତିଆରି ଥିଲୁ । ମନେହେଉଥିଲା ସତ ସୁନାର ଲକେଟ । ବିପଣିରେ ତାର ଆଦର ବେଶି ବଢ଼ିଯାଇଥିଲା । ବାଲିର ଲଳନାମାନେ ଗଳାରେ ଲକେଟ୍ ଝୁଲେଇ ମୁଣ୍ଡରେ କାଠଚମ୍ପାର ଫୁଲ ନାଇହେଇ ପ୍ରଜାପତି ଭଳି ହାଟ ଭିତରେ ବୁଲୁଥିଲେ । ମନେହେଉଥିଲା ହୁଏତ ହଜାର ବର୍ଷ ତଳେ କଳିଙ୍ଗର ସାଧବ ପୁଅମାନେ ବୋଇତରେ ବଣିଜ କରିବାକୁ ଆସି ଏଠି ଏମିତି ପସରା ମେଲି ଦେଉଥିବେ ଏବଂ ବେପାର ବଣିଜ ସାରି ଲବଙ୍ଗ ଦ୍ୱୀପରୁ ଲବଙ୍ଗ, ମସଲା ଓ ଲୁଗା ନେଇ ଫେରୁଥିବେ। ସତ କହିବାକୁ ଗଲେ ମୁଁ ବାଲିର ଚମଡ଼ାରେ ତିଆରି ଛାଇ କଣ୍ଢେଇ ଓ୍ୱାୟାଙ୍ଗ୍ କୁଲିତ୍, ମୁଖା ଓ ଡବଲ୍ ଇକତ ଲୁଗାର ପ୍ରେମରେ ପଡ଼ିଯାଇଥିଲି । ବାଲିର ଆକର୍ଷଣ ଏବେବି ମୋ ମନରୁ ଯାଇନି । ମୁଁ ମୋର "ହୋମେଜ୍ ଟୁ ବାଲି" ପ୍ରଦର୍ଶନୀ ପୁସ୍ତିକାରେ ଯେଉଁ ଚାରିଧାଡ଼ି ଗୀତ ଲେଖିଥିଲି ତାକୁ ଅନୁବାଦ କଲେ ମୋଟାମୋଟି ଏଇମିତି ହେବ :

ବାଲି !  
ଦିଅଁ ଦେବତାଙ୍କ ସୁନ୍ଦର ଦ୍ୱୀପ  
ଦୂର ଦିଗନ୍ତର ବାଇଗଣି ପାହାଡ଼  
ନିକାଞ୍ଚନ ବେଳାଭୂମି, ସୁବର୍ଣ୍ଣ ସୈକତ,  
ଶୀତଳ ପବନର ଥିରି ଥିରି କଥା  
ଧାଡ଼ି ଧାଡ଼ି ନଡ଼ିଆ ଗଛର ତୋଟା,  
ସ୍ୱପ୍ନମୟ ବର୍ଣ୍ଣବିଭାର ଆଲୁଆଲେ  
ରଙ୍ଗ ବେରଙ୍ଗର ବାନ୍ଧଶାଢ଼ି,  
କେତେ ନାଚ କେତେ ଗୀତ

Digitized by srujanika@gmail.com

କେତେ ଖୁସିବାସି ନିରୀହ ମୁହଁ,
ଆଖିରେ ଆଖିରେ ସଫା ହସ
କେତେ ପୁରୁଣା ପୁଣି
କେତେ ନୂଆ ଏ ଅନୁଭବ ।
ବାଲି ! ଏ ଚିତ୍ରବୀଥି ତୋ ପାଇଁ,
ତୁ ମୋ ମନରେ
ପ୍ରାଣରେ ବଞ୍ଚିରହ
ସଦାକାଳେ ଚିତ୍ରଟିଏ ହୋଇ ।

Digitized by srujanika@gmail.com

# ୪୯. ମାନବ ସାଗର ତୀରେ : ମିଟ୍ ଦ ଆର୍ଟିଷ୍ଟ୍ କାର୍ଯ୍ୟକ୍ରମ

'ମାନବ ସାଗର ତୀରେ' ବିଶ୍ୱଗୁରୁ ରବୀନ୍ଦ୍ରନାଥଙ୍କ କବିତାର ଧାଡ଼ିଟିଏ । କବିତାର ଅଂଶଟି ଏଭଳି :

ହେ ମୋର ଚିତ୍ତ ପୁଣ୍ୟତୀର୍ଥ ଜାଗୋରେ ଧୀରେ
ଏଇ ଭାରତେର ମହାମାନବେର ସାଗର ତୀରେ ।

ସିଏ ଋହିଁଥିଲେ ବିଶ୍ୱଭାରତୀ ମାନବ ସାଗର ତୀରରେ ନୀଡ଼ଟିଏ ହେଉ, ତା ହେଉ ବିଶ୍ୱନୀଡ଼।

ସମଗ୍ର ବିଶ୍ୱରୁ ବିଦ୍ୱାନ୍‌ମାନେ ଏହି ନୀଡ଼ରେ ପାଦ ପକାନ୍ତୁ । ଶିଳ୍ପୀ, ସଂଗୀତଜ୍ଞ କବି, ଲେଖକଙ୍କ ସଂସ୍ପର୍ଶରେ ଆସି ଏହି ନୀଡ଼ ଧନ୍ୟ ହେଉ । ସେମାନେ ସେମାନଙ୍କ ସାଧନାର ସୁଗନ୍ଧରେ ବିଶ୍ୱଭାରତୀକୁ ସୁବାସିତ କରନ୍ତୁ । ଶିକ୍ଷାର, ସହାବସ୍ଥାନର, ସହାନୁଭୂତିର ପରିସର ବ୍ୟାପକ ହେଉ । ଆବାହନର ବଳୟ ବିସ୍ତାରିତ ହୋଇ ସମଗ୍ର ବିଶ୍ୱକୁ ଆବୋରି ବସୁ । ବିନ୍ଦୁଏ ପ୍ରାପ୍ତିରେ ସିନ୍ଧୁର ମହିମା କୀର୍ତ୍ତିତ ହେଉ ।

ଆମେ ତ କଳ୍ପନାଛକର ଭଡ଼ାଘରେ ଥାଉ । ରୋକଡ଼ ପଣତ । କିନ୍ତୁ ମୁଁ ସଦାବେଳେ ଚେଷ୍ଟିତ ଥାଏ ଅନ୍ତେବାସୀମାନେ ଏ ସାମୟିକ ଅଭାବକୁ ମନରେ ନ ଘେନନ୍ତୁ । ସେମାନେ ଭାବନ୍ତୁ ଯେ ତାଙ୍କ ମହାବିଦ୍ୟାଳୟ ଗୋଟିଏ ବିଶ୍ୱ ନୀଡ଼ । ବିଶ୍ୱନୀଡ଼ କଳ୍ପନାର ଉଦ୍ଦେଶ୍ୟକୁ ସାର୍ଥକ କରୁ । ଏଣୁ ଆମେ ଗୋଟିଏ ଅଭିନବ କାର୍ଯ୍ୟକ୍ରମର ରୂପାୟନ କଲୁ ଯାହାକୁ ନାମିତ କରିଥିଲୁ ମାନବ ସାଗର ତୀରେ । ମୁଁ ଭାରତ ଉତ୍ସବ ସଂକ୍ରାନ୍ତରେ ସ୍ୱିଡେନ୍‌ର ଷ୍ଟକ୍‌ହୋମ୍ ସହରକୁ ଯାଇଥାଏ । ସେଠାକାର ପପୁଲାର୍ ଆର୍ଟ୍ ପ୍ରଦର୍ଶନୀ ଦେଖିବାକୁ ବିଭିନ୍ନ ପ୍ରକାର ଦର୍ଶକ ଆସୁଥାଆନ୍ତି। ଥରେ ଦେଖାହୋଇଗଲା ଜଣେ କ୍ୟାଲିଗ୍ରାଫୀ ଶିଳ୍ପୀଙ୍କୁ । ସିଏ କଲିକତା କଳାମହାବିଦ୍ୟାଳୟର ଛାତ୍ର, ନାଁ ଏବେ ମନେପଡୁନି, ବୋଧହୁଏ ବାନାର୍ଜୀ କି ମୁଖାର୍ଜୀ ହେବ । ଆମ ପ୍ରଦର୍ଶନୀ ଦେଖି ତାଙ୍କର ଭାରତ କଥା ବେଶି ମନେପଡ଼ିଲା । ଆମ କଲେଜରେ ପାଦ ପକେଇବା ପାଇଁ ମୁଁ ନିମନ୍ତ୍ରଣ ଜଣେଇଲି । ସେ ନୋବେଲ ପୁରସ୍କାର କମିଟି ଅଧୀନରେ

Digitized by srujanika@gmail.com

କ୍ୟାଲିଗ୍ରାଫର ଭାବେ ଚାକିରି କରୁଥାନ୍ତି । କାମ ହେଲା ଯେଉଁମାନେ ନୋବେଲ ପୁରସ୍କାର ପାଆନ୍ତି ସେମାନଙ୍କ ପାଇଁ ସାର୍ଟିଫିକେଟ୍ ଓ ସାଇଟେସନ୍ ଲେଖିବା । ସେ ମୋତେ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ଘରେ ସ୍ତ୍ରୀ ଓ ଛୋଟ ଝିଅଟିଏ । କି ଚମତ୍କାର ହାତଲେଖା ଅକ୍ଷର ତାଙ୍କର । ମନେହେଲା ନୋବେଲ କମିଟି ଜଣେ ଯୋଗ୍ୟଶିଳ୍ପୀଙ୍କୁ ଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ବାଛିଛନ୍ତି । ମୁଁ ଥଟ୍ଟାରେ ପଚାରିଲି, 'ଆପଣଙ୍କ ପାଖରେ ନାଁ ଲେଖା ହୋଇ ନଥିବା କିଛି ଅଲୋଡ଼ା ସାର୍ଟିଫିକେଟ୍ ତ ଥିବ, ସେଥିରେ ମୋ ନାଁ ଲେଖି ସାର୍ଟିଫିକେଟ୍‌ଟିଏ ଦେଉ ନାହାନ୍ତି । ପ୍ରଥମେ ସେ ମୋ ଥଟ୍ଟା ବୁଝିପାରିଲେନି । ଯେତେବେଳେ ମୋ କଥା ଘେନିଲେ ବହେ ହସିଲେ । କହିଲେ ଶିଳ୍ପୀମାନଙ୍କୁ ନୋବେଲ ପୁରସ୍କାର ଦିଆଯାଏନି । ତା'ହେଲେ ଶିଳ୍ପକର୍ମ କ'ଣ ସାହିତ୍ୟଠାରୁ ନ୍ୟୂନମାନର ସର୍ଜନା । ତାଙ୍କ କଥାର ଶାଣିତ ବ୍ୟଙ୍ଗରେ ମୋ ମନ ଘାଣ୍ଟିକେଟି ହେଲା । ସେ ଦିଗରେ କଥା ବଢ଼େଇବା ଉଚିତ ମଣିଲି ନାହିଁ । ମୁଖାର୍ଜୀ କହିଲେ ନୋବେଲ ସାର୍ଟିଫିକେଟ୍ ଗୋଟିଏ ଗୋଟିଏ ଦୁର୍ମୂଲ୍ୟ ଛବି ଭଳି । ପୁରସ୍କାର ଘୋଷଣା ପରେ ସ୍ୱେନର କୌଣସି ଗୋଟିଏ କାଗଜ ତିଆରି କାରଖାନାରେ ପୁରସ୍କାର ବିଜେତାଙ୍କ ନାମର ପାଣିଛାପ (ୱାଟର୍ ମାର୍କ) ଥାଇ କାଗଜ ସ୍ୱତନ୍ତ୍ର ଭାବେ ତିଆରି ହୁଏ । ପାଣିଛାପର କରାମତି ହେଲା ଏମିତିରେ କାଗଜରେ କ'ଣ ଲେଖାଅଛି ସହଜରେ ଆଖିରେ ପଡ଼େନି । ଆଲୁଅ ଆଗରେ ଧରିଲେ ଅକ୍ଷରଗୁଡ଼ିକ ପରିଷ୍କାର ଜଣାପଡ଼ିଯାଏ । ସେଭଳି କାଗଜ ଉପରେ ଡଟ୍ କଲମ ନୁହେଁ କାଳି କଲମରେ ସେ ଅକ୍ଷର ଲେଖାଯାଏ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଗଛର ଛେଲିକୁ ବତୁରେଇ ସିଝେଇ ସେଇଥିରୁ କାଳି ପ୍ରସ୍ତୁତ କରାଯାଏ । ଏତେସବୁ ପଦ୍ଧତି ଅନୁସରଣରେ, ଏତେ ଯତ୍ନ ସହକାରେ ବିଶ୍ୱର ସର୍ବଶ୍ରେଷ୍ଠ ପୁରସ୍କାର ପାଇଁ ଯାହା ପ୍ରସ୍ତୁତ କରାଯାଏ ତାହା ସାମାନ୍ୟ ଖଣ୍ଡେ କାଗଜ ନୁହେଁ, ଖଣ୍ଡିଏ ଦୁର୍ମୂଲ୍ୟ ଚିତ୍ର ନିଶ୍ଚୟ । ତାଙ୍କର ଦୀର୍ଘ ବୟାନ ଶୁଣିଲା ପରେ ଶିଳ୍ପୀମାନଙ୍କୁ କାହିଁକି ପୁରସ୍କାର ଦିଆଯାଏ ନାହିଁ, ତାର ଉତ୍ତର ପାଇଗଲି ।

ମୁଖାର୍ଜୀ ଦା' ନିଜ ପରିବାର ସହ ଭୁବନେଶ୍ୱରରେ ପହଞ୍ଚି ଆମ କଲେଜର ଅତିଥି ଗୃହରେ ରହିଲେ, ନୋବେଲ ସାର୍ଟିଫିକେଟର ପ୍ରସ୍ତୁତ ପ୍ରଣାଳୀ ସଂପର୍କରେ ପିଲାଙ୍କୁ ବୁଝେଇଲେ । ସାଂଗରେ କିଛି ନମୁନା ଆଣିଥିଲେ, ତାକୁ ପ୍ରଦର୍ଶନ କଲେ । ଆମେ ଆମ ଅବବୋଧର ପରିସର ବିସ୍ତାର କରିବାରେ ସମର୍ଥ ହେଲୁ । କଳ୍ପନା କଲେଜ କଳ୍ପନାର ପକ୍ଷ ଖଞ୍ଜି ଷ୍ଟକ୍‌ହୋମ୍‌ର ସୁନା ଗିଲ୍‌ଡେଡ୍ ଅଭ୍ୟର୍ଥନା କୋଠରି ଯାଏଁ ଲମ୍ବିଗଲା ଯେଉଁଠି ନୋବେଲ ପୁରସ୍କାର ବିଜେତା ମାନଙ୍କୁ ସମ୍ବର୍ଦ୍ଧିତ କରାଯାଏ ।

ଆଉଥରେ ଆମେ ନିମନ୍ତ୍ରଣ କରି ଆଣିଲୁ ଶାନ୍ତିନିକେତନ କଳା ଭବନର ପ୍ରଫେସର୍ ସୁଖମୟ ମିତ୍ରଙ୍କୁ । ସୁଖମୟ ମିତ୍ର ନନ୍ଦଲାଲଙ୍କ ଛାତ୍ର ଓ ଶାନ୍ତିନିକେତନର ନିଜସ୍ୱ ପରମ୍ପରାରେ ଉଦ୍‌ବୁଦ୍ଧ । ଲେପଚିତ୍ରଠାରୁ ଆରମ୍ଭ କରି ଧୌତଚିତ୍ର, ରେଖାଚିତ୍ର ପ୍ରଭୃତି

Digitized by srujanika@gmail.com

କଳାଶୈଳୀରେ ମାହିର । ପ୍ରଥମ ମହଲାରେ ରୁମ୍‌ଟିଏ ଚିହ୍ନଟ କରିଥାଉ ଅତିଥିମାନଙ୍କ ପାଇଁ । ସାଦା କାଠପଟାର ତକ୍ତପୋଷକୁ ରଙ୍ଗେଇ ଦିଆଯାଇଥାଏ । ତା'ପରେ ମେଟ୍ରେସ୍, ଧଳାଚଦର ଓ ଶେଯ ଘୋଡ଼ଣୀ ଭାବରେ ସମ୍ବଲପୁରୀ ବାନ୍ଧ ଚଦର । ଶିଳ୍ପୀଙ୍କ ରୁଚିକୁ ସୁହାଇଲା ଭଳି ସାଜସଜ୍ଜା । କାନ୍ଥରେ ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ପୋଷ୍ଟର୍ ଓ ମୋ ନିଜର କିଛି ନିର୍ବାଚିତ ପୁରୁଣା ଜଳରଙ୍ଗର ଚିତ୍ର ।

ପିଲାମାନେ ଅତିଥିମାନଙ୍କର ଖାଇବା ପିଇବା ଦାୟିତ୍ୱ ନେଇଯାଆନ୍ତି । କଲେଜର ଅର୍ଥର ଅଭାବ କଥା ଧରାପଡ଼େନି । ଅତିଥି ଜଣେ ପହଞ୍ଚିଲେ ଆତିଥ୍ୟରେ ମହକେଇ ଦେବାପାଇଁ କଲେଜରେ ଲୋକଙ୍କ ଅଭାବ ନଥାଏ । ମୋର ଏବେ ବି ମନେଅଛି ସୁଖମୟ ଦା' ମାଛଝୋଳ ଓ ଚିଲିକାର ଚିଙ୍ଗୁଡ଼ି ଖାଇ ଗଦଗଦ ହୋଇଗଲେ । ସିଏ ସକାଳୁ, ଉପରଓଳି ପିଲାଙ୍କ ସାଂଗରେ ବଗିଚାରେ, ଆମ୍ବଗଛମୂଳେ କଟେଇ ଦିଅନ୍ତି । ଆମେ ବେଳେବେଳେ ସବୁ କାନ୍ଥ ଚିତ୍ରଗୁଡ଼ିକୁ ଭୁଲରେ ଫ୍ରେସ୍କୋ କହିଥାଉ-ଏକଥା ସୁଖମୟ ଦା' ପିଲାଙ୍କୁ ଚେତେଇ ଦେଲେ । ଓଦା କାନ୍ଥ ଉପରେ ଯେଉଁ ଚିତ୍ର ହୁଏ ତାହାହିଁ ଫ୍ରେସ୍କୋ । ଫ୍ରେସ୍କୋ ଶବ୍ଦଟି ଇଟାଲୀୟ ପରଂପରାରୁ ଉଦ୍ଭବ । ବାସ୍ତବରେ ଶବ୍ଦଟି ହେଲା ଫ୍ରେସ୍କୋବୁନୋ । କଲେଜରେ ଗାଡ଼ି ତ ନଥିଲା ଏଣୁ ସ୍କୁଟରରେ ବସେଇ ତାଙ୍କୁ ଭୁବନେଶ୍ୱରର ମନ୍ଦିର ଦେଖେଇଲୁ । ତାଙ୍କର ଆନନ୍ଦ କହିଲେ ନସରେ । ସୁଖମୟ ଦା'ଙ୍କ ସଙ୍ଗେ ଗପସପ କରିବା ପାଇଁ ଭୁବନେଶ୍ୱର ଓ କଟକରେ ରହୁଥିବା ଶାନ୍ତିନିକେତନ କଳାଭବନରୁ ପାଠ ସାରି ଆସିଥିବା ଶିଳ୍ପୀଙ୍କୁ ନିମନ୍ତ୍ରଣ କରି କଲେଜ ଆଣିଥିଲୁ । ସୁଖମୟ ଦା' ଗୋଟିଏ ପରିବାର ଭଳି ଚଳୁଥିବା ଏହି କଲେଜର ଛାତ୍ରଛାତ୍ରୀ ଓ ଅଧ୍ୟାପକଙ୍କ ସ୍ନେହ ଆଦର ଓ ସମ୍ମାନରେ ଅଭିଭୂତ ହୋଇଯାଇଥିଲେ ।

ଆଉ ଥରକର ଘଟଣା । ଆମେ ଏମ୍.ଏସ୍. ୟୁନିଭରସିଟି ବରୋଦାର ଭିଜୁଏଲ୍ ଫେକଲ୍‌ଟିରୁ ଚିଠି ପାଇଲୁ ଯେ ସେମାନେ ଦଳବଳେ ଭୁବନେଶ୍ୱରରେ ପହଞ୍ଚିବା ପାଇଁ ଚାହୁଁଛନ୍ତି । ପ୍ରଫେସର୍ ଜ୍ୟୋତି ଭଟ୍ଟ ଆସିବେ, ରମେଶ ପାଣ୍ଡ୍ୟା ଆସିବେ । ପୁଣି ସେମାନଙ୍କ ସାଂଗରେ ଆସିବେ ପ୍ରଫେସର୍ ରତନ ପାରିମୁ । ଆମ କଲେଜ ପାଇଁ ଏହାଠାରୁ ବଳି ଆଉ ଅଧିକା କ'ଣ ସୁଯୋଗ ହେଇପାରେ ! ସେମାନେ ଭାରତବର୍ଷର ଖୁବ୍ ନାମକରା ଶିଳ୍ପୀ । ସେମାନଙ୍କ ସାନ୍ନିଧ୍ୟ ପାଇ କଲେଜର ଅନ୍ତେବାସୀ ଧନ୍ୟ ହେବେ । ଦୁଇଟି ବସ୍‌ରେ ବୋଝେଇ ହେଇ ସେମାନେ ବାରୋଦାରୁ ବାହାରି ଭୁବନେଶ୍ୱର ପହଞ୍ଚିଲେ । କେଉଁଠି ସେମାନଙ୍କୁ ରଖିବୁ ଚିନ୍ତା ହେଲା । ମୁଁ କଲେଜ ଛୁଟି କରିଦେଲି । ସବୁ ଷ୍ଟୁଡ଼ିଓ, ସବୁ କ୍ଲାସ୍‌ରୁମ୍ ଅତିଥି ଗୃହରେ ପରିଣତ ହେଇଗଲା । ମୋ ଅଫିସ୍‌କୁ ଲାଗି ଗୋଟିଏ କୋଠରି ନିଜ ହେପାଜତରେ ରଖିଥାଏ । ସେଇଟି ମୋର ବ୍ୟକ୍ତିଗତ ଷ୍ଟୁଡ଼ିଓ । ସବୁ

Digitized by srujanika@gmail.com

ଜାଗା, ସବୁ ଘର, ସବୁ କୋଠରି କେବଳ ପୂରିଲାନି, ଉଛୁଳି ଉଠିଲା । ପ୍ରଫେସର୍ ଜ୍ୟୋତି ଭଟ୍ଟ (ଜ୍ୟୋତି ଭାଇ) ଅଧ୍ୟାପକ ଡି.ନାରାୟଣଙ୍କୁ ସାଂଗରେ ଧରି ଗ୍ରାଫିକ ଷ୍ଟୁଡ଼ିଓରେ ପିଲାଙ୍କ ସାଂଗରେ କଥା ଓ କାମ ଜମେଇଲେ । ରତନ ପାରିମୁ ବିଦେଶରେ ପାଠପଢ଼ି ଫେରିଥିବା ଭାରତ ବର୍ଷର ପ୍ରଥମ କଳା-ଐତିହାସିକ । ଆଧୁନିକ ୟୁରୋପୀୟ କଳା ସଂପର୍କରେ ତାଙ୍କ ଜ୍ଞାନ ଗଭୀର । ସନ୍ଧ୍ୟାରେ ବେଲକୋନିରେ ବସି ତାଙ୍କ ସହିତ ଚହା ପିଆ ହୁଏ । ପାରିମୁ ସାର୍‌ଙ୍କ ଦପ୍‌ଦପ୍ ଗୋରା ଚେହେରା । କାଶ୍ମୀରର ଲୋକ । ରହିରହି କଥା କହନ୍ତି । ଆମ କଲେଜଟି ଆକାରରେ ଛୋଟିଆ ହେଲେ କ'ଣ ହେବ ବଡ଼ ହେବାର ସମସ୍ତ ସମ୍ଭାବନା ବାରିହେଇ ପଡୁଥିଲା । କଲେଜଟି ବିଶୃଙ୍ଖଳାରୁ ମୁକ୍ତ ଥିଲା । ମୋ ଷ୍ଟୁଡ଼ିଓରେ ଟଙ୍ଗା ହୋଇଥିବା ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ଗୋଟିଏ ପୋଷ୍ଟର୍ ଉପରେ ପାରିମୁ ସାର୍‌ଙ୍କ ଆଖି ପଡ଼ିଲା । ପୋଷ୍ଟର୍‌ଟିରେ କାଶ୍ମୀରର ଗୋଟିଏ ଚିତ୍ରିତ କାଗଜ ପୋଥିର ଚିତ୍ର ଛପା ହେଇଥିଲା । ପୋଥିର ସବା ଉପର ପତ୍ରରେ ଗଣେଶ ଓ ସରସ୍ୱତୀଙ୍କ ଦୁଇଟି ମନଲୋଭା ଚିତ୍ର ଶୋଭା ପାଉଥିଲା । ରତନ ପାରିମୁଙ୍କ ଆଖି ସେଠି ଲାଖି ରହିଲା । କାଶ୍ମୀରର ଲୋକ ଏଣେ କଳା ଐତିହାସିକ । ପୋଷ୍ଟର୍‌ଟିର ଲୋଭ ସମ୍ବରଣ କରିପାରିଲେନି । ପୋଷ୍ଟରଟିକୁ ସାଂଗରେ ନେଇ ତାଙ୍କ ଆର୍କାଇଭସ୍‌ରେ ରଖିବା ପାଇଁ ଚହିଁଲେ । ଅତିଥିଙ୍କ ଅନୁରୋଧ । ଆମେରିକା ମାଗୁଛି ଭାରତକୁ ଉଧାର । ମନ କହିଲା ଦେଇଦିଅ । ଏତେବଡ଼ ପୋଷ୍ଟର୍, ପ୍ଲାଇବୋର୍ଡ଼ ଉପରେ ମଡ଼ିଆ ହେଇଛି । ଟ୍ରେନ୍‌ର ଶୀତତାପ ନିୟନ୍ତ୍ରିତ ଡବା ଭିତରେ ଯିବ କିମିତି ? ଶେଷରେ ନିଷ୍ପତ୍ତି ହେଲା ତାକୁ କରତରେ କାଟି ଦି' ଖଣ୍ଡ କରାଯିବ, ପୁଣି ବରୋଦାରେ ପହଞ୍ଚିଲେ ଯୋଡ଼ା ଯିବ । ଶେଷକୁ ସେଇଆ ହେଲା । ବରୋଦାର କଳା ବିଭାଗ ସହିତ ଆମ କଲେଜର ସଂପର୍କ ନିବିଡ଼ ହେଇଗଲା । ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ପ୍ରଫେସର୍ ରମେଶ ପାଣ୍ଡ୍ୟା ଗୋଟିଏ ଗହନ ପ୍ରଶ୍ନ ପଚାରିଲେ । ଆଚ୍ଛା ଦିନନାଥ କହିଲ, "ଆମ ପାଇଁ ତମେ ତମ କଲେଜକୁ ସଂପୂର୍ଣ୍ଣ ତିନିଦିନ ବନ୍ଦ କରିଦେଇପାରିଲ, ଆମେ କିନ୍ତୁ ବରୋଦାରେ ଏଭଳି କରିବା ସମ୍ଭବ ନୁହେଁ । ଆମ ନିଜ ପାଖରେ ଏଭଳି ନିରଙ୍କୁଶ କ୍ଷମତା ନାହିଁ । ଆମେ ରେଜିଷ୍ଟ୍ରାର୍‌ଙ୍କ ପାଖକୁ ଦରଖାସ୍ତ କରିବୁ, ସିଏ ପୁଣି କୁଳପତିଙ୍କ ପାଖରେ ଫେରାଦ ହେବେ । ପାଗ ଭିଡ଼ୁଭିଡ଼ୁ କଚେରୀ ବରଖାସ୍ତ ହେଇସାରିଥିବ ।" ତାଙ୍କ କଥା ଶୁଣି ମୋ ଆତ୍ମବିଶ୍ୱାସ ବଢ଼ିଗଲା । ମୁଁ ବିନମ୍ର ଭାବେ କହିଲି, ବୋଧହୁଏ ଗୋଟିଏ ଛୋଟିଆ କଲେଜର ଅଧକ୍ଷ ବୋଲି ଏତେକଥା ସମ୍ଭବ ହେଇପାରିଲା । ଆପଣମାନେ ହୁଏତ ସିଂହର ଲାଙ୍ଗୁଡ଼ ଆଉ ମୁଁ କୁକୁରର ମୁଣ୍ଡ ।

ଆଉ ଦୁଇଜଣ ଅତିଥିଙ୍କ ସଂପର୍କରେ କହି ମୋ କଥା ଶେଷ କରିବି । ଭାସ୍କର ରବୀନ୍ଦ୍ର ରେଡ୍ଡୀଙ୍କ ସହିତ ଲଣ୍ଡନର ଗୋଟିଏ ପ୍ରଦର୍ଶନୀରେ ଦେଖାହେଇଥିଲା । କିଛି ଭାରତୀୟ

Digitized by srujanika@gmail.com

ଶିଳ୍ପୀ ହାଇଡ୍ ପାର୍କର ସର୍ପେନ୍‌ଟାଇନ୍ ଗ୍ୟାଲେରୀରେ ପ୍ରଦର୍ଶନୀ କରୁଥାନ୍ତି ଆଉ ମୁଁ ଥାଏ ଅନେକଙ୍କ ମଧ୍ୟରୁ ଜଣେ ଦର୍ଶକ । ରବୀନ୍ଦ୍ରଙ୍କ ସଙ୍ଗେ ପରିଚୟ ହେଲା । କଥାଭାଷା ହେଲା ପରେ ଜଣା ପଡ଼ିଲା ଯେ ସେ ଏବର୍‌ହାର୍ଡ୍‌ଙ୍କୁ ଭଲ ଭାବରେ ଜାଣନ୍ତି । ସଂପର୍କ ଆଗକୁ ବଢ଼ିବା ପାଇଁ ଏତକ ଯଥେଷ୍ଟ ଥିଲା । ରବୀନ୍ଦ୍ର ବରୋଦାର ଧ୍ରୁବ ମିସ୍ତ୍ରୀଙ୍କ ଛାତ୍ର । ଧ୍ରୁବ ଯେଭଳି ଫାଇବର୍ ଗ୍ଲାସ୍‌ର ବଡ଼ ବଡ଼ ନାରୀଙ୍କ ମୁଣ୍ଡ ତିଆରି କରି ତା' ଉପରେ ସୁନାରଙ୍ଗ ଚଢ଼େଇ ଦେଇଥାନ୍ତି ରବୀନ୍ଦ୍ର ଠିକ୍ ତାଙ୍କରି ଅନୁକରଣରେ ମୂର୍ତ୍ତି ଗଢ଼ନ୍ତି । ମୁହଁର ଆଖି ଦୁଇଟି ବିସ୍ଫାରିତ । ମଝିରେ କଳାଡୋଳା, ପୂରିଲା ପୂରିଲା ନାଲିଆ ଓଠ । ମଣିଷତ ନୁହେଁ, ଠାକୁରାଣୀଙ୍କ ଆବକ୍ଷ ମୂର୍ତ୍ତି ଭଳି ଦେଖାଯାଏ । ମୁଁ ତାଙ୍କୁ ଭୁବନେଶ୍ୱର ଗୌରୀ ମନ୍ଦିରର ଠାକୁରାଣୀଙ୍କ କଥା କହିଲି । ସିଏ ଭୁବନେଶ୍ୱର ଆସିବା ପାଇଁ ଆଗ୍ରହ ପ୍ରକାଶ କଲେ । 'ୱ୍ୱା' 'ସମର ଶୋ'ର ଛବି ଚୟନ ପାଇଁ ରବୀନ୍ଦ୍ରଙ୍କୁ ଭୁବନେଶ୍ୱର ଡାକିଲେ । ରବୀନ୍ଦ୍ର ଆମ କଲେଜରେ ଦୁଇଦିନ ରହିଲେ । କିନ୍ତୁ ବାସ୍ତବରେ ଓଡ଼ିଆ ପଣ୍ଡାମାନେ ଆଳତି ସମୟରେ ଠାକୁରାଣୀମାନଙ୍କ ପଥର ମୂର୍ତ୍ତିକୁ ଚନ୍ଦନ ଓ ହଳଦୀର ଲେପ ଦେଇ ରୂପାର ଆଖି ଖଞ୍ଜି ଯେଭଳି ଚିତ୍ରିତ ଭାସ୍କର୍ଯ୍ୟର ଭ୍ରମ ସୃଷ୍ଟି କରନ୍ତି ତାହା ରବୀନ୍ଦ୍ରଙ୍କୁ ବିସ୍ମୟରେ ଭରିଦେଲା । ସିଏ ହୃଦୟଙ୍ଗମ କଲେ ଯେ ଆମେ ଯାହାକୁ ଅତ୍ୟାଧୁନିକ ଓ ସାଂପ୍ରତିକ କହୁଛୁ, ତା'ର ଚେର ସଦାକାଳେ ପରଂପରାର ଗଭୀର ମାଟିରେ ପୋତି ହେଇ ରହିଥାଏ ।

ମେଡ୍ରାସ୍ ଆର୍ଟ୍ କଲେଜର ରିଡ଼ର୍ ଦକ୍ଷିଣାମୂର୍ତ୍ତି ମୋର ଘନିଷ୍ଠ ବନ୍ଧୁ । ସେ ଗ୍ରାନାଇଟ୍ ପଥରରେ ଭାସ୍କର୍ଯ୍ୟ ଗଢ଼ନ୍ତି । ଆମେ ଦୁହେଁ ଏକା ସାଂଗରେ ଦିଲ୍ଲୀ ଲଳିତ କଳା ଏକାଡେମୀର କାର୍ଯ୍ୟନିର୍ବାହୀ ସଂସଦର ସଭ୍ୟ ଥିଲୁ । ଆମ କଲେଜ ଦେଖିବା ପାଇଁ ମୁଁ ତାଙ୍କୁ ନିମନ୍ତ୍ରଣ କଲି । ଉଦ୍ଦେଶ୍ୟ ରହିଲା 'ୱ୍ୱା' ର 'ସମର୍ ଶୋ' ବିଚାରକ ହେବେ, ଏଠି ମନ୍ଦିରମାନଙ୍କରେ ମୂର୍ତ୍ତିଗଢ଼ଣ ଦେଖିବେ । ମୋ ସମୟରେ ଅତି ଚମତ୍କାର ବ୍ୟବସ୍ଥାଟିଏ କାର୍ଯ୍ୟକାରୀ ହେଉଥିଲା । କଲେଜରେ ବଜେଟ୍ ନାହିଁ 'ୱ୍ୱା' ସଂସ୍ଥାକୁ ଅନୁରୋଧ କର ସେମାନେ ଅତିଥିଙ୍କ ଗସ୍ତଖର୍ଚ୍ଚ ସମ୍ଭାଳି ନେବେ । 'ୱ୍ୱା' ରିଜର୍ଭ ବ୍ୟାଙ୍କରୁ ଟଙ୍କା ଆଣିବନି । ଟଙ୍କା ଆସିବ ଶେଷରେ ଅଧକ୍ଷଙ୍କ ବ୍ୟକ୍ତିଗତ ପାଣ୍ଠିରୁ । ଏବେ ଏସବୁ କଥା ଅନ୍ୟମାନଙ୍କୁ ମିଛ ମିଛ ଲାଗିବ । ଏହା କ'ଣ ସମ୍ଭବ ? ହଁ ଦଶବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ସମ୍ଭବ ଥିଲା । ଏବେ ତ ଯା'ର ବେପାର ତା'ର, ଯା'ର ପଇସା ତା'ର । ବେପାର ଧୁମ୍ ହେଉଛି, ଯା'ର ଗର୍ଦ୍ଦନ ମୋଟାହେବା କଥା ହେଉଛି । ଅଥଚ କଲେଜରେ ଗୋଟି ଗୋଟି ହେଇ କାର୍ଯ୍ୟକ୍ରମର ଅନ୍ତ ହେଉଛି । ଯତୀନ ଦାସ ଭାବୁଥିବେ ସେ ଚମତ୍କାର 'ମିଟ୍ ଦ ଆର୍ଟିଷ୍ଟ' କାର୍ଯ୍ୟକ୍ରମ ଭୁବନେଶ୍ୱରରେ ପ୍ରଥମ କରି କରୁଛନ୍ତି । ତାଙ୍କର ଦୁଇଘଣ୍ଟିଆ ବ୍ୟାପାର । କଲେଜର ମୋ ବନ୍ଧୁମାନେ ସବୁ ଭଲକଥା କାହିଁକି ବନ୍ଦ କରି ଦେଉଛନ୍ତି । ତା'ର ଗୁମର ସେମାନଙ୍କୁ ହିଁ ଜଣା ।

Digitized by srujanika@gmail.com

## ୫୦. ଶନିବାରିଆ ସେମିନାର

ଖଲ୍ଲିକୋଟ କଳାମହାବିଦ୍ୟାଳୟରେ ଚାରୋଟି ବର୍ଷ ସିମିତି ସିମିତିରେ କଟିଯାଇଥିଲା । ପାଠଶାଠ ନାହିଁ । ସନ୍ଧ୍ୟାହେଲେ ଟିଣ ବାଡ଼େଇବା, ନାଚ, ଗୀତ, ମଉଜ୍ ମଜଲିସ୍ କରିବା । ସକାଳ ହେଲେ ଚିତ୍ର ଓ ଭାସ୍କର୍ଯ୍ୟ । କିଏ ଜଣେ ଠିକ୍ ଠଉରେଇ ଥିଲେ ଛାଇତାପିଆ କାମ । ଇଟା ଯୋଡ଼େଇରେ ଯିମିତି କରଣିର ବ୍ୟବହାର ସିମିତି କାନ୍‌ଭାସରେ ସ୍ପେଚୁଲା ବା କରଣି । ଫରକ ଭିତରେ ଏତିକି ଯେ ଇଟା ଯୋଡ଼େଇ ଖରାରେ କିନ୍ତୁ କାନ୍‌ଭାସ୍‌ରେ କରଣି ଚାଳନା ଛାଇରେ । ଅବଶ୍ୟ ନାଚ ଗୀତ କଳାମୂକତାର ଅନ୍ୟଏକ ବର୍ଣ୍ଣାଢ଼୍ୟ ବିଭବ । ସେହିସବୁ କର୍ମକୁ ଛାଇତାପିଆଙ୍କ କାମ କହି ହେବ କି ନା ମୁଁ ଚିନ୍ତା କରିନି । ମୁଁ ଚାହିଁଥିଲି ଆମ କଲେଜରେ ନାଚ ଗୀତ ହେଉ, ତା' ସାଂଗରେ ପାଠପଢ଼ା ମଧ୍ୟ ହେଉ । ପିଲାମାନଙ୍କର ବୌଦ୍ଧିକ ବିକାଶ ହେଉ । ଆଉ ଏହି ବୌଦ୍ଧିକ ବିକାଶ ପାଇଁ ପ୍ରଥମ ସୋପାନ ହେଲା ସେମିନାର୍ ।

ପ୍ରତି ସପ୍ତାହର ଶନିବାର ସକାଳଓଳି ହଲ୍‌ରେ ଆରମ୍ଭ ହେଇଯିବ ସେମିନାର । ପ୍ରଥମେ ଛୋଟ ଛୋଟ ସମସ୍ୟାକୁ ନେଇ ଆଲୋଚନା । ପିଲାମାନେ ଯେଉଁ ହାତଅଙ୍କା ଛବି କାନ୍ଥକୁ ଡେରି ରଖିବେ । ଜଣେ ଆଉଜଣକର ଛବିର ସମାଲୋଚନା କରିବ । ସେ ଛବିରେ କ'ଣ ଦେଖୁଛି, କିମିତି ଦେଖୁଛି, କ'ଣ କ'ଣ ତାର ପସନ୍ଦ ହେଉଛି ଓ କାହିଁକି ? ଯଦି ତା'ର କୌଣସି କଥା, ଧରାଯାଉ ଡ୍ରଇଁ ବା ରଙ୍ଗ ବା ରଚନା ମନକୁ ପାଉନାହିଁ, ତାହେଲେ କାହିଁକି ନୁହେଁ । ପ୍ରଶ୍ନ କରିବାର ପ୍ରବୃତ୍ତି ଓ ଜିଜ୍ଞାସାକୁ ମୋ ଛାତ୍ର ଛାତ୍ରୀଙ୍କ ମଗଜରେ ପୂରେଇ ଦେବା ପାଇଁ ମୁଁ ଚାହୁଁଥିଲି । କଳା ଇତିହାସ ବିଭାଗ ଖୋଲିବା ପଛରେ ଜିଜ୍ଞାସାର ଉନ୍ମେଷ ଓ ପ୍ରସାରର ଅସଲ ଉଦ୍ଦେଶ୍ୟ ଥିଲା ।

ଓଡ଼ିଶାର ଶିଳ୍ପ ବୈଭବ ଅମାପ । ପ୍ରାଗୈତିହାସିକ ଚିତ୍ରଠାରୁ ଆରମ୍ଭ କରି ସାଂପ୍ରତିକ କଳାଯାଏଁ ପ୍ରାୟ ତିନି ହଜାରରୁ ଊର୍ଦ୍ଧ୍ୱକାଳ ଧରି ଏକ ସୁଦୀର୍ଘ ଇତିହାସ, କଳାର, କାରିଗରି ଓ ଶୈଳୀର । ତାକୁ କିଏ ଘେନିବ, ଆହରଣ କରିବ ଓ ତା'ର ବିକାଶରେ ସହାୟକ ହେବ ? ଆମେ କ'ଣ କେବଳ ପାଶ୍ଚାତ୍ୟ କଳାର ଜୟଗାନରେ ଆମର ଆସ୍ପୃହାକୁ ମେଣ୍ଟେଇ ଦେଉଥିବା ? ଏଭଳି ପ୍ରଶ୍ନଟିଏ, ସମସ୍ୟାଟିଏ ଅନେକ ଦିନରୁ ମୋତେ ଗ୍ରାସ

Digitized by srujanika@gmail.com

କରିଛି । ମୁଁ ଅନୁଭବ କରିଛି ଆମ ଗ୍ରାମ୍ୟ ସଂସ୍କୃତିର ବୈକଲ୍ୟ । ମଠ ମନ୍ଦିର ମାନଙ୍କରୁ ଭିତିଚିତ୍ରଗୁଡ଼ିକ ଲିଭିଲିଭି ଯାଉଛି । ଓଡ଼ିଆ ହାତ ସିଲେଇ ଗନ୍ଥା ତେଲୁଗୁଙ୍କ ମେସିନ୍ ଗନ୍ଥାର ଶସ୍ତା ଆଦର ଭିତରେ ମରିହଜି ଯାଉଛି । ଗାଁ ଗହଳର ପଥର କାରିଗର ସିମେଣ୍ଟ କାମରେ ମାତିଲେଣି । ନୂଆ ନୂଆ କଥା ନୂଆ ନୂଆ ବ୍ୟଥା ହେଇ ମୋତେ ଘାରିଛି । ଏଣୁ ମୁଁ ମନସ୍ଥ କରିଥିଲି ଯୁବଶିଳ୍ପୀଙ୍କ ଭିତରେ ମୋ ବ୍ୟଥାକୁ ସଂଚରେଇ ଦେବି । ମୋ ବୋଝ ହାଲୁକା ହେଇଯିବ । ଥରେ ପାଠ୍ୟକ୍ରମ ଭିତରେ ଅନ୍ତର୍ଭୁକ୍ତ ହେଇଗଲେ ନଦୀର ଧାର ଭଳି ଆଗକୁ ଆଗକୁ ମାଡ଼ିଯିବ ।

ପରିବର୍ତ୍ତନ ଅବଶ୍ୟମ୍ଭାବୀ । ତାକୁ ତ ରୋକି ହେବନି । ଜୀବନ, ସମାଜ ଓ କଳା ସବୁ ତ କାଳକ୍ରମେ ବଦଳିବ । ମୋର ଧାରଣା ସେ ସବୁ ବିଭବକୁ ପଞ୍ଜୀକରଣ ମାଧ୍ୟମରେ ଏବଂ ସାହିତ୍ୟରେ ବଂଚେଇ ଦେଇହେବ । ତେଣୁ ଆବଶ୍ୟକ ବୌଦ୍ଧିକ ପରିଚର୍ଚ୍ଚାର ସୁସ୍ଥ କାର୍ଯ୍ୟକ୍ଷମର ପଞ୍ଜରଟିଏ । ସେହି ପଞ୍ଜରର ବିଭବଗୁଡ଼ିକ ହେଲା ସେମିନାର୍, ବକ୍ତୃତାମାଳା, କଳା ଓ ନାନ୍ଦନିକତାର ପତ୍ରିକା ଚିତ୍ର । ଏସବୁଗୁଡ଼ିକ ପରସ୍ପର ସଂପର୍କିତ ।

କଳା ଇତିହାସର ପରଂପରା ସେତେ ପୁରୁଣା ନୁହେଁ, ବେଶି ହେଲେ ଦୁଇଶହ ବର୍ଷର ଘଟଣା ହେବ । ସାହିତ୍ୟ ସମାଲୋଚନା ଓ କଳା ସମାଲୋଚନା ମଧ୍ୟରେ ଅନ୍ତର ପ୍ରାୟତଃ ନାହିଁ । ଏକାଭଳି କଳ୍ପନାର ଅଭିସାର । ବୌଦ୍ଧିକ ମାର୍ଜନ । ସାଧାରଣ ଭାବରେ ସ୍ୱୀକାର କରାଯାଇଥାଏ ଯେ ସର୍ଜନଶୀଳତା ଓ ବୌଦ୍ଧିକତା ଦୁଇଟି ସ୍ୱତନ୍ତ୍ର ବ୍ୟାପାର । ସୃଜନ ବିକାଶ ମଧ୍ୟରେ ଯୌକ୍ତିକତାର ଅଲଂଘ୍ୟ ବ୍ୟାକରଣ ସୁସୁପ୍ତି ଅବସ୍ଥାରେ ଥାଏ । ତାହା ଗୋଟିଏ ପାଣିଝରେ, ବହିଯାଇଥାଏ ଆମ ଅଲକ୍ଷ୍ୟରେ । ଆମେ ଥରେ ଛଉର ବିଶିଷ୍ଟ ଗୁରୁ ଶ୍ରୀହରି ନାୟକଙ୍କୁ ଭେଟିବାକୁ ବାରିପଦା ଯାଇଥାଉ । ଛଉଗୁରୁ ଶଯ୍ୟାଶାୟୀ । ମୋ ସାଙ୍ଗରେ ଥାଆନ୍ତି ମାଲେସିଆର ବିଶିଷ୍ଟ ନୃତ୍ୟଶିଳ୍ପୀ ରମଲି ଇବ୍ରାହୀମ । ତାହେଲେ ଶ୍ରୀହରି ନାୟକଙ୍କୁ ଭେଟିବା କ'ଣ ସ୍ୱପ୍ନରେ ରହିଯିବ ! ଆମେ ତାଙ୍କ 'ଦର୍ଶନ' ପାଇଁ ଆସିଛୁ, ପୁଣି ଏତେ ବାଟରୁ । ଶ୍ରୀହରି ନିଜ ବିବେକର ତାଡ଼ନାରେ ଉଠିପଡ଼ି ଖଟ ଉପରେ ବସିଲେ । ସାହସ ସଂଚୟ କରି ଘର ବାହାରକୁ ଆସିଲେ । ଆମେ ଦୁଇଜଣ ଶିଳ୍ପୀଙ୍କୁ ଦେଖି ତାଙ୍କର ଶିଳ୍ପଚେତନାରେ ଶିହରଣ ଖେଳିଗଲା । ପାଣ୍ଡୁର ମୁହଁରେ ହସର ସାମାନ୍ୟ ସଂକେତ ଦେଖାଗଲା । ଅବଲୀଳାକ୍ରମେ ହାତ ଦୁଇଟିରେ କଂପନ ସୃଷ୍ଟି ହେଲା। ସେ ବାହୁ ଦୁଇଟି ପ୍ରସାରିତ କଲେ ଓ ଶିବ ତାଣ୍ଡବର ମୁଦ୍ରାଟିଏ ଆମକୁ ଦେଖେଇଲେ । ସିଏ ଗୁରୁ ଭାବରେ ନିଜର କର୍ତ୍ତବ୍ୟ ସଂପାଦନ କରିପାରିଛନ୍ତି ବୋଲି ଯେତିକି ଆଶ୍ୱସ୍ତ ହେଲେ, ଆମେ ଗୋଟିଏ ସୁଯୋଗ୍ୟ ଗୁରୁ - ପରଂପରା-ସୁଗନ୍ଧର ବିମୋହନ ପାଇଛୁ ବୋଲି ନିଜକୁ ଧନ୍ୟ ମନେକଲୁ ।

Digitized by srujanika@gmail.com

ଗୋଟିଏ ଶନିବାରିଆ ସେମିନାରରେ ପିଲାଙ୍କ ଆଗରେ ମୁଁ ଏମିତି ଗୋଟିଏ ଅନନ୍ୟ ଘଟଣାର ଅବତାରଣା କରି ସେମାନଙ୍କୁ ପ୍ରଶ୍ନ କଲି, ଏହା କ'ଣ କଳା ଇତିହାସ ଓ କଳା ସମାଲୋଚନାର ସମସ୍ୟା ? କିଏ ଜଣେ ସାହସ କରି ପ୍ରଶ୍ନ କଲା, ବୋଧହୁଏ ଛାତ୍ରୀ ଏମ୍ ସୁଧା ହେବ, ଚିତ୍ରକଳା ସହିତ ନୃତ୍ୟକଳାର ବା କି ସଂପର୍କ ଥାଇପାରେ ? ଏହାହିଁ କଳ୍ପନାର ବିସ୍ଫୋରଣ । ମୁଁ ଉତ୍ତରରେ କହିଲି, ମନେକର ସାଦା କାଗଜ ଫର୍ଦ୍ଦଟିଏ, ତମେ ଭାବୁଛ କ'ଣ ଗୋଟିଏ ଆଙ୍କିବ । କିଛି ସ୍ଫୁରୁ ନାହିଁ । ଗଛ ଅଛି, ପାହାଡ଼ ସ୍ଥିର ହୋଇ ଠିଆ ହେଇଛି । ମଣିଷମାନେ ନିଷ୍କ୍ରିୟ । ତମେ କ'ଣ ରଚିବ ? ହଠାତ୍ ଅବିଶ୍ୱସନୀୟ ଭାବେ ସବୁଠାରୁ ରୋଗିଣା ମଣିଷଟିଏ ଝାଡ଼ିଝୁଡ଼ି ଠିଆ ହେଲା । ବାହୁପ୍ରସାରିତ କରି ଗୋଡ଼ ଉଠେଇ ନାଚିବା ଆରମ୍ଭ କଲା । ଧୀରେ ଧୀରେ ତା' ଦେହ ନୃତ୍ୟର ଭଙ୍ଗିମାରେ ପଲ୍ଲବିତ ହେଲା । ନୃତ୍ୟର ଗତି ପ୍ରଖର ହେଲା, ଉଦ୍ଦଣ୍ଡ, ଉଗ୍ର ହେଲା । ନାଚ ଶିବ ତାଣ୍ଡବରେ ପରିଣତ ହେଲା । ବେଶ୍ ତମେ ଏବେ କହ ଯାହା ଘଟିଗଲା ତାହା ନୃତ୍ୟ ନା ଚିତ୍ର ?

ଶନିବାରିଆ ସେମିନାରର ଏହା ଗୋଟିଏ ଝଲକ ମାତ୍ର ।

କଲେଜର ଅଧିକାଂଶ ପିଲା ଏଥିରେ ଯୋଗ ଦେଉଥିଲେ । କଳା ଇତିହାସ ବିଭାଗର ପ୍ରଦୋଷ ମିଶ୍ର, ଏମ୍ ସୁଧା, ଦୁର୍ଗା ପଟ୍ଟନାୟକ, ବିଜୟ ସହିତ ଅନ୍ୟାନ୍ୟ ବିଭାଗର ପିଲାମାନେ, ଅତସୀ ବସୁ, ରବି ବନିକ, ରଶ୍ମି ପଣ୍ଡା, ଅନୁପ ଚାନ୍ଦ ଓ ଦିଲ୍ଲୀପ ତ୍ରିପାଠୀ ପ୍ରଭୃତି । ବେଳେବେଳେ ଆଲୋଚନା ପାଇଁ ମୁଁ ଆଗରୁ ବିଷୟ ସ୍ଥିର କରିଦେଉଥିଲି । ପିଲାମାନେ ନିର୍ଦ୍ଦିଷ୍ଟ ବିଷୟକୁ ନେଇ ପ୍ରବନ୍ଧ ପ୍ରସ୍ତୁତ କରି ଉପସ୍ଥାପନ କରୁଥିଲେ । ତା' ଉପରେ ପ୍ରଶ୍ନୋତ୍ତରୀ ଚାଲୁଥିଲା । ମୋର ଏବେ ବି ମନେଅଛି ବଙ୍ଗଳାର ଚିତ୍ରଶିଳ୍ପୀ ଜାମିନୀ ରାୟଙ୍କ ଚିତ୍ରକଳା ଉପରେ ପ୍ରଦୋଷର ସେମିନାର ପ୍ରବନ୍ଧ, ଗଂଜାମ ନେଟଙ୍ଗାର ରଘୁନାଥ ସ୍ୱାମୀ ମନ୍ଦିରର କାଠ ଖୋଦେଇ ଉପରେ ଦିଲ୍ଲୀପ ତ୍ରିପାଠୀର ଚର୍ଚ୍ଚା । ଦିଲ୍ଲୀପର ଏହି ପ୍ରବନ୍ଧଟି ପରେ 'ଚିତ୍ର' ପତ୍ରିକାରେ ପ୍ରକାଶ ପାଇଥିଲା ।

ଆଉ ଗୋଟିଏ ସେମିନାରରେ ମୁଁ ଏକ ଅଭିନବ ଧରଣର କଳା ଐତିହାସିକ ସମସ୍ୟା ପିଲାଙ୍କ ଆଗରେ ଉତ୍ଥାପନ କରିଥିଲି । ସେଦିନ ଗୋଟିଏ ପାହାଡ଼ୀ ମିନିଏଚର ଚିତ୍ର ଆଣି ସେମିନାର୍‌ରେ ରଖିଲି । ମିନିଏଚର୍‌ରେ ନାୟିକାଟିଏ ମୁହଁ ଅବନତ କରି ବିମର୍ଶ ବଦନରେ ବସିଛି । ବାଁ ହାତ ଭୂମି ଉପରେ ଭରାଦେଇଛି । ଡାହାଣ ହାତରେ ଭୂମି ଉପରେ କିଛି ରେଖା ଆଙ୍କୁଛି । ସାମନାରେ ପଦ୍ମପୋଖରୀ, ତାରି ଭିତରେ ସନ୍ତରଣମଗ୍ନ ହଂସ, ବତକ ଆଉ ହଂସରାଳି । ଚତୁର୍ଦ୍ଦିଗେ ସୁନ୍ଦର ଉପବନ, ଅଦୂରରେ ନଅର । ସନ୍ଧ୍ୟା ଆଗତ ପ୍ରାୟ । ବଡ଼ ମନଲୋଭା ପରିବେଶଟିଏ । ଦି' ଚାରିଜଣ ପିଲା ପରିବେଶକୁ ବେଶ୍ ବର୍ଣ୍ଣିଦେଇଗଲେ । କିନ୍ତୁ ଏତିକିରେ କଳା ଇତିହାସର ସମସ୍ୟାଟିର ଅନ୍ତ ହେଇ

Digitized by srujanika@gmail.com

ନଥିଲା । ବାସ୍ତବିକ ଏଠାରୁ ହିଁ ତା'ର ଆରମ୍ଭ । ସେମାନଙ୍କ ସୃଜନ ଚେତନାକୁ ପ୍ରସାରିତ କରିବା ପାଇଁ ପ୍ରଶ୍ନ କଲି, ଆକଳନ କର ନାୟିକାଟି ଭାବୁଛି କ'ଣ ? ଉତ୍ତର ମିଳିଲା ହୁଏତ ତା ପ୍ରେମିକର କଥା, ସ୍ମୃତିରେ ସେ ଆଉଟୁ ପାଉଟୁ ହେଉଛି । ଏ ସବୁ ସ୍ୱାଭାବିକ ଉତ୍ତର । ମୁଁ ଚାହୁଁଥିଲି ସେମାନଙ୍କ ଚିନ୍ତା ଆହୁରି ଶାଣିତ ହେଉ । ମୋର କହିବା ଉଦ୍ଦେଶ୍ୟ ଥିଲା, ଏହି ଦୃଶ୍ୟମାନତାର ଅନ୍ତରାଳେ ଯାହା ଗୋପ୍ୟ ତା'ର ଉନ୍ମୋଚନ । ଏଭଳି ପ୍ରଶ୍ନ ସେମାନଙ୍କ ପାଇଁ କଠୋର ଥିଲା। ମନେହେଉଥିଲା ତାହା କଳା ଇତିହାସର ପରିଧି ବାହାରେ । ହୁଏତ ତାହା କାବ୍ୟ ବା ଦର୍ଶନର ବିଷୟ ହୋଇପାରେ । ସେମାନଙ୍କ ଚିନ୍ତାକୁ ପୁଷ୍କଳ କରିବା ପାଇଁ ମୁଁ ଦୁଇ ଚାରୋଟି ସମ୍ଭାବନା ସଂପର୍କରେ କହିଲି । ନାୟିକାର ଗୋଟିଏ କାନର କାନଫୁଲ ଚିତ୍ରକର ଆଙ୍କିବା ପାଇଁ ଭୁଲି ଯାଇଥିଲା ବା ଉଦ୍ଦେଶ୍ୟମୂଳକ ଭାବରେ କାନରେ ଦେଇ ନଥିଲା । ସେହି ଜାଗାରେ କଳା ଇତିହାସର ସମସ୍ୟାଟିଏ ଦାନା ବାନ୍ଧି ରହିଥିଲା । କାନଫୁଲ ଯେ କଳା ଇତିହାସର ସମସ୍ୟା ହେଇପାରେ ତାହା ଅଧିକାଂଶ ପିଲାଙ୍କ ଚିନ୍ତା ଭିତରେ ସ୍ଥାନ ପାଇ ନଥିଲା । ମୁଁ କହିଲି, ଏଭଳିବି ହୋଇପାରେ ନାୟିକାଟିଏ ତା' ପ୍ରେମିକ ଦେଇଥିବା ପ୍ରେମର ସନ୍ତକ କାନଫୁଲଟିଏ ହଜେଇ ଦେଇଛି । ଭାବୁଛି ପ୍ରେମିକର କି ପ୍ରତିକ୍ରିୟା ହେଇପାରେ ! କାନଫୁଲ କ'ଣ ପଦ୍ମ ପୁଷ୍କରିଣୀକୁ ଗଡ଼ିଯାଇଛି, ମାଛଟିଏ କ'ଣ ତାକୁ ଗିଳି ଦେଇଛି ? ତା' ମନରେ ଏମିତି ଅନେକ ପ୍ରଶ୍ନ । କଳା ଇତିହାସ ହେଲା ଚିତ୍ରର ରୂପକୁ ଓ ବର୍ଣ୍ଣର ଭାବକୁ ଭାଷାରେ ପ୍ରକାଶ କରିବା । ଏହା ବର୍ଣ୍ଣନାତ୍ମକ ହେଲେ ବି ବର୍ଣ୍ଣନାରେ ରହସ୍ୟ ଓ ରସିକତା ଉଭୟ ରହିବ ।

କଲେଜରେ ଯେ କେବଳ ଏଭଳି ଛୋଟକାଟର ଶନିବାସରୀୟ ସେମିନାର ହେଉଥିଲା, ତାହା ନୁହେଁ, ବେଳେବେଳେ ରାଜ୍ୟସ୍ତରୀୟ ଓ ଜାତୀୟସ୍ତରୀୟ ସେମିନାରମାନଙ୍କରେ ମଧ୍ୟ ଛାତ୍ରଛାତ୍ରୀଙ୍କୁ ସଂପୃକ୍ତ କରାଯାଉଥିଲା ।

Digitized by srujanika@gmail.com

# ୫୧. ଅଧ୍ୟାପକଙ୍କ ଲଲାଟ ଓ ଲୋକସେବା ଆୟୋଗ

କଲେଜର ଚତୁର୍ଦ୍ଧାମୂର୍ତ୍ତି ଥିଲେ ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ଦେବରାଜ ସାହୁ ଓ ବଳଦେବ ମହାରଥୀ । ସମସ୍ତେ ଥିଲେ କର୍ମଠ ଓ ଦକ୍ଷ । ନିଜ ନିଜର ଶୈକ୍ଷିକ ଉତ୍କର୍ଷ ଓ ନିଷ୍ଠାପର ଅଧ୍ୟାପନା ଫଳରେ ସମସ୍ତେ ଛାତ୍ରଛାତ୍ରୀଙ୍କ ପ୍ରିୟଭାଜନ ହୋଇପାରିଥିଲେ । ରାଜଧାନୀର ଏକମାତ୍ର ଚିତ୍ରକଳା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ପ୍ରତିଷ୍ଠା ଲାଭ କରିବାର ନିଶା ସେମାନଙ୍କୁ ଘାରିଥିଲା । ସେମାନଙ୍କୁ ନେଇ ଚିତ୍ରକଳା ଶିକ୍ଷା କ୍ଷେତ୍ରରେ ମୁଁ ନବ ପ୍ରୟାସର ସ୍ୱପ୍ନ ଦେଖିଥିଲି । ସେମାନେ ସମସ୍ତେ ଥିଲେ ମୋର ଘନିଷ୍ଠ ବନ୍ଧୁ, ଖଲ୍ଲିକୋଟ କଳା ବିଦ୍ୟାଳୟର ଏକଦା ଛାତ୍ର । ବୟସର ତାରତମ୍ୟ ଭୁଲି ଆମେ ସମସ୍ତେ କଲେଜ ଗଢ଼ିବାରେ ଲାଗିପଡ଼ିଥିଲୁ । ମନେହେଉଥିଲା ସମସ୍ତଙ୍କ ଭାଗ୍ୟ ଓ ଭବିଷ୍ୟତ ଯେଭଳି ଗୋଟିଏ ଡୋରିରେ ବନ୍ଧା ହୋଇଛି । ମୁଁ ହିଁ ଥିଲି ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗର ଜଣେ ଦ୍ୱିତୀୟ ଶ୍ରେଣୀ କର୍ମଚାରୀ । ଲୋକସେବା ଆୟୋଗର ଚକ୍ରବ୍ୟୂହ ଭେଦି ମୋ ଭବିଷ୍ୟର ରଥ ବାହି ସଦର୍ପେ ଯୁଦ୍ଧ ଭୂମିରୁ ଫେରି ଆସିପାରିଥିଲି । ଅବଶ୍ୟ ସେଥିପାଇଁ ମୋତେ କମ୍ ଲହୁଲୁହାଣ ହେବାକୁ ପଡ଼ିନି । କଟକ ସହରର କାଠଯୋଡ଼ି କୂଳ ନାଲିକୋଠାର ନ୍ୟାୟ ଦ୍ୱାର ଆଗରେ ନତଜାନୁ ହେବାକୁ ପଡ଼ିଛି । ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର ଓ ବି.କେ.ରାୟ ମୋ ଯୋଗ୍ୟତା ଓ ଦକ୍ଷତାକୁ ନିକିତିରେ ଓଜନ କରି, କଷଟି ପଥରରେ ପରୀକ୍ଷା କରି କହିଛନ୍ତି- ଖାଣ୍ଟି ସୁନା ।

ସୀତା ଅଗ୍ନିରେ ପ୍ରବେଶ କରି ନିଜ ସତୀତ୍ୱ-ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାଭଳି ପ୍ରତ୍ୟେକ ପଦସ୍ଥ ସରକାରୀ କର୍ମଚାରୀ ଲୋକସେବା ଆୟୋଗ ଦ୍ୱାରା ହିଁ ଯୋଗ୍ୟ ବିବେଚିତ ହୋଇଥାନ୍ତି । ସରକାରଙ୍କ ବିଭିନ୍ନ ବିଭାଗରୁ ଧାର ଉଧାରରେ ଆସିଥିବା ଆମ ଅଧ୍ୟାପକଙ୍କ ମନରେ ଲୋକସେବା ଆୟୋଗ ପାରିହେବା ଚିନ୍ତା ସଦା ଘାରୁଥାଏ । ପର ଘରକୁ ନିଜଘର ଭାବି, ପର ପିଲାଛୁଆଙ୍କୁ ନିଜର କରି ଜଣେ କାମଚୁଣୀ ଯେତେ ଖଟଣୀ କରୁଥିଲେ ବି ସେ ଭଲଭାବେ ହୃଦୟଙ୍ଗମ କରିଥାଏ ତା'ର ଅସଲ ସନ୍ତାନ ସନ୍ତତି, ଘରଦ୍ୱାର ଅନ୍ୟଠେ, ତାହା ଯେତେ ହେୟ ଓ ଅକିଞ୍ଚନ ହେଉ ପଛେ । ଏଣୁ ଜଣେ ଅଧେ ଅଧ୍ୟାପକ ବିବେଚନା କରୁଥିଲେ ଲୋକସେବା ଆୟୋଗ ଡେମୋକ୍ଲେସ୍‌ଙ୍କ ଝୁଲନ୍ତା ଖଡ୍ଗ ଭଳି, ଯେ କୌଣସି ମୁହୂର୍ତ୍ତରେ ରଶି-ମୁକ୍ତ ହୋଇ ସିଂହାସନାରୂଢ ସମ୍ରାଟଙ୍କ ମୁର୍ଦ୍ଧନା ଭେଦିପାରେ । ଅଧ୍ୟାପକ

Digitized by srujanika@gmail.com

ବଳଦେବ ମହାରଥୀ ଏହି ତୁଳନୀୟ ଆଖ୍ୟାୟନଟିକୁ ବେଶ୍ ଅତିରଞ୍ଜିତ କରି ପରିବେଷଣ କରୁଥିଲେ । ହୁଏତ ଆଉ କିଏ ଜଣେ କହୁଥିଲେ ଚତୁର ଅଧ୍ୟକ୍ଷ ମହାଶୟ ଏଭଳି ଏକ ଅଭାବନୀୟ ପରିସ୍ଥିତିର ସୁଯୋଗ ନେଇ ଘଣା ଯୋଚ ବଳଦ ଭଳି ଅଧ୍ୟାପକମାନଙ୍କୁ ଖଟଣି କରାଉଛନ୍ତି । ଅଧ୍ୟକ୍ଷ ଭାବେ ମୋ ଦାୟିତ୍ୱ ଅତ୍ୟନ୍ତ ଗୁରୁତର ଥିଲା : ଅଧ୍ୟାପକଙ୍କ ମନରୁ ବିମର୍ଷ ଭାବ ହଟେଇବା ପାଇଁ ଆଶା ଓ ବିଶ୍ୱାସ ଜନ୍ମେଇବା ଏବଂ ସେମାନେ ଲୋକସେବା ଆୟୋଗ ରୂପକ ତପ୍ତ ବୈତରଣୀ କିଭଳି ପାର ହେଇପାରିବେ ତାର କେବଳ ଉପାୟ ଚିନ୍ତା କରିବା ନୁହେଁ, କାର୍ଯ୍ୟାନୁଷ୍ଠାନ କରିବା ।

ଜଣେ ଅସହାୟ ବ୍ୟକ୍ତିର ପରିବାର ସହସା ବୃଦ୍ଧି ପାଇ ବ୍ୟକ୍ତିଟିକୁ ବେଶି ବେଶି ହିନସ୍ତା ଭିତରେ ଆଉଟୁପାଉଟୁ କରେଇ ଦେଲାଭଳି କଲେଜରେ ଚତୁର୍ଦ୍ଧାମୂର୍ତ୍ତି ବଢ଼ି ବଢ଼ି ନଅ ତ ନୁହେଁ ନବଗ୍ରହରେ ପହଂଚିଲେ । ସମସ୍ତେ ଅଥୟ । ଚନ୍ଦ୍ରମଣି ବିଶ୍ୱାଳ ଓ ତାଙ୍କ ଧର୍ମପତ୍ନୀ ଶୈଳବାଳା ନାୟକ ଚଲାକ ଚତୁର କରି ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ଆମ କଲେଜକୁ ବଦଳି ହେଇ ଆସିଲେ । ତା' ଆଗରୁ ଆଡ୍‌ହକ୍‌ରେ ନିଯୁକ୍ତି ପାଇଥିବା ବ୍ୟୋମକେଶ ମହାନ୍ତି ଖଲ୍ଲିକୋଟ ଛାଡ଼ି ଭୁବନେଶ୍ୱର ମୁହାଁ ହୋଇସାରିଥିଲେ। ମୁଁ ବ୍ୟୋମକେଶ ସଂପର୍କରେ ବହୁ କଥା ଅକଥା ଶୁଣୁଥିଲି । କଲେଜର କିଛି ହିତୈଷୀ ବ୍ୟୋମକେଶଙ୍କୁ କଲେଜରେ ନ ପୂରେଇ ଦେବା ପାଇଁ ମୋତେ ସତର୍କ କରିଦେଇଥିଲେ । ମୁଁ ତେଣୁ ଚେଷ୍ଟା କରୁଥିଲି ବ୍ୟୋମକେଶ ଆମ କଲେଜରେ ପଶି ପାଣି ଗୋଳିଆ ନ କରନ୍ତୁ । ସଂସ୍କୃତି ବିଭାଗର ସଚିବ ବିବେକ ପଟ୍ଟନାୟକ ବ୍ୟୋମକେଶଙ୍କୁ ଆମ କଲେଜକୁ ଆଣିବାକୁ ମୋତେ ଅନେକଥର ଅନୁରୋଧ କରିଛନ୍ତି । ତାଗିଦା ବି ଦେଇଛନ୍ତି । ମୁଁ କଥା ଗଡ଼େଇ ନେଇଛି । ଥରେ ମୁଁ ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ପ୍ରଦର୍ଶନୀର ବ୍ୟବସ୍ଥା କରିବା ପାଇଁ ମସ୍କୋ ଗସ୍ତରେ ଯାଇଛି ବ୍ୟୋମକେଶଙ୍କ ମାମୁଁପୁଅ ଭାଇ ବରିଷ୍ଠ ସାମ୍ବାଦିକ ବସନ୍ତ ଦାସ ସଂସ୍କୃତି ସଚିବ ସମର ବଲ୍ଲଭ ମହାପାତ୍ରଙ୍କୁ କୁହାପୁଛା କରି ତାଙ୍କୁ କଲେଜରେ ଭର୍ତ୍ତି କରେଇଦେଲେ । ମନେହେଲା କେଉଁ ଏକ ଅଦୃଶ୍ୟ ଶକ୍ତି ପରିସ୍ଥିତିକୁ ଜଟିଳ କରାଉଛି । କିଭଳି ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ବୈତରଣୀ ପାର କରେଇବି ସେହି ଚିନ୍ତା ବେଶି ବେଶି ଘାରିଲା । ମୋତେ ବୋଧହେଲା ସେମାନଙ୍କୁ ନେଇ ମୋର ଯୋଜନା ହୁଏତ ଫସର ଫାଟିଯିବ । ମୋଟାମୋଟି ଏଭଳି ଏକ ଅଦ୍ଵାନିଆ ପରିସ୍ଥିତିରେ ଦୁଇଜଣ କନିଷ୍ଠ ଅଧ୍ୟାପକ (ଇନ୍‌ଷ୍ଟ୍ରକ୍ଟର) ଶୂନ୍ୟରୁ ଆକାଶ ଛତାରୁ ଓହ୍ଲେଇଲା ଭଳି ସିଧା କଲେଜ ହତା ଭିତରେ ଓହ୍ଲେଇ ପଡ଼ିଲେ । ମୁଁ ସେ ଦୁହିଁଙ୍କୁ ବଲବଲ କରି ଚାହିଁ ତଟସ୍ଥ ହେଲି । ଜଣେ ଗୋଟାଳିଆ ଗେଡ଼ା, ବିସ୍ଫାରିତ ଆଖି, ନାଁ ଜୟନ୍ତ ଦାସ । ଅନ୍ୟ ଜଣକ ଡେଙ୍ଗା, ଲହଲହକା, ନିଷ୍ପ୍ରଭ, ଉଦାସିଆ ମୁହଁ, ନାଁ ଗଜେନ୍ଦ୍ର ସାହୁ । ସେମାନଙ୍କ ନିଯୁକ୍ତିକୁ କେନ୍ଦ୍ର କରି ଏବଂ ଉପଶାସନ ସଚିବ ସୁଧାଂଶୁ

Digitized by srujanika@gmail.com

ମୋହନ ରାଉତରାୟଙ୍କୁ ଉପଲକ୍ଷ କରି ବହୁ ଅପବାଦ ଶୁଣିବାକୁ ମିଳିଲା । ସେମାନେ କିଛିଦିନ କାମକଲାପରେ ମନେହେଲା ସେମାନଙ୍କୁ ନେଇ ଏତେଟା ତ୍ରସ୍ତ ହେବାର ନୁହେଁ । ଜୟନ୍ତ ବ୍ରୋଞ୍ଜମୂର୍ତ୍ତି ଗଢ଼ିବାରେ ଏବଂ ଗଜେନ୍ଦ୍ର ନାଚ, ଗୀତ ଓ ସଂଗଠନ ମାମଲାରେ ନିଜର ପାରଦର୍ଶିତା ଦେଖାଇବାରେ ଲାଗିଲେ ।

ଲୋକସେବା ଆୟୋଗକୁ ନେଇ ନୂଆ ନୂଆ ସମସ୍ୟା ଓ ପରିସ୍ଥିତିର ଉଦ୍ଭବ ହେଲା । ଏବେ କଲେଜରେ ନିଯୁକ୍ତି ପାଇଥିବା ସାତଜଣ ଅଧ୍ୟାପକ ଅଧ୍ୟାପିକା ନିଜ ନିଜ ଚାକିରିର ସ୍ଥାୟିତ୍ୱ ପାଇଁ ଅଂଟା ଭିଡ଼ିଲେ । ଏହି ଦଉଡ଼ ଭିତରେ ଚନ୍ଦ୍ରମଣି ଏବଂ ଗଜେନ୍ଦ୍ର ନଥିଲେ । ଚନ୍ଦ୍ରମଣି ଆଗରୁ ଲୋକସେବା ଆୟୋଗ ଦ୍ୱାରା ସ୍ୱୀକୃତି ପାଇସାରିଥିଲେ ଏବଂ ଗଜେନ୍ଦ୍ର ନାଚ, ଗୀତ ଓ ସଂଗଠନକୁ ନେଇ କନିଷ୍ଠ ଅଧ୍ୟାପକ ଭାବେ ନିଜର ସୁନେଲି ଭବିଷ୍ୟତର ସ୍ୱପ୍ନ ଦେଖିପାରିଥିଲେ । ସେ ଶେଷରେ ନିଜର ପ୍ରଖର ବ୍ୟାବସାୟିକ ବୁଦ୍ଧି ଓ ସଚେତନତା ବଳରେ ପ୍ରମାଣ କରିଦେଇ ପାରିଲେ ଯେ ଲୋକସେବା ଆୟୋଗ ଦ୍ୱିତୀୟ ଶ୍ରେଣୀ ଅଧ୍ୟାପକ ଚାକିରି ଅକ୍ଳେଶରେ ଧନାଗମର କୁଆର ଆଗରେ ହେୟ ଓ ତୁଚ୍ଛ ।

କଲେଜରେ ଅଧ୍ୟାପକ ଚାକିରି ସଂଖ୍ୟା ଛଅ । ତୈଳ ଚିତ୍ର, ଭାରତୀୟ କଳା, ଭାସ୍କର୍ଯ୍ୟ, କ୍ରାଫ୍‌ଟ, ବ୍ୟବହାରିକ କଳା ଓ ଗ୍ରାଫିକ୍ ବିଭାଗମାନଙ୍କରେ ଗୋଟାଏ ଲେଖା । ଯିମିତି ହେଲେ ଜଣେ ବାଦ୍ ପଡ଼ିବ, ଆଉ ଯିଏ ବାଦ୍ ପଡ଼ିବ ସିଏ ଜୀବନ ସାରା ମୋର ସପ୍ତପୁରୁଷ ଉଦ୍ଧାର କରିବ, ତା'ର ଅସାମର୍ଥ୍ୟ ପାଉଁଶ ତଳ ନିଆଁ ଭଳି ସମୟ ସାଙ୍ଗରେ କୁହୁଳି ଉଠିବ, ଏବେ ସିଏ ମୋର ଓ କଲେଜର କ୍ଷତି କରିବା ପାଇଁ ପଛେଇବ ନାହିଁ । ଯଦି ସିଏ ସୀତା ବା ଦ୍ରୌପଦୀ ହେଇଥାଏ ତାହେଲେ ଅକ୍ଳେଶରେ ରାମାୟଣ କିମ୍ବା ମହାଭାରତ ରଚିହେବ । ଲୋକସେବା ଆୟୋଗର ସାକ୍ଷାତକାର କାହାର ଲଲାଟ କେଜାଣି - ଅଧ୍ୟକ୍ଷଙ୍କର ନା ଅଧ୍ୟାପକମାନଙ୍କର ନା କଲେଜର ।

ସାକ୍ଷାତକାରକୁ ଯଦି ସମର ଜ୍ଞାନ କରାଯାଏ ତା'ହେଲେ ବିପକ୍ଷ ଶତ୍ରୁସୈନ୍ୟ ଶିବିର ହେଲା ଖଲ୍ଲିକୋଟ ଚାରୁକଳା ମହାବିଦ୍ୟାଳୟ । ଖଲ୍ଲିକୋଟର କେତେଜଣ ଅଧ୍ୟାପକ ଆମ କଲେଜର ଶିରୀ ଦେଖିପାରୁ ନଥିଲେ । ସେମାନେ ଚାହୁଁଥିଲେ ମୁଁ ନିର୍ବାଚିତ କରିଥିବା ଚତୁର୍ଦ୍ଧା ମୂର୍ତ୍ତି କଲେଜ ଛାଡ଼ି ନିଜ ନିଜ ଆସ୍ଥାନକୁ ଫେରିଯାଆନ୍ତୁ ।ସେମାନେ କଟକ ପି.ଏସ୍.ସି. (ପବ୍ଲିକ୍ ସରଭିସ୍ କମିଶନ) ଅଫିସରେ ପହଞ୍ଚ କିରାଣି ସ୍ତରରେ ଧରାଧରି କରି କାଗଜ ପତ୍ରରେ ବିଭ୍ରାଟ ସୃଷ୍ଟି କରୁଥିଲେ । ଏଣୁ ପ୍ରଥମ ଦଫାରେ ଯେତେବେଳେ ସାକ୍ଷାତକାର ହେଲା ଚତୁର୍ଦ୍ଧାମୂର୍ତ୍ତିଙ୍କ ମଧ୍ୟରୁ ଥୋକେ ସାକ୍ଷାତକାର ପାଇଁ ଡକରା ବି ପାଇଲେ ନାହିଁ । ସେମାନଙ୍କ ମଧ୍ୟରେ ଥିଲେ ଦେବରାଜ ସାହୁ, ଡି.ଏନ୍.ରାଓ ଓ ବଳଦେବ ମହାରଥା । ଆମର ଭାଳେଣି ପଡ଼ିଲା । ପରିସ୍ଥିତି ସଙ୍ଗୀନ, ଏବେ କ'ଣ କରାଯାଇପାରେ ?

Digitized by srujanika@gmail.com

ପି.ଏସ୍.ସି. ଅଫିସରୁ ଖବର ନେବାରୁ ଜଣାପଡ଼ିଲା ଶାନ୍ତିନିକେତନ କଳାଭବନରୁ ଅଧ୍ୟାପକ ଅଜିତ ଚକ୍ରବର୍ତ୍ତୀ ଭାସ୍କର୍ଯ୍ୟ ବିଭାଗରେ, ଅଧ୍ୟାପକ ସନତ କର ଗ୍ରାଫିକ୍ ବିଭାଗରେ ଓ ଅସିତ ମୁଖାର୍ଜୀ ବ୍ୟବହାରିକ କଳା ବିଭାଗର ଏକସ୍‌ପର୍ଟ ହେଇ ଆସୁଛନ୍ତି । ସେମାନଙ୍କ ସହିତ ମୋର ଘନିଷ୍ଠ ସଂପର୍କ ଥାଏ । ମୁଁ ଡି.ଏନ୍.ଏ. ରାଓଙ୍କୁ ଧରି କଲିକତାରୁ ପୁରୀ ଏକସ୍‌ପ୍ରେସ୍ କଟକ ଷ୍ଟେସନରେ ପହଂଚିବାର ବେଳକୁ ଏକ୍ସପାର୍ଟ ଦୁହିଁଙ୍କୁ ନିଘାକରି ରହିଲି ।ଅସିତ ମୁଖାର୍ଜୀଙ୍କୁ ବ୍ୟକ୍ତିଗତ ଭାବେ ଦେଖା କରିବା ପାଇଁ ବଳଦେବଙ୍କୁ ଅସିତ ବାବୁଙ୍କ ଶିଳ୍ପରୂପମ୍ କୁ ପଠେଇଥାଏ । ବଳଦେବ ଅସିତବାବୁଙ୍କ ଶୈଳୀରେ ପ୍ରଚ୍ଛଦ ଚିତ୍ର ଆଙ୍କୁଥିବାରୁ ଓ ତାଙ୍କ ଛଟାରେ ସୁନ୍ଦର ଅକ୍ଷର ଲେଖିପାରୁଥିବାରୁ ଅସିତ ବାବୁ ବଳଦେବଙ୍କୁ ପୁତ୍ରତୁଲ୍ୟ ସ୍ନେହ କରୁଥିଲେ । ଏଣୁ ବଳଦେବଙ୍କ ଅସୁବିଧା ସମୟରେ ସେ ନିଶ୍ଚୟ ସାହାଯ୍ୟ କରିବେ, ଏହି ବିଶ୍ୱାସ ମୋର ଥିଲା । ବଳଦେବ ପି.ଏସ୍.ସି.ର ସାକ୍ଷାତକାର ସଂକ୍ରାନ୍ତୀୟ ସବୁ ବିସଙ୍ଗତି କହି ସାରିଲା ପରେ କହିବେ, ''କାଲିକି ସାକ୍ଷାତକାର ଅଛି, ସାର୍ ! ଆପଣ ପି.ଏସ୍.ସି. ଅଫିସ୍ ଯିବେ, ସାକ୍ଷାତକାର ନେବେ ଅଥଚ କାହାକୁ ହେଲେ ମନୋନୀତ କରିବେ ନାହିଁ । ମୁଁ ଉଭୟ ଅଜିତ ଚକ୍ରବର୍ତ୍ତୀ ଓ ସନତ କରଙ୍କୁ ଏକାଭଳି କଥା କହିଥାଏ । ଆମ ଯୋଜନା ମୁତାବକ ସବୁ ଘଟଣା ଘଟିଲା । ପି.ଏସ୍.ସି.ର ସାକ୍ଷାତକାର ବସ୍ତୁତଃ ଅସିଦ୍ଧ ଘୋଷିତ ହେଲା ।

ତଥାପି ଡେମୋକ୍ଲେସ୍ ଖଡ୍ଗ ପତନରୁ ମୁକ୍ତି କାହିଁ ?

ଏଥର ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହେବା ପାଇଁ ହାତ ହତିଆର ଗୁଡ଼ିକ ପଜେଇ ଧାରୁଆ କରିବାକୁ ହେଲା । ଆମେ ପି.ଏସ୍.ସି. ଅଫିସକୁ ଗୁପ୍ତଚର ପଠେଇ ଅବ୍ୟବସ୍ଥା ସଜାଡ଼ିବାରେ ଲାଗିଲୁ । ଅଫିସରେ ଦରଖାସ୍ତ ଗୁଡ଼ିକର ପ୍ରାଥମିକ ଯାଂଚ ପାଇଁ ଆଗଥର ଯୋଗ ଦେଇଥିବା ଅଧକ୍ଷ ବିପ୍ରଚରଣ ମହାନ୍ତିଙ୍କ ପ୍ରତିନିଧି ଅଧ୍ୟାପକ ବିନୋଦ ରାଉତରାୟଙ୍କୁ ହଟେଇ ଆମ ମନମୁତାବକ ବ୍ୟକ୍ତିଙ୍କୁ ବିନିଯୋଗ କରିପାରିଲୁ । ଅନ୍ୟ ସମସ୍ତଙ୍କ କ୍ଷେତ୍ରରେ ଆମେ ପାରିଲୁ, ଅଥଚ ଦେବରାଜ ସାହୁଙ୍କ ପାଇଁ ଆମେ କିଛି କରିପାରିଲୁ ନାହିଁ । କ'ଣ ରାଜନୀତି ହେଲା କେଜାଣି ଦେବରାଜ ସାହୁ ପି.ଏସ୍.ସି.ରୁ ଡକରା ପାଇ ନପାରି ମୋ ଉପରେ ଅଭିମାନ କରି କଲେଜ ଛାଡ଼ିଲେ । ଏବେ ବି ତାଙ୍କ ସଙ୍ଗେ ଦେଖାହେଲେ ସେ ହତାସିଆ ବାକ୍ୟଟିଏ କହନ୍ତି, ''ହଁ ଆମେ କ'ଣ ଆର୍ଟିଷ୍ଟ୍ କି ? ଆମେ ତ କ୍ରାଫ୍ଟ୍‌ସ୍‌ମ୍ୟାନ୍''। ବନ୍ଧୁତାର ଉଜ୍ଜ୍ୱଳ ନିଦର୍ଶନର ରକ୍ଷା ପାଇଁ ନିଜ ଛେପ ନିଜକୁ ଢୋକିବାକୁ ପଡେ ।

ସରକାରୀ ସ୍ତରରୁ ଜଣାପଡ଼ିଲା ଏଥରକ ଆମ କଲେଜ ଓ ଖଲ୍ଲିକୋଟ କଲେଜ ଉଭୟରେ ଆବଶ୍ୟକ ହେଉଥିବା ପଦବୀଗୁଡ଼ିକ ପାଇଁ ଏକାସାଂଗେ ସାକ୍ଷାତକାର ନିଆଯିବ । ଏବେ ଦାବୀଦାରଙ୍କ ସଂଖ୍ୟା ଆହୁରି ବଢ଼ିଲା । ଭୁବନେଶ୍ୱରିଆଙ୍କ ସାଙ୍ଗରେ ମିଶିଲେ

Digitized by srujanika@gmail.com

ଖଲ୍ଲିକୋଟର ଦୀପ୍ତି ପ୍ରକାଶ ମହାନ୍ତି, ପଞ୍ଚାନନ ସୁର, ଲକ୍ଷ୍ମୀକାନ୍ତ ମହାପାତ୍ର ଓ ରମେଶ ବେହେରା । ଆମ ଘରର କୁକୁଡ଼ା ଛୁଆଗୁଡ଼ିକୁ ଚିଲ ଭୟରୁ ରକ୍ଷା କରିବାର ଆବଶ୍ୟକତା ଆହୁରି ବଢ଼ିଗଲା । ମୁଁ ସଂସ୍କୃତି ବିଭାଗର ସଚିବ ରାଜକିଶୋର ଭୁଜବଳଙ୍କ ନିକଟରେ ପହଞ୍ଚି ପି.ଏସ୍.ସି. ସାକ୍ଷାତକାର ସଂପର୍କରେ ତାଙ୍କ ମନ ବିଢ଼ିବା ପାଇଁ ଚେଷ୍ଟାକଲି । ସରକାରଙ୍କ ପକ୍ଷରୁ ସାକ୍ଷାତକାରରେ ସଂସ୍କୃତି ସଚିବ ଉପସ୍ଥିତ ହେବା ବିଧି ଅଛି । ତା' ସାଙ୍ଗକୁ ମହାବିଦ୍ୟାଳୟର ଅଧ୍ୟକ୍ଷ ମଧ୍ୟ ଯୋଗ ଦେବେ । ମୁଁ ଭୁଜବଳ ମହାଶୟଙ୍କୁ ଅନୁରୋଧ ଜଣେଇଲି ଯେ ଏ ଉଭୟ କାର୍ଯ୍ୟ ସଂପାଦନ ପାଇଁ ସେ ମୋତେ ହିଁ ପି.ଏସ୍.ସି.କୁ ପଠାନ୍ତୁ । କାରଣ ସଂସ୍କୃତି ସଚିବ ଇଂରାଜୀରେ ଯେଉଁ ସବୁ ପ୍ରଶ୍ନ ପ୍ରାର୍ଥୀ ଓ ପ୍ରାର୍ଥନୀମାନଙ୍କୁ ପଚାରିବେ ସେମାନଙ୍କ ମଗଜରେ ସେଗୁଡ଼ିକ ଖାପିବା କଷ୍ଟକର ହେଇପଡ଼ିବ ପୁଣି ସଚିବଙ୍କୁ ସାକ୍ଷାତକାର ଟେବୁଲରେ ଭେଟିଲେ ସେମାନେ କାଳେ କକ୍ରଛନା ହେଇଯିବେ । ସଚିବଙ୍କ ହୃଦୟରେ ଅସ୍ଥାୟୀ ଅଧ୍ୟାପକଙ୍କ ପ୍ରତି କରୁଣାର ବାରି ବହିଲା । ସ୍ନେହମୋ ପ୍ରସ୍ତାବ ଗ୍ରହଣ କରି ପି.ଏସ୍.ସି. କୁ ଚିଠି ଲେଖିଦେଲେ । ମୁଁ ଏବେ ଅଧ୍ୟକ୍ଷ ଭାବରେ ଓ ସରକାରଙ୍କ ପ୍ରତିନିଧି ଭାବରେ ଉପସ୍ଥିତ ରହିବି । ଏଣେ ସବ୍‌ଜେକ୍ଟ ଏକସ୍‌ପାର୍ଟ୍ ଭାବେ ପ୍ରାର୍ଥୀ ଓ ପ୍ରାର୍ଥନୀଙ୍କ ପରୀକ୍ଷାକୁ ପ୍ରଭାବିତ ମଧ୍ୟ କରିପାରିବି । ମୋ ପାଖରେ ହେଇଗଲା ଦଶ ଦଶ, କୋଡ଼ିଏ ନମ୍ବର ।

ପ୍ରାର୍ଥୀଙ୍କ ମଧ୍ୟରେ ଜଣେ ଅତ୍ୟନ୍ତ ହୁସିଆର ଯୁବକ ଅନ୍ୟମାନଙ୍କ ପ୍ରୟାସକୁ ପଛରେ ପକେଇ ମୋର ନିକଟତର ହେବାକୁ ଲାଗିଲେ । ମୁଁ ଖଲ୍ଲିକୋଟରେ ଅଧ୍ୟୟନ କଲାବେଳଠୁ ତାଙ୍କ ବାପାଙ୍କ ସହିତ ସଂପର୍କ ଗଢ଼ି ଉଠିଥିଲା । ସେ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ରାଜଉଆସର ମରାମତି ଦାୟିତ୍ୱରେ ଥିଲେ । କେବଳ ଚିହ୍ନାପରତ ନୁହେଁ, ପାଢ଼ୀ-ପାଠୀ ଆମେ ଦୁହେଁ ପାରିବାରିକ ସଂପର୍କରେ ଛନ୍ଦି ହୋଇଗଲୁ । ପାଢ଼ୀ ତାଙ୍କ ପୁତ୍ରରତ୍ନର ଦାୟିତ୍ୱ ମୋ ହାତରେ ସମର୍ପି ଦେଲେ । ଯୁବକ ପାଢ଼ୀଙ୍କୁ କେନ୍ଦ୍ର କରି ପି.ଏସ୍.ସିର ଜନୈକ ସଭ୍ୟ ଆମର ଆତଙ୍କିତ ବଳୟ ମଧ୍ୟରେ ଦେଖାଦେଲେ । ମୂଳ ମାଧ୍ୟମ ଥିଲେ ସଂସ୍କୃତି ବିଭାଗର ଆମ ସହକର୍ମୀ ପଣ୍ଡିତ ଦୁଃଖିଶ୍ୟାମ ପଟ୍ଟନାୟକ । ଖଲ୍ଲିକୋଟର ଲୋକ । ସେ ଉଭବୁ ଥିବା ଏ ସବୁ ସଂପର୍କକୁ ଆହୁରି ଅର୍ଥପୂର୍ଣ୍ଣ କରିଦେଲେ ଏବଂ ମହାଭାରତ ଯୁଦ୍ଧରେ କୃଷ୍ଣଙ୍କ ଭଳି ଏକ ନିର୍ଲିପ୍ତ ଅଥଚ ସମ୍ବେଦନଶୀଳ ଭୂମିକା ନିର୍ବାହ କଲେ । ପରେ ପି.ଏସ୍.ସି.ର ଜନୈକ ସଭ୍ୟ ପଣ୍ଡିତ ମହାଶୟଙ୍କ ସରକାରୀ ଘରେ ପହଞ୍ଚି ମୋତେ ଡକାଇଲେ ଏବଂ ସେଠି ପାଣ୍ଡବପକ୍ଷ ଯୁଦ୍ଧରେ କିଭଳି ବିଜୟୀ ହେବେ ସେଥିନେଇ ମନ୍ତ୍ରଣା ଚାଲିଲା । ଆଲୋଚନା ବେଳକୁ ବେଳ ଅତ୍ୟନ୍ତ ଗହୀରିଆ ଓ ଛନ୍ଦୋବଦ୍ଧ ହେଇ ପଡ଼ିଲା । ଜାଲରେ ଛୋଟବଡ଼ ମାଛ ଆପେ ଆପେ ଧରାପଡ଼ିଲା ପରି ନିହାତି ବ୍ୟକ୍ତିସ୍ୱାର୍ଥ, ଦେଣନେଣ ପରିପ୍ରେକ୍ଷୀ ଏଭଳିକି ମୂଳଚାଲ ଭଳି ଜଂଜାଳଗ୍ରସ୍ତ ଉପଳ ଖଣ୍ଡମାନ ଆସି

Digitized by srujanika@gmail.com

ଧରାଦେଲେ । ଉଦ୍‌ବେଳିତ ସମୁଦ୍ର, ଉଦ୍‌ବେଗର ମୁହୂର୍ତ୍ତ - ସେଥିରେ ଭଲମନ୍ଦ, ନୀତି ଅନୀତିର ପ୍ରଶ୍ନ ଆଉ ରହିଲା ନାହିଁ । ପଣ୍ଡିତ ମହାଶୟ ସବୁ ପ୍ରସଙ୍ଗର ଉଦ୍‌ଯୋଗ କରି ସମୟ କ୍ରମେ ଏ ସବୁ ଗାନ୍ଧିଗା ମଧ୍ୟରୁ ନିଜକୁ ଅଲଗା ରଖିଲେ । ଖଲ୍ଲିକୋଟର ଯୁବପ୍ରତିଭା ଆଦାୟ-ଅନାଦାୟର ଦାୟିତ୍ୱରେ ରହିଲେ ।

ପରେ ପରେ ଥରେ ଦୁଇଥର ସଂପୃକ୍ତ ସଭ୍ୟଙ୍କ ସହିତ ମୋର ଦେଖାସାକ୍ଷାତ ହୋଇଛି । ବୈତରଣୀ ପାର ହେବାକୁ ଥିବା ଅସ୍ଥାୟୀ ଅଧ୍ୟାପକଙ୍କ ସଂପର୍କରେ ମୁଁ ତାଙ୍କୁ ସଚେତନ କରାଇଛି । ସାକ୍ଷାତକାର ସମୟରେ ସେ କ'ଣ କ'ଣ ପ୍ରଶ୍ନ ପଚାରିବେ ତାର ଏକ ନମୁନା ସଭ୍ୟ ମହାଶୟଙ୍କ ହସ୍ତଗତ କରାଇଛି ଇତ୍ୟାଦି ଇତ୍ୟାଦି । ମୁଦ ଆଉ ଅଧିକା ଫେଡ଼ିବା ଉଚିତ ହେବନି ।

ଏପଟେ ଉଦ୍‌ବେଗରେ ଦିନ କାଟୁଥିବା ମୋ ଅଧ୍ୟାପକ ବନ୍ଧୁମାନେ ଉଦ୍‌ଭବିଥିବା ସଂପର୍କ ଓ ସମ୍ଭାବ୍ୟ ପ୍ରୋତ୍ସାହନ ନେଇ ଅବଗତ ହେଇଛନ୍ତି । ସେମାନଙ୍କ ମନ୍‌ରେ ଆଶାର ସଂଚାର ହେଇଛି । ଦୂର ଦିଗ୍‌ବଳୟରେ ନିଶାର ଅବସାନ ହେଇ ପ୍ରଭାତ ହେବାର ସୂଚନା ଦେଖାଦେଇଛି । ତା' ସହିତ ସେମାନେ ନିଜ ନିଜ ଦାୟିତ୍ୱ ଓ ସାମୂହିକ ଦାୟବୋଧ ସଂପର୍କରେ ମଧ୍ୟ ଅବହିତ ହୋଇଛନ୍ତି । ସେମାନଙ୍କ ହୃଦ୍‌ବୋଧ ହୋଇଛି ଡୋମୋକ୍ଲେସ୍‌ଙ୍କ ଖଡ୍ଗ ପ୍ରହାରରୁ ନିସ୍ତାର ପାଇବା ପାଇଁ ଏଭଳି ତ୍ୟାଗ ସାମାନ୍ୟ ମାତ୍ର ।

ଏ ସବୁ ଆଲୋଚନା ଓ ଯୋଗାଡ଼ ଯନ୍ତ୍ର ଚାଲିଥିବାବେଳେ ସମ୍ଭାବ୍ୟ ସବ୍‌ଜେକ୍ଟ ଏକସ୍‌ପାର୍ଟ୍‌ମାନଙ୍କର ଏକ ତାଲିକା ଦେବା ପାଇଁ ପି.ଏସ୍.ସି.ରୁ ଚିଠି ଆସି ମୋ ପାଖରେ ପହଂଚିଲା । ଚିତ୍ର ବିଭାଗର ଏକସ୍‌ପାର୍ଟ୍ ନେଇ ମୋ ମନରେ ସାମାନ୍ୟ ଅବ୍ୟୟ ଥିଲା । ମୁଁ ଶିବ ପାଣିଗ୍ରାହୀଙ୍କ ସହିତ ପରାମର୍ଶ କଲି । ସେ ମୁରଲୀଧର ଟାଲିଙ୍କ ନାଁ ତାଲିକାରେ ଅନ୍ତର୍ଭୁକ୍ତ କରିବା ପାଇଁ ମୋତେ ପରାମର୍ଶ ଦେଲେ । ମୁଁ ପାଣିଗ୍ରାହୀଙ୍କୁ ସୂଚେଇଥିଲି ଯେ ବ୍ୟୋମକେଶ ଟାଲି ମହାଶୟଙ୍କ ଘରରୁ ବରାବର ଦଉଡ଼ ଧାପଡ଼ କରୁଛି । ଏଭଳି ପରିସ୍ଥିତିରେ ଡକ୍ଟର ଟାଲି ଏକସ୍‌ପାର୍ଟ ରହିବା ଠିକ୍ ହେବତ ? ପାଣିଗ୍ରାହୀ କହିଲେ ଡକ୍ଟର ଟାଲିଙ୍କୁ ସେ ପିତୃତୁଲ୍ୟ ଜ୍ଞାନ କରନ୍ତି । ଏକଥା ନିର୍ବିବାଦରେ କହିହେବ ଡକ୍ଟର ଟାଲି ଓଡ଼ିଶା କଳା ଜଗତର ଭୀଷ୍ମ ପିତାମହ । ପାଶ୍ଚାତ୍ୟ ଶୈଳୀର ତୈଳଚିତ୍ର ଓ ପରିଚ୍ଛନ୍ନ ଆସ୍ତରଣ ଦେଇ ଜଳରଙ୍ଗର ଚିତ୍ର ପ୍ରସ୍ତୁତ କରିବାରେ ସେ ସିଦ୍ଧହସ୍ତ । ଏଣୁ ଏହି ସୂତ୍ରରେ ସମସ୍ତ ଅଧ୍ୟାପକ ଓ ଅଧକ୍ଷ ମଧ୍ୟ ତାଙ୍କ ପୁତ୍ରବତ୍ ହେବେ । ବ୍ୟୋମକେଶ ଯେ ନିଶ୍ଚିତ ଭାବେ ପୁତ୍ର ଭୂମିକାରେ ଅବତୀର୍ଣ୍ଣ ଅଛନ୍ତି ସେଥି ନେଇ ସନ୍ଦେହ ଉପୁଜିବ ବା କୁଆଡୁ । ଲୋକସେବା ଆୟୋଗର ସାକ୍ଷାତକାର ଏବେ କଲେଜର କବାଟ ମୁହଁରେ ଆସି ଉପସ୍ଥିତ ହେଲା । ସମସ୍ତ ଯୋଦ୍ଧା ନିଜ ନିଜର ହାତ ହତିଆରରେ ସଜେଇ ହେଲେ । ବିରାଡ଼ି ଆଉ ମୂଷାଦଳ

Digitized by srujanika@gmail.com

ଏକାସାଂଗେ ପି.ଏସ୍.ସି. ଅଫିସରେ ପହଞ୍ଚିଲେ । ସାକ୍ଷାତ୍କାର ପରୀକ୍ଷାର ସର୍ବମୋଟ ନମ୍ବର ହେଲା ଶହେ । ଚାଳିଶ ନମ୍ବର ''କ୍ୟାରିଅର ମାର୍କିଙ୍ଗ୍'' । ଆଉ ଷାଠିଏ ନମ୍ବରକୁ ପାଂଚଜଣ ଭାଗକରି ଦେବେ । ପି.ଏସ୍.ସି.ର ଅଧକ୍ଷ, ଦୁଇଜଣ ସଭ୍ୟ, ସବ୍‌ଜେକ୍ଟ ଏକସ୍‌ପାର୍ଟ୍ ଏବଂ କଲେଜର ଅଧକ୍ଷ - ପଞ୍ଚଦେବତାଙ୍କ ହାତରେ ଷାଠିଏ ନମ୍ବର । ଆମ୍ଭମାନଙ୍କ ତ୍ରାଣକର୍ତ୍ତା ପି.ଏସ୍.ସିର ଶୁଭେଚ୍ଛୁ ସଭ୍ୟ ଓ ମୋର ନମ୍ବର ମିଶିଲେ ତିରିଶି । ଲୀଳାବତୀ ସୂତ୍ର ଅପେକ୍ଷା ଏ ଗଣିତକ ଅତ୍ୟନ୍ତ ଗହନ । ଆମେ ଦୁହେଁ ଯାହାକୁ ଚାହିଁବୁ ତାକୁ ଯୁଦ୍ଧରେ ଜିତେଇ ଦେବୁ । ଏକସ୍‌ପାର୍ଟ ମୋତେ ବିରୋଧ କରିବେନି, ସେମାନଙ୍କ ହୃଦ୍‌ବୋଧ ହେଇଛି ଯେ ଦିନନାଥ ନୂଆ କଲେଜଟିଏ ଗଢୁଛି । ଏଣୁ ତାକୁ ସମସ୍ତ ପ୍ରକାର ସାହାଯ୍ୟ ଓ ପ୍ରୋତ୍ସାହନ ଯୋଗାଇଦେବା ଦରକାର ।

ବୋଧହୁଏ ପ୍ରଥମକରି ପହଂଚିଲେ ପ୍ରାର୍ଥୀ ବଳଦେବ ମହାରଥା । ଜଣେଅଧେ ଏଣୁ ତେଣୁ ପ୍ରଶ୍ନପଚାରିଲା ପରେ ଆମ ଶୁଭେଚ୍ଛୁ ସଭ୍ୟ ବଡ଼ ମାର୍ମିକ ଦୁଇଟି ପ୍ରଶ୍ନ ପଚାରିଲେ ।

ପ୍ରଶ୍ନ ୧. ଶୁଭେଚ୍ଛୁ ସଭ୍ୟ : ଆପଣ ତୈଳଚିତ୍ର କହିଲେ ବା ପାରଂପରିକ ଚିତ୍ର କହିଲେ କ'ଣ ବୁଝନ୍ତି ? ପ୍ରଶ୍ନ ଭିତରେ ହିଁ ବିସଙ୍ଗତି । ପ୍ରଶ୍ନର ପଥମ ଭାଗ ମିଡିଅମ୍‌କୁ ନେଇ ପୁଷ୍ଟ ହେଲାବେଳକୁ ପାରଂପରିକ ଚିତ୍ର କେବଳ ମିଡିଅମ୍ ନୁହେଁ, ତା' ସହିତ କଥନିକା ମଧ୍ୟ ପରିସର ଭୁକ୍ତ । ଅବଶ୍ୟ ସଭ୍ୟଙ୍କୁ ମୁଁ ଯେଉଁ ଟିପଣୀ ଦେଇଥିଲି ସିଏ ତାକୁ ନିଜ ମୁତାବକ ଢଙ୍ଗରେ ସଜାଡ଼ି ଦେଇଛନ୍ତି ।

ଉତ୍ତର– ବଳଦେବ : ଆଲଟାମିରାର ପ୍ରାଗୈତିହାସିକ ଗୁହାଚିତ୍ର ଠାରୁ ଆରମ୍ଭ କରି ରେମବ୍ରାଁ, ପିକାଶୋ, ଜାମିନୀ ରାୟ ତଥା ଏମ୍.ଏଫ୍, ହୁସେନ୍‌ଙ୍କ ଚିତ୍ରକଳାକୁ ଆମେ ପରଂପରା ଭିତରେ ଅନ୍ତର୍ଭୁକ୍ତ କରିପାରିବା । ଉତ୍ତରଟି ସାପ ମରିବନି, ବାଡ଼ି ଭାଂଗିବନି ନ୍ୟାୟରେ ଠିକ୍ । ଯଦିଓ ଏ ସବୁଗୁଡ଼ିକ ତୈଳଚିତ୍ର ନୁହେଁ, ତଥାପି ପିକାଶୋ ସେତେବେଳକୁ ପାଶ୍ଚାତ୍ୟ ଚିତ୍ର ପରଂପରାରେ ଏବଂ ହୁସେନ୍ ଭାରତୀୟ ଚିତ୍ର ପରଂପରାରେ ଗୃହୀତ ହୋଇସାରିଥିଲେ । ଆମ ଶୁଭେଚ୍ଛୁ ସଭ୍ୟ ବଳଦେବଙ୍କ ଉତ୍ତର ଉପରେ ମୋର ମତାମତ ଚାହିଁଲେ । ମୁଁ ଆବଶ୍ୟକତାରୁ ଅଧିକ କଥା କହି ସଭ୍ୟମାନଙ୍କୁ ଉତ୍ତରର ଯଥାର୍ଥତା ସଂପର୍କରେ ପ୍ରତ୍ୟୟ ଆଣିଦେଇଥିଲି ।

ପ୍ରଶ୍ନ ୨ ସଭ୍ୟ : ମୁଁ ଦେଖୁଛି, ଚିତ୍ର ସଂପର୍କରେ ଆପଣଙ୍କ ଉତ୍ତମ ଧାରଣା ଅଛି । ଆପଣ କହିପାରିବେ କି ଜଗନ୍ନାଥ ମନ୍ଦିରର କେଉଁ ଦ୍ୱାରରେ, ଠିକ୍ କେଉଁ ଜାଗାରେ ସ୍ୱସ୍ତିକ ଚିହ୍ନ ଅଛି । ଏଭଳି ପ୍ରଶ୍ନ ହିଁ ଅମୂଳକ । ପ୍ରଶ୍ନକର୍ତ୍ତା କେଉଁ ଜଗନ୍ନାଥ ମନ୍ଦିର ତାର ସୂଚନା ଦେଇ ନାହାନ୍ତି । ସ୍ୱସ୍ତିକ ଚିହ୍ନ ଚିତ୍ର, ତ୍ରିମାତ୍ରିକ ଭାସ୍କର୍ଯ୍ୟ ନା ସ୍ଥିତୋଚ୍ଚ ଭାସ୍କର୍ଯ୍ୟ ସେ କଥା ମଧ୍ୟ କହିନାହାନ୍ତି । ଏଣୁ ଉତ୍ତରରେ ଯାହା କହିଲେ ବି ଚଳିବ ।

Digitized by srujanika@gmail.com

ଉତର-ବଳଦେବ : ଜଗନ୍ନାଥ ମନ୍ଦିରର ପଶ୍ଚିମ ଦ୍ୱାରର ଦକ୍ଷିଣ ପଟ ବାହାର ଉପର ମୁଣ୍ଡକୁ ଅଛି । ବଳଦେବ ଉତ୍ତର ଦେଲାବେଳକୁ ତାଙ୍କ ମୁହଁରେ ତ୍ରସ୍ତତା ବାରିହେଇ ପଡ଼ିଥିଲା । ଆଖି ଦୁଇଟି ଅସ୍ୱାଭାବିକ ଭାବେ ବିସ୍ଫାରିତ ହେଇଯାଇଥିଲା । ଆମ ଶୁଭେଚ୍ଛୁ ସଭ୍ୟ କିନ୍ତୁ ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠିଥିଲେ । ଉତ୍ତର କର୍ତ୍ତାଙ୍କୁ ବଧେଇ ଜଣେଇ କହିଥିଲେ, ଆପଣ ଚମତ୍କାର ଉତ୍ତର ଦେଇଛନ୍ତି । ପୁଣି ସେ ମୋ ଆଡ଼କୁ ଚାହିଁ ମୁରୁକି ହସି ମୋର ପ୍ରତିକ୍ରିୟା ଜାଣିବା ପାଇଁ ଚାହିଁଥିଲେ । ମୋର ତାଙ୍କୁ ଉତ୍ତର କ'ଣ ହେଇଥିବ ପାଠକେ ଅନୁମାନ କରିପାରୁଥିବେ । ପି.ଏସ୍.ସି ରେ ବଳଦେବଙ୍କ ସ୍ଥିତି ସଂପର୍କରେ ସାମାନ୍ୟ ବିସ୍ତାର ନକଲେ ମନେହେବ ମୁଁ ତାଙ୍କୁ ହେୟ କରିବା ପାଇଁ ଏଭଳି କହୁଛି । ବଳଦେବ ମହାରଥୀ ଜଣେ ପ୍ରତିଭାବାନ ଶିଳ୍ପୀ ଏଥିନେଇ କୌଣସି ସନ୍ଦେହ ଅମୂଳକ । ସେ କିନ୍ତୁ ଫାଇନ୍ ଆର୍ଟ୍ (ଅଏଲ୍ ପେଂଟିଙ୍ଗ୍) ରେ ଡିପ୍ଲୋମା ପାଇଥିଲେ । ସେ ତୈଳଚିତ୍ର ବିଭାଗ ପାଇଁ ଯୋଗ୍ୟ ଅଧ୍ୟାପକ । ତାଙ୍କୁ ବ୍ୟବହାରିକ କଳା ବିଭାଗରେ ମଧ୍ୟ ନିର୍ଦ୍ୱନ୍ଦ୍ୱରେ ଅଧ୍ୟାପକ ଭାବେ ନିଯୁକ୍ତି ଦିଆଯାଇପାରେ । କିନ୍ତୁ ଭାରତୀୟ ଚିତ୍ରକଳା ବିଭାଗ ବା ଇଣ୍ଡିଆନ୍ ପେଂଟିଙ୍ଗ୍ ବିଭାଗ ପାଇଁ ଯେଉଁଠି ଗତାନୁଗତିକ ଭାବେ ଶାନ୍ତିନିକେତନୀୟ ପଦ୍ଧତିରେ ଟେମ୍ପେରା ବା ଲେପ ଚିତ୍ର, ୱାସ୍ ବା ଧୌତ ଚିତ୍ର ଶିକ୍ଷା ଦିଆଯିବା ପାଇଁ ଉଦ୍ଦିଷ୍ଟ ସେଠି ତୈଳଚିତ୍ର ସାର୍ଟିଫିକେଟ୍‌ଧାରୀ ଶିଳ୍ପୀଙ୍କୁ କିଭଳି ବା ନିଯୁକ୍ତି ଦିଆଯାଇପାରନ୍ତା ? ସେ ଏଣେ ଆମ କଲେଜରେ ବ୍ୟବହାରିକ କଳା ବିଭାଗରେ ଅସ୍ଥାୟୀ ଅଧ୍ୟାପକ ଭାବେ କାର୍ଯ୍ୟ କରୁଥିଲେ । ଏହି ବିଭାଗ ଉପରେ ଦୁଇଜଣଙ୍କର ତୀକ୍ଷ୍ଣ ନଜର ଥିଲା । ସେଥିରୁ ଜଣେ ହେଲେ ମୋ ଶିକ୍ଷକ ବିପ୍ରଚରଣ ମହାନ୍ତିଙ୍କ ସାନପୁଅ ସଚ୍ଚିଦାନନ୍ଦ ମହାନ୍ତି ଓ ଅନ୍ୟଜଣେ ହେଲେ ଖଲ୍ଲିକୋଟର ଗଜେନ୍ଦ୍ର ପାଢ଼ୀ । ସଚ୍ଚିଦାନନ୍ଦ ମହାନ୍ତି ଜଣେ ଅତ୍ୟନ୍ତ ଯୋଗ୍ୟ ବ୍ୟକ୍ତି । ସେ ଉଚ୍ଚତର ଶିକ୍ଷା ପାଇଥିଲେ । କିନ୍ତୁ ମୋର ଧାରଣା ଥିଲା ଯେ ଆମ କଲେଜର ପ୍ରାରମ୍ଭିକ ଅବସ୍ଥାରେ ସେ ନିଜକୁ ଖାପ ଖୁଆଇ ପାରି ନଥାନ୍ତେ । ପୁଣି ଏଠି ପଡ଼ିରହିଲେ କିଛି ଗୋଟିଏ ଉଲ୍ଲେଖନୀୟ କାର୍ଯ୍ୟ କରିବାର ସମ୍ଭାବନା ମଧ୍ୟ କମ୍ ଥିଲା । ଯେହେତୁ ଗଜେନ୍ଦ୍ର ପାଢ଼ୀ ପି.ଏସ୍.ସି.ର ଶୁଭେଚ୍ଛୁଙ୍କ ସହ ସଂପର୍କ ଓ ଅଧ୍ୟାପକମାନଙ୍କ ସ୍ୱାର୍ଥକୁ ନେଇ ଗୋଟିଏ ଗୁରୁ ଦାୟିତ୍ୱ ବହନ କରିଥିଲେ ମୁଁ ତାଙ୍କ ଆଡ଼କୁ ଢଳିବାକୁ ବାଧ୍ୟ ହେଇଥିଲି । ଦେଖିବାକୁ ଗଲେ ବଳଦେବଙ୍କ ଅବସ୍ଥା ଦୋଦୁଲ୍ୟମାନ ହେଇଥିଲା । ତାଙ୍କୁ ସ୍ଥାୟୀଭାବେ ଥଇଥାନ କରିବା ପାଇଁ ମୋ ଚେଷ୍ଟା ଅବ୍ୟାହତ ରହିଥିଲା । ମୁଁ ତାଙ୍କ ପାଇଁ ଭାରତୀୟ ଚିତ୍ରକଳା ବିଭାଗରେ ସମ୍ଭାବନାଟିଏ ଦେଖିପାରୁଥିଲି । ସେଠି ମଧ୍ୟ ତାଙ୍କ ସ୍ଥାନ ନିରଙ୍କୁଶ ନଥିଲା । ଯେହେତୁ ଶୈଳବାଳା ନାୟକ ବହୁବର୍ଷ ଧରି ଖଲ୍ଲିକୋଟ ଚିତ୍ରକଳା ବିଦ୍ୟାଳୟରେ ଭାରତୀୟ ଚିତ୍ରକଳା ବିଭାଗରେ କନିଷ୍ଠ ଅଧ୍ୟାପିକା (ଇନ୍‌ଷ୍ଟ୍ରକ୍ଟର) ଭାବେ

Digitized by srujanika@gmail.com

ଅଧ୍ୟାପନା କରୁଥିଲେ ସେ ତାଙ୍କର ପଦୋନ୍ନତି ଭାବେ ପି.ଏସ୍.ସି ପାଇଯିବା ସ୍ୱାଭାବିକ ଥିଲା । ବଳଦେବଙ୍କୁ ସେ ବିଭାଗରେ ଅବସ୍ଥାପିତ କରିବା ମୋ ପ୍ରସ୍ତାବ ଶୈଳବାଳାଙ୍କ ପଦୋନ୍ନତିରେ ପ୍ରତିବନ୍ଧକ ହୋଇ ଦେଖାଦେଲା । ଶୈଳବାଳାଙ୍କ ପାଇଁ ମୋର ଦୁଇଜଣ ଘନିଷ୍ଠ ବ୍ୟକ୍ତି ଯୋଗାଡ଼ କାର୍ଯ୍ୟରେ ଲାଗିଲେ । ସେଥିରୁ ଜଣେ ହେଲେ ତାଙ୍କ ସ୍ୱାମୀ ଚନ୍ଦ୍ରମଣି ବିଶ୍ୱାଳ, ଆଉ ଅନ୍ୟଜଣେ ତାଙ୍କ ବାପା ରବିନାରାୟଣ ନାୟକ । ରବିନାରାୟଣ ନାୟକ ଖଲ୍ଲିକୋଟରେ ଆମ ସମସ୍ତଙ୍କ ଶିକ୍ଷକ ଥିଲେ । କଥା ଏତେଦୂର ଲମ୍ବିଥିଲା ଯେ ରବିନାରାୟଣ ସାକ୍ଷାତକାର ପ୍ରତିଯୋଗିତାରୁ ଓହରି ଆସିବା ପାଇଁ ସ୍ୱୟଂ ବଳଦେବଙ୍କୁ ଅନୁରୋଧ କରିଥିଲେ । ଚନ୍ଦ୍ରମଣି ବିଶ୍ୱାଳଙ୍କ ଛାତ୍ର ଭାବେ ବଳଦେବଙ୍କ କର୍ତ୍ତବ୍ୟ ଥିଲା ଗୁରୁପତ୍ନୀଙ୍କ ଶୁଭ ମନାସି ପ୍ରତିଯୋଗିତାରୁ ଅଲଗା ହୋଇଯାଇ ଲୋକ ସମ୍ପର୍କ ବିଭାଗରେ ତାଙ୍କ ପୁରୁଣା ଆସ୍ଥାନକୁ ଫେରିଯିବା। ସେ ବୀର ଅଭିମନ୍ୟୁଙ୍କ ଭଳି ଚକ୍ରବ୍ୟୂହ ମଧ୍ୟରେ ପଶିଯାଇଥିଲେ ସିନା ମୁକ୍ତି ପାଇବାର ବାଟ ଜାଣି ନଥିଲେ । ତୈଳଚିତ୍ର ବିଭାଗରେ ଶିବ ପାଣିଗ୍ରାହୀ, ବ୍ୟୋମକେଶ ମହାନ୍ତି; ବ୍ୟବହାରିକ କଳା ବିଭାଗରେ ସଚ୍ଚିଦାନନ୍ଦ ମହାନ୍ତି, ଗଜେନ୍ଦ୍ର ପାଢ଼ୀ ଏବଂ ଭାରତୀୟ କଳା ବିଭାଗରେ ଶୈଳବାଳା ନାୟକ ଓ ରମେଶ ଚନ୍ଦ୍ର ବେହେରା ଓ ବଳଦେବ ମହାରଥୀ ପ୍ରାର୍ଥୀ ଥିଲେ ।

ମୁଁ ଯେହେତୁ ବଳଦେବଙ୍କୁ ନିଦରୁ ଉଠେଇ ଅସ୍ଥାୟୀ ଅଧ୍ୟାପକ ଚାକିରିରେ ନିଯୁକ୍ତି କରାଇଥିଲି, ଏଭଳି ବିପଜ୍ଜନକ ଅବସ୍ଥାରେ ତାଙ୍କୁ ଛାଡ଼ିଦେଇ ପଛଆଡୁ ଛୁରୀ ଭୂଷିବା ପାଇଁ ଚାହିଁ ନଥିଲି । ଏଣୁ ଅଣ୍ଟାଭିଡ଼ି ମୁଁ ବଳଦେବଙ୍କ ପାଖରେ ଠିଆ ହେଲି । ଏହି ମନ୍ଥନରେ ବାସୁକୀ ପ୍ରବଳ ବିଷ ଉଦ୍‌ଗାର କଲା । ନୀଳକଣ୍ଠ ହେବାକୁ ଚେଷ୍ଟା କରି ମଧ୍ୟ ପାରିଲିନି । ଦେହସାରା ଜ୍ୱଳନ ଭରିଗଲା । କଲେଜର ପଞ୍ଜରା ଯାଏଁ ବିଷ ଜରିଗଲା । ଏବେବି ସେହି ଜ୍ୱଳନର ଉପଶମ ହୋଇନାହିଁ । ମୁଁ ଜାଣେନି ଆଜିର ଭାରପ୍ରାପ୍ତ ଅଧ୍ୟକ୍ଷ ବଳଦେବ ସେହି ନୀଳ ହଳାହଳର ଜ୍ୱଳନ ପାଇପାରୁଛନ୍ତି ନା ନାହିଁ ? ଏହି ପରିପ୍ରେକ୍ଷୀରେ ପି.ଏସ୍.ସି. ହଲ୍‌ରେ ବଳଦେବ ମହାରଥୀଙ୍କ ଉତ୍ତରଗୁଡ଼ିକ ଯଥାର୍ଥ ଥିଲା ।

ଦ୍ୱିତୀୟରେ ଆସିଲେ ଖଲ୍ଲିକୋଟ କଳା ବିଦ୍ୟାଳୟର ଦୀପ୍ତିପ୍ରକାଶ ମହାନ୍ତି ଓ ବି.କେ. କଲେଜର ଗ୍ରାଫିକ ଚିତ୍ରକଳା ବିଭାଗ ପାଇଁ ଅଧ୍ୟାପକ ପ୍ରାର୍ଥୀ ଡି.ଏନ୍. ରାଓ । ଡି.ଏନ୍.ରାଓଙ୍କ ଅପେକ୍ଷା ଦୀପ୍ତିଙ୍କର ଯୋଗ୍ୟତା ଅଧିକ ଥିଲା, ତଥାପି ଦୁଇଟି ପଦବୀ ପାଇଁ ଦୁଇଜଣ ଅଧ୍ୟାପକଙ୍କ ଆବଶ୍ୟକତା ଦୃଷ୍ଟିରୁ ଦୁହେଁ ଅନାୟାସରେ ବୈତରଣୀ ପାର ହୋଇଗଲେ । କାଳେ ଆବଶ୍ୟକ ପଡ଼ିପାରେ ଏଣୁ ଶିବାଜୀଙ୍କ ଧାରୁଆ ନଖ ଭଳି ପ୍ରତିଯୋଗୀଙ୍କ ଅଜାଣତରେ ଦୀପ୍ତି କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ପାଇଥିବା ସ୍ୱର୍ଣ୍ଣପଦକଟି ଗଳାରେ ଝୁଲାଇ ଥିଲେ । ସେ ଯେଉଁଭଳି ଭାବରେ ସେଇଟିକୁ ପ୍ରଦର୍ଶିତ କଲେ ତାହା

Digitized by srujanika@gmail.com

ଉପସ୍ଥିତ ସମସ୍ତ ପରୀକ୍ଷକଙ୍କୁ ମୁଗ୍ଧ କରିଦେଇଥିଲା । ଡି.ଏନ୍. ରାଓଙ୍କ ପାଇଁ ପରିବେଶ ଓ ପ୍ରଶ୍ନ ସଂପୂର୍ଣ୍ଣ ଅନୁକୂଳ ଥିଲେ ମଧ୍ୟ ନିକଟ ଅତୀତରେ ପରଲୋକ ଗମନ କରିଥିବା ତାଙ୍କ ପତ୍ନୀ ଲକ୍ଷ୍ମୀ ତଥା ଦୁଇଜଣ ମା' ଛେଉଣ୍ଡ ପିଲାଙ୍କ କଥା କହୁ କହୁ ସେ କୋହ ସମ୍ବରଣ କରିପାରି ନଥିଲେ । ପରୀକ୍ଷକମାନେ ମାନବିକତାର କାରୁଣ୍ୟରେ ବ୍ୟଥିତ ହେଲାଭଳି ମନେ ହେଉଥିଲା ।

ସ୍ୱୟମ୍ବର ସଭାରେ ପ୍ରତ୍ୟେକ ରାଜପୁତ୍ର ନିଜ ନିଜର ବୀରତ୍ୱ ଓ ପାରଦର୍ଶିତା ପ୍ରତିପାଦନ କଲାଭଳି ପ୍ରତ୍ୟେକ ଅଧ୍ୟାପକ ପ୍ରାର୍ଥୀ ଆପଣାର କରିସ୍ମା ଦେଖାଇ ମଂଚରୁ ବିଦାୟ ନେଉଥିଲେ । ଫେରିଲାବେଳେ ସେମାନଙ୍କ ଅକୁଂଚିତ ଆଲୋକିତ ଲଲାଟ ଓ ଓଠରେ ଖେଳି ଯାଉଥିବା ସ୍ମିତହାସ ରେଖାରୁ ପ୍ରତିପାଦିତ ହେଉଥାଉଥିଲା ଶୁଭେଚ୍ଛୁ ସଭ୍ୟଙ୍କ ଉଦାର ପ୍ରଶ୍ନ ସେମାନଙ୍କୁ ହୁଏତ ବିଜୟ ଦ୍ୱାରର ନିକଟତର କରିଦେଇପାରିଛି ।

ଶେଷରେ ଶିବ ପାଣିଗ୍ରାହୀ ଓ ବ୍ୟୋମକେଶ ମହାନ୍ତିଙ୍କ ପାଳି ପଡ଼ିଲା । ଉଭୟେ ତ ଆମ କଲେଜରେ ଅଧ୍ୟାପନା କରୁଥିଲେ ତୈଳଚିତ୍ର ବିଭାଗରେ, ଏଣୁ ପ୍ରଶ୍ନ ଉତ୍ତର ଜନିତ ଚିନ୍ତା ନଥିଲା । ସମସ୍ୟା ଥିଲା ଦୁଇଜଣଙ୍କ ଭିତରୁ କିଏ ଅଧିକ ଯୋଗ୍ୟ ବିବେଚିତ ହେବେ । ଦୁଇଜଣଙ୍କର ପିତୃତୁଲ୍ୟ ମୁରଲୀଧର ଟାଲି ସବ୍‌ଜେକ୍‌ଟ ଏକସ୍‌ପାର୍ଟ୍ । ଦୁଇଜଣଯାକ ପରୀକ୍ଷା ଦେଇସାରି ଫେରିଗଲା ପରେ ପି.ଏସ୍.ସି.ର ଅଧ୍ୟକ୍ଷ ପଚାରିଲେ, ଡକ୍ଟର ଟାଲି କହନ୍ତୁ ଦୁଇଜଣଙ୍କ ମଧ୍ୟରୁ କିଏ ଭଲ ଶିଳ୍ପୀ ? ଆମେ ତ ଶିବ ପାଣିଗ୍ରାହୀଙ୍କ ନାଁ ଖବର କାଗଜମାନଙ୍କରୁ ବେଶ୍ ପଢୁଛୁ, ତଥାପି ଆପଣଙ୍କ ମତାମତ ହିଁ ଆମର ଶ୍ରେୟ ହେବ । ମୁରଲୀ ବାବୁ କାଳବିଳମ୍ବ ନ କରି କହିଲେ, ମୁଁ ବ୍ୟୋମକେଶ ମହାନ୍ତିଙ୍କୁ ହିଁ ଆମର ଶ୍ରେଷ୍ଠ ଶିଳ୍ପୀ ହିସାବରେ ବେଶି ନମ୍ବର ଦେବି । ମୁରଲୀ ବାବୁଙ୍କର ଏତକ ରୋକ୍‌ଠୋକ୍ ଉତ୍ତର ଅଧ୍ୟକ୍ଷ ତଥା ସଭ୍ୟମାନଙ୍କୁ ଭଲ ଭାବରେ ପ୍ରଭାବିତ କରିଦେଇଥିଲା । ବି.ଏଚ୍.ୟୁ.ର ସ୍ନାତକୋତ୍ତର ଯୋଗ୍ୟତାସଂପନ୍ନ ଶିଳ୍ପୀ ହୋଇଥିବାରୁ ବ୍ୟୋମକେଶ କେରିଅର୍ ମାର୍କିଙ୍ଗ୍‌ରେ ଶିବ ପାଣିଗ୍ରାହୀଙ୍କଠାରୁ ବେଶି ନମ୍ବର ପାଇଥିଲେ । ସାକ୍ଷାତକାର ହଲ୍‌ରେ ହିଁ ପରିଷ୍କାର ହେଇଯାଇଥିଲା ବ୍ୟୋମକେଶ ମହାନ୍ତିଙ୍କ ଲଲାଟ ଉଜ୍ଜ୍ୱଳ, ସେ ହିଁ ବିଜୟଟୀକା ନେଇ ଫେରିବେ ।

ମୁଁ ପି.ଏସ୍.ସି.ରେ ଆଫିସିକ କାମ ସାରି ଫେରିଲାବେଳକୁ ତଳେ ବ୍ୟୋମକେଶ ଓ ଶିବ ଠିଆ ହେଇଥିଲେ । ମୁଁ ମୋର ସମସ୍ତ ଗ୍ଲାନିକୁ ମନ ଭିତରେ ଚାପିରଖି ବ୍ୟୋମକେଶଙ୍କୁ ବଧେଇ ଜଣେଇଥିଲି । ଶିବ ପାଣିଗ୍ରାହୀ ହତାଶାରେ ଭାଙ୍ଗି ପଡ଼ିଥିଲେ, ମନେହେଉଥିଲା ତାଙ୍କର ଭବିଷ୍ୟତର ସମସ୍ତ ସ୍ୱପ୍ନ ଚୂରମାର ହେଇଯାଇଛି । ମୁଁ ତାଙ୍କୁ କୁଣ୍ଢେଇ ପକେଇ ପ୍ରବୋଧନା ଦେଇ କହିଥିଲି, ''ଶିବ ବାବୁ ଅଧୈର୍ଯ୍ୟ ହେବାର ଏ

Digitized by srujanika@gmail.com

ବେଳ ନୁହେଁ, ମୋ ଉପରେ ଭରସା ରଖନ୍ତୁ ମୁଁ ଆଉ ଗୋଟିଏ ପଦବୀ ସୃଷ୍ଟି କରେଇ ଆପଣ ସ୍ଥାୟୀ ହେବାର ବ୍ୟବସ୍ଥା କରେଇବି ।'' ଶିବ ପାଣିଗ୍ରାହୀଙ୍କୁ ସ୍ଥାୟୀ କରେଇବା ପାଇଁ ଯୋଜନା ଆରମ୍ଭ ହେଲା । କଲେଜରେ ଜଣେ ପାରଂପରିକ ପଟଚିତ୍ରକାରଙ୍କୁ ଅଧ୍ୟାପକ ଭାବେ ନିଯୁକ୍ତି ଦେବାର ବ୍ୟବସ୍ଥା ଥାଏ । ସରକାରରେ ତ ଦୁଇ ସୁଧାଂଶୁ ଥାଆନ୍ତି। ସେମାନଙ୍କୁ କୁହାପୁଛା କରେଇ ପଦବୀର ପରିବର୍ତ୍ତନ କରେଇ ଅଣାଗଲା । ଶିବ ବାବୁ ଆଉଥରେ ପି.ଏସ୍.ସି. ଦୁଆର ମାଡ଼ି ନାହାନ୍ତି । ନିକଟରେ ଶେଷ ହେଇଥିବା ସାକ୍ଷାତକାରର ଫଳାଫଳ ଉପରେ ନିର୍ଭର କରି ତାଙ୍କ ଚାକିରିର ସ୍ଥାୟିତ୍ୱ କରିଦିଆଗଲା ।

ପି.ଏସ୍.ସି. ରୁ ଫଳାଫଳ ତାଲିକା ଆସି ସଂସ୍କୃତି ବିଭାଗ ଦପ୍ତରରେ ପଡ଼ିରହିଲା । ମନେହେଲା ଏହା ସାପ ନିଶୁଣି ଖେଳ । ନିଶୁଣିରେ ଧାପ ଦେଇ ଉପରକୁ ଉଠିଲାବେଳକୁ ଅଜଗର ପାଟି ଆଁ କରି ଗିଳିବ ବୋଲି ଅନେଇ ରହିଛି । ମୁଁ ଖବର ନେବାକୁ ମନ୍ତ୍ରୀଙ୍କ ଅଫିସରେ ପହଞ୍ଚି ବୁଝିଲି ଖାଲି ଖାଲିରେ ମୁଦ ଫେଡ଼ିଯିବା ସମ୍ଭବ ନୁହେଁ । କିଏ ଘାଟ କଉଡ଼ି ମାଗୁଛି ଜଣା ପଡ଼ିଲାନି । ନିଶ୍ଚିତ ହେଲି ଘାଟି କଉଡ଼ି ନ ଦେଲେ ଡଙ୍ଗାରେ ପାରିହେଇ ହେବନି । ସମସ୍ତଙ୍କ ମନରେ ଭାଲେଣି ପଡ଼ିଲା । ସମସ୍ତେ ଏତେ ଉତ୍କଣ୍ଠିତ, ବ୍ୟଗ୍ର ହେଇ ପଡ଼ିଥିଲେ ଯେ ଯେକୌଣସି ଉପଚାର ପାଇଁ ପ୍ରସ୍ତୁତ ଥିଲେ । ମୁଁ ପ୍ରସ୍ତାବ ଦେଲି, ଏବେ ତମେମାନେ ଜି.ପି.ଏଫ୍ ଲୋନ୍ ପାଇଁ ଦରଖାସ୍ତ କର ।

Digitized by srujanika@gmail.com

# ୫୨. ଏଫିଲିଏସନ୍ ବ୍ୟାପାର

ଏଫିଲିଏସନ୍ ବ୍ୟାପାରଟି ବା କୌଣସି ବିଶ୍ୱବିଦ୍ୟାଳୟ ସହିତ ମହାବିଦ୍ୟାଳୟଟିଏ ନିବନ୍ଧିତ ହେବା ସମସ୍ୟାଟି ଏକ ଗହନ କଥା । ମହାବିଦ୍ୟାଳୟଟି ଖୋଦ୍ ସରକାରୀ ହୋଇପାରେ ବା ସଂପୂର୍ଣ୍ଣ ବେସରକାରୀ ହୋଇପାରେ, ବିଶ୍ୱବିଦ୍ୟାଳୟ ସହିତ ନିବନ୍ଧିତ ହୋଇ ନଥିଲେ ସେହି ଡିଗ୍ରୀର ବଜାରରେ କୌଣସି ମୂଲ୍ୟ ରହେ ନାହିଁ । ଏଭଳି ଗୋଟିଏ ଅଭାବନୀୟ ପରିସ୍ଥିତିରେ ପଡ଼ି ଭୁବନେଶ୍ୱରରେ ଆମେ ଆରମ୍ଭ କରିଥିବା ଚିତ୍ରମ୍ କଳାବିଦ୍ୟାଳୟଟି ବିଶ୍ୱବିଦ୍ୟାଳୟ ସ୍ୱୀକୃତି ପାଇପାରି ନଥିଲା । କିନ୍ତୁ ଚିତ୍ରମ୍‌ର ଜଣେ ଉଦୟମାନ ଛାତ୍ର ସୁଦର୍ଶନ ସାହୁ ନିଜର କଳାତ୍ମକ ପ୍ରତିଭା ଓ ପ୍ରଚେଷ୍ଟା ବଳରେ ଚିତ୍ରମ୍‌ର ଡିଗ୍ରୀକୁ ଭାରତ ସରକାରଙ୍କ ଦ୍ୱାରା ସ୍ୱୀକୃତ କରାଇ ଭୁବନେଶ୍ୱର ଗିଫ୍‌ଟ୍ ପ୍ରେସ୍‌ରେ ସେ କରୁଥିବା ଚାକିରିକୁ କାଏମ୍ ରଖିପାରିଥିଲା । ଏହା ବହୁଦିନ ତଳର କଥା ହେଇଗଲାଣି ଏବଂ ସୁଦର୍ଶନ ଭାରତ ସରକାରଙ୍କ ଚାକିରିରୁ ଅବସର ନେଇ ନେଲାଣି ।

ଆମ କଲେଜ ୧୯୮୪ ମସିହା ଜାନୁଆରୀ ଶେଷ ବେଳକୁ କାର୍ଯ୍ୟକ୍ଷମ ହେଲା । ଶିକ୍ଷାବର୍ଷ ଜୁଲାଇ ମାସରୁ ସାଧାରଣତଃ ଆରମ୍ଭ ହୋଇଥାଏ । ସେତେବେଳକୁ ଶିକ୍ଷାବର୍ଷର ଛଅ ସାତ ମାସ ଗଡ଼ି ଗଲାଣି । ଚାରି ମାସପରେ ପୁଣି ଖରାଛୁଟି । ଅନେକେ ଭାବୁଥାନ୍ତି ବର୍ଷଟା ସେମିତି ସେମିତିରେ ଯିବ । ମୁଁ ପର୍ଯ୍ୟଟନ ନିଗମର କ୍ୟାଲେଣ୍ଡର ଛପା କାମରେ ଦିଲ୍ଲୀ ଯାଇଥାଏ । କଲେଜରେ ମୋ ଛଡ଼ା ଆଉ କୌଣସି ଅଧ୍ୟାପକ ନଥାନ୍ତି । ଏଣୁ ସ୍ୱାସ୍ଥ୍ୟବିଭାଗରେ ଶିଳ୍ପୀ ଭାବରେ କାମ କରୁଥିବା ମୋ ବନ୍ଧୁ ଶିବ ପାଣିଗ୍ରାହୀଙ୍କୁ କଲେଜ ଦାୟିତ୍ୱରେ ରହିବାପାଇଁ ଅନୁରୋଧ କରିଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ପରିଦର୍ଶକ ଦଳ ମୋ ଅନୁପସ୍ଥିତିରେ କଲେଜରେ ପହଞ୍ଚିଲେ । ଦଳରେ ସାମିଲ ହେଇଥାନ୍ତି ପ୍ରିୟମ୍ବଦା ମହାନ୍ତି, ବଳରାମ ସାହୁ ଓ କରୁଣାସାଗର ବେହେରା । ସେତେବେଳେ କଲେଜଟି ଟଙ୍କପାଣି ରୋଡ଼ ଭଡ଼ାଘରେ ଚାଲୁ ହେଉଥାଏ । ଟିମ୍ କଲେଜରେ ପହଞ୍ଚି ଅଧ୍ୟକ୍ଷଙ୍କୁ ନ ପାଇ ଶିବ ବାବୁଙ୍କୁ ବିଭିନ୍ନ କଥା ପଚରା ଉଚୁରା କରିସାରି ଫେରିଯାଇଛନ୍ତି । ଓଡିଶାର କଳାଶିକ୍ଷା ପ୍ରତି ପ୍ରତିବଦ୍ଧତା ହେଉ ବା କଳାପ୍ରତି ନିଜର ଉଦାର ମନୋଭାବ ହେଉ ବା ମୋ ପ୍ରତି ବ୍ୟକ୍ତିଗତ ଭାବେ ଶ୍ରଦ୍ଧାଶୀଳ ରହିଥାନ୍ତୁ; ପରିଦର୍ଶକମାନେ କଲେଜଟିକୁ ବିଶ୍ୱବିଦ୍ୟାଳୟ

Digitized by srujanika@gmail.com

ସହିତ ନିବନ୍ଧିତ କରାଯାଉ ବୋଲି କୁଳପତି ମନ୍ମଥନାଥ ଦାସଙ୍କୁ ସୁପାରିଶ କଲେ । ମୁଁ ଦିଲ୍ଲୀରୁ ଫେରି କଲେଜର ଏଫିଲିଏସନ୍ ବ୍ୟାପାର ସପକର୍ରେ ଜାଣିବା ପାଇଁ ବିଶ୍ୱବିଦ୍ୟାଳୟରେ ପହଞ୍ଚିଲି । କୁଳପତିଙ୍କୁ ଦେଖାକରିବାକୁ ମୁଁ ତାଙ୍କ ଅଫିସ ଆଡ଼େ ମୁହାଁଇଛି ଦେଖିଲି ପ୍ରଫେସର୍ ଦାସ ସିଢ଼ି ଓହ୍ଲାଇ ତଳ ମହଲାକୁ ଅସୁଛନ୍ତି । ମୋତେ ଦେଖିପକାଇ କଲେଜର କାମ ହେଇଯାଇଛି ବୋଲି ତାଙ୍କ ଆଡୁ କହି ପକାଇଲେ । କୁଳପତି ନିଜର ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରି ଏଫିଲିଏସନ୍ କରିଦେଲେ । ଏତେ ସହଜରେ କଲେଜଟି ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱୀକୃତି ହୋଇପାରିଲା, କିଛି ଶିକ୍ଷୀ ତାହା ଏତେ ସହଜରେ ପରତ ଗଲେନି । ଖଲ୍ଲିକୋଟ କଳାମହାବିଦ୍ୟାଳୟର ଅଧ୍ୟାପକମାନେ ମୁଁ ବାହାଦୁରିଆ କଥା କହୁଛି ଆଉ ଏଫିଲିଏସନ୍ କଥା ମିଛ ବୋଲି ଅପପ୍ରଚାର କଲେ । ଏଣେ ଆମେ ନିଧଡ଼କ ହେଇ ରହିଲୁ । କଲେଜରେ ଶିକ୍ଷାଦୀକ୍ଷା କାର୍ଯ୍ୟକ୍ରମ ଆଗକୁ ବଢ଼ିଲା ।

ବର୍ଷେ ଗଡ଼ିଛି କି ନାହିଁ ସରକାର ନିଷତ୍ତି କଲେ ସବୁ ଗ୍ରାଜୁଏସନ୍ ପାଠ ଦୁଇ ଥାକରେ ଦୁଇଟି ସଂସ୍ଥାଦ୍ୱାରା ପରୀକ୍ଷା କରାଯିବ । ଆମର ଦୁଇବର୍ଷିଆ ଇଣ୍ଟରମିଡିଏଟ୍ ପାଠକୁ ହାୟର୍ ସେକେଣ୍ଡାରୀ କାଉନ୍‌ସିଲ୍ ଦ୍ୱାରା ଗୃହୀତ କରାଇ ସେମାନଙ୍କ ଦ୍ୱାରା ପରୀକ୍ଷା କରାଇ ନେବାକୁ ଉତ୍କଳ ବିଶ୍ୱବିଦ୍ୟାଳୟ ଆମକୁ ଚିଠି ଲେଖିଲେ । ଏହା ଥିଲା ପ୍ଲସ୍ ଟୁ ଓ ପ୍ଲସ୍ ଥ୍ରୀ ପାଠ୍ୟକ୍ରମ । ଆମ ମୁଣ୍ଡରେ ବଜ୍ର ପଡିଲା । ଆମେ ଧରି ନେଇଥିଲୁ ଯେ ଏକାବେଳେକେ ପାଞ୍ଚବର୍ଷ ପରେ ଆମ ପିଲାଏ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଇ ସ୍ନାତକ ହେବାର ଯୋଗ୍ୟତା ହାସଲ କରିବେ । ଚିଠି ପାଇ ମୁଁ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ ଅଫିସକୁ ଯାଇ ଚେୟାରମ୍ୟାନ୍ ଗିରିଧର ଗୁରୁଙ୍କୁ ଦେଖାକଲି । ଆର୍ଟ୍ ପାଠଟି ସାଧାରଣ ପାଠ ଠାରୁ ଅଡୁଆ । ଗିରିଧର ଏଫିଲିଏସନ୍ ପାଇଁ ତାଙ୍କର କେତୋଟି ସର୍ତ୍ତ ରଖିଲେ । ଆମକୁ କୁଆଡ଼େ ପରିଷଦ ନିର୍ଦ୍ଧାରିତ ପାଠ୍ୟକ୍ରମର ଅନୁସରଣ କରିବାକୁ ହେବ ବୋଲି ସେ କହିଲେ । ସାଧାରଣତଃ ପ୍ଲସ୍ ଟୁ କଲେଜ ମାନଙ୍କରେ କଳା ବିଭାଗରେ ଅନୁସୃତ ହେବାକୁ ଏକ ସିଲାବସ୍ ଅନୁଯାୟୀ ପାଠ ପଢେଇବା ପାଇଁ ପରିଷଦ ନିର୍ଦ୍ଦେଶ ଦେଲେ । ମନେହେଲା ଗିରିଧର ଗିରିଟିଙ୍କୁ ତାଙ୍କ କାନ୍ଧରୁ ଉହ୍ଲେଇ ଦେଇ ମୋ ମୁଣ୍ଡ ଉପରେ ଲଦିଦେଲେ । ପରିଷଦର ସିଲାବସ୍ କମିଟୀରେ ଯେଉଁ ଶିକ୍ଷୀ ବନ୍ଧୁମାନେ ଥିଲେ ସେମାନେ ମୋ ପ୍ରତି ଓ କଲେଜ ପ୍ରତି ଦାଉ ସାଧିବାର ମନୋବୃତ୍ତିରେ ରହିଥିଲେ । ଏଣୁ ଏଫିଲିଏସନ୍ ବ୍ୟାପାରରେ ଆଉ ଆଗକୁ ନ ବଢ଼ି ମୋ ପ୍ରୟାସରୁ ଓହରି ଗଲି ଏବଂ ଏହା ଧୀରେ ଧୀରେ ସମସ୍ୟାଯୁକ୍ତ ହେଇ ଆମ କଲେଜର ଭାବମୂର୍ତ୍ତିକୁ ଦୋହଲାଇ ଦେଲା ।

୧୯୮୩-୮୪ ଶିକ୍ଷାବର୍ଷ ଶେଷରେ ଧୁମ୍ ଧାମ୍‌ରେ ଆମ କଲେଜରେ ବାର୍ଷିକ ଚିତ୍ର ପ୍ରଦର୍ଶନୀ ରବୀନ୍ଦ୍ର ମଣ୍ଡପରେ ଓଡିଶାର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

Digitized by srujanika@gmail.com

ଉଦ୍‌ଘାଟନ କଲେ । ସଂସ୍କୃତି ମନ୍ତ୍ରୀ, କୁଳପତି ପ୍ରଫେସର ଦାସ ଓ ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀଙ୍କ ଉପସ୍ଥିତିରେ ଏକ ଭବ୍ୟ ଉତ୍ସବଟିଏର ଆୟୋଜନ କରାଯାଇ ପାରିଲା । ଓଡିଶାର କଳାଶିକ୍ଷା କ୍ଷେତ୍ରରେ ଏଭଳି କାର୍ଯ୍ୟକ୍ରମ ଅଭିନବ ଥିଲା । ପୁଣି ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ଯୋଗଦାନ ସାଙ୍ଗକୁ କଲେଜର କଳା ଓ ନାନ୍ଦନିକତାର ପତ୍ରିକା 'ଚିତ୍ର' ର ଉନ୍ମୋଚନ କଲେଜର ମର୍ଯ୍ୟାଦାକୁ ଯଥେଷ୍ଟ ବଢ଼ାଇ ଦେଲା । ଯେଉଁମାନେ ଏହା ଏକ ବେସରକାରୀ କଲେଜ ଓ ପାଠୀ ମିଛରେ ଗହଳ ଲଗାଇଛି ବୋଲି ଅପପ୍ରଚାର କରୁଥିଲେ ଏହି ଉତ୍ସବ ବସ୍ତୁତଃ ସେମାନଙ୍କ ମୁହଁରେ କାଳି ବୋଳିଦେଲା ।

ପ୍ରଦର୍ଶନୀ ଓ ପ୍ରକାଶନର ଏଭଳି ଏକ ସଫଳ ପ୍ରୟାସ ପରେ ଉଚ୍ଚ ମାଧ୍ୟମିକ ଶିକ୍ଷାପରିଷଦରେ ଆମ ହାର ପଟ ଫଳରେ ମୁଁ ନିଜକୁ ଅସହାୟ ମନେ କଲି । ପୁଣି ଆଉ ବର୍ଷେ ଗଡ଼ିଗଲା । ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ ଆନୁକୁଲ୍ୟରେ ପରୀକ୍ଷା ଦେଇ ନ ପାରିଲେ ଆମ ପିଲାଏ ବିଶ୍ୱବିଦ୍ୟାଳୟର ତିନିବର୍ଷିଆ ବା ପ୍ଲସ୍ ଥ୍ରୀ ପାଠ୍ୟକ୍ରମ ଅନୁସରଣ କରିପାରିବେ ନାହିଁ । ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦରେ ପରୀକ୍ଷା ଦେଇ ନ ପାରିବା ଯିମିତି ଏକ ସମସ୍ୟା ନୁହେଁ ଏବଂ ଏହା ପ୍ରତି ଏତେଟା ଗୁରୁତ୍ୱ ନଦେବା ପାଇଁ ମୁଁ ଛାତ୍ରଛାତ୍ରୀଙ୍କୁ ବୁଝେଇବା ପାଇଁ ଚେଷ୍ଟା କଲି । କିନ୍ତୁ ପରୀକ୍ଷା ଦେଇ ନ ପାରିବାର ଭୟରେ ଛାତ୍ରଛାତ୍ରୀ ଆତଙ୍କିତ ହେଲେ । ଛାତ୍ରଛାତ୍ରୀଙ୍କ ମଧ୍ୟରେ ଅସନ୍ତୋଷର ଚାପା ଚାପା ଗୁଞ୍ଜରଣ ଶୁଣାଗଲା । ସେମାନଙ୍କ ସହିତ ମୋର ସଂପର୍କ ଏତେ କରି ସୌଜନ୍ୟମୂଳକ ଥିଲାଯେ ଏବଂ ସେମାନେ ମୋର ସାମର୍ଥର ଏଭଳି ବିଶ୍ୱାସ ରଖିଥିଲେ ଯେ ଅସନ୍ତୋଷ ଧର୍ମଘଟ ରୂପ ଧାରଣ କରି ନଥିଲା । କଲେଜର ପରିସ୍ଥିତି କିନ୍ତୁ ବିଷଉଥିବା କ୍ଷୀର ଅବସ୍ଥାରେ ଥିଲା ଏବଂ ମୁଁ ସବୁଠାରୁ ଅଧିକ ମାନସିକ ଦୁଶ୍ଚିନ୍ତା ଭିତରେ ସମୟ ନିର୍ବାହ କରୁଥିଲି । ମୁଁ ଭାବୁଥିଲି ଯଦି ପାଞ୍ଚବର୍ଷିଆ ସମନ୍ୱିତ ପାଠ୍ୟକ୍ରମଟିଏକୁ ବିଶ୍ୱବିଦ୍ୟାଳୟ ସ୍ୱୀକୃତି ଦେଇ ଦିଅନ୍ତେ ତା ହେଲେ ଆଉ ସମସ୍ୟା ରହନ୍ତାନି । ଏଣୁ ମୁଁ ବିଶ୍ୱବିଦ୍ୟାଳୟ ଅଫିସକୁ ବରାବର ଦୌଡ଼ଧାପଡ଼ କରୁଥାଏ ।

କଲେଜର ଠିକ୍ ଏଭଳି ଏକ ଅଦ୍ୱାନିଆ ପରିସ୍ଥିତିବେଳେ ପ୍ରଫେସର୍ ଲକ୍ଷ୍ମଣ କୁମାର ମହାପାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଯୋଗଦେଲେ । ତାଙ୍କ ସହିତ ମୋର ଭଲ ସଂପର୍କ ରହିଥାଏ । ମୁଁ ତାଙ୍କୁ ଦେଖାକରି ଆମ କଲେଜର ଏଫିଲିଏସନ୍ ସମସ୍ୟା କହିଲି । ସେ ମୋ କଥାରେ ସହମତି ପ୍ରକାଶ କଲେ କିନ୍ତୁ ଆଉ କୌଣସି ବିଶ୍ୱବିଦ୍ୟାଳୟରେ ଏଭଳି ପାଞ୍ଚବର୍ଷିଆ ସମନ୍ୱିତ ପାଠ୍ୟକ୍ରମ ପ୍ରଚଳିତ ଥିବାକଥା ଜାଣିବାକୁ ଚାହିଁଲେ । ମୁଁ ଅନ୍ୟ ବିଶ୍ୱବିଦ୍ୟାଳୟର ପାଞ୍ଚବର୍ଷିଆ ସିଲାବସ୍ କୁଳପତିଙ୍କୁ ଯୋଗାଇବା ପ୍ରତିଶ୍ରୁତି ଦେଲି । ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର କଳାଭବନ (କଳା ମହାବିଦ୍ୟାଳୟ)ରେ ଏଭଳି ଗୋଟିଏ ପାଠ୍ୟକ୍ରମ ଅନୁସୃତ ହେଉଥାଏ । ଏବଂ ମୋର ଜଣେ ପ୍ରିୟ ଅଧ୍ୟାପକ କାଞ୍ଚନ ଚକ୍ରବର୍ତ୍ତୀ

Digitized by srujanika@gmail.com

ଶାନ୍ତିନିକେତନ କଳାଭବନର ଅଧ୍ୟକ୍ଷ ଥାଆନ୍ତି । ସେ ଆମ ନିକଟରେ କାଞ୍ଚନ ଦା' ବୋଲି ପରିଚିତ ଥିଲେ । ସେ ଆମ କଲେଜ ପରିଦର୍ଶନ କରି ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତା ମଧ୍ୟ ଦେଇସାରିଥିଲେ ଏବଂ ଆମ କଲେଜର ଅଭିବୃଦ୍ଧି ପ୍ରତି ସହାନୁଭୂତି ପ୍ରକାଶ କରୁଥିଲେ । ଏହାକୁ ଏକ ସୁଯୋଗ ମନେ କରି କାଞ୍ଚନ ଦା'ଙ୍କ ନିକଟକୁ ଆମ କଲେଜର ଏଫିଲିଏସନ୍ ବ୍ୟାପାର ସଂକ୍ରାନ୍ତୀୟ ସମସ୍ତ ସମସ୍ୟା ଜଣେଇ ଚିଠି ଖଣ୍ଡେ ଲେଖିଲି ଏବଂ କଲେଜର ଜଣେ ଛାତ୍ରଙ୍କ ହାତରେ ଚିଠିଟି ଦେଇ ଶାନ୍ତିନିକେତନ ପଠେଇଲି । ପିଲାଟି ସକାଳୁ କଳା ଭବନରେ ପହଞ୍ଚି କାଞ୍ଚନ ଦା'ଙ୍କୁ ଚିଠିଟି ଦେଲା ଓ ସେହିଦିନ ଚିଠିର ଉତ୍ତର ନେଇ ଭୁବନେଶ୍ୱର ଫେରିବା କଥା ଜଣେଇଲା । କାଞ୍ଚନ ଦା' ଚିଠିଟି ପଢ଼ିଲେ । ଏଫିଲିଏସନ୍ ବ୍ୟାପାର କିଭଳି ସଂଗୀନ ଅବସ୍ଥାରେ ପହଞ୍ଚିଛି ତା ବି ଉପଲବ୍ଧି କଲେ କିନ୍ତୁ ସାମାନ୍ୟ ପରିହାସ କରି କହିଲେ, ''ଦିନୁକୁ କହିଦିଅ ଏଠି ଶାନ୍ତିନିକେତନରେ ଅଫିସିଆଲ୍ କଥାସବୁ ଏତେ ତାଡ଼ାତାଡ଼ି ଘଟେ ନାହିଁ ।'' ଶିକ୍ଷକ ସୁଲଭ ଢଙ୍ଗରେ ଏଭଳି କଥା କହିଲେ ସିନା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର୍ ମହାପାତ୍ରଙ୍କ ନିକଟକୁ ଚିଠିଟିଏ ଲେଖି ଆମ କଲେଜ ପିଲା ହାତକୁ ସନ୍ଧ୍ୟା ସୁଦ୍ଧା ବଢ଼େଇ ଦେଲେ । ପିଲାଟି ତା ପରଦିନ ଚିଠି ନେଇ ସକାଳ ଦଶ ବେଳକୁ କଲେଜରେ ହାଜର । ମୁଁ ପ୍ରାୟ ଏଗାରଟା ବେଳକୁ ବିଶ୍ୱବିଦ୍ୟାଳୟରେ କୁଳପତିଙ୍କୁ ଦେଖାକଲି । କୁଳପତି ବିମର୍ଷ ମନରେ ସିଣ୍ଡିକେଟ୍ ମିଟିଙ୍ଗ୍‌ରୁ ବାହାରୁଥିଲେ । ମୁଁ ଚିଠିଟି ତାଙ୍କ ହାତକୁ ବଢ଼େଇଦେବା ବେଳକୁ ସେ କୁଳପତି ପଦରୁ ଇସ୍ତଫା ଦେଇଥିବା କଥା ମୋତେ କହିଲେ । ସମଗ୍ର ଘଟଣାଟି ଯୁଦ୍ଧକାଳୀନ ଭିତ୍ତିରେ ସଂପାଦିତ ସିନା ହେଇଗଲା କିନ୍ତୁ ତା'ର ଫଳାଫଳ ସଂପୂର୍ଣ୍ଣ ନିରାଶାଜନକ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟରେ ଛାତ୍ର ଅଶାନ୍ତି ଲାଗି ରହିଥିଲା ଏବଂ ତାକୁ କେନ୍ଦ୍ରକରି ବଚସା ହେବା ଫଳରେ କୁଳପତି ଇସ୍ତଫା ଦେଲେ ।

କଲେଜରେ କୁଳପତିଙ୍କ ଇସ୍ତଫା ଖବର ପ୍ରଘଟ ହେଇଯିବା ଫଳରେ ଛାତ୍ର ଛାତ୍ରୀଙ୍କ ମନରେ ଅଙ୍କୁରୁଥିବା ଆଶା ପୁଣି ଥରେ ନିରାଶାରେ ପରିଣତ ହେଇଗଲା । ମୋର ମନେହେଉଥିଲା ଯୁଦ୍ଧ ଆହୁରି ବାକି ଅଛି । ଏଣେ ମୋ ତୂଣୀରରୁ ଶର ଶେଷ ହେଇଆସୁଛି । ଲକ୍ଷ୍ମଣ ମହାପାତ୍ରଙ୍କ ପରେ ପରେ ମେଜର ପି.କେ. ଦାଶ କୁଳପତି ହେଇ ଆସିଲେ ! ତାଙ୍କ ସଂପର୍କରେ ଅନେକ କୁତ୍ସା ଶୁଣିବାକୁ ମିଳିଲା । ସିଏ କୁଆଡ଼େ ରିଡର ପାହ୍ୟାରୁ ଭଲରେ ପ୍ରଫେସର ବି ହୋଇନାହାନ୍ତି, ଏଣେ ମୁଖ୍ୟଶାସନ ସଚିବ ସୁଧାଂଶୁ ମିଶ୍ରଙ୍କ ସଂପର୍କୀୟ ବୋଲି ସିଧା କୁଳପତି ଆସନରେ ବସି ଯାଇଛନ୍ତି । କିନ୍ତୁ ଅଧ୍ୟାପକ ଶିବ ପାଣିଗ୍ରାହୀ କହିଲେ ଯେ କୁଳପତି ତାଙ୍କ ପରିବାରର ଲୋକ ଏଣୁ ଆଉ ଏଫିଲିଏସନ୍ ସମସ୍ୟା ରହିବ ନାହିଁ । ଶିବ ପାଣିଗ୍ରାହୀଙ୍କୁ ସାଙ୍ଗରେ ନେଇ ମୁଁ କୁଳପତିଙ୍କ ଅଫିସରେ

Digitized by srujanika@gmail.com

ପହଞ୍ଚିଲି । ମୁଁ ସେଇ କିଛିଦିନ ତଳେ ଜୁରିକ୍‌ରୁ ଫେରିଥାଏ । ଏଣୁ ସାଙ୍ଗରେ କୁଳପତିଙ୍କ ପାଇଁ ସୌଜନ୍ୟ ଦୃଷ୍ଟିରୁ ଗୋଟିଏ ଛୋଟିଆ ଉପହାର ନେଇଥାଏ - ଟେବୁଲ ଉପରେ ଥୋଇବା ପାଇଁ ଗୋଟିଏ ନୋଟ୍ ପ୍ୟାଡ୍ । ଦାମ୍ ଦୃଷ୍ଟିରୁ ଅତି ନଗଣ୍ୟ କିନ୍ତୁ ଲାଗୁଥାଏ ଇନ୍ଦ୍ରଧନୁରୁ ଖଣ୍ଡେ କାଟିଆଣିଥିବା ସମ୍ଭାର ଭଳି । ମୁଁ ପ୍ରଥମେ ଏଫିଲିଏସନ୍ ଜନିତ ସମସ୍ୟା ଏବଂ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ପ୍ରଚଳିତ ପାଠ୍ୟ ଖସଡ଼ାର ବିଶେଷତ୍ୱ ସଂପର୍କରେ କୁଳପତିଙ୍କୁ ଅବଗତ କରାଇଲି । ଆମେ କିଭଳି ଏହି କଲେଜଟିକୁ କେବଳ ଓଡ଼ିଶା ନୁହେଁ, ସାରା ଭାରତ ବର୍ଷରେ ଗୋଟିଏ ଅଗ୍ରଣୀ ଅନୁଷ୍ଠାନ ଭାବେ ଗଢ଼ିବା ପାଇଁ ପ୍ରୟାସ କରୁଛୁ ସେକଥା ମଧ୍ୟ କହିଲି । ଏବେ ଶିବ ବାବୁ କଥାରେ ଲଥା ଯୋଡ଼ିଲେ । କୁଳପତି ଆମ ମହାବିଦ୍ୟାଳୟର ସମସ୍ୟାପ୍ରତି ସହାନୁଭୂତି ପ୍ରକାଶ କଲେ । ପ୍ରଫେସର୍ ମନ୍ମଥନାଥ ଦାସ ଯେମିତି କୁଳପତିଙ୍କ ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରି କଲେଜର ଆରମ୍ଭ ବର୍ଷରେ ଏଫିଲିଏସନ୍ ପାଇଁ ଅନୁମତି ଦେଇଥିଲେ ଠିକ୍ ସେମିତି ଢ଼ଙ୍ଗରେ ମେଜର ଦାଶ ଆମ କଲେଜକୁ ସ୍ୱୀକୃତି ଦେଇ ଦେଲେ । ମହାବିଦ୍ୟାଳୟ ଆକାଶରେ ଘୋଟି ଆସୁଥିବା କାଳ ବୈଶାଖୀ ହଟିଗଲା ।

ଆମ କଲେଜରେ ସରକାରୀ ଯାନବାହନ କହିଲେ ମୋର ବ୍ୟକ୍ତିଗତ ଲାମ୍ବି ସ୍କୁଟର୍ । ସେଥିରେ ଅଧକ୍ଷ-ଅଧ୍ୟାପକ ଦୁଇବନ୍ଧୁ ଫେରୁଛୁ, ନ୍ୟାସନାଲ୍ ହାଇୱେ ଉପରେ ସ୍କୁଟର୍‌ର ତେଲ ସରିଗଲା । ଆମେ ତ ତରବରରେ ବାହାରି ପଡିଛୁ କାହା ପକେଟରେ ଫଟା ଅଧଲାଏଟିଏ ବି ନାହିଁ । ଶିବ ବାବୁ ସାଙ୍ଗରେ ତାଙ୍କ ଆଟାଚି ଆଣି ନାହାନ୍ତି । ଅଗତ୍ୟା ସ୍କୁଟରକୁ ଠେଲିବାକୁ ପଡିଲା । ମୁଁ ଆଗରେ ହ୍ୟାଣ୍ଡଲଧରି ବାଟ କଢ଼ାଉଚି ଆଉ ଶିବବାବୁ ପଛପଟୁ ଠେଲୁଛନ୍ତି । ଏହି ବିଚିତ୍ର ଦୃଶ୍ୟ ଦେଖି ରାସ୍ତାରେ ଯାଉଥିବା ଭୁବନେଶ୍ୱରିଆମାନେ ମୁରୁକି ହସୁଛନ୍ତି । ଜଣେ ବନ୍ଧୁ ଦୟାପରବଶ ହୋଇ କିଛି ଧାର ଉଧାର ଦେବା ଫଳରେ ତେଲ ଭରାହେଲା ଆଉ ଆମେ ଧୂଧୂ ଖରାରେ କଲେଜ ଫେରିଲୁ । ମନେ ହେଉଥିଲା ଆମେ ଗୋଟିଏ ଗଡ଼ ଜିଣି ଫେରିଛୁ ।

Digitized by srujanika@gmail.com

# ୫୩. 'ୱା' ର ସମର୍ ଶୋ

ଭିକ୍ଟୋରିଆ ଆଣ୍ଡ ଆଲବର୍ଟ୍ ମ୍ୟୁଜିୟମ୍‌ର ଗୋଟିଏ ସ୍କୋଲାର୍‌ସିପ୍ ପାଇ ମୁଁ ଲଣ୍ଡନ ଯିବା କଥା ମୁଁ ଆଗରୁ କହିଛି । ଜୁନ୍ ଜୁଲାଇ ମାସ । ଶୀତ ସରିଆସିଥାଏ । ଚାରିଆଡ଼େ ଗ୍ରୀଷ୍ମର ଆବାହନୀ । ବୁଲୁ ବୁଲୁ ଟେଟ୍ ଗ୍ୟାଲେରୀ ଭିତରେ ପଶିଗଲି । ସେତେବେଳକୁ ତାହାହିଁ ଥିଲା ଏକମାତ୍ର ଟେଟ୍ । ଟେଟ୍ ମଡ଼ର୍ଣ୍ଣ ଆହୁରି ଆରମ୍ଭ ହୋଇ ନଥାଏ । ଗ୍ୟାଲେରୀ ବାହାରେ ଟଙ୍ଗା ହୋଇଥିବା ବିରାଟ ଫ୍ଲେକ୍‌ସିର ବୋର୍ଡ଼ରେ ଲେଖା ହୋଇଥିଲା ''ଟେଟ୍ ସମର୍ ଶୋ'' । ଏହି ''ସରମ ଶୋ'' ପରିଭାଷାଟି ମୋତେ କୌତୂହଳୀ କରିଦେଲା । ଭାରତବର୍ଷରେ ବିଶେଷ କରି ଓଡ଼ିଶାରେ ବିଷୁବ ସଂକ୍ରାନ୍ତିରେ ସୂର୍ଯ୍ୟଙ୍କର ଆବାହନ କରାଯାଏ ଏବଂ ଏହି ପାରମ୍ପରିକ ଆବାହନୀ ସହିତ କବିତା ପାଠୋତ୍ସବ ଓ ଚିତ୍ରପ୍ରଦର୍ଶନୀ ଆଦି ଏବେ ଯୋଡ଼ା ହେଲାଣି । ଏସବୁ ଚିତ୍ର ପ୍ରଦର୍ଶନୀରେ କିନ୍ତୁ ନିଦାଘର ଉଦାତ୍ତ ପଣ ନଥାଏ । ଏଣୁ ''ସମର ଶୋ'' କଥାଟି ଆଖିରେ ପଡ଼ିଲା ପରେ ମୁଁ ମନେମନେ ବିଚାରିଲି ଓଡ଼ିଶାରେ ସାଧାରଣ ଭାବେ ଲଳିତ କଳା ଏକାଡେମୀ ପ୍ରାୟ ଶୀତଦିନେ ତା'ର ବାର୍ଷିକ ଚିତ୍ର ପ୍ରଦର୍ଶନୀ କରୁଛି ଏଣୁ ଏଭଳି ଶିତଦିନିଆ-ଗତାନୁଗତିକତାରୁ ହଟି ଆସି ୱାର୍କିଙ୍ଗ୍ ଆର୍ଟିଷ୍ଟ୍ ଆସୋସିଏସନ୍ ('ୱା') ପକ୍ଷରୁ 'ସମର ଶୋ'ର ଆୟୋଜନ କଲେ ତା'ର ଚମକ ରହିବ।

ଲଣ୍ଡନରୁ ଫେରି ୱାର୍କିଙ୍ଗ୍ ଆର୍ଟିଷ୍ଟ୍ ଆସୋସିଏସନ୍‌ର ବନ୍ଧୁମାନଙ୍କ ସହିତ ମୁଁ ମୋର ପରିକଳ୍ପନା ବିଷୟରେ ଆଲୋଚନା କଲି । ସମସ୍ତଙ୍କ ମନକୁ ମୋ ପ୍ରସ୍ତାବଟି ମାନିଲା । 'ସମର୍ ଶୋ' ଆମ ପାଇଁ ଖୁବ୍ ସମୟୋପଯୋଗୀ ଥିଲା । ଖରାଛୁଟିରେ କଲେଜ ବନ୍ଦ । ଏଣୁ ଛବି, ଭାସ୍କର୍ଯ୍ୟ ଆଦି ପ୍ରତିଯୋଗୀମାନଙ୍କଠାରୁ ଗ୍ରହଣ କଲାପରେ କଲେଜରେ ଜମା ରଖିବାର ଅସୁବିଧା ନଥିଲା । କିଛି ଅଧ୍ୟାପକ ଓ ଛାତ୍ର ଛବିପତ୍ର ସଂଗ୍ରହରେ ସହଯୋଗ କରିବାକୁ ଆଗଭର ହେଲେ । ପୁଣି ରାମହରି ଜେନାଙ୍କ କେ ସିକ୍‌ସ ଘର ମଧ୍ୟ 'ସମର୍ ଶୋ' ପାଇଁ ବ୍ୟବହାର କରାଯିବାରେ କୌଣସି ପ୍ରତିବନ୍ଧକ ନଥିଲା ।

ରାମହରି ଜେନା ଓ ମୁଁ ସମର୍ ଶୋ ଲୋଗୋର ପରିକଳ୍ପନା କଲୁ । 'ସମର୍' ର ଇଂରାଜୀ ଆଦ୍ୟ ଅକ୍ଷର 'S' ଏବଂ 'ଶୋ'ର ଆରମ୍ଭ ଅକ୍ଷର 'S' କୁ ଦୁଇଟି ଉଡ଼ନ୍ତା ଚଢ଼େଇ

Digitized by srujanika@gmail.com

ନୀଳ ଆକାଶରେ ସ୍ୱଚ୍ଛନ୍ଦରେ ଉଡ଼ି ଯାଉଥିବାର ଆଭାସ ଦେଇ ଲୋଗୋଟିର ଡିଜାଇନ୍ କରାଗଲା । ଡିଜାଇନ୍‌ଟି ସମସ୍ତଙ୍କ ମନକୁ ମାନିଲା । ପରେପରେ ପ୍ରଦର୍ଶନୀ ନିୟମାବଳୀ ଓ ଛବିରେ ଲଗାଇବା ପାଇଁ ଲେବଲ୍ ଇତ୍ୟାଦି ପ୍ରେସ୍‌ରେ ସୁନ୍ଦର ଭାବେ ଛାପା ହେଇ ୱାର୍କିଙ୍ଗ୍ ଆର୍ଟିଷ୍ଟ୍‌ସ୍ ଆସୋସିଏସନ୍‌ର ଅସ୍ଥାୟୀ ଅଫିସ୍ କେ ସିକ୍‌ସରେ ପହଞ୍ଚିଲା । 'ୱା'ର ବସ୍ତୁତଃ ତିନୋଟି ଅଫିସ ଘର ଥିଲା । ପ୍ରଥମଟି ଘୋଷିତ ଅଫିସ୍ ମୋର ସରକାରୀ ଘର ଥ୍ରି ଆର୍ - ଟୁ ବାଇ ୱାନ୍ କଞ୍ଚନା ଫ୍ଲାଟ୍ । ଦ୍ୱିତୀୟଟି ରାମହରି ଜେନାଙ୍କ ବସାଘର କେ ସିକ୍‌ସ ଏବଂ ଶେଷରେ କଲେଜର କେ ଏଇଟ୍ କୋଠା । ଏହି ଘରଗୁଡ଼ିକର ପାଖାପାଖି ଅବସ୍ଥିତି ଯୋଗୁଁ ପ୍ରଦର୍ଶନୀ କାମ କରେଇ ନେବାରେ ଅସୁବିଧା ନଥିଲା । ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର କାର୍ଯ୍ୟନିର୍ବାହୀ ସଦସ୍ୟ ଥାଏ । ଏଣୁ ଏକାଡେମୀ ପ୍ରଶାସନକୁ ପ୍ରଭାବିତ କରି 'ୱା' ପାଇଁ ଅନୁଦାନ ଯୋଗାଡ଼ କରିବାରେ ଅସୁବିଧା ହୁଏନି ।

'ୱା'ର ଅଧିକାଂଶ କାର୍ଯ୍ୟକ୍ରମ ଆମର ପ୍ରତିଦ୍ୱନ୍ଦ୍ୱୀ ଅନୁଷ୍ଠାନ ଓଡ଼ିଶା ଲଳିତ କଳା ଏକାଡେମୀଠାରୁ ଯେଭଳି ଅଧିକ ସାଫଲ୍ୟ ହେବ, କାର୍ଯ୍ୟପ୍ରଣାଳୀର ମାନ ଉନ୍ନତ ହେବ ସେଥିପ୍ରତି ଆମେ ଧ୍ୟାନ ଦେଉଥିଲୁ । ସର୍ବୋପରି ରାଜ୍ୟ ଲଳିତକଳା ଏକାଡେମୀ ଆକ୍ରୋଶ ରଖି ଆମ ଛାତ୍ରଛାତ୍ରୀଙ୍କୁ ପୁରସ୍କାର ଦେବାରୁ ବଞ୍ଚିତ କରିଦେଉଥିବାରୁ ଆମେ ତା'ର ପ୍ରତିକାର କରିବା ମଧ୍ୟ 'ୱା ସମର ଶୋ'ର ଉଦ୍ଦେଶ୍ୟ ଥିଲା । କେବଳ ଯେ ଛାତ୍ରଛାତ୍ରୀ ଏକାଡେମୀର ଏଭଳି ପାତର ଅନ୍ତର ବ୍ୟବହାରର ଶରବ୍ୟ ଦେଉଥିଲେ ତା' ନୁହେଁ 'ୱା'ର ଅନେକ ଶୁଭେଚ୍ଛୁ ଶିଳ୍ପୀବଂଧୁ ମଧ୍ୟ କୋପଦୃଷ୍ଟିରେ ପଡୁଥିଲେ । ଲଳିତ କଳା ଏକାଡେମୀର ଏଭଳି କାର୍ଯ୍ୟକଳାପ ସଂପର୍କରେ ଆମେ ସଚେତନ ଥିଲୁ ଏଣୁ ସମୟ ସୁଯୋଗ ଉଣ୍ଡି ତାହାର ଜବାବ ଦେବା 'ୱା' ର ଉଦ୍ଦେଶ୍ୟ ରହୁଥିଲା ।

ଆମେ ଯେ ରାଜ୍ୟ ଲଳିତ କଳା ଏକାଡେମୀଠାରୁ କଳାରେ ନୂତନ ଝଲକ୍ ଓ ଚିନ୍ତା ପ୍ରକଟ କରିବାରେ ଅଗ୍ରଣୀ ଥିଲୁ ତାହା ସେ ସମୟରେ ପ୍ରକାଶିତ 'ୱା'ର ପୁସ୍ତକ ଓ କ୍ୟାଟଲଗ୍ ଗୁଡ଼ିକୁ ଦେଖିଲେ ପରିଷ୍କାର ବୁଝି ହେଇଯିବ । ୧୯୮୯ ମସିହାରେ ଆୟୋଜିତ 'ୱା' ର ପ୍ରଥମ 'ସମର୍ ଶୋ' କ୍ୟାଟ୍‌ଲଗ୍ ର ଶୀର୍ଷକ ଥିଲା। 'ପ୍ରଥମ ରାଜ୍ୟସ୍ତରୀୟ ସାଂପ୍ରତିକ ଚିତ୍ରକଳାର ପ୍ରଦର୍ଶନୀ' । ଏହି ପ୍ରଦର୍ଶନୀ କେବଳ ବିଜ୍ଞାପିତ ବାକ୍ୟ ମଧ୍ୟରେ ସୀମିତ ଥିଲା, ତା' ନୁହେଁ, ବରଂ ବିଜ୍ଞାପିତ ବାକ୍ୟର ଯଥାର୍ଥତାକୁ ପ୍ରତିପାଦନ କରିବା ପାଇଁ ଆମେ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରିବାକୁ ପଛଉ ନଥିଲୁ । ରାଜ୍ୟସ୍ତରୀୟ ପ୍ରଦର୍ଶନୀମାନଙ୍କରେ କଳାକୃତି ଚୟନ ଓ ପୁରସ୍କାର ପ୍ରଦାନର ନିରପେକ୍ଷତାକୁ ବଜାୟ ରଖିବା ପାଇଁ ଆମେ ରାଜ୍ୟ ଲଳିତ କଳା ଏକାଡେମୀର ପ୍ରଦର୍ଶନୀମାନଙ୍କୁ ଓଡ଼ିଶା ବାହାରୁ ବିଶିଷ୍ଟ ଶିଳ୍ପୀମାନଙ୍କୁ ନିମନ୍ତ୍ରିତ କରି ଆଣିବା ପାଇଁ ଦାବି କରୁଥିଲୁ । ଏଣୁ ଆମେ 'ସମର

Digitized by srujanika@gmail.com

ଶୋ' ପାଇଁ କେନ୍ଦ୍ର ଲଳିତ କଳା ଏକାଡେମୀର ଲକ୍ଷ୍ନୌ ଆଞ୍ଚଳିକ କେନ୍ଦ୍ରର ଅବୈତନିକ କ୍ଷେତ୍ର ସଚିବ ଅଖିଳେଶ ନିଗମ, ଆନ୍ଧ୍ରପ୍ରଦେଶର ପ୍ରଖ୍ୟାତ ଚିତ୍ରଶିଳ୍ପୀ ପି.ଏସ୍. ଚନ୍ଦ୍ରଶେଖର ଏବଂ ମେଡ୍ରାସ୍ କଳା ମହାବିଦ୍ୟାଳୟର ପ୍ରଫେସର୍ ସି. ଦକ୍ଷିଣାମୂର୍ତ୍ତିଙ୍କୁ ନିମନ୍ତ୍ରଣ କରି ଆଣିଥିଲୁ । ଏମାନେ ସମସ୍ତେ କେନ୍ଦ୍ର ଲଳିତ କଳା ଏକାଡେମୀର ସାଧାରଣ ପରିଷଦର ସଭ୍ୟ ଥିଲେ ଓ ମୋର ଘନିଷ୍ଠ ବନ୍ଧୁ ହୋଇଥିବାରୁ ଉଡାଜାହାଜ ଯାତ୍ରା ଭୁଲି ଶୀତତାପ ନିୟନ୍ତ୍ରିତ ଦ୍ୱିତୀୟ ଶ୍ରେଣୀରେ ଯାତ୍ରା କରିବାକୁ ଶ୍ରେୟଃ ମଣିଥିଲେ । ଭୁବନେଶ୍ୱରରେ ସେଭଳି ଶିଳ୍ପୀଙ୍କ ଉପସ୍ଥିତି, ବିଶେଷ କରି ଆମ କଲେଜରେ ସେମାନଙ୍କ ପାଦ ପଡ଼ିବା ଓ କଲେଜର ଶିକ୍ଷା କାର୍ଯ୍ୟକ୍ରମ ସହିତ ସଂପୃକ୍ତ ହେବା ଆମ ପାଇଁ ଗୌରବର ବିଷୟ ଥିଲା । କୋଡ଼ିଏ ବାଇଶି ବର୍ଷ ତଳେ ଭୁବନେଶ୍ୱରରେ ଜାତୀୟ ସ୍ତରର ଶିଳ୍ପୀଙ୍କ ଆତଯାତ ଏତେ ନଥିଲା । ଏଣୁ ଏଭଳି ଗୋଟିଏ ଘଟଣା ଏବେ ସାମାନ୍ୟ ମନେ ହେଉଥିଲେ ହେଁ, ସାମ୍ପ୍ରତିକ ଓଡ଼ିଶାର କଳାର ବିକାଶରେ ଏହା ଏକ ଐତିହାସିକ ପଦକ୍ଷେପ । ବର୍ତ୍ତମାନ ତ ଓଡ଼ିଶା ଲଳିତ କଳା ଏକାଡେମୀରେ ଅର୍ଥର ସୁଅ ଛୁଟିଛି । କିନ୍ତୁ ଅର୍ଥର ପର୍ଯ୍ୟାପ୍ତ ଉପଲବ୍ଧି ସତ୍ତ୍ୱେ ଏକାଡେମୀରେ ସନ୍ତୁଳିତ କାର୍ଯ୍ୟକ୍ରମର ଘୋର ଅଭାବ ପରିଲକ୍ଷିତ ହୁଏ ଏବଂ ଆମ ପ୍ରଦେଶର ଓଡ଼ିଶା ଶିଳ୍ପୀଙ୍କୁ ପ୍ରୋତ୍ସାହନ ନ ଦେଇ ସର୍ବଭାରତୀୟ ପ୍ରଦର୍ଶନୀ କରିବାରେ ଏକାଡେମୀର ଆସ୍ପର୍ଦ୍ଧା ବାରି ହେଉଥାଇପାରେ କିନ୍ତୁ ଏଭଳି କାର୍ଯ୍ୟକ୍ରମରେ ତୃଣମୂଳ ସ୍ତରର ଶିଳ୍ପକଳା ଓ ଶିଳ୍ପୀଙ୍କର ଆଶା ଭରସାକୁ ପୁନର୍ଜୀବିତ କରିବାର ଦାୟିତ୍ୱବୋଧକୁ ଏକାଡେମୀ ତୁଲାଇ ପାରେ ନାହିଁ ।

'ଓ୍ୱା'ଦ୍ୱାରା ନିମନ୍ତ୍ରିତ ହୋଇ ଆସିଥିବା ବିଚାରକ ମଣ୍ଡଳୀର ସଭ୍ୟମାନେ ଶହେ ତିନିଗୋଟି ଚିତ୍ର, ବୟାଳିଶିଗୋଟି ଗ୍ରାଫିକ୍ ପ୍ରିଣ୍ଟ ଏବଂ ଚବିଶି ଗୋଟି ଭାସ୍କର୍ଯ୍ୟ ପ୍ରଦର୍ଶନୀ ପାଇଁ ଦାଖଲ ହୋଇଥିବା ଶହେ ପଞ୍ଚାନବେ ଜଣ ଶିଳ୍ପୀଙ୍କ ତିନିଶହ ଦଶଗୋଟି କଳାକୃତିରୁ ମନୋନୀତ କରିଥିଲେ । ଏତେଗୁଡ଼ିଏ କଳାକୃତି ଗୋଟିଏ ବେସରକାରୀ ସଂସ୍ଥାର ଚିତ୍ର ପ୍ରଦର୍ଶନୀରେ ଦାଖଲ ଦେଇଥିବା ନିଶ୍ଚୟ ଉଲ୍ଲେଖନୀୟ । ଏହି ପ୍ରଦର୍ଶନୀରେ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇ ଦଶଜଣ ବରିଷ୍ଠ ଶିଳ୍ପୀ ସେମାନଙ୍କ କଳାକୃତି ପ୍ରଦର୍ଶନ କରିଥିଲେ । ସେମାନେ ହେଲେ ଅସୀମ ବସୁ, ଅଜିତ କୁମାର ବୀର, ଦୁର୍ଗାପ୍ରସାଦ ଦାସ, ଗୋକୁଳି ବିହାରୀ ପଟ୍ଟନାୟକ, ଅଜିତ କେଶରୀ ରାୟ, ଯଶପାଲ ସିଂହ, ଲକ୍ଷ୍ମୀ ନାରାୟଣ ସାହୁ ଓ ମୁରଲୀଧର ଟାଲି । ଏହି ନିମନ୍ତ୍ରିତ ଶିଳ୍ପୀଙ୍କ ବିଭାଗଟି ପ୍ରତିଯୋଗିତା ପାଇଁ ଉଦ୍ଦିଷ୍ଟ ହୋଇଥିବା ବିଭାଗଠାରୁ ଅଲଗା । ଅଣ-ପ୍ରତିଯୋଗୀ ବିଭାଗରେ ମୁଖ୍ୟତଃ 'ଓ୍ୱା'ର କର୍ମକର୍ତ୍ତା ଓ କଲେଜର କିଛି ଅଧ୍ୟାପକଙ୍କ କଳାକୃତି ପ୍ରଦର୍ଶିତ ହୋଇଥିଲା । ସେମାନେ ହେଲେ ଗଙ୍ଗାଧର ଆଚାର୍ଯ୍ୟ, ଅଂଜନ କୁମାର, ଚନ୍ଦ୍ରମଣି ବିଶ୍ୱାଳ, ଜୟନ୍ତ ଦାସ, ରାମହରି ଜେନା, ଅମର କୁମାର

Digitized by srujanika@gmail.com

ଜେନା, ବଳଦେବ ମହାରଥୀ, ବ୍ୟୋମକେଶ ମହାନ୍ତି, ମହେନ୍ଦ୍ର ପ୍ରସାଦ ମହାପାତ୍ର, ରବିନାରାୟଣ ନାୟକ, ଶିବ ପାଣିଗ୍ରାହୀ, ଡି.ନାରାୟଣ ରାଓ, ଏନ୍.ଚନ୍ଦ୍ରଶେଖର ରାଓ ଓ ସୁଧାଂଶୁ ଶେଖର ଶତପଥି । ଏହି ବିଭାଗରେ ମୋର ଗୋଟିଏ ତୈଳଚିତ୍ର ମଧ୍ୟ ଅନ୍ତର୍ଭୁକ୍ତ ହୋଇଥିଲା । ଗତାନୁଗତିକତାଠାରୁ ଭିନ୍ନ କରିବା ପାଇଁ ଶିବ ପାଣିଗ୍ରାହୀଙ୍କୁ ଏହି ପ୍ରଦର୍ଶନୀର କମିଶନର୍ ଭାବେ ଏବଂ ବଳଦେବ ମହାରଥୀଙ୍କୁ ଆବାହକ ଭାବେ 'ଓ୍ୱା' ମନୋନୀତ କରିଥିଲା ।

'ଓ୍ୱା'ର ଏହି ପ୍ରଥମ 'ସମର୍ ଶୋ'ରେ ଦଶଜଣ ଶିଳ୍ପୀଙ୍କ କଳାକୃତି ପୁରସ୍କୃତ ହୋଇଥିଲା । ସେମାନେ ହେଲେ ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଆର୍ତ୍ତବନ୍ଧୁ ରାଉତ, ଅପର୍ଣ୍ଣା ରାୟ, ଅମ୍ବିକା ପ୍ରସାଦ ମହାପାତ୍ର, ବିପିନ ବିହାରୀ ସାହୁ, କାଶୀନାଥ ଜେନା, ସୁବ୍ରତ ମଲ୍ଲିକ, ରାଜେନ୍ଦ୍ର ନାରାୟଣ ସାହୁ, ସଂଗ୍ରାମ କେଶରୀ କର ଓ ଭି. ସୂର୍ଯ୍ୟନାରାୟଣା । ଏହି ଦଶଜଣ ପୁରସ୍କାର ବିଜେତାଙ୍କ ମଧ୍ୟରୁ ସାତଜଣ ଆମ ମହାବିଦ୍ୟାଳୟର ଛାତ୍ର ଓ ଛାତ୍ରୀ ଥିଲେ । 'କାକତାଳ ନ୍ୟାୟ' ଭଳି ଯେଉଁ ତିନିଜଣ ଶିଳ୍ପୀ ଏହି ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲେ ସେମାନେ ଆଉ ଇହଜଗତର ନାହାନ୍ତି । ପୁରସ୍କୃତ ଶିଳ୍ପୀଙ୍କ ମଧ୍ୟରୁ ସୁବ୍ରତ ମଲ୍ଲିକ, ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟର ଚିତ୍ର ବିଭାଗର ଅଧ୍ୟାପକ ଅଛି । ଏହି ପ୍ରଦର୍ଶନୀରେ ସ୍ଥାନିତ ହୋଇଥିବା ଆର୍ତ୍ତବନ୍ଧୁ ରାଉତଙ୍କ ପ୍ଲାଷ୍ଟିକ୍‌ରେ ତିଆରି କୁଆଟି ପରେ ପରେ ଦ୍ୱିତୀୟ ଭାରତ ଭବନ ବିନାଲେ ରେ ପୁରସ୍କୃତ ହୋଇ ଆମ କଲେଜ ପାଇଁ ଗୌରବ ଆଣିଦେଇଥିଲା । ବିନାଲେରେ ବିଶିଷ୍ଟ ଶିଳ୍ପୀ ମକ୍‌ବୁଲ୍ ଫିଦା ହୁସେନ୍ ଜୁରୀ ଥିଲେ ଏବଂ ଏହି ଅଭିନବ ଭାସ୍କର୍ଯ୍ୟଟି ଭୋପାଳର ରୂପଙ୍କର ସଂଗ୍ରହାଳୟ ପାଇଁ ମନୋନୀତ ହୋଇଥିଲା ।

'ସମର ଶୋ'ର ଉଦ୍‌ଘାଟନ ଉତ୍ସବ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରରେ ଏକ ଭିନ୍ନ ଢଙ୍ଗରେ ସଂପନ୍ନ କରାଯାଇଥିଲା । ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ରଘୁନାଥ ପାଣିଗ୍ରାହୀ ଏହି ପ୍ରଦର୍ଶନୀକୁ ଉଦ୍‌ଘାଟନ କରିଥିଲେ । ଚଟାଣ ଉପରେ ବିଭିନ୍ନ ଶସ୍ୟର ଏକ ପଦ୍ମମଣ୍ଡଳ ତିଆରି କରାଯାଇ ତା' ଉପରେ ଗୋଟିଏ ବିରାଟ ପିତଳ ହଣ୍ଡା ରଖାଯାଇଥିଲା ଏବଂ ମୁଖ୍ୟ ଅତିଥି ଏଥିରେ ମହାନଦୀର ଜଳ ଢାଳିବା ପରେ ଅନ୍ୟାନ୍ୟ ଅତିଥିମାନେ ଓଡ଼ିଶାର ବିଭିନ୍ନ ନଦୀମାନଙ୍କରୁ ଅଣାଯାଇଥିବା ଜଳ ଢାଳି ଏକ ମହାର୍ଣ୍ଣବର ପରିକଳ୍ପନାରେ ନିଜକୁ ସାମିଲ କରିଥିଲେ । ବୀଜ ଓ ଜଳର ସଂଗତି ସୃଷ୍ଟିର ପ୍ରତୀକ ଭାବେ ଏବଂ ନିଦାଘ ସୂର୍ଯ୍ୟ ସୃଷ୍ଟିର ନିୟାମକ ଭାବେ ନିଜର ଉପସ୍ଥିତି ଏହି ପ୍ରଦର୍ଶନୀ ମାଧ୍ୟମରେ ସୂଚାଇ ଦେଉଥିଲେ । ଇଂଲଣ୍ଡ ଟେଟ୍ ଗ୍ୟାଲେରୀର 'ସମର ଶୋ' ଭୁବନେଶ୍ୱର ଭାରତୀୟ ସଂସ୍କୃତିର ପରିପ୍ରେକ୍ଷୀରେ ଏକ ନୂତନ- ସର୍ଜନଭାବର ଦ୍ୟୋତକ ଥିଲା । ସୂର୍ଯ୍ୟ ହିଁ ପ୍ରତ୍ୟକ୍ଷ ଓ ଦୃଶ୍ୟମାନ ଈଶ୍ୱର ।

Digitized by srujanika@gmail.com

ତାଙ୍କ ବିନା ଏ ସୃଷ୍ଟି ଅସମ୍ଭବ । ଓଡ଼ିଆ ଶିଳ୍ପୀ ତ ସୂର୍ଯ୍ୟୋପାସନାର ନାନ୍ଦନିକତାକୁ ନେଇ କଳାର ଶୀର୍ଷସ୍ଥାନରେ ଥୋଇ ଦେଇଛି । କୋଣାର୍କ ମନ୍ଦିର ସେହି ନାନ୍ଦନିକତାର ଶ୍ରେଷ୍ଠ ନିଦର୍ଶନ । କୋଣାର୍କ ତୁଳନାରେ 'ଓ୍ୱା'ର 'ସମର ଶୋ' ଏକ ସାମାନ୍ୟ ପ୍ରଦର୍ଶନୀ ହୋଇପାରେ । କିନ୍ତୁ ଏହି ପ୍ରଦର୍ଶନୀର ଭିତ୍ତି ଓ ଆଦର୍ଶ ଓଡ଼ିଆ ଶିଳ୍ପ ପରମ୍ପରାର ମହନୀୟତା ବହନ କରେ ।

ଏହି ପ୍ରଦର୍ଶନୀ ଉପରେ ଆଧାରିତ ଗୋଟିଏ କୌତୂହଳପୂର୍ଣ୍ଣ ଘଟଣାର ଉଲ୍ଲେଖ ଆବଶ୍ୟକ ମନେହୁଏ । ଏହି ପ୍ରଦର୍ଶନୀରେ ପୁରସ୍କୃତ ସୁବ୍ରତ ମଲ୍ଲିକ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ୍‌ଦ୍ୱାରା ବିଜ୍ଞାପିତ ହୋଇଥିବା ଖଲ୍ଲିକୋଟ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଚିତ୍ରବିଭାଗର ଅଧ୍ୟାପକ ପାଇଁ ଦରଖାସ୍ତ କରିଥିଲା । ପାର୍ଥିତ୍ୱ ପାଇଁ ଯୋଗ୍ୟ ବିବେଚିତ ହେବାକୁ ହେଲେ ପ୍ରାର୍ଥୀ ଅନ୍ୟାନ୍ୟ ଯୋଗ୍ୟତା ସହ ରାଜ୍ୟସ୍ତରୀୟ ଚିତ୍ର ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିବା ବାଞ୍ଛନୀୟ । କମିଶନଙ୍କ ଧାରଣାରେ ଥିଲା ଯେ ଲଳିତ କଳା ଏକାଡେମୀ ଦ୍ୱାରା ଆୟୋଜିତ ଚିତ୍ର ପ୍ରଦର୍ଶନୀ ହିଁ ରାଜ୍ୟସ୍ତରୀୟ ହେବାପାଇଁ ଯୋଗ୍ୟ । ଏଭଳି ଗୋଟିଏ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ କମିଶନ୍ ସୁବ୍ରତ ମଲ୍ଲିକଙ୍କ ଦରଖାସ୍ତଟିକୁ ପ୍ରଥମରୁ ହିଁ ନାକଚ କରିଦେଲେ ଏବଂ ସେ ସାକ୍ଷାତକାରରେ ହାଜର ହେବା ପାଇଁ ସୁଯୋଗ ପାଇଲା ନାହିଁ । ସୁବ୍ରତ ନ୍ୟାୟାଳୟର ଦ୍ୱାରସ୍ଥ ହେଲା । ଏବଂ ବିଚାରପତି ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍‌ର ପ୍ରଦର୍ଶନୀ ପୁସ୍ତିକା ଏବଂ ସେଥିରେ ଓଡ଼ିଶା ବାହାରର ତିନିଜଣ ବିଚାରକ ଦେଇଥିବା ଅଭିମତ ତଥା ପ୍ରଦର୍ଶନୀ ପାଇଁ ଅନୁସୃତ ପଦ୍ଧତି ଓ ଚୟନ ପ୍ରକ୍ରିୟାର ସ୍ୱଚ୍ଛତାର ପର୍ଯ୍ୟାଲୋଚନା କରି ସୁବ୍ରତ ମଲ୍ଲିକକୁ ସାକ୍ଷାତକାରରେ ଯୋଗଦେବା ପାଇଁ ସୁଯୋଗ ଦେବାକୁ କମିଶନ୍‌ଙ୍କୁ ନିର୍ଦ୍ଦେଶ ଦେଲେ । ଏଠାରେ ଉଲ୍ଲେଖ କରିବା ବାହୁଲ୍ୟ ଯେ ସୁବ୍ରତ ସାକ୍ଷାତକାରରେ ଅଧ୍ୟାପକପଦବୀ ପାଇଁ ଯୋଗ୍ୟ ବିବେଚିତ ହୋଇଥିଲା ।

ପରେ ଅନୁସନ୍ଧାନରୁ ଜଣାପଡ଼ିଲା ଯେ ବେସରକାରୀ ସଂସ୍ଥା ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟ୍‌ସ୍ ଆସୋସିଏସନ୍‌ର କାର୍ଯ୍ୟକ୍ରମ ଓଡ଼ିଶା ପରିପ୍ରେକ୍ଷୀରେ କୌଣସି ଗୁରୁତ୍ୱ ନାହିଁ ବୋଲି ବିଶ୍ୱାସ କରୁଥିବା ଏବଂ ଆମ କଲେଜର କାର୍ଯ୍ୟକ୍ରମରେ ଅସୂୟା ପରବଶ ହୋଇଥିବା ଜନୈକ ଶିଳ୍ପୀ 'ଓ୍ୱା' ଦ୍ୱାରା ପ୍ରଦତ୍ତ ରାଜ୍ୟ ପୁରସ୍କାରକୁ ଲଳିତ କଳା ଏକାଡେମୀ ପୁରସ୍କାର ସହିତ ସମକକ୍ଷ ବୋଲି କହିବା ପାଇଁ କୁଣ୍ଠା ପ୍ରକାଶ କରି କମିଶନଙ୍କ ଦପ୍ତରରେ ଏଭଳି ଅସୌଜନ୍ୟମୂଳକ କାଣ୍ଡ ଘଟାଇଥିଲେ ।

Digitized by srujanika@gmail.com

# ୫୪. ସି.ସି.ଆର୍.ଟି. ର ପଟଚିତ୍ର ଓ ଛଉ କର୍ମଶାଳା

ସି.ସି.ଆର୍.ଟି (ସେଣ୍ଟର୍ ଫର୍ କଲ୍‌ଚରାଲ୍ ରିସୋର୍ସେସ୍ ଆଣ୍ଡ୍ ଟ୍ରେନିଙ୍ଗ୍) ବା ସାଂସ୍କୃତିକ ସ୍ରୋତ ଓ ପ୍ରଶିକ୍ଷଣ କେନ୍ଦ୍ର ଆମ କଲେଜରେ ସର୍ବଭାରତୀୟ ଶିକ୍ଷକ ସାଂସ୍କୃତିକ ସଚେତନ ଶିବିର ଆୟୋଜନ କରିଥିବା କଥା ଆଗରୁ ମୁଁ ଉଲ୍ଲେଖ କରିଛି । ଏହି କେନ୍ଦ୍ରଟି ସେତେବେଳେ ନୂଆଦିଲ୍ଲୀର ମଣ୍ଡିହାଉସ୍ ଛକ ବାହୱ୍ୱଲପୁର ହାଉସ୍ ହତା ମଧ୍ୟରେ ଥାଏ । ମିସ୍ ପ୍ରେମଲତା ପୁରୀ କେନ୍ଦ୍ରର ନିର୍ଦ୍ଦେଶିକା ଥାଆନ୍ତି । ସାରା ଭାରତର ସ୍କୁଲ ଶିକ୍ଷକଙ୍କୁ ଏଠାରେ ବର୍ଷସାରା କ୍ରମାନ୍ୱୟରେ ପ୍ରଶିକ୍ଷଣ ଦିଆଯାଏ । ଭାରତବର୍ଷର ବିଭିନ୍ନ ପ୍ରାନ୍ତୀୟ ସଂସ୍କୃତି ଓ ଲୋକକଳା ସଂପର୍କରେ ବିଶେଷ ତଥ୍ୟ ପ୍ରଦାନ କରାଯାଏ । ସାଧାରଣ ଶିକ୍ଷା ସହିତ ସାଂସ୍କୃତିକ ସଚେତନତାର ଅବବୋଧ ପାଇଁ ଭାରତବର୍ଷର ବିଭିନ୍ନ ଚିତ୍ରଶିଳ୍ପୀ, ସଂଗୀତଜ୍ଞ ଓ ନୃତ୍ୟଶିଳ୍ପୀଙ୍କୁ ସେମାନଙ୍କ କଳା ପ୍ରଦର୍ଶନ କରିବା ପାଇଁ କେନ୍ଦ୍ରକୁ ନିମନ୍ତ୍ରଣ କରାଯାଇଥାଏ ।

ଗୋଟିଏ ବର୍ଷ କେନ୍ଦ୍ର ତାର ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଓଡ଼ିଶାର ପଟଚିତ୍ର ଓ ଛଉନୃତ୍ୟକୁ ନେଇ ଗୋଟିଏ କର୍ମଶାଳାର ଆୟୋଜନ କରିଥାଏ ଏବଂ ବୈଷୟିକ ବିଶେଷଜ୍ଞ ଭାବେ ଓଡ଼ିଶାରୁ ଧୀରେନ୍ଦ୍ର ନାଥ ପଟ୍ଟନାୟକ (ଧୀରେନ୍ ପଟ୍ଟନାୟକ) ଓ ମୋତେ ନିମନ୍ତ୍ରିତ କରିଥାଏ । ମୁଁ ବିଭିନ୍ନ କାର୍ଯ୍ୟବ୍ୟସ୍ତତା ଯୋଗୁଁ ଉଡ଼ାଜାହାଜରେ ଯାଇ ଦିଲ୍ଲୀରେ ପହଞ୍ଚି ଥାଏ ଏବଂ ଧୀରେନ୍ ବାବୁ ନିୟମ ପାଳନ କରି ରେଳରେ ଗସ୍ତ କରିଥାନ୍ତି । ଏହି କର୍ମଶାଳାରେ ଯୋଗ ଦେବା ପାଇଁ ମୁଁ ଦୁଇଟି ଅମୋଘ ଅସ୍ତ୍ର ସାଙ୍ଗରେ ନେଇଥାଏ । ସେଥିରୁ ଗୋଟିଏ ହେଲା ପଟଚିତ୍ରର ସଂକ୍ଷିପ୍ତ ଇତିହାସ, ଜଗନ୍ନାଥଙ୍କ ସେବାରେ ପଟଚିତ୍ରର ଭୂମିକା, ପଟଚିତ୍ରର ବର୍ଣ୍ଣପ୍ରକରଣ, ପଟି ପ୍ରସ୍ତୁତ କରିବାର ପ୍ରଣାଳୀ ଇତ୍ୟାଦି ବିଷୟବିନ୍ୟାସ ଥାଇ ଗୋଟିଏ ମନୋଗ୍ରାଫ୍ । ମନୋଗ୍ରାଫ୍‌ଟି ମୁଁ ଓଡ଼ିଆରେ ପ୍ରସ୍ତୁତ କରିଥିଲି । ଶଙ୍କରଲାଲ ପୁରୋହିତ ତାର ହିନ୍ଦୀ ଅନୁବାଦ କରିଥିଲେ । ମନୋଗ୍ରାଫ୍‌ଟିର ଶୀର୍ଷକ ଥିଲା ''ଉତ୍କଳକୀ ପାରମ୍ପରିକ ଚିତ୍ରକଳା : ପଟଚିତ୍ର ।'' ଷୋହଳ ପୃଷ୍ଠାର, କୋଡ଼ିଏ ସେଣ୍ଟିମିଟର୍ ଚଉଡ଼ା ଏବଂ ବତିଶ ସେଣ୍ଟିମିଟର୍ ଲମ୍ବାର ଗୋଟିଏ ମନୋଗ୍ରାଫ୍ । ମନୋଗ୍ରାଫ୍‌ଟି ଟାଇପ୍ ରାଇଟର୍‌ରେ ଟାଇପ୍ ହୋଇ ଜେରକ୍ସ କରାଯାଇଥିଲା । ଅନ୍ୟଟି ହେଲା ପର୍ଯ୍ୟଟନ ଉନ୍ନୟନ

Digitized by srujanika@gmail.com

ନିଗମ  ଦ୍ୱାରା ପ୍ରକାଶିତ ଏକ ପଟଚିତ୍ର ପୋର୍ଟ୍‌ଫୋଲିଓ । ମୁଁ ପର୍ଯ୍ୟଟନ ନିଗମରେ ମଣ୍ଡଳାଧିକାରୀ ଥିଲାବେଳେ ଏହା ପ୍ରସ୍ତୁତ କରାଯାଇଥିଲା । ଉଭୟ ମନୋଗ୍ରାଫ୍ ଓ ପୋର୍ଟ୍‌ଫୋଲିଓରୁ ଶହେ କୋଡ଼ିଏ ଖଣ୍ଡ ଲେଖେ ମୁଁ ସାଙ୍ଗରେ ନେଇ ଯାଇଥିଲି । କର୍ମଶାଳାରେ ଏଗୁଡ଼ିକ ଶିକ୍ଷକଙ୍କ ମଧ୍ୟରେ ବିତରଣ କରିଦେଲା ପରେ ସେମାନଙ୍କ ଉତ୍ସାହ ଲକ୍ଷ୍ୟ କରିବାର କଥା । ଏଗୁଡ଼ିକରେ ଏତେକରି ଶିକ୍ଷଣୀୟ ବିଷୟ ଥିଲା ଯେ ପଟଚିତ୍ର ସଂପର୍କରେ ଆଉ ଅଧିକା କିଛି ଜାଣିବାର ଆବଶ୍ୟକତା ସେମାନେ ଅନୁଭବ କରି ନଥିଲେ । ଅନ୍ତତଃ କର୍ମଶାଳା ପରିପ୍ରେକ୍ଷୀରେ ଏ ଜାଣିବା ସେମାନଙ୍କ ପାଇଁ ଯଥେଷ୍ଟ ଥିଲା ଏବଂ ଅଧିକ ଅନୁସନ୍ଧିତ୍ସୁ ଶିକ୍ଷକଙ୍କ ପାଇଁ ମୋ ପାଖରେ ମୋର ଇଂରେଜ ବହି 'ଟ୍ରେଡିସ୍‌ନାଲ୍ ପେଣ୍ଟିଙ୍ଗ୍‌ସ୍ ଅଫ୍ ଓଡ଼ିଶା' ମଧ୍ୟ ମହଜୁଦ ଥିଲା ।

ଧୀରେନ୍ ପଟ୍ଟନାୟକ ଛଉନୃତ୍ୟ ସଂପର୍କରେ ବହୁ ତଥ୍ୟ ଜାଣିଥିଲେ । ତାଙ୍କ ଘର ରାଇରଙ୍ଗପୁର ହୋଇଥିବାରୁ ସେ ବାରିପଦା ଛଉ ନୃତ୍ୟକୁ ନେଇ ସବିସ୍ତୃତ ଗବେଷଣା କରିଥିଲେ ଏବଂ ଛଉନୃତ୍ୟ ସଂପର୍କରେ ତାଙ୍କର ବହି ମଧ୍ୟ ପ୍ରକାଶିତ ହୋଇଥିଲା । କିନ୍ତୁ ସେ ନିଜର ସ୍ମୃତି ଓ ଅନୁଭୂତି ଉପରେ ନିର୍ଭର କରି ଖାଲି ହାତରେ କର୍ମଶାଳାରେ ଉପସ୍ଥିତ ହୋଇଯାଇଥିଲେ ।

ଏହି କର୍ମଶାଳାଟି କପିଳା ବାତ୍ସ୍ୟାୟନଙ୍କ ଦ୍ୱାରା ଉଦ୍‌ଘାଟିତ ହେଇଥିଲା । କପିଳା ବାତ୍ସାୟନ ତାଙ୍କ ଉଦ୍‌ଘାଟନୀ ଭାଷଣରେ ଗୋଟିଏ  ଗୁରୁତ୍ୱପୂର୍ଣ୍ଣ କଥା କହିଥିଲେ ଯାହା ଉଭୟ ବୈଷୟିକ ବିଶେଷଜ୍ଞଙ୍କ ପାଇଁ ଏକ ସମସ୍ୟା ଥିଲା । ସମସ୍ୟାର ସମାଧାନ ନ ହେଇପାରିଲେ କର୍ମଶାଳାର ମୂଳ ଉଦ୍ଦେଶ୍ୟ - 'ସାଧାରଣ ଶିକ୍ଷାରେ ଉଭୟ ପଟଚିତ୍ର ଓ ଛଉନୃତ୍ୟର ପ୍ରୟୋଗ' ବ୍ୟାହତ ହେବାର ଯଥେଷ୍ଟ ଆଶଙ୍କା ଉପୁଜିଲା । ବାସ୍ତବ କ୍ଷେତ୍ରରେ ସଂସ୍କୃତିର ଏହି ଦୁଇଟି ବିଭାବ ବିଷୟରେ କେବଳ ଜାଣିବା ଓ ଉପଲବ୍ଧ ଜ୍ଞାନକୁ ସାଧାରଣ ଶିକ୍ଷାର ମାନ ବୃଦ୍ଧିରେ ପ୍ରୟୋଗ କରିବା, ଦୁଇଟି ସଂପୂର୍ଣ୍ଣ ଅଲଗା ବ୍ୟାପାର । ଛାତ୍ରଛାତ୍ରୀଙ୍କୁ ପଟଚିତ୍ରକାର କରି ବା ଛଉନୃତ୍ୟଶିଳ୍ପୀ କରି ଗଢ଼ିତୋଳିବା ଏହି କର୍ମଶାଳାର ଲକ୍ଷ୍ୟ ନଥିଲା । ସତ କହିବାକୁ ଗଲେ ପରଂପରାର ଏହି ପ୍ରୟୋଗାତ୍ମକ ଦିଗ ପ୍ରତି ଆମେ ସେତେଟା ସଚେତନ ନଥିଲୁ । ଏବେ ଆମେ ଯେଉଁ ବିଷୟର ପ୍ରୟୋଗାତ୍ମକ ଦିଗ କଥା ଚିନ୍ତା କଲୁ । ମୁଁ ପଟଚିତ୍ରର ତିନୋଟି ମୌଳିକ ରଂଗ ନାଲି, ହଳଦିଆ, ନୀଳ ଏବଂ ତା' ସହିତ ଧଳା ଓ କଳାକୁ ପ୍ରକୃତିର ବୈଚିତ୍ର୍ୟ ଭିତରେ ଠାବ କରିବାକୁ ଶିକ୍ଷାର୍ଥୀମାନଙ୍କୁ କହିଲି । ଆମେ ପ୍ରଥମେ ଫୁଲରୁ ଆମର ବର୍ଣ୍ଣ  ଚିହ୍ନଟ ଆରମ୍ଭ କଲୁ । ତା'ପରେ ଆମେ ଯୌଗିକ ବର୍ଣ୍ଣ ଉପରେ ଗୁରୁତ୍ୱ ଦେଲୁ । ଏହି ମୌଳିକ ରଙ୍ଗଗୁଡ଼ିକର ମିଶ୍ରଣରେ ଆଉ କି କି ରଙ୍ଗ ପ୍ରସ୍ତୁତ ହେଇପାରିବ, ତା'ର ବିଭିନ୍ନ ସମ୍ଭାବନାକୁ ନେଇ ଶିକ୍ଷାର୍ଥୀଙ୍କ ମଧ୍ୟରେ

Digitized by srujanika@gmail.com

ଯଥେଷ୍ଟ ଆଗ୍ରହ ପରିଲକ୍ଷିତ ହେଲା । ବାସ୍ତବରେ କାଗଜ ଉପରେ ରଙ୍ଗର ପ୍ରୟୋଗ ନ କରି ମଧ୍ୟ ବିଭିନ୍ନ ଫୁଲ ଓ ଫଳକୁ ରଙ୍ଗର ମାଧ୍ୟମ କରି ଆମେ ମୌଳିକ ଓ ଯୌଗିକ ରଙ୍ଗର ଚିହ୍ନଟ ପ୍ରକୃତିର ବିପୁଳ ସମ୍ଭାର ମଧ୍ୟରେ କରିପାରିଲୁ । ତା'ପରେ ଏହି ଚିହ୍ନଟ ପ୍ରକ୍ରିୟାକୁ ପ୍ରସାରିତ କରି ଛାତ୍ର ଛାତ୍ରୀଙ୍କର ଅନୁସନ୍ଧିତ୍ସା ବଢ଼ାଇବାର ଅଭ୍ୟାସ କରାଯାଇପାରେ । ଜୈବ ବିଜ୍ଞାନ, ପଦାର୍ଥ ବିଜ୍ଞାନ ଓ ସାମାଜିକ ବିଜ୍ଞାନ ପାଠ୍ୟକ୍ରମ ମଧ୍ୟରେ ଏହି ବର୍ଣ୍ଣ ଚିହ୍ନଟକୁ ପ୍ରୟୋଗ କରାଯାଇପାରେ । ବା ଘ ନି ଶ ହ ଲା ନା ର କୌତୂକିଆ ପ୍ରକାଶ ଭଙ୍ଗିରୁ ଆରମ୍ଭ କରି ଶୁଭ୍ର ସୂର୍ଯ୍ୟ କିରଣରେ କିଭଳି ସମସ୍ତ ରଙ୍ଗର ମିଶ୍ରଣ ହୋଇପାରେ ବା ସୂର୍ଯ୍ୟଙ୍କ ଅନୁପସ୍ଥିତିରେ କିଭଳି ଅନ୍ଧାର ଘୋଟିପାରେ ତା'ର ଏକ ବିସ୍ତାରିତ ପ୍ରୟୋଗାତ୍ମକ ଉପଲକ୍ଷ୍ୟ ପଟଚିତ୍ରର ବର୍ଣ୍ଣମାଧୁର୍ଯ୍ୟରୁ ସମ୍ଭବ ହୋଇପାରିଲା ।

ସେଭଳି ପଟଚିତ୍ର ଶୈଳୀରେ ପ୍ରସ୍ତୁତ ହେଉଥିବା ଆଠରଙ୍ଗୀ ଗଂଜପା, ଦଶାବତାର ଗଂଜପା ବା ରାମାୟଣ ଗଂଜପାର ବିନ୍ୟାସକୁ ନେଇ ଶିକ୍ଷା ସମ୍ବନ୍ଧୀୟ ବିଭିନ୍ନ ପ୍ରକଳ୍ପ ମୁଁ ପ୍ରସ୍ତୁତ କଲି । ଏହା କେବଳ ଗଣିତ ପାଠ ଭିତରେ ସୀମିତ ରହି ନଥିଲା ବରଂ ସାହିତ୍ୟ ଓ ସାମାଜିକ ବିଜ୍ଞାନର ବିଭିନ୍ନ ଶିକ୍ଷଣୀୟ ବିଷୟକୁ ନେଇ ସଂଯୋଜନା କରାଯାଇଥିଲା । ଆମେ କାଳକ୍ରମେ ଭୁଲି ଯାଇଥିଲୁ ଯେ ଗଂଜପାର ହରଫ ଗୁଡ଼ିକୁ ଦଶାବତାର ମୂର୍ତ୍ତି ଭଳି ଚିତ୍ରିତ କରି ବା ରାମାୟଣ ଗଂଜପାରେ ରାମ ଓ ରାବଣ ସେନାର ପରିକଳ୍ପନା କରି ପାରଂପରିକ ଚିତ୍ରକରମାନେ ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କୁ ସହଜ ଢଙ୍ଗରେ ସାଧାରଣ ଲୋକଙ୍କ ମଧ୍ୟରେ ପ୍ରଚଳିତ କରେଇ ଦେଇପାରୁଥିଲେ । ପରଂପରାର ସେହି ପୁରୁଣା କଥାଗୁଡ଼ିକୁ ପୁଣି ନୂଆ ଢଙ୍ଗରେ ପରିବେଷଣ କଲାବେଳେ ମନେହେଉଥିଲା ମୁଁ ଏକ ନୂତନ ଶିକ୍ଷା ପଦ୍ଧତିର ଉଦ୍ଭାବକ ପାଲଟି ଯାଇଛି । ଆଧୁନିକ ବେଷ୍ଟନୀ ମଧ୍ୟରେ ସାମାନ୍ୟ ବିଚାର ଶକ୍ତିର ପ୍ରୟୋଗରେ ପରଂପରା ମଧ୍ୟ ଏଭଳି ଅର୍ଥପୂର୍ଣ୍ଣ ହୋଇପାରେ ଏବଂ ପ୍ରୟୋଗାତ୍ମକ ଦୃଷ୍ଟିରୁ ପାରଂପରିକତା ଓ ଆଧୁନିକତା ମଧ୍ୟରେ ବାହ୍ୟ ଭିନ୍ନତା ସତ୍ତ୍ୱେ ଅନ୍ତଃସଂପର୍କ ଅତୁଟ ରହିପାରେ ତାହା ମୁଁ ସେହି କର୍ମଶାଳାରୁ ଶିଖିପାରିଲି ।

ମୋର କ୍ଲାସ୍‌ଗୁଡ଼ିକ ସୁରୁଖୁରୁରେ ଚାଲୁଥିବାର ଦେଖି ଧୀରେନ୍ ବାବୁ ତା'ର ରହସ୍ୟ ଜାଣିବାକୁ ଚାହିଁଲେ । ମୁଁ ବ୍ୟବହାର କରୁଥିବା କୌଶଳ ସଂପର୍କରେ ତାଙ୍କୁ ଅବଗତ କରାଇଲି । ଛଉର 'ଉଫ୍‌ଲି' ଓ 'ଟବ୍‌କା' ତଥା ଅନ୍ୟାନ୍ୟ ଅଙ୍ଗଭଙ୍ଗୀ କିଭଳି ଶିକ୍ଷାପଦ୍ଧତିରେ ବ୍ୟବହୃତ ହୋଇପାରିବ ସେକଥା ମୋଠାରୁ ଜାଣିବାକୁ ସେ ଇଚ୍ଛା କଲେ । ଧୀରେନ୍ଦ୍ର ନାଥ ପଟ୍ଟନାୟକ ଜଣେ ନୃତ୍ୟବିଶାରଦ ଏବଂ ତାଙ୍କ ସାମ୍ରାଜ୍ୟ ଭିତରେ ପ୍ରବେଶ କରି ମୃଗଶିକାର କରିବାର ଔଦ୍ଧତ୍ୟ କାହିଁକି ବା କରିଥାନ୍ତି । ଏଣୁ ତାଙ୍କର ଅନୁଭୂତି ଓ ବିଚାର ଉପରେ ନିଜ ଅନୁସନ୍ଧିତ୍ସାକୁ ଛାଡ଼ି ଦେଇ ନୀରବ ରହିଲି । କପିଳା ବାତ୍ସାୟନ କର୍ମଶାଳା ଶେଷ ହେବାର ଆଗଦିନ ସି.ସି. ଆର.ଟି ରେ ପହଞ୍ଚି ଧୀରେନ୍ ବାବୁଙ୍କ ସହିତ

Digitized by srujanika@gmail.com

ଛଉନୃତ୍ୟ ଶିକ୍ଷା ସଂପର୍କରେ ଆଲୋଚନା କଲେ । ନିଜେ ଅଭିନୟ ମାଧ୍ୟମରେ ଶିକ୍ଷକମାନଙ୍କୁ ଛଉର କେତୋଟି ସାର କଥା ବୁଝେଇଲେ ।

କର୍ମଶାଳାରେ ନିଜର ଅସଫଳ ପ୍ରଦର୍ଶନକୁ ନେଇ ଧୀରେନ୍ ବାବୁ ଚିନ୍ତିତ ଥିଲେ । ସି.ସି.ଆର୍.ଟି. କର୍ତ୍ତୃପକ୍ଷ ମଧ୍ୟ ତାଙ୍କ ଉପରେ ଏତେଟା ସନ୍ତୁଷ୍ଟ ନଥିଲେ । କର୍ମଶାଳା ଶେଷ ହେଲା । ଧୀରେନ୍ ବାବୁ ଟ୍ରେନ୍‌ଯୋଗେ କର୍ମଶାଳାରେ ଯୋଗଦେବା ପାଇଁ ଆସିଥିବାରୁ ଦ୍ୱିତୀୟଶ୍ରେଣୀ ଶୀତତାପ ନିୟନ୍ତ୍ରିତ ରେଳଭଡ଼ା ତଥା ଆନୁସଙ୍ଗିକ ଖର୍ଚ୍ଚବାର୍ଚ୍ଚ ଯଥାଯୋଗ୍ୟ ପାଇଲେ । ମୁଁ ଉଡ଼ାଜାହାଜରେ ଗସ୍ତ କରିଥିବା ହେତୁ ମୋର ପ୍ରାପ୍ୟ ତାଙ୍କଠାରୁ ଯଥେଷ୍ଟ ଅଧିକ ହେଲା । ଧୀରେନ୍ ବାବୁ ବିଗ୍ଭର କଲେ ଯେ ସି.ସି.ଆର୍.ଟି. ପାତର ଅନ୍ତର କରିଛନ୍ତି । ସେ ମୋଠାରୁ ଅସଲ କଥା ଆଦାୟ କରିବା ପାଇଁ ଗ୍ଭହିଁଲେ । ମୁଁ ସବୁ କଥା ଖୋଲି କହିବା ନିରାପଦ ମନେ ନକରି କେବଳ କହିଲି, ଯେହେତୁ ମୁଁ ଉଡ଼ାଜାହାଜରେ ଆସିଛି ତେଣୁ ସି.ସି.ଆର.ଟି. କର୍ତ୍ତୃପକ୍ଷ ମୋର ସଠିକ ଗସ୍ତଖର୍ଚ୍ଚ ମୋତେ ଦେଇଛନ୍ତି । ପୁଣି ମୁଁ ସାମାନ୍ୟ ପରିହାସ କରି କହିଲି ଯେ ସରକାରୀ କର୍ମଗ୍ଭରୀ ଆଉ ଏକାଡେମୀ କର୍ମଗ୍ଭରୀଙ୍କ ବାହାରେ କାଟ୍‌ତି ଭିତରେ ଫରକ୍ ଅଛି । ମୁଁ ଧୀରେନ୍ ବାବୁଙ୍କୁ ଚେତେଇ ଦେଇଥିଲି ଯେ ଓଡ଼ିଶା ସରକାର ଶିଳ୍ପୀମାନଙ୍କୁ ଯେଉଁ ଅବସ୍ଥାରେ ରଖିଛନ୍ତି, ସେହି ଦୈନ୍ୟକୁ ଦିଲ୍ଲୀ ନଗରୀରେ ବିତରଣ କରିବା ବିଜ୍ଞତାର ପରିଗ୍ଭୟକ ହେବ ନାହିଁ । ଏଣୁ ଏଥିପାଇଁ ଯଦି କିଛି ମିଛ ଅଭିନୟ କରିବାକୁ ପଡ଼େ ତା'ହେଲେ ସେଥିରେ ପଛଘୁଞ୍ଚା ଦେଲେ ଚଳିବନି ।

ମୁଁ କିନ୍ତୁ ସି.ସି.ଆର୍.ଟି. କର୍ତ୍ତୃପକ୍ଷଙ୍କୁ ମିଛକଥା କହି ପ୍ରଭାବିତ କରି ଉଡ଼ାଜାହାଜରେ ମୋ ଗସ୍ତଖର୍ଚ୍ଚ ଆଦାୟ କରି ନଥିଲି । ଏହି କର୍ମଶାଳା ପାଇଁ ମୁଁ ଯେତେ ଟିଚିଙ୍ଗ୍ ଏଡ଼୍ ଆଣିଥିଲି ତାହା ଯେ କେବଳ ସମୟ ଉପଯୋଗୀ ଥିଲା ତାହା ନୁହେଁ ବରଂ ଏଗୁଡ଼ିକର ପ୍ରସ୍ତୁତି ଖର୍ଚ୍ଚ ମୋ ଗସ୍ତ ଖର୍ଚ୍ଚଠାରୁ ଯଥେଷ୍ଟ ବେଶି ଥିଲା । ସେମାନେ ଏହି ଖର୍ଚ୍ଚକୁ ଧୀରେନ୍ ବାବୁଙ୍କୁ ପଇଠ କରିଥିବା ସରକାରୀ ଅନୁମୋଦିତ ରେଳ ଗସ୍ତଖର୍ଚ୍ଚ ସହିତ ମିଶେଇଲେ ସେମାନଙ୍କ ହିସାବରେ ଉଡ଼ାଜାହାଜ ଗସ୍ତଖର୍ଚ୍ଚ ପାଖରେ ପହଞ୍ଚିବା ପାଇଁ ଆହୁରି ହଜାରେ ଟଙ୍କା କମ୍ ପଡ଼ିଲା । ପ୍ରକାଶ ଥାଉକି ସେତେବେଳର ଭୁବନେଶ୍ୱର ଦିଲ୍ଲୀ ବିମାନଭଡ଼ା ଆଜିର ଭଡ଼ାଠାରୁ ଯଥେଷ୍ଟ ବେଶି ଥିଲା । ନିର୍ଦ୍ଦେଶିକା ପ୍ରେମଲତା ପୁରୀ ପଟଚିତ୍ର ସଂପର୍କରେ ଦୁଇଟି ଭାଷଣ ଦେବା ପାଇଁ ମୋତେ ଅନୁରୋଧ କଲେ । ଏହା କର୍ମଶାଳାସଂପର୍କୀୟ ନଥିଲା ବରଂ କେନ୍ଦ୍ରର ସାଧାରଣ କାର୍ଯ୍ୟକ୍ରମ ଭିତରେ ଅନ୍ତର୍ଭୁକ୍ତ ଥିଲା । ଏଭଳି ଅନୁରୋଧ ମୋ ପାଇଁ ଉତ୍ସାହପ୍ରଦ ଥିଲା । ମୁଁ ମୋ ଭାଷଣ ବାବଦକୁ ପ୍ରାପ୍ୟ ସ୍ୱରୂପ ହଜାରେ ଟଙ୍କା ପାଇଲି ଏବଂ ଗସ୍ତଖର୍ଚ୍ଚ ବାବଦକୁ ଯାହା ନିଅଣ୍ଟ ଥିଲା ଭରଣା ହେଇଗଲା । ଏତେ ସବୁ ହିସାବ ନିକାଶ ସି.ସି.ଆର୍.ଟି. କର୍ତ୍ତୃପକ୍ଷଙ୍କ ଉର୍ବର ମସ୍ତିଷ୍କରୁ ବାହାରିଥିଲା ।

Digitized by srujanika@gmail.com

# ୫୫. ଜାତୀୟ ସ୍ତରରେ ସ୍ୱୀକୃତି : ଅପନା ଉତ୍ସବ

ରାଜୀବ ଗାନ୍ଧି ନିଜ ପ୍ରଧାନମନ୍ତ୍ରୀତ୍ୱ କାଳରେ ଗୋଟିଏ ଅଭିନବ ସଂସ୍କୃତି ଉତ୍ସବର ପରିକଳ୍ପନା କରିଥିଲେ । ତା' ନାଁ ଦେଇଥିଲେ ଅପନା ଉତ୍ସବ । ଭାରତ ବର୍ଷର ସାଂସ୍କୃତିକ ବୈଭବକୁ ଓ ସଂସ୍କୃତିର ସ୍ରଷ୍ଟା ଓ ବାହକମାନଙ୍କୁ ଏକଜୁଟ କରି ଐକ୍ୟ ଓ ସାମୂହିକ ସୌନ୍ଦର୍ଯ୍ୟର ବାର୍ତ୍ତା ପ୍ରଚାର କରିବା ଏ ଉତ୍ସବର ଲକ୍ଷ୍ୟ ଥିଲା । କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ, ରାଜ୍ୟ ସରକାରଙ୍କ ସଂସ୍କୃତିବିଭାଗମାନଙ୍କ ଦ୍ୱାରା ଏହି ଉତ୍ସବର ଆୟୋଜନ କରୁଥିଲେ ମଧ୍ୟ ଲୋକ କଳାକାରଙ୍କ ସଂପୃକ୍ତି ଉପରେ ଗୁରୁତ୍ୱ ଦେଇ ଉତ୍ସବର ଏଭଳି ନାମକରଣ କରାଯାଇଥିଲା । ପ୍ରଧାନମନ୍ତ୍ରୀଙ୍କ ଏହା ପରିକଳ୍ପନା ହୋଇଥାଇପାରେ କିନ୍ତୁ ଏହି ଉତ୍ସବର ଡିଜାଇନ୍‌ର ଓ ସଂଚାଳକ ତଥା ବ୍ୟବସ୍ଥାପକ ଥିଲେ ମୋ ବନ୍ଧୁ ରାଜୀବ ସେଠୀ ଓ ମାର୍ତ୍ତଣ୍ଡ ସିଂହ । ଭାରତ ବାହାରେ ଯେଭଳି ଭାରତ ଉତ୍ସବ, ସେଭଳି ଦେଶ ଭିତରେ ଆପନା ଉତ୍ସବ ।

ଦିଲ୍ଲୀରେ ଏ ଉତ୍ସବ ପାଳିତ ହେଉଥିଲା । ଏଥିପାଇଁ ଦିଲ୍ଲୀ ନଗରୀର ପ୍ରାୟ ପନ୍ଦର କୋଡ଼ିଏ ଗୋଟି ନିର୍ବାଚିତ ସ୍ଥାନକୁ ଚିହ୍ନଟ କରି ସଜାଇ ଦିଆଯାଇଥିଲା । ଲାଲକିଲ୍ଲା ପାଖ ପଡ଼ିଆରେ କିନ୍ତୁ ଏହାର ଉଦ୍‌ଘାଟନୀ ଉତ୍ସବର ପରିକଳ୍ପନା କରାଯାଇଥିଲା । ପ୍ରତି ରାଜ୍ୟର ଜଣେ ଜଣେ ଶିଳ୍ପୀ ସେ ରାଜ୍ୟର ଅପନା ଉତ୍ସବରେ ଭାଗ ନେଉଥିବା ଶିଳ୍ପୀମାନଙ୍କର ନେତୃତ୍ୱ ନେଉଥିଲେ । ସେମାନଙ୍କୁ କୁହାଯାଉଥିଲା କ୍ରିଏଟିଭ୍ ଡାଇରେକ୍‌ଟର୍ । ଏଭଳି ଗୋଟିଏ ପରିଭାଷା ସହିତ ମୁଁ ପ୍ରଥମ କରି ପରିଚିତ ହେଲି । ପରେ ଅବଶ୍ୟ ଅନ୍ୟ ଗୋଟିଏ ଉତ୍ସବରେ ମୁଁ ଆର୍ଟିଷ୍ଟିକ୍ ଡାଇରେକ୍‌ଟର୍ ଭାବେ କାର୍ଯ୍ୟ କରିଛି । କେବଳ ଡାଇରେକ୍‌ଟର୍ କହିଥିଲେ ପ୍ରଶାସନ ମୁଖ୍ୟକୁ ହିଁ ବୁଝାଇଥାନ୍ତା । ଏଣୁ ଆୟୋଜକମାନେ ଚିନ୍ତା କରି ଏଭଳି ପରିଭାଷା ସ୍ଥିର କରିଥିଲେ ।

ଓଡ଼ିଶାରୁ ଚଢ଼େୟା ନାଚ, ଘୋଡ଼ାନାଚ, ଘୁମୁରା, ବାଘନାଚ, ରଣପା ସାଙ୍ଗକୁ ଓଡ଼ିଶୀ ନାଚ ମଧ୍ୟ ଅପନାଉତ୍ସବରେ ସାମିଲ ହୋଇଥିଲା । ଏମାନଙ୍କ ସହିତ ଥିଲେ ପଟଚିତ୍ରକାର, ତାଳପତ୍ର ଲେଖନକାର ଓ ପଥର ଖୋଦେଇ କରୁଥିବା ମହାରଣା । ଓଡ଼ିଶା ଦଳରେ ସମୁଦାୟ ପଚିଶି ତିରିଶଜଣ ଶିଳ୍ପୀ ଥିଲେ । ମୋତେ ଆୟୋଜନରେ ସାହାଯ୍ୟ

Digitized by srujanika@gmail.com

କରିବା ପାଇଁ ମୁଁ କଲେଜରୁ ତିନିଚାରିଜଣ ଛାତ୍ରଙ୍କୁ ସାଙ୍ଗରେ ନେଇଯାଇଥିଲି । ଅଶୋକ ଯାତ୍ରୀ ନିବାସରେ ଆମ ରହଣି ବ୍ୟବସ୍ଥା ହୋଇଥିଲା । ଏହି ଉତ୍ସବରେ କେବଳ ନୃତ୍ୟର ପ୍ରଦର୍ଶନର କାର୍ଯ୍ୟକ୍ରମ ନଥିଲା । ତା' ସହିତ ରାଜ୍ୟର କଳା ସଂପଦକୁ ପ୍ରତିନିଧିତ୍ୱ କଲାଭଳି କଳାସାମଗ୍ରୀ ଦିଲ୍ଲୀର ବିଭିନ୍ନ ନିର୍ବାଚିତ ପ୍ରଦର୍ଶନୀ ସ୍ଥାନମାନଙ୍କରେ ସଜେଇ ରଖିବାର ପରିକଳ୍ପନା ହେଇଥିଲା । ସମଗ୍ର ଦିଲ୍ଲୀ ନଗରୀକୁ ଉତ୍ସବ ମୁଖର କରିବା ପାଇଁ ଏବଂ ବିଭିନ୍ନ ଅଞ୍ଚଳରେ ବସବାସ କରି ରହୁଥିବା ବାସିନ୍ଦାଙ୍କ ସଂପୃକ୍ତି ପ୍ରତି ଗୁରୁତ୍ୱ ଆରୋପ କରି ଉତ୍ସବସ୍ଥଳୀମାନଙ୍କୁ ବିଭିନ୍ନ ସ୍ଥାନରେ ଚିହ୍ନଟ କରାଯାଇଥିଲା । ଏଣୁ ଉତ୍ସବ ଉପଭୋଗ କରିବା ପାଇଁ ଦେଖଣାହାରିଙ୍କୁ ବେଶିବାଟ ଗାଡ଼ି ମୋଟରରେ ଯିବାର ଆବଶ୍ୟକତା ନଥିଲା । ଏହାଫଳରେ ଟ୍ରାଫିକ୍ ଖୁବ୍ ଶୃଙ୍ଖଳିତ ରହୁଥିଲା । ଏହି ପ୍ରଦର୍ଶନୀ ସ୍ଥଳୀମାନଙ୍କରେ ବିଭିନ୍ନ ରଙ୍ଗବେରଙ୍ଗ ଶାଢ଼ିର ସଜାଣ ବେଶ୍ ଆକର୍ଷଣୀୟ ହେଇପାରିଥିଲା । ସେଥିରୁ ଉଜ୍ଜ୍ୱଳ ରଙ୍ଗର ଓଡ଼ିଶା ବାନ୍ଧ ଶାଢ଼ିଗୁଡ଼ିକ ବାରି ହେଇ ପଡୁଥିଲା ।

କଲେଜ ତରଫରୁ ବ୍ରହ୍ମପୁର ସହରର ପଟୁଆର ମୁଖା, ପ୍ରହ୍ଲାଦନାଟକର ନୃସିଂହ ମୁଖା, ବରଗଡ଼ର ଚିତ୍ରିତ କାଠ କଣ୍ଢେଇ, ବଡ଼ ବଡ଼ ପୋଡ଼ାମାଟିର ଘୋଡ଼ା, ପଟଚିତ୍ର ପ୍ରଭୃତି ସଂଗୃହୀତ ହୋଇ ଉତ୍ସବକୁ ନିଆଯାଇଥିଲା । ଆମେ ସ୍ୱତନ୍ତ୍ର ଭାବେ ଏହି କଳାସାମଗ୍ରୀଗୁଡ଼ିକର ଆୟୋଜନ କରିଥିଲୁ । କାରଣ ବରଗଡ଼ର କାଠଖୋଦାଇ ସାଧାରଣତଃ ଫୁଟେ ଉଚ୍ଚତା ଭିତରେ ସୀମିତ ରହେ କିନ୍ତୁ ଆମେ ଅଢ଼େଇଫୁଟ ତିନିଫୁଟର ଚିତ୍ରିତ କାଠମୂର୍ତ୍ତି ଦିଲ୍ଲୀରେ ପ୍ରଦର୍ଶନ କରିଥିଲୁ ।

କେଉଁ ଦଳ କେତେବେଳେ କେଉଁ ସ୍ଥାନରେ ପ୍ରଦର୍ଶନ କରିବେ ତା'ର ସମୟ ନିର୍ଘଣ୍ଟ ପ୍ରସ୍ତୁତ ହୋଇଥିଲା । ଉତ୍ସବ ସପ୍ତାହେ ଧରି ଆୟୋଜିତ ହୋଇଥିଲା । ଏଣୁ ପ୍ରତ୍ୟେକ ଦଳ ପାଳି କରି ସମଗ୍ର ଦିଲ୍ଲୀ ନଗରୀରେ ସେମାନଙ୍କ ନୃତ୍ୟ ପ୍ରଦର୍ଶନ କରିବାର ସୁଯୋଗ ପାଇଥିଲେ । ଓଡ଼ିଶୀ ନୃତ୍ୟର ପ୍ରଦର୍ଶନକୁ ନେଇ ଉତ୍ସବରେ ଅଂଶ ଗ୍ରହଣ କରିଥିବା ନୃତ୍ୟଶିଳ୍ପୀ ଆପତ୍ତି ଉଠାଇଲେ । ସେମାନଙ୍କ ଯୁକ୍ତି ହେଲା ଯେହେତୁ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟନୃତ୍ୟ ପର୍ଯ୍ୟାୟର ଏଣୁ ଏହାକୁ ସାଧାରଣ ଲୋକନୃତ୍ୟ ଭଳି ରାସ୍ତାଘାଟରେ ପ୍ରଦର୍ଶନ କଲେ କଳାର ଅମର୍ଯ୍ୟାଦା ହେବ । ସେମାନେ ପୁଣି କହିଲେ ଯେ ଓଡ଼ିଶୀ ଦେବନୃତ୍ୟ ଓ ଏହାର ଉଦ୍ଭବ ଜଗନ୍ନାଥ ମନ୍ଦିରରୁ, ଏଣୁ ଏହାକୁ ପଟୁଆର ନୃତ୍ୟ କରା ନଯାଉ । କିଛିଦିନ ଆଗରୁ ଅଶୋକା ହୋଟେଲରେ ସଂଯୁକ୍ତା ପାଣିଗ୍ରାହୀ ଦର୍ଶକମାନେ ଖାଦ୍ୟ ଓ ପାନୀୟ ଗ୍ରହଣ କରୁଥିବାବେଳେ ନୃତ୍ୟ କରିବେ ନାହିଁ ବୋଲି ସଂପୂର୍ଣ୍ଣ ଭାବେ ମନାକରି ଦେଇଥିବା କଥା ସେମାନେ ମୋତେ ମନେ ପକାଇଦେଲେ । ଏମିତି ଭାବେ ଶାସ୍ତ୍ରୀୟତାରୁ ଖସି ଆସି ରାଜରାସ୍ତାରେ ନୃତ୍ୟ ପରିବେଷଣ କଲେ ତାହା ବାରଙ୍ଗନାଙ୍କ ନୃତ୍ୟ ସହିତ ତୁଳନୀୟ

Digitized by srujanika@gmail.com

ହେବ । ମୁଁ ସେମାନଙ୍କୁ ରୋକଠୋକ କହିଦେଇ ପାରିଥାନ୍ତି ଯେ ସେମାନେ ସରକାରଙ୍କ ଅର୍ଥ ଖର୍ଚ୍ଚ କରି ନୃତ୍ୟ କରିବା ପାଇଁ ଦିଲ୍ଲୀ ଆସିଛନ୍ତି । ସେମାନଙ୍କ ନୃତ୍ୟ ସହିତ ଓଡ଼ିଶାର ଇଜ୍ଜତ ମଧ୍ୟ ସଂପୃକ୍ତ । ଏଣୁ ଯେହେତୁ ସେମାନେ ଚୁକ୍ତିବଦ୍ଧ ତେଣୁ ନାଚ ନକରି ସେମାନଙ୍କର ଗତ୍ୟନ୍ତର ନାହିଁ । ସେମାନେ ସମସ୍ତେ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଛାତ୍ରୀ ହୋଇଥିବାରୁ ସେମାନଙ୍କ ମନରୁ ନୃତ୍ୟ ସଂପର୍କରେ ଏଭଳି ଭ୍ରାନ୍ତ ଧାରଣା ହଟେଇ ଦେବା ପାଇଁ ମୋତେ ଗୋଟିଏ ଛୋଟିଆ କ୍ଲାସ୍‌ରୁମ୍ ବକ୍ତୃତା ଦେବାକୁ ହେଲା ।

''ଓଡ଼ିଶୀ ନୃତ୍ୟ ମାତ୍ର ପଚାଶ ବର୍ଷ ତଳେ ଗଢ଼ାଯାଇଥିବା ଏକ ନୃତ୍ୟଶୈଳୀ । ଜଗନ୍ନାଥ ମନ୍ଦିର ସହିତ ଏହାର ସମ୍ପର୍କ ବା ମନ୍ଦିରରୁ ଉଦ୍ଭବ ଏକଥା କହିବା ସତ୍ୟର ଅପଳାପ । ଏଭଳି ଦେଖିବାକୁ ଗଲେ ଏହି ନୃତ୍ୟକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ସେଥିରୁ ଗୋଟିଏ ହେଲା ଆଳୟ ନୃତ୍ୟ, ଅନ୍ୟଟି ସଭା ନୃତ୍ୟ ଏବଂ ତୃତୀୟଟି ପଟୁଆର ନୃତ୍ୟ । ଅପନା ଉତ୍ସବରେ ଯେଉଁ ନୃତ୍ୟ ପରିବେଷିତ ହେବ ତାହା ପଟୁଆର ନୃତ୍ୟ ପର୍ଯ୍ୟାୟର । ତାଳପତ୍ର ପୋଥିଚିତ୍ରରେ ଏଭଳି ନୃତ୍ୟର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଅତଏବ ନୃତ୍ୟର ଛାତ୍ରୀହୋଇ ନୃତ୍ୟର ସଠିକ ଇତିହାସ ଓ ସଜ୍ଞା ପ୍ରତି ସଚେତନ ନରହି ଏଭଳି ନକାରାତ୍ମକ ମନୋଭାବ ପୋଷଣ କରିବା ଉଚିତ ହେବନି । ଏ ଉତ୍ସବରେ ନୃତ୍ୟଶିଳ୍ପୀମାନେ ତ ଏକା ନୁହନ୍ତି ସେମାନଙ୍କ ସହିତ ପଟଚିତ୍ରକାର ଓ ତାଳପତ୍ର ଲେଖନକାରମାନେ ମଧ୍ୟ ସେମାନଙ୍କ ବିଦ୍ୟା ପରିବେଷଣ କରୁଛନ୍ତି ।''

ଓଡ଼ିଶୀ ନୃତ୍ୟଶିଳ୍ପୀମାନେ ସେମାନଙ୍କ ମନ ପରିବର୍ତ୍ତନ କଲେ । ସେମାନେ ଏବେ ମଜାକଥାଟି ମୋତେ କହି ପକାଇଲେ । ଅସଲ କଥା ହେଲା ଯେ ବିଭୂତି କାନୁନ୍‌ଗୋ ଚିତ୍ରକଳା ମହାବିଦ୍ୟାଳୟ ଅପନା ଉତ୍ସବରେ ଯୋଗ ଦେଉଥିବା ଶିଳ୍ପୀଙ୍କ ଦଳର ନେତୃତ୍ୱ ନେଉଥିବା ହେତୁ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଜନୈକ ଅଧ୍ୟାପକ ଅସୂୟା ପରବଶ ହୋଇ ଉତ୍ସବରେ ଏଭଳି ଏକ ସମସ୍ୟାର ଉଦ୍ଭବ କରେଇ ପରିସ୍ଥିତିକୁ ଜଟିଳ କରିବାକୁ ପ୍ରୋତ୍ସାହନ ଦେଇଥିଲେ । ତା'ହେଲେ ଜାତୀୟ ସ୍ତରରେ ଆନୁଷ୍ଠାନିକ ଭାବେ ଆମ ମହାବିଦ୍ୟାଳୟର ଦୁର୍ନାମ ହେବା ସହିତ ବ୍ୟକ୍ତିଗତ ଭାବେ ମୋର ମଧ୍ୟ ଅସାମର୍ଥ୍ୟ ପ୍ରକାଶ ପାଇବ । ସେ ଯାହାହେଉ ଓଡ଼ିଶା ଦଳ ସେମାନଙ୍କ ଉତ୍ତମ କଳା ପ୍ରଦର୍ଶନ ସାରି ଓଡ଼ିଶା ଫେରିଲେ । କିଭଳି ସଂସ୍କୃତି ବିଭାଗର ଜନୈକ ଅଫିସର ନିଜକୁ କ୍ରିଏଟିଭ ଡାଇରେକ୍‌ଟର୍ ଭୂମିକାରେ ରଖି ପ୍ରଧାନମନ୍ତ୍ରୀଙ୍କଠାରୁ ବାହାବା ନେବା ପାଇଁ କରିଥିବା ଅପଚେଷ୍ଟାର ଅନ୍ତ ହେଇଥିଲା, ସେକଥା ମୁଁ ଅନ୍ୟତ୍ର ଉଲ୍ଲେଖ କରିଛି ।

ମୋର ଉଦ୍ଦେଶ୍ୟ ଥିଲା ଯେ ଅପନା ଉତ୍ସବରେ ବ୍ୟବହୃତ ଶିଳ୍ପକଳା ସାମଗ୍ରୀ ଦିଲ୍ଲୀରୁ ଫେରି ଆସିଲା ପରେ କଲେଜରେ ସଂରକ୍ଷିତ ହୋଇ ରହିବ । ନୂଆ କୋଠାକୁ

Digitized by srujanika@gmail.com

କଲେଜ ସ୍ଥାନାନ୍ତରିତ ହୋଇଗଲା ପରେ ସେଠାରେ ଲୋକକଳାର ଗୋଟିଏ ଛୋଟିଆ ସଂଗ୍ରହାଳୟଟିଏ ରୂପନେବ । ମୁଁ କଲେଜ ଛାଡ଼ିଦେଲା ପରେ ମୋର ସହକର୍ମୀମାନେ ସରକାରୀ ଶିକ୍ଷକ ହୋଇ ରହିଗଲେ ଏବଂ କଳାଶିକ୍ଷାର ଏସବୁ ସୂକ୍ଷ୍ମତମ ବିସ୍ତାରକୁ ଅବଜ୍ଞା କଲେ । ସଂଗ୍ରହାଳୟ କେବଳ ପରିକଳ୍ପନା ସ୍ତରରେ ରହିଗଲା ।

ମୁଁ ଦିଲ୍ଲୀରେ ରହୁଥିବାବେଳେ ମୋର ଜଣେ ଛାତ୍ର ଜ୍ୟୋତିରଞ୍ଜନ ପାଣିଗ୍ରାହୀ ମୋତେ ତାଙ୍କ ଘରେ ରାତ୍ରୀଭୋଜନ ପାଇଁ ନିମନ୍ତ୍ରଣ କରିଥିଲା । ଜ୍ୟୋତି କେବଳ ଆମ କଲେଜର ଛାତ୍ର ନଥିଲା, ସେ କେନ୍ଦ୍ର ଲଳିତ କଳା ଏକାଡେମୀ ସଚିବଙ୍କ ସରକାରୀ ବଙ୍ଗଳାରେ କିଛିଦିନ ତିଷ୍ଠି ରହିଥିବା ପତିତପାବନ ମେସ୍ତ୍ରର ଜଣେ ଅନ୍ତେବାସୀ ଥିଲା । ମୁଁ ଦିଲ୍ଲୀପ କୁମାର ତ୍ରିପାଠୀର ପରିବାର ସହିତ ଜ୍ୟୋତି ଘରେ ପହଞ୍ଚି ଦେଖିଲି ଜ୍ୟୋତି ଲୋକକଳାରେ ମୋର ଆଗ୍ରହକୁ ସମ୍ମାନ ଦେଖାଇ ଗୋଟିଏ ବରଗଡ଼ କାଠ କଣ୍ଢେଇକୁ ତା' ବୈଠକ ଖାନାରେ ସଜାଇଛି । ପାଖକୁ ଯାଇ ଦେଖେ ତ ତାହା ଆପନା ଉତ୍ସବ ପାଇଁ କଲେଜ ପକ୍ଷରୁ ସଂଗୃହୀତ ହୋଇଥିବା ମୂର୍ତ୍ତି । ମୂର୍ତ୍ତିଟି ପ୍ରତି ମୋର ଆକର୍ଷଣ ଓ ମନୋଭାବରୁ ଜ୍ୟୋତି ବିସଙ୍ଗତି ଠଉରେଇ ନେଲା । ସେ ନିଜ ଆଡୁ ସତ କଥାଟି କହିପକାଇଲା । ତା' କଥାରୁ ଜଣାପଡ଼ିଲା ଯେ ସେ କଳା ମହାବିଦ୍ୟାଳୟର ଜନୈକ ଅଧ୍ୟକ୍ଷଙ୍କୁ ପାଞ୍ଚଶହଟଙ୍କା ଦେଇ ମୂର୍ତ୍ତିଟି କିଣି ଆଣିଛି । ମୁଁ ହୃଦ୍‌ବୋଧ କରିପାରିଲି ଯେ ସମୟ ସାଙ୍ଗରେ ମୂଲ୍ୟବୋଧର ମଧ୍ୟ ପରିବର୍ତ୍ତନ ଘଟିଛି ।

Digitized by srujanika@gmail.com

# ୫୬. କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟ : କଳାରେ ରାଜନୀତି

ଓଡ଼ିଆ ଶିଳ୍ପୀମାନେ ଓଡ଼ିଶା ଲଳିତ କଳା ଏକାଡେମୀକୁ ରାଜ୍ୟ ବିଧାନସଭା ଓ କେନ୍ଦ୍ର ଲଳିତ କଳା ଏକାଡେମୀକୁ ଲୋକସଭା ବୋଲି ଜ୍ଞାନ କରନ୍ତି । କେନ୍ଦ୍ର ଏକାଡେମୀରେ ମେମ୍ବରଟିଏ ହେବା ପାଇଁ ଅଧିକାଂଶ ଶିଳ୍ପୀଙ୍କର ଅଭିଳାଷ ଥାଏ । ଆଗରୁ ବିଭିନ୍ନ ରାଜ୍ୟସରକାରମାନେ ନିଜ ରାଜ୍ୟରୁ ମନୋନୟନ କରି ଶିଳ୍ପୀମାନଙ୍କୁ କେନ୍ଦ୍ର ଏକାଡେମୀକୁ ପଠାଉ ଥିଲେ । ଏହି ବ୍ୟବସ୍ଥା କ୍ରମରେ ଶରତଚନ୍ଦ୍ର ଦେବ, ଗୋପାଳ ଚରଣ କାନୁନ୍‌ଗୋ, ବସନ୍ତ ପଣ୍ଡା, ଅନନ୍ତ ପଣ୍ଡା ଓଡ଼ିଶାର ମନୋନୀତ ସଭ୍ୟ ଭାବେ ଲଳିତ କଳା ଏକାଡେମୀରେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । ପରବର୍ତ୍ତୀ ସମୟରେ ଏକାଡେମୀର ସମ୍ବିଧାନ ବଦଳିଗଲାପରେ ମନୋନୟନ ବ୍ୟବସ୍ଥାକୁ ପରିବର୍ତ୍ତନ କରିଦିଆଗଲା । ସମଗ୍ର ଦେଶରେ ପନ୍ଦରଗୋଟି ଶିଳ୍ପୀ-ନିର୍ବାଚନମଣ୍ଡଳୀ (ଆର୍ଟିଷ୍ଟସ୍ କନ୍‌ଷ୍ଟିଚ୍ୟୁଏନ୍‌ସି) ର ବ୍ୟବସ୍ଥା କରାଗଲା ଏବଂ ଶିଳ୍ପୀମାନେ ଭୋଟ ଦେଇ ନିଜ ପ୍ରତିନିଧିମାନଙ୍କୁ ଦିଲ୍ଲୀ ପଠାଇଲେ । ଯେଉଁ ଶିଳ୍ପୀମାନଙ୍କର କଳାକୃତି କେନ୍ଦ୍ର ଲଳିତ କଳା ଏକାଡେମୀର ବାର୍ଷିକ ଚିତ୍ର ପ୍ରଦର୍ଶନୀରେ ମାତ୍ର ଥରେ ମନୋନୀତ ହୋଇ ପ୍ରଦର୍ଶିତ ହୋଇଥିବ ସେମାନେ ବିଜ୍ଞପ୍ତି ଭୋଟର ଭାବେ ସ୍ୱୀକୃତି ପାଇବେ ଏବଂ ଭୋଟ ଦେବା ପାଇଁ ସେମାନଙ୍କର ଅଧିକାର ରହିବ ।

ନିର୍ବାଚିତ ସଭ୍ୟମାନଙ୍କ ବ୍ୟତୀତ ସାଧାରଣ ପରିଷଦରେ କେନ୍ଦ୍ର ସରକାରଙ୍କ ପକ୍ଷରୁ କିଛି ମନୋନୀତ ସଭ୍ୟ ରହନ୍ତି । ଏହି ତାଲିକାରେ ଅନ୍ତର୍ଭୁକ୍ତ ହୋଇଥାନ୍ତି ସଂସ୍କୃତି ମନ୍ତ୍ରଣାଳୟର ଯୁଗ୍ମ ସଚିବ, ଅର୍ଥ ପରାମର୍ଶଦାତା, ଜାତୀୟ ଆଧୁନିକ ସଂଗ୍ରହାଳୟର ନିର୍ଦ୍ଦେଶକ, ଜାତୀୟ ସଂଗ୍ରହାଳୟର ନିର୍ଦ୍ଦେଶକ, ଜାତୀୟ ଦୂରଦର୍ଶନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କ ବୈଷୟିକ ଶିକ୍ଷା ବିଭାଗର ନିର୍ଦ୍ଦେଶକ, ଜଣେ ପ୍ରତିଷ୍ଠିତ କଳାଐତିହାସିକ, ଜଣେ ବିଶିଷ୍ଟ ଫଟୋଗ୍ରାଫର, ଜଣେ ନାମଜାଦା କାରୁଶିଳ୍ପୀ (କ୍ରାଫ୍‌ଟ୍‌ସ୍ ପର୍‌ସନ୍) ବା କାରୁଶିଳ୍ପ ଗବେଷକ ଏବଂ ଦୁଇଜଣ ସର୍ବଭାରତୀୟ ଖ୍ୟାତିସଂପନ୍ନ ସାଂପ୍ରତିକ କଳାକାର । ଏଥିରେ ଲଳିତ କଳା ଏକାଡେମୀର ରତ୍ନ ସଦସ୍ୟ (ଫେଲୋ)ଙ୍କ ମଧ୍ୟରୁ

Digitized by srujanika@gmail.com

ଜଣେ ମଧ୍ୟ ଅନ୍ତର୍ଭୁକ୍ତ ହେଉଥିଲେ । ତାଙ୍କ ସହିତ ଲଳିତ କଳା ଏକାଡେମୀଦ୍ୱାରା ସ୍ୱୀକୃତିପ୍ରାପ୍ତ କଳା ଅନୁଷ୍ଠାନ ତଥା ରାଜ୍ୟ ଲଳିତ କଳା ଏକାଡେମୀର ପ୍ରତିନିଧିମାନେ ମଧ୍ୟ ସଭ୍ୟ ଭାବେ ମନୋନୀତ ହେଉଥିଲେ । ସବୁ ସଭ୍ୟଙ୍କୁ ମିଶେଇ ପ୍ରାୟ ସତୁରୀ ଅଶିଏ ଜଣ ସାଧାରଣ ପରିଷଦ ଗଠନ କରୁଥିଲେ ।

ସେମାନଙ୍କ ମଧ୍ୟରୁ ନିର୍ବାଚନ ଓ ମନୋନୟନ ପଦ୍ଧତିରେ କାର୍ଯ୍ୟନିର୍ବାହୀ ବୋର୍ଡ ମଧ୍ୟ ଗଠିତ ହେଉଥିଲା । କେନ୍ଦ୍ର ଲଳିତ କଳା ଏକାଡେମୀର ଜଣେ ପ୍ରଭାବଶାଳୀ ସଭ୍ୟ ନିଜରାଜ୍ୟ ପାଇଁ ବହୁତ କିଛି ସୁବିଧା ସୁଯୋଗ ହାସଲ କରିବା ସହ ବ୍ୟକ୍ତିଗତ ଭାବେ କିଛି ଶିଳ୍ପୀଙ୍କର ବୃତ୍ତିଗତ ଅଭିବୃଦ୍ଧିରେ ମଧ୍ୟ ସହାୟକ ହେଇ ପାରୁଥିଲେ । ଚିତ୍ରକଳାରେ ଜାତୀୟ ପୁରସ୍କାର, ଜାତୀୟ ଶିଳ୍ପୀଶିବିର, ସ୍କଲାରସିପ୍, ବିଦେଶରେ ଆୟୋଜିତ ହେଉଥିବା ପ୍ରଦର୍ଶନୀମାନଙ୍କରେ ଯୋଗଦାନ ତଥା ବିଦେଶ ଭ୍ରମଣ ପ୍ରଭୃତି ସୁଯୋଗକୁ ହାତେଇବା ଉଦ୍ଦେଶ୍ୟରେ ଏକାଡେମୀର ସଭ୍ୟ ହେବା ପାଇଁ ଶିଳ୍ପୀମାନେ ଲାଳାୟିତ ହେଉଥିଲେ ।

ଆମ ଓଡ଼ିଶାରୁ ଦୁଇଜଣ; ବିପିନ୍ ବିହାରୀ ସାହୁ ଓ ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ କେନ୍ଦ୍ର ଲଳିତ କଳା ଏକାଡେମୀରେ ବହୁବର୍ଷ ଧରି ମେମ୍ବର ରହିଥିଲେ । ବିପିନ୍ ବିହାରୀ ସ୍ୱୀକୃତିପ୍ରାପ୍ତ କଳା ଅନୁଷ୍ଠାନ ଗଂଜାମ ଜିଲ୍ଲା ଚିତ୍ରଶିକ୍ଷକ ସଂଘ ପକ୍ଷରୁ ଏବଂ ଜଗଦୀଶ ଚନ୍ଦ୍ର ଓଡ଼ିଶା ଲଳିତ କଳା ଏକାଡେମୀର ପ୍ରତିନିଧି ଭାବେ କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟ ହୋଇଥିଲେ । କେବଳ ସଭ୍ୟ ମନୋନୀତ ହୋଇ ଦିଲ୍ଲୀ ଗସ୍ତରେ ଯାଇ ସଭାର କଳେବର ମଣ୍ଡନ କଲେ କଥା ସରେନି । ସେଠିକାର ରାଜନୈତିକ ଓ ଦଳୀୟ ବଳୟକୁ ଭେଦକରି କୌଣସି ସୁପାରିଶ ଯୋଗାଡ଼ କରିବା କାଠିକର ପାଠ । ପୁଣି ଇଂରାଜୀ କିମ୍ବା ହିନ୍ଦୀ ଭାଷା ଭଲଭାବରେ ଆୟତ୍ତ ନ କରିଥିଲେ ସଭାରେ ପାଟି ଖୋଲିବା ମଧ୍ୟ କଷ୍ଟକର । ଏହି କାରଣରୁ ଆମର ଦୁଇବନ୍ଧୁ ଏକାଡେମୀକୁ ସେମିତି କିଛି ପ୍ରଭାବିତ କରିପାରୁ ନଥିଲେ । ବିପିନ ବିହାରୀ ସାହୁଙ୍କର ଯାବତୀୟ ପାନୀୟ ଚଳେ । ଏକାଡେମୀର ଉପାଧ୍ୟକ୍ଷ ଆନନ୍ଦ ଦେବ ମଧ୍ୟ ପାନୀୟ ଭକ୍ତ । ବିପିନ ବାବୁ ଦୂରଦୃଷ୍ଟିସଂପନ୍ନ ଲୋକ ହୋଇଥିବାରୁ ଦିଲ୍ଲୀ ଗଲାବେଳକୁ ଆର୍ମିବ୍ରାଣ୍ଡର ହ୍ୱିସ୍କି ନ ହେଲେ ରମ୍ ଦି' ଚାରି ବୋତଲ ନିଜ ବ୍ୟାଗ୍‌ରେ ରଖିବାକୁ ଭୁଲୁ ନଥିଲେ ଯାହା ଦଳର ଅନ୍ୟାନ୍ୟ ବନ୍ଧୁମାନଙ୍କ ମନ ବହଲେବା କାର୍ଯ୍ୟରେ ବିନିଯୋଗ ହେଉଥିଲା । ଏଣୁ ବିପିନ୍ ବାବୁଙ୍କୁ ସଭାରେ ଭାଷଣ ମାରି ନିଜ ପ୍ରସ୍ତାବ ସପକ୍ଷରେ ଯୁକ୍ତି ବାଢ଼ିବାକୁ ପଡୁ ନଥିଲା । ସେ ଚୁପ୍‌ଚାପ୍ ତାଙ୍କର କାମ ହାସଲ କରି ନେଉଥିଲେ । ଜଗଦୀଶ ବାବୁଙ୍କ ପଣାପାଣି ଚଳେନି, ସେ ନା ଥାଆନ୍ତି 'ଉପା'ରେ ନା 'ଏନ୍‌ଡିଏ'ରେ । ଅବଶ୍ୟ ସେତେବେଳକୁ ରାଜନୈତିକ ଦିଗନ୍ତରେ 'ଉପା' ଓ 'ଏନ୍‌ଡିଏ'ର ଆବିର୍ଭାବ ହୋଇ ନଥିଲା । ବିପିନ୍ ବିହାରୀ ସାହୁ ଓ ଜଗଦୀଶ ଚନ୍ଦ୍ର

Digitized by srujanika@gmail.com

କାନୁନ୍‌ଗୋ ଏକାଡେମୀରେ ଓଡ଼ିଶାର ସଭ୍ୟ ଥିବାବେଳେ କେନ୍ଦ୍ର ଲଳିତ କଳା ଏକାଡେମୀ ଭୁବନେଶ୍ୱରରେ ଏକ ଆଂଚଳିକ କଳା କେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଲା । ମୁଁ ଏକାଡେମୀରେ ସଭ୍ୟ ନଥାଇ ସୁଦ୍ଧା ଏହି କେନ୍ଦ୍ର ପ୍ରତିଷ୍ଠାରେ ମୋର କିଛିଟା ଯୋଗଦାନ ଥିଲା । ଖାରବେଳ ନଗରରେ କେନ୍ଦ୍ର ପାଇଁ ଉଦ୍ଦିଷ୍ଟ ଜାଗାର ଅଧା ଜମିରେ କେନ୍ଦ୍ର ଆଉ ଅଧାରେ ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟ ଗଢ଼ିବା ପାଇଁ ରାଜ୍ୟ ସଂସ୍କୃତି ବିଭାଗ ପ୍ରସ୍ତାବ କରିବାରୁ ମୁଁ ଏହାର ପ୍ରତିବାଦ କରିଥିଲି ଏବଂ କେନ୍ଦ୍ରପାଇଁ ସମୁଦାୟ ଜମି ଛାଡ଼ି ଦିଆଯିବା ଉଚିତ ହେବ ବୋଲି ଯୁକ୍ତି ବାଢ଼ିଥିଲି ଏବଂ ଶେଷରେ ତାହା ହିଁ ଘଟିଥିଲା ।

କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟ ହେବା ପାଇଁ ଏବଂ ରାଜ୍ୟ ଲଳିତ କଳା ଏକାଡେମୀକୁ ପ୍ରତିନିଧିତ୍ୱ କରିବା ପାଇଁ ମୁଁ ଥରେ ରାଜ୍ୟ ଲଳିତ କଳା ଏକାଡେମୀର ଉପସଭାପତି ମୁରଲୀଧର ଟାଲିଙ୍କୁ ଅନୁରୋଧ କରିଥିଲି । ମୁରଲୀ ବାବୁ ଓ ମୁଁ ସେତେବେଳର କୌଣସି ଗୋଟିଏ କାର୍ଯ୍ୟକ୍ରମରେ ରାଜ୍ୟ ଲଳିତ କଳା ଏକାଡେମୀର ପ୍ରତିନିଧି ଭାବେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଭାଷଣ ଦେବା ପାଇଁ ସମ୍ବଲପୁର ଯାଇଥାଉ । ମୁରଲୀଧର ଟାଲି ମୁଖ୍ୟ ଅତିଥି ଓ ମୁଁ ମୁଖ୍ୟ ବକ୍ତା । ଲଳିତ କଳା ଏକାଡେମୀ ସାମାନ୍ୟ ରାସ୍ତାଖର୍ଚ୍ଚ ଦେଇ ଜଣେ କର୍ମଚାରୀଙ୍କୁ ଆମ ସାଙ୍ଗରେ ତତ୍ତ୍ୱାବଧାରକ ଭାବେ ପଠେଇଥାଏ । ସକାଳୁ ଛତିଆରେ ଜଳଖିଆ ଖର୍ଚ୍ଚରେ ଏକାଡେମୀର ଚାରିଭାଗରୁ ତିନିଭାଗ ପଇସା ଖର୍ଚ୍ଚ ହୋଇଗଲା । କର୍ମଚାରୀ ଜଣକ ବ୍ୟସ୍ତ ହେଲେ, ଛତିଆ ପାଖରେ ତାଙ୍କ ଗାଁ, ସେଠି ସେ ଓହ୍ଲେଇଯିବା ପାଇଁ ଚାହିଁଲେ । ମୁଁ ଆପତ୍ତି କଲିନାହିଁ । ମୁଁ ସେତେବେଳକୁ ଓଡ଼ିଶା ପର୍ଯ୍ୟଟନ ନିଗମରେ ଚାକିରି କରୁଥାଏ । ଏଣୁ ସମ୍ବଲପୁରରେ ମୁରଲୀ ବାବୁଙ୍କୁ ପାନ୍ଥନିବାସର ଶୀତତାପ ନିୟନ୍ତ୍ରିତ କୋଠରିରେ ରାତ୍ରି ଯାପନର ସୁବିଧା କରେଇ ଦେଲି । ରାତ୍ରୀଭୋଜନ ବେଶ୍ ଆଡମ୍ବରପୂର୍ଣ୍ଣ ହୋଇଥିଲା । ମୁରଲୀ ବାବୁ ମୋ ଉପରେ ପ୍ରସନ୍ନ ହେଲେ ଆଉ କହିଲେ ସେଥରକ ଦିଲ୍ଲୀରେ ସଭ୍ୟ ହେବା ପାଇଁ ସେ ମୋ ନାଁ ସୁପାରିଶ କରିବେ। ସେ କହିଥିବା ବାକ୍ୟଟି ଏବେ ବି ମୋର ମନେଅଛି, ''ଜଗଦୀଶଟା କିଛି ନୁହେ ହୋ, ଆପଣ ଦିଲ୍ଲୀ ଯାଆନ୍ତୁ । ଆମ ପାଇଁ କୁହାପୁଛା କରିବେ ।'' ସମ୍ବଲପୁର ଫେରିବା ପରଦିନ ରାଜ୍ୟ ଲଳିତ କଳା ଏକାଡେମୀର ସଭା ବସିଲା । ଦିଲ୍ଲୀ ପାଇଁ ସଭାରେ ହିଁ ନାଁ ପ୍ରସ୍ତାବ କରାଯିବ । ମୁଁ ବି ସଭାରେ ଉପସ୍ଥିତ ଥାଏ । ମୁରଲୀ ବାବୁ ଉଠି ଠିଆ ହେଲେ । ମୋର ଦୃଢ଼ ଧାରଣା ହେଲା ସେ ମୋ ନାଁ ପ୍ରସ୍ତାବ ଦେବେ । ଫଳ ଓଲଟା ହେଲା । ସେ ଜଗଦୀଶଙ୍କ ନାଁ ପ୍ରସ୍ତାବ କଲେ ଆଉ ଶିବ ପାଣିଗ୍ରାହୀ ସେହି ପ୍ରସ୍ତାବକୁ ସମର୍ଥନ କଲେ । ଅବଶ୍ୟ ଶିବ ପାଣିଗ୍ରାହୀ ସେତେବେଳକୁ ଆହୁରି ଅଧ୍ୟାପକ ହୋଇ ନଥିଲେ ।

Digitized by srujanika@gmail.com

ଭୁବନେଶ୍ୱରରେ ଆଞ୍ଚଳିକ କଳାକେନ୍ଦ୍ର କାର୍ଯ୍ୟକ୍ଷମ ହେଲାପରେ ସର୍ବଭାରତୀୟ ସ୍ତରରୁ ଶିଳ୍ପୀମାନେ କେନ୍ଦ୍ରର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ଭୁବନେଶ୍ୱର ଆସିଲେ । ଉପାଧକ୍ଷ ଆନନ୍ଦ ଦେବଙ୍କ ଏକ ଅଘୋଷିତ ଦଳ ଥିଲା । ଏହିସବୁ କାର୍ଯ୍ୟକ୍ରମରେ ସେହି ଦଳଭୁକ୍ତ ଶିଳ୍ପୀଙ୍କ ସଂଖ୍ୟା ବେଶି ଥିଲା । ସେମାନେ ଆମ କଲେଜର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କଲେ, କଲେଜର ପ୍ରକାଶନମାନ ସେମାନଙ୍କୁ ପ୍ରଭାବିତ କଲା । ମୋର କାର୍ଯ୍ୟ କରିବାର ବାଗ, ସାମର୍ଥ୍ୟ ଓ ସର୍ବୋପରି ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନରେ ମୋର ପ୍ରମୁଖ ଭୂମିକା ସଂପର୍କରେ ସଚେତନ ହେଲାପରେ ସେମାନେ ଚାହିଁଲେ ଯେ ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟ ହୁଏ । ଉପାଧକ୍ଷ ଆନନ୍ଦ ଦେବଙ୍କ ପାଖରେ ଏ ପ୍ରସ୍ତାବ ଆଲୋଚିତ ହୋଇ ଗୃହୀତ ହେଲା । ଆନନ୍ଦ ଦେବଙ୍କ ନିକଟରେ ମୁଁ ଅପରିଚିତ ନଥିଲି । ଆମ କଲେଜର ମହକ ଦିଲ୍ଲୀଯାଏଁ ପହଞ୍ଚିସାରିଥିଲା । ବହୁ ଆଗରୁ ମୋତେ ତାଙ୍କ ଦଳରେ ସାମିଲ କରିବା ପାଇଁ ଆନନ୍ଦ ଦେବ ଚାହୁଁଥିଲେ ।

କେନ୍ଦ୍ର ଲଳିତ କଳା ଏକାଡେମୀର ସାଧାରଣ ପରିଷଦ ପାଇଁ ନିର୍ବାଚନ ଦିନ ଧାର୍ଯ୍ୟ ହେଲା । ତା' ସହିତ ମନୋନୟନ ପତ୍ର ଦାଖଲ କରିବା ଦିନ ମଧ୍ୟ ସ୍ଥିର ହେଲା । ମୁଁ ଠିକ୍ ସମୟରେ ମନୋନୟନ ପତ୍ର ଏକାଡେମୀର ନିର୍ବାଚନ ଅଫିସରଙ୍କ ନିକଟକୁ ପଠେଇ ଦେଲି । ତାଙ୍କୁ କ'ଣ ପ୍ରରୋଚିତ କଲା କେଜାଣି ଖଲ୍ଲିକୋଟ କଳାବିଦ୍ୟାଳୟରେ ମୋର ଏକଦା ଅଧ୍ୟାପକ ଅନନ୍ତ ପଣ୍ଡା ମଧ୍ୟ ନିର୍ବାଚନ ରଣାଙ୍ଗନରେ ଉଭା ହେଲେ । ଆମେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହୋଇଗଲୁ । ଯିମିତି ସାଧାରଣ ନିର୍ବାଚନମାନଙ୍କରେ ନିର୍ବାଚନ ଆଗରୁ ବଳ କଷାକଷି ହୁଏ ସିମିତି କାର୍ଯ୍ୟକଳାପ ମଧ୍ୟ ଆରମ୍ଭ ହେଲେ । ଥରେ ସନ୍ଧ୍ୟାରେ ମୁଁ କିଛି ଛାତ୍ରଙ୍କ ସହିତ କଲେଜ ବାଲ୍‌କୋନିରେ ବସି କଥା ହେଉଛି ଅଧାପକ ପଣ୍ଡା ପେଟେ ଦେଶୀମଦ ଟୁଙ୍ଗି ଦେଇ ଖଣ୍ଡିଏ ମାଖୁନା ଜଙ୍କ୍ ଲଗା ଛୁରୀ ଧରି ପହଞ୍ଚିଗଲେ । ଗୁଣ୍ଡାମାନେ ଯେମିତି ଧମକାନ୍ତି ସେଭଳି ମୋତେ ଧମକାଇବାକୁ ଲାଗିଲେ । ମୁଁ ନିର୍ବାଚନରୁ ଓହରି ଯାଏ, ଏହା ତାଙ୍କ ଦାବି ଥିଲା । ମୁଁ ନିଜେ ପଣ୍ଡା ସାର୍‌ଙ୍କୁ କାବୁ କରିଦେବା ପାଇଁ ସମର୍ଥ ଥିଲି । ମୋ ପାଖରେ ଗଣ୍ଡାଏ ପିଲା ମଧ ଥିଲେ । ଏଣୁ ମାରଧର ଆରମ୍ଭ କଲେ ତା' ପରିଣତ ଭୟାବହ ହୋଇପାରେ । କୌଣସି ମତେ ତାଙ୍କ ରାଗ ଶାନ୍ତ କରେଇ କଲେଜ ହତା ମଧ୍ୟରୁ ବାହାର କରିଦେବାରେ ସକ୍ଷମ ହେଲି । କିନ୍ତୁ ତା' ପରମୁହୂର୍ତ୍ତରେ ମୋତେ ଯିମିତି କିଏ ତାଗିଦା ଦେଇ କହିଲା କଲିଗୋଳ ଲଗେଇବା ପାଇଁ ପଣ୍ଡା ସାର୍ ପୁଣି କଲେଜକୁ ଆସିପାରନ୍ତି । ଏଣୁ ଯାଇ ଥାନାରେ ଏତାଲା ଦେଇ ଆସିଲି । ଏହି ଘଟଣାଟି ପରିବର୍ଦ୍ଧିତ ହୋଇ ଖବର କାଗଜରେ ପ୍ରକାଶ ପାଇଲା । ''ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାକୁ କେନ୍ଦ୍ର କରି ଗୁରୁ ଶିଷ୍ୟଙ୍କୁ ଛୁରୀ ଭୂଷିବାକୁ ଉଦ୍ୟମ'' ଖବର ଛପାହେଲା ପରେ ସମସ୍ତେ

Digitized by srujanika@gmail.com

ଅବଶ୍ୟ ଜାଣିବାକୁ ପାଇଲେ ଯେ କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟପଦ ପାଇଁ ଶିଳ୍ପୀଙ୍କ ମଧ୍ୟରେ ହିଂସା ମଧ୍ୟ ସମ୍ଭବ ।

ସେତେବେଳର ଭୋଟ ପାଇଁ ଉଦ୍ଦିଷ୍ଟ ପଦ୍ଧତି ହେଲା ମନୋନୟନ ପତ୍ର ଯାଞ୍ଚ ପରେ ଗୃହୀତ ହୋଇଥିବା ଶିଳ୍ପୀଙ୍କ ନାମ ଥାଇ ବ୍ୟାଲଟ୍ ପେପର୍ ଛପାଯାଇ ପ୍ରତି ଭୋଟରଙ୍କ ପାଖକୁ ଡାକଯୋଗେ ପଠାଯିବ ଏବଂ ଭୋଟରମାନେ ସେମାନଙ୍କ ମନପସନ୍ଦ ପନ୍ଦର ଜଣଙ୍କ ନାଁ ଆଗରେ ରାଇଟ୍ ଚିହ୍ନଦେଇ ଏକାଡେମୀର ନିର୍ବଚନ ଅଫିସରଙ୍କ ପାଖକୁ ଫେରସ୍ତ କରିବେ । କିନ୍ତୁ ବାସ୍ତବ କ୍ଷେତ୍ରରେ ଆମେ ଭୋଟର ମାନଙ୍କୁ ପ୍ରଭାବିତ କରି ସେମାନଙ୍କଠାରୁ ବ୍ୟାଲଟ୍ ପେପର୍ ଗୁଡ଼ିକ ସଂଗ୍ରହ କରି ଦଳର ନିର୍ଦ୍ଦେଶ ଅନୁଯାୟୀ ପନ୍ଦର ଜଣଙ୍କୁ ଭୋଟ ଦେଲାପରେ ସେଗୁଡ଼ିକ ଜଉମୁଦ କରି ଦିଲ୍ଲୀ ପଠେଇ ଦେଉଥିଲୁ । ଭୁବନେଶ୍ୱରରେ ଆମ ଦଳର ସକ୍ରିୟ ସଭ୍ୟମାନେ ହେଲେ ରାମହରି ଜେନା, ଚନ୍ଦ୍ରଶେଖର ରାଓ, ବିପିନ୍ ବିହାରୀ ସାହୁ ଓ ଡି. ନାରାୟଣ ରାଓ । ସମଗ୍ର ଭାରତବର୍ଷକୁ ଭୋଟ କାର୍ଯ୍ୟ ପରିଚାଳନା ପାଇଁ ଛ, ସାତ ଜୋନ୍‌ରେ ବାଣ୍ଟି ଦିଆଯାଇଥିଲା । ଭୁବନେଶ୍ୱର ଭାଗରେ ମଧ୍ୟପ୍ରଦେଶ ଓ ବିହାର ପଡ଼ିଥିଲା । ଆମ ବନ୍ଧୁମାନେ ଭୁବନେଶ୍ୱର, କଟକ, ଖୋର୍ଦ୍ଧା ଓ ବ୍ରହ୍ମପୁରରୁ ବ୍ୟାଲେଟ୍ ପେପରଗୁଡ଼ିକ ସଂଗ୍ରହ କରି ଭୋପାଳରେ ପହଞ୍ଚୁଥିଲେ । ମଧ୍ୟପ୍ରଦେଶରୁ ସଂଗୃହୀତ ବ୍ୟାଲଟ୍ କାଗଜ ଗୁଡ଼ିକ ଜଣେ ବିଶ୍ୱସ୍ତ ବନ୍ଧୁ ଜରିଆରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚୁଥିଲା । ଭୁବନେଶ୍ୱର ଓ ବିହାରରୁ ଭୋପାଳ ଯାଇଥିବା ଦଳର ପ୍ରତିନିଧିମାନଙ୍କର ସ୍ୱତନ୍ତ୍ର କୋଡ୍ ନମ୍ବର ଥିଲା । ଏହି କୋଡ୍ ନମ୍ବର ହିଁ ପରସ୍ପରକୁ ଚିହ୍ନେଇବାରେ ସାହାଯ୍ୟ କରୁଥିଲା । କାଳେ ବିରୋଧି ଦଳର ଲୋକେ ଭୋଟ କାଗଜର ସ୍ଥାନାନ୍ତରୀକରଣ ପ୍ରକ୍ରିୟାକୁ ଧରିନେବେ ତେଣୁ ଏହି କାର୍ଯ୍ୟରେ ଆମେ ଅପେକ୍ଷାକୃତ ଅଜଣା ଲୋକଙ୍କୁ ବ୍ୟବହାର କରୁଥିଲୁ । ମେମ୍ବରଟିଏ ହେବା ପାଇଁ କେତେ ସତର୍କତା, ଯନ୍ତ୍ରଣା ଓ ଅବୈଧତା ଏବେ ସେକଥା ଭାବିଲାବେଳକୁ ନିଜକୁ ଧିକ୍‌କାରିବାକୁ ଇଚ୍ଛା ହୁଏ । ଅବଶ୍ୟ ଆମ ଗଣତନ୍ତ୍ରରେ ସ୍ୱଚ୍ଛ ଦିବାଲୋକରେ ଭୋଟ ରାଜନୀତି ପାଇଁ ଯାହାସବୁ ଘଟିଯାଉଛି ତାହା ତୁଳନାରେ ଆମେ ଯେଉଁ ଅବୈଧ କାର୍ଯ୍ୟରେ ଲିପ୍ତ ରହୁଥିଲୁ ତାହା ଅତ୍ୟନ୍ତ ନଗଣ୍ୟ ।

ଦିଲ୍ଲୀ ଲଳିତ କଳା ଏକାଡେମୀରେ ଭୋଟ ଗଣାହେଲାବେଳକୁ ଦେଖାଗଲା ଆମ ଦଳର ଶିଳ୍ପୀମାନେ ବିପୁଳ ଭୋଟ ପାଇଁ ନିର୍ବାଚିତ ହୋଇଛନ୍ତି । ମୁଁ ସେଥର ନିର୍ବାଚନରେ ସାତଶହ ପଞ୍ଚଷଠି ଭୋଟ ପାଇ ସର୍ବଭାରତୀୟ ତାଲିକାରେ ତୃତୀୟ ସ୍ଥାନରେ ଥାଏ । ଏଭଳି ବି ହେଇଛି ଜଣେ ଜଣେ ଭୋଟଦାତା ଆମକୁ ଭୋଟ କାଗଜଟି ବଢ଼େଇ ଦେବା ଆଗରୁ ସେମାନଙ୍କ ମନ ପସନ୍ଦର ଦୁଇତିନିଜଣ ଶିଳ୍ପୀଙ୍କୁ ଭୋଟ ଦେବାକୁ ଭୁଲି

Digitized by srujanika@gmail.com

ନଥାନ୍ତି ଏହା ଫଳରେ ଭୋଟ ଫଳାଫଳରେ ସାମାନ୍ୟ ତାରତମ୍ୟ ଘଟିଥାଏ । ଅନନ୍ତ ପଣ୍ଡା ଅଠରଟି ଭୋଟ ପାଇ ଶୋଚନୀୟ ଭାବେ ପରାଜିତ ହୋଇଥିଲେ । ମୁଁ ତ ନିର୍ବାଚିତ ହୋଇଥିଲି କିନ୍ତୁ ସ୍ୱୀକୃତିପ୍ରାପ୍ତ ଅନୁଷ୍ଠାନ ଗଂଜାମ ଜିଲ୍ଲା ଚିତ୍ରଶିକ୍ଷକ ସଂଘ ଓ ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ ଚନ୍ଦ୍ରଶେଖର ରାଓ ମନୋନୀତ ହୋଇଥିଲେ । ରାଜ୍ୟ ଲଳିତ କଳା ଏକାଡେମୀର ମନୋନୀତ ପ୍ରତିନିଧି ଥିଲେ ଜଗଦୀଶ ବାବୁ । ଆମେ ସବୁ ନିର୍ବାଚିତ ସଭ୍ୟ ଦିଲ୍ଲୀରେ ପହଂଚିଲୁ । ବାହୱଲପୁର୍ ହାଉସ୍ ପରିସରରେ ଥିବା ଲଳିତ କଳା ଏକାଡେମୀର ଅତିଥି ଭବନରେ ଆମ ଦଳର ସଭା ବସିଲା । ମୁଁ ଅଶୋକ ଯାତ୍ରୀ ନିବାସରେ ରହୁଥାଏ । ତନ୍ଦୁରୀ ଚୂଲିରେ ମଣିଷ ପୋଡ଼ି ଘଟଣାର ବହୁପୂର୍ବର ଅଶୋକ ଯାତ୍ରୀ ନିବାସ । ଦୈନିକ ଭଡ଼ା ଚାରିଶ ପାଂଚଶ ଟଙ୍କା । ଆମ ଦଳର ନିର୍ବାଚିତ ସଭ୍ୟ ରହୁଥାନ୍ତି ଲଳିତ କଳା ଏକାଡେମୀର ଅତିଥି ଭବନର ଡରମିଟୋରୀରେ । ଏଭଳି ସହାବସ୍ଥାନର ଯଦିଚ ସ୍ୱତନ୍ତ୍ର ମଜାଥାଏ କିନ୍ତୁ ମଦ, ସିଗାରେଟ ଧୂଆଁ ଓ ବକ୍‌ବାଜି ର ପ୍ରାବଲ୍ୟ ଭିତରେ ମୁଁ ଅଣନିଃଶ୍ୱାସୀ ହେବାକୁ ଚାହୁଁ ନଥିଲି । ଲଳିତ କଳା ଅତିଥି ଭବନ ସଭାରେ ନିର୍ବାଚିତ ସଭ୍ୟମାନଙ୍କୁ ଓଡ଼ିଶାର ଆଧୁନିକ କଳା କ୍ଷେତ୍ରରେ ଘଟିଥିବା ଦୁର୍ଦ୍ଦଶା, ଅନଗ୍ରସରତା ଓ ଭାରତୀୟ କଳାଧାରାକୁ ଆଗେଇ ନେବାକୁ ହେଲେ ଆଂଚଳିକ କଳାଶୈଳୀର ସ୍ୱୀକୃତି ଯେ କେତେ ମାତ୍ରାରେ ଏକାଡେମୀର ଧ୍ୟେୟ ହେବା କଥା-ତା'ପରେ ଗୁରୁତ୍ୱ ଦେଇ ଭାଷଣଟିଏ ଦେଇଥିଲି । ଅବଶ୍ୟ ଆମ ଦଳର ଶିଳ୍ପୀମାନଙ୍କ ବିଜୟ ପାଇଁ ଦଳର ସମସ୍ତ କର୍ମକର୍ତ୍ତାଙ୍କ ନିଷ୍ଠା ଏବଂ ଦଳପତି ଆନନ୍ଦ ଦେବଙ୍କ ବଳିଷ୍ଠ ନେତୃତ୍ୱ ଯେ ଶହେପଣ ଦାୟୀ ଏହା ସ୍ୱୀକାର ମଧ୍ୟ କରିଥିଲି । ଆନନ୍ଦ ଦେବ ଓ ଅନ୍ୟାନ୍ୟ ବନ୍ଧୁ ମୋ ଭାଷଣ ଦ୍ୱାରା ପ୍ରଭାବିତ ହେବାଭଳି ମନେହେଲା । ଆନନ୍ଦ ଦେବ ମୋତେ ବଳେଇ ଦେବା ପାଇଁ ଯାତ୍ରୀ ନିବାସ ପର୍ଯ୍ୟନ୍ତ ଆସିଲେ । ଗାଡ଼ି ଭିତରେ ମୋତେ କହିଲେ, 'ପାଠୀ ତମର ବିଚକ୍ଷଣତାରେ ମୁଁ ମୁଗ୍ଧ, କିନ୍ତୁ ତମେ କାର୍ଯ୍ୟନିର୍ବାହୀ ସମିତିକୁ ନିର୍ବାଚିତ ହେବା ପାଇଁ ମନରେ ଆଶା ବାନ୍ଧିବ ନାହିଁ । ତମେ ଗ୍ରାମୀଣ ପରିବେଶରୁ ଆସିଛ । ଏଠାକାର କଳା ରାଜନୀତିରେ କ'ଣ କେତେବେଳେ ଘଟିବ ତାହା କହିହେବ ନାହିଁ ।'

ଦଳୀୟ ସଭାର ଦୁଇଦିନ ପରେ ଲଳିତ କଳାର ନିର୍ବାଚିତ ସଭ୍ୟ ଏବଂ ମନୋନୀତ ସଭ୍ୟଙ୍କ ସରକାରୀ ବୈଠକ ବସିଲା । ଏହାଥିଲା ବୃହତ୍ତର ସାଧାରଣ ପରିଷଦର ସଭା । ଏହି ସଭାରେ କାର୍ଯ୍ୟନିର୍ବାହୀ ସମିତି ଗଢ଼ାହେଲା । ସଭାରେ ଜଣାପଡ଼ିଲା ମୁଁ ସମସ୍ତଙ୍କଠରୁ ବେଶି ଭୋଟ ପାଇଁ କାର୍ଯ୍ୟନିର୍ବାହୀ ସମିତିକୁ ନିର୍ବାଚିତ ହେଇଛି ।

ଏହାହେଲା ପ୍ରଥମ ଥରର ଭୋଟ ରାଜନୀତି । ପାଞ୍ଚବର୍ଷପରେ ୧୯୯୩ ମସିହାରେ ପୁଣି ଭୋଟ ହେଲା । ଏଥର ମୋତେ ଆଉ ନିର୍ବାଚନ ଲଢ଼ିବାକୁ ପଡ଼ିଲା

Digitized by srujanika@gmail.com

ନାହିଁ । ଡକ୍ଟର ସୀତାକାନ୍ତ ମହାପାତ୍ର ଭାରତ ସରକାରଙ୍କ ସଂସ୍କୃତି ବିଭାଗର ସଚିବ ଥାଆନ୍ତି । ଅଶୋକ ବାଜପାୟୀ ଥାଆନ୍ତି ଯୁଗ୍ମ ସଚିବ । ଅଶୋକ ବାଜପାୟୀଙ୍କ ଖାସ୍ ଲୋକ ଅର୍ଜୁନ ସିଂହ ଥିଲେ କେନ୍ଦ୍ରମନ୍ତ୍ରୀ । ଅଶୋକ ବାବୁ ଭୋପାଳର ଆମ ବନ୍ଧୁ ୟୁସୁଫ୍ ଓ ଆୟାରଙ୍କ ନାଁ ସୁପାରିଶ କରି ସଚିବଙ୍କ ପାଖକୁ ଫାଇଲ୍ ପଠାଇଲେ । ଭାରତ ସରକାରଙ୍କ ତରଫରୁ ଦୁଇଜଣ ପ୍ରତିନିଧି ଏକାଡେମୀର କାର୍ଯ୍ୟନିର୍ବାହୀ ସମିତିକୁ ଯିବେ । ଫାଇଲ୍ ମନ୍ତ୍ରୀଙ୍କ ନିକଟକୁ ଯିବା ପୂର୍ବରୁ ଡକ୍ଟର ମହାପାତ୍ର ୟୁସୁଫଙ୍କ ପ୍ରତିନିଧିତ୍ୱକୁ ଅକ୍ଷୁର୍ଣ୍ଣ ରଖି ଅନ୍ୟଜଣକ ଯାଗାରେ ମୋତେ ମନୋନୀତ କଲେ । ଭାରତ ସରକାରଙ୍କ ଖାସ୍ ପ୍ରତିନିଧି ହେଇଯିବାରୁ ଏକାଡେମୀକୁ ମୋ ରାସ୍ତା ସୁଗମ ହୋଇଗଲା । ଏଥର ଚନ୍ଦ୍ରଶେଖର ରାଓ ଆମ ଦଳୀୟ ଟିକେଟରେ ନିର୍ବାଚନ ଲଢ଼ିଲେ ଆଉ ବିଜୟୀ ମଧ୍ୟ ହେଲେ । ଫର୍ମୁଲା ଏକାଭଳି । ଡି.ନାରାୟଣ ରାଓ ଗଞ୍ଜାମ ଜିଲ୍ଲା ଚିତ୍ର ଶିକ୍ଷକ ସଂଘ ଓ ୱାର୍କିଙ୍ଗ୍ ଆର୍ଟିଷ୍ଟ୍ ଆସୋସିଏସନ୍ ତରଫରୁ ମେମ୍ବର ହେଲେ । ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ ତାଙ୍କର ସ୍ଥାୟୀ ଅନୁଷ୍ଠାନ ରାଜ୍ୟ ଲଳିତ କଳା ଏକାଡେମୀର ପ୍ରତିନିଧିତ୍ୱ କଲେ । ମୋତେ ମିଶାଇ ଓଡ଼ିଶାରୁ ସଭ୍ୟ ହେଲେ ଚାରି । ସାଧାରଣ ପରିଷଦ ଓଡ଼ିଶାର ମନ୍ତ୍ରୀ ଅନଙ୍ଗ ଉଦୟ ସିଂହ ଦେବଙ୍କ ସ୍ତ୍ରୀ ବିଜୟଲକ୍ଷ୍ମୀ ଦେବୀଙ୍କୁ କାରୁଶିଳ୍ପ ଏକସ୍‌ପାର୍ଟ୍ ହିସାବରେ ମନୋନୀତ କରିବାରୁ ଆମ ସଂଖ୍ୟା ପାଞ୍ଚ ହେଲା । ଆଗରୁ କେବେହେଲେ ଏତେଜଣ ଓଡ଼ିଆ ଶିଳ୍ପୀ କେନ୍ଦ୍ର ଲଳିତ କଳା ଏକାଡେମୀର ସଭ୍ୟ ହୋଇ ନଥିଲେ କି ନିକଟ ଭବିଷ୍ୟତରେ ହେବା ସମ୍ଭବ ନୁହେଁ । ସେହି ସମୟରେ ପାର୍ଲିଆମେଣ୍ଟ୍‌ର ମଧ୍ୟ ଓଡ଼ିଆ ରାଜନେତାଙ୍କ ପ୍ରଭାବ ଅନୁଭୂତ ହେଉଥିଲା । ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟ କେନ୍ଦ୍ରମନ୍ତ୍ରୀ ଥିବାବେଳେ ରବି ରାୟ ଥିଲେ ଲୋକସଭାର ବାଚସ୍ପତି ଓ ରଙ୍ଗନାଥ ମିଶ୍ର ଥିଲେ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି ।

Digitized by srujanika@gmail.com

# ୫୭. ପଂଚତିରିଶି ବର୍ଷର କଳା : ସିଂହାବଲୋକନ ଚିତ୍ର ପ୍ରଦର୍ଶନୀ

ଦିଲ୍ଲୀରେ ମୋ ନିଜ ହାତଅଙ୍କା ଚିତ୍ରର ଗୋଟିଏ ବଡ଼ଧରଣର ପ୍ରଦର୍ଶନୀ କରିବା ପାଇଁ ଦୁଇ ତିନିଥର ପ୍ରୟାସ କରିଛି । କିନ୍ତୁ ଥରେ ହେଲେ ମୁଁ କୃତକାର୍ଯ୍ୟ ହୋଇପାରିନି । ୧୯୭୨ ରେ ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର୍ ଭାବେ ଯୋଗଦେଲା ପରେ ଜାତୀୟ ସଂଗ୍ରହାଳୟରେ ଇନ୍‌ସର୍ଭିସ୍ ଟ୍ରେନିଙ୍ଗ୍ ପାଇଁ ସୁଯୋଗ ମିଳିବ ବୋଲି ମ୍ୟୁଜିୟମ୍‌ର କିଛି ବନ୍ଧୁ ମୋତେ ଆଗରୁ ସଚେତନ କରିଦେଇଥିଲେ । ଯଦି ଏଭଳି ସୁଯୋଗ ଆସେ ତା'ର ସଦୁପଯୋଗ କରିବା ପାଇଁ ଆଗତୁରା ମୁଁ ଏକାଧିକ୍ରମେ ତିନିଫୁଟ ଦୁଇଫୁଟ ସାଇଜ୍‌ର ଗୁଡ଼ାଏ ତୈଳଚିତ୍ର କରିବସିଲି । ମୋର ଧାରଣା ଥିଲା ଛୋଟ ସାଇଜ୍‌ର ଚିତ୍ରଗୁଡ଼ିକୁ ନିଅ ଆଣ କରିବା ସହଜ ହେବ ଏବଂ ସଂଗ୍ରହାଳୟ ରେ ସେଗୁଡ଼ିକ ପ୍ରଦର୍ଶିତ ହେଲେ ସେଠି ଅଧିକା ଜାଗା ମାଡ଼ିବସିବନି । ସଂସ୍କୃତି ବିଭାଗର ଉପନିର୍ଦ୍ଦେଶକ ଅର୍ଜୁନ ଯୋଶୀଙ୍କ ଅବହେଳା ଯୋଗୁ ମୋ ଦରଖାସ୍ତଟି ଠିକ୍ ସମୟରେ ସୁପାରିଶ ହୋଇ ଜାତୀୟ ସଂଗ୍ରହାଳୟ ଅଫିସ୍‌ରେ ପହଂଚି ପାରିଲା ନାହିଁ ଏଣୁ ମୋ ପ୍ରଦର୍ଶନୀ ଯୋଜନା ଅଧୁରା ରହିଲା । କଂଗ୍ରେସ ପାର୍ଟିର ମହାସଚିବ ଶ୍ୟାମସୁନ୍ଦର ମହାପାତ୍ର ଏକଦା ମୋତେ ପାର୍ଲିଆମେଣ୍ଟର ଏନେକ୍ସି ଭିତରେ ପ୍ରଦର୍ଶନୀ କରାଇଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ସେ ତାଙ୍କ ଭଉଣୀ ମାଧ୍ୟମରେ ଏଭଳି ନିଷ୍ପତ୍ତିଟିଏ ମୋତେ ଶୁଣେଇଦେଇ ଜଣେ ଶିଳ୍ପୀର ମଗଜକୁ ଆନ୍ଦୋଳିତ କରିଦେଇଥିଲେ । ତାଙ୍କ ପ୍ରତିଶ୍ରୁତି ପାଣିରେ ଗାର ଭଳି ହୋଇଗଲା । ଶ୍ୟାମସୁନ୍ଦର ମହାପାତ ସେ ସମୟରେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ପ୍ରଭାବିତ କରେଇବା ଅବସ୍ଥାରେ ଥିଲେ । ପ୍ରଦର୍ଶନୀ ତ ଛାର କଥା ।

ବାରମ୍ବାର ରାସ୍ତାରେ ଝୁଂଟିବା ସତ୍ତ୍ୱେ ମୁଁ ମୋ ଲକ୍ଷ୍ୟରୁ ବିଚ୍ୟୁତ ହୋଇ ନଥିଲି । କେନ୍ଦ୍ର ଲଳିତ କଳା ଏକାଡେମୀର କାର୍ଯ୍ୟନିର୍ବାହୀ ସଦସ୍ୟ ଭାବେ ନିର୍ବାଚିତ ହେଲାପରେ ମୋ ମନ ଭିତରେ ପ୍ରଦର୍ଶନୀ କଥାଟି ପୁଣିଥରେ ଉଙ୍କିମାରିଲା ଏବଂ ମୋର ସମସ୍ତ ସାମର୍ଥ୍ୟ ଖଟାଇ ପ୍ରଦର୍ଶନୀ ଆୟୋଜନରେ ଲାଗି ପଡ଼ିଲି ।

Digitized by srujanika@gmail.com

ବିଭିନ୍ନ ସମୟରେ ଓଡ଼ିଶାର ଶିଳ୍ପୀମାନେ ଦିଲ୍ଲୀ ଲଳିତ କଳା ଏକାଡେମୀରେ ଓଡ଼ିଶାର ପ୍ରତିନିଧିତ୍ୱ କରୁଥିଲେ । ଏମାନଙ୍କ ମଧ୍ୟରୁ ଗୋପାଳ ଚରଣ କାନୁନ୍‌ଗୋ, ଶରତ ଚନ୍ଦ୍ର ଦେବ ଓ ଅନନ୍ତ ପଣ୍ଡାଙ୍କୁ ବାଦଦେଲେ ଅନ୍ୟମାନଙ୍କର ସେଠି ପତିଆରା ନଥିଲା ଏବଂ ଉଚ୍ଚକୋଟୀର ଶିଳ୍ପୀଭାବରେ ପରିଚୟ ମଧ୍ୟ ନଥିଲା । ମୁଁ ଯେତେବେଳେ ଜଣେ ସଭ୍ୟଭାବରେ ସେଠି ପହଂଚିଲି ଦୁଇଟି ଅଭାବବୋଧକୁ ମେଣ୍ଟେଇବା ପାଇଁ ଚେଷ୍ଟା କଲି । ଗୋଟିଏ ହେଲା ଓଡ଼ିଆ ଶିଳ୍ପୀ ଓ ଓଡ଼ିଶାର ଦାବିକୁ ଦିଲ୍ଲୀ ମହଲରେ ଭଲ ଭାବରେ ଉପସ୍ଥାପନା ଓ ଅନ୍ୟଟି ହେଲା ଜଣେ ଭଲ ଶିଳ୍ପୀ ଭାବରେ ନିଜର ଅସ୍ମିତାର ପ୍ରତିଷ୍ଠା । ଓଡ଼ିଆ ଶିଳ୍ପୀ ଯତୀନ ଦାସ ଦିଲ୍ଲୀରେ ଅନେକ ଦିନ ଧରି ରହୁଥିବାରୁ ଓ ପ୍ରଫୁଲ୍ଲ ମହାନ୍ତି ଲଣ୍ଡନରେ ରହି ସୁଦ୍ଧା ମଝିମଝିରେ ବମ୍ବେ ଓ ଦିଲ୍ଲୀରେ ନିଜର ଚିତ୍ର ପ୍ରଦର୍ଶନ କରୁଥିବାରୁ ଦିଲ୍ଲୀ ମହଲରେ ସେ ଦୁହିଁଙ୍କର ପରିଚୟ ଥିଲା । ଦିଲ୍ଲୀ କଥା ପଡ଼ିଲେ ଓଡ଼ିଶାର ଲୋକମାନେ ଯତୀନ ଦାସ (ଆକାଶବାଣୀର ଘୋଷକ ଯତୀନ ଦାସ ବି ଅନେକଙ୍କର ମନକୁ ଆସୁଥିଲେ)ଙ୍କ କଥା ହିଁ ମନେ ପକାଉଥିଲେ ଯଦିଓ ସେ ଓଡ଼ିଶାର ସାଂପ୍ରତିକ କଳାର ଉନ୍ନତି ପାଇଁ ବା କୌଣସି ଶିଳ୍ପୀର ଅଭିବୃଦ୍ଧିରେ କେବେ ସହାୟକ ହେବାର ପ୍ରମାଣ ନାହିଁ । 'ନିଜେ ବଂଚିଲେ ବାପର ନାଁ' ନୀତିରେ ସେ ବିଶ୍ୱାସ କରୁଥିଲେ, ଏବେ ବି କରନ୍ତି ।

ମୁଁ ରବୀନ୍ଦ୍ର ଭବନର 'ଫୋୟର୍' କୁ ଛାଡ଼ି ସବୁତକ ଗ୍ୟାଲେରୀ ମୋ ପ୍ରଦର୍ଶନୀ ପାଇଁ ଭଡ଼ାରେ ନେଇଗଲି । ଭୂଇଁତଳର ବେସ୍‌ମେଣ୍ଟ୍‌କୁ ବାଦ୍ ଦେଲେ ଲଳିତ କଳା ଏକାଡେମୀର ଗ୍ୟାଲେରୀଟି ଦୁଇ ମହଲା ଏବଂ ଶତାଧିକ ଛବି ନହେଲେ ଏଠି ପ୍ରଦର୍ଶନୀ ଚୋଟକ ହେବ ନାହିଁ । ମୁଁ ଆକଳନ କରି ପାରୁଥିଲି ପ୍ରଦର୍ଶନୀଟି ଖୁବ୍ ବଡ଼ ଧରଣର ହେବ ଏବଂ ଏଇଥିପାଇଁ ମୋତେ ଯଥେଷ୍ଟ ଅର୍ଥ ଓ ଜନବଳର ଆବଶ୍ୟକତା ପଡ଼ିବ । ଅର୍ଥାଗମର ଅନ୍ୟପନ୍ଥା ନଥିବାରୁ ମୁଁ ମୋର ଭବିଷ୍ୟନିଧି ପାଣ୍ଠିରୁ ଟଙ୍କା ଧାର ଆଣିବାର ବନ୍ଦୋବସ୍ତ କଲି । କୋଡ଼ିଏ ବର୍ଷ ତଳେ ଦେଢ଼ଲକ୍ଷ ଟଙ୍କା ଯୋଗାଡ଼ କରିବା ମୋ ପାଇଁ ଅତ୍ୟନ୍ତ କଷ୍ଟସାଧ୍ୟ ଥିଲା । ମୋତେ କିଏ ଏତେ ସାହସ ଦେଲା କେଜାଣି ମୁଁ ମନେମନେ ସ୍ଥିର କଲି ହୁଏତ ଏହା ଦିଲ୍ଲୀରେ ମୋର ପ୍ରଥମ ଓ ଶେଷଚିତ୍ର ପ୍ରଦର୍ଶନୀ ହେଇପାରେ । ଦିଲ୍ଲୀର ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ବହୁ ପ୍ରଦର୍ଶନୀର ଦାୟିତ୍ୱ ତୁଲାଇଛି, ତାହା କିନ୍ତୁ ସରକାରୀ ପ୍ରଦର୍ଶନୀ । ଏହି ପ୍ରଦର୍ଶନୀଟି ସଂପୂର୍ଣ୍ଣ ମୋର, ମୋର ଶିଳ୍ପୀଜୀବନର ଉତ୍କର୍ଷକୁ ନେଇ ଆଡ଼ମ୍ବର ।

ଏଭଳି ପ୍ରଦର୍ଶନୀମାନଙ୍କରେ ତିନିଚାରୋଟି କଥା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ହେଲା କ୍ୟାଟ୍‌ଲାଗ୍ ବା ପ୍ରଦର୍ଶନୀ ପୁସ୍ତିକା । ଦ୍ୱିତୀୟଟି ପ୍ରଦର୍ଶନୀ ପାଇଁ ପୋଷ୍ଟର୍, ତୃତୀୟଟି ନିମନ୍ତ୍ରଣ ପତ୍ର ଓ ଚତୁର୍ଥଟି ହେଲା ଚିତ୍ରଗୁଡିକ ଉପସ୍ଥାପନାରେ ରୁଚିବୋଧ । ପ୍ରଦର୍ଶନୀର

Digitized by srujanika@gmail.com

ଶୀର୍ଷକ ହେଲା 'ଥାର୍ଟି ଫାଇଭ୍ ଇଅର୍ସ୍ ଅଫ୍ ଆର୍ଟ୍' ବା ପଂଚତିରିଶି ବର୍ଷର କଳା, ୧୯୫୬ ମସିହାଠାରୁ ୧୯୯୧ ମସିହା ଯାଏଁ । ୧୯୫୬ ମସିହାରେ ଶିବ ପାର୍ବତୀ ଜଳରଙ୍ଗର ଚିତ୍ର ପାଇଁ ମୁଁ ଗଂଜାମ ଜିଲ୍ଲା ଚିତ୍ରଶିକ୍ଷକ ସଂଘର ସର୍ବଭାରତୀୟ ପ୍ରଦର୍ଶନୀରେ ପ୍ରଥମ କରି ସ୍ୱର୍ଣ୍ଣପଦକ ପାଇଥିବାରୁ ଏହାକୁ ନିଜ ଶୈଳ୍ପିକ କୃତିର ପ୍ରଥମ ନିଦର୍ଶନ ଭାବେ ଗ୍ରହଣ କରି ସେଇଠୁ ମୋ କଳାଯାତ୍ରାର ଆକଳନ କରିଥିଲି । ପ୍ରଦର୍ଶନୀର ଗୋଟିଏ ଲୋଗୋ ମଧ୍ୟ ପ୍ରସ୍ତୁତ କଲି । ଲଳିତ କଳା ଏକାଡେମୀର ପ୍ରକାଶନ ବିଭାଗର ମୁଖ୍ୟ ୱାଇ.ଏନ୍. ଭାର୍ଗବ ଓ ତାଙ୍କ ସହଯୋଗୀ ବିକ୍ରମ ମେହେରା ପ୍ରଦର୍ଶନୀ ପୁସ୍ତିକାର ଡିଜାଇନ୍ କରିବାରେ ସାହାଯ୍ୟ କଲେ । ଦିଲ୍ଲୀର ନିଉଟେକ୍ ଫଟୋଲିଥୋଗ୍ରାଫର୍ସ୍ ପ୍ରେସ୍‌ରେ ପ୍ରଦର୍ଶନୀ ପୁସ୍ତିକାଟି ଆର୍ଟ୍ ପେପର୍ ଉପରେ ରଙ୍ଗିନ ମୁଦ୍ରଣ ହୋଇଥିଲା । ପେପରବ୍ୟାକ୍ ଓ ତା' ଉପରେ ଗ୍ରେସ୍ ପେପର୍‌ର ଜ୍ୟାକେଟ୍ ମଡ଼ିଆ ଯାଇଥିଲା । ଯତୀନ୍ ଦାସ ପ୍ରଦର୍ଶନୀ ପୁସ୍ତିକାଟି ଦେଖି ନିଜର କ୍ଷୋଭ ପ୍ରକାଶ କରି କହିଲେ : ''ଶଳେ ଓଡ଼ିଆଙ୍କ ନୂଆ ବୁଦ୍ଧି ନାହିଁ, ଖାଲି କପି କରୁଛନ୍ତି'' । ଏଭଳି ବାକ୍ୟ ବିନ୍ଧିବାର କାରଣ ହେଲା ଯେ ଯତୀନ ଆଗରୁ ତାଙ୍କ ପ୍ରଦର୍ଶନୀ ପୁସ୍ତିକାର ମଲାଟରେ ଯେଉଁଭଳି କାଗଜ ବ୍ୟବହାର କରିଥିଲେ, ଭାର୍ଗବ ବା ନିଉଟେକ୍ ଫଟୋ ଲିଥୋଗ୍ରାଫରସ୍ ସେଇ ଏକାଭଳି କାଗଜ ମୋ ପ୍ରଦର୍ଶନୀ ପୁସ୍ତିକାରେ ମଧ୍ୟ ଲଗାଇଲେ । ଏଭଳି ହେବାରେ କୌଣସି ଓଡ଼ିଆର କିଛି ନିର୍ଦ୍ଦିଷ୍ଟ ଭୂମିକା ନଥିଲା । ଓଡ଼ିଆମାନେ ତୁଚ୍ଛାଟାରେ କେବଳ ଗାଳିତକ ଶୁଣିଲେ ।

ମୋ ଚିତ୍ର ପ୍ରଦର୍ଶନୀର ନିମନ୍ତ୍ରଣ ପତ୍ର ପାଇଲାପରେ ଓଡ଼ିଶାରେ ମୋର କିଛି ବନ୍ଧୁ ସାଙ୍ଗେ ସାଙ୍ଗେ ଯତୀନ ଆଉ ମୋ ଭିତରେ ତୁଳନା କରିବା ଆରମ୍ଭ କରିଦେଲେ । ସେମାନଙ୍କ କହିବା କଥା ରବୀନ୍ଦ୍ର ଭବନରେ ଯତୀନଙ୍କ ପରେ ପରେ ମୋର ହେଉଛି ଆଉ ଜଣେ ଓଡ଼ିଆ ଶିଳ୍ପୀର ଦ୍ୱିତୀୟ ଏକକ ପ୍ରଦର୍ଶନୀ । ଏହି ଦୁଇଜଣଙ୍କ ବ୍ୟତୀତ ଆଉ ଅନ୍ୟ କୌଣସି ଓଡ଼ିଆ ଶିଳ୍ପୀ ଏତେବଡ଼ ଧରଣର ଏକକ ପ୍ରଦର୍ଶନୀ ରବୀନ୍ଦ୍ର ଭବନରେ କରିନାହାନ୍ତି । ଯତୀନ କିନ୍ତୁ ରବୀନ୍ଦ୍ର ଭବନ ଗ୍ୟାଲେରୀ ସାରା ମୋ ଛବି ଭରି ଯାଇଥିବା ଦେଖି ଅଧୈର୍ଯ୍ୟ ହେଲେ । 'ଫୋୟର' ରୁ ମୁଁ ମୋ ଛବି ଟାଙ୍ଗିବା ଆରମ୍ଭ କରିଦେଇଥିଲି । ମୋ ଛବି ସହିତ ମୋର ପ୍ରକାଶିତ ବହିଗୁଡ଼ିକ ମଧ୍ୟ ସେଠାରେ ପ୍ରଦର୍ଶିତ ହୋଇଥିଲା । ଦର୍ଶକମାନେ ଏତେସବୁ ସ୍ପର୍ଦ୍ଧିତ ଆଡ଼ମ୍ବର ଦେଖି ନିଜକୁ ପ୍ରଶ୍ନ କରୁଥିଲେ, ''ଭୁବନେଶ୍ୱର ଭଳି ସାଂପ୍ରତିକ କଳାର ଅନଗ୍ରସର ରାଜ୍ୟରେ ରହି, ପୁଣି ସରକାରୀ ଚାକିରି କରି ଏତେକଥା କ'ଣ ସମ୍ଭବ ?'' ମୋ ପ୍ରଦର୍ଶନୀ ପୁସ୍ତିକାରେ ଇଲଷ୍ଟ୍ରେଟେଡ୍ ୱିକ୍‌ଲିର ପ୍ରାକ୍ତନ ସଂପାଦକ ଡକ୍ଟର ଏ.ଏସ୍. ରମଣ ଅଗ୍ରଲେଖ ଲେଖିଥିଲେ ଏବଂ ଶାନ୍ତିନିକେତନ କଳାଭବନର ପ୍ରଫେସର୍ କେ.ଜି. ସୁବ୍ରମଣିଅନ୍, ବରୋଦା ଏମ୍.ଏସ୍. ବିଶ୍ୱବିଦ୍ୟାଳୟର ପ୍ରଫେସର୍ ଜ୍ୟୋତି

Digitized by srujanika@gmail.com

ଭଟ୍ଟ, ମୋ ନିଜ ଶିକ୍ଷକ ଅଜିତ କେଶରୀ ରାୟ ଓ ଅନନ୍ତ ପଣ୍ଡା ଭୂୟସୀ ପ୍ରଶଂସା କରି ଲେଖାମାନ ଲେଖିଥିଲେ ।

ଲଳିତ କଳା ଏକାଡେମୀର ଉପାଧ୍ୟକ୍ଷ ଆନନ୍ଦ ଦେବଙ୍କ ଲେଖାର ଏଠି କିଛି ଉଦ୍ଧୃତ ଦେବା ପାଇଁ ମୁଁ ଚାହୁଁଛି । ବିଗତ ପଦର ବର୍ଷ ହେଲା ମୁଁ ଏହି ଶିଳ୍ପୀଙ୍କର ଚିତ୍ର ନିରୀକ୍ଷଣ କରୁଛି । ସେ ନିଜର ସର୍ଜନ ପ୍ରତିଭାର ଭୂତ, ବର୍ତ୍ତମାନ ଓ ଭବିଷ୍ୟତର ସମ୍ଭାବନାକୁ ଏକାସାଙ୍ଗରେ ପ୍ରଦର୍ଶିତ କରିବା ପାଇଁ ବ୍ୟାକୁଳ । ତାଙ୍କର କୃତିଗୁଡ଼ିକ ଆଦିରୀତିବାଦୀୟ କଳ୍ପନାପ୍ରବଣତା ଓ ଆଭାସବାଦ ଦ୍ୱାରା ଲାଞ୍ଛିତ ଏବଂ ଏଗୁଡ଼ିକ ତଥାକଥିତ ଭାରତୀୟ ଆଧୁନିକତାର ସୂଚନା ଦିଏ ।

'ଦିନନାଥ ଦକ୍ଷିଣ ଓଡ଼ିଶାର ଗୋଟିଏ ଗାଁରୁ ଆସିଛନ୍ତି । ସେ କିନ୍ତୁ ଭୁବନେଶ୍ୱରକୁ ତାଙ୍କ କର୍ମସ୍ଥଳୀରୂପେ ବାଛି ନେଇଛନ୍ତି । ସେ ତାଙ୍କ ମାନସିକତାରେ ଗାଁ ଓ ସହରୀ ସଂସ୍କୃତିର ଏକ ଉଦାହରଣୀୟ ଚରିତ୍ର; ପ୍ରଣୋଚ୍ଛଳ, ସ୍ପଷ୍ଟବାଦୀ, କୌତୁକପ୍ରିୟ ଓ ବାସ୍ତବବାଦୀ ।'

ଯେଉଁମାନେ ଓଡ଼ିଶାରେ କିଛି ହୋଇପାରିବା ଭଳି ସମ୍ଭାବନା ନ ଦେଖି ଓଡ଼ିଶାକୁ ଛାଡ଼ି ଦିଲ୍ଲୀକୁ ନିଜର କର୍ମଭୂମି ବାଛି ନେଇଥିଲେ ସେମାନଙ୍କ ମସ୍ତିଷ୍କର କେଉଁ ଏକ କୋଣରେ ଭାବନାଟିଏ ଘରକରି ରହିଥିଲା । ତାହା ହେଲା ସେମାନେ ଭାରତର ରାଜଧାନୀ ଦିଲ୍ଲୀରେ ରହୁଥିବାରୁ ଅନ୍ୟମାନଙ୍କଠାରୁ ବୁଦ୍ଧିଆ ଆଉ ଗାଁ ଗହଳରେ ରହୁଥିବା ଲୋକଟିଏ ତାଙ୍କର ସମକକ୍ଷ ହେଇପାରିବ ନାହିଁ । ଯତୀନ ଦାସ ଏଭଳି ଏକ ଉଦ୍‌ଭଟ ଚିନ୍ତାର ବଶବର୍ତ୍ତୀ ହୋଇଥିଲେ ଏଣୁ ଭୁବନେଶ୍ୱରରୁ ଯାଇ ଦିଲ୍ଲୀରେ ପହଞ୍ଚି ଉତ୍କର୍ଷ ପ୍ରଦର୍ଶନ କରୁଥିବା ସର୍ଜନଶୀଳ ବ୍ୟକ୍ତିମାନଙ୍କୁ ସେ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ସେ ସିଧାସଳଖ ଲଳିତ କଳା ଏକାଡେମୀର ଉପାଧ୍ୟକ୍ଷ ଆନନ୍ଦ ଦେବଙ୍କ ପାଖରେ ପହଞ୍ଚି ତାଙ୍କ ନିକଟରେ ଅଭିଯୋଗ କଲେ ଯେ ପାଠୀକୁ କାହିଁକି ସମଗ୍ର ଗ୍ୟାଲେରିଟି ଚିତ୍ର ପ୍ରଦର୍ଶନୀ କରିବାକୁ ଦିଆଯାଇଛି । ଆନନ୍ଦ ଦେବ ଏକଥା ମୋତେ ପରେ କହିଲେ ଓ ସେ ଖୁବ୍ ସରଳ ଭାବରେ ଯତୀନଙ୍କୁ ଉତ୍ତରଟିଏ ଫେରାଇଥିଲେ, ''ଯତୀନ ! ପାଠୀ ଅବ୍ ଏକାଡେମୀକା ମାଲିକ ହୈ । ତୋ ଏକସିକ୍ୟୁଟିଭ୍ ମେମ୍ବର ହୈ । ଇସି କୋ କୌନ ଗ୍ୟାଲେରୀ ନ ଦେନେକା ବାତ୍ କରେଗା ?''

ଯତୀନ ମୋର ଏହି ଏକକ ପ୍ରଦର୍ଶନୀକୁ ନେଇ ଏତେ ବିବ୍ରତ ମୁଁ ଉଡ଼ାକଥାରୁ ଠଉରେଇ ପାରି ନଥାନ୍ତି । ସିଏ ଯେତେବେଳେ ମୁଁ ଏତେ ଟଙ୍କା କୁଆଡୁ ଆଣି ଏହି ପ୍ରଦର୍ଶନୀ କରିପାରିଲି ବୋଲି ମୋତେ ସିଧା ପ୍ରଶ୍ନ ପଚାରିଲେ ମୁଁ ଈର୍ଷାର ମାତ୍ରାକୁ ଠଉରେଇ ପାରିଲି । ମୁଁ ଅନୁମାନ କଲି ଯେ ତାଙ୍କୁ ଦିଲ୍ଲୀ ବିଛା ସତରେ କାମୁଡ଼ିଛି ।

Digitized by srujanika@gmail.com

ପ୍ରଦର୍ଶନୀ ଆୟୋଜନ ପାଇଁ ମୁଁ ଗୋଟିଏ ପାଞ୍ଚଜଣିଆ ଦଳ ନେଇ ଦିଲ୍ଲୀରେ ପହଞ୍ଚି ଓଡ଼ିଶା ଭବନରେ ଡେରା ପକାଇଲି । ଦଳରେ ଥିଲେ ଅଧ୍ୟାପକ ଡି.ଏନ୍.ରାଓ, ଶିବ ପାଣିଗ୍ରାହୀ, ଛାତ୍ର ସଂଗ୍ରାମ ମହାରଣା, ସନ୍ତୋଷ ପଟ୍ଟନାୟକ ଓ ରଶ୍ମିରେଖା ପଣ୍ଡା ।

ଆଗରୁ ପାଞ୍ଚୋଟି ବଡ଼ ବଡ଼ କ୍ରେଟ୍‌ରେ ଛବି ରେଳରେ ବୁକ୍ ହୋଇ ଦିଲ୍ଲୀରେ ପହଞ୍ଚିଥାଏ । ମୋତେ ଲାଗୁଥାଏ ସତେ ଯେଉଁଭଳି ଗୋଟିଏ ଯୁଦ୍ଧକୁ ଯିବା ପାଇଁ ତିଆରି । ପ୍ରସଙ୍ଗଟିକୁ ଟିକିଏ ଗହୀରିଆ କରି ବିଚାର କଲେ ଯୁଦ୍ଧକଥାଟି ହିଁ ମନକୁ ଆସିବ । ଗୋଟିଏ ଭୁବନେଶ୍ୱରିଆ ଓଡ଼ିଆ ଶିଳ୍ପୀର ଦିଲ୍ଲୀ ଜୟ କରିବା ପାଇଁ ପ୍ରସ୍ତୁତି । ଏବେ ସ୍ମୃତିକୁ ରୋମନ୍ଥନ କଲେ ମନେହେଉଛି ଏହି ଏକକ ଚିତ୍ର ପ୍ରଦର୍ଶନୀ ସତେ ଅବା ଭୂତ ହୋଇ ମୋ ଉପରେ ସବାର ହୋଇଯାଇଥିଲା । ସେ ସମୟରେ ମୋର ତୈଳଚିତ୍ରଗୁଡ଼ିକୁ ପାଇନ୍ କାଠରେ ଫ୍ରେମ୍ କରିବା ପାଇଁ ପଞ୍ଚତିରିଶି ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ଏକାଡେମୀର ବଢ଼େଇ ଅଖତାର୍ ହୁସେନ୍ ଓ ମେହମୁଦ୍ ମୋତେ ଏ କାର୍ଯ୍ୟରେ ସାହାଯ୍ୟ କରିଥିଲେ । ଏକାଡେମୀର ଗ୍ୟାଲେରୀ ଦାୟିତ୍ୱରେ ଥିବା କର୍ମଚାରୀମାନେ ସେମାନଙ୍କ ସହଯୋଗର ହାତ ବଢ଼ାଇଥିଲେ ।

ପ୍ରଦର୍ଶନୀରେ ମୋର ଶହେ ପଚାଶ ଗୋଟି ଚିତ୍ର ପ୍ରଦର୍ଶିତ ହୋଇଥିଲା । ଏଥିରେ ଥିଲା ଜଳରଙ୍ଗର ଛବି, କ୍ରେଅନ୍ ଓ ପେଷ୍ଟାଲ୍‌ର ସ୍କେଚ୍, ତେଲରଙ୍ଗର ଚିତ୍ର ଏବଂ ମଠାକନା ଉପରେ ଇଙ୍କ୍‌ର ଚିତ୍ର । ସେତେବେଳକୁ ଶିଳ୍ପୀମାନେ ତେଲରଙ୍ଗ ଛାଡ଼ି ଆକ୍ରାଲିକ ରଙ୍ଗକୁ ଆଦରି ନଥିଲେ । ପ୍ରଦର୍ଶିତ ଚିତ୍ରମାନଙ୍କ ଭିତରେ ଥିଲା ୧୯୫୬ ମସିହାରେ ଅଙ୍କା ପ୍ରଥମ ଭୂଦୃଶ୍ୟ ଆମ ଗାଁ ପାଖ ମୌଳାଭଣଜା ପୋଲର ଚିତ୍ର । ଆମେ ଏହି ପୋଲକୁ 'ହାବଡ଼ା ପୋଲ' କହୁଥିଲୁ । ଜାପାନିଜ୍ ଗୁଇଟେର୍ ୱାଟର୍ କଲର୍ ଟ୍ୟୁବ୍‌ରୁ ରଙ୍ଗ ଚିପୁଡ଼ି ହେଣ୍ଡମେଡ୍ ଉପରେ ନବମ ଶ୍ରେଣୀରେ ପଢୁଥିବାବେଳର ଅଙ୍କା ଚିତ୍ର ।

ଏହି ପ୍ରଦର୍ଶନୀରେ ପ୍ରଦର୍ଶିତ ଜଳରଂଗର ଚିତ୍ରରେ ରକ୍ଷାକରାଯାଇଥିବା ଟ୍ରାନସ୍‌ପେରେନ୍‌ସି କଳା ସମାଲୋଚକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇ ପାରିଥିଲା । ଏଥିରେ ବ୍ୟବହୃତ ହୋଇଥିବା ପାଶ୍ଚାତ୍ୟ ଧାରାର ଏକାଡ଼େମିକ୍ ପଦ୍ଧତିକୁ ଉପନିବେଶୀୟ ଶୈଳୀ କୁହାଯାଉଥିଲେ ମଧ୍ୟ ଏ ଚିତ୍ରଗୁଡ଼ିକର ବାସ୍ତବବାଦ (ନେଚୁରେଲିଜମ୍) ଉପଭୋଗ୍ୟ ଥିଲା । କହିବା ବାହୁଲ୍ୟ ଯେ ଦିଲ୍ଲୀର ବହୁ କଳାପ୍ରେମୀ ଓ ସଂଗ୍ରାହକମାନେ ଏଥିରୁ ଅଧିକାଂଶ ଚିତ୍ର କିଣି ନେଇଯାଇଥିଲେ । ଏଭଳି ଶୈଳୀର ଏବେ ପରିବର୍ତ୍ତନ ହୋଇଗଲାଣି । ସବୁ ଜଳରଙ୍ଗର ପରମ୍ପରା କଲିକତା, ବମ୍ବେ, ନାଗପୁର ପ୍ରଭୃତି ସହରରେ ଥିବା କଳା ଅନୁଷ୍ଠାନମାନଙ୍କରେ ପଚାଶ ଓ ଷାଠିଏ ଦଶକରେ ପ୍ରଚଳିତ ଥିଲା । ଭୁବନେଶ୍ୱର କହିବା

Digitized by srujanika@gmail.com

ସମୀଚୀନ ହେବ ନାହିଁ, ବରଂ ଖଲ୍ଲିକୋଟରୁ ଏଭଳି ଏକ ଶୁଦ୍ଧ ଶୈଳୀର ଉଦ୍ଭବ ଦିଲ୍ଲୀବାସୀଙ୍କୁ ଚକିତ କରିଦେଇଥିଲା ।

ସେଭଳି ହଗ୍‌ହେୟାର୍ ବ୍ରସ୍ ସାହାଯ୍ୟରେ ବହଳ ରଙ୍ଗର ଆସ୍ତରଣ ଦେଇ ଆଙ୍କିଥିବା ଇମ୍‌ପୋଷ୍ଟୋ ଶୈଳୀର ତୈଳଚିତ୍ରଗୁଡ଼ିକ ମଧ୍ୟ କଳା ସମାଲୋଚକମାନଙ୍କୁ ଅଭିଭୂତ କରିଦେଇଥିଲା । କାରଣ ସଫ୍‌ଟ୍ ତୂଳୀରେ ହାଲୁକା ରଙ୍ଗ ଦେଇ କାନ୍‌ଭାସ୍ ଉପରେ ରଙ୍ଗ ଘସି ଘସି ଚିତ୍ର କରିବା ସେତେବେଳକୁ ମୁଖ୍ୟତଃ ଜଗଦୀଶ ସ୍ୱାମୀନାଥନ୍, ହାଇଦର ରାଜା ପ୍ରଭୃତିଙ୍କ ଚିତ୍ର ଦେଇ ସାଂପ୍ରତିକ କଳାଭ୍ୟାସ ଭିତରେ ପ୍ରବେଶ କରିସାରିଲାଣି । ଏଭଳି ପତଳା ରଙ୍ଗର ଚିତ୍ରଗୁଡ଼ିକର ଆସ୍ତରଣ ଶୀଘ୍ର ଫିକା ପଡ଼ିଯାଉଥିବାରୁ ସେଗୁଡ଼ିକୁ ସଂରକ୍ଷଣ କରିବାରେ ସମସ୍ୟା ସୃଷ୍ଟି ହେଉଥିଲା । ଏହି ପରିପ୍ରେକ୍ଷୀରେ ମୋର ତୈଳରଙ୍ଗର ଚିତ୍ରଗୁଡ଼ିକ ନିଦା ମନେହେଉଥିଲା ଏବଂ ସେଥିରେ ସମୟକ୍ରମେ ସୃଷ୍ଟି ହେଉଥିବା ପେଟିନା ଚିତ୍ର ଭିତରେ ଆଦିମତାର ଗନ୍ଧ ଭରି ଦେଉଥିଲା । ଅପର ପକ୍ଷରେ ସିଲ୍‌କ୍ ଓ ଟସର କନା ଉପରେ ଅଙ୍କିତ ଚିତ୍ରଗୁଡ଼ିକରେ ରେଖା ବିନ୍ୟାସର ଦ୍ୱରିତତା ଓ ଦୃଢ଼ତା ହିଁ ସେଗୁଡ଼ିକୁ ଅଧିକ ଗ୍ରାହ୍ୟ କରିଦେଇଥିଲା । ଏହି ଚିତ୍ର ପ୍ରଦର୍ଶନୀର ବିଶାଳତ, ଶୈଳୀର ନବୀନତା ଓ ଅନନ୍ୟତା ମୋର ଶୈଳ୍ପିକ ଜୀବନ ଓ ସାଧନାର ସର୍ବଭାରତୀୟ ସ୍ୱୀକୃତି ଆଣି ଦେଇଥିଲା । କଳାରସିକ ଓ ସମାଲୋଚକଙ୍କ ତୁଣ୍ଡରେ ପ୍ରଶଂସା କିଛି ବନ୍ଧୁଙ୍କର ଗାତ୍ରଦାହର କାରଣ ହେଇଥିଲା । ମୁଁ ପରେ ପରେ ବୁଝିପାରିଲି ପ୍ରଦର୍ଶନୀ ପୁସ୍ତିକାର ମଲାଟର ସାମ୍ୟ ନୁହେଁ ବା ''ଫୋୟର୍'' ରେ ଜାଗା ମାଡ଼ିବସିଥିବାରୁ ନୁହେଁ, ମୋ ସପକ୍ଷରେ ପ୍ରଶଂସାର ସୁଅ ହିଁ ବନ୍ଧୁଙ୍କୁ ବାଧିଥିଲା । ଯିମିତି କୁହାଯାଇଛି 'ସ୍କନ୍ଧଂ ନ ବାଧତେ ରାଜନ୍, ତବ ବାଧତି ବାଧତେ' ସେଭଳିଆ କଥା ।

ମୋ ପ୍ରଦର୍ଶନୀଟିକୁ ଉଦ୍‌ଘାଟନ କରିବା ପାଇଁ ଆମ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ମନ୍ତ୍ରୀ ଶରତ କୁମାର କର ଓ କେନ୍ଦ୍ର ସରକାରଙ୍କ ମନ୍ତ୍ରୀ ଗିରିଧର ଗମାଙ୍ଗୋଙ୍କୁ ନିମନ୍ତ୍ରଣ କରିଥିଲି । ଶରତ କୁମାର କର ଜଣେ ଓଡ଼ିଆ ଶିଳ୍ପୀଙ୍କ ପ୍ରଦର୍ଶନୀକୁ ଉଦ୍‌ଘାଟନ କରିବା ପାଇଁ ରାଜ୍ୟ ସରକାରଙ୍କ ସ୍ୱତନ୍ତ୍ର ବିମାନରେ ଆସିବା ଚର୍ଚ୍ଚାର ବିଷୟ ହୋଇଯାଇଥିଲା । କେନ୍ଦ୍ର ଲଳିତ କଳା ଏକାଡେମୀ ପକ୍ଷରୁ ମନ୍ତ୍ରୀ ଶ୍ରୀଯୁକ୍ତ କରଙ୍କୁ ଯଥାମାନ୍ୟ ସମ୍ବର୍ଦ୍ଧନା ଯୋଗାଇ ଦିଆଯାଇଥିଲା । ଶରତ କୁମାର କର ଏତେବଡ଼ ଆୟୋଜନ ଦେଖି ଅଭିଭୂତ ହୋଇଯାଇଥିଲେ । ସେ ତାଙ୍କ ରାଜନୈତିକ ଜୀବନର ବନ୍ଧୁ ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ନିମନ୍ତ୍ରଣ କରି ସାଙ୍ଗରେ ନେଇ ଆସିଥିଲେ । ମୁଁ ନିମନ୍ତ୍ରଣ କରି ନଥିବା ସତ୍ତ୍ୱେ ଶ୍ରୀଯୁକ୍ତ ମହାପାତ୍ର ପାରିବାରିକ ବନ୍ଧନରେ ଛନ୍ଦି ହେଇ ଯାଇଥିବାରୁ ସୌଜନ୍ୟ ରକ୍ଷା କରି ରବୀନ୍ଦ୍ର ଭବନରେ ପହଞ୍ଚିଥିଲେ । ଶ୍ୟାମସୁନ୍ଦର ମହାପାତ୍ର ତ ଆମ ଗହଣରେ ଆଉ ନାହାନ୍ତି । ସେ

Digitized by srujanika@gmail.com

ହୁଏତ ଏତେବଡ଼ ପ୍ରଦର୍ଶନ ଦେଖି ଉପଲବ୍ଧ କରିଥିବେ ଯେ ମୋତେ ଦିଲ୍ଲୀରେ ପ୍ରଦର୍ଶନୀଟିଏ କରେଇ ଦେବାରେ  କୌଣସି ସାହାଯ୍ୟ ନକରି ବୁଦ୍ଧିମତାର କାର୍ଯ୍ୟ କରିନାହାନ୍ତି । ମନ୍ତ୍ରୀ ଶରତ କୁମାର କର ପ୍ରଦର୍ଶନୀ ଗ୍ୟାଲେରୀର ଗୋଟିଏ କୋଣକୁ ମୋତେ ଡାକିନେଇ ଅତି ପ୍ରାସଙ୍ଗିକ ପ୍ରଶ୍ନଟିଏ ପଚାରିଲେ, ''ଆପଣ ତ ଏତେବଡ଼ ଆୟୋଜନଟିଏ କରିଛନ୍ତି ଏଥିପାଇଁ ଅର୍ଥବ୍ୟବସ୍ଥା କଲେ କିଭଳି ? ଆପଣ ସଂସ୍କୃତି ବିଭାଗକୁ ଅର୍ଥ ସାହାଯ୍ୟ ମାଗିଥିଲେ ମୁଁ ନିଶ୍ଚିତ ଭାବରେ କିଛି ସାହାଯ୍ୟ କରିପାରିଥାନ୍ତି ।'' ମନ୍ତ୍ରୀ ମହାଶୟଙ୍କୁ ମୋ ଉତ୍ତର ଅତି ସାଦାସିଧା ଥିଲା । ମୁଁ ମନ୍ତ୍ରୀଙ୍କୁ ଅବଗତ କରେଇ ଦେଇଥିଲି ଯେ ଓଡ଼ିଶାରେ ଶାଗଖିଆକୁ ପେଜଖିଆ ଦେଖିପାରୁ ନାହାନ୍ତି । ଏଣୁ ମୋ ଆବେଦନ ସହ ମନ୍ତ୍ରୀ ମୋତେ ଆର୍ଥିକ ସାହାଯ୍ୟ ନ ଦେବା ପାଇଁ ଡଜନେ ଖଣ୍ଡେ ବେନାମୀ ଚିଠି ପାଇଥାନ୍ତେ । ଏହି ପ୍ରଦର୍ଶନୀଟି ମୋ ଦୁଃସାହସର ପ୍ରତୀକ । ମୁଁ ଏଥିପାଇଁ କରିଥିବା ଖର୍ଚ୍ଚ ମୋ ଛବି ବିକ୍ରୀରୁ ପାଇଯାଇପାରେ ନତୁବା ଆର୍ଥିକ ଦୁରାବସ୍ଥାରେ ସଢ଼ିଯାଇ ଏହି ପ୍ରଦର୍ଶନୀକୁ ମୋ ଜୀବନର ଶେଷ ପ୍ରଦର୍ଶନୀ ବୋଲି ବିବେଚନା କରିପାରେ । ମନ୍ତ୍ରୀ ମହୋଦୟ ମୋ ଶୈଳ୍ପିକ ସାମର୍ଥ୍ୟ ଓ ଆତ୍ମବିଶ୍ୱାସରେ ପ୍ରୀତ ହେଲେ ।

ମୁଁ ଏହି ପ୍ରଦର୍ଶନୀର ଚିତ୍ରାତ୍ମକତାକୁ ବଢ଼େଇ ଦେବା ପାଇଁ ମୋର ଗୋଟିଏ ଚିତ୍ର 'ହୋମେଜ୍ ଟୁ ଭୁବନେଶ୍ୱର' ର ଗୋଟିଏ ପୋଷ୍ଟର୍ ଛପାଇ ଥିଲି । ଭୁବନେଶ୍ୱରରେ ରହି କଳାଭ୍ୟାସ କରୁଥିବା ଓଡ଼ିଆ ଶିଳ୍ପୀଙ୍କ ପାଇଁ ଏଭଳି ପୋଷ୍ଟର୍ ସଂପୂର୍ଣ୍ଣ ନୂଆ । ଶିଳ୍ପୀମାନେ ଏଭଳି ପୋଷ୍ଟର୍‌କୁ 'ରିପ୍ରଡକ୍‌ସନ୍' ବୋଲି ମଧ୍ୟ କହିଥାନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବର୍ଦ୍ଧିତ ମଧ୍ୟବିତ୍ତ ବର୍ଗର ଲୋକମାନଙ୍କ ପାଇଁ ବିଶିଷ୍ଟ କଳାକୃତିଗୁଡ଼ିକୁ ସହଜଲଭ୍ୟ କରିବା ଉଦ୍ଦେଶ୍ୟରେ ଏଭଳି ରିପ୍ରଡକ୍‌ସନ୍‌ର ପ୍ରଚଳନ କରାଯାଇଛି । ପର୍ଯ୍ୟାପ୍ତ ଅର୍ଥ ଖର୍ଚ୍ଚ କରି କଳାକୃତି ସଂଗ୍ରହ କରିବାର ଯେଉଁମାନଙ୍କର କ୍ଷମତା ନାହିଁ, ସେମାନଙ୍କ ପାଇଁ ଏହି ରିପ୍ରଡକ୍‌ସନ୍ ଆଶୀର୍ବାଦସ୍ୱରୂପ । 'ହୋମେଜ୍ ଟୁ ଭୁବନେଶ୍ୱର' ଛବିତଳେ ଚାରି ଧାଡ଼ି ଯେଉଁ ଇଂରାଜୀ କବିତା ମୁଁ ଛାପିଥିଲି ଏଠି ତା'ର ଓଡ଼ିଆ ଅନୁବାଦ ମୁଁ ଉଦ୍ଧାର କରୁଛି :

ମୋ ଭିତରେ ଆକାଶ ବିସ୍ତରେ<br>
ଖୋଲି ଦେଇ ତା' ସୁନୀଳ ସାମ୍ରାଜ୍ୟ<br>
ଯାହା ବାହୁମେଲି<br>
ଦୂର ଦିଗ୍‌ବଳୟ ଛୁଇଁବାକୁ ଯାଏ ।

କଲେଜରେ କିଛି ଜରୁରୀ ସରକାରୀ କାମ ଯୋଗୁ ମୁଁ ଡି.ଏନ୍.ରାଓଙ୍କୁ ପ୍ରଦର୍ଶନୀ ଦାୟିତ୍ୱ ଦେଇ ଭୁବନେଶ୍ୱର ଫେରିବାକୁ ହେଲା । ମୁଁ ଫେରିବା ପରେ ପ୍ରଦର୍ଶନୀ ଶେଷ ହେଲାବେଳକୁ ଛବି ବିକା ପର୍ବ ଆରମ୍ଭ ହେଲା। ପ୍ରଥମେ ଜଳରଙ୍ଗର ଛବିଗୁଡ଼ିକୁ ଦିଲ୍ଲୀର

Digitized by srujanika@gmail.com

ପୁରୁଣା ଚିତ୍ରବେପାରୀ ଦିଲ୍ଲୀ ଆର୍ଟ ଗ୍ୟାଲେରୀ ନେଇଗଲେ । ତା'ପରେ କିଛି ଶିଳ୍ପପତି ତେଲ ରଂଗର ଛବିସବୁ ଆବୋରି ବସିଲେ । ଏମାନଙ୍କ ମଧ୍ୟରେ ଥିଲେ ଚଳଚିତ୍ର ଜଗତର ପ୍ରବାଦ ପୁରୁଷ ରାଜକପୁରଙ୍କ କନ୍ୟା ରତୁ ନନ୍ଦା । ଡି.ଏନ୍.ରାଓ ପ୍ରଦର୍ଶନୀର ମ୍ୟାନେଜର ଭଳି ଛବି ବିକିଲେ, ଟଙ୍କା ପଇସାର ହିସାବ ରଖିଲେ । ମୁଁ ପୁଣି ପ୍ରଦର୍ଶନୀ ଉଜେଇବା ପାଇଁ ଦିଲ୍ଲୀରେ ପହଞ୍ଚିଲି । ଡି.ଏନ୍. ପ୍ରାୟ ଚାରି ପାଂଚଲକ୍ଷ ଟଙ୍କାର ଛବି ବିକିଥିବେ, ସେ ଛବିଗୁଡ଼ିକୁ ସାଙ୍ଗରେ ନେଇ ବଡ଼ ବଡ଼ ଶିଳ୍ପପତି ଓ ଧନାଢ୍ୟ ବ୍ୟକ୍ତିଙ୍କ ଘରକୁ ଯିବା, ସେଠାରେ ଶିଳ୍ପୀଙ୍କ ପ୍ରତିନିଧି ଭାବେ ଚର୍ଚ୍ଚା ପାଇବା ଏବଂ ଶେଷରେ ଛବିର ପ୍ରାପ୍ୟ ନେଇ ଫେରିବାରେ ଅପାର ଆନନ୍ଦ ପାଇଲେ । ବାସ୍ତବିକ ଏତେଗୁଡ଼ିଏ ଟଙ୍କା ତାଙ୍କ ହାତ ଦେଇ ଆତଜାତ ହେଲା । ସେ ଟଙ୍କାର ମ୍ୟାଜିକ୍ ସଂଖ୍ୟାପ୍ରତି ଆସକ୍ତ ହେଲେ । ହେବା ବି ସ୍ୱାଭାବିକ । ମୁଁ ମଧ୍ୟ ସମ୍ଭାବନାର ବଳୟ ବାହାରେ ରହି ମ୍ୟାଜିକ୍ ସଂଖ୍ୟାର ପ୍ରଲୋଭନରେ ପଡ଼ିଯାଇଥିଲି । ଲକ୍ଷର ଶୂନ୍ ସଂଖ୍ୟା ବାହାରେ ସାତ ହଜାର ପାଖା ପାଖି ଟଙ୍କା ଫାଲ୍‌ତୁ ମନେହେଲା । ତାହା ମୁଁ ବନ୍ଧୁଙ୍କ ହାତରେ ଦେଇଦେଇ ଉଦାରତାର ଉଦାହରଣଟିଏ ସୃଷ୍ଟି କରିଦେବା ଉଚିତ ଥିଲା । ମୁଁ ତା' ନକରି ବନ୍ଧୁଙ୍କ ପରିହାସର ଶରବ୍ୟ ହେଲି । ଶେଷରେ ଶୂନ ବାହାରର ଅଙ୍କ ଗୋଟାଇବା ପାଇଁ ଯତ୍ନବାନ୍ ହେଲି ନାହିଁ ।

ପ୍ରଦର୍ଶନୀରେ ଏତେ ଟଙ୍କାର ଛବି ବିକ୍ରୀ ହେବା ଖବର ମୋବାଇଲ୍ ଓ ଇଣ୍ଟରନେଟ୍ ନଥିବା ଯୁଗରେ ମଧ୍ୟ ଦିଲ୍ଲୀରୁ ଉଡ଼ିଆସି ଭୁବନେଶ୍ୱରରେ ଶୀଘ୍ର ପହଞ୍ଚିଗଲା । ଆଜିକାଲି ଯଦିଓ ଆମର କେତେକ ଛାତ୍ର କୋଟିଏ ଦେଢ଼କୋଟି ଟଙ୍କାରେ ଗୋଟିଏ ଗୋଟିଏ ଛବି ବିକୁଛନ୍ତି ବୋଲି ଖବର ମିଳୁଛି, ଆଜକୁ ପ୍ରାୟ ଦୁଇ ଦଶନ୍ଧି ତଳେ ଗୋଟିଏ ଚିତ୍ର ପ୍ରଦର୍ଶନୀରେ ଚାରିପାଞ୍ଚଲକ୍ଷ ଟଙ୍କା ବିକ୍ରି ହେବା ଆଜିର ଦରରେ କୋଟିଏ ଟଙ୍କା ପାଖାପାଖି ଧରାଯାଉ । ଅବଶ୍ୟ ଗୋଟିଏ ଛବି ନୁହେଁ, ପନ୍ଦର କୋଡ଼ିଏ ଗୋଟି ଛବି । ଏହି ବିକ୍ରି ସମ୍ବାଦଟି ସ୍ୱାଭାବିକ ଭାବେ କିଛି ଶିଳ୍ପୀଙ୍କ ମନରେ ଉନ୍ମାଦନା ସୃଷ୍ଟି କଲା । ଅଧ୍ୟାପକ ବଳଦେବ ମହାରଥୀ ଓ ବନ୍ଧୁ ଛନ୍ଦାଚରଣ ଆଚାର୍ଯ୍ୟଙ୍କ ନେତୃତ୍ୱରେ ଦଳେ ଯୁବଶିଳ୍ପୀ ମୋତେ ସମ୍ବର୍ଦ୍ଧନା ଜଣାଇବା ପାଇଁ ଭୁବନେଶ୍ୱର ରେଳଷ୍ଟେସନ୍‌ରେ ମୋର ଫେରିବାକୁ ଅପେକ୍ଷା କରିଥିଲେ । ଟ୍ରେନ୍‌ରୁ ଓହ୍ଲାଉ ଓହ୍ଲାଉ ସେମାନେ ପରଫ୍ୟୁମ୍, ଅତର ଓ ଫୁଲମାଳରେ ମୋତେ ପୋତି ପକାଇଲେ । ଟଙ୍କାର ପାର୍ଥିବ ସମ୍ମୋହନ ଅପେକ୍ଷା ଆତ୍ମୀୟତାର ଅପାର୍ଥିବ ମୋହ ମୋତେ ବିସ୍ମୟରେ ଭରିଦେଇଥିଲା । ଅତ୍ୟନ୍ତ ଦୁଃଖର କଥା ଛନ୍ଦାଚରଣ ଆଉ ଆମ ଗହଣରେ ନାହାନ୍ତି । ୧୯୯୧ ଡିସେମ୍ବରରେ ରବୀନ୍ଦ୍ର ଭବନରେ ପ୍ରଦର୍ଶନୀ ଶେଷ ହେଲା ପରେ ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରରେ ୧୯୯୨ ଜାନୁଆରୀ ପ୍ରଥମ

Digitized by srujanika@gmail.com

ସପ୍ତାହରେ ଦିଲ୍ଲୀରୁ ବଳକାଛବିତକ ନେଇ ଭୁବନେଶ୍ୱର ତଥା ଓଡ଼ିଶାର ଦର୍ଶକଙ୍କ ପାଇଁ ଏଠି ପ୍ରଦର୍ଶନୀଟିଏର ଆୟୋଜନ ହେଲା । ଭୁବନେଶ୍ୱର ପ୍ରଦର୍ଶନୀ ପାଇଁ କେନ୍ଦ୍ର ଲଳିତ କଳାଏକାଡେମୀ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରକୁ ଆର୍ଥିକ ସହାୟତା ଦେଇଥିଲେ । ଆମ କଲେଜର ଅଧ୍ୟାପକ-ଅଧ୍ୟାପିକା, ଛାତ୍ର-ଛାତ୍ରୀଙ୍କୁ ମୋର ସମସ୍ତ ଚିତ୍ର ଏକାସଙ୍ଗେ ଦେଖାଇବା ଏହାଥିଲା ମୋ ପାଇଁ ଗୋଟିଏ ଅପୂର୍ବ ସୁଯୋଗ ବା ଅନ୍ୟ ଭାବରେ କହିବାକୁ ଗଲେ ମୋର ଛାତ୍ରଛାତ୍ରୀମାନେ ସେମାନଙ୍କ ଅଧକ୍ଷଙ୍କର ଚିତ୍ର ଦେଖିବାର ପ୍ରଥମ ସୁଯୋଗ ପାଇଥିଲେ । ବିଶିଷ୍ଟ ନୃତ୍ୟାଙ୍ଗନା ସଂଯୁକ୍ତା ପାଣିଗ୍ରାହୀ ଓ ବିଶିଷ୍ଟ ସଙ୍ଗୀତଜ୍ଞ ରଘୁନାଥ ପାଣିଗ୍ରାହୀ ଏହି ପ୍ରଦର୍ଶନୀ ଭୁବନେଶ୍ୱରରେ ଉଦ୍‌ଘାଟନ କରିଥିଲେ ।

୧୯୬୬ ମସିହାରେ ମୁଁ ଓଡ଼ିଶାରେ ପ୍ରଥମ କରି ଏକଶତ ଚିତ୍ରର ଏକକ ପ୍ରଦର୍ଶନୀଟିଏ ଭୁବନେଶ୍ୱର କଳାମଣ୍ଡପରେ ଆୟୋଜନ କରିଥିଲି ତାର ପ୍ରାୟ ପଚିଶି ବର୍ଷ ପରେ ଦିଲ୍ଲୀର ରବୀନ୍ଦ୍ର ଭବନରେ ଏହି ପ୍ରଦର୍ଶନୀ ଶହେ ପଚାଶ ଗୋଟି ଚିତ୍ରର ଏକକ ପ୍ରଦର୍ଶନୀ ଥିଲା ।

Digitized by srujanika@gmail.com

# ୫୮. ଜାତୀୟ ସଂଗ୍ରହାଳୟର କଳାସାମଗ୍ରୀ କ୍ରୟ ସମିତି

ଦୁଇ ପ୍ରକାରେ ଗୋଟିଏ ସଂଗ୍ରହାଳୟ ପାଇଁ କଳାସାମଗ୍ରୀ ଯୋଗାଡ଼ କରାଯାଇପାରେ । ଗୋଟିଏ ପଦ୍ଧତି ହେଲା ସଂଗ୍ରହାଳୟର କ୍ୟୁରେଟର୍ ବା କିପର୍‌ମାନଙ୍କ ଦ୍ୱାରା ସିଧାସଳଖ କାରିଗର ବା ସଂଗ୍ରାହକମାନଙ୍କଠାରୁ କଳାକୃତି ସଂଗ୍ରହ । ଅବଶ୍ୟ ଏଇଥି ପାଇଁ କ୍ୟୁରେଟର୍ ମହାଶୟଙ୍କୁ କଳା ସାମଗ୍ରୀର ସନ୍ଧାନରେ ଗାଁ ଗଣ୍ଡା, ସହର ଜନପଦ ଗସ୍ତ କରିବାକୁ ପଡ଼େ । ଅନ୍ୟବାଗଟି ହେଲା ସଂଗ୍ରାହକମାନେ ସେମାନଙ୍କ ପାଖରେ ମହଜୁଦ କଳାକୃତି ନିଜେ ନେଇ ସଂଗ୍ରହାଳୟରେ ଦେଇ ଆସନ୍ତି । ରାଜ୍ୟସ୍ତରୀୟ ସଂଗ୍ରହାଳୟମାନଙ୍କରେ ଏହି କଥାଟି ଯେତେ ସୁବିଧାରେ କରିଦେଇ ହୁଏ ଜାତୀୟ ସ୍ତରର ସଂଗ୍ରହାଳୟରେ ଯେଉଁଠି କୋଟି କୋଟି ଟଙ୍କାର କଳା ସାମଗ୍ରୀ କିଣାଯାଏ ସେଠାରେ ପଦ୍ଧତିଟି ଅପେକ୍ଷାକୃତ ସ୍ତରୀକୃତ ଓ ଜଟିଳ । କଳା ସାମଗ୍ରୀ କ୍ରୟ ବ୍ୟାପାର ଗୋଟିଏ ଶୀର୍ଷ ସମିତି ହିଁ ନିଧାର୍ଯ୍ୟ କରିଥାନ୍ତି । ଏହି ଶୀର୍ଷ ସମିତିଟି ଖୋଦ ଭାରତ ସରକାରଙ୍କ ଦ୍ୱାରା ମନୋନୀତ । ଏଥିରେ ବିବିଷ୍ଟ କଳା ଐତିହାସିକ, ସଂଗ୍ରହାଳୟର ନିର୍ଦ୍ଦେଶକ ତଥା ସଂଗ୍ରହାଳୟର ବିଭିନ୍ନ କଳା ବିଭାଗର ଓ ଆଂଚଳିକ କଳାର ବିଶେଷଜ୍ଞମାନେ ସଭ୍ୟ ରହିଥାନ୍ତି ।

ସଂଗ୍ରହାଳୟ ଓ କଳା ବିଦ୍ୟାଳୟ ମଧ୍ୟରେ ଥିବା ଶୈକ୍ଷିକ ସଂପର୍କ ଅତ୍ୟନ୍ତ ଗହନ । କହିବାକୁ ଗଲେ ଗୋଟିଏ କଳା ଅନୁଷ୍ଠାନରେ ଶିକ୍ଷାର୍ଥୀମାନେ ଯେଉଁ କଳା ସାମଗ୍ରୀମାନ ଗଢ଼ିଥାନ୍ତି କାଳକ୍ରମେ ସେଗୁଡ଼ିକ ସଂଗ୍ରହାଳୟର ପ୍ରଦର୍ଶିତ ସାମଗ୍ରୀ ହେଇଯାଏ । ଉଭୟ ସଂଗ୍ରହାଳୟ ଓ କଳା ବିଦ୍ୟାଳୟ ଦୃଶ୍ୟସଂସ୍କୃତିର ସର୍ବମାନ୍ୟ ଅନୁଷ୍ଠାନ । ଏତକ ମୌଳିକ କଥା ବୁଝିପାରି ନଥିଲେ ବୋଲି ମୋର କିଛି ଶିକ୍ଷାବଂଧୁ ମୋର ଅଧ୍ୟାପକ ହେବାର ଅଭିଜ୍ଞତା ନାହିଁ ଏବଂ ମୁଁ ସିଧାସଳଖ ସଂଗ୍ରହାଳୟର କ୍ୟୁରେଟର୍ ପଦବୀରୁ ଆସି ଚିତ୍ରକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ହୋଇପାରିଲି ବୋଲି ମୋ ବିରୁଦ୍ଧରେ କୁତ୍ସା କରି ବସିଲେ । ଏଇଥିପାଇଁ ମୋ ନାଁରେ ମକଦ୍ଦମା ମଧ୍ୟ ଦାଏର କରାଗଲା । ବିଚିତ୍ର ଏଭଳି ବୁଝାବଣା । ଓଡ଼ିଶାରେ ଆଜିଯାଏ ବିଶ୍ୱବିଦ୍ୟାଳୟ-ସଂଗ୍ରହାଳୟ ସଂସ୍କୃତି ମୁଣ୍ଡ ଟେକିପାରିନି । ଅଧ୍ୟାପକମାନେ କ୍ୟୁରେଟର୍‌ମାନଙ୍କ ତୁଳନାରେ ଅଧିକ ବେତନ ପାଉଥିବାରୁ ସେମାନେ

Digitized by srujanika@gmail.com

ସଂଗ୍ରହାଳୟକୁ ସେତେ ଗୁରୁତ୍ୱ ଦିଅନ୍ତି ନାହିଁ । ବିଶ୍ୱବିଦ୍ୟାଳୟମାନଙ୍କରେ ସଂଗ୍ରହାଳୟ ଖୋଲିବା ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଲକ୍ଷାଧିକ ଟଙ୍କା ଆସେ, କିନ୍ତୁ ଫଳତଃ ବିଶେଷ କିଛି ହୁଏ ନାହିଁ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଭାରତ କଳାଭବନ ଭଳି ବିଶ୍ୱ ପ୍ରସିଦ୍ଧ ସଂଗ୍ରହାଳୟଟିଏ କେବେ ଯେ ଓଡ଼ିଶାରେ ସମ୍ଭବ ହୋଇପାରିବ ତାହା କହି ହେଉନି ।

ଏଭଳି ଏକ ପରିପ୍ରେକ୍ଷୀରେ ନୂଆ ଦିଲ୍ଲୀର ଜାତୀୟ ସଂଗ୍ରହାଳୟ କଳାସାମଗ୍ରୀ କ୍ରୟ ସମିତିର ସଭ୍ୟ ଭାବେ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହେବା ବ୍ୟକ୍ତିଗତ ଭାବେ ମୋ ପାଇଁ ନୁହଁ, ମୋର କଲେଜ ପାଇଁ ମଧ୍ୟ ସମ୍ମାନଜନକ ଘଟଣା ଥିଲା । ସେ ବର୍ଷ ଓଡ଼ିଶାରୁ ମୋ ସାଂଗରେ ଆଉ ଦୁଇଜଣ, ପ୍ରଫେସର୍ କରୁଣାସାଗର ବେହେରା ଓ କଳା ଐତିହାସିକ ଡକ୍ଟର ଜଗନ୍ନାଥ ପ୍ରଦାସ ଦାସ ମଧ୍ୟ ଏହି ସମିତିରେ ସଭ୍ୟଭାବେ ମନୋନୀତ ହୋଇଥିଲେ । ଅବଶ୍ୟ ଡକ୍ଟର ସୀତାକାନ୍ତ ମହାପାତ୍ର ଭାରତ ସରକାରଙ୍କ ସଂସ୍କୃତି ବିଭାଗର ସଚିବ ଥିବା ହେତୁ ଓଡ଼ିଶା ଭାଗରେ ଏଭଳି ସମ୍ମାନ ଅଜାଡ଼ି ହୋଇପଡ଼ିଥିଲା ।

ମୁଁ କଳାସାମଗ୍ରୀ କ୍ରୟ ସମିତିର ସଭାରେ ଯୋଗ ଦେବା ପାଇଁ ଜାତୀୟ ସଂଗ୍ରହାଳୟରେ ପହଞ୍ଚିଲି । ତଳ ମହଲାରେ ସଂଗ୍ରହାଳୟର ନିର୍ଦ୍ଦେଶକ ଡକ୍ଟର ଲକ୍ଷ୍ମୀପ୍ରସାଦ ସିହାରେଙ୍କ ସହିତ ଭେଟ ହେଲା । ପ୍ରଥମ ମହଲାରେ ଥିବା ସମିତି ଗୃହ ଆଡ଼କୁ ମୁଁ ମୁହାଁଉଛି, ଡକ୍ଟର ସିହାରେ ଟିକିଏ ରୁକ୍ଷଗଳାରେ ମୋତେ ସେଇ ଆଡ଼କୁ ଅଗ୍ରସର ହେବା ପାଇଁ ବାରଣ କଲେ । କହିଲେ 'ଦିନନାଥ ଉପର ମହଲାରେ କଳା ସାମଗ୍ରୀ କ୍ରୟ ସମିତିର ବୈଠକ ବସିବ । ତମେ ସେଆଡ଼େ କୁଆଡ଼େ ମୁହେଁଇଚ ?' ତାଙ୍କ କଥାଟି ମୋତେ ବେଖାପିଆ ଲାଗିବା ସ୍ୱାଭାବିକ । ମୁଁ ହସିହସି ବିନମ୍ର ଭାବରେ ସିହାରେଙ୍କୁ ଜଣେଇଲି ଯେ, "ମୁଁ ଭାରତ ସରକାରଙ୍କ ମନୋନୀତ ସଭ୍ୟ ଏଣୁ ସେଠାକୁ ଯିବାରେ ମୋର ଅଧିକାର ଅଛି ।" କଥା କହିବା ଭିତରେ ମୋ ଚମଡ଼ା ଝୁଲାବେଗରୁ ସରକାରୀ ଚିଠିଟି କାଢ଼ି ତାଙ୍କୁ ଦେଖାଇଲି । ସିହାରେ ଯେତେ ଉଚ୍ଚାଗଳାରେ ଇତର ଲୋକମାନଙ୍କ ସହିତ କଥା ହେଲାଭଳି ବ୍ୟବହାର କରୁଥିଲେ ହଠାତ୍ ସେଥିରେ ଭଟ୍ଟା ଯିମିତି ପଡ଼ିଗଲା । ସେ ନରମି ଗଲେ, ମୋ ପାଖକୁ ଲାଗିଆସି ମୋ ପିଠିରେ ହାତ ଥାପୁଡ଼ାଇ ତାଙ୍କର ରୁକ୍ଷ ବ୍ୟବହାରକୁ ନେଇ ସଫେଇ ଦେବାକୁ ଆରମ୍ଭ କଲେ । ଏଥର ହିନ୍ଦୀରେ ବନ୍ଧୁତାପୂର୍ଣ୍ଣ ବାକ୍ୟଟିଏ ସେ କହିଲେ, "ଆରେ ୟାର୍ ସୁବହସେ ମେଁ ପରେଶାନ୍ ହୁଁ । ତୁମ୍ ତୋ ସମଝ୍‌ଦାର ହୋ, ମୁଝେ ମାଫ୍ କର ଦୋ ।"

Digitized by srujanika@gmail.com

ସିହାରେ ନିଜକୁ ସିଂହ ଭଳି ଜ୍ଞାନ କରନ୍ତି ଏଣୁ ନିଜ ଗୁହାରେ ମୋ ଭଳି ଜଣେ ଇତର ଲୋକର ଉପସ୍ଥିତିକୁ ସହଜେ ହଜମ କରିପାରି ନଥିଲେ । କେନ୍ଦ୍ର ଲଳିତ କଳା ଏକାଡେମୀର କାର୍ଯ୍ୟନିର୍ବାହୀ ସମିତିରେ ଆମେ ଉଭୟେ ଏକାସାଙ୍ଗରେ ସଭ୍ୟ ରହିଥିଲୁ । ସେ ଗୋଏଙ୍କା ପରିବାରର ଜାମାତା ଏବଂ ଆମେରିକାରେ କଳା ଇତିହାସ ଅଧ୍ୟୟନ କରିଥିବା ହେତୁ ତାଙ୍କ ମନରେ ଯଥେଷ୍ଟ ଗର୍ବବୋଧ ଥିଲା । ଏଣୁ କାର୍ଯ୍ୟନିର୍ବାହୀ ସଭାରେ ନିଜର ପ୍ରଭାବ ବିସ୍ତାର କରି ନିଜର ମତାମତ ଆମ ଉପରେ ଲଦି ଦେବା ପାଇଁ ଚେଷ୍ଟା କଲେ ଆମେ ତାକୁ ପ୍ରତିହତ କରୁଥିଲୁ ଏବଂ ସମିତିରେ ଆମର ସଂଖ୍ୟାଗରିଷ୍ଠତା ହେତୁ ଆମର ସବୁବେଳେ ଜିତାପଟ ହେଉଥିଲା ଏବଂ ତାଙ୍କର ଧନବଳ ଓ ପ୍ରତିପତ୍ତି ସତ୍ତ୍ୱେ ସେ ନିଜର କୌଣସି ପ୍ରସ୍ତାବ କାର୍ଯ୍ୟକାରୀ କରେଇ ପାରୁ ନଥିଲେ । ଏଇଥିପାଇଁ ଡକ୍ଟର ସିହାରେ ଏବଂ ଆମ ଭିତରେ ଶୀତଳ ଯୁଦ୍ଧ ଲାଗି ରହୁଥିଲା । କାର୍ଯ୍ୟନିର୍ବାହୀ ସମିତିରେ ମୁଁ ଆମ ଗୋଷ୍ଠୀର ମୁଖପାତ୍ର ଭଳି କାର୍ଯ୍ୟ କରୁଥିଲି । ଏଣୁ ସିହାରେଙ୍କ ସମସ୍ତ ଆକ୍ରୋଶର ଶରବ୍ୟ ହୋଇପଡ଼ିଥିଲି । ଶାଳୀନତା ଦୃଷ୍ଟିରୁ ଆମ ଦୁହିଁଙ୍କ ମଧ୍ୟରେ ଉପରଠାଉରିଆ ବନ୍ଧୁତା ଥିଲେ ସୁଦ୍ଧା ଆମେ ଦୁହେଁ କିଏ କାହାରିକୁ ଭଲ ପାଉ ନଥିଲୁ ଏବଂ ସେଦିନର ତାଙ୍କର ହଠାତ୍ ବିସ୍ଫୋରଣ ଏହି ଅସଂଲଗ୍ନ ମାନସିକତାର ପରିପ୍ରକାଶ ଥିଲା ।

ଆଶ୍ୱସନାର କଥା ଦି'ପଦ କହିଦେଇ ସନ୍ଧି ସ୍ଥାପନ କରିସାରିଲା ପରେ ମଧ୍ୟ ସିହାରେ ଭାବିନେଇ ଥିଲେ ଯେ ତାଙ୍କର ହରାପଟ ହୋଇଯାଇଛି । ତାଙ୍କ କଳାସାମଗ୍ରୀ କ୍ରୟ ସମିତିରେ ମୋର ସଭ୍ୟ ହେବା ପ୍ରସଙ୍ଗଟିକୁ ସେ ପସନ୍ଦ କରିପାରି ନଥିଲେ ଏବଂ ସଂସ୍କୃତି ସଚିବ ଡକ୍ଟର ସୀତାକାନ୍ତ ମହାପାତ୍ରଙ୍କୁ ଟେଲିଫୋନ କରି କେବଳ ମୋ ବିଷୟରେ ନୁହେଁ ଓଡ଼ିଶାର ତିନିଜଣଯାକ ସଭ୍ୟଙ୍କ ବିରୋଧରେ ବିଷୋଦ୍‌ଗାର କରିଥିଲେ । ମଣିଷ ନିଜକୁ ଆବଶ୍ୟକତାରୁ ଅଧିକ ଆକଳନ କରିବସିଲେ ନିଜେ ପାଳିଥିବା ଅହଂକାର ତାକୁ ବେଳେବେଳେ ଅଡୁଆ ପରିସ୍ଥିତିରେ ପକାଇଦିଏ । ଡକ୍ଟର ମହାପାତ୍ର ଉପରିସ୍ଥ ଅଫିସର ଏବଂ ସର୍ବଭାରତୀୟ ସ୍ତରରେ ଜଣେ ପ୍ରତିଷ୍ଠିତ କବି ଏକଥା ସିହାରେ ତାଙ୍କୁ ଟେଲିଫୋନ୍ କରିବା ପୂର୍ବରୁ ସଚେତନ ହେବା ଆବଶ୍ୟକ ଥିଲା । ହଠାତ୍ ଆଉଜଣେ ବିଶେଷଜ୍ଞଙ୍କ ନାଁ ପାଇପାରି ନଥିବାରୁ କେବଳ ମାତ୍ର ତିନିଜଣ ଓଡ଼ିଶାରୁ ମନୋନୀତ କରିଛନ୍ତି ବୋଲି ସୀତାକାନ୍ତ ମହାପାତ୍ର ସିହାରେଙ୍କୁ ଠୋକ୍‌ଠୋକ୍ ଶୁଣେଇ ଦେଲେ ।

କଳାସାମଗ୍ରୀ କ୍ରୟ ସମିତି ଦୁଇତିନିଧରି ଚାଲେ । ଜାତୀୟ ସଂଗ୍ରହାଳୟ ପରିସରରେ କଳାସାମଗ୍ରୀର ହାଟଟିଏ ବସେ । ଭାରତ ବର୍ଷର ବିଭିନ୍ନ ଅଂଚଳରୁ କଳା ସଂଗ୍ରାହକମାନେ ସେମାନଙ୍କ ନିକଟରେ ଥିବା କଳାକୃତିମାନ ପସରା ଭଳି ମେଲେଇ ଦେଇଥାନ୍ତି । ଏହି ହାଟଟି ବେଶ୍ ବର୍ଣ୍ଣିଳ ଦେଖାଯାଏ ଏବଂ ଏଥିରି ଭିତରେ ଥରେ ଘୂରି

Digitized by srujanika@gmail.com

ଆସିଲେ କଳା ଓ କାରିଗରି ସଂପର୍କରେ ନିଜର ଧାରଣାଟି ପରିଚ୍ଛନ୍ନ ହୋଇଯାଏ । ସେଥରର ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ସମିତିର ସଭ୍ୟ ଥିଲେ ସେମାନଙ୍କ ମଧ୍ୟରୁ ଦୁଇଚାରିଜଣଙ୍କ କଥା ମନେଅଛି । ସବୁଠାରୁ ବିଚକ୍ଷଣ ବ୍ୟକ୍ତିଥିଲେ କାର୍ଲ୍ ଖଣ୍ଡାଲାବାଲା । ସେ ସେତେବେଳକୁ ମଧ୍ୟ ଅସୁସ୍ଥ ଓ ଚଳତ୍‌ଶକ୍ତିହୀନ ହୋଇପଡ଼ିଥିଲେ । ଏଣୁ ତାଙ୍କୁ ଗୋଟିଏ ଚକଲଗା ଚୌକିରେ ସଭାସ୍ଥଳକୁ ଅଣାଯାଉଥିଲା । କିନ୍ତୁ ନିଜ ବିଚକ୍ଷଣତାରେ ସେ ସମସ୍ତଙ୍କୁ ଚମତ୍କୃତ କରିଦେଉଥିଲେ । ତାଙ୍କର ସ୍ମରଣଶକ୍ତି ପ୍ରଖର ଥିଲା । ତାଙ୍କ ଆଗରେ ମିନିଏଚର୍ ଚିତ୍ରଟିଏ ଟୋଳି ଧରିଲେ ସେ ଚିତ୍ର ସଂପର୍କରେ ଶିଳ୍ପୀର ନାଁ ଗାଁ, ଚିତ୍ର ପଛରେ ଥିବା ଶିଳ୍ପୀର ହାତଲେଖା ଟିପଣୀ ପ୍ରାଞ୍ଜଳ ଭାବରେ ନିର୍ଭୁଲ କହିପାରୁଥିଲେ । ଖଣ୍ଡାଲାବାଲା ତାଙ୍କ ଜୀବଦ୍ଦଶାରେ ଲକ୍ଷାଧିକ ପାହାଡ଼ୀ, ରାଜସ୍ଥାନୀ ଜୈନ, ବୌଦ୍ଧ ପୋଥିଚିତ୍ର ଓ ମିନିଏଚର୍ ଚିତ୍ର କେବଳ ଦେଖି ନଥିଲେ, ସେଗୁଡ଼ିକୁ ଅଧ୍ୟୟନ ମଧ୍ୟ କରିଥିଲେ । ଏହି ସମିତିରେ ସଭ୍ୟ ହେବା ପୂର୍ବରୁ ମଧ୍ୟ ତାଙ୍କ ସହିତ ମୋର ପରିଚୟ ଥିଲା । ସେ କେନ୍ଦ୍ର ଲଳିତ କଳା ଏକାଡେମୀର ପ୍ରାଚୀନ କଳା ପ୍ରକାଶନର ଉପଦେଷ୍ଟା ଓ 'ଲଳିତକଳା' ପତ୍ରିକାର ଅବୈତନିକ ସମ୍ପାଦକ ମଧ୍ୟ ଥିଲେ । ମୋର ଏବେ ସ୍ମରଣକୁ ଆସୁଛି, ମୁଁ ବହୁଦିନ ତଳେ ତାଙ୍କୁ ପୁରୀ ଜଗନ୍ନାଥ ମନ୍ଦିର ପରିଦର୍ଶନ କରେଇଥିଲି । ଖଣ୍ଡାଲାବାଲା ପାର୍ସୀ ଲୋକ, ହିନ୍ଦୁ ନୁହନ୍ତି । ଏଣୁ ମନ୍ଦିରର ପରମ୍ପରା ଅନୁସାରେ ତାଙ୍କ ପାଇଁ ମନ୍ଦିର ବେଢ଼ା ଭିତରେ ପ୍ରବେଶ ନିଷେଧ । କିନ୍ତୁ ଏତେବଡ଼ ଜଣେ କଳାତତ୍ତ୍ୱବିତ୍ ଏବଂ ଚୂନ ପରସ୍ତ ଛଡ଼େଇ ଦେଲା ପରେ ମନ୍ଦିରର ଭାସ୍କର୍ଯ୍ୟଗୁଡ଼ିକୁ ସେ ଦେଖିବା ଉଚିତ ମନେ କରି ଦୁଃସାହସର ସହିତ ମନ୍ଦିର ଭିତରକୁ ନେଇ ଯାଇଥିଲି । ଗୋରା ତକତକ ଚେହେରା, ମୁଣ୍ଡରେ ଧଳାବାଳ ଏବଂ ନାକ ତଳେ ଧଳା ନିଶରୁ ଧାରେ । ନିଶକୁ କଳା କରିବା ପାଇଁ ତାରି ଉପରେ ଆଇବ୍ରୋ ପେନ୍‌ସିଲ୍‌ରେ ମିନିଏଚର୍ ଧାରାରେ ଦୁଇଟି ଉଦ୍ୟତ ରେଖା ସେ ଆଙ୍କି ଦେଉଥିଲେ । ତାଙ୍କୁ ଦେଖିଲେ ମନେହେଉଥିଲା ସେ ଜଣେ ବିଦେଶୀ ଏଣୁ ମନ୍ଦିର ଭିତରେ ପଣ୍ଡାଙ୍କ ଶାଣିତ ଦୃଷ୍ଟିରେ ପଡ଼ି ବିଭିନ୍ନ ପ୍ରଶ୍ନର ସମ୍ମୁଖୀନ ହେବା ପୂର୍ବରୁ ମୁଁ ମୋ ଗାଇଡ୍ ପଣିଆର ପରାକାଷ୍ଠା ଦେଖାଇ ତାଙ୍କୁ ଶୀଘ୍ର ଶୀଘ୍ର ମନ୍ଦିର ପରିକ୍ରମା କରେଇ ବାହାରକୁ ନେଇ ଆସିଥିଲି ।

କମିଟିର ଆଉଜଣେ ଟାଣୁଆ ସଭ୍ୟ ହେଲେ ଆନନ୍ଦ କୃଷ୍ଣ । ସେ କଳା ଇତିହାସର ପ୍ରବାଦ ପୁରୁଷ ରାୟ କୃଷ୍ଣ ଦାସଙ୍କର ସୁଯୋଗ୍ୟ ପୁତ୍ର । ସେ ଜ୍ଞାନୀ ନିଶ୍ଚୟ କିନ୍ତୁ ଫୁଲାଫାଙ୍କିଆ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଭାରତ କଳାଭବନର ସେ ଥିଲେ ନିର୍ଦ୍ଦେଶକ । କଳାଭବନରେ ସବୁ ସଂରକ୍ଷିତ ମିନିଏଚର୍ ଶୈଳୀର ଚିତ୍ର ଓ ଭାସ୍କର୍ଯ୍ୟ ସଂପର୍କରେ ସେ ସଚେତନ ଥିଲେ । କୌଣସି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ନେଇ ସମସ୍ତେ ବ୍ୟସ୍ତ ବିବ୍ରତ ଥିବାବେଳେ ଆନନ୍ଦକୃଷ୍ଣ କ'ଣ ଗୋଟିଏ ଲଘୁ ପ୍ରସଙ୍ଗ ଉତ୍‌ଥାପନ

Digitized by srujanika@gmail.com

କରିଦେଇ ବାତାବରଣକୁ ଭୟମୁକ୍ତ କରିଦେଉଥିଲେ । ଜି.ଏନ୍.ପନ୍ଥ କମିଟିର ଅନ୍ୟତମ ବିଶେଷଜ୍ଞ ଥିଲେ ଓ ଅସ୍ତ୍ରଶସ୍ତ୍ରର ଇତିହାସ ସଂପର୍କରେ ତାଙ୍କର ଗବେଷଣା ଥିଲା ଅତ୍ୟନ୍ତ ଉଚ୍ଚକୋଟୀର ।

କମିଟିରେ ଗୋଟିଏ କଳାସାମଗ୍ରୀ କ୍ରୟ କାଳରେ ଯେଉଁଭଳି ଆଲୋଚନା ହୁଏ ତାହା ଶିକ୍ଷଣୀୟ ଓ କୌତୂହଳୋଦ୍ଦୀପକ ମଧ୍ୟ । ଧରାଯାଉ ପୃଥ୍ୱୀରାଜ ଚୌହାନ ପାନିପଥ ଯୁଦ୍ଧରେ ବ୍ୟବହାର କରିଥିବା ଧନୁଟି ସଂଗ୍ରହ ପାଇଁ ଅଣାଯାଇ ସଭ୍ୟମାନଙ୍କ ସମ୍ମୁଖରେ ରଖାଯିବ । ନିର୍ଦ୍ଦେଶକ ଡକ୍ଟର ସିହାରେ ଧନୁ ପାଇଁ ସଂଗ୍ରାହକ ଦେଇଥିବା ମୂଲ୍ୟ ବିଷୟରେ ଜାଣିବା ପାଇଁ ନିଜ ଅଫିସ୍ କର୍ମଚାରୀଙ୍କୁ ପଚାରିବେ । କର୍ମଚାରୀ ଜଣକ ନଥିପତ୍ର ଓଲଟାଇ କହିବ, ଧରାଯାଉ ''ବାରଲକ୍ଷ ଟଙ୍କା' । ସଭ୍ୟମାନେ ପରସ୍ପର ମୁହଁକୁ ଚାହିଁବେ । ସମସ୍ତଙ୍କ ମୁହଁରେ ଗୋଟିଏ ଆତଙ୍କର ଭାବ ଖେଳିବ । ସମସ୍ତେ ଏବେ ଆଶ୍ୱାସନାର ପଦେ କଥା ପାଇଁ ପନ୍ଥଙ୍କ ମୁହଁକୁ ଅନେଇବେ । ଡକ୍ଟର ପନ୍ଥ ଏବେ ନିଜର କର୍ତ୍ତବ୍ୟ ସ୍ଥିର କରିନେଇ ପୃଥ୍ୱୀରାଜଙ୍କ ଧନୁଉପରେ ଗୋଟିଏ କ୍ଷୁଦ୍ର ଭାଷଣଟିଏ ଦେବେ । ତାଙ୍କ ଭାଷଣଟି ମୋଟାମୋଟି ଏଭଳି : ''ବନ୍ଧୁଗଣ! ଆପଣମାନେ ଏହିବର୍ଷ ପ୍ରକାଶିତ ହୋଇଥିବା ମୋର ଅମୁକ ବହିର ଅମୁକ ପୃଷ୍ଠାରେ ମୁଦ୍ରିତ ଅମୁକ ଚିତ୍ରଟିକୁ ଦେଖନ୍ତୁ । ସେହି ଚିତ୍ରଟି ଏହି 'ଧନୁ'ର ହିଁ ଅବିକଳ ଫଟୋଗ୍ରାଫ୍ ।'' ତା'ପରେ ସେ ଧନୁ ସଂପର୍କରେ ସବିଶେଷ ତଥ୍ୟ ପ୍ରଦାନ କରିବେ । ପନ୍ଥ ସାହେବ ଯେହେତୁ ସବିଶେଷ ତଥ୍ୟ କହିସାରିଛନ୍ତି ଏବେ ଧନୁର ସତ୍ୟାସତ୍ୟକୁ ନେଇ ଆମର ସନ୍ଦେହ ଅମୂଳକ । କଥାରେ ଲଥା ଯୋଡ଼ିଲାଭଳି ଡକ୍ଟର ସିହାରେ ନିଜର ପ୍ରଶାସନିକ ମତବ୍ୟକ୍ତ କରିବେ ଏବଂ ସଂଗ୍ରାହକ ତା' ଧନୁ ପାଇଁ ଆଶା କରୁଥିବା ମୂଲ୍ୟ ଅତ୍ୟନ୍ତ ବେଶି ବୋଲି ମନେହେଉଥିବାରୁ ତାକୁ ଯଥାସମ୍ଭବ କମ୍ କରିବା ପାଇଁ ପ୍ରୟାସ କରିବେ । ସଂଗ୍ରାହକ ଧରାହେଇ ସଭାସ୍ଥଳକୁ ଆସିବ । ସେ ସେହି କୋଠରିରେ ପ୍ରବେଶ କରିବା କାଳରୁ ଦୁଇହାତ ଯୋଡ଼ି ଅତି ବିନମ୍ର ଭାବରେ ଠିଆ ହେଇ କହିବ, ''ଆପଣମାନେ ଚିହ୍ନରା ଗ୍ରାହକ, ଭାରତବର୍ଷର ଦିଗ୍ଗଜ କଳା ପଣ୍ଡିତ । ଆପଣଙ୍କ ଆଗରେ ଠିଆ ହେଇ କଥା କହିବାର ମୋର ନା ଯୋଗ୍ୟତା ଅଛି ନା ସାହସ ଅଛି । ମୁଁ ଯେଉଁ ମୂଲ୍ୟ ଧାର୍ଯ୍ୟ କରିଛି ତାହା ଏକବାରେ ଉଚିତ ମୂଲ୍ୟ । କିନ୍ତୁ ଆପଣମାନଙ୍କର କଥାକୁ ସମ୍ମାନ ଦେଇ ମୁଁ ଦଶହଜାର ଟଙ୍କା କମେଇ ଦେବା ପାଇଁ ବାଧ୍ୟ ହେଉଛି ।'' ଏବେ ସଭାସ୍ଥଳରେ ଉପସ୍ଥିତି ସଭ୍ୟମାନଙ୍କୁ ନିଜ ନିଜର ସ୍ୱଚ୍ଛନ୍ଦ ମତବ୍ୟକ୍ତ କରିବାରେ ସଂଗ୍ରାହକଙ୍କ ଉପସ୍ଥିତି ବାଧାଦେବ । ସଭାସ୍ଥଳ ଛାଡ଼ି ବାହାରକୁ ଯିବା ପାଇଁ ନିର୍ଦ୍ଦେଶକ ସିହାରେ ସଂଗ୍ରାହକଙ୍କୁ ଆଦେଶ ଦେବେ । ସଂଗ୍ରାହକଙ୍କ ଅନୁପସ୍ଥିତିରେ ସଭ୍ୟମାନେ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିବେ । କଥା କଟାକଟି ମଧ୍ୟ ହେବ । ଶେଷରେ ସର୍ବ ସମ୍ମତି

Digitized by srujanika@gmail.com

କ୍ରମେ ସ୍ଥିର ହେଇ କୁହାଯିବ ଯେ ସଂଗ୍ରାହକ ଏଗାରଲକ୍ଷ ଟଙ୍କାରେ ଧନୁଟିକୁ ସଂଗ୍ରହାଳୟକୁ ବିକ୍ରୀ କରିଦେବା ଉଚିତ୍ ହେବ । ପୁଣି ପୁରୁଣା କଥାର ପୁନରାବୃତ୍ତି କରାଯିବ । ଯୋଡ଼ ହସ୍ତରେ ସଂଗ୍ରାହକ ପୁଣି ସଭାସ୍ଥଳକୁ ଆସିବ । ସଭାର ନିଷ୍ପତ୍ତି ଶୁଣିଲା ପରେ କହିବ, ''ପ୍ରଭୁ ଏ ଗରିବକୁ ବଂଚିବାକୁ ଦିଅନ୍ତୁ । ଏମିତି କଥା ଶୁଣେଇ ମୋତେ 'ଶର୍ମିନ୍ଦା' କରନ୍ତୁ ନାହିଁ ।'' ତା'ପରେ ଶୁଖୁଆ ହାଟରେ ଗ୍ରାହକ ଓ କେଉଟୁଣୀ ମଧ୍ୟରେ ଘଟୁଥିବା ବାର୍ତ୍ତାଳାପର ଦୃଶ୍ୟଟିଏ ଅଭିନୀତ ହୋଇଯିବ । ଟଣାଓଟରା ଭିତରେ ଶେଷରେ ଏଗାରଲକ୍ଷ ପଚାଶ ହଜାର ଟଙ୍କାରେ ଧନୁର ମୂଲ୍ୟ ସ୍ଥିର ହେବ । ମନେହେବ ସମୁଦାୟ ଘଟଣାଟି ଆଗରୁ ସ୍ଥିରୀକୃତ । ଏଠି ଗୋଟିଏ ଅଭିନୟ ମାତ୍ର ହେଲା । ଥରେ ନୁହେଁ ପ୍ରତି ଦାମିକା କଳାସାମଗ୍ରୀ କିଣିଲାବେଳେ ଏଭଳି ନାଟକ ବାରମ୍ବାର ଅଭିନୀତ ହେବ ।

ମୁଁ ଏହି ସଂଗ୍ରହାଳୟ ପରିସର ଭିତରେ ଶୁଣିବାକୁ ପାଇଲି ଯେ ମାଲଦାର୍ ସଂଗ୍ରହକମାନେ ସେମାନଙ୍କ ଅଭିପ୍ରେତ ବିଶେଷଜ୍ଞମାନଙ୍କୁ ଉଡ଼ାଜାହାଜରେ ଉଡ଼େଇ ଆଣି ସଭାଦିନତକ ଦିଲ୍ଲୀରେ ବିଳାସପୂର୍ଣ୍ଣ ତାରକା ହୋଟେଲରେ ରଖାନ୍ତି ଏବଂ ସଭାପରେ ଗୃହ ପ୍ରତ୍ୟାବର୍ତ୍ତନ ସମୟରେ ବିଶେଷଜ୍ଞଙ୍କ ଶ୍ରୀମତୀଙ୍କ ପାଇଁ ହୀରାଖଚିତ ହାର, ମୁଦ୍ରିକା ଓ କର୍ଣ୍ଣଫୁଲ ଉପହାର ଦିଅନ୍ତି । ଏଭଳି କଥାରେ କେତେ ସତ କେତେ ମିଛ ଅଛି ତାହା ଭଗବାନଙ୍କୁ ହିଁ ଜଣା । ଆମେ କି ବା ବିଶେଷଜ୍ଞ ଯେ ଆମକୁ ପ୍ରଲୋଭିତ କରିବା ଆବଶ୍ୟକ ପଡ଼ିବ।

ମୁଁ ଦୁଇଟି କଳାସାମଗ୍ରୀ କିଣିବା କାଳରେ ମୋର ଆପତ୍ତି ସଭ୍ୟମାନଙ୍କ ଆଗରେ ଅତି ଦୃଢ଼ ଭାବରେ ଉପସ୍ଥାପନ କରିଥିଲି । ଗୋଟିଏ ହେଲା ଗୁପ୍ତଯୁଗର ଗୋଟିଏ ଭାସ୍କର୍ଯ୍ୟ । ସଭ୍ୟମାନେ ସମସ୍ତେ ଏକସ୍ୱରରେ ସେଇଟି ଗୋଟିଏ ଦୁର୍ଲଭ କଳା ସାମଗ୍ରୀ ବୋଲି ଘୋଷଣା କରିସାରିବା ପରେ ମଧ୍ୟ ମୂର୍ତ୍ତିଟିର ଥକପଟତାକୁ ଆଧାର କରି ମୋ ମନରେ ସନ୍ଦେହ ଉପୁଜିଛି । ଏହା ମୋର 'ଇତିହାସ' ଜ୍ଞାନର ପରାକାଷ୍ଠା ନୁହେଁ, ଜଣେ ଶିଳ୍ପୀର ଶାଣିତ ଚକ୍ଷୁର କରାମତି । ମୋ ନିଦାନର ସମର୍ଥନ ପାଇବା ପାଇଁ ମୁଁ ଡକ୍ଟର କରୁଣାସାଗର ଓ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସଙ୍କ ଦୃଷ୍ଟି ଆକର୍ଷଣ କରିଛି । ଉଭୟେ ମୋ ସହିତ ଏକମତ ହୋଇଛି ଏବଂ ଶେଷରେ ଗୁପ୍ତଯୁଗର ଭାସ୍କର୍ଯ୍ୟଟି କ୍ରୟ ସମିତି ଦ୍ୱାରା ଗୃହୀତ ହୋଇନାହିଁ ।

ଆଉ ଗୋଟିଏ କଳାସାମଗ୍ରୀ କ୍ରୟବେଳେ କ୍ରୟ ସମିତିର ସଭ୍ୟମାନେ ମୋର ମତାମତକୁ ସର୍ବସମ୍ମତି କ୍ରମେ ଗ୍ରହଣ କରିଥିଲେ, ତାହାଥିଲା ଗୋଟିଏ ଚିତ୍ରିତ କାଠ କବାଟ । ଆମ କଳାହାଣ୍ଡିର ଜଣେ ଧନାଢ୍ୟ ମାରୱାଡ଼ି ସାଧାରଣ କଳାକୃତିଗୁଡ଼ିକ କ୍ରୟ କରି ବିଭିନ୍ନ ଉପାୟରେ ତାକୁ ପୁରୁଣା କରି ଆଣ୍ଟିକ୍ ନାମରେ ବିଭିନ୍ନ ସଂଗ୍ରହାଳୟକୁ ବିକ୍ରି କରୁଥିଲା । ଗୋଟିଏ ନୃତ୍ୟ ଗଣେଶ ଚିତ୍ର ଥିବା କାଠ କବାଟକୁ ସେ ଅଷ୍ଟାଦଶ ଶତାବ୍ଦୀର ବୋଲି ଅଭିହିତ କରି ବିକ୍ରୟ

Digitized by srujanika@gmail.com

କରିବାକୁ ଚେଷ୍ଟା କରୁଥିଲା । ପୁରୁଣା ଭୁବନେଶ୍ୱର ଅଂଚଳରେ ସେତେବେଳେ ଭାଗବତ ମହାରଣାଙ୍କ ଷ୍ଟୁଡ଼ିଓରେ ଏଭଳି କାଠ କବାଟ ପ୍ରବଳ ଭାବେ ତିଆରି ହେଇ ଦେଶ ବିଦେଶକୁ ଚାଲାଣ ହେଉଥିଲା । କବାଟଟି ପୁରୁଣା ନୁହେଁ, ଏହା ଚଳନ୍ତି ସମୟର ଏକଥା କହିବା ପାଇଁ ବିଭିନ୍ନ କାରଣ ଥିଲା । ସେଥିରୁ ମୁଖ୍ୟ କାରଣ ହେଲା ରୋମାନ୍ ଆର୍ଚ୍ଚ ଭଳି ହେଇଥିବା ତା'ର ଗଢ଼ଣ ଏବଂ ଅନ୍ୟାନ୍ୟ କାରଣ ଭିତରେ ଥିଲା ସେଥିରେ ବ୍ୟବହୃତ ପିଙ୍କ୍, ସବୁଜ ପ୍ରଭୃତି ଅଣପାରଂପରିକ ରଂଗ ।

ଏବେ ସ୍ୱୀକାର କରିବାରେ ସଂଭ୍ରମ ନାହିଁ ଯେ ମୁଁ ଅନ୍ୟାନ୍ୟ ସଭ୍ୟଙ୍କଠାରୁ ଜ୍ଞାନରେ ଊଣା ଥିଲି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର୍ ଥିବା ବେଳର ଅନୁଭୂତି ଜାତୀୟ ସଂଗ୍ରହାଳୟର ବିସ୍ତାରିତ ବଳୟ ଭିତରେ ନ୍ୟୁନ ମନେହେଉଥିଲା । କିନ୍ତୁ ଏହା ଅବିସମ୍ବାଦିତ ଯେ ଜଣେ ଶିଳ୍ପୀ ହିସାବରେ ମୋର ଅନୁଭବକୁ କ୍ରିୟାଶୀଳ କରି ମୁଁ ନିଜର ପ୍ରୟୋଗାତ୍ମକ ରୁଚିବୋଧ ଓ ଶାଣିତ ଆଖି ଦୁଇଟିକୁ ବ୍ୟବହାର କରି ନିର୍ଦ୍ଦେଶକ ଡକ୍ଟର ସିହାରେଙ୍କର ଭ୍ରମାତ୍ମକ ଆକଳନକୁ ପରାଭୂତ କରିପାରିଥିଲି ।

Digitized by srujanika@gmail.com

# ୫୯. ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପ

ଦିଲ୍ଲୀର ପ୍ରଗତି ମୈଦାନରେ ଆନ୍ତର୍ଜାତିକ ବାଣିଜ୍ୟ ମେଳା ପାଇଁ ଆଜି ଠିଆ ହୋଇଥିବା ବିଭିନ୍ନ ପ୍ରଦେଶର ସ୍ଥାୟୀ ମଣ୍ଡପମାନ ନିର୍ମିତ ହେବା ଆଗରୁ ମଧ୍ୟ ଏଠାରେ ଅସ୍ଥାୟୀ ମଣ୍ଡପମାନଙ୍କରେ ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା ଏବଂ ଏହି ଅସ୍ଥାୟୀ ମଣ୍ଡପର ନିର୍ମାଣରେ କେବଳ କଳାତ୍ମକତାର ଆବଶ୍ୟକ ପଡୁ ନଥିଲା, ପଡୁଥିଲା ସ୍ଥାପତ୍ୟ ପ୍ରୟୋଗର କୌଶଳ । ଅସ୍ଥାୟୀ ମଣ୍ଡପ ନିର୍ମାଣ ବେଳର ପ୍ରତିଯୋଗିତାର ଆହ୍ୱାନ (ଚ୍ୟାଲେଞ୍ଜ) ସ୍ଥାୟୀ ମଣ୍ଡପର ସ୍ଥିତାବସ୍ଥା ମଧ୍ୟରେ ଶିଥିଳ ପଡ଼ିଗଲା । ୧୯୭୨ ମସିହାର ଘଟଣା । ମୁଁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର୍ ହୋଇ ଯୋଗଦେବା ବେଳଠାରୁ, ମଣ୍ଡପ ନିର୍ମାଣ ଓ ପ୍ରଦର୍ଶନୀର ଭିଜୁଏଲାଇଜର୍ ଭାବେ କାମ କରିଆସିଛି । ଆଗରୁ ଭିଜୁଏଲାଇଜର୍ ଶବ୍ଦର ପ୍ରୟୋଗ ସରକାରୀ ସ୍ତରରେ ନଥିଲା । ଅସୀମ ବସୁଙ୍କ ରୂପକାର ସଂସ୍ଥା ଓ ଅସିତ ମୁଖାର୍ଜୀଙ୍କ ଶିଳ୍ପରୂପମ୍ ଓଡ଼ିଶା ସରକାରଙ୍କ ମଣ୍ଡପ ନିର୍ମାଣ ଓ ପ୍ରଦର୍ଶନୀ କାମକୁ ଭାଗବାଣ୍ଟି କରୁଥିଲେ । ସେତେବେଳେ ମଣ୍ଡପ ନିର୍ମାଣ ପାଇଁ ଫେସିଆ ଓ ପ୍ରଦର୍ଶନୀ ପାଇଁ ଇଣ୍ଟିରିଅର୍ ଶବ୍ଦ ବ୍ୟବହାର କରାଯାଇଥିଲା । ଅସୀମ ଓ ଅସିତ ଦୁହେଁ ବନ୍ଧୁ ଥିଲେ ଏବଂ ପରସ୍ପରର ବୁଝାବଣା ଭିତରେ କାମଟି ବାଣ୍ଟି ହୋଇଯାଉଥିଲା । ଟଙ୍କା ପଇସା ଦେଣନେଣକୁ ନେଇ ଏ ଦୁହିଁଙ୍କ ମଧ୍ୟରେ ମନୋମାଳିନ୍ୟ ହେଲା । ଅସିତ ମୁଖାର୍ଜୀ ପ୍ରଦର୍ଶନୀ କାମ କରିବା ବନ୍ଦ କରିଦେଲେ । ଅସୀମ ବସୁ ଆମମାନଙ୍କୁ ନେଇ ତାଙ୍କର ପ୍ରଦର୍ଶନୀ କାମ ଚାଲୁ ରଖିଲେ । ମୁଁ ଅସୀମ ବସୁଙ୍କ ଶିଳ୍ପୀଦଳର ଅଧିନାୟକ ଥିଲି । ସମୟକ୍ରମେ କଲେଜର ଦାୟିତ୍ୱ ନେଲାପରେ ମୁଁ ଆନୁଷ୍ଠାନିକ ଭାବେ ଓଡ଼ିଶାମଣ୍ଡପ ନିର୍ମାଣ ସହିତ ଯୋଡ଼ି ହୋଇଗଲି ଏବଂ ଏହି ଦାୟିତ୍ୱରୁ ଦୂରେଇଗଲି । ମୋର ଏହି ନିଷ୍ପତ୍ତି ଅସୀମ ବସୁଙ୍କ ପାଇଁ ଉତ୍ସାହପ୍ରଦ ନଥିଲା । ଆମମାନଙ୍କର ବନ୍ଧୁ କ୍ୱାଲିଟି ପ୍ରେସ୍‌ର ମାଲିକ ଜଗଦୀଶ ପାଣି ମୋର ଏହି ନିଷ୍ପତ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏହା ସେ ନିଜେ କରିଥିଲେ ନା ଅନ୍ୟ କାହାଦ୍ୱାରା ପ୍ରଚୋଦିତ ହୋଇ କରିଥିଲେ ତା'ର ଆଲୋଚନା ଏଠି ଏବେ ଅପ୍ରାସଙ୍ଗିକ ମନେହୁଏ ।

ପ୍ରଦର୍ଶନୀ ଆୟୋଜନ ବ୍ୟବସ୍ଥାର ପରିବର୍ତ୍ତନ ପରେ ମଧ୍ୟ ଅସୀମ ବସୁଙ୍କ ସହିତ ସଂପର୍କ ସୌହାର୍ଦ୍ଦପୂର୍ଣ୍ଣ ଥିଲା । ଓଡ଼ିଶାର ପ୍ରଜ୍ଞାପନ ମେଢ଼ ତଥାପି ଅସୀମ ବସୁଙ୍କ

Digitized by srujanika@gmail.com

ଅକ୍ତିଆର ଭିତରେ ଥିଲା । ପ୍ରଦର୍ଶନୀ ମଣ୍ଡପ ତ ଆଉ ନିର୍ମାଣ କରିବାକୁ ପଡୁ ନଥିଲା । ଏଣୁ ବଢ଼େଇ କମାରଙ୍କ ବିରାଟ ଦଳକୁ ଏକାଠି କରି ଦିଲ୍ଲୀ ନେବା ଆଣିବା ଆବଶ୍ୟକ ହେଉ ନଥିଲା । ବେଳେବେଳେ ଆମେ ଅସୀମ ବସୁଙ୍କ ଶିକ୍ଷାଦଳର କିଛି ଉପନାୟକଙ୍କ ଉପରେ ନିର୍ଭର କରୁଥିଲୁ । ଯୁଦ୍ଧବେଳେ ଓଡ଼ିଶାର ଗଜପତି, ସୂର୍ଯ୍ୟବଂଶୀ ଓ ଭୋଇରାଜାମାନେ ଯେଉଁଭଳି ସୈନ୍ୟସାମନ୍ତ ଗୋଟାଉ ଥିଲେ ସେଭଳି ପ୍ରଦର୍ଶନୀବେଳେ କାରିଗରମାନଙ୍କୁ ଯୋଗାଡ଼ କରିବାକୁ ହେଉଥିଲା । ଆମ କଲେଜର ଛାତ୍ରଛାତ୍ରୀମାନେ ବାନରସେନାର କାର୍ଯ୍ୟ ତୁଲାଉଥିଲେ । ଅଧ୍ୟାପକମାନଙ୍କ ମଧ୍ୟରୁ ଦେବରାଜ ସାହୁ ଟେରାକୋଟା ଓ ମାଟି କାମ ପାଇଁ, ବଳଦେବ ମହାରଥୀ ଚିତ୍ରକାର୍ଯ୍ୟ ପାଇଁ ଓ ଡି.ଏନ୍.ରାଓ ଚୂଟ୍‌ମୁଟିଆ କାମରେ ଦକ୍ଷ ଥିଲେ । ମୂଳତଃ ମୋ ପାଖେ ପାଖେ ରହି ମୋତେ ସହାୟତା ଦେବା ଥିଲା ଡି.ଏନ୍.ଙ୍କ କାର୍ଯ୍ୟ । କାମ ବେଶି ପଡ଼ିଲେ ଆମେ ଚନ୍ଦ୍ରଶେଖର ରାଓଙ୍କର ସାହାଯ୍ୟ ମଧ୍ୟ ନେଉଥିଲୁ । ମୋର ଅନୁଭବ ହେଇଥିଲା ଯେ ଡି.ଏନ୍‌ଙ୍କୁ ଏକାକୀ ଦାୟିତ୍ୱ ଦେଲେ ବଡ଼ଧରଣର ମ୍ୟୁରାଲ୍ କାମଟିଏ ହୋଇପାରିବ ନାହିଁ । ମୋର ଦାୟିତ୍ୱ ହେଲା ମୁଖ୍ୟତଃ ଚିତ୍ରଯୋଜନା ବା ପ୍ଲାନିଙ୍ଗ୍, ପ୍ରଶାସନ ସଂପର୍କିତ ବ୍ୟବସ୍ଥା ଏବଂ ଲୋକ ସଂପର୍କ । ମୁଁ ଜାଣୁଥିଲି ଏସବୁ ପ୍ରଦର୍ଶନୀ କାମରେ ନିଛକ କଳାତ୍ମକତାର ଗୁରୁତ୍ୱ ବେଶି ନୁହେଁ । ତଥାପି କଲେଜର ସ୍ୱାର୍ଥକୁ ଆଖି ଅଗରେ ରଖି ଏସବୁ ପ୍ରଦର୍ଶନୀ କାମରେ ନିଜକୁ ଓ କଲେଜକୁ ସଂପୃକ୍ତ ରଖିବାକୁ ହେଉଥିଲା ।

ମୋ ବେଳକୁ କଲେଜରେ ଘୋର ଅର୍ଥାଭାବ । ବାରମାସେ ତେରଯାତ କରିବାକୁ ଅର୍ଥ ଆସିବ କୁଆଡୁ ? ବିଭିନ୍ନ କାର୍ଯ୍ୟକ୍ରମକୁ ରୂପାୟନ କରିବା ପାଇଁ, ଛାତ୍ରଛାତ୍ରୀଙ୍କୁ ପ୍ରୋତ୍ସାହନ ଦେବା ପାଇଁ ପ୍ରଦର୍ଶନୀ ବା ସରକାରଙ୍କ ବରାଦ କାମଗୁଡ଼ିକ ସହାୟକ ହେଉଥିଲା । ସରକାରୀ ବାବୁ ଓ କିରାଣିଙ୍କ ଧାରଣା ହେଉଥିଲା ଯେ ଏତେ ଅଡୁଆ ଭିତରେ ନ ପଶି କଲେଜକୁ ଦାୟିତ୍ୱ ଦେଇଦେଲେ ନିଶ୍ଚିନ୍ତ । ସେମାନେ କଳାତ୍ମକତାର ଉତ୍କର୍ଷରେ ବିଶ୍ୱାସ କରୁ ନଥିଲେ । ସେମାନଙ୍କ ପାଇଁ ଆମ କଲେଜ ପକ୍ଷରୁ ସରକାରୀ ବିଲ୍‌ଟିଏ ପାଇଗଲେ ହେଲା । ମୁଁ ଶୁଣିବାକୁ ପାଉଛି ଏହି ବ୍ୟବସ୍ଥା ଏବେ ବି ବଳବତ୍ତର ଅଛି । କଲେଜର ଅଧ୍ୟକ୍ଷ ବା ଅଧ୍ୟାପକମାନେ ଆଉ ନିଜେ କାମ ସହିତ କଳାତ୍ମକତାର ରୂପାୟନରେ ସଂପୃକ୍ତ ରହୁନାହାନ୍ତି, କାମ କରେଇ ନେବାରେ ସେମାନେ ଧୁରନ୍ଧର ହେଇ ଗଲେଣି । ଅଧିକାଂଶ ନିଜ ସ୍ତ୍ରୀଙ୍କ ନାମରେ ବା ଅନ୍ୟକୌଣସି ସଂପର୍କୀୟଙ୍କ ନାମରେ ବାଣିଜ୍ୟସଂସ୍ଥା ଖୋଲି ଦେଲେଣି । ଏସବୁ ବରାଦ କାମର ଉଦ୍‌ବୃତ୍ତ ଅର୍ଥ ଆଉ କଲେଜ କାମରେ ଲାଗୁନି । ବ୍ୟକ୍ତିଗତ ସ୍ୱାର୍ଥ ଅଭିବୃଦ୍ଧିରେ ଉପଯୋଗ ହେଉଛି । ମନେହେଉଛି ଏବେ ପ୍ରାୟ ସମସ୍ତେ ଜଣେ ଜଣେ କଣ୍ଟ୍ରାକ୍ଟର୍ ବା ପେଟି-କଣ୍ଟ୍ରାକ୍‌ଟର୍ । ଥରେ ସୂଚନା ଓ

Digitized by srujanika@gmail.com

ଲୋକସଂପର୍କ ବିଭାଗର ଓଡ଼ିଶା ମଣ୍ଡପ ନିର୍ମାଣ ପାଇଁ ଡିଜାଇନ୍ ମନୋନୟନ ଚାଲିଥାଏ । ମନୋନୟନ କମିଟିରେ ବିଭାଗୀୟ ସଚିବ ଓ ନିର୍ଦ୍ଦେଶକ ବସିଥାନ୍ତି । ମୁଁ ବି ମନୋନୟରେ କଳାବିଶେଷଜ୍ଞ ଭାବେ ଉପସ୍ଥିତ ଥାଏ । ଗୋଟିଏ ବିରଳ ଦୃଶ୍ୟ ଦେଖିବାକୁ ମିଳିଲା । କଲେଜର ଜଣେ କନିଷ୍ଠ ଅଧ୍ୟାପକ ଡିଜାଇନ୍‌ଟିଏ ହାତରେ ଧରି ସଭାଗୃହକୁ ପଶି ଆସିଲେ । ମୁହଁରେ କୃତ୍ରିମ ହସରୁ ଧାରେ । ତାଙ୍କର ହାବଭାବ ଦେଖିଲା ପରେ ମୋ ଦେହରେ ବିଦ୍ୟୁତର ଚେଙ୍କା ଲାଗିଲା ଭଳି ମୁଁ ଚମକି ଗଲି । ମୋ ତୁଣ୍ଡରୁ ଅତି ରୁକ୍ଷଭାବେ ବାକ୍ୟଟିଏ ବାହାରି ଆସିଲା । ''ତମେ ଏଠି କିଭଳି ପହଞ୍ଚିଛ ।'' ସିଏ ନିଜକୁ ସମ୍ଭାଳି ନେବା ପାଇଁ କଲେଜ ଓ ଅଧ୍ୟକ୍ଷ ଏହି ଦୁଇଟି ଶବ୍ଦ ଉଚ୍ଚାରିଲେ । ମୁଁ କହିଲି, ''ଅଧ୍ୟକ୍ଷ ନିଜେ କଲେଜକୁ ପ୍ରତିନିଧିତ୍ୱ କରିଥିଲେ ଡିଜାଇନ୍‌ର ମହତ୍ତ୍ୱ ଅଲଗା ପ୍ରକାର ହୋଇଥାନ୍ତା । ପୁଣି ଜଣେ ଟେଣ୍ଡେରର୍ ଭାବେ ଏଠି ତମର ଉପସ୍ଥିତି ତମ ପାଇଁ, ତମ ଅଧ୍ୟକ୍ଷ ବା କଲେଜ ପାଇଁ ଶୋଭନୀୟ ନୁହେଁ ।'' କନିଷ୍ଠ ଅଧ୍ୟାପକ ମହାଶୟଙ୍କ ହସ ହସ ମୁହଁ ଶୁଖିଗଲା । ଏତିକିରେ ମୋର କ୍ରୋଧ ପ୍ରଶମିତ ହୋଇ ନଥିଲା । ମୁଁ ନିର୍ଦ୍ଦେଶକଙ୍କୁ ଲକ୍ଷ୍ୟ କରି ସେହି କନିଷ୍ଠ ଅଧ୍ୟାପକଙ୍କ ସଂପର୍କରେ ମୋର ମତାମତ ଶୁଣେଇ ଦେଇଥିଲି, ''ଏଭଳି ଡିଜାଇନ୍ ମନୋନୀତ ହେବା ଦୂରକଥା, ସଂପୃକ୍ତ ଅଧ୍ୟାପକ ସରକାରଙ୍କ ସହିତ ବେପାର ବଣିଜ କରୁଥିବାରୁ ଦଣ୍ଡନୀୟ ହେବା ବିଧେୟ ।'' ତା' ପରଠାରୁ ମନୋନୟନ କମିଟିରେ ସଭ୍ୟଭାବେ ମୋତେ ଗ୍ରହଣ ନ କରିବାକୁ ମୁଁ ସରକାରଙ୍କୁ ଚିଠି ଲେଖି ଜଣେଇ ଦେଇଥିଲି । ମୁଁ ଏବେ ଶୁଣିବାକୁ ପାଉଛି ସେହି ନିର୍ଦ୍ଦିଷ୍ଟ ଅଧ୍ୟାପକ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ସୁନାପୁଅ । ନିଜ ସଂସ୍ଥା ଗଢ଼ି ବେଶ୍ ମୋଟା ଅଙ୍କ ରୋଜଗାର କରି ସାରିଲେଣି । ଆଜିକାଲି ଶିକ୍ଷା ଏକ ବଡ଼ ବ୍ୟବସାୟ । ଏଣୁ ପୁରୁଣା ମୂଲ୍ୟବୋଧରେ ଆଜିର ଚଳଣିକୁ ମାପିବାରେ ଯଥାର୍ଥତା ନାହିଁ ।

ମୋ ବେଳର ପରିସ୍ଥିତି ଥିଲା ଭିନ୍ନ ଧରଣର । ମୋର ମନେଅଛି, ଦିଲ୍ଲୀ ଯାଇ ତ୍ରିବାର୍ଷିକ ଭାରତୀୟ ପ୍ରଦର୍ଶନୀ ଦେଖିବାକୁ ମୁଁ ପାଞ୍ଚଶହ ଟଙ୍କା ସାହାଯ୍ୟ ପାଇଁ ଓଡ଼ିଶା ଲଳିତ କଳା ଏକାଡେମୀକୁ ଦରଖାସ୍ତ କରିଥିଲି । ଅଧ୍ୟକ୍ଷ ହେଲାପରେ ଏହି କଥାଟି ମୋତେ ଘାରୁଥାଏ । ଏଣୁ ମୋର ଛାତ୍ରଛାତ୍ରୀମାନେ ଦିଲ୍ଲୀ ଯାଆନ୍ତୁ, ସେଠାରେ ଜାତୀୟ ଆଧୁନିକ ସଂଗ୍ରହାଳୟ, ଜାତୀୟ ସଂଗ୍ରହାଳୟ ଆଉ ଅନ୍ୟାନ୍ୟ ପ୍ରଦର୍ଶନୀ ଦେଖନ୍ତୁ ବୋଲି ମୁଁ ଭାବୁଥାଏ । ସେମାନଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇ ଦେବାର ଏକମାତ୍ର ଭରସା ଥିଲା ଓଡ଼ିଶା ମଣ୍ଡପ ନିର୍ମାଣର କାମ । ଆଜିର ଅଧ୍ୟାପକ ଅଞ୍ଜନ କୁମାର ସାହୁ, ଅଧ୍ୟାପକ ସୁବ୍ରତ କୁମାର ମଲ୍ଲିକ, ଶୋଭନ୍ କୁମାର, ସଂଗ୍ରାମ ମହାରଣା, ଦିଲୀପ କୁମାର ତ୍ରିପାଠୀ, ଜଗନ୍ନାଥ ପଣ୍ଡା, ପ୍ରତାପ ଚନ୍ଦ୍ର ଜେନା ଯେଉଁମାନେ ସମାଜରେ ଶିଳ୍ପୀ ଭାବରେ ପ୍ରତିଷ୍ଠିତ, ସେମାନେ

Digitized by srujanika@gmail.com

ସମସ୍ତେ ଏକଦା ମଣ୍ଡପ ନିର୍ମାଣ କାମ ଆଳରେ ଦିଲ୍ଲୀ ଯାଇ ନିଜକୁ ଜାତୀୟ କଳାଧାରା ସହିତ ସଂପୃକ୍ତ କରିପାରିଥିଲେ । ଦିଅଁଦେଖା ଓ କଦଳୀଖିଆ ନ୍ୟାୟରେ ସେମାନେ ସମସ୍ତେ ଉପକୃତ ହୋଇଛନ୍ତି । ସେମାନଙ୍କ ସାଙ୍ଗରେ ଆହୁରି ଅନେକେ ଅଛନ୍ତି ଯେଉଁମାନଙ୍କ ନାଁ ଏବେ ମନେପଡୁ ନାହିଁ ।

ମୋ ବେଳେ ଓଡ଼ିଶା ମଣ୍ଡପର ସଜ୍ଜୀକରଣ ପାଇଁ କଲେଜକୁ ଟେଣ୍ଡର ଦେବାକୁ ପଡୁ ନଥିଲା । ସୂଚନା ଓ ଲୋକସଂପର୍କ ବିଭାଗ କଲେଜକୁ ଚିଠି ମାଧ୍ୟମରେ ଅନୁରୋଧ ଜଣାଉଥିଲେ ଏବଂ ମୁଁ ଡିଜାଇନ୍ ଖର୍ଚ୍ଚ ଅଟକଳ ଦେଉଥିଲି ଏବଂ ତାହା ବିନା ବାଧାରେ ଗୃହୀତ ହୋଇ ଯାଉଥିଲା । ଏ ବ୍ୟବସ୍ଥା କଲେଜ ଓ ଅଧ୍ୟକ୍ଷଙ୍କ ପ୍ରତିଷ୍ଠାକୁ ସୁହାଉଥିଲା । ଆମେ ବେପାର କରିବା ଜଂଜାଳ ମଧ୍ୟରେ ଛନ୍ଦି ହେଉ ନଥିଲୁ ।

ସ୍ଥାୟୀ ମଣ୍ଡପ ନିର୍ମାଣ ହେଇଗଲା ପରେ ଶିଳ୍ପ ପରିକଳ୍ପନା ସଂକୁଚିତ ହୋଇଗଲା । ମଣ୍ଡପ ଉପରକୁ ଉଠିବାକୁ ପୁରୀ ଜଗନ୍ନାଥ ମନ୍ଦିରର ବାଇଶି ପାହାଚ ଭଳି ପାହାଚମାନ ରାସ୍ତା ଉପରୁ ପ୍ରଥମ ମହଲାର ମୁଖ୍ୟଦ୍ୱାର ଯାଏ ଲମ୍ବିଥିଲା । ଅଧିକାଂଶ ବୟସ୍କ ଦେଖଣାହାରୀ ପାହାଚ ଚଢ଼ିବାକୁ ଅନିଚ୍ଛୁକ ଥିଲେ । ଏଣୁ ପ୍ରସ୍ଥାନ ଦ୍ୱାରକୁ ବେଳେବେଳେ ପ୍ରବେଶ ଦ୍ୱାର ଭଳି ବ୍ୟବହାର କରିବାକୁ ପଡୁଥିଲା । ମଣ୍ଡପଟି ପ୍ରତିବର୍ଷ ନୂଆ ହେଇ ଦିଶିବା ପାଇଁ ଚେଷ୍ଟା ଭିତରେ ଆମେ ଅଧିକା କିଛି କରିପାରୁ ନଥିଲୁ । ନକ୍ସାର ତ ବୈପ୍ଳବିକ ପରିବର୍ତ୍ତନ ହେବା ସମ୍ଭବ ନୁହେଁ ଏଣୁ ପରିବର୍ତ୍ତନ 'କସ୍‌ମେଟିକ୍' ପର୍ଯ୍ୟାୟରେ ସୀମିତ ରହିବାକୁ ବାଧ୍ୟ ହେଉଥିଲା । ଯେତିକି ସ୍ନୋ ପାଉଡ଼ର ମାଖି ଚେହେରାକୁ ସୁନ୍ଦର କରିହେବ । ବେଣୀକୁ ହଟାଇ ଜୁଡ଼ା ବି ବାନ୍ଧି ହେବନି । ଥରେ ଆଖିଦୃଶିଆ ଚମକ ଆଣିବା ପାଇଁ ମୁଁ ମଣ୍ଡପଟିକୁ ତିନୋଟି ରଥର ପରିକଳ୍ପନା କରିଥିଲି । ପୁରୀ ରଥର ମଣ୍ଡଣି, ଚାନ୍ଦୁଆ କାମ ଆଉ ତା' ସାଂଗକୁ ଦ୍ୱାରଗେଡ଼ା ଆଦିରେ ପଟଚିତ୍ରର ବନକ, କାଠର ଚକ, ଚିତ୍ରିତ କାଠର ଘୋଡ଼ା, ସାରଥି, ଅବିକଳ ରଥ ଭଳି ରଥର ସାଜସରଂଜାମ । ପାହାଚ୍‌କୁ ଆମେ କହୁଥିଲୁ ପହଣ୍ଡି ଚାଙ୍ଗଡ଼ା । ରଥ ତ ସୁନ୍ଦର ଦିଶିଲା କିନ୍ତୁ ଟ୍ରେଡ୍ ଫେଆର୍ ଅଥରେଟି ନିର୍ଦ୍ଧାରିତ କରିଥିବା ଉଚ୍ଚତାଠାରୁ ବଳିଗଲା । ମୁଖ୍ୟ ସ୍ଥପତି ରଥ ଭାଙ୍ଗିବାକୁ ତାଗିଦା ଦେଲେ । ଏତେବଡ଼ ସୁନ୍ଦର ରଥ ହେଇଛି, ତାକୁ ଭାଙ୍ଗିବା ପାଇଁ ହାତ ଗଲାନି । ଆମ ସାଙ୍ଗରେ କାମ କରୁଥିବା କିଛି ଲୋକ କହିଲେ, ''ଜଗନ୍ନାଥଙ୍କୁ ଡାକ ସେ ବିପତ୍ତିରୁ ଉଦ୍ଧାର କରିବେ, ରଥ ତ ତାଙ୍କରି'' । ଆମେ ଜଗନ୍ନାଥଙ୍କୁ ପ୍ରାର୍ଥନା କଲୁ । କିଛି ଫଳ ପାଇଲୁନି । ଲୋକ ସଂପର୍କ ବିଭାଗର କିଛି ଅଫିସର କହିଲେ, ''ସେଇ ଲୋକଟା ଘୋଡ଼ା ଲାଞ୍ଜୁଆ, ଦକ୍ଷିଣା ନ ଦେଲେ ଅଫିବନି'' । ସୁବାସ ପାଣି ଆମ ନିର୍ଦ୍ଦେଶକ ଥାଆନ୍ତି । ସେ ଜଗନ୍ନାଥଙ୍କ

Digitized by srujanika@gmail.com

ଜଣେ ପକ୍କା ଭକ୍ତ । କହିଲେ, ''ଦିନନାଥ, ତମେ ଯାହା କରୁଚ କର, କିନ୍ତୁ ରଥ ଭାଙ୍ଗ ନାହିଁ ।'' ଆମେ ଉପଚାର କଲୁ । ଓଡ଼ିଶାର ଧାର୍ମିକ ଭାବନାକୁ ସମ୍ମାନ ଦେଖାଇ ଟ୍ରେଡ୍ ଫେଆର୍ ଅଥରିଟିର ମୁଖ୍ୟ ସ୍ଥପତି ଆମ ରଥର ଉଚ୍ଚତାକୁ ଅନୁମୋଦନ କଲେ ।

ସଚିବାଳୟର ମୁଖ୍ୟ ସିଡ଼ି ଉଠିଲାବେଳେ କାନ୍ଥ ଉପରେ, ତୃତୀୟ ମହଲାରେ ଥିବା କନ୍‌ଫରେନ୍‌ସ୍ ହଲ୍‌ରେ ଏବଂ ପ୍ରବେଶ ପଥର ଲାଉଞ୍ଜ ଭିତରେ ଓଡ଼ିଶା ଇତିହାସ ଓ କିମ୍ବଦନ୍ତୀ ସଂବଳିତ ଯେତେକ ମୁରାଲ୍ ଚିତ୍ର ପ୍ରଦର୍ଶିତ ହୋଇଛି, ସେଗୁଡ଼ିକ ଏକଦା ଓଡ଼ିଶା ମଣ୍ଡପ ଭିତରେ ଶୋଭା ପାଉଥିଲା ଏବଂ ଆମ କଲେଜର ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ହାତକାମ । ଓଡ଼ିଶା ମଣ୍ଡପ ସାଜସଜ୍ଜାରେ ପ୍ରାୟ ସବୁ ଶୈଳ୍ପିକ ପରିପ୍ରକାଶ ଆମ ସମୟରେ ଶେଷ ହୋଇଯାଇଛି । ଆମେ ଓଡ଼ିଶା ପ୍ରଶାସନର ମନୋଭାବକୁ ସମ୍ମାନ ଦେଖାଇ ସବୁବେଳେ ପାରମ୍ପରିକ କଳା ଉପରେ ନିର୍ଭର କରୁଥାଉ । ରତ୍ନଗିରି ବିହାରର ଦ୍ୱାରବନ୍ଧ, ମୁକ୍ତେଶ୍ୱରର ତୋରଣ, କୋଣାର୍କ ଚକ, ହାତୀ, ଘୋଡ଼ା, ନବଗୁଞ୍ଜର, ଚିତ୍ରରେ ବୋଇତବନ୍ଦାଣ, କାଞ୍ଚି ବିଜୟ, ହୁଏନ୍‌ସାଂଙ୍କ ପରିଭ୍ରମଣ, ଚଣ୍ଡାଶୋକରୁ ଧର୍ମାଶୋକ, ବେଶ୍ ଏତିକିରେ ପ୍ରାୟ ସରିଗଲା ଓଡ଼ିଶାର ଇତିହାସ ଓ କିମ୍ବଦନ୍ତୀ । ଆଉ ଅଧିକା ହେଲେ ସଉରା ଇଡ଼୍‌ତାଲ୍ ଓ ଓଡ଼ିଶୀ ଝୋଟି । ବର୍ତ୍ତମାନ ଯେଉଁମାନେ ଓଡ଼ିଶା ମଣ୍ଡପ ସଜାଉଛନ୍ତି ଆଉ ଅଧିକା କ'ଣ ବା କରିପାରିବେ ? ଖଡ଼ା ବଡ଼ି ଥୋଡ଼, ଥୋଡ଼ ବଡ଼ି ଖଡ଼ା ।

Digitized by srujanika@gmail.com

# ୬୦. ନାଲ୍‌କୋ କ୍ୟାଲେଣ୍ଡର୍ ଓ ସତ୍ୟ ମହାପାତ୍ର

ଓଡ଼ିଶାରେ ଆମେ ପ୍ରଥମ କରି ଆମର ଚିତ୍ରକୁ ରଙ୍ଗିନ୍ ଆର୍ଟ୍ କ୍ୟାଲେଣ୍ଡର୍‌ରେ ପ୍ରକାଶ କରିଛୁ । ଏକଥା କହିଲେ ମନେହେବ ଆମେ ପ୍ରୌଢ଼ି ଦେଖାଉଛୁ । କଥାଟି କିନ୍ତୁ ଏକବାରେ ସତ । ପ୍ରଥମେ ଜେ.ପି. ଦାସଙ୍କ ପ୍ରଚେଷ୍ଟାରେ ଇଡ଼୍‌କଲ୍ କଂପାନୀ ଛଅଜଣ ଓଡ଼ିଆ ଆଧୁନିକ ଚିତ୍ରଶିଳ୍ପୀଙ୍କର ଛବିକୁ ଆଧାର କରି ଗୋଟିଏ କ୍ୟାଲେଣ୍ଡର୍ ଛାପିଥିଲା । ଏହି କ୍ୟାଲେଣ୍ଡର୍‌ରେ ଯେଉଁମାନଙ୍କ ଛବି ସ୍ଥାନ ପାଇଥିଲା ସେମାନେ ହେଲେ ଜେ.ପି. ଦାସ, ଅଜିତ କେଶରୀ ରାୟ, ଅନନ୍ତ ପଣ୍ଡା, ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ, ଶିବ ପାଣିଗ୍ରାହୀ ଓ ମୁଁ । ସେ ସମୟରେ ଏହି କ୍ୟାଲେଣ୍ଡର୍ କଳା ଜଗତରେ ବେଶ୍ ପ୍ରଭାବ ପକାଇ ପାରିଥିଲା ।

୧୯୮୨ ମସିହାରେ ଓଡ଼ିଶାରେ ନ୍ୟାସ୍‌ନାଲ୍ ଆଲୁମିନିୟମ୍ କଂପାନୀ (ନାଲ୍‌କୋ) ପ୍ରତିଷ୍ଠିତ ହେଲା । ଦାମନଯୋଡ଼ି ପଞ୍ଚପଟ୍ମାଳି ପାହାଡ଼ରୁ ବକ୍‌ସାଇଟ୍ ଉତ୍ତୋଳନ କରି ତାକୁ ଅନୁଗୋଳସ୍ଥିତ ସ୍ମେଲ୍‌ଟର୍ ପ୍ଲାଣ୍ଟରେ ତରଳାଇ ଆଲୁମିନିୟମ୍ ପ୍ରସ୍ତୁତ କରି ଦେଶ ବିଦେଶକୁ ରପ୍ତାନି କରିବା ହେଲା କଂପାନୀର କାମ । ଭାରତ ସରକାରଙ୍କ ସୂଚନା ପ୍ରସାରଣ ମନ୍ତ୍ରଣାଳୟ ଅଧିନରେ କଟକର ଆକାଶ ବାଣୀ କେନ୍ଦ୍ରରେ କାର୍ଯ୍ୟ କରୁଥିବା ଅଫିସର୍ ସତ୍ୟ ମହାପାତ୍ର ନାଲ୍‌କୋରେ ଲୋକ ସଂପର୍କ ଅଧିକାରୀଭାବେ ଯୋଗ ଦେଲେ । ସତ୍ୟ ମହାପାତ୍ରଙ୍କୁ ମୁଁ ସତ୍ୟଭାଇନା ବୋଲି ସ୍ନେହାଧିକରେ ସମ୍ବୋଧନ କରେ । ସତ୍ୟଭାଇନାଙ୍କ ସହ ମୋର ଭୁବନେଶ୍ୱର ଆସିଲାଠାରୁ ସଂପର୍କ । ସତ୍ୟ ଭାଇନା ଓ ସାମ୍ବାଦିକ ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ ବାଟା ଦୋକାନ ଆଡ଼କୁ ମୁହଁ କରିଥିବା ସରକାରୀ କ୍ୱାର୍ଟରରେ ପାଖାପାଖି ରହୁଥିଲେ । ଆଜିକାଲି ଯେଭଳି ଅଧୋବାୟୁ (ପାଡ଼ିବା ଶବ୍ଦ ଅଶୋଭନୀୟ ହୋଇପାରେ) ଛାଡ଼ିଲେ ଓ ଛିଙ୍କିଲେ ଖବର କାଗଜରେ ସମ୍ବାଦ ପ୍ରକାଶ ପାଉଛି କେବଳ ଓଡ଼ିଆ ନୁହେଁ ଇଂରାଜୀ କାଗଜରେ ମଧ୍ୟ, ସେତେବେଳେ କିନ୍ତୁ ସେଭଳି ନଥିଲା । ଇଂରାଜୀ ଖବରକାଗଜ ଜାତୀୟ ସ୍ତରର ସମ୍ବାଦକୁ ପ୍ରାଧାନ୍ୟ ଦେଉଥିବାବେଳେ ଓଡ଼ିଆ ଖବରକାଗଜର ସଂଖ୍ୟା ଖୁବ୍ ସୀମିତ ଥିଲା । ଭୁବନେଶ୍ୱରରେ ଟେଲିଭିଜନ୍‌ର ଆବିର୍ଭାବ ହୋଇ ନଥିଲା । ସମ୍ବାଦ ପ୍ରସାରଣର ନିର୍ଭରଯୋଗ୍ୟ ଅବଲମ୍ବନ ଥିଲା ହାତଗଣତା ଦି' ଚାରୋଟି ଓଡ଼ିଆ ଖବରକାଗଜ ଏବଂ

Digitized by srujanika@gmail.com

ଆକାଶବାଣୀ (ଅଲ୍‌ଇଣ୍ଡିଆ ରେଡ଼ିଓ, କଟକ) ମୁଁ ଭୁବନେଶ୍ୱରରେ ସରକାରୀ ଚାକିରି ଆରମ୍ଭ କଲାପରେ ବିଭିନ୍ନ ଶିଳ୍ପ ସଂଗଠନ ମଧ୍ୟ ଆରମ୍ଭ କରିଥିଲି, ଶିଳ୍ପୀ ସଂସଦଠାରୁ ଆରମ୍ଭ କରି ଚିତ୍ରମ୍ କଳାବିଦ୍ୟାଳୟ, ୱାର୍କିଙ୍ଗ୍ ଆର୍ଟିଷ୍ଟ୍‌ସ୍ ଆସୋସିଏସନ୍, ଓଡ଼ିଶା କଲ୍‌ଚରାଲ୍ ଫୋରମ୍ ପର୍ଯ୍ୟନ୍ତ । ଏହିସବୁ ସଂଗଠନର କାର୍ଯ୍ୟକ୍ରମକୁ ପ୍ରଚାର ପ୍ରସାର କରିବା ଉଦ୍ଦେଶ୍ୟରେ ଆମେ ନିଜେ ନିଉଜ୍‌ଟିଏ ହାତରେ ଲେଖି ପ୍ରଶାନ୍ତ ପଟ୍ଟନାୟକ ଓ ସତ୍ୟ ମହାପାତ୍ରଙ୍କ ପାଖରେ ପହଞ୍ଚୁଥିଲୁ ।

ଓଡ଼ିଶା ଲଳିତ କଳା ଏକାଡେମୀରୁ ଚିତ୍ରକଳା ପାଇଁ ମୁଁ ତିନିଥର ପୁରସ୍କୃତ ହୋଇଛି । ଥରକର ଘଟଣା । ରାଜ୍ୟ ସଂଗ୍ରହାଳୟରେ ଥିବା ଏକାଡେମୀର ଚିତ୍ର ଗ୍ୟାଲେରୀରେ ବାର୍ଷିକ ରାଜ୍ୟ ପୁରସ୍କାର ପାଇଁ ଛବି ଚୟନ କାର୍ଯ୍ୟ ଚାଲିଥାଏ । ଖଲିକୋଟରେ କୁଞ୍ଜ ମହାପାତ୍ର ରାଜ୍ୟ ସଂଗ୍ରହାଳୟରେ ଚତୁର୍ଥଶ୍ରେଣୀ କର୍ମଚାରୀଭାବେ କାର୍ଯ୍ୟ କରୁଥାଏ ଏବଂ ସେ ଚତୁର୍ଥଶ୍ରେଣୀ କର୍ମଚାରୀ ସଂଘର ମୁଖିଆ ଥାଏ । ସଂଗ୍ରହାଳୟ ଓ ଏକାଡେମୀର କିଛି କର୍ମଚାରୀ ଗ୍ୟାଲେରୀ ଭିତରେ ଓ ବାହାରେ ଉପସ୍ଥିତ ଥାଆନ୍ତି । ସେମାନଙ୍କ ସାଙ୍ଗରେ ମୋର ଭଲ ସଂପର୍କ ଥାଏ । ସେମାନେ ଜାଣିପାରିଲେ ଯେ ମୋର ଗୋଟିଏ ଛବି ପୁରସ୍କୃତ ହୋଇଛି । ଯୁବାବସ୍ଥା, ପୁରସ୍କାରର ମୋହ ନିବିଡ଼ । ମୁଁ ଖବର ପାଇଲା ମାତ୍ରେ ନିଉଜ୍‌ଟିଏ ନିଜେ ଲେଖି ସତ୍ୟ ମହାପାତ୍ର ଓ ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକଙ୍କୁ ଦେଇ ଆସିଲି । ଖବର କାଗଜରେ ତା' ପରଦିନ ତ ପ୍ରକାଶ ପାଇଲା । କିନ୍ତୁ ସେଦିନ ସନ୍ଧ୍ୟା ଖବରରେ ଆକାଶବାଣୀ ମୁଁ ଏକାଡେମୀ ପୁରସ୍କାର ପାଇଥିବା କଥା ଘୋଷଣା କଲା । ଉଭୟ ସଂବାଦ ପ୍ରକାଶନ ଓ ଘୋଷଣାରୁ ମନେହେଲା ସତେ ଯେଉଁଳି ମୁଁ ହିଁ ବ୍ୟକ୍ତିଗତଭାବେ ସେ ବର୍ଷ ପୁରସ୍କୃତ ହୋଇଛି । ଭୁବନେଶ୍ୱରରେ ଥିବା ମୋ ଶିଳ୍ପୀବନ୍ଧୁମାନେ ତ ଚକିତ ହେଲେ କିନ୍ତୁ ସବୁଠାରୁ ଅଧିକ ମାନସିକ ଆଘାତ ପାଇଲେ ମନୋରଞ୍ଜନ ଦାସ, ଯିଏ କଟକ ଆକାଶବାଣୀ କେନ୍ଦ୍ରରୁ ଡେପୁଟେସନ୍‌ରେ ଆସି କେବଳ ଲଳିତ କଳା ନୁହେଁ, ସାହିତ୍ୟ ଓ ସଂଗୀତ ନାଟକ ଏକାଡେମୀର ମଧ୍ୟ ସଂପାଦକ ଥିଲେ ।

ଲଳିତ କଳା ଏକାଡେମୀ ପକ୍ଷରୁ ଆନୁଷ୍ଠାନିକ ଭାବେ ପୁରସ୍କାର ଘୋଷଣା ହେଲାବେଳକୁ ତା' ପରଦିନ ସନ୍ଧ୍ୟା ହୋଇଯାଇଥିଲା । ସତ୍ୟ ମହାପାତ୍ରଙ୍କୁ ମୋ ପାଇଁ କୈଫିୟତ୍ ଦେବାକୁ କୁହାଯାଇଥିଲା, କିନ୍ତୁ ସେ କୌଣସି କୈଫିୟତ ଦେବା ଆଗରୁ ଆକାଶବାଣୀରେ ଏକାଡେମୀର ପୁରସ୍କାର ଘୋଷଣା ସରିଥିଲା । ଏଣୁ ଉଦ୍ଭୂତ ସମସ୍ୟାଟି ଆପେ ଆପେ ସମାହିତ ହୋଇଗଲା ।

ଆମ ଦେଶର ଚିତ୍ରକଳା ପ୍ରତି, ଚିତ୍ରଶିଳ୍ପୀଙ୍କ ପ୍ରତି ସତ୍ୟ ମହାପାତ୍ରଙ୍କ ଦରଦ ଅଛି । ଏବେ ସିଏ ଭୁବନେଶ୍ୱର ସାହିତ୍ୟ ସମାଜ ଆନୁକୂଲ୍ୟରେ ଆୟୋଜନ କରୁଥିବା ସାହିତ୍ୟ

Digitized by srujanika@gmail.com

ଆସରମାନଙ୍କରୁ ଚିତ୍ରକଳା ସହିତ କେବଳ ସାହିତ୍ୟ ନୁହେଁ ତାଙ୍କର ମଧ୍ୟ ସଂପର୍କର ପ୍ରମାଣ ମିଳିଯାଉଛି । ସେ ନାଲ୍‌କୋରେ ଲୋକ ସଂପର୍କ ଅଧିକାରୀ ଭାବେ ଯୋଗ ଦେଲାପରେ ଓଡ଼ିଶାର ଇତିହାସ ଓ ସଂସ୍କୃତି ଉପରେ ଆଧାର କରି ଗୋଟିଏ ଲମ୍ୱାଫର୍ଦ୍ଦିଆ କ୍ୟାଲେଣ୍ଡର ପ୍ରକାଶ କରିବା ପାଇଁ ପ୍ରସ୍ତାବ ଦେଲେ ଏବଂ ନାଲ୍‌କୋ କର୍ତ୍ତୃପକ୍ଷ ତାକୁ ସାଦର ଗ୍ରହଣ କଲେ । କ୍ୟାଲେଣ୍ଡରର ବିଷୟକ୍ରମକୁ ନେଇ ସ୍ଥିର ହେଲା ଯେ କ୍ୟାଲେଣ୍ଡର ଛଅପତ୍ରିଆ ହେବ ଓ ଚିତ୍ରଗୁଡ଼ିକ ହେବ ଖାରବେଳ ଓ ଖଣ୍ଡଗିରି- ଉଦୟଗିରି ଗୁମ୍ଫା, କଳିଙ୍ଗ ଯୁଦ୍ଧ ଓ ଅଶୋକ, ରତ୍ନଗିରି ବିହାର ଓ ହୁଏନ୍‌ସାଂ, ବୋଇତ ବନ୍ଦାଣ, ଜଗନ୍ନାଥଙ୍କ ରଥରେ ଛେରାପହଁରା ଓ ପଦ୍ମାବତୀ ଏବଂ କୋଣାର୍କର ସୂର୍ଯ୍ୟମୂର୍ତ୍ତି । ଏସବୁ ଚିତ୍ର କରିବା ପାଇଁ ଛ'ଜଣ ଶିଳ୍ପୀ ମନୋନୀତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଡି.ଏନ୍. ରାଓ, ବଳଦେବ ମହାରଥୀ, ସତ୍ୟବ୍ରତ ଦାସ, ବନଜା ଚୌଧୁରୀ ଓ ଚନ୍ଦ୍ରଶେଖର ରାଓ । ମୁଁ ଥିଲି ଏ ଛଜଣିଆ ଦଳର ଅଧିନାୟକ । କହିବା ବାହୁଲ୍ୟ ଯେ ଏହି ଶିଳ୍ପୀମାନଙ୍କ ନାଁ ମୁ ହିଁ ସତ୍ୟ ମହାପାତ୍ରଙ୍କୁ ଦେଇଥିଲି ଓ ସେ ଏମାନଙ୍କୁ କ୍ୟାଲେଣ୍ଡରର ଶିଳ୍ପୀ ଭାବେ ଗ୍ରହଣ କରିଥିଲେ । ବାସ୍ତବରେ ଦେଖିବାକୁ ଗଲେ ରତ୍ନଗିରି ବିହାର ଓ ହୁଏନ୍‌ସାଂ ଚିତ୍ରଟି ରାମହରି ଜେନାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେ ସେତେବେଳକୁ ଆସିକା ଟେକ୍‌ନିକାଲ୍ ହାଇସ୍କୁଲରେ ଚାକିରି କରୁଥିବାହେତୁ ଏଥିପାଇଁ ଆବଶ୍ୟକ ସମୟ ଦେଇପାରିଲେ ନାହିଁ । ତେଣୁ ଶେଷ ମୁହୂର୍ତ୍ତରେ ତାଙ୍କ କାମଟି ସତ୍ୟବ୍ରତଙ୍କୁ ସମର୍ପିବାକୁ ହେଲା । ଚିତ୍ରଗୁଡ଼ିକ କରିବା ଆଗରୁ ସେଗୁଡ଼ିକର ଶୈଳୀ, ବର୍ଣ୍ଣଯୋଜନା ଇତ୍ୟାଦି ସଂପର୍କରେ ଶିଳ୍ପୀମାନଙ୍କ ମଧ୍ୟରେ ଆଲୋଚନା ହୋଇ ସ୍ଥିର ହେଉଥିଲା । ପ୍ରଫେସର୍ ମନ୍ମଥନାଥ ଦାସ ଏହି ପ୍ରକଳ୍ପର ଉପଦେଷ୍ଟା ଥିଲେ । ଅଶୋକ ଓ କଳିଙ୍ଗ ଯୁଦ୍ଧଚିତ୍ରରେ ପ୍ରଫେସର୍ ଦାସଙ୍କର ସ୍ୱତନ୍ତ୍ର ରୁଚି ଥିଲା, କାରଣ ସେ ତାଙ୍କ ଦ୍ୱାରା ଲିଖିତ 'ଅଶୋକ ଦି ଗ୍ରେଟ୍' ବହିଟି ଉପରେ ଆଧାର କରି ସିନେମା ପ୍ରସ୍ତୁତ କରିବା ପାଇଁ ବମ୍ବେର ଜନୈକ ଶିଳ୍ପୀଙ୍କ ଦ୍ୱାରା କିଛି ଚିତ୍ର ଅଙ୍କନ କରେଇ ଆଣିଥିଲେ ଏବଂ ପ୍ରଫେସର ଦାସଙ୍କ ଅନୁରୋଧରେ ଉଦୟଗିରି ଗୁମ୍ଫାର ଭାସ୍କର୍ଯ୍ୟକୁ ଆଧାର କରି ମୁଁ କିଛି ସ୍କେଚ୍ ଅଙ୍କନ କରିଥିଲି । ଶେଷରେ ବଲିଉଡ୍ ଜଗତର ଗୋଳକ ଧନ୍ଦା ଭିତରେ ପେଶି ହୋଇଯାଇ ପ୍ରଫେସର ଦାସ ଆଉ ସିନେମା ପାଇଁ ମନ ବଳେଇଲେ ନାହିଁ । ଏଣୁ ମାନସିକ ସ୍ତରରେ ସେ କଳିଙ୍ଗ ଓ ଅଶୋକଙ୍କ ସଂପର୍କରେ ଚିତ୍ର ହେଉ ବା ଲେଖା ହେଉ ଦେଖିବାକୁ, ଜାଣିବାକୁ ଚାହୁଁଥିଲେ । ବଳଦେବ ମହାରଥୀ ତାଙ୍କୁ ପେନ୍‌ସିଲ୍ ସ୍କେଚ୍‌ଟି ଦେଖାଇଲା ପରେ ସେ ସମ୍ରାଟ ଅଶୋକଙ୍କର ବୀର ଭଙ୍ଗିର ଭୂୟସୀ ପ୍ରଶଂସା କଲେ କିନ୍ତୁ ଗୁରୁତର ପ୍ରଶ୍ନଟିଏ ଶିଳ୍ପୀଙ୍କୁ ପଚାରିଲେ, ''ଯଦି ଯୁଦ୍ଧରେ ଲକ୍ଷାଧିକ ସୈନ୍ୟ ମୃତ ତା' ହେଲେ ତ ଯୁଦ୍ଧଭୂମି ଉପର ଆକାଶ ଉଡ୍ଡୀୟମାନ ଶାଗୁଣାଙ୍କ ଦ୍ୱାରା ଆଚ୍ଛାଦିତ ହୋଇଯିବା କଥା ? ପ୍ରଶ୍ନଟିର ତାତ୍ପର୍ଯ୍ୟ ଗଭୀର ଥିଲା । ଶିଳ୍ପୀମାନେ ସୃଜନଶୀଳ

Digitized by srujanika@gmail.com

ନିଶ୍ଚୟ କିନ୍ତୁ ଏକବାଗିଆ । କ୍ୟାଲେଣ୍ଡରରେ ଚିତ୍ରଗୁଡ଼ିକ ଐତିହାସିକ ବର୍ଣ୍ଣନ ଉପରେ ନିର୍ଭର କରୁଥିଲା । ଏଣୁ ପ୍ରଫେସର୍ ଦାସଙ୍କ ମନ୍ତବ୍ୟକୁ ଗ୍ରହଣ କରିବା ଯଥାର୍ଥ ଥିଲା ଏବଂ ତାହା କରାଯାଇଥିଲା ମଧ୍ୟ ।

ଏଭଳି ସୁଦୃଶ୍ୟ ଏବଂ ଐତିହାସିକ ତଥ୍ୟଭିତ୍ତିକ କ୍ୟାଲେଣ୍ଡରଟିଏ ନାଲ୍‌କୋ ଆଉ କେବେ ପ୍ରକାଶ କରିପାରିନି । ଏହାକୁ ଛାଡ଼ି ନାଲ୍‌କୋ ବିଭିନ୍ନ ସମୟରେ ଆଉ ଯେଉଁ ତିନୋଟି କ୍ୟାଲେଣ୍ଡର୍ ମୁଦ୍ରଣ କରିଥିଲା ସେଥିରୁ ଗୋଟିକରେ ଆମ କଲେଜର ସିଧାସଳଖ ସଂପୃକ୍ତି ଥିଲା ଏବଂ ଅନ୍ୟଦୁଇଟି ମୁଁ କଲେଜ ଛାଡ଼ି କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ଥିଲାବେଳେ ଏବଂ ଅନ୍ୟଟି ରାଜ୍ୟ ଲଳିତକଳା ଏକାଡେମୀର ସଭାପତି ଥିଲାବେଳେ ପ୍ରକାଶିତ ହୋଇଥିଲା । କଲେଜର ତତ୍ତ୍ୱାବଧାନରେ ନାଲ୍‌କୋର ଦାମନଯୋଡ଼ିଠାରେ ଗୋଟିଏ କଳାଉତ୍ସବ ମଧ୍ୟ ପାଳିତ ହୋଇଥିଲା । ଆମେ କଲେଜ ତରଫରୁ ପିଲାଙ୍କ ଚିତ୍ର ଓ ଭାସ୍କର୍ଯ୍ୟ ପ୍ରଦର୍ଶିତ କରିଥିଲୁ ଏବଂ ଗଦବା ତଥା ବଣ୍ଡା ସଂପ୍ରଦାୟର ଆଦିବାସୀମାନେ ସେମାନଙ୍କ ଘୋଡ଼େଇ ହେବା ଚାଦର ଓ ପିନ୍ଧାଚାଦର ପ୍ରଦର୍ଶିତ କରିଥିଲେ । ଏହି ଚାଦରଗୁଡ଼ିକ ଚଉଡ଼ାରେ ନିହାତି ରେକେଡ଼ିଆ, ବନସ୍ପତି ରଙ୍ଗ, ଇଣ୍ଡିଗୋ ଓ ମାଟିଆର ପଟେକେଡ଼ିଆ ପଟାପଟା ଡିଜାଇନ୍ ହୋଇ ବୁଣା ଯାଇଥାଏ । ଏହି ରଙ୍ଗ ସହ ମଳିଛିଆ ଧଳାର ପଟା ମଧ୍ୟ ମିଶିଥାଏ । ତିନୋଟି ରଙ୍ଗର ପାଖାପାଖି ଅବସ୍ଥାନ ଏହି ଚାଦରଗୁଡ଼ିକରେ ଆଦିମତାର ଗନ୍ଧ ଭରିଦିଏ । ପ୍ରଦର୍ଶନୀ ସହିତ ଚିତ୍ରର କର୍ମଶାଳା ମଧ୍ୟ ଆୟୋଜିତ ହୋଇଥିଲା । ଏଥିରେ ଅଧ୍ୟାପକ ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ପଞ୍ଚାନନ ସୁର, ରାମହରି ଜେନା, ସଜଲ ପାତ୍ର, ସୁବ୍ରତ ମଲ୍ଲିକ, ବିଦ୍ୟୁତ୍‌ଲତା ପାଟଶାଣୀ, ମଞ୍ଜୁଲତା ଦାସ, ଅଞ୍ଜନକୁମାର ସାହୁ ଓ ଅପର୍ଣ୍ଣା ରାୟ ପ୍ରଭୃତି ଯୋଗ ଦେଇ ଚିତ୍ରଅଙ୍କନ କରିଥିଲେ । ସେହି ଚିତ୍ର ମଧ୍ୟରୁ ଛଅଗୋଟି ଚିତ୍ର ବଛାଯାଇ ନାଲ୍‌କୋ ଦ୍ୱାରା ଗୋଟିଏ କ୍ୟାଲେଣ୍ଡର ପ୍ରସ୍ତୁତ ହୋଇଥିଲା ।

ତୃତୀୟ କ୍ୟାଲେଣ୍ଡରଟି କେନ୍ଦ୍ର ଲଳିତ କଳା ଏକାଡେମୀ ଓ ନାଲ୍‌କୋ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିବା ସର୍ବଭାରତୀୟ ଫଟୋଗ୍ରାଫି କର୍ମଶାଳାରେ ଯୋଗ ଦେଇଥିବା ଫଟୋଗ୍ରାଫରମାନଙ୍କ ଫଟୋ ଚିତ୍ରକୁ ନେଇ ପ୍ରସ୍ତୁତ କରାଯାଇଥିଲା ।

ଚତୁର୍ଥ କ୍ୟାଲେଣ୍ଡରର ଇତିହାସ ଅନ୍ୟ ରକମର । ଏକଦା ଓଡ଼ିଶାରେ ରାଜ୍ୟପାଳ ଥିବା ଏମ୍.ରାଜେନ୍ଦ୍ରନ୍‌ଙ୍କ ସହଧର୍ମିଣୀ ହଠାତ୍ ଶିଳ୍ପୀ ହେବାକୁ ଇଚ୍ଛା କଲେ । ପୁଣି ଏମିତି ସିମିତ ଶିଳ୍ପୀ ନୁହଁ, ସଉରା ଆଦିବାସୀ ଶିଳ୍ପୀ ହେବେ । ଆଦିବାସୀ ନହେଇ ସଉରା ଆଦିବାସୀ ଚିତ୍ରକୁ ଭଲ ଭାବରେ ନକଲ କରୁଥିବା ଆମ ଓଡ଼ିଶାର ଶିଳ୍ପୀ ହେଲେ ଡି.ଏନ୍.ରାଓ । ଡି.ଏନ୍. ମହାମହିମ ରାଜ୍ୟପାଳଙ୍କ ସ୍ତ୍ରୀଙ୍କୁ ସଉରା ଚିତ୍ର ଶିଖେଇଲେ । ସେ ପ୍ରଥମେ ଦିଲ୍ଲୀ ଲଳିତ କଳା ଏକାଡେମୀ ଗ୍ୟାଲେରୀରେ ଚିତ୍ର ପ୍ରଦର୍ଶନୀ ଆୟୋଜନ କଲେ । ପରେ ଭୁବନେଶ୍ୱର ସୂଚନା ଭବନରେ ମଧ୍ୟ ତାଙ୍କର ପ୍ରଦର୍ଶନୀଟିଏ ଆୟୋଜିତ

Digitized by srujanika@gmail.com

ହୋଇଥିଲା । ଏହି ପ୍ରଦର୍ଶନୀରୁ ଅନେକ ସଉରା ଛବି କିଏ କୁଆଡ଼େ ବେଶ୍ ଚଢ଼ା ଦାମ୍‌ରେ କିଣିଲେ । ନାଲ୍‌କୋ ନିର୍ଦ୍ଦେଶିତ ହୋଇ ଶ୍ରୀମତୀ ରାଜେନ୍ଦ୍ରନ୍‌ଙ୍କ ଦୁଇ ଚାରୋଟି ଛବି ମଧ୍ୟ କିଣିଲା । ନାଲ୍‌କୋକୁ ବୋଧହୁଏ ଛଅ ପୃଷ୍ଠିଆ କ୍ୟାଲେଣ୍ଡର୍‌ଟିଏ ଛାପି ଦୁଇଟି ଛବି ସେଥିରେ ଅନ୍ତର୍ଭୁକ୍ତ କରିବା ପାଇଁ କୁହାଗଲା । ଛଅପୃଷ୍ଠିଆ କ୍ୟାଲେଣ୍ଡର୍ କରିବା ପାଇଁ ଆଉ ଚାରୋଟି ଆଦିବାସୀଙ୍କ ଚିତ୍ର କୁଆଡୁ ଆସିବ ! ନାଲ୍‌କୋ ସହିତ ମୋର ଭଲ ସଂପର୍କ ଦୃଷ୍ଟିରୁ ସେମାନେ ମୋତେ ଅନୁରୋଧ କଲେ । ମୁଁ ଜାଣେ ଓଡ଼ିଶାର ଅନ୍ୟ ଆଦିବାସୀଙ୍କ ଚିତ୍ରଶୈଳୀର ଯାହା ଅବସ୍ଥା ତାକୁ ନେଇ ଗୋଟିଏ ମର୍ଯ୍ୟାଦାବନ୍ତ କ୍ୟାଲେଣ୍ଡର୍ କରାଯାଇପାରିବ ନାହିଁ । ଏଣୁ ମୁଁ ନିଜେ ରାତାରାତି ଆଦିବାସୀ ବନିଗଲି ଏବଂ ବନ୍ଧୁ ରାମହରି ଜେନାଙ୍କୁ ମଧ୍ୟ ଆଦିବାସୀ ଚିତ୍ରକରରେ ରୂପାନ୍ତରିତ କରିଦେଲି । ଆମେ ଦୁହେଁ ମିଶି ଚାରୋଟି ଚିତ୍ର କଲୁ, ଷୋହଳ ହଜାର ଟଙ୍କା ପାରିଶ୍ରମିକ ମିଳିଲା, ଆଠ ଆଠ କରି ଭାଗ କଲୁ । କିନ୍ତୁ ରାଜ୍ୟପାଳଙ୍କ ସହଧର୍ମିଣୀ ଯିଏ ନିଜକୁ ଲେଡ଼ି ଗଭର୍ଣ୍ଣର କହୁଥିଲେ ସିଏ ପ୍ରତିଛବି ପିଛା ପାଇଲେ ପନ୍ଦର ପନ୍ଦର ତିରିଶି । ଆମ ବଂଧୁ ଡି.ଏନ୍.ରାଓ କ୍ୟାଲେଣ୍ଡର୍‌ରେ ଅଂଶ ଗ୍ରହଣ କରିପାରି ନଥିବାରୁ ଦୁଃଖ କଲେ । ଆମେ ଦୁହେଁ ବିଚାରିଲୁ ସେତ ଲେଡି ଗଭର୍ଣ୍ଣରଙ୍କ 'କା' ହେଇ ଦୁଇଟି ଚିତ୍ର ଆଙ୍କିଛନ୍ତି । ପୁଣି କେଉଁ ମୁହଁ ନେଇ କ୍ୟାଲେଣ୍ଡର ଭିତରେ ପ୍ରବେଶ କରିଥାନ୍ତେ ?

ଏ ସମସ୍ତ କ୍ୟାଲେଣ୍ଡର୍‌ର ପ୍ରକାଶନ ସତ୍ତ୍ୱେ ଓଡ଼ିଶା ସଂସ୍କୃତି ଉପରେ ଆଧାରିତ ସତ୍ୟ ମହାପାତ୍ରଙ୍କ କ୍ୟାଲେଣ୍ଡର ସ୍ମୃତିରେ ଏବେ ବି ଉଜ୍ଜୀବିତ ରହିଛି । ଅତି ଆଶ୍ଚର୍ଯ୍ୟର କଥା ମଗାଯଚାରେ କ୍ୟାଲେଣ୍ଡର୍‌ଗୁଡ଼ିକ ଆମ ସମସ୍ତଙ୍କ ପାଖରୁ କୁଆଡ଼େ ଉଭେଇ ଯାଇଛି । ଆମ କାହା ପାଖରେ ତା'ର ଖଣ୍ଡିଏ ବି ନଜିର ନାହିଁ ।

Digitized by srujanika@gmail.com

# ୬୧. କାଏରୋରେ ଭାରତର କମିଶନର୍

ମୁଁ କଲେଜରେ ଅଧ୍ୟକ୍ଷ ଥିଲାବେଳେ ଯେଉଁ ଯେଉଁ ଦେଶ ଓ ନଗରୀକୁ ଶିଳ୍ପୀ ଭାବରେ ଭାରତର ପ୍ରତିନିଧିତ୍ୱ କରିବାକୁ ଯାଇଛି ସେ ସବୁ ସ୍ଥାନ ଅତ୍ୟନ୍ତ ଲୋଭନୀୟ, ଏଇ ଯିମିତି ମସ୍କୋ, ଲେନିନ୍‌ଗ୍ରାଡ୍, ଟିବ୍‌ଲିସ୍, କୁଆଲା ଲୁମ୍‌ପୁର୍, ବାଲି, କାଏରୋ, ଲଣ୍ଡନ, ଷ୍ଟକ୍‌ହୋମ୍ ଓ ଜୁରିକ୍ । ତାରି ଭିତରେ କଳାତ୍ମକ ଦୃଷ୍ଟିରୁ କାଏରୋର ଆକର୍ଷଣ ବେଶି । କାଏରୋ କହିଲେ କୋଠାବାଡ଼ି ପରିପୂର୍ଣ୍ଣ କେବଳ ଗୋଟିଏ ନଗରୀ ନୁହେଁ, ତାହା ଏକ ପୁରାତନ ସଭ୍ୟତାର ମୂକ ସାକ୍ଷୀ । କାଏରୋର ନାମ ଉଚ୍ଚାରଣ ସହିତ ସାହାରର ଦିଗନ୍ତବିସ୍ତାରି ମରୁଭୂମି, ଓଷ୍ଟ୍ରଦଳ, ପିରାମିଡ୍ ଓ ନୀଳନଦୀ ଆଖି ଆଗରେ ନାଚି ଯାଆନ୍ତି । ପିଲାବେଳେ ଭୂଗୋଳ ବହିରେ ପଢ଼ିଥିବା କାଏରୋ ମୋ ସାମ୍‌ନାରେ ଯେତେବେଳେ ଉଭାହେଲା ମୁଁ କେବଳ ତାର ଆଦିମ ଐତିହ୍ୟକୁ ବାକ୍‌ଶୂନ୍ୟ ହୋଇ ଅନାଇ ରହିଲି । ମୋ ଆଗରେ ନୀଳ ନଦୀର କୃଷ୍ଣଜଳଧାରା, ଗିଜାର ନଭଶ୍ଚୁମ୍ବୀ ପିରାମିଡ୍ ଓ କାଳର ଅବକ୍ଷୟକୁ ଭ୍ରୂକ୍ଷେପ ନକରି ଦମ୍ଭରେ ମୁଣ୍ଡଟେକି ଠିଆ ହେବାର ସ୍ଫିଙ୍କସ୍‌ର ବହପ ମୋ ମନରେ, ପ୍ରାଣରେ ପ୍ରତ୍ୟୟ ଭରିଦେଲା ।

ଭାରତ ସରକାରଙ୍କ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ଅନୁସାରେ ଭାରତବର୍ଷରୁ ବିଦେଶକୁ ପ୍ରଦର୍ଶନୀ ପଠେଇବା ଏବଂ ବିଦେଶରୁ ଭାରତରେ ପ୍ରଦର୍ଶନୀ ଗ୍ରହଣ କରିବା ଏକ ପ୍ରଚଳିତ ପରଂପରା । ୧୯୯୨ ରେ କେନ୍ଦ୍ର ଲଳିତ କଳା ଏକାଡେମୀ କାଏରୋରେ ଅନୁଷ୍ଠିତ ହେଉଥିବା ଚତୁର୍ଥ ବିନାଲେରେ ଭାରତ ପକ୍ଷରୁ ପ୍ରତିନିଧିତ୍ୱ କରିବା ପାଇଁ ମୋତେ କମିଶନର୍ ମନୋନୀତ କରିଥିଲେ । ଗୋଟିଏ ପ୍ରଦର୍ଶନୀର ପରିକଳ୍ପନା କରିବା ପାଇଁ ଓ ତାକୁ କାର୍ଯ୍ୟକାରୀ କରିବା ପାଇଁ କମିଶନରଙ୍କୁ ବା କ୍ୟୁରେଟରଙ୍କୁ ପୂର୍ଣ୍ଣ ସ୍ୱାଧୀନତା ମିଳିଥାଏ । ମୁଁ ଏହି ସୁଯୋଗରେ ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ମୋତେ ମିଶାଇ ଛଅଜଣ ଶିଳ୍ପୀଙ୍କୁ ମନୋନୀତ କରିଥିଲି ।ସେମାନଙ୍କ ମଧ୍ୟରେ ଥିଲେ ଅମୃତସରର ଅଧ୍ୟାପକ ବଳଦେବ ଗମ୍ଭୀର, ହୁଗୁଳିର ଆଲୋକ ଭଟ୍ଟାଚାର୍ଯ୍ୟ, ଦିଲ୍ଲୀର ସତ୍ୟ ପ୍ରକାଶ, ବରେଲିର ଅଧ୍ୟାପିକା ଜେବା ହାସାନ୍, ଆମ କଲେଜର ପ୍ରାକ୍ତନ ଛାତ୍ର ଦୀପକ ହରିଚନ୍ଦନ ଓ ମୁଁ । ଦୀପକଙ୍କ ଜଳରଙ୍ଗର ହାତ ଚମତ୍କାର । କଲେଜରେ ଅଧ୍ୟାପନା କାଳରୁ ହିଁ ତାଙ୍କର ଚିତ୍ରର ମାଦକତା

Digitized by srujanika@gmail.com

ବାରି ହୋଇ ପଡୁଥିଲା । ସେ ବର୍ତ୍ତମାନ ଟାଇମ୍‌ସ୍ ଅଫ୍ ଇଣ୍ଡିଆର ଡିଜାଇନ୍ ମୁଖ୍ୟ ଅଛନ୍ତି । ସେ ଦୁଇଟି 'ସହର ଦୃଶ୍ୟ' ପ୍ରଦର୍ଶନୀକୁ ଦେଇଥିଲେ । ସହର, ତାର କୋଳାହଳ ଓ ବ୍ୟସ୍ତତାକୁ ନେଇ ସେ ସମୟରେ ସେ କାମ କରୁଥିଲେ । ଏତେ କମ୍ ବୟସରେ ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀରେ ଭାଗନେବା ତାଙ୍କ ପାଇଁ ନିଶ୍ଚୟ ଏକ ସୁବର୍ଣ୍ଣ ସୁଯୋଗ ଥିଲା । ମୁଁ ଟସର କନା ଉପରେ କାଳିରଙ୍ଗ ବ୍ୟବହାର କରି ଦେବୀଙ୍କର ଦୁଇଟି ପ୍ରତିଛବି ପ୍ରଦର୍ଶନୀକୁ ଦେଇଥିଲି । ଗୋଟିକରେ ଦେବୀ ବ୍ୟାଘ୍ରାସନା ଓ ଅନ୍ୟଟିରେ ସେ ପଦ୍ମାସନା । ତ୍ୱରିତ ରେଖା ବିନ୍ୟାସ ଓ ଉଜ୍ଜ୍ୱଳ ବର୍ଣ୍ଣର ସ୍ୱାଭାବିକ ପ୍ରସାର ଥିଲା ଛବି ଦୁଇଟିର ମହତ୍ତ୍ୱ । ଏଥିରେ ବ୍ୟବହୃତ ଶୈଳୀରେ ପ୍ରାଚ୍ୟ ପରମ୍ପରାର ରେଖା ଓ ଓଡ଼ିଶାର ପଟଚିତ୍ରର ଉଜ୍ଜ୍ୱଳ ବର୍ଣ୍ଣବିଭା ଅନନ୍ୟ ମନେହେଉଥିଲା ।

ଅନ୍ୟମାନଙ୍କ ଚିତ୍ରଗୁଡ଼ିକ ତେଲ ରଙ୍ଗର ଥିଲା । ବଳଦେବ ଗମ୍ଭୀର କାନ୍‌ଭାସ୍ ଉପରେ ରଙ୍ଗ ପ୍ରୟୋଗ କରିସାରିଲାପରେ ବ୍ଲେଡ୍‌ରେ ରାମ୍ପି ଟେକ୍‌ଷ୍ଟର୍ ବାହାର କରୁଥିଲେ । ଏହାଫଳରେ କାନ୍‌ଭାସ୍‌ର ଆପାତଃ ଷ୍ଟାଣୁ ଦେଖାଯାଉଥିବା ଅଂଶ ଗୁଡ଼ିକରେ ଜୀବନ ଭରିଯାଉଥିଲା । ମୋ ମନେଅଛି, ଆମେ ଖଲ୍ଲିକୋଟ କଳାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଅଧ୍ୟକ୍ଷ ଶରତ ଚନ୍ଦ୍ର ଜଳ ରଙ୍ଗର ଚିତ୍ରରେ ଏଭଳି 'ଟେକ୍ ଅଫ୍' ପଦ୍ଧତି ବ୍ୟବହାର କରୁଥିଲେ । ମଣିଷର ଯନ୍ତଣାକୁ ନେଇ ଆଲୋକ ଭଟ୍ଟାଚାର୍ଯ୍ୟ ଦୁଇଟି ଛବି ଆଙ୍କିଥିଲେ । ସେ ଛବିରେ ବ୍ୟବହାର କରିଥିବା ବର୍ତ୍ତୁଳ ପରିଧି ବ୍ୟକ୍ତିଗତ ଦୁଃଖରେ ଗଢ଼ା ନୁହେଁ । ବିଶ୍ୱ ଯନ୍ତଣାକୁ ଦ୍ୟୋତନା ଦେଉଥିବା ତାଙ୍କ ଛବି ଦୁଇଟି ଅଭିବ୍ୟକ୍ତିବାଦ ଦ୍ୱାରା ପ୍ରଭାବିତ ହୋଇଥିଲା । ସତ୍ୟ ପ୍ରକାଶଙ୍କ ଛବିରେ ରାଜସ୍ଥାନ ମିନିଏଚର୍ ଚିତ୍ରଣ ଶୈଳୀର ପୁନର୍ବିନ୍ୟାସ ଥିଲା ମୂଳ ଆଧାର। ରାଜସ୍ଥାନର ଦୁର୍ଗ, ଦିଗନ୍ତର ପାହାଡ଼ ଏବଂ ହ୍ରଦରେ ପ୍ରସ୍ଫୁଟିତ ପଦ୍ମଫୁଲ ପୁଣିଥରେ ଅଭିନବ ଢଙ୍ଗରେ ଚିତ୍ରଣ କରାଯାଇଥିଲା । କୁମାରୀ ଜେବା ହାସାନ୍‌ଙ୍କ ତୈଳ ଚିତ୍ରରେ ନାରୀର ଭଙ୍ଗୁର ଅବୟବ ଓ ଶାମୁକା ଏକ କାଞ୍ଚନିକ ଛନ୍ଦ ଦେଇ ପ୍ରକାଶିତ ହୋଇଥିଲା । ଏହି ଛଅଜଣ ଭାରତୀୟ ଶିଳ୍ପୀଙ୍କ ଚିତ୍ରରେ ବିବିଧ ବର୍ଣ୍ଣ, ବିଷୟ ଓ ଶୈଳୀର ବୈଚିତ୍ର୍ୟ ବାରି ହୋଇପଡୁଥିଲା ଏବଂ ଭାରତୀୟ ସାଂପ୍ରତିକ ଚିତ୍ରକଳାର ନିର୍ଯ୍ୟାସ ଆପେ ଆପେ ଫୁଟି ଉଠୁଥିଲା । ପ୍ରଦର୍ଶନୀଟି ଆକାରରେ ଛୋଟ ହେଲେ ମଧ୍ୟ ଭାରତୀୟ ଆଧୁନିକ ଚିତ୍ର ପରଂପରାର ଦ୍ୟୋତନାକୁ ବହନ କରିପାରିଥିଲା ।

କାଏରୋ ବିମାନ ବନ୍ଦରରେ ଭାରତର କମିଶନରଙ୍କୁ ସ୍ୱାଗତ ଜଣେଇବା ପାଇଁ ବିନାଲେ ପ୍ରଦର୍ଶନୀର ଲୋକ ସଂପର୍କ ଅଧିକାରୀ ସମୀର ଆବାସ ଏବଂ ଜବାହାରଲାଲ୍ ନେହେରୁ ସାଂସ୍କୃତିକ କେନ୍ଦ୍ରର ପ୍ରତିନିଧି ଡକ୍ଟର ପ୍ରଭାକର ଉପସ୍ଥିତ ଥିଲେ । ପ୍ରଭାକରଙ୍କ ଯୋଗ ଆସନ ଓ ପ୍ରାଣାୟାମରେ ପାରଦର୍ଶିତା ଥିଲା । ସେ ଏଠି କାଏରୋବାସୀଙ୍କୁ

Digitized by srujanika@gmail.com

ଭାରତୀୟତାରେ ଉଦ୍‌ବୁଦ୍ଧ କରୁଥିଲେ । ତାଙ୍କ ସହିତ ହିଁ ହିନ୍ଦୀ ଓ ଇଂରାଜୀରେ ଯାହା କଥା ଭାଷା ସମ୍ଭବ ହେଲା । ଲୋକସଂପର୍କ ଅଧିକାରୀ ସମୀର ଆବାସ ଅଙ୍ଗଭଂଗୀ ଓ ହସ୍ତମୁଦ୍ରା ବିନିମୟରେ ଯାହାକିଛି ମନୋଭାବ ପ୍ରକାଶ କରିବା ପାଇଁ ସକ୍ଷମ ହେଉଥିଲେ । ଏଭଳି ଭାଷା ଅନଭିଜ୍ଞ ଜଣେ ବ୍ୟକ୍ତିଙ୍କୁ କାହିଁକି ଯେ ଲୋକସମ୍ପର୍କ ଉଦ୍ଦେଶ୍ୟରେ ନିୟୋଜିତ କରାଯାଇଛି ମୁଁ ବୁଝିପାରିଲି ନାହିଁ । ପ୍ରେସିଡେଣ୍ଟ୍ ହୋଟେଲରେ ମୋ ପାଇଁ ରହଣିର ବ୍ୟବସ୍ଥା ହୋଇଥିଲା । ମୁଁ ମଧ୍ୟ ଜାଣିପାରିଲିନି ମୋତେ ଅନ୍ୟଦେଶର ଶିକ୍ଷୀମାନଙ୍କଠାରୁ ଅଲଗା ଭାବରେ କାହିଁକି ଏଇଠି ରଖାହେଉଛି । ଅନ୍ୟାନ୍ୟ କମିଶନର୍‌ମାନେ ଅନ୍ୟଏକ ହୋଟେଲରେ ଅବସ୍ଥାନ କରୁଥିଲେ । ଏଣୁ ମୋତେ ଏକୁଟିଆ ହେଇ କାଏରୋକୁ ଚିହ୍ନିବାକୁ, ଆବିଷ୍କାର କରିବାକୁ ହେଲା । ଅବଶ୍ୟ ଏହି ଅନୁଭବ ମୋର ଏକାନ୍ତ ହୋଇପାରିଲା ।

ମୋ କାଏରୋ ଅନୁଭୂତିର ବିସ୍ତୃତ ବିବରଣ ମୋ 'ସୁନାମାଛ' ଗଳ୍ପ ସଂକଳନରେ ପ୍ରକାଶ କରିଛି । ସେସବୁର ପୁନରାବୃତ୍ତି ଏଠି ଅନାବଶ୍ୟକ । ଜଣେ ଶିକ୍ଷୀର ଆଖିରେ କାଏରୋ ବିଶ୍ୱ କଳାତୀର୍ଥର ସମ୍ମାନ ଦାବି କରେ । ଏଠାରେ ଖ୍ରୀଷ୍ଟପୂର୍ବ ହଜାର ହଜାର ବର୍ଷ ପୂର୍ବର ଚିତ୍ର ଓ ଭାସ୍କର୍ଯ୍ୟ ପିରାମିଡ୍‌ର ଗର୍ଭ ଭିତରେ କାଳର ଅବକ୍ଷୟରୁ ବଞ୍ଚିଯାଇ ଅକ୍ଷୁଣ୍ଣ ଅବସ୍ଥାରେ ଅଛି । ଦେଖିଲେ ମନେହେଉଛି ସତେ ଯମିତି କାରିଗରଟିଏ ଏଇ କିଛି ମୁହୂର୍ତ୍ତ ଆଗରୁ ହିଁ କାମସାରି ଫେରିଛି । ବିସ୍ତୀର୍ଣ୍ଣ ମରୁଭୂମିର ବାଲୁକାରାଶି ମଧ୍ୟରେ ରୈଖିକ ଭଙ୍ଗିରେ ଯୁଗଯୁଗର କଷଣକୁ ଅଙ୍ଗେ ନିଭାଇ ସଦର୍ପ ଠିଆ ହୋଇଛି ପିରାମିଡ୍ । ମୋର ଗାଇଡ୍ ରାନିଆ ମୋତେ ଯେତେବେଳେ ପିରାମିଡ୍ ଭିତରକୁ ଉହ୍ଲେଇବାକୁ କହିଲା, ମୋର ମନେହେଲା ମୁଁ ହୁଏତ ଏ ନିର୍ଜନ ମରୁଭୂମିର ଶୀତଳ ଆସ୍ତରଣ ତଳେ ହଜିଯିବି । ଭିତରକୁ ପଶି ଯାହା ଦେଖିଲି ତାହା ଜୀବନର ଅବିସ୍ମରଣୀୟ ଅନୁଭୂତି । ପିରାମିଡ୍ ଦର୍ଶନର ପ୍ରତ୍ୟକ୍ଷ ଅନୁଭବ ନଥାଇ ବହୁବର୍ଷ ପିଲାଙ୍କୁ ମୁଁ ମିଶରୀୟ କଳା ପଢ଼େଇଛି । ଏବେ କିନ୍ତୁ ଛାତ୍ରଟିଏ ଭଳି ଭିତ୍ତିଚିତ୍ରମାନଙ୍କ ପାଖରେ, ଚିତ୍ରିତ ଭାସ୍କର୍ଯ୍ୟମାନଙ୍କ ପାଦତଳେ ବସିପଡ଼ି ରଙ୍ଗର ଔଜ୍ଜ୍ୱଲ୍ୟ, ରେଖାର ମହିମା, ବିଷୟବିନ୍ୟାସର ଗୁଢ଼ି ପ୍ରୟୋଗ ଶିକ୍ଷା କଲି । କଳା ଇତିହାସର ଅଙ୍ଗେଲିଭା ସଂବେଦନା । ଭୂତଳ ସମାଧି ମସ୍ତାବା ଭିତରକୁ ଲିଫ୍ଟ ଯୋଗେ ଓହ୍ଲାଇଲାପରେ ସେହି ଏକଭାଳି ଅନୁଭବରେ ପରିଣତ ହୋଇଗଲା ଗୋଟିଏ ଆଦିମ ଚିତ୍ରବିଥିର ରୂପସମ୍ମୋହନ ।

ମିଶରର ସମ୍ରାଟ ଫାରୋମାନେ ମୃତ୍ୟୁପର ଜନ୍ମରେ ବିଶ୍ୱାସ କରୁଥିଲେ । ଏହି ଖିଅକ ବିଶ୍ୱାସ ବଟବୀଜରୁ ମହାଦ୍ରୁମ ଉଦ୍ଭବ ହେଲାଭଳି ଏଡ଼େବଡ଼ ବିଶାଳ ସ୍ଥାପତ୍ୟ ଓ ଚିତ୍ରକଳାର ଗନ୍ତାଘର ସୃଷ୍ଟିହେଇ ବିଶ୍ୱକଳାକୁ ଉଦ୍‌ବୁଦ୍ଧ କଲା । କାଏରୋର ମରୁଭୂମି

Digitized by srujanika@gmail.com

ମନେହେଲା ଗୋଟିଏ ବିରାଟ ଶ୍ମଶାନ ଭୂମି । ବିଶ୍ୱାସର ଐତିହ୍ୟଟିଏ ଅପେକ୍ଷାରେ ଅଛି ଫାରୋ ଫେରିବ, ନିଷ୍ଚୟ ଫେରିବ । ତାର ବ୍ୟବହାର ପାଇଁ ଧନ ରତ୍ନ, ଅଳଙ୍କାର ବେଶଭୂଷା ଯାହା ପିରାମିଡ୍‌ର ଗର୍ଭରେ ସଂଚିତ ଥିଲା ଏବେ ତାହା ଦସ୍ୟୁମାନଙ୍କ ଦ୍ୱାରା ଲୁଣ୍ଠିତ । ଅଧିକାଂଶ ଗର୍ଭଗୃହ ଶୂନ୍ୟ । ଲୋଭୀ, ହୀନମନା ଦୁର୍ବୃତ୍ତମାନେ ଶବାଧାର ସହ ମମି କରାଯାଇଥିବା ଶବକୁ ମଧ୍ୟ ଗାଏବ୍ କରିନେଇଯାଇଛନ୍ତି । ଗର୍ଭଗୃହର ଶାନ୍ତ କାନ୍ତ ଶୀତଳ ପରିବେଶ ମୋତେ ଏଭଳି ବଶୀଭୂତ କରିଦେଲା ଯେ ମୋର ହୃଦ୍‌ବୋଧ ହେଲା ମରଣ ଏଠି ଆଶୀର୍ବାଦ । ଏଠି ଚିରନିଦ୍ରାରେ ଶୋଇଗଲେ ସବୁ ଜଂଜାଳରୁ ମୁକ୍ତି । ମମିବିହୀନ ଗୋଟିଏ ପଥର ଖୋଳ ଭିତରେ ଦଣ୍ଡେ ଶୋଇଗଲି । କାହିଁ ପୃଥିବୀର କେଉଁ କୋଣେ ରହିଗଲେ ମୋର ପରିବାର, ପତ୍ନୀ, ପୁତ୍ର, କନ୍ୟା, ବନ୍ଧୁଗଣ, କଳା ମହାବିଦ୍ୟାଳୟ ଓ ଦେଶ । ଏଠି ସମ୍ପର୍କ ପରମାତ୍ମାଙ୍କ ସହିତ । ଏ ଅନୁଭବ ଅଭୂତପୂର୍ବ । ଚିତ୍ର ପ୍ରଦର୍ଶନୀର କମିଶନର୍ ହେଇଛି ବୋଲି, ଭାରତବର୍ଷକୁ ପ୍ରତିନିଧିତ୍ୱ କରୁଛି ବୋଲି ମନରେ ଯେଉଁ ଅହଂକାର ଜାତ ହୋଇଥିଲା, ପିରାମିଡ୍ ଗର୍ଭଗୃହର ଅଲୌକିକ ଅନୁଭବ ତାକୁ ଗୌଣ କରିଦେଲା, ଧୋଇ ପୋଛି ଦେଲା ।

ପିରାମିଡ୍‌ରେ ସଂରକ୍ଷିତ ହଜାର ହଜାର ବର୍ଷର କଳା ଦେଖିସାରିଲା ପରେ, ଘେନି ସାରିଲା ପରେ ମନେହେଲାନି ଯେ କାଏରୋ ସହରରେ ଦେଖିବା ପାଇଁ ଆଉ କିଛି ବାକି ରହିଗଲା । ଏଆଡ଼ି ଭିତରେ ସମସେର୍ ନାମକ ଜଣେ ଟାକ୍ସି ଡ୍ରାଇଭର୍ ସହିତ ମୋର ବନ୍ଧୁତା ଘନେଇ ଆସିଥାଏ । କି ରାସାୟନିକ ସମୀକରଣ କେଜାଣି ଆମେ ଦୁହେଁ ସାଙ୍ଗ ହେଇ ବୁଲାବୁଲି କଲୁ । ତା'ରି କଥାରେ ମୁଁ ଦିନେ ଇଜିପ୍‌ସିଆନ୍ ମ୍ୟୁଜିୟମ୍ ଦେଖିବା ପାଇଁ ଗଲି । କଲିକତା ସହରର ଇଣ୍ଡିଆନ୍ ମ୍ୟୁଜିୟମ୍ ଭଳି ବହୁପୁରୁଣା ଦିନର ମ୍ୟୁଜିୟମ୍ । ଏଠି ଆଉ ଦେଖିବ କ'ଣ ? ଶହଶହ ହଜାର ହଜାର ମମି ଥାକ ମରା ହୋଇ ଥୁଆ ହୋଇଛି । ମନେହେବ କେଉଁ ଏକ ହସ୍‌ପିଟାଲ୍‌ର ପୋଷ୍ଟମର୍ଟମ୍ ୱାର୍ଡ୍ । କିନ୍ତୁ ମମି ଦର୍ଶନରେ ଯନ୍ତ୍ରଣା ନାହିଁ, ବିଷାଦ ନାହିଁ, ଅଛି ଭାବାନ୍ତରର ଏକ ପ୍ରକ୍ରିୟା । ସେମାନେ ବାଟ କଢ଼େଇ ନେଇଯାଉଛନ୍ତି ଅନ୍ୟଏକ ଭାବଲୋକ ଭିତରକୁ । ଏଠାରେ ଗୀଜେରୁ ଆନୀତ ସମ୍ରାଟଙ୍କ ମନ୍ଦିରର ଦେବୀଙ୍କୁ ଦେଖିହେବ; ସମାଧି ମନ୍ଦିରର ପୂଜା ବ୍ୟବହୃତ ସାମଗ୍ରୀ, ଆମେନ୍‌ହାଟ୍‌ଙ୍କ ଚୂନପଥର ମୂର୍ତ୍ତି, ରାଣୀ ହାଟ୍‌ସେପୁଟ୍‌ଙ୍କ ପ୍ରତିମା ଏଠାରେ ଚାକ୍ଷୁସ କରିହେବ । ତୁଥ୍‌ମୋସିସ୍‌ଙ୍କ ଭାସ୍କର୍ଯ୍ୟ ଦେଖିଲେ ମିଶରୀୟ କଳାର ଉତ୍କର୍ଷ ଓ ଗରିମା ଉପଲବ୍ଧି କରିହେବ ।

କାଏରୋ ବିନାଲେ କାଏରୋ ନଗରୀ ସାରା ଖେଳେଇ ହୋଇ ବିଭିନ୍ନ ଗ୍ୟାଲେରୀ ଓ ମ୍ୟୁଜିୟମ୍‌ମାନଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ଦେଶଗୁଡ଼ିକ ଓ ସେମାନଙ୍କ

Digitized by srujanika@gmail.com

କଳାକୃତିଗୁଡ଼ିକ ସତେ ଯେମିତି ସହର ସାରା ବିଛେଇ ହୋଇ ପଡ଼ିଥିଲା । ଆରବ ଏବଂ ଅନ୍ୟାନ୍ୟ ମୁସ୍‌ଲିମ୍ ଅଧ୍ୟୁଷିତ ଦେଶମାନଙ୍କର ଯୋଗଦାନ ପର୍ଯ୍ୟାପ୍ତ ଥିଲା ଯଦିଓ ୟୁରୋପର ବିଭିନ୍ନ ଦେଶ ଇଂଲଣ୍ଡ ଓ ଆମେରିକାର ଶିଳ୍ପୀମାନଙ୍କର ଚିତ୍ର ମଧ ସ୍ଥାନ ପାଇଥିଲା । କାଏରୋର ଆଧୁନିକ ଚିତ୍ର ସଂଗ୍ରହାଳୟର ମୂଳ ଗ୍ୟାଲେରୀରେ ଭାରତବର୍ଷର ଚିତ୍ରକଳା ପ୍ରଦର୍ଶନ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ କରାଯାଇଥିଲା । ମିଶରର ରାଷ୍ଟ୍ରପତିଙ୍କ ସହଧର୍ମିଣୀ ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ । ଭାରତର ଗ୍ୟାଲେରୀ ବର୍ଣ୍ଣବିଭାରେ ଉଜ୍ଜ୍ୱଳି ଉଠୁଥିଲା । ପ୍ରଦର୍ଶନୀ ଉନ୍‌ମୋଚନ କରି ମୁଖ୍ୟ ଅତିଥି ଯେତେବେଳେ ଆମ ଗ୍ୟାଲେରୀକୁ ଆସିଲେ ମୁଁ ଓଡ଼ିଶାର ବାନ୍ଧଶାଢ଼ି ଉପହାର ଦେଇ ତାଙ୍କୁ ସ୍ୱାଗତ କରିଥିଲି । ସିଏ ଭାରତୀୟ ବର୍ଣ୍ଣବିଭାର ଭୂୟସି ପ୍ରଶଂସା କରିଥିଲେ । ଆଉ ସାତୋଟି ଜାଗାରେ ଗୋଟିଏ ପରେ ଗୋଟିଏ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲା । ଉଦ୍‌ଘାଟନ ପରେ ଉଦ୍‌ଘାଟନ, ରାଷ୍ଟ୍ରପତିଙ୍କ ପତ୍ନୀ ଶେଷରେ ଥକିପଡ଼ିଲେ । କମିଶନର୍‌ମାନେ ମଧ୍ୟ ସକାଳ ପହରୁ ସନ୍ଧ୍ୟାଯାଏଁ ଘୂରିଘୂରି କ୍ଲାନ୍ତ ।

ସନ୍ଧ୍ୟାରେ ନୀଳନଦୀରେ ଡଙ୍ଗା ଉପରେ ଆମମାନଙ୍କ ପାଇଁ ଅଭ୍ୟର୍ଥନାର ଆୟୋଜନ କରାଯାଇଥିଲା । ଡଙ୍ଗାଟିର ନାଁ ଥିଲା କ୍ଲିଓପେଟ୍ରା । ମନକୁ ଇତିହାସ ଓ ଐତିହ୍ୟ ସାଙ୍ଗରେ ଯୋଡ଼ି ଦେଇ ବହଲେଇ ଦେଲାଭଳିଆ ନାଁଟି । ଡଙ୍ଗାର ମୁଣ୍ଡଟି ସପ୍ତଫେଣୀ ନାଗ ଆକୃତିର, ପଛଭାଗ ମଗର ପୁଚ୍ଛଭଳି । ଡଙ୍ଗା ତ ନୁହେଁ ଗୋଟିଏ ବଡ଼ ବୋଇତ । ତଳ ଉପର ହୋଇ ଦୁଇଥାକ । ଦିନଟି ଭୁଲିବାର ନୁହେଁ, ୧୯୯୨ ମସିହା ଡିସେମ୍ବର ମାସ ପଚିଶ ତାରିଖ, ବୋଇତ ଉପରେ ଖ୍ରୀଷ୍ଟମାସ୍ ମନେଇବାର ଅପୂର୍ବ ଅବସର । ସନ୍ଧ୍ୟା ସାଢ଼େ ସାତରୁ ଆରମ୍ଭ ହୋଇଗଲା ପାନୀୟର ଆସର । ବହୁ ରଂଗର, ବହୁ ପ୍ରକାରର ପାନୀୟର ସମ୍ଭାର । କମିଶନର୍‌ମାନେ ମନଭରି ପିଉଥାନ୍ତି, ଆସରର ମଜା ନେଉଥାନ୍ତି । ମୁଁ କିଛି ମୃଦୁ ପାନୀୟ ଗ୍ଲାସ୍‌ରେ ଢାଳି ପିଇବାର ଅଭିନୟ କରୁଥାଏ । ତା'ରି ଭିତରେ ସମଗ୍ର ବିଶ୍ୱର କଳାଚର୍ଚ୍ଚା ପାଚିଲା ଧାନଖେତରେ ହେମନ୍ତର ଶୀତଳ ପବନ ଭଳି ଲହରେଇ ଯାଉଥାଏ । କଳା ରାଜ୍ୟରେ ଗ୍ୟାଲେରୀମାନଙ୍କର ପ୍ରାଧାନ୍ୟ କ୍ୟୁରେଟର୍‌ମାନଙ୍କର ମନମୁଖୀ କାରବାର ଓ କଳାର ଉନ୍ନତି ପ୍ରତି ସରକାରୀ ଉଦାସୀନତା ଚର୍ଚ୍ଚାର ମୁଖ୍ୟ ବିଷୟ ହେଉଥାଏ । ପିଆପିଇ ଚାଲିଥିବାବେଳେ ସୁନ୍ଦରୀ ମିଶରୀୟ ଲଳନାମାନେ ରୂପା ଥାଳିଆ ଓ ପାତ୍ରରେ ବିଭିନ୍ନ ସୁସ୍ୱାଦୁ ଖାଦ୍ୟ ନେଇ ପରିବେଷଣ କରିବା ଆରମ୍ଭ କରିଦେଲେ । ରାତି ନଅ ଦଶବେଳକୁ ସମସ୍ତଙ୍କୁ ନିଶା ଘାରିବା ଆରମ୍ଭ କଲାଣି । ଠିକ୍ ଏତିକିବେଳେ ଆରମ୍ଭ ହୋଇଗଲା ଉଦ୍ଦଣ୍ଡ 'ଉଦର ନୃତ୍ୟ' ବା 'ବେଲି ଡାନ୍‌ସ୍' । ଜଣେ ଚିତ୍ରଶିଳ୍ପୀ ହୋଇଥିଲେ ମଧ୍ୟ ମୁଁ ସେହି ନର୍ତ୍ତକୀମାନଙ୍କ ଯୌନୋଦ୍ଦୀପକ ବେଶପୋଷାକ ଦେଖି ଲାଜେଇ ଗଲି । ଧାରେ କୁଚବନ୍ଧ ଛଡ଼ା ଆଉସବୁ ଫୁଙ୍ଗୁଳା । ଉନ୍ମୁକ୍ତପ୍ରାୟ ସ୍ତନଯୁଗଳ ଏବଂ ତଳିପେଟ ତଳକୁ କ୍ଷୁଦ୍ରତମ ଲଙ୍ଗୋଟିଟିଏ । ନର୍ତ୍ତକୀ

Digitized by srujanika@gmail.com

ଏବେ ବାଜାର ତାଳେତାଳେ ସ୍ତନ ଦୋହଲାଇ ଓ ତଳିପେଟକୁ ନଚାଇ ନଚାଇ ଅଭିନୟ ଆରମ୍ଭ କଲା । ତା' ସାଂଗରେ ସାଥ୍ ଦେବାପାଇଁ ସେ କଟାକ୍ଷରେ, ହାତରେ ତାଳି ବଜେଇ ଅତିଥି ଶିଳ୍ପୀମାନଙ୍କୁ ଆହ୍ୱାନ କଲା । ନର୍ତ୍ତକୀ ଜଣେ ନୁହେଁ, ଏକା ସାଙ୍ଗରେ ଚାରିପାଞ୍ଚ । ବୋଇତ ନର୍ତ୍ତକୀମାନଙ୍କ ଯୌନ ସମ୍ବେଦନାରେ, ପାଦର ଅଦ୍ଭୁତ ଛନ୍ଦରେ ଏବଂ ସେମାନଙ୍କ ସହ ହାତରେ ପାନପତ୍ର ଧରି ନାଚୁଥିବା ଶିଳ୍ପୀଙ୍କ ଚମକରେ ଟହଲିଲା, ଟହଲିଲା ଆଉ ନୀଳନଦୀର କଳାଭଅଁର ପାଣି ଉଛୁଳି ଉଠିଲା । ପରିସ୍ଥିତି ଧୀରେ ଧୀରେ ରସଘନ ହେଇଉଠିଲା । ମୁଁ ନିଜକୁ ସମ୍ଭାଳି ନପାରି ଏ ଯୌନଜଂଜାଳରୁ ମୁକ୍ତି ପାଇଁ ବୋଇତର ଡେକ୍ ଉପରକୁ ଚାଲିଯାଇ କିଛି ସମୟ ନୀଳ ଆକାଶକୁ ଏବଂ ନୀଳନଦୀର ଉତ୍ତାଳ ପାଣିକୁ ଚାହିଁ ରହିଲି । ତା'ପରେ ମନେମନେ କଳ୍ପନା କଲି ସମ୍ରାଟ ଆଲେକ୍‌ଜେଣ୍ଡାରଙ୍କ କଥା ଓ କ୍ଲିଓପେଟ୍ରାଙ୍କ ଅନିନ୍ଦ୍ୟ ସୌନ୍ଦର୍ଯ୍ୟର ଅପୂର୍ବ ମହିମାର ଗାଥା । ଆଃ ଗୋଟିଏ ମୂଲ୍ୟବାନ କାର୍ପେଟ୍ ଗୋଲେଇର ରହସ୍ୟଘନ ଅନ୍ଧାର ଭିତରେ କ୍ଲିଓପେଟ୍ରା ମିଶରୀୟ ରମଣୀଙ୍କ କାନ୍ଧରେ ବୁହାହେଇ ଆସୁଛନ୍ତି । ଆଲେକ୍‌ଜାଣ୍ଡାରଙ୍କୁ ପାଛୋଟି ଆଣିବା ପାଇଁ କାର୍ପେଟ୍ ଖୋଲି ଦିଆଯାଉଛି ପାଦତଳ ପାହାଡ଼ ଭଳି । କ୍ଲିଓପେଟ୍ରା କଳାମେଘରେ ବିଜୁଳି ଭଳି ଝଲସି ଉଠୁଛନ୍ତି । ସମ୍ରାଟଙ୍କ ଆଖି ଖୋସି ହେଇଯାଉଛି । କ୍ଲିଓପେଟ୍ରାଙ୍କ ପାଖରେ ସୌନ୍ଦର୍ଯ୍ୟ ବି ହାର ମାନିଛି ।

ତା'ପରଦିନ ଆଲୋଚନା ଚକ୍ର । ବିଷୟ ହେଲା ୧୯୪୫ ମସିହା ପରେ କଳା ସମାଲୋଚନାରେ ବ୍ୟବହୃତ ପରିଭାଷା । ମୋ ବକ୍ତବ୍ୟକୁ ଇଂରାଜୀରେ ଲେଖି ସାଙ୍ଗରେ ନେଇଥାଏ । ସେମିନାର ଆରମ୍ଭ ହେଲା ଆରବିକ୍ ଭାଷାରେ। ୟୁରୋପ ଓ ଆମେରିକାରୁ ଆସିଥିବା ଅତିଥିମାନେ ପରସ୍ପର ଚହାଁଚହିଁ ହେଲେ । ମୋ ସାଙ୍ଗରେ ଅନୁବାଦିକା ଶ୍ରୀମତୀ ମୋନା ଥିଲେ ବି ମୁଁ ନିଜକୁ ସଂପୂର୍ଣ୍ଣ ଅସହାୟ ମନେକଲି । ମୁଁ ହୁଏତ ନିଜ ମାତୃଭାଷା ଓଡ଼ିଆରେ ବି ମୋ ଭାଷଣ ଉପସ୍ଥାପିତ କରିଥିଲେ ଚଳିଥାନ୍ତା। ଗୋଟିଏ ଆନ୍ତର୍ଜାତିକ ସେମିନାର୍‌ରେ ଏହା କିଭଳି ବ୍ୟବସ୍ଥା ବୁଝି ହେଲାନି ।

ଏହି ପ୍ରଦର୍ଶନୀ ଉପଲକ୍ଷେ ଲଳିତ କଳା ଏକାଡେମୀ ଗୋଟିଏ ପ୍ରଦର୍ଶନୀ ପୁସ୍ତିକା ପ୍ରକାଶ କରିଥିଲେ । ସେଥିରେ ଅଗ୍ରଲେଖରେ ଯାହା ମୁଁ ଲେଖିଥିଲି ତାର ସାମାନ୍ୟ ଝଲକ ଏଠି ଦେବା ଅସମୀଚୀନ ହେବନାହିଁ ନିଶ୍ଚୟ :

'ବୈଚିତ୍ର୍ୟ ଏବଂ ବିବିଧତା ଭାରତୀୟ ସଂସ୍କୃତି ଓ କଳାର ଅନ୍ତର୍ନିହିତ ସ୍ୱରୂପ । ଗୋଟିଏ ଅବାରିତ ଧାରା ଭିତରେ ବୈଚିତ୍ର୍ୟ ଓ ବିବିଧତାର ସମନ୍ୱୟ ବାନ୍ଧି ହୋଇ ରହିଥାଏ । ଏହି ଧାରା ସର୍ଜନଶୀଳ ବ୍ୟକ୍ତିମାନଙ୍କର ସ୍ୱତଃସ୍ଫୂର୍ତ୍ତ ପ୍ରକାଶରେ ପରିପୁଷ୍ଟ । ଏହି ସର୍ଜନ ପ୍ରକାଶର ମୂଲ୍ୟବୋଧ ସାର୍ବଜନୀନ । ଏହି ମୂଲ୍ୟବୋଧର ପରିସୀମା ମଧ୍ୟରେ ଭୌଗୋଳିକ ବିଭିନ୍ନତା ଲୋପ ପାଏ, ଭାଷାଗତ ପାର୍ଥକ୍ୟ ହଜିଯାଏ, ପିରାମିଡ଼ ଓ ସ୍ତୂପ

Digitized by srujanika@gmail.com

ଏକାଭଳି ଏକ ସର୍ଜନଶୀଳ ଜାତିର ଜୟଗାନ କରେ । ଏହାହିଁ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମର ମୂଳକଥା ଏବଂ ଦ୍ୱିବାର୍ଷିକୀ ଓ ତ୍ରିବାର୍ଷିକୀ ପ୍ରଦର୍ଶନୀର ଉଦ୍ଦେଶ୍ୟ ।'

ମାନବଜାତିର ବିସ୍ତାରିତ ବେଳାଭୂମିରେ ପ୍ରତି ସର୍ଜନଶିଳ୍ପୀ ତା'ର ଅଭୁଲା ପ୍ରତିଛବି ଛାଡ଼ିଦେଇଯାଏ । ଏହି ପ୍ରତିଛବି କାଳଖଣ୍ଡ ଭିତରେ ଗୁନ୍ଥି ହୋଇଯାଏ, ଯାହାକୁ ଅଣଦେଖା କରିବା ଏତେ ସହଜ ନୁହେଁ । ଅପରନ୍ତୁ ଆମେ ଏଭଳି ଗୋଟିଏ ପରମ୍ପରାରେ ଜନ୍ମନେଇଥାଉ ଏବଂ ସେହି ପରମ୍ପରାରେ ଆମର ସ୍ଥିତି ଐତିହ୍ୟର ଅଂଶ ହୋଇଯାଏ ।

ବେଳେବେଳେ ଗୋଟିଏ ଛିନ୍ନବୀଣାର ତାର ବା ଗୋଟିଏ ସାମାନ୍ୟ ଝଲକ ଗୋଟିଏ ଶୈଳୀର ବା ଚିନ୍ତାର ଦ୍ୟୋତକ ହୋଇଯାଏ । ଏହି କଥାକୁ ବିଶ୍ୱାସକୁ ନେଇ ଆମେ ଏଠାରେ ପ୍ରଦର୍ଶିତ କରିଥିବା ମାତ୍ର ଛଅଗୋଟି ଛବି ମଧ୍ୟରେ ସମଗ୍ର ଭାରତବର୍ଷର ସ୍ପନ୍ଦନର ଅନୁଭବ ଆଣିଦେବା ପାଇଁ ଆମେ ଚାହୁଁଛୁ । ଏହି ଛବିଗୁଡ଼ିକୁ ଆଙ୍କିଥିବା ଶିଳ୍ପୀମାନେ କିଏ ଅମୃତସର ତ ଆଉ କିଏ ଭୁବନେଶ୍ୱରର କିଏ କଲିକତାର, ଆଉ କିଏ ଦିଲ୍ଲୀର । ବିଭିନ୍ନ ଭାଷା କହୁଥିବା ଏବଂ ବିଭିନ୍ନ ବୃତ୍ତିକୁ ଆଶ୍ରାକରି ଜୀବିକା ନିର୍ବାହ କରୁଥିବା ଶିଳ୍ପୀ କିନ୍ତୁ ସମସ୍ତେ ଭାରତୀୟ ଐତିହ୍ୟର ଦାୟାଦ ।

ସର୍ଜନଶୀଳ କଳା ଭିତରେ ଆଞ୍ଚଳିକବାଦର ସ୍ଥାନ ନଥିଲେ ମଧ୍ୟ, ତାହା ବେଳେବେଳେ ସମନ୍ୱୟକୁ ଖୋରାକ ଯୋଗାଇ ଦିଏ । ଏହି ସମନ୍ୱୟ ଭାରତୀୟତାର ଅସ୍ମିତା ପାଇବାରେ ସାହଯ୍ୟ କରେ । ଏହି ଅସ୍ମିତା ଅତି ଆଚମ୍ବିତ ଭାବେ ନୀଳ ନଦୀର ପ୍ରତିବିମ୍ବ ଭିତରେ ପାଇହୁଏ ବା ଗଙ୍ଗାର ସ୍ୱଚ୍ଛ ପ୍ରବାହରେ ମଧ୍ୟ ତାକୁ ଦେଖିହୁଏ ।

Digitized by srujanika@gmail.com

# ୬୨. କୋଣାର୍କରେ ନୃତ୍ୟୋତ୍ସବ ଓ କ୍ରାଫଟ୍ସ୍ ମେଳା

୧୯୮୪ ମସିହାରେ ଭୁବନେଶ୍ୱର ମୁକ୍ତେଶ୍ୱର ମନ୍ଦିର ପ୍ରାଙ୍ଗଣରେ ରାଜ୍ୟ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ସୁବାସ ପାଣିଙ୍କ ତତ୍ତ୍ୱାବଧାନରେ ପ୍ରଥମ ଓଡ଼ିଶୀ ନୃତ୍ୟୋତ୍ସବ ପାଳିତ ହୋଇଥିଲା । ମୁଁ ଥିଲି ଏହି ଉତ୍ସବର ଭିଜୁଏଲାଇଜର୍ । ନୃତ୍ୟ ଉତ୍ସବ ସହିତ ମନ୍ଦିର ବାହାରେ ଆମ କଲେଜର ଛାତ୍ରଛାତ୍ରୀମାନେ ସେମାନଙ୍କ ଚିତ୍ରକଳା ପ୍ରଦର୍ଶନ କରିଥିଲେ, ନବବର୍ଷର ନିମନ୍ତ୍ରଣ ପତ୍ର, ପୋଡ଼ାମାଟିର କଣ୍ଢେଇ ଏବଂ ଅନ୍ୟାନ୍ୟ ହସ୍ତଶିଳ୍ପ ବିକ୍ରୟ କରିଥିଲେ । ଆମ କଲେଜରେ ନୃତ୍ୟୋତ୍ସବ ପାଇଁ କାର୍ଯ୍ୟକ୍ରମ ପୁସ୍ତିକା ଏବଂ ପୋଷ୍ଟର୍ ଇତ୍ୟାଦି ଡିଜାଇନ କରାଯାଇଥିଲା । ଭାରତୀୟ ପ୍ରତ୍ନତତ୍ତ୍ୱ ସଂସ୍ଥାର ମହାନିର୍ଦ୍ଦେଶକ ନାଗରାଜ ରାଓ ଆମ କଲେଜର ପ୍ରଦର୍ଶନୀଟିକୁ ଉଦ୍‌ଘାଟନ କରିଥିଲେ । ସଂଯୁକ୍ତା ପାଣିଗ୍ରାହୀଙ୍କ ନୃତ୍ୟରୁ ସେ ସନ୍ଧ୍ୟାର ନୃତ୍ୟ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ପଙ୍କଜଚରଣ ଦାସଙ୍କ ଉଷାଭିଳାସ ଉପରେ ଆଧାରିତ ଓଡ଼ିଶୀ ବ୍ୟାଲେ ଏହି ଉତ୍ସବର ଅନ୍ୟତମ ଆକର୍ଷଣ ଥିଲା । ତା'ପରବର୍ଷ ନୃତ୍ୟୋତ୍ସବ ଭୁବନେଶ୍ୱରରୁ କୋଣାର୍କକୁ ସ୍ଥାନାନ୍ତରିତ ହୋଇଗଲା । ଆମମାନଙ୍କର ଧାରଣା ହେଲା ଯେ ଖଜୁରାହୋ ଭଳି ମନ୍ଦିର ବେଢ଼ାରେ ନୃତ୍ୟୋତ୍ସବ ଆୟୋଜିତ ହେବ । କିନ୍ତୁ ମନ୍ଦିର ବେଢ଼ା କାହିଁ କେଉଁଆଡ଼େ ରହିଲା, ନୃତ୍ୟୋତ୍ସବର ସ୍ଥାନ ମନ୍ଦିରଠାରୁ ବହୁ ଦୂରରେ ନିରୂପିତ ହେଲା । ଏବେ ମଞ୍ଚଉପରେ ଠିଆ ହେଲେ ମୁଖଶାଳାର ଆଲୋକିତ ଚୂଡ଼ାଟି ହିଁ ଦେଖାଯାଏ । ଏବେ କୁଆଡ଼େ ମନ୍ଦିର ଭିତରେ ନୃତ୍ୟ ପାଇଁ ସର୍ବ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଆଉ ଅନୁମତି ଦେଉ ନାହିଁ । ଏତିକି ହିଁ ଆଶ୍ୱାସନା ଯେ ଯାହାହେଉ ମୁଁ ଆଉ ଆମ କଲେଜ କୋଣାର୍କ ନୃତ୍ୟୋତ୍ସବ ସହିତ ବହୁବର୍ଷ ଧରି ସଂପୃକ୍ତ ରହିଲୁ । ଏବେ ବି ସେହି ସଂପୃକ୍ତିର ଅନ୍ତ ହୋଇନାହିଁ ଯଦିଓ କଳାତ୍ମକତାର ଅବସାନ ଘଟିଛି ।

ମୁଁ ଏଠି କେବଳ ଗୋଟିଏ ମାତ୍ର ନୃତ୍ୟୋତ୍ସବର ସୂଚନା ଦେବା ଉଚିତ ମନେକରୁଛି । ତାହା ଥିଲା ବାଲିରେ କଳିଙ୍ଗ ବାଲିଯାତ୍ରା ଅନୁଷ୍ଠିତ ହେବା ପରବର୍ଷର କୋଣାର୍କ ନୃତ୍ୟୋତ୍ସବ । ଏହା ଯେତେ ସମ୍ଭବ ଜାକଜମକରେ ହେବା ପାଇଁ ସଚିବାଳୟଠାରେ ସଭା ବସି ସ୍ଥିର ହେଲା । ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ

Digitized by srujanika@gmail.com

ଥାଆନ୍ତି । ତାଙ୍କର ଇଚ୍ଛା ଥାଏ ଯେ ନିଜ ଦେଶରେ ତ ବାଲି ଦ୍ୱୀପର ଲୋକେ ଓଡ଼ିଶାର ସାଂସ୍କୃତିକ ବିଭବର ଝଲକ ଦେଖିସାରିଛନ୍ତି, ଏବେ ଆମ ରାଜ୍ୟରେ କୋଣାର୍କର ସୂର୍ଯ୍ୟ କ୍ଷେତ୍ରରେ ସେମାନେ ଆଉଥରେ ଜଙ୍ଗଲର ମହାବଳ ବାଘକୁ ଜଙ୍ଗଲ ପରିବେଶରେ ଦେଖନ୍ତୁ । ମୁଖ୍ୟ ଶାସନ ସଚିବ ରବିନାରାୟଣ ଦାସ ବୋଧହୁଏ ମୁଖ୍ୟମନ୍ତ୍ରୀଙ୍କ ଉଦ୍ଦେଶ୍ୟକୁ ଭଲଭାବରେ ବୁଝିଥାନ୍ତି । ତାଙ୍କ ପ୍ରତ୍ୟକ୍ଷ ବୁଝାସୁଝା ଭିତରେ ସେ ବର୍ଷର କୋଣାର୍କ ନୃତ୍ୟୋତ୍ସବ ଆୟୋଜିତ ହେଉଥାଏ । ଓଡ଼ିଶୀ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶିକା ଥାଆନ୍ତି ନୃତ୍ୟାଙ୍ଗନା କୁଙ୍କୁମ ମହାନ୍ତି । ସିଏ ଚାହିଁଲେ ତାଙ୍କ ନିଜର ଛବିଟିଏ କମିତି ପୋଷ୍ଟର୍ ଭାବେ ଛପା ଯାଆନ୍ତା । ମୁଖ୍ୟ ଶାସନ ସଚିବ ଏଣେ ମୋତେ ନିର୍ଦ୍ଦେଶ ଦେଇଥାନ୍ତି ଯେ ଯେତେ ସମ୍ଭବ ସ୍ୱଳ୍ପ ଅବଧି ଭିତରେ ଅତି ଉଚ୍ଚମାନର ପୋଷ୍ଟର୍‌ଟିଏ ଛାପା ହେବା ଉଚିତ । ଅଳ୍ପଦାମର ଗାଈଟିଏ ହୋଇଥିବ ଓ ବେଶି କ୍ଷୀର ଦେଉଥିବା ଭଳିଆ କଥା । କୁଙ୍କୁମ ମହାନ୍ତି ମତେ ଠିକଣା ସମୟ ଉଣ୍ଡି ମନେପକାଇ ଦେଇଥାନ୍ତି ଯେ ମୁଁ ଯେହେତୁ ପ୍ରଥମଥର ପାଇଁ ସଂଯୁକ୍ତା ପାଣିଗ୍ରାହୀଙ୍କ ପୋଷ୍ଟର୍ ପର୍ଯ୍ୟଟନ ବିଭାଗ ତରଫରୁ ଛାପିସାରିଛି, ତେଣୁ ଏହି ଉତ୍ସବ ପାଇଁ ତାଙ୍କରି ଛବିଥିବା ପୋଷ୍ଟର୍ ଛାପିବା ସମୀଚୀନ ହେବ । ଏମିତିରେ ତ ଦେଶବିଦେଶରେ ସଂଯୁକ୍ତାଙ୍କ ଅନେକ ପୋଷ୍ଟର୍ ମୁଦ୍ରିତ ହୋଇସାରିଛି, ଏଣୁ ତାଙ୍କ ବାନ୍ଧବୀ କୁଙ୍କୁମ ସରକାରୀ ଭିତ୍ତିଭୂମି ଉପରେ ସଂଯୁକ୍ତାଙ୍କର ସମକକ୍ଷ ହେବା ପାଇଁ ଚାହୁଁଥିଲେ ।

ମୁଁ ଏବେ କରେ କ'ଣ ? କାମର ଚାପକୁ ଲାଘବ କରିବା ଉଦ୍ଦେଶ୍ୟରେ ଏବଂ ଗୁଣାତ୍ମକ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଇ ସିଧା ଦିଲ୍ଲୀ ପହଞ୍ଚି କେନ୍ଦ୍ର ଲଳିତ କଳା ଏକାଡେମୀର ପ୍ରକାଶନ ଅଧିକାରୀ ବିକ୍ରମ ମେହେରାଙ୍କ ତତ୍ତ୍ୱାବଧାନରେ ଡିଜାଇନଟି ପ୍ରସ୍ତୁତ କଲି ଏବଂ ଏକାଡେମୀ ମାଧ୍ୟମରେ ଦିଲ୍ଲୀର ଅନ୍ୟତମ ଉଚ୍ଚମାନର ଛାପାଖାନା ଥମ୍‌ସନ୍ ପ୍ରେସ୍‌ରେ ଛାପିବା ବନ୍ଦୋବସ୍ତ କଲି । ଡିଜାଇନ୍‌ଟିରେ ଥାଏ କୋଣାର୍କର ପୃଷ୍ଠଭୂମି ଉପରେ ବାଲିର ଜଣେ ନୃତ୍ୟାଙ୍ଗନା ଓ କୁଙ୍କୁମ ମହାନ୍ତି । ମୁଁ ପ୍ରଥମେ ଡିଜାଇନ୍ ଅର୍ଡ଼ର ଦେବା ପାଇଁ ଉଡ଼ାଜାହାଜରେ ଯାଇଥିଲି । ତାକୁ ଆଣିବାକୁ ଅଧ୍ୟାପକ ଡି.ଏନ୍.ରାଓଙ୍କୁ ପୁଣି ଉଡ଼ାଜାହାଜରେ ଗସ୍ତ କରିବାକୁ ହେଲା । ଡିଜାଇନ କରିବା, ଉଡ଼ାଜାହାଜରେ ଗସ୍ତ କରିବା ତଥା ଆନୁଷଙ୍ଗିକ ଖର୍ଚ୍ଚକୁ ପୋଷ୍ଟର୍ ଛପେଇବା ଖର୍ଚ୍ଚ ସହିତ ମିଶେଇଦେବାକୁ ମୁଁ ବାଧ୍ୟ ହୋଇଥିଲି । ତା'ର ମୁଖ୍ୟ କାରଣ ହେଲା ପୋଷ୍ଟର୍ ଛପେଇବା ପାଇଁ ନା ସରକାରୀ ଲିଖିତ ଆଦେଶ ଥିଲା ନା ଉଡ଼ାଜାହାଜରେ ଗସ୍ତ କରିବା ପାଇଁ ସରକାରୀ ଅନୁମତି ଥିଲା । ପୋଷ୍ଟର୍ ଛପେଇ ସହ ନୃତ୍ୟୋତ୍ସବ କାର୍ଯ୍ୟକ୍ରମକୁ ଗୋଟିଏ ପୁସ୍ତିକା ଆକାରରେ ପ୍ରକାଶ କରିବା ପାଇଁ ମଧ୍ୟ ଆମକୁ କୁହାଯାଇଥିଲା। ଏବେ ତ ପର୍ଯ୍ୟଟନ ବିଭାଗ ତାଙ୍କର ଏଭଳି କାର୍ଯ୍ୟଗୁଡ଼ିକୁ ବିଜ୍ଞାପନ ସଂସ୍ଥାକୁ ସମର୍ପି ଦେଉଛନ୍ତି । କିନ୍ତୁ ଅଶି, ନବେ ଦଶକରେ ମୁଁ

Digitized by srujanika@gmail.com

ଏବଂ ଆମ କଲେଜ ହିଁ ପର୍ଯ୍ୟଟନର ବିଭିନ୍ନ ଶିଳ୍ପସଂପୃକ୍ତ କାମ ତୁଲାଉ ଥିଲୁ । ଆମ କଲେଜର ସୀମିତ ବଜେଟ ଏବଂ ସୀମିତ ବୈଷୟିକ ବ୍ୟବସ୍ଥା ମଧ୍ୟରେ ଯେଉଁସବୁ ଗୁଣାତ୍ମକ କାର୍ଯ୍ୟ ସଫଳ ଭାବେ କରାଯାଇ ପାରିଥିଲା ଏବେ ତାହା ଅତିକ୍ରାନ୍ତ ହୋଇପାରି ନାହିଁ । ଏ ସମସ୍ତ ବିଜ୍ଞାପନ କାର୍ଯ୍ୟଗୁଡ଼ିକର ରୂପାୟନ ଭିତରେ ଛାତ୍ରଛାତ୍ରୀଙ୍କ ପାଇଁ ଅନେକ ଶିକ୍ଷଣୀୟ ବିଷୟ ଥିଲା । ଡିଜାଇନ୍ ଗୁଡ଼ିକର ପରିକଳ୍ପନା ଅଧ୍ୟକ୍ଷଙ୍କ ଟେବୁଲ ଉପରେ ହିଁ ରୂପାୟିତ ହେଉଥିଲା ।

ଏହି ଉତ୍ସବ ପୁସ୍ତିକା ପାଇଁ ନୃତ୍ୟରେ ଅଂଶ ଗ୍ରହଣ କରୁଥିବା ଶିଳ୍ପୀମାନଙ୍କର ଜୀବନପଞ୍ଜିକା ଓ ଫଟୋ ଟ୍ରାନ୍ସ୍‌ପରେନ୍ସି ସଂଗ୍ରହ କରିବାଠାରୁ ଆରମ୍ଭ କରି ଅନ୍ୟାନ୍ୟ ପାଠ ଓ ଚିତ୍ର ଯୋଗାଡ଼ କରିବାର ଦାୟିତ୍ୱ ଆମ ଉପରେ ନ୍ୟସ୍ତ ଥିଲା । କଲେଜ ପରିଚାଳନା ସହିତ ଏସବୁ ଗୁରୁ ଦାୟିତ୍ୱ ମୋତେ ହିଁ ମୁଣ୍ଡେଇବାକୁ ହେଉଥିଲା । ନୃତ୍ୟୋତ୍ସବ ସହିତ ଏ ବର୍ଷର ଅନ୍ୟଦୁଇଟି ଆକର୍ଷଣ ହେଲା ଶିଳ୍ପମେଳା ଓ କ୍ରୀଡ଼ା ବିଭାଗ ପକ୍ଷରୁ କୋଣାର୍କ ଠାରୁ ଗୋପାଳପୁର ଯାଏଁ ଟ୍ରେକିଙ୍ଗ୍ । ଏହି ସ୍ୱତନ୍ତ୍ର ଉତ୍ସବ ପାଇଁ ମୁଁ ଗୋଟିଏ ଲୋଗୋର ପରିକଳ୍ପନା କରିଥିଲି । ଉତ୍ସବ ପୁସ୍ତିକା ଉପରେ ଏହି ଲୋଗୋ ମୁଦ୍ରିତ ହୋଇଥିଲା ଏବଂ ମଞ୍ଚ ଉପରେ ମଧ୍ୟ ଏହାର ଏକ ବର୍ଦ୍ଧିତ ରୂପ ଶୋଭା ପାଉଥିଲା । କୋଣାର୍କ ନୃତ୍ୟ ଉତ୍ସବରେ ଏବେ ଆଉ ସେହି ଲୋଗୋ ବ୍ୟବହୃତ ହେଉନାହିଁ । ମନେହୁଏ ମୁଁ ଏହି ବିଭାଗ ଛାଡ଼ିଲାପରେ ଆମେ ପରିକଳ୍ପନା କରିଥିବା ସବୁ ଶିଳ୍ପକାମ ଅଲୋଡ଼ା ହୋଇପଡ଼ିଛି । ଉତ୍ସବ ପାଇଁ ମୁଁ କରିଥିବା କେତୋଟି ଶିଳ୍ପପ୍ରକରଣକୁ କଲେଜର କିଛି ଅଧ୍ୟାପକ ଶୁକପକ୍ଷୀ ଭଳି କେବଳ ରଟି ଚାଲିଛନ୍ତି । ସେଥିରେ ନୂତନତା କିଛି ନାହିଁ ବା କିଛି ନୂଆ କରି ଦେଖାଇବାର ମନୋବୃତ୍ତି ବି ନାହିଁ । ଏଠାରେ ଗୋଟିଏ ପ୍ରସଙ୍ଗର ଉଲ୍ଲେଖ କରିବାକୁ ଚାହୁଁଛି । କାରଣ ଏହି ପ୍ରସଙ୍ଗଟି ଯଦିଓ ମୁଁ କଲେଜ ଛାଡ଼ିବା ପରର ଘଟଣା ତଥାପି କୋଣାର୍କ ଉତ୍ସବ ସହିତ ସଂପୃକ୍ତ । ସଂସ୍କୃତି ସଚିବ ରାଜେନ୍ଦ୍ର କିଶୋର ପଣ୍ଡା ଆମ କଲେଜର ଅଧ୍ୟକ୍ଷଙ୍କ ସହିତ ଦିନେ ଉତ୍ସବର ତୋରଣ ସଂକ୍ରାନ୍ତରେ ଆଲୋଚନା କରୁଥାନ୍ତି । ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ଭାବେ ଭୁବନେଶ୍ୱର ଗସ୍ତରେ ଆସିଥାଏ । ରାଜେନ୍ଦ୍ର କିଶୋର ତୋରଣ ଉପରେ ସୂର୍ଯ୍ୟକିରଣର ଆଭାସ ଦେବା ପାଇଁ ଚାହୁଁଥାନ୍ତି । ଅଧ୍ୟକ୍ଷ ମହାଶୟ ସଚିବଙ୍କୁ ବୁଝାଉଥାନ୍ତି, ସେ ଟିଣ ଓ ତାର ବ୍ୟବହାର କରି ତୋରଣ ଉପରେ ସୂର୍ଯ୍ୟକିରଣ ଖଞ୍ଜିବେ ଓ ସେଥିରୁ ସାତ ରଙ୍ଗର କିରଣମାନ ବାହାର କରିବେ । ଆଲୋଚନାର ସେହି ଗମ୍ଭୀରଘନ ମୁହୂର୍ତ୍ତରେ ମୁଁ ସଚିବଙ୍କ ଅଫିସରେ ପହଞ୍ଚିଥିଲି । ସଚିବ ମୋତେ ଦେଖିସାରି ତୋରଣ ସନ୍ଦର୍ଭଟିକୁ ମୋ ଆଡ଼କୁ ଠେଲିଦେଲେ । ମୋର ଧାରଣା ହେଲା ଜଣେ କଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଉପରିସ୍ଥ ହାକିମଙ୍କ ପାଖରେ ସବୁ କଥାରେ

Digitized by srujanika@gmail.com

ମୁଣ୍ଡ ନ ଟୁଙ୍ଗାରି ନିଜର ସ୍ୱାଧୀନ ମତ ପ୍ରକାଶ କରିବା ଦରକାର ଏବଂ ସେ ରାଜ୍ୟ କଳାଜଗତର ମୁଖ୍ୟ ହୋଇଥିବା ହେତୁ ତାଙ୍କର ପରାମର୍ଶ ରୁଚିସଂପନ୍ନ ହେବା ମଧ୍ୟ ଆବଶ୍ୟକ । ମୁଁ ଟିଣ ଓ ତାରକୁ ସାତବର୍ଣ୍ଣର ରଙ୍ଗିନ କଳାରେ ପରିଣତ କରିଦେଇଥିଲି । ମୋ ପ୍ରସ୍ତାବଟି ସଚିବଙ୍କ ମନକୁ ବେଶ୍ ପାଇଲା ।

ମୁଁ ପୁଣି ଆଗରୁ ଛାଡ଼ିଥିବା କଥା ନିକଟକୁ ଫେରି ଆସୁଛି । ସବୁ ଦୃଷ୍ଟିରୁ ଉତ୍ସବ ପୁସ୍ତିକାଟି ଆକର୍ଷଣୀୟ ହୋଇଥିଲା । ଏଥିରେ କେବଳ କୃତୀଶିଳ୍ପୀଙ୍କ ରଙ୍ଗିନ ଫଟୋ ନଥିଲା, ଥିଲା ଓଡ଼ିଶାର କାରୁଶିଳ୍ପ ଉପରେ ତଥ୍ୟ ଓ ଫଟୋଗ୍ରାଫ୍ ତଥା ବାଲିଦ୍ୱୀପରେ ଶେଷ ହୋଇଥିବା ଯାତ୍ରାର ସ୍ମୃତି । ସମୟର ସ୍ୱଳ୍ପତା ଦୃଷ୍ଟିରୁ ପୋଷ୍ଟର୍ ଓ ପୁସ୍ତିକା ଏକାସାଂଗରେ ମୁଦ୍ରିତ ହୋଇପାରିଲା ନାହିଁ । ଏଣୁ ବାରମ୍ବାର ଉଡ଼ାଜାହାଜ ଯୋଗେ ଦିଲ୍ଲୀଗସ୍ତ କରିବାକୁ ହେଲା, ଆଉ ମୁଦ୍ରଣ ଖର୍ଚ୍ଚର ଅଟକଳ ବଢ଼ିଲା । ଗୋଟିଏ ପୋଷ୍ଟର୍ ପିଛା ଛାପା ଖର୍ଚ୍ଚ ବାର ତେର ଟଙ୍କାପଡ଼ିଲା । ମୁଁ ପର୍ଯ୍ୟଟନ ବିଭାଗର ମୁଦ୍ରଣ କାର୍ଯ୍ୟ ଦିଲ୍ଲୀରେ କରେଇ ଆଣୁଥିବାରୁ ଓଡ଼ିଶାର ଛାପାଖାନାର ମାଲିକମାନେ ମୋ ବିରୁଦ୍ଧରେ ତେଜି ଉଠିଲେ ଏବଂ ରାଜ୍ୟ ଭିଜିଲାନ୍ସ୍ ବିଭାଗରେ ଅଭିଯୋଗ କଲେ । ଭିଜିଲାନ୍ସ ବିଭାଗ ରାଜ୍ୟ ଲଳିତ କଳା ଏକାଡେମୀର ସଭାପତିଙ୍କଠାରୁ ପରାମର୍ଶ ଚାହିଁଲେ । ସଭାପତି ନିଜର ବୁଦ୍ଧିବିବେକ ଖଟାଇ କହିଲେ ପୋଷ୍ଟରଟିର ସଠିକ ଦାମ ହେବାକଥା ସାତଟଙ୍କା । ମୁଁ ସରକାରୀ ଚାକିରୀରୁ ଅବସର ନେଇ ସାରିଥାଏ । ଡକରା ପାଇଁ ଭିଜିଲାନ୍ସ୍ ଦପ୍ତରରେ ପହଞ୍ଚିଲି । ସେଠି ମୋର ବୟାନ ଥିଲା ଯେ ସାତଟଙ୍କା ପର୍ଯ୍ୟନ୍ତ ମଧ କଥାଯିବା ଉଚିତ ନୁହେଁ, ଆଠଣା, ଟଙ୍କେରେ ମଧ୍ୟ ପୋଷ୍ଟର୍ ଛପା ହେବା ସମ୍ଭବ । କଥା କେବଳ ପୋଷ୍ଟରଟିଏ ମୁଦ୍ରଣ କରିବା ଭିତରେ ସୀମିତ ନୁହେଁ । ଏହାର ଟ୍ରାନ୍ସ୍‌ପରେନ୍ସି, ଡିଜାଇନ୍, ଇମ୍‌ପୋର୍‌ଟେଡ୍ ନନ୍‌ଗ୍ଲସ୍ ଆର୍ଟ୍‌ପେପର୍ ଏବଂ ସର୍ବୋପରି ଏହାର ରୁଚିବୋଧ ଓ ମୁଦ୍ରଣର ଗୁଣାତ୍ମକତା ବିଚାର୍ଯ୍ୟ । ପୁଣି ସଭାପତି ମହାଶୟ କେବଳ ବହିର କଭର ଡିଜାଇନ୍ ଜୀବନସାରା ଆଙ୍କିଛନ୍ତି । ଏଭଳି ମଲ୍‌ଟିକଲର୍ (ବହୁରଙ୍ଗର) ପୋଷ୍ଟର୍ କେବେ ଛାପି ନାହାନ୍ତି । ତା'ପରେ ଅଭିଯୋଗ ଖାରଜ ହେଲା । ମୋର କିଛି ଶୁଭେଚ୍ଛୁ କହିଲେ, ''ତମେ କାଦୁଅକୁ ଯାଅ କାହିଁକି, ଆଉ ଗୋଡ଼ ଧୋଇବା ପାଇଁ ଏତେ ବ୍ୟସ୍ତ ହୁଅ କାହିଁକି ?''

ଏ ବର୍ଷର କୋଣାର୍କ ନୃତ୍ୟ ଉତ୍ସବର ଆଉ ଗୋଟିଏ ବିଶେଷତ୍ୱ ହେଲା କ୍ରାଫ୍‌ଟ୍‌ସ୍ ମେଳା, ଏହି ମେଳାକୁ ସ୍ଥାୟୀ ରୂପ ଦେବା ପାଇଁ ସଂସ୍କୃତି ବିଭାଗର ସଚିବ ରାଜ କିଶୋର ଭୁଜବଳଙ୍କର ପରିକଳ୍ପନା ଥିଲା । ପ୍ରତ୍ନତତ୍ତ୍ୱ ସଂଗ୍ରହାଳୟ ନିକଟରେ ଥିବା ଟ୍ରାଭ୍‌ଲରସ୍ ଲଜ ପରିସର ମଧ୍ୟରେ ଆମେ ଶହେ ସରିକି ଅସ୍ଥାୟୀ ଚାଳଘର ତିଆରି କରିଥିଲୁ । ଘରର କାନ୍ଥ ବାଉଁଶ ଚାଞ୍ଚରେ ତିଆରି କରାଯାଇ ତା' ଉପରେ ଗୋବର ମାଟି ଲେପି ଗ୍ରାମ୍ୟ

Digitized by srujanika@gmail.com

ପରିବେଶ ସୃଷ୍ଟି କରାଯାଇଥିଲା । ଅବଶ୍ୟ ଘରର ଆଗପଟେ କବାଟ ଝରକା ନଥିଲା । ରାତିରେ ଯଦିଓ ବିଜୁଳି ଆଲୁଅର ବ୍ୟବସ୍ଥା ହୋଇଥିଲା ତଥାପି ଗ୍ରାମ୍ୟ ସଂସ୍କୃତିର ଗନ୍ଧ ଭରିଦେବା ପାଇଁ ପ୍ରତିଘରେ ଗୋଟିଏ ଗୋଟିଏ କିରୋସିନୀ ଲଣ୍ଠନ ବି ଝୁଲୁଥିଲା । ଭାରତ ସରକାରଙ୍କ ବସ୍ତ୍ର ଓ ହସ୍ତଶିଳ୍ପ ମନ୍ତ୍ରଣାଳୟ ଆନୁକୂଲ୍ୟରେ ଭାରତବର୍ଷର ବହୁ ହସ୍ତଶିଳ୍ପ କାରିଗର ନିଜ ନିଜର ଶିଳ୍ପ ସାମଗ୍ରୀ ନେଇ କୋଣାର୍କରେ ପହଞ୍ଚିଥିଲେ ଏବଂ ଏଠାରେ ଦୋକାନ ଖୋଲିଥିଲେ । ଟ୍ରାଭଲସ୍ ଲଜ୍ ପରିସର ଶିଳ୍ପବର୍ଣ୍ଣାଳିର ମହକରେ ଉଜ୍ୱଳି ଉଠିଥିଲା । ହସ୍ତଶିଳ୍ପ ଭିତରେ ଆମର ପଟଚିତ୍ର, ତାଳପତ୍ର ଚିତ୍ର, ପଥର ଖୋଦାଇ, କାଠ ଓ ଗୋବର କଣ୍ଢେଇ, ମୁଖା, ଚାନ୍ଦୁଆ, ଟେରୋକୋଟା କାମ, ସୋଲକାମ, ତାରକସି ଗହଣା ତ ଥିଲା, ତା' ସହିତ ଥିଲା ବଙ୍ଗଳାର କାଳୀଘାଟ ପଟ, ବାଙ୍କୁଡ଼ାର ମାଟିଘୋଡ଼ା, ବିହାରର ମଧୁବନୀ ଚିତ୍ର, ଉତ୍ତରପ୍ରଦେଶର ଚିକନ୍‌କାମ, ପିତଳ ସାମାନ, ରାଜସ୍ଥାନର ବାନ୍ଧଣୀ, ପବୁଜୀକା ପଡ୍, ଚମଡ଼ା ଜୋତା, କାଶ୍ମୀରର କାଗଜମଣ୍ଡ କାମ, ଲାଖକାମ, ଆନ୍ଧ୍ରର ଲେପାକ୍ଷି ଶାଢ଼ି, ଚମଡ଼ା କଣ୍ଢେଇ ଓ ମହୀଶୂର ସିଲ୍‌କ୍‌ରେ ମେଳାର ଘରଗୁଡ଼ିକ ପୂରିଲା ପୂରିଲା ଦେଖା ଯାଉଥିଲା । ମୁଁ ଦିନକୁ ଚାରି ପାଞ୍ଚଥର ମେଳା ଭିତରେ ଚକ୍କର ଲଗାଉଥିଲି । ମନ ଭରି ଯାଉଥିଲା । ସରକାର ମେଳାର ଓ ଉତ୍ସବର ନିର୍ଦ୍ଦେଶକ ଭାବେ ମୋତେ ସ୍ୱୀକୃତି ଦେଇଥିଲେ । ଏହି ପଦବୀ ମୋ ପାଇଁ ନିଶ୍ଚିତ ସମ୍ମାନଜନକ ଥିଲା । କୋଣାର୍କ ଆଖ ପାଖରୁ ପ୍ରତିଦିନ ଶହ ଶହ ଦେଖଣାହାରୀ ମେଳାରେ ଗହଳ ଲଗାଉଥିଲେ, ମେଳାରେ ପ୍ରଦର୍ଶିତ ହୋଇଥିବା ପ୍ରତ୍ୟେକ ସାମଗ୍ରୀ ସଂପର୍କରେ ଜାଣିବା ପାଇଁ ଚାହୁଁଥିଲେ । ସେଠି କାମ କରୁଥିବା କାରିଗରମାନଙ୍କୁ ଗୁଡ଼େଇ ତୁଡ଼େଇ ପ୍ରଶ୍ନ ବି ପଚାରୁଥିଲେ । କିନ୍ତୁ ସେମାନେ କୌଣସି ଶିଳ୍ପ ସାମଗ୍ରୀ କିଣୁ ନଥିଲେ । ମେଳା ଉଜେଇବା ଦିନ ମୁଁ ପ୍ରତି ଷ୍ଟଲ୍‌କୁ ଯାଇ ବ୍ୟକ୍ତିଗତ ଭାବେ କାରିଗରଙ୍କଠାରୁ ବିଦାୟ ନେବା ପାଇଁ ଚାହିଁଲି । ସବୁ କାରିଗର କୋଣାର୍କ ମେଳାରେ ଭାଗନେଇ ଗୌରବ ଅନୁଭବ କରୁଥିଲେ । କିନ୍ତୁ ବିକାକିଣାର ନାମ ଗନ୍ଧ ନଥିବା ହେତୁ କାରିଗରଙ୍କ ମନ ବିରସ ଥିଲା । ମଧୁବନୀର ଚିହ୍ନା ମହିଳା କାରିଗର ଫୁଲେରୀ ଦେବୀ ନିଜ କଥା କହୁ କହୁ ଆଖି ଛଳଛଳ କରିଦେଲେ । ମୁଁ ଅଗତ୍ୟା ତାଙ୍କଠାରୁ ବାଉଁଶ ପାତିର ଗଣେଶ ଓ ମଧୁବନୀ ଚିତ୍ରଟିଏ କିଣିଥିଲି । ତାହା ଅଦ୍ୟାବଧି ମୋ ପାଖରେ ସାଇତା ଅଛି । ଆମେ ଭାବୁଥିଲୁ ନିରବଚ୍ଛିନ୍ନ ଭାବରେ ଯଦି ମେଳା ଚାଲେ ଏବଂ କୁଡ଼ିଆଘରଗୁଡ଼ିକ ଆଉ ଟିକିଏ ମଜବୁତ୍ ହୋଇଯାଇପାରେ ଏବଂ ତା'ଭିତରେ ଥିବା ବଗିଚାର ଉପଯୁକ୍ତ ଯତ୍ନ ନିଆଯାଇପାରେ ତା' ହେଲେ ନାଚ ଦେଖିବାକୁ ଆସୁଥିବା ଦେଶୀ ଓ ବିଦେଶୀ ପର୍ଯ୍ୟଟକମାନେ ଏହି ମେଳା ଭିତରେ ବିଭିନ୍ନ ଷ୍ଟଲ୍‌ରେ ମିଳୁଥିବା ଖାଦ୍ୟ ଖାଇବେ, ହସ୍ତଶିଳ୍ପର ବିଭବ ଦେଖିବେ ଏବଂ କଳାସାମଗ୍ରୀ କିଣାକିଣି

Digitized by srujanika@gmail.com

କରି କାରିଗରଙ୍କୁ ପ୍ରୋତ୍ସାହନ ଦେବା ଶିଖିବେ । ମାତ୍ର ସବୁ ପରିକଳ୍ପନା ଉଜୁଡ଼ି ଗଲା । ହରିଆନାର ସୁରଜକୁଣ୍ଡ ଢାଞ୍ଚାରେ ଶିଳ୍ପଗ୍ରାମଟିଏ କୋଣାର୍କରେ ଗଢ଼ିଉଠି ପାରିଲାନି ।

ଏହି ଉତ୍ସବବେଳର ଦୁଇଟି ଅଭାବନୀୟ ଘଟଣା ଉଲ୍ଲେଖ ନକରି ରହିପାରୁନି । ଘଟଣା ଦୁଇଟି ଆଇ.ଏ.ଏସ୍. ଅଫିସରଙ୍କ ଅବିବେକି ବିଚାରକୁ ନେଇ । ଜନୈକ ଆଇ.ଏ.ଏସ୍. ଅଫିସର ଯିଏ ମୋ ଦ୍ୱାରା ବାଲିରେ ଅପମାନିତ ହୋଇଥିଲେ ବୋଲି ଅନୁଭବ କରିଥିଲେ ସେ ମୋ ଉପରେ ପ୍ରତିଶୋଧ ନେବା ପାଇଁ ମୌକା ଖୋଜୁଥିଲେ ଏବଂ ମୋର ପ୍ରତିଟି ପରିକଳ୍ପନାରେ ଦୋଷତ୍ରୁଟି ଦେଖି ମୁଖ୍ୟ ଶାସନ ସଚିବଙ୍କ କାନରେ ପକାଉଥିଲେ । ମୁଖ୍ୟ ରାସ୍ତା ଉପରୁ ନୃତ୍ୟମଣ୍ଡପକୁ ଯିବା ପାଦଚଲା ରାସ୍ତାର ଦୁଇଧାରରେ ଅନୁଚ୍ଚ ବାଉଁଶ ଖମ୍ବପୋତି ତା' ଉପରେ ଗୋଲାକାର ବଲ୍‌ବ୍‌ମାନ ଖଞ୍ଜି ଆଲୁଅ ଉପରକୁ ନ ଯିବାଭଳି ବାଉଁଶର ଭାତଗଳା ଛିଟିକି ଘୋଡ଼ାଇ ଦେଇଥିଲି । ଯାହା ଫଳରେ ବଲବ୍ ଆଲୁଅରେ କେବଳ ରାସ୍ତା ଆଲୋକିତ ହେଉଥିଲା ସିନା ଚାଲିବା ଲୋକର ଆଖି ଆଲୁଅରେ ଝଲସି ଉଠୁ ନଥିଲା । ଦିନେ ସନ୍ଧ୍ୟାରେ ମୁଖ୍ୟ ଶାସନ ସଚିବ କାମ ଦେଖିବା ପାଇଁ ଆସି ବଲ୍‌ବ୍ ଗୁଡ଼ିକୁ ଅନୁଚ୍ଚ ନୁହେଁ ଉଚ୍ଚ ବାଉଁଶ ଖମ୍ବରେ ଖଞ୍ଜିବା ପାଇଁ କହିଦେଇ ଫେରିଗଲେ । ଲମ୍ବା ବାଉଁଶ ମାନଙ୍କରେ ଲଗା ହେଇଥିବା ପତାକା ଉପରେ ତାଙ୍କ ଦୃଷ୍ଟି ପଡ଼ିଲା । ଓଡ଼ିଶାର ବାଉଁଶଗୁଡ଼ିକ ତ ସ୍ୱଭାବେ ବଙ୍କା, ଲୁହା କିମ୍ବା ଆଲୁମିନିୟମ୍ ପାଇପ୍ ଭଳି ସିଧା କିଭଳି ଦେଖାଯିବ । ଆଦେଶ ହେଲା, ''ବାଉଁଶଗୁଡ଼ିକ ଲଙ୍ଗଳା ଦିଶୁଛି, ସେମାନଙ୍କୁ କନା ପିନ୍ଧେଇ ଦିଅ ।'' ତା'ପରଦିନ ସନ୍ଧ୍ୟାରେ ମୁଖ୍ୟଶାସନ ସଚିବ ପୁଣି ଉତ୍ସବସ୍ଥଳ ପରିଦର୍ଶନରେ ଆସିଲେ । କ'ଣ ହେଲା କେଜାଣି ତାଙ୍କ ନିଷ୍ପତ୍ତି ପୁଣି ବଦଳିଗଲା । ଆଖି ଉପରେ ଲାଇଟ୍ ଝଲସିବାରୁ ସେ ଚାଲିଲାବେଳେ ନିଜେ ଝୁଣ୍ଟିଲେ ଏବଂ ବାଉଁଶ ଗୁଡ଼ିକରେ କନା ଗୁଡ଼େଇ ଦେବାରୁ ବଙ୍କାଟଙ୍କା ଜାଗାଗୁଡ଼ିକ ଏବେ ଆହୁରି ପରିଷ୍କାର ହେଇ ଅଧିକ ବଙ୍କା ଦେଖାଗଲା । ମୁଖ୍ୟ ଶାସନ ସଚିବ ନିଜର ଭୁଲ ବୁଝିଲେ ଆଉ ଆମର ପରିକଳ୍ପନା ବଳବତର ରହିଲା ।

Digitized by srujanika@gmail.com

# ୬୩. ପ୍ରୋଜେକ୍ଟ୍ ପଟଚିତ୍ର

ପାରମ୍ପରିକ ପଟଚିତ୍ରର ପୁନରୋଦ୍ଧାର ହୁଏ ପଚାଶ ଷାଠିଏ ବର୍ଷ ତଳେ ରଘୁରାଜପୁର ଓ ଦାଣ୍ଡସାହି ଗାଁରେ । ଏହି ପୁନରୋଦ୍ଧାରର କର୍ଣ୍ଣଧାର ହେଲେ ଆମେରିକାନ୍ ଫ୍ରେଣ୍ଡସ୍ ସୋସାଇଟିର ଜଣେ ବିଦେଶିନୀ ମହିଳା ହାଲିନା ଜେଲି । ପଟଚିତ୍ରକୁ ଯେଉଁମାନେ ଅବଲୁପ୍ତ ଅବସ୍ଥାରୁ ଉଠେଇ ଆଣି ଜୀବନ୍ୟାସ କରିଥିବେ ସେହି ଗୁରୁଶ୍ରେଣୀୟ ଚିତ୍ରକାରମାନେ ଜଣେ ଜଣେ ହେଇ ସଂସାରରୁ ବିଦାୟ ନେଲେଣି । ରାମ ମହାରଣା, ଜଗନ୍ନାଥ ମହାପାତ୍ର, କୁଞ୍ଜ ମହାରଣା ଓ ବାବାଜୀ ମହାରଣା ଭଳି ଆଉ ଯେତେସବୁ ପାରଙ୍ଗମ ବିନ୍ଧାଣିମାନଙ୍କ ବିୟୋଗରେ ଦାଣ୍ଡସାହି ଏବଂ ରଘୁରାଜପୁରର ଶିଳ୍ପସୌଷ୍ଠବ ଶୂନ୍ୟ ହୋଇଯାଇଛି । ସରକାରଙ୍କ ପ୍ରତିଷ୍ଠିତ ହସ୍ତଶିଳ୍ପ ଡିଜାଇନ୍ ଓ ତାଲିମକେନ୍ଦ୍ର ବସ୍ତୁତଃ କେବଳ କେତେକ ପଟଚିତ୍ର ପରମ୍ପରାକୁ ଦୋହରାଉଛି । ଶିକ୍ଷାର୍ଥୀମାନଙ୍କ ଅନ୍ଧାନୁକରଣ ଭିତରେ ଶୈଳୀର ମଞ୍ଜପଣ ହଜିଯାଇଛି । ପଟଚିତ୍ରକୁ ସୁନ୍ଦର କରିବାକୁ ଯାଇ ସେମାନେ ଅନାବଶ୍ୟକ ଭାବେ ଅଳଙ୍କରଣ ଖଞ୍ଜିବାରେ ଲାଗିଛନ୍ତି । ପଟଚିତ୍ରର ଧଡ଼ି ଛଡ଼ା ପଟଚିତ୍ର ଦେହରେ ଗୋଲାକାର, ଅଣ୍ଡାକାର, ତ୍ରିକୋଣ, ଷଟ୍‌କୋଣମାନ ଖଞ୍ଜି ପୁଣି ତା' ଉପରେ ନାନାପ୍ରକାର ଡିଜାଇନ୍ ଖୁନ୍ଦିବା ଫଳରେ ପଟଚିତ୍ର ତାର ମୌଳିକତା ଓ ଦମ୍ଭିଲାପଣ ହରାଉଛି । ପଟଚିତ୍ରର ଅସଲ ବର୍ଣ୍ଣଯୋଜନା ବଦଳିଯାଉଛି । ଖଲ୍ଲିକୋଟ କଳା ମହାବିଦ୍ୟାଳୟରେ ମୋ ସହିତ କଳା ଅଧ୍ୟୟନ କରୁଥିବା ବନ୍ଧୁମାନେ ଡିଜାଇନର୍ ଭାବେ ଏହି କେନ୍ଦ୍ରରେ ଯୋଗଦେଲେ ସିନା, ଯୋତା ପିନ୍ଧିଲେ ଗୋଡ଼ରେ କେଉଁଠି କଣ୍ଟାଟି ଭୁକି ଯାଉଛି ତାହା ହେଜି ପାରିଲେ ନାହିଁ । ସରକାର କେବଳ ପୁରୀ ଓ ରଘୁରାଜପୁର ଅଞ୍ଚଳରୁ ପଟଚିତ୍ରକାରଙ୍କୁ ଏହି ତାଲିମ କେନ୍ଦ୍ରରେ ଶିକ୍ଷକ ଭାବେ ନିଯୁକ୍ତି ଦେବା ଫଳରେ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀରେ ଅଙ୍କନ କରାଯାଉଥିବା ପଟଚିତ୍ରର ପ୍ରସାର ହେଲା। ଓଡ଼ିଶାରେ ଯେ ଅନ୍ୟ ଶୈଳୀ ବୋଲି କିଛି ଅଛି ତାହା ସଂପୂର୍ଣ୍ଣ ଭାବେ ସମସ୍ତେ ଭୁଲିଗଲେ । ପୁଣି ଶିକ୍ଷାପ୍ରଣାଳୀ ମଧ୍ୟରେ ଗୁରୁଶିଷ୍ୟ ପରମ୍ପରାକୁ ଜଳାଞ୍ଜଳି ଦେଇ ଆଧୁନିକ ଶିକ୍ଷା ପଦ୍ଧତି ପ୍ରଚଳନ କରାଗଲା । ହସ୍ତଶିଳ୍ପ ବିଭାଗ ମୋର ପରାମର୍ଶ ଚାହିଁବାରୁ ଶିକ୍ଷା ପ୍ରଣାଳୀର ପରିବର୍ତ୍ତନରେ କି କି ବୈଷମ୍ୟ ଉପୁଜିବ ତା'ର ସୂଚନା ଦେଇଥିଲି । ମୋ କଥାକୁ ନା ଆମ ଶିଳ୍ପୀବନ୍ଧୁ ନା ହସ୍ତଶିଳ୍ପ ବିଭାଗ ଗୁରୁତ୍ୱ ଦେଇଥିଲେ ।

Digitized by srujanika@gmail.com

ମୁଁ ପଟଚିତ୍ର ସଂପର୍କରେ ଗବେଷଣା କରୁଥିବାବେଳେ ତା'ର ବିବିଧତା ଓ ସମ୍ଭାବନାକୁ ନେଇ ସଚେତନ ଥିଲି । ଓଡ଼ିଶାର ପଟ କାରିଗରମାନେ ଭିତ୍ତିଚିତ୍ର ଓ ପୁରୁଣା ତାଳପତ୍ରପୋଥି ଚିତ୍ରର ପ୍ରାଣ ପ୍ରାଚୁର୍ଯ୍ୟ ରୂପମଣ୍ଡନକୁ ନେଇ ସେତେଟା ସଚେତନ ନଥିଲେ । ଡିଜାଇନ୍ ଓ ତାଲିମ କେନ୍ଦ୍ରର ଶିକ୍ଷକ ବିନୋଦ ମହାରଣା ଥରେ ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିରର ଭିତିଚିତ୍ରଗୁଡ଼ିକୁ ଅନୁଧ୍ୟାନ କରି ଫେରି ଆସିଲା ପରେ ତାଙ୍କ ଅଙ୍କନ ଶୈଳୀରେ ପରିବର୍ତ୍ତନ ମୁଁ ଲକ୍ଷ୍ୟ କରିଛି । ତା'ପରଠାରୁ ବିନୋଦଙ୍କ ଅନେକ ଛାତ୍ରଛାତ୍ରୀ ବୁଗୁଡ଼ା ଶୈଳୀର ନକଲ କରିବା ଆରମ୍ଭ କଲେ । ପଟଚିତ୍ରର ବିକାଶ ଓ ପୁନର୍ବିନ୍ୟାସକୁ ନେଇ ମୁଁ ସଦା ଚିନ୍ତିତ ଥିଲି । ଏଣୁ ଆମ କଲେଜରେ ପଟଚିତ୍ର ଶିକ୍ଷା ଦେବା ପାଇଁ ଜଣେ ଅଧ୍ୟାପକର ନିଯୁକ୍ତିକୁ ନେଇ ପରକଳ୍ପନା କରିଥିଲି । ଏହା କାହିଁକି ସଫଳ ହୋଇପାରିଲା ନାହିଁ ସେକଥା ମୁଁ ଅନ୍ୟତ୍ର ଉଲ୍ଲେଖ କରିଛି । ମୋର ବ୍ୟକ୍ତିଗତ ଆଧୁନିକ ଚିତ୍ରଶୈଳୀରେ ପଟଚିତ୍ରର ବର୍ଣ୍ଣସମ୍ଭାର ଓ ରେଖାକୁ ପ୍ରାଧାନ୍ୟ ଦେଇଆସିଛି । ମୋ ବନ୍ଧୁ ଯତୀନ ଦାସ ଓଡ଼ିଶାର ପଟଚିତ୍ର ଦ୍ୱାରା ପ୍ରଭାବିତ ବୋଲି କେବଳ ତାଙ୍କର ଓଡ଼ିଆ ଅସ୍ମିତାକୁ ଦୃଢ଼ କରିବାକୁ ସିନା ଉଚ୍ଚସ୍ୱରରେ ପାଟି କରୁଛନ୍ତି, ତାଙ୍କ ଚିତ୍ରରେ କିନ୍ତୁ ପଟଚିତ୍ରର ଲେଶମାତ୍ର ଗନ୍ଧ ନାହିଁ ।

ଏସବୁ କାରଣରୁ ପଟଚିତ୍ରର ବିଭିନ୍ନ ସମସ୍ୟାର ସମାଧାନକୁ ନେଇ କଲେଜରେ ଗୋଟିଏ କର୍ମଶାଳାର ଆୟୋଜନ କରିବା ପାଇଁ ମୁଁ ବରାବର ପ୍ରୟାସ କରି ଆସୁଥିଲି । ମୋର ପ୍ରସ୍ତାବକୁ ସଂସ୍କୃତି ସଚିବ ରାଜ କିଶୋର ଭୁଜବଳ ସହୃଦୟତାର ସହିତ ବିଚାର କରି ପଞ୍ଚସ୍ତରି ହଜାର ଟଙ୍କାର ବଜେଟ୍ ଅନୁମୋଦନ କଲେ । ଆମର ଲକ୍ଷ୍ୟ ହେଲା ଯେ ପଟଚିତ୍ରର ନୂତନ ବିଷୟବସ୍ତୁ, ତା'ର ସ୍ୱରୂପ ଓ ବର୍ଣ୍ଣବିନ୍ୟାସ ସ୍ଥିର କରାଯିବ । ପଟଚିତ୍ରରେ ଆଗ୍ରହୀ ଆଧୁନିକ କଳା ଶିକ୍ଷା କରୁଥିବା ଛାତ୍ରଛାତ୍ରୀମାନେ ପାରମ୍ପରିକ ପଟକାରିଗରଙ୍କ ସହିତ ଏକାଠି ବସି କାମ କରିବେ । ତିନିମାସ ଏହି ପ୍ରୋଜେକ୍ଟ କଲେଜରେ ଚାଲିବ ଏବଂ ଶେଷରେ ଦିଲ୍ଲୀଠାରେ ଏହି ଚିତ୍ର ସବୁକୁ ନେଇ ଗୋଟିଏ ପ୍ରଦର୍ଶନୀ ଅନୁଷ୍ଠିତ ହେବ । ଏହି ଉପଲକ୍ଷେ କିଛି ନୂଆଚିତ୍ର ଥାଇ ଗୋଟିଏ ଛୋଟିଆ ପୁସ୍ତିକା ମଧ୍ୟ ପ୍ରକାଶ ପାଇବ ।

ଏହି କର୍ମଶାଳା ପାଇଁ କଲେଜରେ ଗୋଟିଏ ବଖରା ନିର୍ଦ୍ଦିଷ୍ଟ କରାଗଲା । ରଘୁରାଜପୁରରୁ ଚିତ୍ରକର ପୁରୁଷୋତ୍ତମ ମହାପାତ୍ର ଓ ପୁରୀରୁ ନାରାୟଣ ମହାରଣାଙ୍କୁ ଏହି ପ୍ରୋଜେକ୍ଟର ନିଯୁକ୍ତି ଦିଆଗଲା । ମୁଁ ସ୍ଲାଇଡ୍ସ୍ ମାଧ୍ୟମରେ ବିଭିନ୍ନ ପଟଚିତ୍ର, ଭିତ୍ତିଚିତ୍ର ଓ ତାଳପତ୍ରପୋଥିର ଚିତ୍ର ଦେଖାଇ ସେମାନଙ୍କୁ ବୁଝେଇବା ପାଇଁ ଚେଷ୍ଟାକଲି ଯେ ଏହି ତିନୋଟି ବିଭାଗରେ ଯେଉଁ ଚିତ୍ରଗୁଡ଼ିକ ଆଦୌ ସାଧାରଣ ଦର୍ଶକଙ୍କ ନଜରକୁ ଆସିନାହିଁ, ସେଗୁଡ଼ିକର ପ୍ରଥମେ ବ୍ୟବହାର କରାଯାଉ । ଦ୍ୱିତୀୟତଃ ଏହି ତିନୋଟି ବିଭାଗ ମଧ୍ୟରେ

Digitized by srujanika@gmail.com

ଦେଣନେଣର ଅଭାବ, ସେହି ଅଭାବକୁ ପୂରଣ କରାଯାଉ । କହିବାକୁ ଗଲେ ଯଦିଓ ଭିତ୍ତିଚିତ୍ର ଓ ପଟଚିତ୍ର ପଟକାରିଗରଙ୍କ ଶିଳ୍ପକାମ ଏକାଭଳି ତଥାପି ଭିତ୍ତିଚିତ୍ରର କଥନିକାରେ ସେମାନେ ଯେଉଁ ସ୍ୱାଧୀନତା ପାଇଛନ୍ତି, ପଟଚିତ୍ରରେ ତାହା ସେମାନଙ୍କୁ ଲଭ୍ୟ ହୋଇନାହିଁ । ଏଣେ ପଟଚିତ୍ର ଓ ପୋଥିଚିତ୍ରରେ ଯେଉଁ ଭିନ୍ନତା ଦେଖାଯାଏ ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୋଥିଚିତ୍ରଗୁଡ଼ିକ ମୂଳତଃ କବି, ଲେଖକ ଓ ଅଣପାରମ୍ପରିକ ଶିଳ୍ପୀଙ୍କର କାମ । ଏଣୁ ଏଥିରେ ସୃଜନଶକ୍ତିର ପରାକାଷ୍ଠା ବେଶି । ସେମାନେ ବିଷୟକ୍ରମର ଯେଭଳି ରୂପବିନ୍ୟାସ କରିଛନ୍ତି ତାହା ବାସ୍ତବିକ ସୃଜନସ୍ପର୍ଦ୍ଧାର ପରିଚୟ ଦିଏ । ପଟଚିତ୍ରକରଙ୍କୁ ସାଧାରଣ ଭାବେ ମୋର କହିବାର ଥିଲା ଯେ ସେମାନେ ନିଜ ନିଜର ଛୋଟିଆ କୋଠରୀ ଭିତରୁ ବାହାରି ଆସି ଅନ୍ୟ ପାରମ୍ପରିକ ଚିତ୍ରବିଭବ ଭିତରେ କ'ଣ ମୌଳିକତା ଅଛି ତାକୁ ଗ୍ରହଣ କରନ୍ତୁ । ତା'ହେଲେ ସେମାନଙ୍କର ଚିତ୍ରରଚନା ଶୈଳୀ ପରମ୍ପରାର ଗଡ୍ଡାଳିକା ପ୍ରଭାବରୁ ମୁକ୍ତ ହେବ । ଆଜିଯାଏଁ ପଟଚିତ୍ରରେ ଯେଉଁସବୁ ପୌରାଣିକ ଓ ଧାର୍ମିକ ବିଷୟର ପ୍ରାଧାନ୍ୟ ଅଛି ତାକୁ ପଛରେ ପକେଇ କିଛି ନୂତନ ବିଷୟର ରଚନାରେ ମନୋନିବେଶ କଲେ ପଟଚିତ୍ର ପୁନର୍ଜନ୍ମ ପାଇଲା ବୋଲି ବିବେଚିତ ହେବ ।

ମୁଁ ପଟକାରିଗରଙ୍କୁ କୋଡଟି ନୂଆ ବିଷୟ ଆଙ୍କିବାକୁ ଦେଲି । ସେଗୁଡ଼ିକ ହେଲା ପାହାଡ଼, ପର୍ବତ, ଜଳାଶୟ, ବିଭିନ୍ନ ବନ୍ୟଜନ୍ତୁଙ୍କ ସଂଗୋଷ୍ଠୀ ଯଥା ମୃଗଯୂଥୀ ହାତୀପଲ, ମାଙ୍କଡ଼ଦଳ, ବିଭିନ୍ନ ଗଛର ସମାହାର, ପକ୍ଷୀକୁଳ ପ୍ରଭୃତି । ମୁଁ ମଣିଷମାନଙ୍କ ଚିତ୍ର ଏବଂ ଧାର୍ମିକ ବିଷୟର ବିନ୍ୟାସ ଉପରେ ଗୁରୁତ୍ୱ ଦେଲି ନାହିଁ । ଏଗୁଡ଼ିକୁ ମୁଁ ସିନା ଆପାତତଃ ନୂଆ କହୁଚି, କିନ୍ତୁ ଏସବୁ ତାଳପତ୍ର ପୋଥିରେ ଅଙ୍କନ କରାଯାଇଥିବା ଏବଂ ଏଯାଏଁ ପଟକାରିଗରଙ୍କ ଦ୍ୱାରା ଅବହେଳିତ ରହିଥିବା ପାରମ୍ପରିକ ଚିତ୍ରସମୂହ ।

ଏଭଳି ଏକ ପ୍ରଚେଷ୍ଟା ଫଳରେ ଆମେ ଯେଉଁ ଚିତ୍ରଗୁଡ଼ିକ ପାଇଲୁ ତାହା ସଂପୂର୍ଣ୍ଣ ନୂଆ ମନେହେଲା । ପଟି ତିଆରିବାରେ ସମୟ ସାପେକ୍ଷ ହେତୁ ଏବଂ ପରିବେଶ ଅନୁକୂଳ ନଥିବାରୁ ଆମେ ଟସର କନାକୁ ପ୍ଲାଇ ବୋର୍ଡ୍ ଉପରେ ମଢ଼େଇ ତାରି ଉପରେ ଚିତ୍ର କଲୁ । ରଂଗ ବ୍ୟବହାରରେ ସଂଯମ ଆଣିବା ପାଇଁ ମୁଁ ଚିତ୍ରକାରମାନଙ୍କୁ ପ୍ରବର୍ତ୍ତାଇଲି । ଶାଗୁଆ, ଆଚୁରଙ୍ଗ, ହାଲୁକା ନୀଳ, ଜହ୍ନି ଫୁଲିଆ ହଳଦିଆ ରଙ୍ଗ ଚିତ୍ରରେ ବ୍ୟବହାରର ଆବଶ୍ୟକ ନାହିଁ ଏବଂ ଏହି ରଙ୍ଗ ବ୍ୟବହାର ଫଳରେ ପଟି ଗୁଡ଼ିକରେ ଶସ୍ତା କ୍ୟାଲେଣ୍ଡରର ପ୍ରଭାବ ପଶିଆସେ ବୋଲି ବିଶ୍ୱାସ ଦେଲି । ଏବେ ନିଜେ କାରିଗରମାନେ ବୁଝିଗଲେ ଯେ ଡିଜାଇନ୍‌ର ମହତ୍ୱ କ'ଣ । ଅଯଥା ଅଳଂକରଣକୁ କମେଇ ଦେଲେ ଚିତ୍ର ଭିତରେ କିଭଳି ଦମ୍ଭ ଆସିଯାଏ ତାହା ସେମାନେ ଦେଖିଲେ । ଆମ କଲେଜର ଛାତ୍ରଛାତ୍ରୀମାନେ

Digitized by srujanika@gmail.com

ମଧ୍ୟ ଉପଲବ୍ଧ କଲେ ଯେ କିଭଳି ଓଡ଼ିଶାର ଅବହେଳିତ ପଟଚିତ୍ରଗୁଡ଼ିକୁ ଜୀବନ୍ୟାସ ଦିଆଯାଇପାରେ ।

ଆମ କଲେଜରେ ଏବଂ ଦିଲ୍ଲୀର ଓଡ଼ିଶା ଭବନରେ ଏହି ନୂତନ ପଟଚିତ୍ର ଗୁଡ଼ିକର ପ୍ରଦର୍ଶନୀ ଆୟୋଜିତ ହେଲା ଓ ଦର୍ଶକମାନେ ଏଗୁଡ଼ିକ ଦେଖି ମୋତେ ପ୍ରଶ୍ନ କଲେ, ''ଏଗୁଡ଼ିକ କ'ଣ ପଟଚିତ୍ର ?'' ''ସେମାନଙ୍କୁ ମୋର ସରଳ କିନ୍ତୁ ଓଲଟା ପ୍ରଶ୍ନ ଥିଲା, ''ଆପଣମାନେ ନିଜେ କୁହନ୍ତୁ ଏଗୁଡ଼ିକ ଓଡ଼ିଶାର ପଟଚିତ୍ର କି ନୁହେଁ  ଏଥିରେ ବ୍ୟବହୃତ ରୂପକଳ୍ପଗୁଡ଼ିକ ମଧ୍ୟରେ କେଉଁଟି ପାରମ୍ପରିକ ନୁହେଁ ଏହି ଚିତ୍ରଗୁଡ଼ିକରେ ପରମ୍ପରାକୁ ନୂତନ ଢଙ୍ଗରେ ସଜାଇ ଦିଆଯାଇଥିଲା । ଏଣୁ ସବୁଗୁଡ଼ିକ ନୂଆ ନୂଆ ଲାଗୁଥିଲା । ପ୍ରୋଜେକ୍ଟ୍ ପଟଚିତ୍ରର ସୁଦୂର ପ୍ରସାରୀ ପ୍ରଭାବ ଥିଲା । ଆମ କଲେଜରେ ଯେଉଁମାନେ ଆଧୁନିକ କଳା ଭିତରେ ଓଡ଼ିଆ ଅସ୍ମିତା ଆଣିବାକୁ ଚିନ୍ତା କରୁଥିଲେ, ଏହି ଚିତ୍ରଗୁଡ଼ିକ ସେମାନଙ୍କୁ ନୂତନ ଖୋରାକ ଯୋଗାଇ ଦେଲା । ଅଧୁନା କୃଷି ବିଶ୍ୱ ବିଦ୍ୟାଳୟରେ ଏହି ପ୍ରୋଜେକ୍ଟ୍‌ରେ ଅନୁସୃତ ଧାରାରେ ଗୋଟିଏ ପର୍ବତର ଚିତ୍ର ଏବଂ ବିଜୁ ପଟ୍ଟନାୟକ ବିମାନ ବନ୍ଦରର ନୂତନ ଡୋମେଷ୍ଟିକ୍ ଟର୍ମିନାଲରେ ବୋଇତ ବନ୍ଦାଣ ଓ ରଥଯାତ୍ରା ଚିତ୍ର ପ୍ରଦର୍ଶିତ ହୋଇଛି । ପ୍ରୋଜେକ୍ଟ୍ ପଟଚିତ୍ରର ଅନେକ ଛବି ଭୁବନେଶ୍ୱର ରାଜଭବନରେ ମଧ୍ୟ ପ୍ରଦର୍ଶିତ ।

Digitized by srujanika@gmail.com

# ୬୪. ପର୍ଯ୍ୟଟନ ପୁସ୍ତିକା

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପ୍ରଦର୍ଶନୀ ଗ୍ୟାଲେରୀ ଓ ପ୍ରଶାସନ ବ୍ୟବସ୍ଥାରେ ଉନ୍ନତି ଆଣିବା ପାଇଁ ସଂସ୍କୃତି ଓ ପର୍ଯ୍ୟଟନ ସଚିବ ରାଜକିଶୋର ଭୁଜବଳ ବିଭାଗୀୟ ବ୍ୟୟ ଅଟକଳକୁ ବିଚାରକୁ ନେଇ ଗୋଟିଏ ସାହସିକ ପଦକ୍ଷେପ ଗ୍ରହଣ କରିଥିଲେ । ପର୍ଯ୍ୟଟନ ବିଭାଗର ବଜେଟରୁ ପନ୍ଦରଲକ୍ଷଟଙ୍କା ସଂସ୍କୃତି ବିଭାଗକୁ ଅନୁଦାନ ଦେଇ ତିନୋଟି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେବାକୁ କହିଥିଲେ । ପ୍ରଥମ ପଦକ୍ଷେପ ହେଲା ସଂଗ୍ରହାଳୟରେ ବୟନ କଳା (ଟେକ୍ସଟାଇଲ୍)ର ଗୋଟିଏ ସ୍ୱତନ୍ତ୍ର ଗ୍ୟାଲେରୀ, ଦ୍ୱିତୀୟଟି ହେଲା ସଂଗ୍ରହାଳୟ ବଗିଚାର ଉନ୍ନତି, ତୃତୀୟ ପଦକ୍ଷେପ ହେଲା ପର୍ଯ୍ୟଟନ ବିଭାଗ ପାଇଁ ତିନୋଟି ପୁସ୍ତିକାର ପ୍ରକାଶନ । ଏହି ଟଙ୍କା ବରାଦ କରିବାର କିଛିଦିନ ପରେ ରାଜକିଶୋର ଭୁଜବଳଙ୍କ ଅନ୍ୟ ବିଭାଗକୁ ବଦଳି ହୋଇଗଲା । ଏହାକୁ ଗୋଟିଏ ମୌକା ଭାବି ସଂଗ୍ରହାଳୟର ଅଧୀକ୍ଷକ ହରିଶ୍ଚନ୍ଦ୍ର ଦାସ ବୟନ କଳାର ଗ୍ୟାଲେରୀ ପାଇଁ ଯଥେଷ୍ଟ ଆଗ୍ରହ ଦେଖାଇଲେ ନାହିଁ । ବୟନ କଳା ଓଡ଼ିଶାର ଅମୂଲ୍ୟ ସଂପଦ ଏବଂ ଏହାର ପୁରୁଣା ଡିଜାଇନ ଗୁଡ଼ିକର ନଜିର ସଂଗ୍ରହାଳୟରେ ପ୍ରଦର୍ଶିତ ହେବା କଥା । କିନ୍ତୁ ଏଭଳି ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସେତେବେଳେ ତ କାର୍ଯ୍ୟକାରୀ ହୋଇପାରିଲା ନାହିଁ ଆଜିଯାଏ ବି ହୋଇପାରି ନାହିଁ । ଏବେ ଶୁଣିବାକୁ ମିଳୁଛି ଓଡ଼ିଶାରେ କୁଆଡ଼େ ଗୋଟିଏ ଟେକ୍ସଟାଇଲ୍ ମ୍ୟୁଜିୟମ୍ ହେବ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଅଧୀକ୍ଷକ ମହାଶୟ ଗ୍ୟାଲେରୀ ପାଇଁ ଉଦ୍ଦିଷ୍ଟ ହେଇଥିବା ଅର୍ଥ ସଂଗ୍ରହାଳୟର ମୁଖ୍ୟଦ୍ୱାର, କବାଟ ଏବଂ ଏଭଳି କିଛି ଅପେକ୍ଷାକୃତ ଅଦରକାରୀ କାମରେ ବ୍ୟୟକଲେ । ଅବଶ୍ୟ ଯୁକ୍ତିଛଳରେ କୁହାଯାଇପାରେ ସଂଗ୍ରହଳାୟର ପ୍ରତ୍ୟେକଟି କାର୍ଯ୍ୟ ଦରକାରୀ ଓ କରଣୀୟ ।

ତିନୋଟି ପର୍ଯ୍ୟଟନ ପୁସ୍ତିକା ପ୍ରକାଶ କରିବା ପାଇଁ ଆମ କଲେଜ ପାଞ୍ଚଲକ୍ଷ ଟଙ୍କା ଅନୁଦାନ ପାଇଲା । ପ୍ରଥମଟି ଓଡ଼ିଶାର ଚିତ୍ରକଳା, ଦ୍ୱିତୀୟଟି ଓଡ଼ିଶାର ମନ୍ଦିର ତ ତୃତୀୟଟି ଓଡ଼ିଶାର ଆଦିବାସୀ । ଏହି ପୁସ୍ତିକାଗୁଡ଼ିକର ପାଠ ରଚନା କରିବା, ଫଟୋ ସଂଗ୍ରହ କରିବା ଏବଂ ଡିଜାଇନ୍ କରିବାରେ ଆମର ପୂର୍ଣ୍ଣ ସ୍ୱାଧୀନତା ଥିଲା । ଚିତ୍ରକଳା ପୁସ୍ତିକାର ପାଠ ପ୍ରସ୍ତୁତି ମୁଁ ନିଜ ପାଇଁ ରଖି ମନ୍ଦିର ପୁସ୍ତିକା ପ୍ରତ୍ନତତ୍ତ୍ୱ ବିଭାଗର କ୍ୟୁରେଟର୍

Digitized by srujanika@gmail.com

ବିଜୟ କୁମାର ରଥ ଓ ଆଦିବାସୀ ଜନଜୀବନ ଓ କଳାର ପୁସ୍ତିକା ହରିଶ୍ଚନ୍ଦ୍ର ଦାସଙ୍କ ଦାୟିତ୍ୱରେ ସମର୍ପି ଦେଇଥିଲି । ସେମାନେ ପୁସ୍ତିକାର କଳେବରକୁ ବିଚାରକୁ ନେଇ ପାଠ ଲେଖିବେ । ପ୍ରତି ପୁସ୍ତିକାର ପୃଷ୍ଠା ସଂଖ୍ୟା ହେବ ଛତିଶି । ଏହି ପୁସ୍ତିକା ପାଇଁ ଓଡ଼ିଶାର ଭିତ୍ତିଚିତ୍ର ଉପରେ ମୁଁ ଛୋଟିଆ ପ୍ରବନ୍ଧଟିଏ ଲେଖିଥିଲି ଯେଉଁଥିରେ ପଶ୍ଚିମ ଓଡ଼ିଶାର ବିକ୍ରମଖୋଳ, ଉଲାପଗଡ଼, ମାଣିକମଡ଼ା ଉଷାକୋଠୀର ପ୍ରାଗୈତିହାସିକ ଗୁମ୍ଫାଚିତ୍ରଠାରୁ ଆରମ୍ଭ କରି ସୀତାବିଞ୍ଜି, ବିରଞ୍ଚିନାରାୟଣ ମନ୍ଦିର, ବଡ଼ଓଡ଼ିଆ ମଠ, ପୁରୀ ଜଗନ୍ନାଥ ମନ୍ଦିର, ଜୟପୁରର ଶ୍ରୀକାଳିକା ମନ୍ଦିର, ଧରାକୋଟର ଜଗନ୍ନାଥ ମନ୍ଦିରର ଭିତ୍ତିଚିତ୍ର ସହିତ ଗାଁ ଗହଳର ଝୋଟିଚିତା ସଂପର୍କରେ ମଧ ଆଲୋଚନା କରିଥିଲି । ମୁଁ ବନ୍ଧୁମାନଙ୍କୁ ଆଗରୁ ସତର୍କ କରିଦେଇଥିଲି ଯେ ଉପସ୍ଥାପନା ଶୈଳୀ ସରଳ ଅଥଚ ରୁଚିପୂର୍ଣ୍ଣ ହେବ, ଭାଷା କଠିନ କିମ୍ବା ବକ୍ରିଳ ହେବ ନାହିଁ କିନ୍ତୁ ଭାବଗମ୍ଭୀର ହେବ । ବିଜୟ କୁମାର ରଥ ଓ ହରିଶ୍ଚନ୍ଦ୍ର ଦାସ ନିଜ ନିଜ ବିଷୟରେ ପାରଙ୍ଗମ । ସେମାନେ ପଣ୍ଡିତ ବ୍ୟକ୍ତି, ତଥାପି ପର୍ଯ୍ୟଟନୀୟ ରୁଚିକୁ ବିଚାରକୁ ନେଇ ସେମାନଙ୍କୁ ଭାଷା ଓ ଶୈଳୀରେ ପରିବର୍ତ୍ତନ କରିବାକୁ ହେଲା । ବିଜୟ ରଥ ଖଣ୍ଡଗିରି ଓ ଉଦୟଗିରି ଜୈନଗୁମ୍ଫାରୁ ଆଲୋଚନା ଆରମ୍ଭ କରି ଓଡ଼ିଶାର ପ୍ରମୁଖ ମନ୍ଦିର ସମୂହ ଯଥା - ଭୁବନେଶ୍ୱରର ପରଶୁରାମେଶ୍ୱର, ମୁକ୍ତେଶ୍ୱର, ବୋଇତାଳ, ସିଦ୍ଧେଶ୍ୱର, ଭାସ୍କରେଶ୍ୱର, ବ୍ରହ୍ମେଶ୍ୱର, ମେଘେଶ୍ୱର, ଲିଙ୍ଗରାଜ ମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିର ପାଖରେ ଆଲୋଚନାକୁ ସାରିଲେ । ଏଥିରେ ମଝିମଝିରେ ଭାସ୍କର୍ଯ୍ୟ ସଂପର୍କରେ ମଧ୍ୟ ଉଲ୍ଲେଖ ରହିଲା । ସେଭଳି ଡକ୍ଟର ଦାସ ଓଡ଼ିଶାର ମୁଖ୍ୟ ଆଦିବାସୀ ସଂପ୍ରଦାୟ ଯଥା ବୋଣ୍ଡା, ସାନ୍ତାଳ, କନ୍ଧ, ଗଦବା, ପରଜା ଓ ଜୁଆଙ୍ଗମାନଙ୍କ ସଂପର୍କରେ ତାଙ୍କ ପ୍ରବନ୍ଧରେ ଚର୍ଚ୍ଚା କଲେ । ଏହି ଚର୍ଚ୍ଚା ଭିତରେ ରହିଲା ସେମାନଙ୍କ ଜୀବନ ଶୈଳୀ ଓ ସେମାନଙ୍କ ବିଭିନ୍ନ କଳାତ୍ମକତାର ପରିପ୍ରକାଶ; ସଉରାଙ୍କ ଇଡ୍‌ତାଲ୍, କନ୍ଧଙ୍କ ହାତବୁଣା ଚାଦର, ଜୁଆଙ୍ଗଙ୍କ କାଠଖୋଦାଇ ଇତ୍ୟାଦି । ଏହି ପୁସ୍ତିକାଗୁଡ଼ିକ ପାଇଁ ଟ୍ରାନ୍‌ସ୍‌ପରନ୍‌ସି ଯୋଗାଇ ଦେଇଥିଲେ ଦୁର୍ଗାଚରଣ ପଣ୍ଡା ଓ ଶ୍ରୀମୟ କର ।

ଓଡ଼ିଶୀ ଚିତ୍ରକଳା ଉପରେ ପ୍ରସ୍ତୁତ ପୁସ୍ତିକାର ଅଧିକାଂଶ ଚିତ୍ର ମୋ ଗବେଷଣା ବେଳର ଉଠାଇଥିବା ଫଟୋଗ୍ରାଫ୍ । ପ୍ରାଗୈତିହାସିକ ଗୁମ୍ଫା ଚିତ୍ରଗୁଡ଼ିକୁ ମ୍ୟୁଜିୟମ୍‌ରେ କ୍ୟୁରେଟର୍ ଥିଲାବେଳେ ଆଖିନକଲ କରି ଆଣିଥିବା ଫେକ୍‌ସିମଲ୍ କପିରୁ ବ୍ୟବହାର କରାଯାଇଥିଲା । ଗୁହାର ଚିତ୍ରଗୁଡ଼ିକ ବର୍ତ୍ତମାନ ନିଶ୍ଚିହ୍ନ ହୋଇଯାଇଥିବା ଫଳରେ ଏହି ନକଲ ଚିତ୍ରଗୁଡ଼ିକର ମହତ୍ତ୍ୱ ବଢ଼ିଯାଇଛି । ଏହି ପୁସ୍ତିକା ଗୁଡ଼ିକର ଶେଷ ପୃଷ୍ଠାରେ କେଉଁ ଭିତ୍ତିଚିତ୍ର କେଉଁ ମନ୍ଦିରର ଏବଂ ସେହି ମନ୍ଦିରର ଆନୁମାନିକ ସମୟ କେତେ ଓ ତାହା

Digitized by srujanika@gmail.com

କେଉଁଠାରେ ଅବସ୍ଥିତ ତା'ର ଏକ ଚିଠା ଦିଆଯାଇଥିଲା । ସେଭଳି ଡକ୍ଟର ରଥ ଆଲୋଚିତ ମନ୍ଦିରମାନଙ୍କର ଚିହ୍ନଟ ସହିତ ସେଗୁଡ଼ିକର ସ୍ଥାନ ଓ କାଳର ଏକ ପ୍ରାମାଣିକ ତାଲିକା ବୁଦ୍ଧ, ଜୈନ ଓ ହିନ୍ଦୁ କୀର୍ତ୍ତି ପ୍ରକାରଭେଦରେ ପ୍ରସ୍ତୁତ କରିଥିଲେ । ଅନୁରୂପ ଡକ୍ଟର ଦାସ ମଧ୍ୟ ଓଡ଼ିଶାର ପ୍ରମୁଖ ଆଦିବାସୀମାନଙ୍କର ସଂକ୍ଷିପ୍ତ ପରିଚୟ ଓ ବିବରଣ ଥାଇ ତାଲିକାଟିଏ ପ୍ରସ୍ତୁତ କରିଥିଲେ । ମୋ ପୁସ୍ତିକାର ନାଁ ଥିଲା ''ଓଡ଼ିଶାର ଭିତ୍ତିଚିତ୍ର'', ବିଜୟ ରଥ ତାଙ୍କ ପୁସ୍ତିକାକୁ ନାମିତ କରିଥିଲେ ''ଓଡ଼ିଶା : 'ପରମ୍ପରାରେ ସ୍ଥିରୀକୃତ ଇତିହାସ'' ଏବଂ ହରିଶ୍ଚନ୍ଦ୍ର ଦାସଙ୍କ ବହିର ଶୀର୍ଷକ ଥିଲା ''ଆଦିବାସୀ ଐତିହ୍ୟ ।''

ପୁସ୍ତିକାଗୁଡ଼ିକର ପ୍ରାରମ୍ଭିକ ଡିଜାଇନ୍ କଲେଜରେ ତିଆରି ହୋଇଥିଲା । ସେତେବେଳକୁ ଭୁବନେଶ୍ୱରରେ କଲର୍ ଟ୍ରାନ୍ସପରେନ୍ସି ପ୍ରିଣ୍ଟ୍ କରିବାର ବ୍ୟବସ୍ଥା ନଥିବାରୁ ଦିଲ୍ଲୀ ଲଳିତ କଳା ଏକାଡେମୀରେ ଏଗୁଡ଼ିକର ଡିଜାଇନ୍‌କୁ ଆଉଥରେ ନବୀକରଣ କରାଗଲା । ଡିଜାଇନ୍ ଏକ ଜଟିଳ ପ୍ରକ୍ରିୟା ଏବଂ ଏଥିରେ ବହୁ ଲୋକଙ୍କ ସହାୟତାର ଆବଶ୍ୟକ । ଏବେ କମ୍ପ୍ୟୁଟରର ଅଧିକ ପ୍ରସାର ହେଇଯିବା ଫଳରେ ଡିଜାଇନ୍ କରିବା ଅପେକ୍ଷାକୃତ ସରଳ ହୋଇଗଲାଣି । ପୁଣି ଭୁବନେଶ୍ୱରରେ ବର୍ତ୍ତମାନ ଉଚ୍ଚକୋଟୀର ମୁଦ୍ରଣ ହେଇପାରୁଛି । କିନ୍ତୁ ଅଶି ଏବଂ ନବେ ଦଶକର ପ୍ରାରମ୍ଭରେ ମୁଦ୍ରଣ ପାଇଁ ମୁଖ୍ୟତଃ ଦିଲ୍ଲୀ ଉପରେ ନିର୍ଭର କରିବାକୁ ପଡ଼ିଥିଲା ଯଦିଓ ପର୍ଯ୍ୟଟନ ବିଭାଗ ପାଇଁ ପଟଚିତ୍ର ସଂକ୍ରାନ୍ତୀୟ କ୍ୟାଲେଣ୍ଡର ଓ ପୋର୍ଟଫୋଲିଓ ମୁଁ କଲିକତାରେ ଛପାଇ ଆଣିପାରିଥିଲି ।

ସରକାରୀ ମୁଦ୍ରଣ କାର୍ଯ୍ୟ ପାଇଁ ଟେଣ୍ଡର୍ ଏବଂ ନ୍ୟୂନତମ ରେଟ୍ ମଧ୍ୟ ଦରକାର । ଏସବୁ ଝାମେଲା କମେଇବା ପାଇଁ ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀ ନିର୍ଭର କରୁଥିବା ଛାପାଖାନା ଉପରେ ଭରସା ରଖିଥିଲି । ଏକାଡେମୀ ତାଙ୍କ ଦ୍ୱାରା ସ୍ଥିରୀକୃତ ପ୍ରେସ୍‌ମାନଙ୍କରୁ କୋଟେସନ୍ ସଂଗ୍ରହ କରି ସର୍ବନିମ୍ନ ଛପାଇ ମୂଲ୍ୟ ମଧ୍ୟ ଆମ ପାଇଁ ନିଧାର୍ଯ୍ୟ କରିଦେଇଥିଲେ । ମୁଁ ଏସବୁ କଥା ଏଠାରେ ଫଳେଇ କହିବାର କାରଣ ହେଲା ମୁଦ୍ରଣ କାର୍ଯ୍ୟରେ ସଂପୃକ୍ତ ସବୁପ୍ରକାର ଜଟିଳତା ଏବଂ ସେସବୁର ସମାଧାନ ପାଇଁ ଅପଚୟ ହେଉଥିବା ଶ୍ରମ, ସମୟ ଓ ଶକ୍ତି ଅଧକ୍ଷର କାର୍ଯ୍ୟପରିସୀମା ବହିର୍ଭୂତ ହୋଇଥିଲେ ମଧ୍ୟ କଲେଜର ଅଧାପକମାନେ ଓ ପିଲାମାନେ ବ୍ୟାବହାରିକ କଳା ସହିତ ସଂପୃକ୍ତ ଏ ସବୁ ବ୍ୟବସ୍ଥା ଓ ତଦ୍‌ଜନିତ ଜଂଜାଳ ସଂପର୍କରେ ସଚେତନ ରହନ୍ତୁ - ଏହାହିଁ ଥିଲା ମୋର ଉଦ୍ଦେଶ୍ୟ । ମୁଦ୍ରଣ କଳାର ମୌଳିକ ତଥ୍ୟ ନ ଜାଣି ଓଡ଼ିଶାରେ ଏଭଳି କିଛି ବୟସ୍କ ଓ ବରିଷ୍ଠ ଶିଳ୍ପୀ ଅଛନ୍ତି ଯେଉଁମାନେ ପ୍ରିଣ୍ଟିଂ ଓ ପେଣ୍ଟିଂ ମଧ୍ୟରେ ଥିବା ବୈଷୟିକ ପ୍ରଭେଦ ଜାଣିନାହାନ୍ତି । ଆମ କଛନା କଲେଜ ପାଖରେ ରହୁଥିବା ଜଣେ ଶିଳ୍ପୀବନ୍ଧୁ ଖବର କାଗଜରେ ପ୍ରକାଶିତ ଯାଦବପୁର ବିଶ୍ୱବିଦ୍ୟାଳୟର ଗୋଟିଏ ବିଜ୍ଞାପନ ନେଇ ଥରେ ମୋ ପାଖରେ

Digitized by srujanika@gmail.com

ପହଞ୍ଚିଲେ । ବିଶ୍ୱବିଦ୍ୟାଳୟର ମୁଦ୍ରଣ ବିଭାଗରେ ଗୋଟିଏ ପ୍ରାଧ୍ୟାପକ ପଦ ପୂରଣ ହେବାର ଆବଶ୍ୟକତା ଥିଲା ଏଣୁ ସେମାନେ ଚାହିଁଥିଲେ ପ୍ରିଣ୍ଟିଂରେ ଡିପ୍ଲୋମା । ସେ ଶିଳ୍ପୀ ମହାଶୟ ମୋଠାରୁ କେବଳ ଆଶ୍ୱାସନା ଚାହୁଁ ନଥିଲେ, ଚାହୁଁଥିଲେ ବିଜ୍ଞାପନରେ ପ୍ରିଣ୍ଟିଂ ଶବ୍ଦ ଯାହା ଭୁଲ୍ ଛାପା ହୋଇଛି ତାହା ପେଣ୍ଟିଂ ହେବ ବୋଲି ମୋ'ଠାରୁ ଗୋଟିଏ ସାର୍ଟିଫିକେଟ୍ । ଖଲିକୋଟ କଳା ବିଦ୍ୟାଳୟରେ ଷାଠିଏ ଓ ସତୁରି ଦଶକରେ ଅଧ୍ୟୟନ କରିଥିବା ବହୁ ଶିଳ୍ପୀଙ୍କର ଅବସ୍ଥା ଏଇଆ । ବର୍ତ୍ତମାନ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଛାତ୍ରମାନେ ମୁଦ୍ରଣକଳାରେ ପାରଙ୍ଗମ ହୋଇଗଲେଣି । ସୁବିଧାସୁଯୋଗ ଦାଣ୍ଡ ଦୁଆରେ ଆସି ଆପେ ଆପେ ପହଞ୍ଚୁ ଯାଉଚି ।

ଏହି ଛପାଛପି ଦାୟିତ୍ୱ ମୁଣ୍ଡରେ ମୁଣ୍ଡେଇ ସେଥିରେ କଲେଜର ନାମ ଉଲ୍ଲେଖ କରି ସରକାର, ଅନ୍ୟ ଶିଳ୍ପୀବନ୍ଧୁ ଓ କଳାଅନୁଷ୍ଠାନମାନଙ୍କ ପାଖରେ ବାହାଦୁରି ମାରିବା ମୋର ଅନ୍ୟତମ ଅଭିପ୍ରାୟ ଥିଲା । କଲେଜଟିଏ ନୂଆକରି ଗଢ଼ିଲାବେଳେ ଏଭଳି କରିବାର ଆବଶ୍ୟକତା ମଧ୍ୟ ଅନୁଭୂତ ହେଉଥିଲା । ଏବେ ମୋର ବଂଧୁ ଓ ସହକର୍ମୀମାନେ ହୁଏତ ଭାବୁଥିବେ କଲେଜ ପରିଚାଳନାରେ ଏସବୁ କାର୍ଯ୍ୟର ଯଥାର୍ଥତା ନଥିଲା । ମୋର ଧାରଣା ହେଉଛି ସେତେବେଳେ ଆବଶ୍ୟକତା ଥିଲା, ଏବେ ନାହିଁ ।

ଦିଲ୍ଲୀରୁ ନିଉଟେକ୍ ଫଟୋଲିଥୋଗ୍ରାଫର୍ସ୍ ପ୍ରେସ୍‌ରେ ଛପା ହୋଇ ପୁସ୍ତିକା ଗୁଡ଼ିକ ଆସି କଲେଜରେ ପହଞ୍ଚିଲା । ଅଧ୍ୟାପକ ଅଧ୍ୟାପିକାମାନେ ଖଣ୍ଡେ ଖଣ୍ଡେ ହାତରେ ଧରି ଖୁସିରେ କନକନ ହେଲେ । ପର୍ଯ୍ୟଟନ ବିଭାଗ ତଥା ସରକାର ସମସ୍ତେ କଲେଜର ଏଭଳି ଆଖିଦୃଶିଆ, ଲୋଭନୀୟ କାମରେ ପ୍ରଶଂସାମୁଖର ହୋଇଉଠିଲେ । ତା' ପରେ ପରେ ଆରମ୍ଭ ହେଇଗଲା ଅଧକ୍ଷଙ୍କର ଦୁର୍ଦ୍ଦିନ । ସରକାରୀ ନିୟମ ଅନୁସାରେ ଦିଲ୍ଲୀ ପ୍ରେସ୍‌ର ବିଲ୍‌ଟି ସରକାରଙ୍କ ଖପୁରିଆ ଛାପାଖାନା କର୍ତ୍ତୃପକ୍ଷଙ୍କ ଦ୍ୱାରା ଗୃହୀତ ହେବା ବିଧେୟ । ଏହା ଗୃହୀତ ନକରାଇ ପ୍ରେସ୍‌ର ପଇସା ପଇଠ କରିଦେଲେ ଦଣ୍ଡନୀୟ ହେବାର ବ୍ୟବସ୍ଥା ଥିଲା । ମୁଁ ଦିଲ୍ଲୀ ପ୍ରେସ୍‌ର ବିଲ୍‌ଟିକୁ ସରକାରୀ ଛାପାଖାନାକୁ ପଠାଇଲି । କିଛି ଓଡ଼ିଆ ଛାପାଖାନାର ମାଲିକମାନେ ସରକାରୀ ଛାପାଖାନାର କର୍ତ୍ତୃପକ୍ଷଙ୍କୁ ଆମ କଲେଜ ବିଲ୍‌କୁ ଅନୁମୋଦନ ନଦେବା ପାଇଁ ହୁଏତ ପ୍ରଭାବିତ କରିଥାଇ ପାରନ୍ତି । ସରକାରୀ ଛାପାଖାନା ଆମ ବିଲ୍‌ଟିକୁ ବିଭିନ୍ନ ଦିଗରୁ ତର୍ଜମା କରି ପାଞ୍ଚଲକ୍ଷଟଙ୍କାରୁ ପ୍ରାୟ ଲକ୍ଷେ ପଞ୍ଚତିରିଶ ହଜାର ଟଙ୍କା କାଟିଦେଲେ । ମୋ ମୁଣ୍ଡରେ ଚଡ଼କ ପଡ଼ିଲା । ଏବେ କରାଯାଏ କ'ଣ ? ମୁଁ ନିଜେ ଖପୁରିଆ ଛାପାଖାନାରେ ପହଞ୍ଚି ଉପନିର୍ଦ୍ଦେଶକଙ୍କୁ ଭେଟିଲି । ଉପନିର୍ଦ୍ଦେଶକ ମହାଶୟ ମୋର ପୂର୍ବରୁ ଚିହ୍ନାଲୋକ । ତଳୁ ପ୍ରମୋଶନ୍ ପାଇ ପାଇ ଶିଡ଼ିରେ ଉପରକୁ ଉଠି ଉଠି ସେ ସେଇଠି ପହଞ୍ଚିଛନ୍ତି । ତାଙ୍କର ଚରିତ୍ର ସଂହାର କରିବା

Digitized by srujanika@gmail.com

ମୋର ଉଦ୍ଦେଶ୍ୟ ନୁହେଁ । ଖପୁରିଆ ଛାପାଖାନାରେ ସରକାରୀ ଅଫିସ୍‌ମାନଙ୍କରେ ବ୍ୟବହୃତ ଫର୍ମ୍, ଓ ଷ୍ଟେସନାରୀ ଛପାଯାଏ । ସେମାନେ ଉତ୍କଳ ପ୍ରସଙ୍ଗ, ଓଡ଼ିଶା ରିଭ୍ୟୁ ଏବଂ ବିଭିନ୍ନ ଜିଲ୍ଲାର ଗେଜେଟ୍ ଛାପନ୍ତି । ସୂକ୍ଷ୍ମ କଳାତ୍ମକ ପୁସ୍ତକ ବା ପୁସ୍ତିକା  ଛାପିବାରେ ସେମାନେ ଅଭ୍ୟସ୍ତ ନୁହନ୍ତି । ସେମାନଙ୍କ ନିକଟରେ ଏଭଳି ଉଚ୍ଚମାନର ମୁଦ୍ରଣ ପାଇଁ ଯଦିଓ ଯନ୍ତ୍ରପାତି ଅଛି ତଥାପି ଆବଶ୍ୟକ ବୈଷୟିକ ଜ୍ଞାନର ଘୋର ଅଭାବ । ସେମାନେ ପର୍ଯ୍ୟଟନ ପୁସ୍ତିକାରେ ବ୍ୟବହୃତ ନନ୍‌ଗ୍ଲସ୍ ଇମ୍‌ପୋରଟେଡ୍ ଆର୍ଟ୍ ପେପରକୁ ଇଣ୍ଡିଆନ ଆର୍ଟ୍‌ପେପର୍ ଭାବେ ଦର କଷିଥିଲେ । କଲର୍ ଟ୍ରାନ୍ସ ପରେନସ୍‌ର ଖର୍ଚ୍ଚ ହିସାବକୁ ନେଇ ନଥିଲେ । ସେଇଭଳି କଲର୍ ଟ୍ରାନ୍‌ସପରନ୍‌ସି ଯେ କେତେ ବ୍ୟୟସାପେକ୍ଷ ତାହା ତାଙ୍କ ମଗଜକୁ ଧରି ନଥିଲା । ସର୍ବୋପରି ପର୍ଯ୍ୟଟନ ପୁସ୍ତିକାରେ ବ୍ୟବହୃତ ପାଞ୍ଚୋଟି କଲର୍ ଇମ୍‌ପ୍ରେସନକୁ ଚାରୋଟି ବୋଲି ସେମାନେ ହିସାବ ଯୋଡ଼ିଥିଲେ । ଉଚ୍ଚମାନର ଛାପା ପାଇଁ ରଙ୍ଗିନ ଛବି ଓ ପାଠ ଅଲଗା ଅଲଗା ଛାପିବାକୁ ହୁଏ । ବିଲ୍‌ରେ ଏଭଳି ସଂଶୋଧନ କରୁକରୁ ଲକ୍ଷେ ଟଙ୍କା ଭରଣା ହୋଇଗଲା । ଉପନିର୍ଦ୍ଦେଶକଙ୍କ କନ୍ୟା ଯିଏ ଆମର ଛାତ୍ରୀ ଥିଲା ତା' ମାଧ୍ୟମରେ ଆମ କଲେଜର ବଡ଼ବାବୁ ଚରମବାଣୀ ଶୁଣେଇବା ପାଇଁ ଯାହା ମନସ୍ଥ କରିଥିଲେ, ସେଥିରୁ ନିବୃତ୍ତ ରହିବାକୁ ହେଲା । ଉପନିର୍ଦ୍ଦେଶକଙ୍କ ସହିତ ବନ୍ଧୁତା ବଳବତ୍ତର ରହିଲା ।

Digitized by srujanika@gmail.com

# ୬୫. ଓଡ଼ିଶା କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍ : କାରୁକଳାର ପଞ୍ଜୀକରଣ

ଭୁବନେଶ୍ୱରରେ ଅବସ୍ଥାପିତ ଭାରତ ସରକାରଙ୍କ ହସ୍ତଶିଳ୍ପ ବିଭାଗରେ ହରିପ୍ରସାଦ ମିଶ୍ର ନାମଧେୟ ଜଣେ ସୁଠାମ ଓ ଉତ୍ତମ ଚରିତ୍ରର ବ୍ୟକ୍ତି ସହକାରୀ ନିର୍ଦ୍ଦେଶକ ଭାବେ ଚାକିରି କରୁଥିଲେ । ହସ୍ତଶିଳ୍ପ ସଂକ୍ରାନ୍ତୀୟ କୌଣସି ଗୋଟିଏ ପଞ୍ଜୀକରଣ କାମରେ ଆମେ ଦୁଇଜଣ ଦକ୍ଷିଣ ଓଡ଼ିଶା ଗସ୍ତରେ ଯାଇଥାଉ । ଆମର ଦୁଇତିନିଦିନ ରହଣି ଭିତରେ ଆମେ ପରସ୍ପରକୁ ଭଲପାଇ ବସିଲୁ । ମିଶ୍ରେ ମୋ ପଞ୍ଜୀକରଣ କାମରେ ସନ୍ତୋଷ ପ୍ରକାଶ କଲେ ଆଉ ମୁଁ ତାଙ୍କର ଉତ୍ସାହ ଓ ସଂପୃକ୍ତି ଦେଖି ତାଙ୍କ ପ୍ରତି ଆକର୍ଷିତ ହେଲି । ଚାରୁକଳା ସହିତ ସଂପର୍କ ମୁଁ ଭୁବନେଶ୍ୱର ଆସିବା ପରଠାରୁ ବଢ଼ିଯାଇଥିଲା । ରାଜ୍ୟ ସରକାରଙ୍କ ହସ୍ତଶିଳ୍ପ ବିଭାଗ ଓ କେନ୍ଦ୍ର ସରକାରଙ୍କ ଭୁବନେଶ୍ୱର ଶାଖା ଅଫିସ୍‌ର ବିଭିନ୍ନ କାର୍ଯ୍ୟକ୍ରମରେ ମୁଁ ଅଂଶଗ୍ରହଣ କରୁଥିଲି । ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ମାଷ୍ଟର୍ କ୍ରାଫ୍‌ଟ୍‌ସ୍‌ମ୍ୟାନ୍ ପୁରସ୍କାର ଚୟନ ସମିତିରେ ମୁଁ ବହୁବର୍ଷ ଧରି ସଭ୍ୟ ରହି କାରୁକଳାର ଗତିବିଧି ଲକ୍ଷ୍ୟ କରିଛି । ଡିଜାଇନ୍‌ର ଅଧୋଗତି ମୋତେ ବ୍ୟଥିତ କରିଛି। ରଘୁରାଜପୁରରେ କ୍ରାଫ୍‌ଟ୍‌ସ୍ ମେଳା, ବସନ୍ତ ଉତ୍ସବ ପ୍ରଭୃତିର ଆୟୋଜନ କାଳରେ କାରୁକଳା ଓ କଳାକାରଙ୍କ ପଞ୍ଜୀକରଣର ଅଭାବ ଅନୁଭବ କରିଛି । ରଘୁରାଜପୁରରେ ଗଢ଼ିଉଠିଥିବା ସମବାୟ ଭିତ୍ତିକ ରଘୁନାଥ ଚିତ୍ରକାରିଣୀ ସଂଘରେ ସେହି ଗାଁର ପ୍ରମୁଖ ଶିଳ୍ପୀମାନଙ୍କର ଫଟୋଗ୍ରାଫ୍, ସେମାନଙ୍କ ହାତଅଙ୍କା ଚିତ୍ର ଓ ଜୀବନପଞ୍ଜିକା ପ୍ରଦର୍ଶିତ କରିବା ପାଇଁ ଅନେକଥର ଚେଷ୍ଟା କରି ମଧ୍ୟ ବିଫଳ ହୋଇଛି । ମୋ ସୁଇସ୍ ବନ୍ଧୁ ଏବର୍‌ହାର୍ଡ୍ ଫିସର୍, ଓ ମୁଁ ଓଡ଼ିଶାର ଗାଁ ଗଣ୍ଡା ବୁଲି କାରୁକଳାର ପଞ୍ଜୀକରଣ କରିଛୁ ଏବଂ ତାକୁ ଆଧାର କରି ଗୋଟିଏ ନୁହେଁ ଦୁଇତିନୋଟି ପୁସ୍ତକ ପ୍ରଣୟନ କରିଛୁ । ହସ୍ତଶିଳ୍ପ, ପଟଚିତ୍ରକାରିଗର ଓ ପୋଥିଚିତ୍ରକୁ ଆଧାର କରି ବ୍ୟକ୍ତିଗତ ଭାବେ ଗବେଷଣା କରି ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପାଇବା ସହ ମୁଁ ବହି ମଧ୍ୟ ପ୍ରକାଶ କରିଛି । ଏସବୁ ଘଟଣା ଓ ପରିଚର୍ଚ୍ଚାରୁ କାରୁକଳା ସହିତ ମୋ ସଂପର୍କ ଜାଣିହେବ । ଉଭୟ ମାନସିକ ଓ କାୟିକ ସ୍ତରରେ ମୁଁ ଓଡ଼ିଶାର ହସ୍ତଶିଳ୍ପ ଓ କାରିଗରଙ୍କ ସହିତ ଅନେକ ଦିନରୁ ଏକାତ୍ମ ।

ମୁଁ ଏଭଳି ଏକ ପୃଷ୍ଠଭୂମିରେ ନିଜକୁ ଅବସ୍ଥାପିତ କରିଥିବାବେଳେ ହସ୍ତଶିଳ୍ପର ସହକାରୀ ନିର୍ଦ୍ଦେଶକ ଯେତେବେଳେ ଓଡ଼ିଶାରେ ଗୋଟିଏ କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍ ଗଠନ କରିବା କଥା କହିଲେ, ମୁଁ ଭାବିଲି କାଉନ୍‌ସିଲ୍ ମାଧ୍ୟମରେ କାରୁଶିଳ୍ପର କାରିଗରଙ୍କ ପାଇଁ

Digitized by srujanika@gmail.com

କିଛି କରିବାର ଏହା ଏକ ଅପୂର୍ବ ସୁଯୋଗ । ମିଶ୍ରେ କଲିକତାରେ ବହୁଦିନରୁ ପ୍ରତିଷ୍ଠିତ କାଉନ୍‌ସିଲ୍‌ର ସମ୍ବିଧାନ ଇତ୍ୟାଦି ରୁବି ପାଲ ଚୌଧୁରୀଙ୍କଠାରୁ ଆଣି ମୋତେ ଦେଲେ । ମୁଁ ମୋର ବନ୍ଧୁମାନଙ୍କ ସହ ପରାମର୍ଶ କରି କଲେଜରେ ଗୋଟିଏ ସଭା ଡକାଇଲି ଓ ଅନେକ ବିଚାର ବିମର୍ଶ ପରେ ଓଡ଼ିଶା କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍ ବା ଓଡ଼ିଶା କାରୁଶିଳ୍ପ ସଂଘ ୧୯୮୭ ମସିହାରେ ଗଠିତ ହେଲା । କାଉନ୍‌ସିଲ୍ ପାଇଁ ଲୋଗୋ ରହିଲା ବରଗଡ଼ର ମାଟି କାରିଗର ଗୌରୀ ରଣାଙ୍କ ଟେରାକୋଟା ଡୋଲି ଏବଂ ମାସ୍‌କଟ୍ ଭାବେ ଗୋଟିଏ ପିତଳଦୀପର ଛାମୁଆ-ପଟ-ରୂପ ବ୍ୟବହାର କରିବା ପାଇଁ ସ୍ଥିର ହେଲା । ବାବୁଲା ସେନାପତିଙ୍କ ଦ୍ୱାରା ସମସ୍ତ ଷ୍ଟେସନାରୀ କାଗଜ ପତ୍ର ସିଲ୍‌କ୍ ସ୍କ୍ରୀନ୍ ମାଧ୍ୟମରେ ପ୍ରସ୍ତୁତ କରାଗଲା । ଅନ୍ତତଃ ଓଡ଼ିଶାର ହସ୍ତଶିଳ୍ପ ପରିଚାଳନା ଓ ପ୍ରଶାସନ ଦପ୍ତରମାନଙ୍କର ହସ୍ତ ଶିଳ୍ପସଂସ୍ଥାର ଏତେ ଚମତ୍କାର ଷ୍ଟେସନାରୀ ଆଗରୁ କେବେ ପ୍ରସ୍ତୁତ ହୋଇ ନଥିଲା ।

କାଉନ୍‌ସିଲ୍‌ର ସମ୍ବିଧାନ ବ୍ୟବସ୍ଥା ଅନୁଯାୟୀ ବିଶିଷ୍ଟ ଐତିହାସିକ ପ୍ରଫେସର୍ ମନ୍ମଥନାଥ ଦାସ ଏହାର ଅଧ୍ୟକ୍ଷ ରହିଲେ । ଉପାଧ୍ୟକ୍ଷ ଭାବେ ନୃତ୍ୟଶିଳ୍ପୀ ସଂଯୁକ୍ତା ପାଣିଗ୍ରାହୀ, ପ୍ରଫେସର୍ କରୁଣାସାଗର ବେହେରା, ଡକ୍ଟର ବିଜୟ କୁମାର ରଥ ଓ ହରିପ୍ରସାଦ ମିଶ୍ର ମନୋନୀତ ହେଲେ । ମୁଁ ସାଧାରଣ ସଂପାଦକ ହେଲି ଏବଂ ମୋ ସହିତ ଇଞ୍ଜିନିୟର ରବି ତ୍ରିପାଠୀ ଓ ସମାଜସେବୀ ନିର୍ମଳା ଭାଗେ ସହ ସଂପାଦକ ଭାବେ କାର୍ଯ୍ୟ ତୁଲାଇବା ପାଇଁ ସହମତି ଦେଲେ । କାରୁଶିଳ୍ପୀ, ଚିତ୍ରଶିଳ୍ପୀ, ଅଧ୍ୟାପକ, ଶିଳ୍ପାନୁମୋଦୀ ମିଶି ପ୍ରାୟ କୋଡ଼ିଏ ପଚିଶି ଜଣ ସଭ୍ୟଭାବେ କାଉନ୍‌ସିଲ୍‌ରେ ଯୋଗ ଦେଲେ । ରବି ତ୍ରିପାଠୀଙ୍କ କଳ୍ପନା ଏରିଆରେ ଥିବା ନିଜଘର  କାଉନ୍‌ସିଲ୍‌ର ଅଫିସ ଗୃହ ଭାବେ ବ୍ୟବହୃତ ହେଲା କିନ୍ତୁ ପ୍ରାୟତଃ କାଉନ୍‌ସିଲ୍‌ର ସଭାମାନ କଲେଜର ହିଁ  ଅନୁଷ୍ଠିତ ହେଉଥିଲା ।

କ୍ରାଫଟ୍‌ସ୍ କାଉନ୍‌ସିଲ୍‌ର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ କାରୁକଳା ଓ କାରୁଶିଳ୍ପର ପଞ୍ଜୀକରଣ ଓ ଓଡ଼ିଆ ଝୋଟିଚିତାର ପ୍ରଦର୍ଶନୀ ଉଲ୍ଲେଖନୀୟ କଳ୍ପନା । ତଥ୍ୟ ସଂଗ୍ରହ କରିବା ପାଇଁ ଆମେ ଗୋଟିଏ ପ୍ରଶ୍ନପତ୍ର ପ୍ରସ୍ତୁତ କରିଥିଲୁ । ପ୍ରତି ଘର ଘର ବୁଲି କାରିଗରଙ୍କ ସଂପର୍କରେ ତଥ୍ୟ ଯୋଗାଡ଼ କରିବା ପାଇଁ ଆମେ ତେରଜଣ ଏନୁମୁରେଟର ବା ତଥ୍ୟସଂଗ୍ରାହକଙ୍କୁ ନିଯୁକ୍ତ ଦେଇଥିଲୁ । ସଂଗୃହୀତ ତଥ୍ୟ ଯେଭଳି ସତ୍ୟନିଷ୍ଠ ହେବ ସେଥିପ୍ରତି ଗୁରୁତ୍ୱ ଦେବାକୁ ସେମାନଙ୍କୁ କୁହାଯାଇଥିଲା ଏବଂ ହସ୍ତଶିଳ୍ପକୁ ଚିହ୍ନିବା ପାଇଁ ଏବଂ ବିଭାଗୀକରଣ କରିବାକୁ ଯେତିକି ଦକ୍ଷତା ଦରକାର, ସେସବୁର କୌଶଳ ଓ ଜ୍ଞାନ ଯୋଗାଇ ଦେବା ପାଇଁ କଲେଜରେ ଗୋଟିଏ ଦଶଦିନିଆ ଓରିଏଣ୍ଟେସନ୍ ଶିବିରର ବ୍ୟବସ୍ଥା କରାଯାଇଥିଲା । ଭାଷଣ ଓ ସ୍ଲାଇଡ୍‌ସ୍ ପ୍ରଦର୍ଶନ ମାଧ୍ୟମରେ ହସ୍ତଶିଳ୍ପ ସହିତ ପରିଚିତ ହେବା ସଂଗେ ସଂଗେ ଭୁବନେଶ୍ୱରରେ ରହୁଥିବା ପାରମ୍ପରିକ କାରିଗରଙ୍କ ଚିତ୍ରଶାଳା ପରିଦର୍ଶନ କରି ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାର ବ୍ୟବସ୍ଥା କରାଗଲା । ଏହି ଶିଳ୍ପ ପରିଚିତି

Digitized by srujanika@gmail.com

ଓ ଶିଳ୍ପୀ ସଚେତନ କାର୍ଯ୍ୟକ୍ରମରେ ଆମ କଲେଜ ପାଖାପାଖି ଥିବା ହସ୍ତଶିଳ୍ପ ତାଲିମ କେନ୍ଦ୍ରର ଅଧୀକ୍ଷକ ଚନ୍ଦ୍ରଶେଖର ରାଓ, ଏବଂ ସହକାରୀ ଶିଳ୍ପୀ ବନଜା ଚୌଧୁରୀ, ବିନୋଦ ମହାରଣାଙ୍କ ସହିତ କଲେଜର ଅଧ୍ୟାପକ ଦେବରାଜ ସାହୁ ଡି.ଏନ୍.ରାଓ., ଜୟନ୍ତ ଦାସ ପ୍ରମୁଖ ଅଂଶ ଗ୍ରହଣ କରୁଥିଲେ । ଏହି ପରିଚିତି କାର୍ଯ୍ୟକ୍ରମ ଓ କାରିଗରଙ୍କ ଚିତ୍ରଶାଳା ପରିଭ୍ରମଣ ଆମ କଲେଜର ଛାତ୍ରଛାତ୍ରୀଙ୍କ ପାଇଁ ଏକ ନବ ଉନ୍ମାଦନାର ସୁଯୋଗ ଜୁଟାଇଦେଲା ।

ଓଡ଼ିଶା ହସ୍ତଶିଳ୍ପ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଗୋପବନ୍ଧୁ ଦାସ ଆମର କାର୍ଯ୍ୟକ୍ରମ ତନଖି କରି ଭାରତ ସରକାରଙ୍କୁ କାଉନ୍‌ସିଲ୍ ଦକ୍ଷତା ଓ ପ୍ରତିବଦ୍ଧତା ସଂପର୍କରେ ସୁପାରିଶ ପଠାଇବା ପରେ ଆମେ କେନ୍ଦ୍ର ସରକାରଙ୍କ ଅନୁଦାନ ପାଇଲୁ ଏବଂ ଏହା ଏହି ପ୍ରକଳ୍ପ ପରିଚାଳନାରେ ସହାୟକ ହେଲା । ତଥ୍ୟ ସଂଗ୍ରାହକମାନେ ପ୍ରଶ୍ନପତ୍ର ନେଇ ଗାଁ ଗଣ୍ଡାକୁ ବାହାରିଗଲେ । ସେମାନେ ପ୍ରଶ୍ନପତ୍ରରେ ତଥ୍ୟ ଲେଖି ଗାଁ ଗଣ୍ଡାରୁ ଫେରି କାଉନ୍‌ସିଲ୍ ଅଫିସରେ ଜମା ଦେଉଥିଲେ । ଏନୁମୁରେଟର୍ ଅଶୋକ ପ୍ରହରାଜ ଏସବୁ କାଗଜପତ୍ର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଥିଲେ । କାଳକ୍ରମେ ପ୍ରାୟ ହଜାର ହଜାର ଫର୍ମ ଅଫିସରେ ଜମାହେଲା । ଫର୍ମରେ ଠିକ୍‌ଭାବେ ତଥ୍ୟ ଲେଖାଯାଇଛି କି ନାହିଁ ତାକୁ ତନଖି କରିବାକୁ ବିଜୟ ରଥ ଓ ମୁଁ ଅଚାନକ ଗସ୍ତରେ ଯାଉ । କୌଣସି ଅନାମଧେୟ ଗାଁରେ ରହୁଥିବା ଜଣେ ଅତି ସାଧାରଣ କାରିଗରଙ୍କ ସଂପର୍କରେ ସଂଗୃହୀତ ତଥ୍ୟର ସତ୍ୟାସତ୍ୟ ଜାଣିବା ଆମର ଅଭିପ୍ରାୟ ଥାଏ । ଏନୁମୁରେଟର୍‌ମାନଙ୍କ କାର୍ଯ୍ୟର ସତ୍ୟନିଷ୍ଠତା ଓ ପ୍ରକଳ୍ପ ପ୍ରତି ସେମାନଙ୍କ ପ୍ରତିବଦ୍ଧତା ବାସ୍ତବିକ ପ୍ରଶଂସନୀୟ ଥିଲା । ସେମାନଙ୍କ ସଚ୍ଚୋଟପଣିଆ ଯୋଗୁଁ ଆମର ପ୍ରକଳ୍ପ କାମ ସୁରୁଖୁରୁରେ ସଂପାଦିତ ହୋଇଗଲା । ଏହି ତଥ୍ୟ ସଂଗ୍ରାହକମାନଙ୍କ ମଧ୍ୟରେ ଥିବା ଆମ କଲେଜର ଛାତ୍ର ଦିଲ୍ଲୀପ କୁମାର ତ୍ରିପାଠୀର କାମକୁ ମୁଁ ତାରିଫ୍ ନକରି ରହିପାରୁ ନାହିଁ । ଦିଲ୍ଲୀପ କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍‌ର ଏହି ପଞ୍ଜୀକରଣ ପ୍ରକଳ୍ପରେ ସେ ସମୟରେ ନିଷ୍ଠାର ସହିତ କାମ କରୁଥିଲା ବୋଲି ବର୍ତ୍ତମାନ କେନ୍ଦ୍ର ଲଳିତ କଳା ଏକାଡେମୀର କାର୍ଯ୍ୟକ୍ରମ ଅଧିକାରୀ ଭାବେ ଏବଂ ଚିତ୍ର ସଂରକ୍ଷକ ଭାବେ ଏକାଡେମୀର ସଂଗ୍ରହରେ ଥିବା କଳାକୃତିର ପଞ୍ଜୀକରଣ ସହଜରେ କରିପାରୁଛି ।

ଆମେ ଏହି ପଞ୍ଜୀକରଣ ପ୍ରକଳ୍ପରେ ଚାଳିଶିରୁ ଊର୍ଦ୍ଧ୍ୱ ହସ୍ତଶିଳ୍ପକୁ ବିଚାରକୁ ନେଇଥିଲୁ । ପାଠକଙ୍କ ଗୋଚରାର୍ଥେ ସେଗୁଡ଼ିକର ତାଲିକା ଏଠାରେ ଉଲ୍ଲେଖ କରିବା ଯଥାର୍ଥ ହେବ । ସେଗୁଡ଼ିକ ହେଲା ପଟଚିତ୍ର, ଟସରଚିତ୍ର, କାଗଜଚିତ୍ର, କାଠପଟା ଉପରେ ଚିତ୍ର, ତାଳପତ୍ର ପୋଥିଚିତ୍ର, ଓଷାକୋଠି ଚିତ୍ର, ପଥର ଖୋଦାଇ, କାଠ ଖୋଦାଇ, ଶିଙ୍ଗକାମ, ସିମେଣ୍ଟ ମୂର୍ତ୍ତି, ଅଳଂକରଣ ହୋଇଥିବା ପାତ୍ର, ମୂର୍ତ୍ତିଥିବା ପାତ୍ର, ମାଟିଘୋଡ଼ା, ପୋଡ଼ାମାଟିର କଣ୍ଢେଇ, ବେତକାମ, ବାଉଁଶପାତି କାମ, ଗୋଲ୍‌ଡେନ୍ ଘାସ କାମ, ଜାଇଖାଡ଼ି କାମ,

Digitized by srujanika@gmail.com

ନଡ଼ିଆ କତା ଶିଳ୍ପ, ଦରି ଓ କାର୍ପେଟ୍, ବ୍ଲକ୍ ଛପେଇ ଶାଢ଼ି, କାଠ କଣ୍ଢେଇ, ଗୋବର କଣ୍ଢେଇ, ଢୋକ୍ରା, ପିତଳ ଢଳେଇ କାମ, କଂସା, ପିତଳର ପୂଜା ମୂର୍ତ୍ତି, ଚମଡ଼ା ଶିଳ୍ପ, ସୋଲକାମ, ଯାତ୍ରା ବେଶ ପୋଷାକ, ଜରିଜମ୍ବୁରାକାମ, ଚାନ୍ଦୁଆକାମ, ଗହଣା ଓ ଅଳଙ୍କାର, ସବାଇ ଘାସ, ଝୋଟ ଶିଳ୍ପ, ବାଜା ଇତ୍ୟାଦି ।

ଆମେ ଓଡ଼ିଶାର ତେରଗୋଟି ଜିଲ୍ଲାରୁ ସଂଗୃହୀତ ତଥ୍ୟକୁ ସାତୋଟି ବୋର୍ଡ଼ ବନ୍ଧେଇ ବହିରେ ଭାଗ କରିଥିଲୁ । ପ୍ରଥମ ବହିରେ କାରୁଶିଳ୍ପଗୁଡ଼ିକ ସଂପର୍କରେ ବିବରଣୀ ଏବଂ ଭାରତ ସରକାରଙ୍କୁ ଓଡ଼ିଶା କ୍ରାଫ୍ଟ୍ସ୍ କାଉନ୍ସିଲ୍ ପକ୍ଷରୁ ହସ୍ତଶିଳ୍ପର ଉନ୍ନତି କଳ୍ପେ ଦିଆଯାଇଥିବା ସୁପାରିଶ । ଦ୍ୱିତୀୟ ବହିରେ ବଲାଙ୍ଗୀର ଓ ବାଲେଶ୍ୱର ଜିଲ୍ଲା, ତୃତୀୟ ବହିରେ କେବଳ କଟକ ଜିଲ୍ଲା, ଚତୁର୍ଥ ବହିରେ ଢେଙ୍କାନାଳ ଓ ଗଂଜାମ ଜିଲ୍ଲା, ପଞ୍ଚମ ବହିରେ କଳାହାଣ୍ଡି, କେନ୍ଦୁଝର, କୋରାପୁଟ, ମୟୂରଭଞ୍ଜ ଜିଲ୍ଲା, ଷଷ୍ଠ ବହିରେ କେବଳ ପୁରୀ ଜିଲ୍ଲା ଓ ସପ୍ତମ ବହିରେ ଫୁଲବାଣୀ, ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲ୍ଲାର ତଥ୍ୟ ସଂଗୃହୀତ ହୋଇଥିଲା ।

ଏହି ରିପୋର୍ଟ୍‌ଗୁଡ଼ିକ ସଂପାଦନା କରି ବହି ଆକାରରେ ପ୍ରସ୍ତୁତ କରିବା ପାଇଁ ଗୋଟିଏ ସଂପାଦନା ମଣ୍ଡଳୀ ଗଠିତ ହୋଇଥିଲା । ପ୍ରଫେସର୍ ମନ୍ମଥନାଥ ଦାସ ଏହି ସଂପାଦନା ମଣ୍ଡଳୀର ଉପଦେଷ୍ଟା ଥିଲେ । ସଂପାଦନା ମଣ୍ଡଳୀ, ବିଜୟ କୁମାର ରଥ, ହରିପ୍ରସାଦ ମିଶ୍ର ଓ ମୋତେ ନେଇ ଗଠିତ ହୋଇଥିଲା ଏବଂ ମୁଁ ଏହି ପଞ୍ଜୀକରଣ ପ୍ରକଳ୍ପର ନିର୍ଦ୍ଦେଶକ ଥିଲି । ପ୍ରକଳ୍ପର ସହକାରୀ ଭାବେ ଆମେ ହସ୍ତଶିଳ୍ପ ତାଲିମ କେନ୍ଦ୍ରର ସୁପରିଣ୍ଟେନ୍‌ଡେଣ୍ଟ ଚନ୍ଦ୍ରଶେଖର ରାଓ, ଭୁବନେଶ୍ୱର ଆଞ୍ଚଳିକ କଳାକେନ୍ଦ୍ରର ବିପିନ୍ ବିହାରୀ ସାହୁ, ହସ୍ତଶିଳ୍ପ ତାଲିମ କେନ୍ଦ୍ରର ଅବସରପ୍ରାପ୍ତ ସୁପରିଣ୍ଟେନ୍‌ଡେଣ୍ଟ, ଗୋକୁଳି ବିହାରୀ ପଟ୍ଟନାୟକ, ଆମ କଲେଜର ଅଧ୍ୟାପକ ଶିବ ପାଣିଗ୍ରାହୀ, ଡି.ଏନ୍.ରାଓ, ଦେବରାଜ ସାହୁ ଓ ପଥର କାରିଗର ସୋମନାଥ ମହାପାତ୍ରଙ୍କୁ ଅନ୍ତର୍ଭୁକ୍ତ କରିଥିଲୁ ।

ଏହି ସର୍ଭେରେ ଓଡ଼ିଶାର ଅବିଭକ୍ତ ତେରୋଟି ଜିଲ୍ଲା, ଶହେଗୋଟି ବ୍ଲକ୍, ଛଅଶହ ଅଠର ଗୋଟି ଶିଳ୍ପକେନ୍ଦ୍ର, ବାର ହଜାର କାରିଗର-ପରିବାର ଓ ଅଠର ହଜାର କାରିଗରଙ୍କର ପଞ୍ଜୀକରଣ କରାଯାଇଥିଲା । ଅଠର ହଜାର କାରିଗରଙ୍କ ମଧ୍ୟରୁ ପୁରୁଷଙ୍କ ସଂଖ୍ୟା ହେଲା ପନ୍ଦର ହଜାର ଏବଂ ସ୍ତ୍ରୀଲୋକଙ୍କ ସଂଖ୍ୟା ଥିଲା ପ୍ରାୟ ତିନିହଜାର । ପଞ୍ଜୀକରଣକୁ ବୋଧଗମ୍ୟ କରିବା ପାଇଁ ଆମେ ଜିଲ୍ଲାୱାରୀ ମାନଚିତ୍ର ପ୍ରସ୍ତୁତ କରି ବିଭିନ୍ନ ଶିଳ୍ପକେନ୍ଦ୍ର ଏବଂ ହସ୍ତଶିଳ୍ପ ଚିହ୍ନଟ କରିଥିଲୁ । ଏହି ପଞ୍ଜୀକରଣ ପ୍ରାୟ କୋଡ଼ିଏ ବର୍ଷ ତଳେ ୧୯୯୦-୯୨ ମସିହାରେ କାର୍ଯ୍ୟକାରୀ କରାଯାଇଥିଲା । ବର୍ତ୍ତମାନ କିଛି ନୂଆ ଶିଳ୍ପ ଆମର ପୁରୁଣା ତାଲିକାରେ ଅନ୍ତର୍ଭୁକ୍ତ ହେଉଥିବାବେଳେ, ମୃତପ୍ରାୟ ଅବସ୍ଥାରେ ଥିବା କିଛି ଶିଳ୍ପର ବିଲୟ ଘଟିଛି । ଆଶା କରାଯାଏ ଜନସଂଖ୍ୟାର ବୃଦ୍ଧି ସହିତ କାରିଗରମାନଙ୍କ ସଂଖ୍ୟା ଆହୁରି

Digitized by srujanika@gmail.com

ବୃଦ୍ଧି ଘଟିଥିବ । ଏଣୁ ଆଉ ଗୋଟିଏ ଏଭଳି ପ୍ରକଳ୍ପର ଆବଶ୍ୟକତା କେବେଠାରୁ ଅନୁଭୂତ ହେଲାଣି ।

ପ୍ରତି କଥାର ବୃଦ୍ଧି ଘଟିଲେ ସେଥିରେ ବିସଙ୍ଗତିମାନ ପ୍ରବେଶ କରିବାର ଯଥେଷ୍ଟ ସମ୍ଭାବନା । ବର୍ତ୍ତମାନ ହସ୍ତଶିଳ୍ପର ସ୍ୱରୂପ ବହୁଭାବରେ ବଦଳି ଗଲାଣି । ନୂଆ ଡିଜାଇନ୍ ନାଁରେ ଅନେକ ଅଜବ ନକ୍‌ସା ଆମ ହସ୍ତଶିଳ୍ପକୁ ଆକ୍ରାନ୍ତ କଲାଣି । ଆମେ ଅନ୍ୟ ପ୍ରଦେଶର ହସ୍ତଶିଳ୍ପଗୁଡ଼ିକର ଅନ୍ଧାନୁକରଣ ଫଳରେ ଆମ ହସ୍ତଶିଳ୍ପଗୁଡ଼ିକରୁ ଓଡ଼ିଆ ଅସ୍ମିତା ହଟିଯାଉଛି । ଓଡ଼ିଶାରେ ଆମର ଡିଜାଇନ୍ ବିଭାଗଟି ଅତ୍ୟନ୍ତ ଦୁର୍ବଳ । ଦୁଃଖର କଥା ଆଜିଯାଏଁ ପାରମ୍ପରିକ ହସ୍ତଶିଳ୍ପ ଡିଜାଇନ୍ ଓ ତାଲିମ କେନ୍ଦ୍ର ଏବଂ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟର ପାରମ୍ପରିକ ଚିତ୍ରକଳା ବିଭାଗ ଓ ଡିଜାଇନ୍ ବିଭାଗ ସହିତ ସର୍ଜନା ବା ବୌଦ୍ଧିକ ସ୍ତରରେ ସମନ୍ୱୟ ଘଟିପାରିଲା ନାହିଁ ।

ମୁଁ କିଛିଦିନ ତଳେ ବନ୍ଧୁ ରାମହରି ଜେନାଙ୍କ ସହିତ ଏକାମ୍ରହାଟରେ କ'ଣ କ'ଣ ହସ୍ତଶିଳ୍ପ ବିକ୍ରୟ ହେଉଛି ଦେଖିବାକୁ ଯାଇଥିଲି । ଗୋଟିଏ ଷ୍ଟଲ୍ ଭିତରେ ଆମ କଲେଜର ପୁରୁଣା ଛାତ୍ରୀ ଦେବଯାନୀଙ୍କ ସହିତ ଦେଖାହେଲା । ହାଟରେ ତାଙ୍କର ବି ଷ୍ଟଲ୍‌ଟିଏ ଅଛି । ସେ ଆମକୁ ତାଙ୍କର ହାତକାମ ଗୁଡ଼ିକ ଦେଖାଇଲେ । ତାଙ୍କ ଷ୍ଟଲ୍, ତଥା ଅନ୍ୟାନ୍ୟ ଷ୍ଟଲ୍‌ରେ ହସ୍ତଶିଳ୍ପ ନାଁରେ ଯାହାସବୁ ବିକ୍ରି ହେଉଛି, ତା'ରି ଭିତରେ ଅଛି ଆକ୍ରେଲିକ୍ ରଂଗର ଗ୍ଲାସ୍ ପେଣ୍ଟିଂ, ମଲାଟ ଉପରେ ଟେକ୍‌ଷ୍ଟର ଧଳାରେ ଅଙ୍କିତ ୱାରଲି ମିଶା ସଉରା ଚିତ୍ର ଏବଂ ଜଳରଙ୍ଗ ତଥା ତୈଳରଙ୍ଗର ମଡ଼ର୍ଣ୍ଣ ଚିତ୍ର । ଦେବଯାନୀଙ୍କ ବକ୍ତବ୍ୟରୁ ମନେ ହେଉଥିଲା ସିଏ ପାରଂପରିକ ଏବଂ ଆଧୁନିକ, ସବୁ ଗୁଡ଼ିକୁ 'ବାର ଜାତି ତେର ଗୋଲା, ବୈଷ୍ଣବ ହେଲେ ସବୁ ଗଲା' ନ୍ୟାୟରେ ମିଶାମିଶି କରି ଏକାକାର କରିଦେଇଛନ୍ତି ।

ଆମେ କାଉନ୍‌ସିଲ୍ ତରଫରୁ ସଉରା ଚିତ୍ରକର ଓ ଚିତ୍ରର ପଞ୍ଜୀକରଣ କରି ଇଂରାଜୀରେ ଗୋଟିଏ ବହି 'ପେଣ୍ଟେଡ୍ ଆଇକନ୍' ପ୍ରକାଶ କରିଛୁ । ସତୁରି ଅଶି ବର୍ଷତଳେ ଭେରିଅର୍ ଏଲ୍‌ୱିନ୍ ପ୍ରକାଶ କରିଥିବା ବହିମାନଙ୍କ ପରେ ଏହା ହେଉଛି ପଞ୍ଜୀକରଣ ଉପରେ ନିର୍ଭର କରି ପ୍ରକାଶ ହୋଇଥିବା ଏକମାତ୍ର ବହି । ଆମେ ପଟଚିତ୍ର ଗାଁ ରଘୁରାଜପୁରଠାରେ ହସ୍ତଶିଳ୍ପ ମହୋତ୍ସବ, ବିପଣିଭେଟ ଓ ଆଲୋଚନା ଚକ୍ରମାନ ଅନୁଷ୍ଠିତ କରାଇଛୁ । ଦିଲ୍ଲୀ ମାଭଲଙ୍କର ହଲ୍‌ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଆୟୋଜିତ 'ସାହିତ୍ୟ ସମାରୋହ' ଉତ୍ସବରେ ଓଡ଼ିଆ ଝୋଟିର ଏକ ପ୍ରଦର୍ଶନୀ ଆୟୋଜନ କରି ପୁସ୍ତିକା ପ୍ରକାଶ କରିଛୁ । କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍‌ର କାର୍ଯ୍ୟକ୍ରମ ଏବେ ଶିଥିଳ ପଡ଼ିଯାଇଛି । ଆଶା କରେ ଆଗାମୀ ପିଢ଼ି ତାକୁ ଆଗେଇ ନେବେ । ଏଇଥିପାଇଁ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ ଉପରେ ଆଉ ନିର୍ଭର କରିବା ବୃଥା ହେବ ।

Digitized by srujanika@gmail.com

# ୬୬. ପ୍ରେମ ଓ ପରିଣୟ

କଲେଜମାନଙ୍କରେ ଅଧ୍ୟୟନ କରୁଥିବା ପୁଅ ଝିଅଙ୍କ ମଧ୍ୟରେ ସାଧାରଣତଃ ପ୍ରେମ ଅଙ୍କୁରିତ ହେଇଥାଏ । ପ୍ରେମ ଅଙ୍କୁରରୁ ଗଜା ହେଇ ମହାଦ୍ରୁମରେ ପରିଣତ ହୁଏ । ଏହା କଳା (ଆର୍ଟ୍‌ସ୍), ବିଜ୍ଞାପନ ଓ କମର୍ସ ପାଠ ପଢ଼ାଯାଉଥିବା ସାଧାରଣ କଲେଜମାନଙ୍କରେ ଏକ ସ୍ୱାଭାବିକତା । କଲେଜରେ ଯଦି ଚିତ୍ରକଳା, ଭାସ୍କର୍ଯ୍ୟ ବା ସଂଗୀତ, ନୃତ୍ୟ, ନାଟକ ପଢ଼ାଯାଉଥାଏ ତା'ହେଲେ କଥା ସରିଲା । ଦେହର ଭଙ୍ଗିମା, ରୂପର ରହସ୍ୟ, ଛନ୍ଦ ଓ ଭାବ ଯେଉଁଠି ପ୍ରବଳ ସେଇଠି ଅନଙ୍ଗଙ୍କ ଉତ୍ପାତ ବେଶି । ଅନଙ୍ଗ ଖାଲି ଦେହକୁ ନୁହେଁ ମନ ଓ ପ୍ରାଣକୁ ମଧ ଦହୁଥାଏ । ସେହି ଦହନ ଜ୍ୱଳାକୁ ଉପଶମ କରିବା ପାଇଁ ପୁଅ ଓ ଝିଅମାନେ ପ୍ରେମ ବନ୍ୟାରେ ଝାସ ଦିଅନ୍ତି । କିଏ କିଏ ସନ୍ତରଣର ମଜା ନେଲାପରେ କୂଳକୁ ସ୍ୱଚ୍ଛନ୍ଦରେ ଫେରି ଆସନ୍ତି ତ ଆଉ କିଏ ପ୍ରେମ ନିଶାରେ ଉବୁଟୁବୁ ହୁଅନ୍ତି । ହୁଏତ କେତେକ ଅଭାଗା ସେହି ପ୍ରେମ ବନ୍ୟାର ଉତ୍ତାଳ ଜୁଆର ଭିତରେ ନିଶ୍ଚିହ୍ନ ହୋଇଯାଆନ୍ତି ।

ଗୋଟିଏ କଳା ବିଦ୍ୟାଳୟରେ ପ୍ରେମ କିଭଳି ଉଦ୍ଭବ ହୁଏ, ସଂଚରେ ଏବଂ ସାଙ୍ଗ ଓ ସଙ୍ଗିନୀମାନଙ୍କୁ ଅଥୟ କରେ, ଜଣେ ଛାତ୍ର ହିସାବରେ ଖଲ୍ଲିକୋଟରେ ମୋର ଅନୁଭବ ଭିନ୍ନ ପ୍ରକାରର । ସେକଥା ମୋ ଆତ୍ମଜୀବନୀ 'ଚିଲିକା ପାଣିରେ ଛାଇ' ବହିରେ ଉଲ୍ଲେଖ କରିଛି । ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟରେ ତାର ସ୍ୱରୂପ, ଚାରିତ୍ରିକତା ଓ ରୂପାୟନ ଏତେ ପ୍ରତ୍ୟକ୍ଷ ଓ ଗଭୀର ଯେ ତା'ର ଅନୁଭବ ଆଜିଯାଏଁ ମୋ ନିକଟରେ ସତେଜ । 'ବାଙ୍ମୟ ଚିତ୍ରପଟ' ଗ୍ରନ୍ଥରେ ମୋର ଏକଦା ଛାତ୍ରଥିବା ରାଜୀବ ଲୋଚନ ସାହୁ ଆମ କଲେଜରେ ଅଶି ଓ ନବେ ଦଶକରେ ଘଟିଯାଇଥିବା ପ୍ରେମର ଇତିହାସକୁ ଖୁବ୍ ଚମତ୍କାର ଭାବେ ବର୍ଣ୍ଣନା କରିଛି । ଏହି ଘଟଣାସବୁ ଏଭଳି ସ୍ପର୍ଶକାତର ଯେ ମୋର ଆଶଙ୍କା ହୁଏ ବିବରଣ ମର୍ଯ୍ୟାଦା ରେଖା ନ ଲଘିଂଲେ ହେଲା । ଜଣେ ଅଧକ୍ଷ ଏସବୁର ନିର୍ଲିପ୍ତ ସାକ୍ଷୀ ଭାବରେ ବର୍ଣ୍ଣନା କରିଦେବାରେ ବାଧା ନାହିଁ, କିନ୍ତୁ ପୁଅଝିଅଙ୍କ ପ୍ରେମର ଅସଂପୂର୍ଣ୍ଣ କାହାଣୀକୁ ତା'ର ଯୌକ୍ତିକ ପରିସମାପ୍ତି ଯାଏଁ ନିଜର ସାଧ୍ୟମତେ ଯେଉଁ ଅଧକ୍ଷ ସ୍ୱୟଂ ଆଗେଇ ନେଇଛନ୍ତି ବା ନେବା ପାଇଁ ପରିସ୍ଥିତି ବାଧ୍ୟ କରିଛି, ତାହା କ'ଣ ନିର୍ଲିପ୍ତ

Digitized by srujanika@gmail.com

ପର୍ଯ୍ୟାୟର - ଏହା ନେଇ ବେଳେବେଳେ ଏବେ ନିଜ ମନରେ ସନ୍ଦେହ ହୁଏ । ସବୁ କଥା ଜାଣୁଥିଲେ, ଦେଖୁଥିଲେ ମଧ୍ୟ କିଛି ନ ଜାଣୁଥିବା ନ ଦେଖୁଥିବାର ଅଭିନୟ ଭିତରେ ସମୟ କାଟିବା ଓ ସେ ସବୁ ଏକାନ୍ତ ମିଳନ ମଧ୍ୟରୁ ଉଦ୍‌ଗିରଣ ହେଉଥିବାର ଲାଭାର ପ୍ଲାବନରୁ ନିଜକୁ ବଂଚେଇ ରଖିବା  ନିଶ୍ଚିତ ଭାବରେ କଷ୍ଟସାଧ୍ୟ ବ୍ୟାପାର ।

ରାଜୀବର ଲେଖା ଏପରି : ''ବେଳେବେଳେ ପ୍ରେମଚିଠି ଥିଓରି ଖାତାରୁ ଖସିପଡ଼ି ଭୁଲରେ ଅଧକ୍ଷ ଡକ୍ଟର ଦିନନାଥ ପାଠୀଙ୍କ ହାତରେ ବି ପଡ଼ିଯାଉଥିଲା । ସେ ପୂର୍ବାପର ସମ୍ପର୍କ ନ ଯୋଡ଼ି ତାକୁ କ୍ଲାସ୍‌ରେ ପଢ଼ି ଦେଉଥିଲେ । ନତୁବା ଜେରକ୍ସରେ ଏନ୍‌ଲାର୍ଜ୍ କରି ନୋଟିସ୍ ବୋର୍ଡ଼ରେ ଲଗାଇ ଦେଉଥିଲେ । ବୁଝିବା ଲୋକମାନେ ଆପେ ଆପେ ବୁଝି ଯାଉଥିଲେ । ପ୍ରେମିକାମାନଙ୍କର ବାପାମାନେ ବା ଅଭିଭାବକମାନେ ଅଧକ୍ଷଙ୍କର ବନ୍ଧୁ ହୋଇଥିବା ହେତୁ ଅଧକ୍ଷଙ୍କ ନିକଟରେ ସବୁ ପ୍ରେମର ଫାଇଲ୍ ଡୋର ବନ୍ଧା ହୋଇ ରହୁଥିଲା । କିନ୍ତୁ ଅଧକ୍ଷ ନା ସେସବୁ ଫାଇଲ୍ କେବେ ଖୋଲଉ ଥିଲେ ନା ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ କରୁଥିଲେ । ଅଧକ୍ଷଙ୍କ ପାଖରେ ବେଳେବେଳେ ବେନାମି ଚିଠି ବି ପହଞ୍ଚୁଥିଲା । ଆମେ ଶୁଣିଲାଭଳି ସେ ତାକୁ ବଡ଼ ପାଟିରେ କ୍ଲାସ୍‌ରେ ପଢୁଥିଲେ, ନ ହେଲେ ବେଳେ ବେଳେ ଭୁଲ୍‌ରେ କ୍ଲାସ୍‌ରେ ଛାଡ଼ିଦେଇ ଯାଉଥିଲେ । ପ୍ରେମିକ ପ୍ରେମିକାଙ୍କୁ ଚିତ୍ର ପ୍ରଦର୍ଶନୀ କରିବା ଆଳରେ ଭୁବନେଶ୍ୱର ବାହାରକୁ ପଠାଇ ଦେଉଥିଲେ ନ ହେଲେ କିଏ କଲେଜକୁ ଅତିଥି  ଆସିଲେ ସେମାନଙ୍କୁ ଗାଇଡ୍ ଭାବରେ ଟାକ୍‌ସିରେ ଏକାନ୍ତ ଭ୍ରମଣର ସୁଯୋଗ ଦେଉଥିଲେ ।''

ରାଜୀବ ଲୋଚନ ଆମ କଲେଜର ପ୍ରେମ ଆବହାୱା ସଂପର୍କରେ ଯାହା କହିଚି ତାହା ଏକାବେଳେ ଠିକ୍ । ଆମ କଲେଜର ପ୍ରେମିକପ୍ରେମିକା ଯୋଡ଼ି ମଧ୍ୟରୁ ଯେଉଁମାନଙ୍କୁ କଲେଜ ଅନେକ ଦିନଯାଏଁ ମନେରଖିବ ସେମାନେ ହେଲେ ରିନା-ସଂଗ୍ରାମ (ରିନା ପୃଷ୍ଟି ଓ ସଂଗ୍ରାମ କର) ବିନି-ସୁବ୍ରତ (ବିଦ୍ୟୁତ୍‌ଲତା ପାଟଶାଣୀ ଓ ସୁବ୍ରତ କୁମାର ମଲ୍ଲିକ) ଅପର୍ଣ୍ଣା-ଅଂଜନ (ଅପର୍ଣ୍ଣା ରାୟ ଓ ଅଞ୍ଜନ କୁମାର ସାହୁ), ଗୀତା-ପ୍ରଦୋଷ (ସଂଗୀତା ରାଓ ଓ ପ୍ରଦୋଷ କୁମାର ମିଶ୍ର), ବବିତା-ସଜଳ (ବବିତା ମିଶ୍ର ଓ ସଜଳ ପାତ୍ର), ରଶ୍ମି-ଜୟନ୍ତ (ରଶ୍ମିରେଖା ପଣ୍ଡା ଓ ଜୟନ୍ତ ପଣ୍ଡା), ଅତସୀ-ଅମର (ଅତସୀ ବସୁ ଓ ଅମର ଜେନା), ସାଧନା-ଗୌର (ସାଧନା ମିଶ୍ର ଓ ଗୌରହରି ରାଉତ) ଏବଂ ଲିପି-ଶ୍ୟାମା (ଲିପିଶ୍ରୀ ନାୟକ ଓ ଶ୍ୟାମା ପ୍ରସାଦ ଟାଲି) ପଭୃତି ।

ମୋର ଯାହା ମନେପଡୁଛି କେଉଁଆଡ଼େ ପିକ୍‌ନିକ୍ ଯିବା ପାଇଁ କଲେଜ ଦୁଇଟି ବସ୍ ମଗେଇ ଥିଲା । ପ୍ରଥମ ବସ୍‌ରେ ଚାଳିଶି ପଚାଶ ଜଣ ଖୁନ୍ଦି ହୋଇଗଲେ । ମୁଁ ବସ୍ ଛାଡ଼ିଦେବା ପାଇଁ କହିଲି । ଆମେ କେତେଜଣ ଅଧ୍ୟାପକ କାର୍‌ଯୋଗେ ବସ୍ ପିଛା

Digitized by srujanika@gmail.com

କରିଥାନ୍ତୁ । ଠିକ୍ ଏଭଳି ଏକ ଆସନ୍ନ ମୁହୂର୍ତ୍ତରେ ରଶ୍ମି ଆସି ପହଞ୍ଚିଲା । ତାର ସାଙ୍ଗ ବସ୍‌ରେ ଚାଲିଯାଇଛି । ଏଣୁ ଅଭିମାନରେ, କ୍ରୋଧରେ ମୁହଁ ଫଣଫଣ କରି ଅଧ୍ୟକ୍ଷଙ୍କ ଏଭଳି ଏକତରଫା ନିଷ୍ପତ୍ତିରେ ଘୋର ପ୍ରତିବାଦ କରି ସେଯାଏଁ ସୁଦ୍ଧା କଲେଜ ଆଗରେ ଠିଆ ହେଇଥିବା ଦ୍ୱିତୀୟ ବସ୍‌ଟିକୁ ମଧ୍ୟ ପିକ୍‌ନିକ୍‌ରେ ଯିବା ପାଇଁ ଏକରକମ ବାଧ୍ୟକଲା । ମୁଁ ଏବେ କରେ କ'ଣ ! ମୋର ମନେହେଲା ମୁଁ ବ୍ୟାଧ ଭୂମିକାରେ ରହି ପ୍ରେମଦଗ୍ଧ କ୍ରୌଞ୍ଚ (କ୍ରୌଞ୍ଚୀ ହୋଇଥିଲେ ତୁଳନା ଯଥାର୍ଥ ହୋଇଥାନ୍ତା) ପକ୍ଷୀଟିକୁ ହତ୍ୟା କରିଦେଇଛି । ଆମେ କାର୍‌କୁ ବିଦାୟ କରି ଏକମାତ୍ର ଛାତ୍ରୀ ରଶ୍ମୀ ଓ ଦୁଇତିନି ଜଣ ଅଧ୍ୟାପକ ବସ୍‌ରେ ପିକ୍‌ନିକ୍ ଗଲୁ ।

ମୁଁ ଥରେ ସକାଳୁ ସକାଳୁ କଲେଜରେ ପହଞ୍ଚିଛି, ଗେଟ୍ ପାଖରେ ଜୟନ୍ତ ଠିଆ ହେଇଥାଏ । ଜୟନ୍ତ ଅନୁରୋଧ ଭଙ୍ଗିରେ କହିଲା, 'ସାର୍ ଆପଣଙ୍କ ସାହାଯ୍ୟ ନିତାନ୍ତ ଦରକାର।' ମୁଁ ଭାବିଲି ଛବି ପତ୍ର ବ୍ୟାପାର କିଛି ହେଇଥିବ । ସିଏ କହିଲା, ରଶ୍ମିକୁ ବିବାହ କରିବା ସେ ନିଷ୍ପତ୍ତି ନେଇସାରିଛି । ତିନିନମ୍ବର ଭୁବନେଶ୍ୱରୀ ମନ୍ଦିରରେ ବାହାଘର ହେବ । ଏଭଳି ଏକ ସମ୍ବାଦ ପରିବେଷଣରେ ଆଚମ୍ବିତ ହେବାର ବିଶେଷ କିଛି ନଥିଲା। ଜୟନ୍ତର ପରବର୍ତ୍ତୀ ବାକ୍ୟଗୁଡ଼ିକ ମୋ ପାଇଁ ଅଚାନକ ଏକ ଦାୟିତ୍ୱ ବୋଧରେ ଛନ୍ଦି ଦେଇଥିଲା । ଏଭଳି ବାହାଘରରେ ଜୟନ୍ତର ପରିବାରର ସମ୍ମତି ନଥିବା ହେତୁ ପରିବାରର ଲୋକେ ତା'ର ବାହାଘରରେ ଯୋଗ ଦେଉ ନଥିଲେ । ଏଭଳି ବି କାରଣ ହେଇପାରେ ଯେ ବିବି ଆଉ ମିଆଁ ନିଜେ ବାହାଘର ସହସା ନିଷ୍ପତ୍ତି କରିନେଇଥିବାରୁ ଜୟନ୍ତର ପରିବାର ହୁଏତ ପ୍ରସ୍ତୁତ ନଥିଲେ । ମୁଁ ଜୟନ୍ତର ବଡ଼ ଭାଇ ଶଶାଙ୍କ ଶେଖରଙ୍କୁ ଜାଣିଥିଲି । ସେ ଆମ ଇତିହାସ ବିଭାଗର ଲୋକ । ସେତେବେଳକୁ ସିଏ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ରିଡ଼ର୍ ଥିଲେ । ଜୟନ୍ତଠାରୁ ଜାଣିବାକୁ ଚାହିଁଲି ଯେ ମୁଁ ଯଦି ଶଶାଙ୍କଙ୍କୁ ଅନୁରୋଧ କଲେ କିଛି ଫଳ ମିଳିବ କି ? ଜୟନ୍ତ ମୋତେ ନାସ୍ତିବାଣି ଶୁଣାଇଲା । ମୁଁ ଜାଣିଲି କଥା ବହୁତ ବାଟ ଆଗକୁ ମାଡ଼ିଯାଇଛି । ଅନ୍ୟ ଉପାୟ ନ ଦେଖି ମୁଁ ମନ୍ଦିରରେ ପହଞ୍ଚି ବରକର୍ତ୍ତା ଭୂମିକାରେ ଅଭିନୟ କଲି । ତା'ପରେ ରଶ୍ମିର ମା' ରୋଗଶଯ୍ୟାରେ ପଡ଼ିଥିବା କଥା ଜୟନ୍ତ କହିଲା । ରଶ୍ମି ମା'ଙ୍କର ଶେଷ ଇଚ୍ଛାକୁ ସମ୍ମାନ ଦେଖାଇ ଏହି ବାହାଘର କରାଯାଉଛି । ମୋ ଆଗରେ ବାହାଘର ଅନ୍ତରାଳରେ ଗଢ଼ିଉଠିଥିବା ପ୍ରେମ ଓ ପ୍ରଣୟର ଦୃଶ୍ୟ ଆଖିଆଗରେ ନାଚି ଉଠିଲା । ଆମ କଲେଜ ପଡ଼ିଶା ଘରେ ଜୟନ୍ତ ଭଡ଼ାରେ ରହୁଥାଏ । ଛାତ ଉପରେ ଏକଲା ଘର । ରଶ୍ମି ସେଠି ପହଞ୍ଚେ । ସେମାନେ ଘଣ୍ଟା ଘଣ୍ଟା ଧରି କଥା ହୁଅନ୍ତି । ଏହି କଥାବାର୍ତ୍ତା, ମାନ ଅଭିମାନର ମହକ ଆମ କଲେଜ ହତା ଭିତରକୁ ମାଡ଼ି ଆସେ । ରଶ୍ମି ଗଞ୍ଜାମ ଆଡ଼ର ପିଲା । ଜୟନ୍ତ ଅପେକ୍ଷା ଅଧିକ ସ୍ମାର୍ଟ ।

Digitized by srujanika@gmail.com

ବେଳେବେଳେ ତା' ବାପାଙ୍କ ଫିଆଟ୍ ନେଇ ସେ କଲେଜରେ ପହଞ୍ଚେ ଆଉ ଜୟନ୍ତକୁ ନେଇ କୁଆଡ଼େ ଉଭେଇ ଯାଏ ।

ମନ୍ଦିରରେ ବାହାଘର ଧୁମ୍‌ଧାମ୍ ଆରମ୍ଭ ହେଲା । ଜୟନ୍ତ ଓ ରଶ୍ମିର ସାଂଗମାନେ ପହଞ୍ଚିଗଲେ । ମନ୍ତ୍ର ଉଚ୍ଚାରଣର ଝଙ୍କାର ଭିତରେ ବିଗତ ଦିନର ଯାବତୀୟ ଜଞ୍ଜାଳ, ଭୟ ଓ ଅସହାୟତା ଧୀରେ ଧୀରେ ଉଭେଇ ଯିବାକୁ ଲାଗିଲା । ରଶ୍ମିର ମା'ଙ୍କ ସ୍ୱାସ୍ଥ୍ୟ ଅବସ୍ଥାକୁ ନେଇ ଦୁହେଁ କିନ୍ତୁ ଉଦ୍‌ବିଗ୍ନ ଅବସ୍ଥାରେ ଥାଆନ୍ତି । ମଝିମଝିରେ ଖବର ଆସି ପହଞ୍ଚିଲେ ସେମାନେ କାନ ପାରନ୍ତି । ହଠାତ୍ ଜଣେ ଆସି ଚୁପ୍‌ଚାପ୍ ମୋ କାନରେ କହିଗଲା ଯେ ରଶ୍ମିର ମା' ଚାଲିଗଲେ । ରଶ୍ମି ପଚାରିଲା,''ସାର୍ କ'ଣ ହେଲା ?'' ମୁଁ କହିବାକୁ ବାଧ୍ୟ ହେଲି, ''ମା'ଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ଦେଖାଗଲାଣି'', ପୁରୋହିତକୁ ତାଗିଦା ଦେଇ କହିଲି, ''ହସ୍ତଗ୍ରନ୍ଥି ଶୀଘ୍ର ଶେଷ କର ।'' ବାସ୍ତବିକ୍ ଠିକ୍ ସେ ସମୟରେ ହସ୍ତଗ୍ରନ୍ଥିର ଶୁଭବେଳା ଥିଲା । ସବୁ କର୍ମ ଭଲରେ ଭଲରେ ସରିଲା । ଏବେ ବରକନ୍ୟା ମା'ଙ୍କ ପାଖରେ ପହଞ୍ଚି ଆଶିଷ ନେବାର ବେଳ । ସେମାନେ ଘରେ ପହଞ୍ଚିଲେ ଯେଭଳି ପରିସ୍ଥିତି ସୃଷ୍ଟିହେବ ତାହା ମୁଁ ଅନୁମାନ କରିପାରୁଥିଲି । କଲେଜର ମୁରବି ହିସାବରେ ମୋ ଗୁରୁଦାୟିତ୍ୱ ଶେଷ ହେଇଯାଇଥିଲା । ଏଣୁ ଭୋଜି ଖାଇବା ପାଇଁ ଅପେକ୍ଷା ନକରି କଲେଜ ଫେରିଲି ।

ସଂଗୀତା ଓ ପ୍ରଦୋଷର ପ୍ରେମ ସଂପାନ ପରିପକ୍ୱ ହେବାପାଇଁ ଟିକିଏ ବିଳମ୍ବ ହେଇଯାଇଥିଲା । ସଂଗୀତାର ବାପା ଚନ୍ଦ୍ରଶେଖର ଆହୁରି ଦୃଢ଼ ନିଷ୍ପତ୍ତି ନେଇ ନଥିଲେ । ପ୍ରେମିକା ଓ ପ୍ରେମିକଙ୍କ ଭିତରେ ରହିଥିବା ଜାତିଗତ ସମସ୍ୟାଟି ବାହାଘର ଅନୁଷ୍ଠାନକୁ ବିଳମ୍ବ କରିଦେଉଥାଏ । ଏଣେ ପ୍ରଦୋଷର ଚାକିରି ବାକିରି ନଥିବା ହେତୁ ଚନ୍ଦ୍ରଶେଖର ମନରେ କଲ୍ମଷ ରଖିଥାନ୍ତି । ପ୍ରଦୋଷର ପରିବାର ଜାତିଗତ ବୈଷମ୍ୟକୁ ହଟେଇ ଦେବା ପାଇଁ ଗୋଟିଏ ସର୍ତ୍ତ ରଖିଥାନ୍ତି । ସର୍ତ୍ତଟି ହେଲା ଯେ ଯଦି ତେଲୁଗୁ କନ୍ୟା ସଂଗୀତାକୁ ବ୍ରାହ୍ମଣ ଗୋତ୍ରରେ କନ୍ୟାଭଳି ଗ୍ରହଣ କରାଯାଇ ପାରିବ ତା' ହେଲେ ଯୌକ୍ତିକତା ଦୃଷ୍ଟିରୁ ସେ ମନ୍ତ୍ରର ପ୍ରଭାବରେ ବ୍ରାହ୍ମଣକନ୍ୟା ରୂପେ ବିବେଚିତ ହେବ ଏବଂ ବ୍ରାହ୍ମଣ ପୁଅଟିଏ ତାକୁ ଗ୍ରହଣ କରିବାରେ ଆଉ ବାଧକ ରହିବନି । ଚନ୍ଦ୍ରଶେଖର କନ୍ୟାଦାନ କର୍ମ ସଂପାଦନ କରିବା ପାଇଁ ମୋତେ ଅନୁରୋଧ କଲେ । ଏଥିରେ ତ ସଂପତ୍ତି ଦିଆନିଆର ପ୍ରଶ୍ନ ନାହିଁ, ବରଂ କନ୍ୟାଦାନର ସୁଯୋଗ ଓ ସୁଫଳ ଥିବାରୁ ମୁଁ କାହିଁକି ବା ଅମଙ୍ଗ ହେଇଥାନ୍ତି ? ପୁଣି ଚନ୍ଦ୍ରଶେଖର ମୋର ଅତି ଅନ୍ତରଙ୍ଗ ବନ୍ଧୁ, ଏକା ପରିବାରର ଲୋକଭଳି ।

ସେମାନଙ୍କ ବାହାଘର ସ୍ଥିର ହେଲାବେଳକୁ ମୁଁ କଲେଜ ଛାଡ଼ି ଦିଲ୍ଲୀ ଲଳିତ କଳା ଏକାଡେମୀରେ । ଚନ୍ଦ୍ରଶେଖରଙ୍କ ଅନୁରୋଧ ରକ୍ଷାକରି ମୁଁ ଦିନକ ପାଇଁ

Digitized by srujanika@gmail.com

ଭୁବନେଶ୍ୱରରେ ପହଞ୍ଚି ବାହାଘର କାର୍ଯ୍ୟସାରି ଫେରିଥିଲି । ଆମ ଛାତ୍ରଛାତ୍ରୀଙ୍କର ବହୁ ବାହାଘରରେ ମୁଁ ଯୋଗ ଦେଇଛି । ସେମାନେ ସେମାନଙ୍କର ଅସଂପୂର୍ଣ୍ଣ ସନ୍ଦର୍ଭକୁ ସମାପ୍ତ କରି ସ୍ୱାମୀ ସ୍ତ୍ରୀ ଭାବେ ସଫଳ ଜୀବନ ନିର୍ବାହ କରୁଛନ୍ତି । ମୋର ଆଶା ଥିଲା ଦୁଇଜଣ ଶିଳ୍ପୀ ବିବାହ ବନ୍ଧନରେ ଛନ୍ଦି ହେଲେ ଜଣେ ଅନ୍ୟଜଣକର କଳା ସାଧନାରେ ସହାୟକ ହୋଇପାରିବ । ହୁଏତ ସେମାନେ ନିଜକୁ ଗୋଟିଏ ଗୋଟିଏ ଶିଳ୍ପୀ ପରିବାରର ଗୌରବରେ ଉଦ୍‌ବୁଦ୍ଧ କରି ଓଡ଼ିଶାର କଳାଜଗତକୁ ନିଜର ସାମର୍ଥ୍ୟମତେ ଋଦ୍ଧିମନ୍ତ କରିପାରିବେ । କିନ୍ତୁ କାହିଁ ସିମିତି କିଛି ହେଲା ନାହିଁ । ଏକଦା ଶିଳ୍ପୀ ହେବାର ପ୍ରତିଜ୍ଞାରେ ଜର୍ଜରିତ ଥିବା ଅଧିକାଂଶ ନାରୀଶିଳ୍ପୀ ଆଜି ସ୍ଥାଣୁ ଏବଂ ବିଷୟାସକ୍ତ । କେବଳ ଯେ ଆମ କଲେଜରୁ ଏଭଳି ଶିଳ୍ପୀ ପରିବାର ଉଠୁନାହାନ୍ତି ତା' ନୁହେଁ, ବରଂ ଏହି ପରଂପରାର ଇତିହାସ ଖୁବ୍ ଦୀର୍ଘ । ଏହାର ଚେର ଶାନ୍ତିନିକେତନର ଆମ୍ରକୁଞ୍ଜ ଯାଏଁ ପରିବ୍ୟାପ୍ତ । ମନେହୁଏ ଓଡ଼ିଆ କଳା ଜଗତର ସବୁଠାରୁ ଆଦିମତମ ଶିଳ୍ପୀ ପରିବାର ହେଲା ଗୌରାଙ୍ଗ ଚରଣ ଓ ବୀଣା ସଁଙ୍କ ପରିବାର । ମୁଁ ଯାହା ଶୁଣିବାକୁ ପାଇଛି କଳା ଭବନର ଆଚାର୍ଯ୍ୟ ନନ୍ଦଲାଲ ବସୁଙ୍କ ପ୍ରେରଣା ଓ ପ୍ରଚୋଦନାରେ ଗୌରାଙ୍ଗ ଓ ବୀଣାଙ୍କ ବାହାଘର ସମ୍ଭବ ହୋଇଥିଲା । ଏ ଦୃଷ୍ଟିରୁ ଦେଖିଲେ ଅଧକ୍ଷ ଭାବେ ମୁଁ ଯେ କିଛି ନୂଆ କଥା କରିଦେଇଛି ତାହା ନୁହେଁ, ବରଂ ଏ ସୁଦୀର୍ଘ ପରମ୍ପରାର ଦାୟାଦ ଭାବେ ମୁଁ ମୋର ସାମାନ୍ୟ କର୍ତ୍ତବ୍ୟ ପାଳନ କରିଛି ମାତ୍ର ।

Digitized by srujanika@gmail.com

# ୬୭. ଖଲ୍ଲିକୋଟ କଳାବିଦ୍ୟାଳୟର ରଜତ ଜୟନ୍ତୀ

ମୁଁ ଓଡ଼ିଶା ପର୍ଯ୍ୟଟନ ନିଗମରେ ଚାକିରିକଲା ବେଳଠାରୁ ମୋର ଗୁରୁପୀଠ (ଆଲମା ମେଟର) ର ରଜତ ଜୟନ୍ତୀ ଉତ୍ସବ ନେଇ ଚିନ୍ତିତ ଥିଲି । ଏହା 'କଟକ ଚିନ୍ତା ବାଇମୁଣ୍ଡିକି' ଭଳିଆ କଥା । ମୋ ସାଙ୍ଗରେ ଆଉ ଯେଉଁମାନେ ଏକାଭଳିଆ ଚିନ୍ତା କରୁଥିଲେ, ସେମାନେ ହେଲେ ବିପିନ ବିହାରୀ ସାହୁ, ଚନ୍ଦ୍ରଶେଖର ରାଓ, ରାମହରି ଜେନା ଓ ଡି. ନାରାୟଣ ରାଓ । ରଜତ ଜୟନ୍ତୀ ଉତ୍ସବ ସଂପର୍କରେ ଆଲୋଚନା କରିବା ପାଇଁ ମୁଁ ବରକୂଳ ପାନ୍ଥନିବାସରେ ଗୋଟିଏ ସଭା ମଧ୍ୟ ଡକାଇଥିଲି । ବହୁ କଷ୍ଟରେ ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ଜଣେ ଅଧେ ଅଧ୍ୟାପକ ସଭାରେ ଯୋଗ ଦେଇଥିଲେ । ଆମେ କିନ୍ତୁ ଅଧୈର୍ଯ୍ୟ ନ ହୋଇ ଆମ ପ୍ରଚେଷ୍ଟାରେ ଆଗେଇ ନେବା ପାଇଁ ନିଷ୍ପତ୍ତି ନେଲୁ । ବିପିନ ବାବୁ ଭୀଷ୍ମ ପ୍ରତିଜ୍ଞା କରି ଦାଢ଼ି ବଢ଼େଇଲେ । ମନେହେଲା ଆଗାମୀ ଦିନରେ ଗୋଟିଏ ଯୁଦ୍ଧ ପାଇଁ ଆମେ ପ୍ରସ୍ତୁତ ହେଉଛୁ ।

ଖଲ୍ଲିକୋଟ କଳା ମହାବିଦ୍ୟାଳୟର ପୁରାତନ ଛାତ୍ରସଂଘ ନଥିଲା । ପୁରୁଣାଦିନର ସମସ୍ତ ଛାତ୍ରଆନ୍ଦୋଳନ ସେତେବେଳକୁ ସ୍ତିମିତ ହୋଇଯାଇଥିଲା । ବିଗତଦିନର ଛାତ୍ରନେତାମାନେ ଜୀବନ ଯୁଦ୍ଧରେ କ୍ଳାନ୍ତ ଓ ପରାହତ ହୋଇ କିଏ କେଉଁଠି ଖାପି ଯାଇଥିଲେ । ପୁଣିଥରେ ରଣହୁଙ୍କାର ଦେବାପାଇଁ ସେମାନଙ୍କ ନିକଟରେ ଦମ୍ ନଥିଲା । ଆମେ କେତେଜଣ ଗଂଜାମିଆ ଏହି ଜନହିତକର କାର୍ଯ୍ୟ ତୁଲାଇବା ପାଇଁ ଆଗଭର ହୋଇ ବାହାରିଥିଲୁ । ଏଆରି ଭିତରେ ମୁଁ ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟରେ ଅଧ୍ୟକ୍ଷ ଭାବରେ ଯୋଗ ଦେଲି ଏବଂ ତଦ୍‌ଜନିତ କାର୍ଯ୍ୟରେ କିଛି ସମୟ ଲାଗି ବ୍ୟସ୍ତ ମଧ୍ୟ ରହିଥିଲି । ଅବଶ୍ୟ ଏ ଭିତରେ ପ୍ରାୟ ବର୍ଷେ ସମୟ ଅକାରଣେ ବିତିଗଲା । ଆମେ ଆମ କଲେଜ ପକ୍ଷରୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ରଜତ ଜୟନ୍ତୀ ପାଳନ କରିବା ପାଇଁ ସୁଧାଂଶୁ ମୋହନ ରାଉତରାୟଙ୍କ ସହାୟତାରୁ ଦଶହଜାର ଟଙ୍କା ସରକାରୀ ଅନୁଦାନ ମିଳିଲା ।

ଆମେ ଚାରିପାଞ୍ଚଜଣ ଶିକ୍ଷାବନ୍ଧୁ ବସି ରଜତ ଜୟନ୍ତୀର କାର୍ଯ୍ୟକ୍ରମ ଚୂଡ଼ାନ୍ତ କଲୁ । ବିପ୍ରଚରଣ ମହାନ୍ତି ଅଧ୍ୟକ୍ଷ ପଦରୁ ଅବସର ନେଇଥାନ୍ତି ଏବଂ ବିନୋଦ ରାଉତରାୟ ନୂଆକରି

Digitized by srujanika@gmail.com

ଅଧ୍ୟକ୍ଷ ହେଉଥାନ୍ତି । ବିନୋଦ ବାବୁ ଭଲ ଚିତ୍ରଶିଳ୍ପୀ ଓ କବି କିନ୍ତୁ ତାଙ୍କ କାର୍ଯ୍ୟକଳାପରୁ ସେ ଉଦାର ବୋଲି ଜଣାପଡୁ ନଥିଲେ । ଦୁଃଖର କଥା ଅତି ଆଶ୍ଚର୍ଯ୍ୟଜନକ ଭାବେ ଶାନ୍ତିନିକେତନରୁ ଚିତ୍ରକଳା ଅଧ୍ୟୟନ କରି ଫେରିଥିବା ଅଧିକାଂଶ ଓଡ଼ିଆ ଶିଳ୍ପୀଙ୍କର ମାନସିକତା ବିପନ୍ନ । ସେମାନେ ନିଜେ ଗଢ଼ିଥିବା କ୍ଷୁଦ୍ର ଆୟତନ ମଧ୍ୟରୁ ବାହାରି ପାରନ୍ତି ନାହିଁ । ମୁଁ ଆଶଙ୍କା କରୁଥିଲି ବିନୋଦ ରାଉତରାୟ ଆମକୁ ଆଡ଼ ଆଖିରେ ଦେଖିବେ, ସହାୟତା ଦେବେନାହିଁ । ଏଣୁ ଆମେ ଦୁଇଟି ଯାତ୍ରୀବାହୀ ବସ୍‌ରେ ଛାତ୍ରଛାତ୍ରୀ ଅଧ୍ୟାପକ ଭର୍ତ୍ତି ହେଇ ଖଲ୍ଲିକୋଟରେ ପହଞ୍ଚିଥାଉ । ସାଙ୍ଗରେ ନିଜର ହାତଅଙ୍କା ଛବିପତ୍ର ନେବା ପାଇଁ ମୁଁ ଆମ ପିଲାଙ୍କୁ ତାଗିଦା ଦେଇଥାଏ । ବସ୍‌ରୁ ଓହ୍ଲେଇ ଆମେ ଆର୍ଟ୍‌କଲେଜରେ ଗୋଟିଏ ପ୍ରଦର୍ଶନୀର ଆୟୋଜନ କରିବା ପାଇଁ ଚାହିଁଲୁ । ମୁଁ ବିନୋଦ ରାଉତରାୟଙ୍କୁ କଲେଜର ହଲ୍‌ଟିଏ ଆମ ପାଇଁ ଖୋଲି ଦେବା ପାଇଁ ଅନୁରୋଧ କଲି । କିନ୍ତୁ ସେ ସମସ୍ତ ଶାଳୀନତା ଓ ଅଧ୍ୟକ୍ଷର ଉଦାରତା ଭୁଲିଯାଇ ମୋତେ ନାସ୍ତିବାଣୀ ଶୁଣାଇଲେ । ମୋତେ ତାଙ୍କର ମୁହଁ ଛିଞ୍ଚାଡ଼ି କଥା କହିବା ଅଖଞ୍ଚ ମନେହେଲା ଏବଂ ତାହା ମୋ ମନରେ ଯଥେଷ୍ଟ ଆଘାତ ଦେଲା । ଆମ ପିଲାମାନେ ପରିସ୍ଥିତିକୁ ନିଜ ଅକ୍ତିଆର ଭିତରକୁ ନେବା ପାଇଁ ଚାହିଁଲେ । ମୁଁ ମନାକଲି । ତଳେ ଘାସ ଲନ୍ ଉପରେ ଉଆସ କାନ୍ଥକୁ ଆଉଜେଇ ଛବି ଗୁଡ଼ିକ ସଜାଡ଼ି ପ୍ରଦର୍ଶନୀ ଆରମ୍ଭ କରିବା ପାଇଁ କହିଲି । ପ୍ରଦର୍ଶନୀ ପାଇଁ କେବଳ କାନ୍ଥରେ ଛବି ଝୁଲିବା ଦରକାର, ସେଭଳି କିଛି ନୀତି ନିୟମ ନାହିଁ । ଏଣୁ ଯେ କୌଣସି ଉପାୟରେ ସେଗୁଡ଼ିକ ପ୍ରଦର୍ଶିତ ହେଇଗଲେ ଉଦ୍ଦେଶ୍ୟ ସାଧିତ ହେଇଗଲା ବୋଲି କୁହାଯିବ । ଚିତ୍ରର ପ୍ରଦର୍ଶ...ଟିଏ ଜ...ୟୋଜିତ ହେଲା, କିନ୍ତୁ ଦେଖିବ କିଏ ? ତାକୁ ଉପଭୋଗ ବା କରିବ କିଏ ? ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ ସଦଳବଳେ ଖଲ୍ଲିକୋଟରେ ପହଞ୍ଚିଛି ଏ କଥାର ସୁରାକ ପାଇ ଅଧ୍ୟକ୍ଷ ବିନୋଦ ରାଉତରାୟ ତାଙ୍କ କଲେଜରେ ଛୁଟି ଘୋଷଣା କରିଦେଇଥିଲେ ଏବଂ ପିଲାମାନଙ୍କୁ ହଷ୍ଟେଲ ଛାଡ଼ି ଚାଲିଯିବା ପାଇଁ ଆଦେଶ ଦେଇଥିଲେ । ଗୋଟିଏ ପରିତ୍ୟକ୍ତ କୋଠାଘର ସେଦିନ ଆମକୁ ସ୍ୱାଗତ ଜଣାଇଥିଲା । ଅଧ୍ୟକ୍ଷ ମହାଶୟଙ୍କ ବକ୍ତବ୍ୟ ଅନୁଯାୟୀ ତାଙ୍କ ପିଲାମାନେ ପ୍ରଦର୍ଶନୀ ଆୟୋଜନ କରିବା ପାଇଁ କୌଣସି ସରକାରୀ ଆଦେଶ ନଥିଲା । କଲେଜଟିକୁ ରଜତ ଜୟନ୍ତୀ ପାଳନ ଅବସରରେ ଛୁଟି ଘୋଷଣା କରିବାକୁ କ'ଣ ସରକାର ନିଷ୍ପତ୍ତି କରିଥିଲେ ? ବ୍ୟକ୍ତିଗତ ଅସୂୟା ଓ ହୀନମ୍ମନ୍ୟତା ନନ୍ଦଲାଲଙ୍କ ଏଭଳି ଜଣେ ଦାୟିତ୍ୱବାନ୍ ପଟ୍ଟଶିଷ୍ୟଙ୍କୁ ଆକ୍ରାନ୍ତ କରିଥିଲା ଯେ ସେ ସମସ୍ତ ଭଦ୍ରୋଚିତ ବ୍ୟବହାର ଭୁଲିଯାଇ ନିଜକୁ ଅତି ଲଜ୍ଜାହୀନ ଭାବେ ଆମ ଆଗରେ ଉପସ୍ଥାପିତ କରିଥିଲେ ।

ଖଲ୍ଲିକୋଟର କିଛି ସ୍ଥାନୀୟ କଳାଛାତ୍ର ଓ ଆମ କଲେଜର ଅଶିଏ, ନବେ ପିଲାଙ୍କୁ ନେଇ ଉଆସ ଆଗଦୁଆରି ପଡ଼ି...ନ ...ଟେ ଆୟୋଜନ କରାଗଲା । ଖଲ୍ଲିକୋଟ

Digitized by srujanika@gmail.com

କଳା ମହାବିଦ୍ୟାଳୟର ଅଧ୍ୟାପକ ଚନ୍ଦ୍ରମଣି ବିଶ୍ୱାଳ, ବିପିନ ବିହାରୀ ସାହୁଙ୍କ ଅନୁରୋଧ ରକ୍ଷାକରି ଯତ୍‌ସାମାନ୍ୟ ପାରିତୋଷିକ ଗ୍ରହଣ କରି ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟର ପ୍ରଥମ ଅଧ୍ୟକ୍ଷ ଶରତ ଚନ୍ଦ୍ର ଦେବଙ୍କ ଆବକ୍ଷ ତୈଳ ଚିତ୍ରଟିଏ ଆଙ୍କି ଦେଇଥିଲେ । ଚିତ୍ରଟିଏ ଉତ୍ସବର ମର୍ଯ୍ୟାଦା ବଢ଼ାଇ ଦେଇଥିଲା । ଆମେ ଦୈନିକ ଖବର କାଗଜ 'ସମ୍ବାଦ'ର ସଂପାଦକ ସୌମ୍ୟ ରଞ୍ଜନ ପଟ୍ଟନାୟକଙ୍କୁ ଉତ୍ସବର ମୁଖ୍ୟଅତିଥି ଭାବେ ନିମନ୍ତ୍ରିତ କରିଆଣିଥିଲୁ । ବିପିନ ବିହାରୀ ସାହୁ ଖଲ୍ଲିକୋଟର ଲୋକ ହୋଇଥିବାରୁ ସଭାପାଇଁ ଆନୁସଙ୍ଗିକ ସାମାନ ଯୋଗାଡ଼ କରିବାରେ ଅସୁବିଧା ହେଲା ନାହିଁ । ଆମର ଶିକ୍ଷକମାନଙ୍କ ମଧ୍ୟରୁ ଅଜିତ କେଶରୀ ରାୟ ଓ ବିପ୍ରଚରଣ ମହାନ୍ତି ଆମ ଉତ୍ସବରେ ଯୋଗ ଦେଇଥିଲେ । କଲେଜରୁ ଅବସର ଗ୍ରହଣ କରିସାରିଥିଲେ ସୁଦ୍ଧା ସେମାନଙ୍କ ଉପସ୍ଥିତି ଆମକୁ ଉତ୍ସାହିତ କରିଥିଲା । ସେମାନଙ୍କ ସହିତ କଲେଜର ବଡ଼ବାବୁ ଉଦିତ ପ୍ରତାପ ସିଂହ ମଧ୍ୟ ସେଦିନ ଆମ ସାଙ୍ଗରେ ରହିଥିଲେ । ବଡ଼ବାବୁତ ନୁହେଁ ଆମେ କଲେଜରେ ପଢ଼ିଲାବେଳେ ତାଙ୍କୁ ଟିକି ବାବୁ ବୋଲି ଡାକୁଥିଲୁ । ଆମ ଆୟୋଜକ ଦଳର ରାମହରି ଜେନା ସେତେବେଳକୁ କେନ୍ଦ୍ର ଲଳିତ କଳା ଏକାଡେମୀର ଫେଲୋସିପ୍ ପାଇ କଲିକତା ଆଞ୍ଚଳିକ କଳା କେନ୍ଦ୍ରରେ ଗ୍ରାଫିକ୍ କଳାରେ ଗବେଷଣା କରୁଥିଲେ । ଆମଠାରୁ ଜୟନ୍ତୀ ପାଳନର ଖବର ପାଇ ସେ ଖଲ୍ଲିକୋଟରେ ପହଞ୍ଚିଲେ । ଏତେ ପ୍ରକାର ପ୍ରତିବନ୍ଧକ ଓ ବାଧାବିଘ୍ନ ସତ୍ତ୍ୱେ ସେଦିନ ନିରାଡ଼ମ୍ବର ଉଚ୍ଚକୋଟୀର ଉତ୍ସବଟିଏ ଆୟୋଜିତ ହୋଇପାରିଥିଲା । ପ୍ରଥମ ଦିନର ଉତ୍ସବ ସାଙ୍ଗ ହେଲାପରେ ଆମ ପିଲାମାନେ କିଛି ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ଭୁବନେଶ୍ୱର ଫେରିଆସିଲେ । ଆମେ ଆୟୋଜକ ଦଳଟି ଖଲ୍ଲିକୋଟରେ ସେହି ରାତିକ ଅଟକି ଯାଇ ତା' ପରଦିନ କାଳିଜାଈଙ୍କଠାରେ ଭୋଜି କରି ଖାଇଲୁ ଓ କଳାବିଦ୍ୟାଳୟର ଉନ୍ନତି କଳ୍ପେ ଆଲୋଚନା କରି ବିଭିନ୍ନ ପ୍ରସ୍ତାବ ଗ୍ରହଣ କଲୁ ।

ପରମ୍ପରା ଅନୁସାରେ ୧୯୮୨ ମସିହାରେ ରଜତ ଜୟନ୍ତୀ ଉତ୍ସବ ପାଳିତ ହେବା କଥା । ବର୍ଷେ ଦେଢ଼ବର୍ଷର ବିଳମ୍ବ ଶେଷକୁ ଦୀର୍ଘ ପାଞ୍ଚବର୍ଷ ରେ ପହଞ୍ଚିଲା । ଏଭଳି ଅବହେଳା ଅକ୍ଷମଣୀୟ ନିଶ୍ଚୟ । ଏହି କଳା ବିଦ୍ୟାଳୟରେ ଯେଉଁମାନେ ଅଧ୍ୟୟନ କରିଥିଲେ, ସେମାନଙ୍କୁ ଏ ସବୁ ଅବ୍ୟବସ୍ଥାର ବାଧା ଲାଗିବା କଥା । କିନ୍ତୁ ସେଠାକାର ପ୍ରାକ୍ତନ ଛାତ୍ରଛାତ୍ରୀମାନେ ଗଂଜାମୀ ଓ ଅଣଗଂଜାମୀ (ମୁଖ୍ୟତଃ କଟକୀ) ଭିତ୍ତିରେ ଦୁଇ ଭାଗରେ ବିଭକ୍ତ ହେଇସାରିଥିଲେ । ପୁଣି କଲିକତା ଓ ଶାନ୍ତିନିକେତନରୁ ଅଧ୍ୟାପନା ସାରି ଫେରିଥିବା ଶିଳ୍ପୀମାନେ ଖଲ୍ଲିକୋଟିଆଙ୍କୁ ନ୍ୟୁନ ନଜରରେ ଦେଖୁଥିଲେ । ଏଣୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ରଜତ ଜୟନ୍ତୀ କଥା ଗଞ୍ଜାମିଆଙ୍କୁ ଛାଡ଼ି ଆଉ କିଏ ବା ଭାବିଥାନ୍ତା, ଆଉ କାହାକୁ ବା ବାଧା ଲାଗିଥାନ୍ତା ? ଏ ଭିତରେ ଖଲ୍ଲିକୋଟ କଳା ବିଦ୍ୟାଳୟର ସୁବର୍ଣ୍ଣ

Digitized by srujanika@gmail.com

ଜୟନ୍ତୀ ପାଳିତ ହୋଇସାରିଛି । ଖଲ୍ଲିକୋଟ କଳା ମହାବିଦ୍ୟାଳୟ ବିଭୂତି କାନୁନ୍‌ଗୋ ମହାବିଦ୍ୟାଳୟର ଜନ୍ମଦାତା ବୋଲି ତା'ର ପ୍ରସଙ୍ଗ ଏ ସ୍ମୃତିଗ୍ରନ୍ଥରେ ଗୁରୁତ୍ୱପୂର୍ଣ୍ଣ । ମୋର ସୌଭାଗ୍ୟ ଯେ ମୁଁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ସ୍ୱର୍ଣ୍ଣଜୟନ୍ତୀ ସମାରୋହ ସମିତିର ଅଧ୍ୟକ୍ଷ ମନୋନୀତ ହୋଇଥିଲି । ଏହା ଖଲ୍ଲିକୋଟ କଳା ବିଦ୍ୟାଳୟର ଅଭିବୃଦ୍ଧି ସହିତ ସଂପୃକ୍ତ ହେବାର ଅପୂର୍ବ ସୁଯୋଗ ଯୋଗାଇ ଦେଇଥିଲା।

ରଜତ ଜୟନ୍ତୀ ଉପଲକ୍ଷେ ପ୍ରକାଶିତ ସ୍ମରଣିକା ହିଁ ସେହି ଅମ୍ଳାନ ସ୍ମୃତିର ସ୍ମାରକୀ ରୂପେ ଏବେ ବି ମୋ ପାଖରେ ସାଇତା ଅଛି । ଏହି ସ୍ମରଣିକାର ପ୍ରଚ୍ଛଦରେ ଓଡ଼ିଆ ପଦ୍ମମଣ୍ଡଳ ଝୋଟିର ନମୁନା କଲିକତାରେ ସିଲକ୍ ସ୍କ୍ରୀନ୍‌ରେ ମୁଦ୍ରିତ ହୋଇଛି। ସ୍ମରଣିକାର ଶୀର୍ଷକ ହେଲା 'ଓଡ଼ିଶାର ଚିତ୍ରକଳାରେ ଚାରୋଟି ଦଶନ୍ଧି ।' ମାତ୍ର ଅଠଚାଳିଶ ପୃଷ୍ଠାର ଛୋଟିଆ ବହିଟିଏ । ପୃଷ୍ଠା ଓଲଟାଇଲେ ଆଖିରେ ପଡ଼େ କେତେ ତଥ୍ୟ, କେତେ ଅଭିବ୍ୟକ୍ତି । ଶରତ ଚନ୍ଦ୍ର ଦେବ ଅଧ୍ୟକ୍ଷ ଥିଲେ ୧୯୫୭ ରୁ ୧୯୭୩, ଗୋପାଳ ଚରଣ କାନୁନ୍‌ଗୋ ଅଧ୍ୟାପକ ଭାବରେ ଯୋଗଦେଲେ ୧୯୫୭ ରେ ଆଉ ତା' ପରବର୍ଷ ହିଁ କଲେଜ ଛାଡ଼ିଲେ। ବିପିନ ବିହାରୀ ଚୌଧୁରୀ ଅଧ୍ୟାପକ ଥିଲେ ୧୯୬୩ ରୁ ୧୯୬୭ ଯାଏଁ । ଦୀର୍ଘକାଳ ଅଧ୍ୟାପନା କରିଥିବା ଦୁଇଜଣ ଶିଳ୍ପୀ ହେଲେ ଅଜିତ କେଶରୀ ରାୟ ( ୧୯୫୭ ରୁ ୧୯୮୦), ବିପ୍ରଚରଣ ମହାନ୍ତି (୧୯୫୭ ରୁ ୧୯୮୫)। ଯେଉଁମାନଙ୍କ ଲେଖାରେ ଏହି ସ୍ମରଣିକା ସମୃଦ୍ଧ ହୋଇଥିଲା ସେମାନେ ହେଲେ ବିପିନ ବିହାରୀ ସାହୁ, ଶରତ କୁମାର ରଥ, ଶରତ ଚନ୍ଦ୍ର ଦେବ, ଅଜିତ କେଶରୀ ରାୟ, ଚନ୍ଦ୍ରଶେଖର ରାଓ, ବିନୋଦ ରାଉତରାୟ, ଶିବ ପାଣିଗ୍ରାହୀ, ଅଖିଳ ଚନ୍ଦ୍ର ପ୍ରଧାନ ଓ ମୁଁ ।

ଏସବୁ ଲେଖାରେ ଯେଉଁସବୁ ଆସ୍ପୃହା, ଆଶା ଓ ଆକାଂକ୍ଷା ଭର୍ତ୍ତି ହୋଇ ରହିଥିଲା ତାହା ଏବେବି ଅପୂରଣୀୟ । ମୁଁ ବିପିନ ବିହାରୀ ସାହୁଙ୍କ ଲେଖାରୁ କିଛି ଧାଡ଼ି ଏଠି ଉଦ୍ଧାର କରୁଛି । ''ସରକାରୀ ସ୍ତରରେ ଅଧ୍ୟାପକ ପଦବୀ ସୃଷ୍ଟି ହୋଇପାରିବ ଏବଂ ଓଡ଼ିଶାରେ କଳାଶିକ୍ଷାର ଅଭିବୃଦ୍ଧି ଘଟିବ। ମୁଦ୍ରଣ କଳା, ଫଟୋଗ୍ରାଫି, ଡିଜାଇନ୍ ଭଳି ନୂଆ ବିଷୟଗୁଡ଼ିକ ଶିକ୍ଷା ଦିଆଯିବା ଆବଶ୍ୟକ । ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶାଳୟରେ ଗୋଟିଏ କଳାଶିକ୍ଷା ଉପନିର୍ଦ୍ଦେଶକ ପଦବୀ ସୃଷ୍ଟି ହେବା ଦରକାର।''

୧୯୪୧ ମସିହାରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ମୁଖପତ୍ରରେ ପ୍ରକାଶିତ ଶରତ ଚନ୍ଦ୍ର ଦେବଙ୍କ ଗୋଟିଏ ପ୍ରବନ୍ଧ ଆମ ସ୍ମରଣିକାରେ ପୁନଃ ପ୍ରକାଶିତ ହୋଇଥିଲା । ଏକଚାଳିଶ ମସିହାରେ ଶରତ ଚନ୍ଦ୍ର ଯାହା ଆଶା କରିଥିଲେ, ତାହା ଆଜିଯାଏଁ ଅପୂରଣୀୟ ରହିଛି । ତାଙ୍କ ପ୍ରବନ୍ଧରୁ ଏଠାରେ କିଛି ଉଦ୍ଧୃତ ଦେବା ଅସମୀଚୀନ ହେବ ନାହିଁ ।

Digitized by srujanika@gmail.com

''ଅବଶ୍ୟ ଓଡ଼ିଶାରେ ଯଦି ଗୋଟିଏ ଚିରସ୍ଥାୟୀ ଚିତ୍ରପ୍ରଦର୍ଶନୀ ବିଲାତର ରୟଲ୍ ଏକାଡେମୀ ପରି ଥାଆନ୍ତା ତେବେ ଆପଣମାନେ ଚିତ୍ରଶିକ୍ଷର ଫଳ ଅନୁଭବ କରି କାର୍ଯ୍ୟ କରିବାରେ ଲାଗିପଡ଼ନ୍ତେ; କିନ୍ତୁ ଦୁଃଖର ସହିତ ନକହି ରହିପାରୁନାହିଁ, ଆମ ଓଡ଼ିଶା ପରି ଶିଳ୍ପଶାଳୀ ଓ କଳାପୂର୍ଣ୍ଣ ଦେଶରେ ଗୋଟିଏ ଚିତ୍ର ପ୍ରଦର୍ଶନୀର ଅଭାବ । ଯଦ୍ୟପି ତାହା ଥାନ୍ତା ତେବେ ଏକ ଦିଗରେ ଚିତ୍ରକରଗଣ ଉଚ୍ଚଧରଣର ଚିତ୍ତାକର୍ଷକ ଚିତ୍ର ରଚନା କରିବାକୁ ଉତ୍ସାହ ପାଆନ୍ତେ ଓ ଅନ୍ୟଦିଗରେ ସର୍ବସାଧାରଣ ଲୋକେ ଜଗତର ଅମୂଲ୍ୟ ଶୋଭାରାଶି ବୁଦ୍ଧି ପ୍ରୟୋଗ ପୂର୍ବକ ଦେଖିବାକୁ ପାଆନ୍ତେ ଓ ଏ ଅଭାବ ଯେ ଅପୂରଣୀୟ ତା ମୁଁ ମନେକରୁ ନାହିଁ ।

ଶରତ ଚନ୍ଦ୍ର ଚିତ୍ର ଗ୍ୟାଲେରୀକୁ ଚିରସ୍ଥାୟୀ ଚିତ୍ର ପ୍ରଦର୍ଶନୀ ଭାବେ ଅଭିହିତ କରୁଥିଲେ। ଏବେ ବାସ୍ତରୀ ବର୍ଷ ବିତିଗଲାଣି । ଭୁବନେଶ୍ୱରରେ କେତେ ବଡ଼ବଡ଼ ମଲ୍‌ମାନ ମୁଣ୍ଡଟେକି ଉଠିଲାଣି । ତଥାପି ଆର୍ଟ୍ ଗ୍ୟାଲେରୀଟିଏର ଦେଖା ନାହିଁ ।

Digitized by srujanika@gmail.com

# ୬୮. ଆଲିସ୍ ବୋନର୍‌ଙ୍କ ଜନ୍ମଶତବାର୍ଷିକୀ

ଆଲିସ୍ ବୋନର୍ ସୁଇଜରଲ୍ୟାଣ୍ଡରେ ଜନ୍ମିତ ଆନ୍ତର୍ଜାତିକସ୍ତରର ଜଣେ ଭାସ୍କର, ଚିତ୍ରଶିଳ୍ପୀ ଓ ବିଦୂଷୀ । ପ୍ରସିଦ୍ଧ ସୀତାରବାଦକ ରବି ଶଙ୍କରଙ୍କ ବଡ଼ଭାଇ ଉଦୟ ଶଙ୍କର ସହିତ ତାଙ୍କର ଭବଂଗତ ସଂପର୍କ ଥିଲା, ଯିଏ ବିଗତ ଶତାବ୍ଦୀର ବିଂଶ ଓ ତ୍ରିଂଶ ଦଶକରେ ୟୁରୋପ ଓ ଆମେରିକାରେ ନିଜର ନୃତ୍ୟପ୍ରଦର୍ଶନ କରି ବେଶ୍ ଚହଳ ପକାଇଥିଲେ । ଉଦୟ ଶଙ୍କରଙ୍କ ସାମ୍ୟ ସୁଠାମ ଚେହେରା ଓ ଲାଳିତ୍ୟପୂର୍ଣ୍ଣ ଅଙ୍ଗଭଙ୍ଗି ଆଲିସ୍‌ଙ୍କୁ ଆକୃଷ୍ଟ କରିଥିଲା । କିନ୍ତୁ ଉଦୟ ଶଙ୍କର ଆଗରୁ ରେକର୍ଡ଼ କରାଯାଇଥିବା ସଂଗୀତରେ ନାଚୁଥିଲେ । ଏହା ଆଲିସ୍‌ଙ୍କୁ ପସନ୍ଦ ନଥିଲା। ସେ ଉଦୟଶଙ୍କରଙ୍କ ପାଇଁ ଗୋଟିଏ ସଂଗୀତ ଦଳ ଯୋଗାଡ଼ କରିବାକୁ ପ୍ରଥମେ ଭାରତ ଆସିଥିଲେ । ଏହା ୧୯୩୦ ମସିହାର କଥା । ଉଦୟ ଶଙ୍କରଙ୍କୁ ଭେଟିବା ଆଗରୁ ଆଲିସ୍ ଆନନ୍ଦ କୁମାରସ୍ୱାମୀ, ଜର୍ଜ ବାର୍ଡ଼ ଉଡ୍ ପ୍ରଭୃତି କଳା ଐତିହାସିକମାନଙ୍କ ବହି ପଢ଼ି, ଚିତ୍ର ଦେଖି ଭାରତୀୟ କଳାପ୍ରତି ଆଗ୍ରହ ପ୍ରକାଶ କରିବା ସହିତ ଭାରତକୁ ସ୍ୱପ୍ନ ଦେଖିବା ଆରମ୍ଭ କରିଥିଲେ । ଉଦୟ ଶଙ୍କରଙ୍କ ନୃତ୍ୟ ମନେହେଲା ସେ ଦେଖିଥିବା ଭାରତୀୟ ଭାସ୍କର୍ଯ୍ୟଗୁଡ଼ିକର ପ୍ରାଣବନ୍ତ ରୂପ । ଉଦୟଶଙ୍କରଙ୍କ ନୃତ୍ୟଛନ୍ଦ ଏତେମାତ୍ରାରେ ଆଲିସ୍‌ଙ୍କୁ ପ୍ରଭାବିତ କରିଥିଲା ଯେ ସେ ତାଙ୍କ ନୃତ୍ୟ ଭଙ୍ଗୀର ଦୁଇ ତିନୋଟି ବ୍ରୋଞ୍ଜ୍ ଭାସ୍କର୍ଯ୍ୟ ଗଢ଼ିଛନ୍ତି । ଏଗୁଡ଼ିକ ଏବେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଭାରତ କଳାଭବନରେ ଅବସ୍ଥିତ ଆଲିସ୍‌ଙ୍କ ସ୍ୱତନ୍ତ୍ର ଗ୍ୟାଲେରୀରେ ପ୍ରଦର୍ଶିତ ହୋଇଛି ।

ଆଲିସ୍ 'ଗାଙ୍ଗିସ୍' ନାମକ ପାଣି ଜାହାଜରେ ଆସି ବମ୍ବେରେ ପହଞ୍ଚି କେରଳ ଗସ୍ତକଲେ । ସେଠି କଥାକଳି ନୃତ୍ୟ ତାଙ୍କୁ ପ୍ରଭାବିତ କରିଥିଲା । ସେ ନୃତ୍ୟକୁ ଆଧାର କରି ଅନେକ ଜଳରଙ୍ଗର ସ୍କେଚ୍ ଅଙ୍କନ କଲେ ଏବଂ କଥାକଳି ନୃତ୍ୟ ଉପରେ ଗୋଟିଏ ପୁସ୍ତିକା ମଧ୍ୟ ରଚନା କଲେ । ଭାରତରେ ପରିଦୃଶ୍ୟ ଗ୍ରାମ, ସହର, ପାହାଡ଼, କେଦାର, ନଦୀପଠା, ହାଟବଜାର ମାନଙ୍କର ବର୍ଣ୍ଣସମ୍ଭାର, ଲୋକମାନଙ୍କର ପୋଷାକ ପରିଚ୍ଛଦ ଏବଂ ରାଜା ରାଜୁଡ଼ାଙ୍କ ଥାଟବାଟ, ଆଡ଼ମ୍ବର ତାଙ୍କୁ ଉଦବୁଦ୍ଧ କରିଥିଲା । ସେ ଭାରତୀୟ ଦର୍ଶନ ଓ କଳାକୁ ପରସ୍ପରର ପରିପୂରକ ବୋଲି ଭାବୁଥିଲେ । କଳାର ବାହ୍ୟରୂପର ଅନୁଶୀଳନରେ ସନ୍ତୁଷ୍ଟ ନରହି ଅନ୍ତଃରୂପର କିଭଳି ପ୍ରକାଶ ଘଟିଛି ତାର ଉଦଘାଟନରେ ସଦା ଚେଷ୍ଟିତ ଥିଲେ ।

Digitized by srujanika@gmail.com

ସେ ଏଲୋର ଗୁମ୍ଫାରେ ଖୋଦିତ ଭାସ୍କର୍ଯ୍ୟମାନଙ୍କର ରଚନାରେ ରେଖାର ବିନ୍ୟାସକୁ ଆକଳନ କରି ସେଗୁଡ଼ିକରେ ପଞ୍ଜରର ସ୍ଥିତି ନିରୂପଣ କଲେ । ଏବଂ ପ୍ରତି ପଞ୍ଜରର କେନ୍ଦ୍ରରେ ବିନ୍ଦୁର ଅବସ୍ଥିତିକୁ ନିଦାନ କରି ତାଂର ବିସ୍ତାର ଓ ସର୍ବୋପରି ପରିଧିର ଆବର୍ତ୍ତନ କ୍ଷେତ୍ରରେ ଘଟୁଥିବା ଆକର୍ଷଣ ଓ ବିକର୍ଷଣ ପ୍ରକ୍ରିୟାକୁ କେବଳ ଅନୁଶୀଳନ ମାଧ୍ୟମରେ ସ୍ଥିର କଲେ ନାହିଁ ଏଥିପାଇଁ ତାଙ୍କ ଅନ୍ତର୍ଦୃଷ୍ଟିର ଅନୁଭବ ହିଁ ସହାୟକ ହେଲା । ସେ ଯାହାସବୁ ସ୍ୱତଃସ୍ଫୂର୍ତ୍ତ ଭାବେ ଅନୁଭବ କରିଥିଲେ ତାର ଶାସ୍ତ୍ରଗତ ଭିତ୍ତିଭୂମି ଖୋଜିବାକୁ ଲାଗିଲେ । ସେ ଅବଶ୍ୟ ତାଙ୍କ ଅନୁଭବ ଉପଲବ୍ଧ ଜ୍ଞାନକୁ ଗୋଟିଏ ଗ୍ରନ୍ଥ ଆକାରରେ ପ୍ରକାଶ କରିଥିଲେ ଯାହାର ଶୀର୍ଷକ ଥିଲା, ''ପ୍ରିନ୍‌ସିପଲ୍‌ସ୍ ଅଫ୍ କମ୍ପୋଜିସନ୍ ଇନ୍ ହିନ୍ଦୁ ସ୍କଲ୍ପଚର'' ଏହି ବହିଟି ତାଙ୍କୁ ଜଣେ ବିଦୁଷୀର ମାନ୍ୟତା ଆଣି ଦେଇଥିଲା । କିନ୍ତୁ ତାଙ୍କ ଜ୍ଞାନପିପାସାର ଅନ୍ତ ହୋଇ ନଥିଲା ଏବଂ ଏହି ଅନ୍ୱେଷା ଓ ପିପାସା ତାଙ୍କୁ ଭାରତର ବିଭିନ୍ନ ପ୍ରସିଦ୍ଧ ଭାସ୍କର୍ଯ୍ୟ କଳାର କ୍ଷେତ୍ରକୁ ନେଇଗଲା । ସେ ମହାବଳୀପୁରମ୍‌ରେ ପହଞ୍ଚି ସ୍ଥପତିମାନଙ୍କଠାରୁ ଜାଣିବାକୁ ପାଇଲେ ଯେ ଶିଳ୍ପବିଦ୍ୟା ଓ ଶିଳ୍ପଶାସ୍ତ୍ରର ଗନ୍ତାଘର ହେଲା ଓଡ଼ିଶା । ତାଙ୍କର ଶିଳ୍ପବାସନା ତାଙ୍କୁ ଜଗନ୍ନାଥ ଧାମ ପୁରୀଯାଏଁ ବାଟ କଢ଼େଇ ଆଣିଲା । ଏଠି ସବୁ ଯେଉଁଭଳି ବିଧିନିର୍ଦ୍ଦେଶିତ ପ୍ରକାରେ ଘଟିଗଲା । ଅଚାନକ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସହିତ ତାଙ୍କର ଭେଟ ହେଲା । ତ୍ରିପଣ୍ଡ କଳା ମଣିଷ ହେଲେବି ଚେହେରାରେ ପୁରୀ ପରମ୍ପରାର ଝଲକ । ମୁଖମଣ୍ଡଳରେ ବୈଷ୍ଣବ ଚିତାର ଆଭାସ, କଷାୟବସନ ପରିହିତ ଏହି ମଣିଷଟି ଆଲିସ୍‌ଙ୍କ ଜୀବନରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ଆଲିସ୍‌ଙ୍କ ପ୍ରଶ୍ନର ଉତ୍ତରରେ ଏଲୋରା ଗୁମ୍ଫାରେ ମାସ ମାସ ଧରି ଧ୍ୟାନମଗ୍ନ ହୋଇ ଆଲିସ୍ ଯେଉଁ ପଞ୍ଜରର ସନ୍ଧାନ ପାଇଥିଲେ ଅବିକଳ ସେଭଳି ଗୋଟିଏ ଯନ୍ତ୍ର ସହସା ଆଙ୍କିଦେଇ ସଦାଶିବ ଆଲିସ୍‌ଙ୍କୁ ବିଶ୍ୱାସ ଦେଲେ ଯେ ସେ ଶାସ୍ତ୍ରର ଆଧାରରେ ଏହି ଯନ୍ତ୍ରର ଅବତାରଣା କରିଛନ୍ତି ଏବଂ ଓଡ଼ିଶା ଏଭଳି ଅନେକ ଶିଳ୍ପ ଶାସ୍ତ୍ରର ଗନ୍ତାଘର ।

ଶିଳ୍ପଶାସ୍ତ୍ରର ମନନ, ଅନୁଶୀଳନ ଓ ଅଧ୍ୟୟନ ଆଲିସ୍ ବୋନରଙ୍କୁ ଓଡ଼ିଶା ସହିତ ଛନ୍ଦିଦେଲା । ତା'ପରେ ଓଡ଼ିଶାର ଶିଳ୍ପ ପରମ୍ପରାର ଗନ୍ତାଘରକୁ ଉନ୍ମୋଚନ କରିବାର ପ୍ରୟାସ ଆରମ୍ଭ ହେଲା । ମିଳିତ ଗବେଷଣା ଉପରେ ଆଧାର କରି ସେମାନେ ଘୋଷଣା କଲେ ଯେ ପ୍ରତି ମନ୍ଦିରର ଭିତ୍ତିଭୂମି ଗୋଟିଏ ଗୋଟିଏ ଯନ୍ତ୍ର ଏବଂ ମନ୍ଦିର ନିର୍ମାଣକଳା ତାନ୍ତ୍ରିକ ପଦ୍ଧତି ଦ୍ୱାରା ନିୟନ୍ତ୍ରିତ । କୌଳାଚାର ତନ୍ତ୍ରରେ ସିଦ୍ଧିଲାଭ କରିଥିବା ବିନ୍ଧାଣି ରାମଚନ୍ଦ୍ର ଭଟ୍ଟାରକଙ୍କ ପ୍ରଣିତ 'ଶିଳ୍ପପ୍ରକାଶ' ଚିତ୍ରିତ ତାଳପତ୍ର ପୋଥି ମନ୍ଦିର ନିର୍ମାଣର ବହୁ ଗହନ ତଥ୍ୟକୁ ପ୍ରକାଶ କରିଦେଲା । ଭୂମି ଚିହ୍ନଟ, ମୃତ୍ତିକା ନିରୂପଣ, ମୂର୍ତ୍ତି ସ୍ଥାପନାର ସ୍ଥାନ ନିଦାନ ସହିତ ମନ୍ଦିରରେ ନାୟିକାମୂର୍ତ୍ତିମାନଙ୍କର ଅବସ୍ଥିତି, ଦଶଦିଗପାଳ ଓ ଗ୍ରହପ୍ରତିମାମାନଙ୍କର ଶୈଳ୍ପିକ ତାତ୍ପର୍ଯ୍ୟ ଏହି ଶିଳ୍ପପୋଥିରୁ ପାଇ ହେଲା । ସେମାନେ ମିଥୁନ ମୂର୍ତ୍ତିଗୁଡ଼ିକୁ ମଙ୍ଗଳ ବିଗ୍ରହ ଭାବେ ଚିତ୍ରିତ କରିବା ଫଳରେ ସେମାନଙ୍କୁ ନେଇ

Digitized by srujanika@gmail.com

ଯୁଗଯୁଗର ଶ୍ଳୀଳ ଅଶ୍ଳୀଳ ପ୍ରଶ୍ନ ମନରୁ ହଟିଗଲା । ଆଲିସ୍ ସଦାଶିବ ରଥଶର୍ମାଙ୍କ ସହାୟତାରେ ଏହି ପୋଥିକୁ ସଂପାଦନା କଲେ ଏବଂ 'ଶିଳ୍ପପ୍ରକାଶ' ନାମରେ ଗ୍ରନ୍ଥଟିଏ ପ୍ରକାଶ କଲେ । କଳା ଇତିହାସ କ୍ଷେତ୍ରରେ ଏହି ବହିଟି ସ୍ୱତନ୍ତ୍ର ଗୁରୁତ୍ୱ ଆଣିଦେଲା । ଆଲିସ୍ ଓଡ଼ିଶା ଓ ଓଡ଼ିଶାର ଶିଳ୍ପ ପରମ୍ପରା ସହିତ ବେଶି ବେଶି ସଂପର୍କିତ ହୋଇଗଲେ । ତା'ପରେ ଚାରୋଟି ତାଳପତ୍ରପୋଥି 'ପଦ୍ମକେଶର ଦେଉଳ', 'ତ୍ରିକାଳ ମହାମାୟା ଅର୍ଚ୍ଚନାବିଧି', 'ବୟଚକଡ଼ା' ଓ 'ପଦ୍ମକେଶର ଦେଉଳ କର୍ମାଙ୍ଗୀ'ର ସଂପାଦନା ବଳରେ ସେ କୋଣାର୍କ ସୂର୍ଯ୍ୟମନ୍ଦିରର ଅନେକ ଗହନ ତଥ୍ୟ ଲୋକ ଲୋଚନକୁ ଆଣିପାରିଲେ । ଏହି ତାଳପତ୍ରପୋଥିଗୁଡ଼ିକର ଅଧ୍ୟୟନକୁ ପ୍ରସାରିତ କରିବା ପାଇଁ ସେ ବହୁ ଅପ୍ରକାଶିତ ଗ୍ରନ୍ଥର ସହାୟତା ଲୋଡ଼ିଥିଲେ । ସେଗୁଡ଼ିକ ହେଲା 'ସୂର୍ଯ୍ୟ ତନ୍ତ୍ର' ବା 'ସୂର୍ଯ୍ୟତତ୍ତ୍ୱ ବିସ୍ତାର ମଣ୍ଡଳ ସର୍ବସ୍ୱ', 'ଶିଳ୍ପ ସାରିଣୀ', 'ମାଦଳା ପାଞ୍ଜି' ଓ 'ସୌଧିକାଗମ' । ସ୍ଥାପତ୍ୟର ମାନବିକ ଦିଗ ଏବଂ ଶିଳ୍ପରେ ବ୍ୟବହୃତ ପରିଭାଷାର ସାହିତ୍ୟିକ ଛଟା ତଥା ମନ୍ଦିର ନିର୍ମାଣ କୌଶଳରେ ଲୌକିକ ପରମ୍ପରାର ପ୍ରୟୋଗ ହେଲା ସିଏ ସଂପାଦନା କରିଥିବା ଗ୍ରନ୍ଥ ''ନିଉ ଲାଇଟ୍ ଅନ୍ ଦ ସନ୍ ଟେମ୍ପଲ୍ ଅଫ୍ କୋଣାର୍କ'' ର ବିଶେଷତ୍ୱ । ଓଡ଼ିଶାର କଳା ଇତିହାସ ଅଧ୍ୟୟନ କ୍ଷେତ୍ରରେ ପ୍ରଥମ କରି ମନ୍ଦିର ନିର୍ମାଣ ଦାୟିତ୍ୱରେ ଥିବା ଶିଳ୍ପୀମାନଙ୍କର ନାମ ଓ ଶ୍ରେଣୀ ବିଭାଗ, ମନ୍ଦିର ପ୍ରତିଷ୍ଠା ଓ ପୂଜାବିଧି ସଂପର୍କରେ ଆମେ ଅବଗତ ହେଲୁ ।

କୋଣାର୍କ ବହି ପରେ ଆଲିସ୍‌ଙ୍କ ଗବେଷଣାକୁ ଆଧାର କରି ଆଉ ଦୁଇଟି ଗ୍ରନ୍ଥ ପ୍ରକାଶ ପାଇଛି । ସେହି ଦୁଇଟି ହେଲା ରାଜରାଣୀ ମନ୍ଦିରର ଶିଳ୍ପାୟନକୁ ନେଇ 'ଶିଳ୍ପରତ୍ନ କୋଷ' ଓ 'ବାସ୍ତୁସୂତ୍ର ଉପନିଷଦ' । ଶିଳ୍ପୀ ଭାବରେ ଆଲିସ୍‌ବୋନର୍ ଆମେ ଭାରତୀୟ କଳାଜଗତକୁ ଯେତିକି ପ୍ରଭାବିତ କରିପାରି ନଥିଲେ ଜଣେ ମର୍ମଜ୍ଞ ପଣ୍ଡିତ ଭାବରେ ବିପୁଳ ଯଶର ଅଧିକାରିଣୀ ହୋଇ ଭାରତୀୟ କଳା ଇତିହାସକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇ ଆଲୋଡ଼ିତ କରିଦେଇଥିଲେ । ଏସବୁ ଅଭିନବତ୍ୱ ଭିତରେ ଓଡ଼ିଶାର କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଧର୍ମଧାରାର ସ୍ୱାତନ୍ତ୍ର୍ୟ ବାରି ହେଇ ପଡୁଥିଲା । ଏଭଳି ଜଣେ ଅନନ୍ୟ ବ୍ୟକ୍ତିତ୍ୱଙ୍କ ଶତବାର୍ଷିକୀ ଆମ କଲେଜରେ ପାଳିତ ହେବା ପାଇଁ ଯେବେ ପ୍ରସ୍ତାବ ମିଳିଲା, ଆମ କଲେଜ ସମ୍ମାନିତ ହେଲା ଏବଂ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନେ ଧନ୍ୟ ହୋଇଗଲେ ।

ଉତ୍ସବଟି ଏକ ଆନ୍ତରିକ ପରିବେଶ ମଧ୍ୟରେ ପାଳିତ ହେଲା । ବନାରସର ଆଲିସ୍ ବୋନର୍ ପ୍ରତିଷ୍ଠାନ ଏବଂ ଜୁରିକ୍‌ରେ ବନ୍ଧୁ ଏବରହାର୍ଡ୍ ଫିସର୍‌ଙ୍କ ନେତୃତ୍ୱରେ ପରିଚାଳିତ ମୂଳ ଗବେଷଣା ଅନୁଷ୍ଠାନ ଆମ କଲେଜରେ ଆଲିସ୍ ବୋନର୍‌ଙ୍କ ଶତବାର୍ଷିକୀ ଉତ୍ସବ ପାଳନର ଦୁଇଟି ଦିଗ ପ୍ରତି ସଚେତନ ଥିଲେ । ଗୋଟିଏ ହେଲା ଓଡ଼ିଶା ସହିତ ଆଲିସ୍‌ଙ୍କ ସଂପର୍କର ସ୍ମୃତିକୁ ପୁନର୍ଜୀବିତ କରିବା ଓ ଅନ୍ୟଟି ହେଲା ସେହି ସ୍ମୃତି ରୋମନ୍ଥନର ସାକ୍ଷୀ ଭାବେ ନୂଆ ନୂଆ ଗଢ଼ି ଉଠୁଥିବା ଗୋଟିଏ କଳା ମହାବିଦ୍ୟାଳୟକୁ ସଂପୃକ୍ତ

Digitized by srujanika@gmail.com

କରିବା । ଆଲିସ୍ ତାଙ୍କ ଜୀବଦ୍ଦଶାରେ ଆଶା ପୋଷଣ କରୁଥିଲେ ଯେ ତାଙ୍କ ଗବେଷଣା ଭାରତର ତଥା ବିଶ୍ୱର ଯୁବପିଢ଼ିକୁ କଳା ଗବେଷଣାର ଏକ ନୂଆ ଆଭିମୁଖ୍ୟ ଯୋଗାଇ ଦେବ ଯାହାଫଳରେ ସେମାନେ ସ୍ଥୂଳତାର ବାହ୍ୟ ଆବରଣ ଭେଦକରି କଳାର ମର୍ମ ବିନ୍ଦୁରେ ପହଞ୍ଚିପାରିବେ । ତାହାହେଲେ ଯାଇ ଶିଳ୍ପକଳାର ମାର୍ମିକ ଅବବୋଧ ପ୍ରତି ସେମାନଙ୍କ ଆଦର ବଢ଼ିବ ।

ଆମେ କୌଣସି ସରକାରୀ ପଦାଧିକାରୀଙ୍କୁ ଏହି ଉତ୍ସବକୁ ନିମନ୍ତ୍ରଣ କରି ନଥିଲୁ । ବନାରସସ୍ଥିତ ଆଲିସ୍‌ବୋନର୍ ଗବେଷଣାପ୍ରତିଷ୍ଠାନର ନିର୍ଦ୍ଦେଶିକା ବେତିନା ବାଉମର୍, ବିଂଶ ଶତାବ୍ଦୀର ଶ୍ରେଷ୍ଠ ଓଡ଼ିଆ ଲେଖକ ପଦ୍ମଭୂଷଣ ଗୋପୀନାଥ ମହାନ୍ତି, ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ସଂସ୍କୃତ ପଣ୍ଡିତ ଦୁଃଖିଶ୍ୟାମ ପଟ୍ଟନାୟକ ଓ ଡକ୍ଟର ଭଗବାନ ପଣ୍ଡା ଅତିଥି ଭାବେ ଯୋଗ ଦେଇଥିଲେ । ଗଂଜାମ ମଥୁରାର ପାରମ୍ପରିକ ସ୍ଥପତି ନେତ୍ରୋତ୍ସବ ଦାସଙ୍କୁ ଏ ଉତ୍ସବରେ ପାଟ ଜଠା ଦେଇ ସମ୍ବର୍ଦ୍ଧିତ କରାଯାଇଥିଲା । ନେତ୍ରୋତ୍ସବ ଶିଳ୍ପଶାସ୍ତ୍ରରେ ଉଲ୍ଲିଖିତ ପଦ୍ଧତି ଅନୁସରଣ କରି ପଥରରେ ମନ୍ଦିର ନିର୍ମାଣର କୌଶଳ ଜାଣିଥିଲେ । ତାଙ୍କରି ମାଧ୍ୟମରେ ଓଡ଼ିଶାର ପ୍ରାଚୀନ ମନ୍ଦିର ନିର୍ମାଣ ପରମ୍ପରାଟିଏ ବଞ୍ଚି ରହିଥିଲା । ଆଧୁନିକ ଶିଳ୍ପୀମାନେ କଳାର ଉତ୍ସକୁ ହେୟ କରିଦେଇ ସ୍ରୋତ ଉପରେ ଭାସି ରହିବାକୁ ଶ୍ରେୟ ମଣିଥାନ୍ତି । ଆଧୁନିକତା ଯେ ପରମ୍ପରାର ନବ୍ୟରୂପ ଏହା ସେମାନେ ଭୁଲି ଯାଇଥାନ୍ତି । ଏଣୁ କଳାର ମର୍ମକୁ ଛାତ୍ରଛାତ୍ରୀ ତଥା ଯୁବପିଢ଼ି ଆଗରେ ଉପସ୍ଥାପନା କରିବା ଏ ସମ୍ବର୍ଦ୍ଧନାର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ଗୋପୀନାଥ ମହାନ୍ତି ଆଲିସ୍‌ଙ୍କ କୋଣାର୍କ ବହିର କେତୋଟି ନୂତନ ଦିଗପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । ତା' ଭିତରେ ଥିଲା ଆଲିସ୍‌ଙ୍କ ଶିଳ୍ପସାହିତ୍ୟ ପ୍ରତି ଶ୍ରଦ୍ଧା ଓ ଶିଳ୍ପସତ୍ୟକୁ ଉନ୍ମୋଚନ କରିବାର ସାହସିକତା । ତାଙ୍କ ଗବେଷଣାରୁ ପ୍ରାପ୍ତ ଗୁଡ଼ିଏ ନୂତନ ପରିଭାଷା ଯଥା କନ୍ୟାମୂର୍ତ୍ତି, ରାହାସିଂହ ବା ଗଣ୍ଡିସିଂହ, ପିଠାଖିଆ (ମହାରଣାଙ୍କୁ ପୁରସ୍କାର), ହାତୀଆଳ, ମୁଖଶାଳା, ମୁଣ୍ଡଳୀ, ଚିରାସିଂହ, ଅଳାଶ୍ରୀ, ପଥୁରିଆ, ଚୂନରା ସେବକ, ଲୁହାବାଗିଆ, ପରିଚ୍ଛା, ପାଇଟିଆଳ, ରାଜବନ୍ଧ, ମୁହାଁଛି, କଳଗୟଳ, ଉଠାଳି, ଫାଶ, ଭାରିଆ, ମହାଶ୍ରମ, ଖୀଳପଥର, ଢେକା ସାଙ୍ଗି ପ୍ରଭୃତି ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି କରେ । ଏହି ଖାଣ୍ଟି ଓଡ଼ିଆ ଶବ୍ଦଗୁଡ଼ିକର ଶିଳ୍ପ ଗବେଷଣାରେ ପ୍ରୟୋଗର ଅଭାବ ଉଦ୍‌ବେଗଜନକ ଅନେକ ଅଣଓଡ଼ିଆ ଗବେଷକ, ବିଶେଷ କରି ବଙ୍ଗୀୟମାନେ ପ୍ରଚଳନ କରିଥିବା ଗୁଡ଼ିଏ ଅର୍ଥହୀନ ଶବ୍ଦ ଆମ ଗବେଷଣାରେ ଭର୍ତ୍ତି ହେଇଯାଇ ଶିଳ୍ପସାହିତ୍ୟକୁ ଆବିଳ କରିଦେଉଛି । ପୁଣି ପ୍ରଥମଥର ପାଇଁ ଆଲିସ୍‌ଙ୍କ କୋଣାର୍କ ବହି ବହୁ କାରିଗରଙ୍କୁ ଚିହ୍ନଟ କରି ସେମାନଙ୍କ ନାମକରଣ କରିପାରିଥିବା ଏକ ସାହସିକ ପଦକ୍ଷେପ ।

ଗୋପୀନାଥ ମହାନ୍ତି ବହିରୁ ଉଦ୍ଧାର କରି କାରିଗରଙ୍କର ବହୁ ନାଁ ସଭାରେ ଉପସ୍ଥାପନ କରିଥିଲେ । ସେଥିରୁ ମାତ୍ର କେତୋଟି ଏଠାରେ ଉଲ୍ଲେଖ କରାଯାଉଛି । ଭୁବନମୋହନ ପୁରୋହିତ, ଭୁବନେଶ୍ୱର ରାଜଗୁରୁ, ମୁଖ୍ୟସ୍ଥପତି ସଦାଶିବ ସାମନ୍ତରାୟ

Digitized by srujanika@gmail.com

ମହାପାତ୍ର, କାର୍ଯ୍ୟନିର୍ବାହୀ ସ୍ଥପତି ଗଦେଇ ମହାପାତ୍ର, ମୁଖ୍ୟ ମୂର୍ତ୍ତିବିନ୍ଧାଣି ବିଦ୍ୟାଧର ମହାପାତ୍ର, ପଥର କାରିଗର ମୁଖିଆ ଅଙ୍ଗଁଠୁ ମହାରଣା, ଭାରା ନିର୍ମାଣକାରୀ ରାଜୀବ ମହାରଣା, ଚୂନରା ବିନ୍ଦୁ ମହାରଣା, କମାରମାନଙ୍କ ଦଳପତି ପୁରିଆ ମହାପାତ୍ର ପ୍ରଭୃତି । ଶିଳ୍ପ ଗବେଷଣାରେ ଏହି ନାଁ ଗୁଡ଼ିକ ଯଥେଷ୍ଟ ଗୁରୁତ୍ୱ ବହନ କରେ।

ଉତ୍ସବ ଉପଲକ୍ଷେ ଗୋଟିଏ ନୃତ୍ୟ କାର୍ଯ୍ୟକ୍ରମ ମଧ୍ୟ ଆୟୋଜନ କରାଯାଇଥିଲା । ଆମ କଲେଜର ଛାତ୍ର ଖୋର୍ଦ୍ଧାର ଅଜୟ ସାମନ୍ତ ଏବଂ ତାର ବାନ୍ଧବୀ ଶିଳାଲିପି ପରିଡ଼ା ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ଛାତ୍ରାବସ୍ଥାରେ ଅଜୟ ଭଲ ଓଡ଼ିଶୀ ନୃତ୍ୟ କରୁଥିଲା । ଟେରାକୋଟା କାମରେ ତା'ର ଯଥେଷ୍ଟ ଆଗ୍ରହ ମଧ ଥିଲା । ଆମ କଲେଜର ଛାତ୍ର ଭାବେ ସେ ଲଳିତ କଳା ଏକାଡେମୀର ଏକ ସର୍ବ ଭାରତୀୟ ପ୍ରଦର୍ଶନୀରେ ଟେରାକୋଟାର ଚଉରା ପାଇଁ ପୁରସ୍କୃତ ମଧ୍ୟ ହୋଇଥିଲା । ମୁଁ ତା' ଭିତରେ ଶିଳ୍ପ ସମ୍ଭାବନାଟିଏ ମଧ୍ୟ ଦେଖିପାରିଥିଲି । ସେ ଥରେ ଦି'ଥର ମୋ ଗବେଷଣାରେ ସାମିଲ ହୋଇ ମୋ ସହିତ ଦକ୍ଷିଣ ଓଡ଼ିଶା ଗସ୍ତରେ ଯାଇଥିଲା । ସୁଇଜରଲ୍ୟାଣ୍ଡରେ ଥିଏଟର ସଂକ୍ରାନ୍ତୀୟ ଇଣ୍ଡୋସୁଇସ୍ ପ୍ରକଳ୍ପରେ ଜଣେ ଅଭିନେତା ଭାବେ କାମ କରିବା ପାଇଁ ମୋ ବନ୍ଧୁ ଏବରହାର୍ଡ଼୍‌ଙ୍କୁ କହି ଅଜୟକୁ ମନୋନୀତ କରେଇ ଦେଇଥିଲି । ସିଏ କିମିତି ସେଠି ଏକୁଟିଆ ରହିବ, କାଳେ ଥଣ୍ଡା ମାଡ଼ିପଡ଼ିବ ବୋଲି ସୁଇଜରଲ୍ୟାଣ୍ଡ ଯାଇ ନଥିଲା । ଦିନାକେତେ ଭୁବନେଶ୍ୱର ଖୋର୍ଦ୍ଧା ନ୍ୟାସନାଲ୍ ହାଇୱେ କଡ଼େ ତା' ଭାଇର 'ବିକଳ ଢାବା' କଡ଼େ ଟେରାକୋଟା ଶିଳ୍ପର ଗୋଟିଏ ଶାଳ (ୱାର୍କସପ୍) ଚଳେଇ ଥିଲା, ଏବେ ସବୁ ଛାଡ଼ି ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରେ କିରାଣିଟିଏ ହେଇଯାଇଛି । ଉତ୍ସବ କାର୍ଯ୍ୟକ୍ରମ ଭିତରେ ଅଜୟର ନୃତ୍ୟ ଏତେ ଚିତ୍ତାକର୍ଷକ ଥିଲା ଯେ ତା' ସଂପର୍କରେ ଦି ପଦ ନକହି ରହିପାରିଲି ନାହିଁ ।

ଆଲିସ୍ ବୋନରଙ୍କ ସ୍ମୃତିକୁ ସମ୍ମାନ ଦେଖାଇ ଆମେ ସୁଇସ୍ ଫାଉଣ୍ଡେସନ୍ ସହାୟତାରେ ଆଲିସ୍ ବୋନର ସ୍ମୃତି ପୁରସ୍କାରର କଲେଜରେ ପ୍ରଚଳନ କରିଛୁ । ଗଚ୍ଛିତ ପାଣ୍ଠିର କଳନ୍ତର ଅର୍ଥରେ ପ୍ରତିବର୍ଷ ଆମେ ଭାସ୍କର୍ଯ୍ୟ କଳାରେ ଉତ୍କର୍ଷ ଦେଖାଇଥିବା ଜଣେ ବା ଦୁଇଜଣ ଛାତ୍ରଙ୍କୁ ଏହି ପୁରସ୍କାର ଦେଇ ଆସୁଛୁ । ଏହି ପୁରସ୍କାର ପାଇଥିବା ଯୁବଶିଳ୍ପୀମାନଙ୍କର ତାଲିକା ପାଠକଙ୍କ ମନରେ ଆତ୍ମପ୍ରତ୍ୟୟ ଭରିଦେବ । ସେହି ତାଲିକାଭୁକ୍ତ ନାଁ ମଧ୍ୟରୁ ଏଠାରେ କେତୋଟି ଉଲ୍ଲେଖ କଲି । ନାଁ ଗୁଡ଼ିକ ହେଲା ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ଆର୍ତ୍ତବନ୍ଧୁ ରାଉତ, ଅଞ୍ଜନ କୁମାର ସାହୁ, ଜଗନ୍ନାଥ ପଣ୍ଡା, ପ୍ରତାପ ଜେନା, ଶୋଭନ୍ କୁମାର, କାଳୀ କିଙ୍କର ଦେ ପ୍ରଭୃତି । ଏମାନେ ଏବେ ସମସ୍ତେ ପ୍ରତିଷ୍ଠିତ କଳାକାର । ଆମ କଲେଜ ଏହି ପୁରସ୍କାର ମାଧ୍ୟମରେ ଜଣେ ଆନ୍ତର୍ଜାତିକ ଶିଳ୍ପୀଙ୍କ ସ୍ମୃତି ସହିତ ସଂପର୍କିତ ହେବାର ସୁଯୋଗ ପାଇଛି ।

Digitized by srujanika@gmail.com

# ୬୯. ପୁଣି ଗାଁକୁ ଫେରିଚାଲ : ଡେଲାଙ୍ଗ ଓ ଶିଶୁପାଳଗଡ଼ରେ ଚିତ୍ର କର୍ମଶାଳା

ଯୁବ ଶିଳ୍ପୀମାନଙ୍କୁ ନିଜ ମାଟିରୁ ଅଲଗା କରିଦେଇ, ବାସ୍ତୁହରା କରି ସହରାଭିମୁଖୀ କରେଇଦେବା ହେଉଛି ଆଧୁନିକ କଳାଶିକ୍ଷାର ସବୁଠାରୁ ମାରାତ୍ମକ ଦିଗ । ଅବଶ୍ୟ ପ୍ରାୟ ସବୁ ଆଧୁନିକଶିକ୍ଷା କ୍ଷେତ୍ରରେ ଏହା ପ୍ରଯୁଜ୍ୟ । ବାସ୍ତୁହରା ହେବା ସହିତ ନିଜ ରାଜ୍ୟର ହଜାର ହଜାର ବର୍ଷର କଳା ପରଂପରାରୁ ବିଚ୍ୟୁତି ଅତ୍ୟନ୍ତ ଦୁଃଖଦାୟକ । କଳା ଅଧିକରୁ ଅଧିକ ବୈପଣିକ ସାମଗ୍ରୀରେ ପରିଣତ ହୋଇଯିବା ଫଳରେ ନୂଆ ନୂଆ 'ବଜାର ସମ୍ଭାବନା' ଖୋଜିବାରେ ଶିଳ୍ପୀମାନେ ଲାଗିପଡ଼ନ୍ତି । ନିଜ ଗାଁ ଅବା ସହରରେ ଆଧୁନିକ କଳାର ସେତିକି ଆଦର ବା ଚାହିଦା ନଥିବା ଫଳରେ ସେମାନେ ଜନ୍ମ ମାଟିରୁ ଗୋଡ଼ କାଢ଼ି ବାହାରକୁ ଯିବା ପାଇଁ ଆଗଭର ହୁଅନ୍ତି । ଅବଶ୍ୟ ଏଣେ ନିଜ ଗାଁ ମାଟିରେ ଆଧୁନିକତା ଧୀରେ ଧୀରେ ପ୍ରବେଶ କରେ । କିନ୍ତୁ ଆଧୁନିକତା ନାଁରେ ହିନ୍ଦୀ ଚଳଚିତ୍ର ଜଗତର ଶସ୍ତା ଲୋକପ୍ରିୟ ଫେସନ୍‌ର ପ୍ରବେଶ କଳା ପରମ୍ପରାର ମୌଳିକ ଉତ୍ସକୁ ନଷ୍ଟ କରିଦିଏ ।

ମୋ ଚିନ୍ତା ଭିତରେ ଆଧୁନିକତାରେ ପରମ୍ପରାର ସାରବତ୍ତାକୁ ସଞ୍ଚରେଇବା ନେଇ ବହୁଦିନରୁ ଉନ୍ମେଷ ଦେଖା ଦେଇଛି । କିନ୍ତୁ ମୁଁ ଶାନ୍ତିନିକେତନ କଳାଭବନରେ ଅନୁସୃତ ସ୍ୱଦେଶୀ କଳାର ଧୌତ ଓ ଲେପ ଚିତ୍ରର ପକ୍ଷପାତୀ ନୁହେଁ । ମୁଁ ଚାହେଁ ଆଧୁନିକ କଳା ପରମ୍ପରାରୁ ରସ ଗ୍ରହଣ କରି ପରିପୁଷ୍ଟ ହେଉ । ଭାରତୀୟ ଆଧୁନିକତା କ୍ଷେତ୍ରରେ ଏହା ଘଟିଛି । କିନ୍ତୁ ଏହି ରଙ୍ଗମଞ୍ଚର ଅବସ୍ଥିତି ବଡ଼ ବଡ଼ ସହରରେ ଗାଁରେ ନୁହେଁ ।

ମୁଁ ମୋ ଛାତ୍ରଛାତ୍ରୀଙ୍କ ମଧ୍ୟରେ ସେମାନଙ୍କ ଗାଁ ଗହଳରେ ତିଷ୍ଠି ରହିଥିବା କଳା ପରମ୍ପରା ଓ କଳା ସାମଗ୍ରୀକୁ ନୂଆ ଭାବରେ ଗ୍ରହଣ କରିବା ପାଇଁ ଗୋଟିଏ କାର୍ଯ୍ୟକ୍ରମର ପରିକଳ୍ପନା କରିଥିଲି । କବି ବନ୍ଧୁ ସୂର୍ଯ୍ୟ ମିଶ୍ରଙ୍କୁ କହି ଆମେ ଡେଲାଙ୍ଗ ଗାଁରେ ଗୋଟିଏ ସାହି ଠିକଣା କରିଥିଲୁ ଯେଉଁଠି ଆମର ଏହି କର୍ମଶାଳା ଅନୁଷ୍ଠିତ ହୋଇପାରିବ । ମୁଁ ଦଳେ ଛାତ୍ରୀଙ୍କୁ କ୍ଲାସ୍‌ରେ କହିଲି, ''ଚାଲ ଗାଁକୁ ଫେରିଯିବା'', ସେମାନେ ମୋ କଥାର ମର୍ମ ହଠାତ୍ ବୁଝି ନପାରି ବିସ୍ମୟରେ ମୋ ମୁହଁକୁ ଅନେଇ ରହିଲେ । ମୁଁ ସେମାନଙ୍କ ଦୋ

Digitized by srujanika@gmail.com

ଦୋ ପାଞ୍ଚିଆ ଭାବ ବୁଝିପାରି ମୋ କଥାକୁ ଟିକିଏ ଫେଣେଇ କହିଲି, ''ଦେଖ, ଯେଉଁମାନେ ଛବିକୁ ନେଇ ବେପାର ବଣିଜ କରିବେ, ସେମାନେ ଦିଲ୍ଲୀ ବମ୍ବେ ଯାଆନ୍ତୁ । ଚାଲ ଆମେ ଗାଁକୁ ଯିବା, ମରିହଜି ଯାଉଥିବା କଳାକୁ ବଞ୍ଚେଇବା ପାଇଁ ଚେଷ୍ଟା କରିବା ।'' ଶେଷରେ ଆମେ ବାର ପନ୍ଦର ଜଣ ଡେଲାଙ୍ଗରେ ପହଞ୍ଚି ସୂର୍ଯ୍ୟ ମିଶ୍ର ଠିକଣା କରିଥିବା ଜାଗାକୁ ପରଖି ନେଲୁ । ଏହି ଦଳରେ ଥାଆନ୍ତି ସବିତା ପଣ୍ଡା, ରଶ୍ମିରେଖା ପଣ୍ଡା, ଅତସୀ ବସୁ, ମଞ୍ଜୁ ଦାସ, ନିବେଦିତା ମହାନ୍ତି, ବିନୋଦିନୀ ପଣ୍ଡା, ଅପନ୍ନା ରାୟ, ଅନୁସୂୟା ଦାସ, ବିଦ୍ୟୁତଲତା ପାଟଶାଣୀ, ସଂଗୀତା ରାଓ, ସୁଲୋଚନା ଜେନା ଓ ଅନ୍ୟମାନେ । ତା'ପରେ ଗାଁ ଦାଣ୍ଡରୁ ମାଟି, ଗୋବର ସଂଗ୍ରହ କରି ଏକା ସାଙ୍ଗରେ ବତୁରେଇ, ଚକଟି, ଭଙ୍ଗା ଭଙ୍ଗି ହେଇଥିବା ଘର କାନ୍ଥମାନଙ୍କରେ ଲେପ ଦେଇ ଠିକ୍‌ଠାକ୍ କଲୁ । ତା'ପରେ ଠାଏଁ ଠାଏଁ ରଙ୍ଗ ମାଟି ଲିପାପୋଛା କରି ଝୋଟି, ଚିତା ପକେଇବା ଆରମ୍ଭ କଲୁ । ପ୍ରଥମେ ପ୍ରଥମେ ଗାଁର ଝିଅବୋହୂମାନେ ଆମ କାମ ଦେଖି ମୁରୁକି ହସା ଦେଲେ । କିନ୍ତୁ ଧୀରେ ଧୀରେ ଜଣେ ଅଧେ ସ୍ୱତଃପ୍ରବୃତ୍ତ ହୋଇ ଆସିଲେ ଓ ଆମ ପିଲାଙ୍କ କାମରେ ମିଶିଲେ । ତା'ପରେ ସେମାନଙ୍କ ଭିତରେ ଲୁକ୍କାୟିତ ଶିଳ୍ପପ୍ରବଣତା ସେମାନଙ୍କୁ ଆମ ପିଲାଙ୍କ କାମ ଆଡ଼କୁ ଆକୃଷ୍ଟ କଲା । ସନ୍ଧ୍ୟାବେଳେ ଗାଁରୁ ଫେରିଲାବେଳକୁ ସାହିର ଅଧିକାଂଶ ଝିଅ, ବୋହୂ, ମାଉସୀ, ଖୁଡ଼ୀ ଓ ନାନୀମାନେ ଆମ କଲେଜର ବନ୍ଧୁ ହୋଇସାରିଥିଲେ । ଏଭଳି ଏକ କଳାପ୍ରକଳ୍ପରେ ଅଂଶ ଗ୍ରହଣ କରିଥିବାରୁ ଗୋଟିଏ ନୂଆ ଅନୁଭବରେ ମଜଗୁଲ ଥିଲେ । ସେମାନେ ସେମାନଙ୍କ ଅନୁଭବକୁ ଦୋହରାଇବା ପାଇଁ କଲେଜର ଅନ୍ୟ ବାନ୍ଧବୀମାନଙ୍କୁ ନେଇ କଲେଜର କାନ୍ଥସାରା ଝୋଟି ଆଙ୍କିଲେ । ପିଲାମାନେ ଏହି ଡେଲାଙ୍ଗ କାର୍ଯ୍ୟକ୍ରମରେ ଏଭଳି ଭାବେ ଅନୁପ୍ରାଣିତ ହୋଇଯାଇଥିଲେ ଯେ ମୋତେ ଏଭଳି ଅନ୍ୟ ଗୋଟିଏ କାର୍ଯ୍ୟକ୍ରମର ଆୟୋଜନ କରିବାକୁ ହେଲା ।

କଲେଜରେ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା ନଥିବା ଫଳରେ ଆମେ ଶିଶୁପାଳଗଡ଼ କର୍ମଶାଳା ପାଇଁ ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ସହାୟତା ନେଲୁ । ଅବଶ୍ୟ ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ମୁଁ ଅଧ୍ୟକ୍ଷ ଥିଲି ଏବଂ ଏଥିପାଇଁ ଯାହା ଅର୍ଥର ଆବଶ୍ୟକତା ଥିଲା ତାହା ସୁନନ୍ଦା ପାଠୀ ଫାଉଣ୍ଡେସନ୍ ଯୋଗାଇ ଦେଇଥିଲା । ଅସୀମ ବସୁଙ୍କ ପରାମର୍ଶ କ୍ରମେ ଆମେ ଶିଶୁପାଳଗଡ଼ ଗାଁକୁ ଆମର କର୍ମଶାଳା ବାଛି ନେଇଥିଲୁ । ଗୋଟିଏ ପନ୍ଦର ଜଣିଆ ଦଳଟିଏ ଗଢ଼ାଗଲା । ଦଳରେ ଥିଲେ ପ୍ରଫେସର୍ ରାଜେନ୍ଦ୍ର ପ୍ରସାଦ ଦାସ, ତାଙ୍କ ପତ୍ନୀ ଉତ୍କଳିକା ଦାସ, ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଅସୀମ ବସୁ, ଡିଜାଇନ୍ ଓ ହସ୍ତଶିଳ୍ପ କେନ୍ଦ୍ରର ଚନ୍ଦ୍ରଶେଖର ରାଓ, ସୌଭାଗ୍ୟ ପାଠୀ, ଚିତ୍ରଶିଳ୍ପୀ ରାମହରି ଜେନା, ଆମ କଲେଜର ଛାତ୍ର ଜଗନ୍ନାଥ ପଣ୍ଡା, ପ୍ରତାପ ଜେନା, ଦିଲ୍ଲୀପ କୁମାର ତ୍ରିପାଠୀ, ଅଂଜନ କୁମାର ସାହୁ, ବାଳକୃଷ୍ଣ

Digitized by srujanika@gmail.com

ନନ୍ଦ, ପ୍ରଦୋଷ ମିଶ୍ର ଓ ଅନ୍ୟ କେତେଜଣ । ଏହି ଦଳକ ପାଇଁ ତିନୋଟି ଆମ୍ବାସଡ଼ର ଗାଡ଼ି ବ୍ୟବସ୍ଥା ହୋଇଥାଏ । ଆମେ ଦଳବଦ୍ଧ ହେଇ ଶିଶୁପାଳଗଡ଼ ଲିଙ୍ଗିପୁରରେ ପହଞ୍ଚିଲୁ । ତା'ପରେ ମୂଳ ଦଳଟି ଚାରୋଟି ଭାଗରେ ବାଣ୍ଟିହେଲେ । ପ୍ରତି ଦଳରେ ଜଣେ ଜଣେ ଦଳପତି ରହିଲେ । ଚନ୍ଦ୍ରଶେଖର ରାଓ ଝୋଟି ପକେଇବା ପିଲାଙ୍କ ଦଳର ମୁଖିଆ ହେଲେ । ରାମହରି ଜେନା ବ୍ଲକ୍ ପ୍ରିଣ୍ଟିଙ୍ଗ୍ ଦଳର ଦାୟିତ୍ୱରେ ରହିଲେ, ଜଗନ୍ନାଥ ପଣ୍ଡା କାନ୍ଥରେ ସାଂଝି କରୁଥିବା ପିଲାଙ୍କ ନେତୃତ୍ୱ ନେଲା । ଉତ୍କଳିକା ଦାସ  ନିଜେ ବ୍ରାଉନ୍ ପେପର୍ ଉପରେ କିଭଳି ଝୋଟି ଆଙ୍କିବାକୁ ହୁଏ ତାହା ଗ୍ରାମବାସୀଙ୍କୁ ଶିକ୍ଷା ଦେଲେ । ଅସୀମ ବସୁ ଗାଁ ଭିତରେ ଯୋଗସୂତ୍ର ରକ୍ଷା କରିବା କାମ କଲେ । ଚନ୍ଦ୍ରଶେଖର ତାଙ୍କ ଝିଅ ଗୀତାକୁ ସାଙ୍ଗରେ ନେଇ କାନ୍ଥରେ ଗୋବର ଲିପିବା ଆରମ୍ଭ କଲେ । ଏହା ଗାଁରେ ଏକ ଅଭିନବ ଦୃଶ୍ୟ ସୃଷ୍ଟି କଲା। ତେଲାଙ୍ଗରେ ମଧ୍ୟ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥିଲା । ଉତ୍କଳିକା ଦାସ ଗ୍ରାମବାସୀଙ୍କ ଘର ଭିତରେ ପଶି ମା, ମାଉସୀମାନଙ୍କୁ ଏ ପ୍ରକଳ୍ପର ଉଦ୍ଦେଶ୍ୟ ବୁଝେଇ ସମସ୍ତଙ୍କୁ ଏକଜୁଟ୍ କଲେ । ଧୀରେ ଧୀରେ ଘର ଦାଣ୍ଡରେ ଲୋକଙ୍କ ଗହଳି ଜମିଲା । ପିଲାମାନେ ସ୍କୁଲକୁ ଯିବାବାଟରେ ଗାଡ଼ି ଘୋଡ଼ା ଏବଂ ଧୋବଧାଉଳିଆ ଲୋକଙ୍କୁ ଦେଖି ଆଉ ସ୍କୁଲ ନଯାଇ ଆମ କାମ ପାଖରେ ଅଟକି ଗଲେ । ରାମହରି ପିଲାଙ୍କୁ ଘରକୁ ପଠେଇ ବିଲାତି ଆଳୁ, ଭେଣ୍ଡି ଓ ଅନ୍ୟାନ୍ୟ ପନିପରିବା ମଗେଇ ଆଣି ସେଗୁଡ଼ିକୁ ବିଭିନ୍ନ ବ୍ଲକ୍ ଭଳି କାଟି ଆମେ ସାଙ୍ଗରେ ନେଇଥିବା କନା ଉପରେ ଛାପିଲେ । ସାଦା ଧଳା ଥାନଟି ଶାଢ଼ି ଭଳିଆ ଦିଶିଲା । ଏହି କର୍ମଶାଳାର ଖବର ସଂକ୍ରାମକ ରୋଗ ଭଳି ଗାଁ ସାରା ବ୍ୟାପିଗଲା । କ୍ଲାସ୍ ଛାଡ଼ି ପିଲା ବାହାରି ଆସି ଆମ କର୍ମଶାଳାରେ ଯୋଗ ଦେଲେ । ସେମାନେ ଘରୁ କନା ଖଣ୍ଡେ ଖଣ୍ଡେ ଆଣି ରୁମାଲରେ ଫୁଲ ପକାଇବା ପାଇଁ ଚାହିଁଲେ । ଆଖି ପିଛୁଳାକେ ସେମାନଙ୍କ ଗାଁ ଦାଣ୍ଡରେ ଶାଢ଼ି, ରୁମାଲ ସବୁ ଛାପା ହେଇଯାଇ ପାରିଲା । ଏହାଠାରୁ ବଳି ଆନନ୍ଦର କଥା କ'ଣ ହେଇପାରେ । ଜଗନ୍ନାଥ ମାଟି ଚକଟି କାନ୍ଥରେ ତାଡ଼ି ତାକୁ ମନ୍ଦିର ପ୍ରକାରେ କରି ସେଥିରେ ଦିଅଁ ବସେଇଲା । ଦିଅଁ କେଉଁଠି ପଦ୍ମାସନରେ ତ କେଉଁଠି ବାଘ ଓ ଘୋଡ଼ା ଉପରେ । ମନ୍ଦିରର ଧାର ଗୁଡ଼ିକୁ କଉଡ଼ି, କାଇଁଚ, ଶିପ, ଦର୍ପଣ ଲଗେଇ ସଜେଇ ଦେଲା । ଗୁଜରାଟରେ କାନ୍ଥରେ ଏଭଳି ସାଜସଜ୍ଜା କରାଯାଏ । ଏହାକୁ ସାଂଝି କହନ୍ତି । ଜଗନ୍ନାଥ ବରୋଦାରେ ଚିତ୍ରକଳା ଅଧ୍ୟୟନ କଲାବେଳେ ଏହି କଳା ପରମ୍ପରାକୁ ଆୟତ୍ତ କରିଥିଲା । ମାଟି କାଦୁଅ ଚକଟା ଚକଟି କରି ପିଲାମାନେ ଯେଝାଘର କାନ୍ଥରେ ସାଂଝିମାନ ଗଢ଼ି ସମଗ୍ର ଗାଁଟିକୁ ସେମାନଙ୍କ କଳା ନିପୁଣତାରେ ଚମକାଇ ଦେଲେ । ଜଗନ୍ନାଥ ସହିତ ଅଂଜନ ଓ ପ୍ରତାପ ଏହି ମାଟି କାମକୁ ସାରା ଗାଁରେ ପ୍ରସାରିତ କରିବାରେ ସାହାଯ୍ୟ କଲେ ।

Digitized by srujanika@gmail.com

କର୍ମଶାଳାର ମହକ ଗାଁର ସବୁ ଦିଗକୁ ବ୍ୟାପିଗଲା । ସ୍କୁଲ ଧୀରେ ଧୀରେ ପିଲାଶୂନ୍ୟ ହେଲା । ପ୍ରଧାନ ଶିକ୍ଷକଙ୍କର ତାଗିଦା, ନାଲିଆଖି ଓ ଯାବତୀୟ ବାରଣ ପିଲାଙ୍କ ଆଗ୍ରହ ଆଗରେ ଫିକା ପଡ଼ିଗଲା । ଶେଷରେ ସ୍ୱୟଂ ପ୍ରଧାନ ଶିକ୍ଷକ ଅନୁସନ୍ଧିତ୍ସୁ ମନ ନେଇ କର୍ମଶାଳାରେ ଆସି ପହଞ୍ଚିଲେ । ତାଙ୍କ ମନରୁ ଭ୍ରାନ୍ତ ଧାରଣା ଉଭେଇ ଗଲା । ସିଏ ଉପଲବ୍ଧି କଲେ ଯେ ସ୍କୁଲରେ ପ୍ରଚଳିତ ପାଠ୍ୟକ୍ରମ ତୁଳନାରେ ଚିତ୍ରକଳା ପ୍ରତି ପିଲାଙ୍କର ଆକର୍ଷଣ ଅସମ୍ଭବ । ଏ ଆକର୍ଷଣ ପୁଣି ସ୍ୱତଃସ୍ଫୂର୍ତ୍ତ । ଏଣୁ ପିଲାଙ୍କୁ ଆଟକ କରିବା ବୃଥା ।

ଏହି ଦୁଇଟି କର୍ମଶାଳାରୁ କଳାଶିକ୍ଷା ସଂପର୍କରେ ବେଶ୍ କିଛି ଜାଣିବାକୁ ମିଳିଲା । କାହିଁକି ହାଇସ୍କୁଲମାନଙ୍କରୁ କଳାଶିକ୍ଷକ ପଦବୀକୁ ଅନ୍ତର କରିଦିଆଗଲା ତାହା ବି ସ୍ପଷ୍ଟ ହୋଇଗଲା । ଆମ ହାଇସ୍କୁଲମାନଙ୍କରେ ନିଯୁକ୍ତି ପାଇଥିବା ଚିତ୍ରଶିକ୍ଷକମାନେ ବ୍ଲାକ୍‌ବୋର୍ଡ଼ ଉପରେ କାଉବଗ ଆଙ୍କିଦେଇ ନିଜର କର୍ତ୍ତବ୍ୟ ସଂପାଦନ ହେଇଗଲା ବୋଲି ଭାବିବା ଫଳରେ କାଳକ୍ରମେ ସେମାନେ ସ୍କୁଲ ପାଠ୍ୟକ୍ରମ ମଧ୍ୟରେ ଅଲୋଡ଼ା ହୋଇ ପଡ଼ିଲେ । ଚିତ୍ରକଳା ନାଁରେ ସ୍କୁଲରେ ଯାହା ଶିକ୍ଷାଦେବାର ବ୍ୟବସ୍ଥା ଥିଲା ତାହା କେଉଁ ମାନ୍ଧାତା ଅମଳର ପାଠ । ସେଥିରେ ନା ଛାତ୍ର ଛାତ୍ରୀଙ୍କର ଆଗ୍ରହ ଥିଲା ନା ଚିତ୍ରଶିକ୍ଷକ ନିଜ କଳାପାଠକୁ ସ୍କୁଲର ଅନ୍ୟ ଶିକ୍ଷଣୀୟ ବିଷୟ ସହ ସଂପର୍କିତ କରିପାରୁ ଥିଲେ ।

କଳା ମହାବିଦ୍ୟାଳୟରୁ ଡିଗ୍ରୀ ପାସ୍ କରି ହାଇସ୍କୁଲମାନଙ୍କରେ ଶିକ୍ଷକତା କରିବା ସେତେ ସହଜ ନୁହେଁ । ଶିକ୍ଷାଦାନ ଏକ ଅଲଗା ଧରଣର କାର୍ଯ୍ୟକ୍ରମ, ଯେଉଁଥିରେ ଶିକ୍ଷାର୍ଥୀ ଶିଖାଯାଉଥିବା ବିଷୟ ପ୍ରତି ଶ୍ରଦ୍ଧା ଓ ଆଗ୍ରହ ନ ରଖିଲେ ବା ଅପର ପକ୍ଷରେ ଶିକ୍ଷକ ସେଭଳିଆ ପରିବେଶ ସୃଷ୍ଟି କରି ନ ପାରିଲେ ଶିକ୍ଷା ଗୌଣ ହୋଇ ଅଲୋଡ଼ା ହୋଇଯାଏ । ଆମର କଳାଶିକ୍ଷା କ୍ଷେତ୍ରରେ ତାହାହିଁ ହୋଇଛି । ଗାଁକୁ ଫେରିଚାଲ ଡାକରା ଭିତରେ ପ୍ରଚ୍ଛନ୍ନ ଭାବେ ଗୋଟିଏ ଉଦ୍ଦେଶ୍ୟ ନିହିତ ଥିଲା । ଗାଁ ଗହଳରେ ଯେଉଁ ସ୍କୁଲଗୁଡ଼ିଏ କାମ କରୁଛି, ସେଥିରେ ଶିକ୍ଷାଦାନ କରୁଥିବା କଳାଶିକ୍ଷକମାନେ ଆଧୁନିକ କଳାର ପ୍ରଭାବରେ ସହରାଭିମୁଖୀ ନ ହୋଇ ଗ୍ରାମାଭିମୁଖୀ ହେବା ଆବଶ୍ୟକ ମନେହୁଏ ।

Digitized by srujanika@gmail.com

# ୭୦. ଏ.ବି.ସି. ଶୋ

ଏହା ଏକ ଇଂରାଜୀ ଖଣ୍ଡ ବାକ୍ୟର ସଂକ୍ଷିପ୍ତୀକରଣ । ମୂଳବାକ୍ୟଟି ହେଲା 'ଆର୍ଟ୍' ବାଇ ଚିଲ୍‌ଡ୍ରେନ୍ ଶୋ' । ମୋ ସୁଇସ୍ ବନ୍ଧୁ ଏବରହାର୍ଡ୍ ଫିସର୍ ଶିଶୁ ଚିତ୍ରାଙ୍କନ ପ୍ରଦର୍ଶନୀର ଏଭଳି ନାଁଟିଏ ଦେଇଥିଲେ । ଦୁଃଖ ଜୀବନରେ ଯେତେବେଳେ ଆସେ ତାହା ସମଗ୍ର ସ୍ଥିତିକୁ ଦୋହଲାଇ ଦିଏ । ପ୍ରାଣକୁ କଳବଲ କରି ଜାଳି ପୋଡ଼ି ଦିଏ । ମଣିଷ ଅସହାୟ ହେଇଯାଏ । କିନ୍ତୁ ଦୁଃଖରେ ଦହିହେଇଥିବା ପ୍ରାଣରୁ କିଛିଦିନ ପରେ ଅଙ୍କୁରଟିଏ ଜନ୍ମନିଏ । ତାହାହିଁ ଜୀବନର ଆଶା ଓ ଭରସା । ମୋ ଜୀବନରେ ଏଭଳି ଅଘଟଣଟିଏ ଘଟିଥିଲା । ମୋର ଏକମାତ୍ର ଅଳିଅଳ କନ୍ୟା ସୁନନ୍ଦାର ମୃତ୍ୟୁ ମୋତେ ମୋ ଜୀବନକୁ ନୂଆ କରି ଆଉଥରେ ଚିହ୍ନେଇ ଦେଲା । ଏହି ଚିହ୍ନଟରୁ ରୂପନେଲା ସୁନନ୍ଦା ପାଠୀ ଫାଉଣ୍ଡେସନ୍ । ଏବେ ସବୁକଥା ସ୍ମୃତି । ମୃତ୍ୟୁ ବି, ଫାଉଣ୍ଡେସନ୍ ବି ଆଉ ତା' ସାଙ୍ଗରେ ଏ.ବି.ସି. ଶୋ ମଧ୍ୟ ।

ଆମେ ସୁନନ୍ଦାର ସ୍ମୃତିରେ ୧୯୮୮ ମସିହାରେ ପ୍ରଥମେ ଗୋଟିଏ ରାଜ୍ୟସ୍ତରୀୟ ଶିଶୁ ଚିତ୍ରାଙ୍କନ ପ୍ରତିଯୋଗିତା କଲୁ । ଏଥିରେ ପଚାଶଗୋଟି ସ୍କୁଲର ତେରଶହ ପିଲା ପ୍ରଦର୍ଶନୀରେ ଅଂଶଗ୍ରହଣ କରିଥିଲେ । ଏ ମଧ୍ୟରୁ ବିଚାରକମଣ୍ଡଳୀ କୋଡ଼ିଏ ଗୋଟି ଚିତ୍ର ପୁରସ୍କାର ପାଇଁ ମନୋନୀତ କରିଥିଲେ । ଭୁବନେଶ୍ୱର ସୂଚନା ଭବନଠାରେ ପ୍ରଦର୍ଶନୀଟିଏର ଆୟୋଜନ କରାଗଲା । କୁନି କୁନି ପିଲାମାନେ ସେମାନଙ୍କ ହାତଅଙ୍କା ଚିତ୍ର ପ୍ରଦର୍ଶିତ କଲେ ଏବଂ ପୁରସ୍କୃତ ହେଲେ । ସେମାନଙ୍କ ହସ ହସ ମୁହଁ ଦେଖି ମୁଁ ନିଜ ଦୁଃଖ ଭୁଲିବା ପାଇଁ ଚେଷ୍ଟାକଲି । ଏହି ପ୍ରଦର୍ଶନୀ ସହିତ ଆମେ ଆମ ରାଜ୍ୟର କଳାଶିକ୍ଷା ବ୍ୟବସ୍ଥା ସଂପର୍କରେ ଗୋଟିଏ ଆଲୋଚନାଚକ୍ରର ଆୟୋଜନ ମଧ୍ୟ କରିଥିଲୁ । ବନ୍ଧୁମାନେ ରାଜ୍ୟସ୍ତରୀୟ ପ୍ରଦର୍ଶନୀକୁ ବିସ୍ତାର କରି ଜାତୀୟ ସ୍ତରରେ ଗୋଟିଏ ପ୍ରଦର୍ଶନୀ କରିବାକୁ ପରାମର୍ଶ ଦେଲେ । ବିଭିନ୍ନ ପ୍ରଦେଶର ବିଶିଷ୍ଟ ଶିଳ୍ପୀଙ୍କ ସହିତ ପରାମର୍ଶ କଲି । ସେମାନେ କେନ୍ଦ୍ର ଲଳିତ କଳା ଏକାଡେମୀ ସାଧାରଣ ପରିଷଦର ସଭ୍ୟ ଥିଲେ । ସେମାନଙ୍କୁ ନେଇ ଗୋଟିଏ ଜାତୀୟ ପରିଚାଳନା ସମିତି ଗଢ଼ାଗଲା । ଯେଉଁ ଶିଳ୍ପୀ ବନ୍ଧୁମାନେ ଏଥିରେ ସଭ୍ୟ ରହିଲେ, ସେମାନେ ହେଲେ ପାଟଣାର ଅଓଧେଶ୍ ଅମନ, ବୀରେଶ୍ୱର ଭଟ୍ଟାଚାର୍ଯ୍ୟ, ରାମନାରାୟଣ ପାଣ୍ଡେ, ଶ୍ୟାମ ଶର୍ମା; କଲିକତାର ମୁକ୍ତି ଚକ୍ରବର୍ତ୍ତୀ, ହରେକୃଷ୍ଣ ବାଗ, ଶୁଭପ୍ରସନ୍ନ; ଆନ୍ଧ୍ରପ୍ରଦେଶର ପି.ଏସ୍,

Digitized by srujanika@gmail.com

ଚନ୍ଦ୍ରଶେଖର, କେ ରାଜିୟା; ମେଡ୍ରାସର ଦକ୍ଷିଣାମୂର୍ତ୍ତି, କେ.ଏସ୍.ଶ୍ରୀନିବାସଲୁ, ରାଜସ୍ଥାନର ତେଜ୍ ସିଂହ, ସୁମହେନ୍ଦ୍ର; ପଞ୍ଜାବର ପ୍ରମିଳା ଲୁଥ୍ରା; ତ୍ରିପୁରାର ବିପୁଳକାନ୍ତି ସାହା, ଉତ୍ତର ପ୍ରଦେଶର ଅଖିଳେଶ ନିଗମ, ମଣିପୁରର ଥୋମ୍ବି ସିଂହ ଏବଂ ମିଜୋରମ, ସିକିମ୍, ମେଘାଳୟ, ନାଗାଲ୍ୟାଣ୍ଡ ପ୍ରଭୃତି ଚାରୋଟି ରାଜ୍ୟର ପ୍ରତିନିଧି ଭାବେ ରହିଥିଲେ ଏଲ୍. ଦାମୋଦର ସିଂ, ଏମାନଙ୍କ ସହିତ ଆହୁରି ଥିଲେ ମହାରାଷ୍ଟ୍ରର ନଳିନୀ ଭଗବତ୍, ସୁଧାକର ଚଭନ୍, ମଧ୍ୟପ୍ରଦେଶର ବିମଳ କୁମାର, ୟୁସୁଫ୍; କେରଳର ହରିଦାସନ୍; କର୍ଣ୍ଣାଟକର, ନାନ୍‌ଜୁନଦା ରାଓ, ବାଲାନ୍ ନାମ୍ବିଆର୍, ଏସ୍.କେ. ଭରଦ୍ୱାଜ, ହିମାଚଳ ପ୍ରଦେଶର ଏଚ.କେ ଭରଦ୍ୱାଜ, ଭାବନା ସେଠୀ; ଆସାମରୁ ନୋନୀ ବରପୂଜାରୀ, ଗୁଜରାଟରୁ ହାକୁ ଶାହା, ନରେନ୍ଦ୍ର ଅମୀନ, ଦିଲ୍ଲୀରୁ ବୁଲ୍‌ବୁଲ୍ ଶର୍ମା, ଦେବେନ୍ ସେଠ, ପଣ୍ଡିଚେରୀରୁ ଅବଦୁଲ ରହିମ ଇତ୍ୟାଦି ନିଜ ନିଜ ପ୍ରଦେଶର ଆବାହକ ରହିଲେ । ସେମାନେ ନିଜ ସ୍ତରରେ ଛବି ସଂଗ୍ରହ କରି ଭୁବନେଶ୍ୱରକୁ ପଠାଇଲେ । ଏବଂ ଭୁବନେଶ୍ୱରଠାରେ ସବୁ ରାଜ୍ୟରୁ ଆସିଥିବା ଚିତ୍ରମାନଙ୍କର ଏକ ସାମୂହିକ ଆକଳନ କରାଯାଇ ଶିଶୁ ଓ କିଶୋର ଚିତ୍ରଶିଳ୍ପୀମାନଙ୍କୁ ପୁରସ୍କୃତ କରାଯାଉଥିଲା । ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରରେ ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା ଏବଂ ଲନ୍ ଉପରେ ଆମେ ପୁରସ୍କାର ବିତରଣ ଉତ୍ସବର ଆୟୋଜନ କରୁଥିଲୁ । ପ୍ରଦର୍ଶନୀ ଉପଲକ୍ଷେ ଗୋଟିଏ ସୁଦୃଶ୍ୟ କ୍ୟାଟ୍‌ଲଗ୍ ମଧ୍ୟ ପ୍ରକାଶ ପାଉଥିଲା । ଗୁଣାତ୍ମକତା ବଜାୟ ରଖିବା ପାଇଁ କ୍ୟାଟଲାଗ୍ ଦିଲ୍ଲୀରେ ମୁଦ୍ରିତ ହେଉଥିଲା ।

ଆମ ଭୁବନେଶ୍ୱରର ଶିଳ୍ପୀବନ୍ଧୁମାନେ ଫାଉଣ୍ଡେସନ୍‌ର କର୍ମକର୍ତ୍ତା ରହିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଐତିହାସିକ ରାଜେନ୍ଦ୍ର ପ୍ରସାଦ ଦାସ, ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ, ବିପିନ ବିହାରୀ ସାହୁ, ଶିବ ପାଣିଗ୍ରାହୀ, ରାମହରି ଜେନା, ଡି.ଏନ୍.ରାଓ, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ମିହିର କୁମାର ସାହୁ ତଥା ଅନ୍ୟବନ୍ଧୁମାନେ । ଛାତ୍ରଛାତ୍ରୀମାନେ ଫାଉଣ୍ଡେସନ୍‌ର ପ୍ରତିଟି କାର୍ଯ୍ୟକ୍ରମରେ ସାହାଯ୍ୟ କରୁଥିଲେ । ରାମହରି ଜେନା ବହୁବର୍ଷଧରି ଏକ୍‌ସିକ୍ୟୁଟିଭ୍ ଡିରେକ୍ଟର୍ ଦାୟିତ୍ୱ ତୁଲାଇଛନ୍ତି ଏବଂ ମୋ ପୁଅ ସୌଭାଗ୍ୟ ସହ - ପରିଚାଳନା - ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଆସିଛି ।

ଆମେ ଅନୁଭବ କଲୁ ଯେ, ପ୍ରଦର୍ଶନୀଗୁଡ଼ିକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଆଧାରିତ ହେବା ଉଚିତ । ଗୋଟିଏ ବର୍ଷ ପାଇଁ ଆମେ ବିଷୟକ୍ରମ ସ୍ଥିର କଲୁ ଗଛ । ପ୍ରଦର୍ଶନୀର ଶୀର୍ଷକ ହେଲା 'ମୁଁ ଗଛକୁ ଭଲପାଏ' । ପ୍ରଦର୍ଶନୀ ଘୋଷଣା କରିବା ସହିତ ପ୍ରଦର୍ଶନୀରେ ଅଂଶଗ୍ରହଣ କରିବାର ନିୟମାବଳୀ ଥାଇ ପ୍ରଥମେ ଗୋଟିଏ ପୁସ୍ତିକା ମୁଦ୍ରିତ ହେଇ ସବୁ ରାଜ୍ୟର ଆବାହକଙ୍କ ନିକଟକୁ ପଠେଇ ଦିଆଯାଉଥିଲା । ଏଥିରେ ଛବି ପଛପଟେ ମଡ଼େଇବା ପାଇଁ ଲେବୁଲ ମଧ୍ୟ ରହୁଥିଲା । ପ୍ରଦର୍ଶନୀରେ ଭାଗ ନେବା ପାଇଁ ପ୍ରତ୍ୟେକ ପିଲାକୁ ପ୍ରଥମେ ନିଜଘର ବାଡ଼ିରେ ବା ସ୍କୁଲରେ ଟାରାଗଛଟିଏ ଲଗେଇବା ବାଧ୍ୟବାଧକତା

Digitized by srujanika@gmail.com

ଥିଲା । ପିଲାଟିଏ କହିବ, ''ମୁଁ ଗଛ ଲଗେଇଲି, ମୁଁ ଗଛ ଚିତ୍ର କଲି ଏବଂ ଗଛକୁ ଭଲପାଇ ବସିଲି ।'' ଆମେ ଆଶା କରୁଥିଲୁ ଯେ ଚିତ୍ର ସହିତ ଗଛଟିଏ ବି ଧରାପୃଷ୍ଠରେ ଜନ୍ମ ନେବ । ଚିତ୍ରମାଧ୍ୟମରେ ପିଲା ଗଛଟିଏକୁ ଭଲପାଇବା ଶିଖିବ ।

ଆମେ ଆୟୋଜନ କରୁଥିବା ପ୍ରଦର୍ଶନୀ କେବଳ ଚିତ୍ର ଅଙ୍କନ ମଧ୍ୟରେ ସୀମିତ ନଥିଲା । ଚିତ୍ର ସହିତ ଲେଖା ଓ ନୃତ୍ୟ ମଧ୍ୟ ପରିବେଷଣ କରାଯାଉଥିଲା । ବିଭିନ୍ନ ପ୍ରଦେଶର ପିଲାମାନେ ବିଭିନ୍ନ ଭାଷାରେ ସେମାନଙ୍କ ଲେଖା ପଠାଉଥିଲେ । ସେହି ଲେଖାଗୁଡ଼ିକ ପଢ଼ିଲେ ମନରେ ଅପାର ଆନନ୍ଦ ଜାତ ହେଉଥିଲା । ଲେଖା ଭିତରେ ଆଶା ଓ ବିଶ୍ୱାସ ଭରି ରହୁଥିଲା ଏବଂ ତା'ରି ଭିତରେ ପିଲାମାନଙ୍କର ସ୍ୱପ୍ନ ମଧ୍ୟ ଗୁନ୍ଥି ହୋଇ ରହୁଥିଲା । ଆମେ ପିଲାଙ୍କ ନିଜ ହାତ ଅକ୍ଷରକୁ ବଜାୟ ରଖି ଅଫ୍‌ସେଟ୍ ପ୍ରେସ୍‌ରେ ଲେଖା ମୁଦ୍ରଣ କରୁଥିଲୁ । ଆମ ମନ ଭିତରେ ଚିନ୍ତାଟିଏ ଥାଏ ପ୍ରଚେଷ୍ଟାଟିଏ ଥାଏ, ଆମେ ଯାହା ସବୁ କରୁଛୁ, ତାହା ପ୍ରଦର୍ଶନୀ ହେଉ, ମୁଦ୍ରଣ ହେଉ ବା ପୁରସ୍କାର ହେଉ ବା ଯାହାବି ହେଉ, ଜାତୀୟ ସ୍ତରର ହେବା ଉଚିତ ।

ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପୁରସ୍କାର ନକହି ଆମେ ପୁରସ୍କାର ଗୁଡ଼ିକୁ ସ୍ୱର୍ଣ୍ଣ, ରଜତ ଓ କାଂସ ବୋଲି ଅଭିହିତ କରୁଥିଲୁ । ପୁରସ୍କାରଗୁଡ଼ିକ ପଦକ ଆକାରରେ ପୁନେରେ ତିଆରି ହୋଇ ଆସୁଥିଲା । ପୁନେରେ ଆମ ଶିଳ୍ପୀବନ୍ଧୁ ସୁଧାକର ଚୌହାନ ଏହି ପଦକଗୁଡ଼ିକ ଅତି ଚମତ୍କାର ଭାବେ ନିର୍ମାଣ କରୁଥିଲେ । ପଦକର ଗୋଟିଏ ପଟେ ଫାଉଣ୍ଡେସନ୍‌ର ଲୋଗୋ ଓ ଅନ୍ୟପଟେ ଗୋଟିଏ ପୁଅ ଓ ଝିଅର ମୁହଁ ଶୋଭା ପାଉଥିଲା । ବାସ୍ତବରେ ଦୁଇଟି ତୂଳୀକୁ ପୁଅ ଝିଅ ଆକାରରେ କଳ୍ପନା କରାଯାଇଥିଲା ।  ମସ୍କୋରେ ଅନୁଷ୍ଠିତ ହେଉଥିବା ଶିଶୁ ଚିତ୍ରକଳା ପ୍ରଦର୍ଶନୀ ପାଇଁ ଅନୁରୂପ ପ୍ରତୀକଟିଏ ବ୍ୟବହାର ହେଉଥିଲା । ସୁନନ୍ଦାର ଗୋଟିଏ ଗଛର ଚିତ୍ରକୁ ଫାଉଣ୍ଡେସନ୍‌ର ପ୍ରତୀକ ଭାବେ ବ୍ୟବହାର କରାଯାଉଥିଲା । ପଦକଗୁଡ଼ିକୁ ଜାତୀୟ ପତାକାର ତ୍ରିରଙ୍ଗା ରିବନ୍‌ରେ ଗୁନ୍ଥିଦେଇ ବିଜେତାଙ୍କ ଗଳାରେ ଝୁଲେଇ ଦେଉଥିଲୁ । ଗଳାରେ ପଦକ ଝୁଲେଇ ଦିଆଗଲା ପରେ ପିଲାଙ୍କ ମୁହଁରେ ହସର ଲହରି ଛୁଟି ଉଠୁଥିଲା। ସେମାନଙ୍କ ବାପା ମା' ଏବଂ ଅଭିଭାବକଗଣ ନିଜ ସନ୍ତାନର କୃତିତ୍ୱରେ କୁରୁଳି ଉଠୁଥିଲେ । ପୁରସ୍କାର ଗ୍ରହଣ କରିବାକୁ ପଶ୍ଚିମବଙ୍ଗ, ବିହାର ଓ ଆନ୍ଧ୍ରପ୍ରଦେଶରୁ ପିଲାମାନଙ୍କୁ ନେଇ ବାପା ମା' ତ ଆସୁଥିଲେ, ବେଳେବେଳେ ବମ୍ବେ ଓ ଗୁଜୁରାଟରୁ ମଧ୍ୟ ଅଭିଭାବକମାନେ ପହଞ୍ଚୁଥିଲେ । ସେମାନେ ଫାଉଣ୍ଡେସନ୍‌ର ପୁରସ୍କାର ବିତରଣ ଉତ୍ସବରେ ଭାଗ ନେବା ସହିତ ପୁରୀ କୋଣାର୍କ ପରିଦର୍ଶନ କରି ଫେରୁଥିଲେ ।

ପ୍ରଦର୍ଶନୀ ସହିତ ଶିଶୁ ନାଟିକା ମଧ୍ୟ ପରିବେଷଣ ହେଉଥିଲା । ଗଜେନ୍ଦ୍ର ପ୍ରସାଦ ସାହୁ, ନୃତ୍ୟଗୁରୁ ଗଜେନ୍ଦ୍ର କୁମାର ପଣ୍ଡା ଏବଂ ଅସୀମ ବସୁ ନାଟ୍ୟ ରଚନା ଓ ଅଭିନୟରେ ସହଯୋଗ କରୁଥିଲେ । ଗଜେନ୍ଦ୍ର ପ୍ରସାଦ ସାହୁ ନାଟକ ଅଭ୍ୟାସ କରେଇବା ଓ ବେଷ

Digitized by srujanika@gmail.com

ପୋଷାକ ବ୍ୟବସ୍ଥା କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ଗୋଟିଏ କଉତୁକିଆ ଘଟଣାଟିଏ ମନେଅଛି। କଛନା ଅଂଚଳର ଗୋଟିଏ ପିଲା ଗଛ ପ୍ରଦର୍ଶନୀରେ ପୁରସ୍କୃତ ହୋଇଥାଏ । ସେ ପିଲାଟି ଦେଖିବାକୁ ଟିକିଏ ହୃଷ୍ଟପୁଷ୍ଟ, ଗଜେନ୍ଦ୍ର ତାକୁ ବରଗଛ ଅଭିନୟ କରିବାକୁ କହିଥାନ୍ତି । ସେହି ପିଲାଟି ଅଭିନୟରେ ସମସ୍ତଙ୍କୁ ମୁଗ୍ଧ କରିଦେଇଥାଏ । ତାର ମା' କଲେଜର ଅଧ୍ୟାପକଙ୍କ ଉପରେ ଓ ବିଶେଷ କରି ମୋ ଉପରେ ଖୁସି ହୋଇ ଟିଫିନ୍ ବାଟିରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟ କଲେଜକୁ ପଠାଉଥାନ୍ତି । ଟିଫିନ୍‌ବାଟି ଦେଖିଲେ ସମସ୍ତେ ଏକାସାଙ୍ଗରେ କହିଉଠନ୍ତି, ବରଗଛ ମା' ପଠେଇଛନ୍ତି ।

ଆମେ ଗଛ ପ୍ରଦର୍ଶନୀ ପରେ ପରେ ପକ୍ଷୀ (ସ୍ପିରିଟ୍ ଅଫ୍ ଫ୍ରିଡମ୍ ବା ସ୍ୱାଧୀନ ହୋଇ ଉଡ଼ିପାରିବାର ମଜା), ଆମ ପଡ଼ୋଶୀ (ଆୱାର୍ ନେବର୍), ଆମ ଐତିହ୍ୟ, ଆମ ଦେଶ ଓ ଆମ ଦେଶବାସୀ ପ୍ରଭୃତି ବିଷୟ ଉପରେ ଜାତୀୟ ପ୍ରଦର୍ଶନୀମାନ ଆୟୋଜନ କରିଥିଲୁ । ଆମେ ସମୁଦାୟ ଦୁଇଟି ରାଜ୍ୟସ୍ତରୀୟ ଓ ପାଞ୍ଚୋଟି ଜାତୀୟ ପ୍ରଦର୍ଶନୀ ଆୟୋଜନ କରିପାରିଛୁ । ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ହୋଇ ୧୯୯୫ ମସିହାରେ ଭୁବନେଶ୍ୱର ଛାଡ଼ିଲା ପରେ ସଂଗଠନ ହୁଗୁଳା ହୋଇଗଲା । କିଛି ବନ୍ଧୁ ଭାବିଲେ ପାଠୀ ତାଙ୍କ ନିଜକନ୍ୟାର ସ୍ମୃତିକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଏସବୁ ପ୍ରଦର୍ଶନୀ କରୁଥିଲେ। ପରବର୍ତ୍ତୀ ସମୟରେ ଚନ୍ଦ୍ରଶେଖର ରାଓ ନିଜଘରେ ଛୋଟପିଲାଙ୍କ ପାଇଁ ଗୋଟିଏ ରବିବାସରୀୟ ଆର୍ଟ୍ ସ୍କୁଲ ପରିଚାଳନା କଲେ, ମୋର ଧାରଣା ଥିଲା ସେ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ପକ୍ଷରୁ ସେହି ସ୍କୁଲଟି ଚଳେଇ ରଖିବେ । ମୁଁ ଫାଉଣ୍ଡେସନ୍ କାର୍ଯ୍ୟ ସହ ଏତେ ମାତ୍ରାରେ ସଂଶ୍ଳିଷ୍ଟ ହୋଇଯାଇଥିଲି ଯେ ମୋ ପ୍ରତି ମୋ ବନ୍ଧୁମାନଙ୍କର ଉଦାସୀନତା ମୋ ମନରେ ଯଥେଷ୍ଟ ଆଘାତ ଦେଲା । ମନେହେଲା ବନ୍ଧୁତା ଓ ସଂପର୍କର ଅନେକ ସନ୍ଦର୍ଭ ଏଭଳି ଉପରଠାଉରିଆ । ଶେଷରେ ମୋ ପକ୍ଷରୁ ଫାଉଣ୍ଡେସନ୍‌ର କାର୍ଯ୍ୟକ୍ରମକୁ କମେଇ ଦେବା ପାଇଁ ଚାହିଁଲି । ପ୍ରତି ପ୍ରଦର୍ଶନୀ, ପ୍ରଦର୍ଶନୀ ପୁସ୍ତିକା ଛାପାଛାପି ତଥା ସଭା ଓ ନାଟକ ଆୟୋଜନରେ ସେତେବେଳେ ଦୁଇଲକ୍ଷରୁ ଅଢ଼େଇ ଲକ୍ଷ ଯାଏ ଟଙ୍କା ଖର୍ଚ୍ଚ ହେଉଥିଲା । ଆମେ କେନ୍ଦ୍ର ଲଳିତ କଳା ଏକାଡେମୀ ଏବଂ ଭାରତ ସରକାରଙ୍କ ପରିବେଶ ବିଭାଗରୁ କିଛି ଅନୁଦାନ ପାଉଥିଲୁ । ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଫାଉଣ୍ଡେସନ୍‌ର ଏ.ବି.ସି. କାର୍ଯ୍ୟକ୍ରମ ପାଇଁ କୌଣସି ଆର୍ଥିକ ସାହାଯ୍ୟ ଦେଉ ନଥିଲେ । ରାଜ୍ୟ ଲଳିତ କଳା ଏକାଡେମୀ ଆମକୁ ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ବୋଲି ଜ୍ଞାନ କରୁଥିଲେ । ଏକାଡେମୀ ରଜ୍ୟସ୍ତରୀୟ ଶିଶୁଚିତ୍ରାଙ୍କନ ପ୍ରତିଯୋଗିତା ଆୟୋଜନ କରି ଲକ୍ଷଲକ୍ଷ ଟଙ୍କା ବ୍ୟୟ କରୁଥିଲେ କିନ୍ତୁ ତାଙ୍କର ଏସବୁ ଆୟୋଜନରେ କଳାତ୍ମକତାର ଚମକ ନଥିଲା । ବେଳେବେଳେ ତାହା ହଳଦୀବିହୀନ ବ୍ୟଞ୍ଜନ ଭଳି ମନେହେଉଥିଲା । କେବଳ ତା ନୁହେଁ ପ୍ରଦର୍ଶନୀ ପୁସ୍ତିକାର ମୁଦ୍ରଣ ମଧ୍ୟ ନିମ୍ନମାନର ଥିଲା ।

Digitized by srujanika@gmail.com

ଆମେ ଆମର ଗୋଟିଏ ଦୁଇଟି ଏ.ବି.ସି. ପ୍ରଦର୍ଶନୀକୁ ଅନ୍ତର୍ଜାତୀୟ ସ୍ତରରେ ପହୁଞ୍ଚାଇ ଦେଇଥିଲୁ । ସୁଇଡେନ୍‌ରେ ରହୁଥିବା ଚିତ୍ରଶିଳ୍ପୀ ପ୍ରଦ୍ୟୁମ୍ନ କୁମାର ମହାନନ୍ଦିଆଙ୍କ ପୁତ୍ର ଏବଂ କନ୍ୟା; ସୁଇଜରଲ୍ୟାଣ୍ଡରେ ଆମବନ୍ଧୁ ଏବରହାର୍ଡ୍ ଫିସରଙ୍କ କନ୍ୟା, ଲଣ୍ଡନରେ ରହୁଥିବା ଦେବୀ ସ୍ୱାଲୋଙ୍କ ସଂପର୍କୀୟଙ୍କ ପୁତ୍ର କନ୍ୟାମାନେ ଆନ୍ତର୍ଜାତିକ 'ଏ.ବି.ସି.' ଶୋ'ରେ ଅଂଶ ଗ୍ରହଣ କରି ପୁରସ୍କୃତ ହୋଇଥିଲେ । ମୁଁ ସିନା ଗୋଟିଏ ଭାବଦ୍ୱାରା ଉଦ୍‌ବୁଦ୍ଧ ହେଇ ସ୍ୱର୍ଣ୍ଣ, ରୌପ୍ୟ ଓ କାଂସ ପଦକର ଶ୍ରେୟଃକୁ ଆମ ଦେଶରେ ଗ୍ରାହ୍ୟ କରେଇଦେଇପାରିଲି ବିଦେଶରେ ଏଭଳି ମିଛିମିଛିକିଆ ସ୍ୱର୍ଣ୍ଣପଦକର କୌଣସି ମୂଲ୍ୟ ରହିଲା ନାହିଁ । ସୁଇଜରଲ୍ୟାଣ୍ଡରେ ମୋ ବନ୍ଧୁପତ୍ନୀ ବାରବରା କହିଲେ ଯେ ସ୍ୱର୍ଣ୍ଣପଦକ ବାସ୍ତବରେ ସୁନାରେ ଗଢ଼ାହେବା ଆବଶ୍ୟକ । ବନ୍ଧୁପତ୍ନୀଙ୍କ ଏତିକି ପରାମର୍ଶ ଶୁଣିଲା ପରେ ମୋର ଚେତା ପଶିଲା । ଏଣୁ ଆମେ ଆନ୍ତର୍ଜାତିକ ପ୍ରଦର୍ଶନୀ ଆୟୋଜନରୁ ଓହରିଲୁ ।

ଜାତୀୟ ଏ.ବି.ସି. ଶୋ ଆମର ବହୁବନ୍ଧୁଙ୍କ ମନରେ ଗଭୀର ରେଖାପାତ କରିଦେଇଥିଲା । ଦାଶବେନହୁରଙ୍କ ପୁଅ ଝିଅ ଉଭୟେ ବହୁବର୍ଷ ଧରି ଫାଉଣ୍ଡେସନ୍ ଦ୍ୱାରା ପୁରସ୍କୃତ ହେଉଥିଲେ । ସେ ଏବେବି ଏ.ବି.ସି. ପ୍ରଦର୍ଶନୀ କଥା ସ୍ମରଣ କରନ୍ତି । ସେଭଳି ଚନ୍ଦ୍ରଶେଖର ରାଓ ଓ ଡି. ନାରାୟଣ ରାଓଙ୍କ ପିଲାମାନେ ବହୁବାର ପୁରସ୍କୃତ ହୋଇଛନ୍ତି । ଆମ କଲେଜର ଛାତ୍ରୀ ନମିତା ଆଚାର୍ଯ୍ୟଙ୍କର ଛୋଟ ଝିଅ ତିତିଲି ପ୍ରଥମ ରାଜ୍ୟସ୍ତରୀୟ ପ୍ରଦର୍ଶନୀରେ ପୁରସ୍କୃତ ହେଇଥିଲା ଏବଂ ସେ ବର୍ଷ ସେ ପ୍ରଦର୍ଶନୀକୁ ଉଦ୍‌ଘାଟନ କରିଥିଲା । ଓଡ଼ିଶାରେ ଚିତ୍ରକଳା ଶିକ୍ଷାକୁ ଗୁରୁତ୍ୱ ଦେଇ ବିଶିଷ୍ଟ ଚିତ୍ର ଶିକ୍ଷକମାନଙ୍କୁ ସମ୍ବର୍ଦ୍ଧିତ ମଧ୍ୟ କରିଥିଲୁ । ସେମାନଙ୍କ ମଧ୍ୟରେ ଥିଲେ ଆସିକାର ତାରିଣୀ ଚରଣ ତ୍ରିପାଠୀ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ରଘୁନାଥ ପାଣି, ରବିନାରାୟଣ ନାୟକ, ଆଖି ଫକୀର ମୋହନ ମଲ୍ଲିକ ଓ ରାଜେଶ୍ୱର ପଟ୍ଟନାୟକ । ଓଡ଼ିଶାର ସ୍କୁଲମାନଙ୍କରେ କଳାଶିକ୍ଷାର ସ୍ଥିତି ଓ ପ୍ରଗତି ସଂପର୍କରେ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ଆଲୋଚନାଚକ୍ର ଅନୁଷ୍ଠିତ କରିଛୁ । ବହୁ ଯୁବଶିଳ୍ପୀଙ୍କ ଜୀବନ ଗଢ଼ିବାରେ ଫାଉଣ୍ଡେସନ୍‌ର ସାହାଯ୍ୟକୁ ସେମାନେ ଏବେ ବି ସ୍ୱୀକାର କରନ୍ତି ।

ଏବେ କେବେ କେବେ ନିରୋଳା ମୁହୂର୍ତ୍ତମାନଙ୍କରେ ଏ.ବି.ସି. ଶୋର ପ୍ରଦର୍ଶନୀ ପୁସ୍ତିକା ଉପରେ ଆଖିବୁଲେଇ ଆଣିଲେ କୁନି କୁନି ପିଲାମାନଙ୍କର ନିଷ୍ପାପ ମୁହଁଗୁଡ଼ିକ ମୋତେ ଅଦ୍ଭୁତ ଭାବେ ଆକର୍ଷିତ କରନ୍ତି । ମନେହୁଏ ସମଗ୍ର ଭାରତ ବର୍ଷର ଯୁବ ପ୍ରତିଭାମାନେ ଏବେବି ଏ ଦେଶକୁ ରୂପ ଓ ରଙ୍ଗର ମହକରେ ଭରିଦେବା ପାଇଁ ସତେଜ ଅଛନ୍ତି । ଏସବୁ ମୁହଁ ଭିତରେ ମୁଁ ସୁନନ୍ଦାର ଆତ୍ମପ୍ରତ୍ୟୟର ମୁହଁଟିକୁ ଦେଖିପାରେ । ମନେହୁଏ ସ୍ମୃତି ଆଗରେ ମୃତ୍ୟୁ ବି ପରାଜିତ ହୋଇଛି ।

Digitized by srujanika@gmail.com

# ୭୧. କଲେଜର ନୂଆ କୋଠା : ଉଦୟଗିରି ପାହାଡ଼ତଳେ ପଦ୍ମମଣ୍ଡଳ

କଲେଜର ହତାକୁ ନେଇ ମୋର ସ୍ୱପ୍ନ ଦୁଇଚାରୋଟି କୋଠାଘର ମଧ୍ୟରେ ସୀମିତ ନଥିଲା । ମୁଁ ଗୋଟିଏ ବିରାଟ କ୍ୟାମ୍ପସ୍‌ର ପରିକଳ୍ପନା କରିଥିଲି । ସେହି କାମ୍ପସ୍ ଭିତରେ ଥିଲା କଲେଜର ଷ୍ଟୁଡ଼ିଓ, ଲାଇବ୍ରେରୀ, କ୍ରାଫଟସ୍ କର୍ମଶାଳା, ବ୍ରୋଞ୍ଜ୍‌କାଷ୍ଟିଙ୍ଗ୍ ପାଇଁ ଶାଳ, ଟେରାକୋଟା ପ୍ରସ୍ତୁତି ପାଇଁ ମାଟିକୁଣ୍ଡ ଓ କିଲ୍‌ନ୍, କାଗଜମଣ୍ଡ ତିଆରି କରିବା ପାଇଁ ଖୁଆଡ଼, ପଥର ଖୋଦେଇ କରିବା ପାଇଁ ଖଳା, ଭାସ୍କର୍ଯ୍ୟ ବଗିଚା, ଖେଳପଡ଼ିଆ, ସୁଇମିଙ୍ଗ୍ ପୁଲ୍, ପିଲାମାନେ ରହିବା ପାଇଁ ହଷ୍ଟେଲ୍, ଅଧ୍ୟାପକଙ୍କ ନିବାସ, ଅଧ୍ୟକ୍ଷଙ୍କ କ୍ୱାର୍ଟର୍, ଅତିଥି ଅଭ୍ୟାଗତଙ୍କ ପାଇଁ ଗୃହ, ପ୍ରଦର୍ଶନୀ ମଣ୍ଡପ ଓ କଳା ସାମଗ୍ରୀର ଦୋକାନ । ଏସବୁ ଘର, କ୍ୱାର୍ଟର୍ ଓ ଖୁଆଡ଼ର ନିର୍ମାଣ ପାଇଁ ମୁଁ ଚାଳିଶି ଏକର ଜମିର ଆବଶ୍ୟକତା ହେବ ବୋଲି କଳ୍ପନା କରିଥିଲି ଏବଂ ତଦନୁଯାୟୀ ସରକାରଙ୍କୁ ଆବେଦନ କରିଥିଲି । ମୋ କଳ୍ପନା ଭିତରେ ଆୟତନ ଦୃଷ୍ଟିରୁ ରେଭେନ୍‌ସା କଲେଜ, ବି.ଜେ.ବି କଲେଜ ଏବଂ ବର୍ଣ୍ଣାଢ୍ୟତା ଦୃଷ୍ଟିରୁ ଶାନ୍ତିନିକେତନ କଳା ଭବନ, ଆମ୍ରକୁଞ୍ଜ, ଚିତ୍ରବୀଥି, କାଲୋବାଡ଼ି ଉଙ୍କି ମାରୁଥିଲା । ସରକାର ବାହାଦୂର କ'ଣ ବିଚାରିଲେ କେଜାଣି ଆମକୁ ଦେଲେ ମାତ୍ର ୪.୩ ଏକର । ମନେହେଲା ନା ମାଗିବା ଲୋକକୁ ନା ଦେବା ଲୋକକୁ ଲାଜ ଅଛି । ପୁଣି ମୁଖ୍ୟମନ୍ତ୍ରୀ ହେଲେ କଳା-ସାହିତ୍ୟ-ସଂସ୍କୃତିପ୍ରେମୀ ଜାନକୀ ବଲ୍ଲଭ । ଆଉ କାହା ପାଖରେ ଗୁହାରି କରିଥାନ୍ତି ? ଭାଗ୍ୟକୁ ଆଦରି ରହିବାକୁ ହେଲା ।

ସେଇ ସେତିକି ଜମି ଉପରେ କଲେଜର ପରିକଳ୍ପନା ହେଲା । କଲେଜର ଲୋଗୋକୁ ତ୍ରିମାତ୍ରିକତାରେ ପରିଣତ କରି ଆକାଶକୁ ଛୁଇଁବାର ପରିକଳ୍ପନା କରାଗଲା । ଏହି ଜମି ଖଣ୍ଡିକର ପୂର୍ବରେ ଉଦୟଗିରି ଖଣ୍ଡଗିରିର ଦୁଇହଜାର ବର୍ଷ ତଳର ପୁରୁଣା ଗୁମ୍ଫା ଓଡ଼ିଶାର ଭାସ୍କର୍ଯ୍ୟକଳା ଓ ସ୍ଥାପତ୍ୟର ଆଦ୍ୟ ସ୍ୱାକ୍ଷର । ପଶ୍ଚିମ ଦିଗରେ ଘାଟିକିଆ, କଳିଙ୍ଗ ଫିଲ୍ମ ଷ୍ଟୁଡ଼ିଓ ଓ ଜଙ୍ଗଲ, ଦକ୍ଷିଣରେ ପଚାଶ ଏକର ଜମିକୁ ଆବୋରି ବସିଥିବା ସ୍ଥାପତ୍ୟ ମହାବିଦ୍ୟାଳୟ ଏବଂ ଉତ୍ତର ଦିଗରେ ଓଡ଼ିଶା ସରକାରଙ୍କ ଆଦିବାସୀ ସ୍କୁଲ ଓ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର । ଏହାର ଅନତିଦୂରରେ ନିର୍ମାଣ ହେଉଥିଲା ଋଷିକେଶ ଦିବ୍ୟଜୀବନ ସଂଘର

Digitized by srujanika@gmail.com

ହାଇସ୍କୁଲ । ଯଦିଚ ଦୁଇହଜାର ବର୍ଷର କଳା ପରମ୍ପରାର ଉତ୍ସ ନିକଟକୁ ଫେରିଆସିଛୁ ବୋଲି ଆମର ମନରେ ଆତ୍ମ ସନ୍ତୋଷ ଥିଲା ତଥାପି ଏତେ ସବୁ ପ୍ରାକୃତିକ ଓ ମଣିଷ ହାତଗଢ଼ା ପରିପାଟୀ ଭିତରେ ଆମେ ଥିଲୁ ହେୟ, ମାତ୍ର ଚାରି ଏକର ଜାଗାର ମାଲିକ, ଓଡ଼ିଶାର ଏକ ପ୍ରମୁଖ ଚିତ୍ରକଳା ଅନୁଷ୍ଠାନ । ଆମେ ହେଜି ପାରିଲୁ ଏହା କେବେହେଲେ ଆବାସିକ କଲେଜଟିଏ ହେବାର ଯୋଗ୍ୟତା ପାଇବନି । ଏକା ସାଂଗରେ ଅଧ୍ୟାପକ ଅଧ୍ୟାପିକା ଏବଂ ଛାତ୍ରଛାତ୍ରୀ ନ ରହିପାରିଲେ କଳାଶିକ୍ଷାର ଏକାନ୍ତିକତା ଓ ଆତ୍ମୀୟତା ବ୍ୟାହତ ହେବାର ସମ୍ଭାବନା ଅଧିକ । ମୁଁ ତଥାପି ଆଶାୟୀ ଥାଏ । ହୁଏତ ଆଉ କିଏ ଜଣେ ବଦାନ୍ୟ ବ୍ୟକ୍ତି କଲେଜର ଦୁଃଖ ବୁଝିବାରେ ସମର୍ଥ ହେବ । ସଚିବ ରାଜକିଶୋର ଭୁଜବଳଙ୍କ ନିକଟରେ ଫେରାଦ ହେଲି । ସେ କଲେଜ ପରିଦର୍ଶନରେ ଆସିଲେ ଏବଂ ଆମ ଜମି ସଂଲଗ୍ନ ଖୋଲାପଡ଼ିଆକୁ କଲେଜକୁ ଦେବା ପାଇଁ ନିଷ୍ପତ୍ତି ନେଲେ । ଏଇ ଜାଗାଟି ମୂଳ ରାସ୍ତାକଡ଼ରେ ଆଉ ପ୍ରାୟ ଚାରି ପାଞ୍ଚ ଏକର ପରିମିତ ଜମିକୁ ଆବୋରି ରହିଥିଲା । ମୁଁ କଲେଜ ଛାଡ଼ିଲା ପରେ ପ୍ରଶାସନର ଅବହେଳା ହେତୁ କଲେଜ ସେହି ଜମିଟି ଆଉ ପାରିପାରିଲାନି ।

କଲେଜ ନିର୍ମାଣ ସ୍ୱପ୍ନକୁ ନେଇ ମୁଁ ଗୋଟିଏ ତ୍ରିମାସିକ ମଡ଼େଲ କଲେଜରେ ତିଆରିଲି । ଅଧ୍ୟାପକ ପଞ୍ଚାନନ ସୁର, ବଳଦେବ ମହାରଥୀ ଓ ଡି.ଏନ୍.ରାଓ କିଛି ପିଲାଙ୍କ ସାହାଯ୍ୟରେ ଖୁବ୍ ଚମତ୍କାର ମଡ଼େଲ୍‌ଟିଏ ମାଉଣ୍ଟ୍ ବୋର୍ଡ୍ ସାହାଯ୍ୟରେ ତିଆରି କଲେ । ପିଲାମାନେ ସେମାନଙ୍କ ନୂଆ କଲେଜର ଯୋଜନା ସହିତ ପରିଚିତ ହୁଅନ୍ତୁ, ସେମାନଙ୍କର ଯଦି କିଛି ସ୍ୱପ୍ନ ଥାଏ, ତାକୁ ବି ବ୍ୟକ୍ତ କରନ୍ତୁ । ସମସ୍ତଙ୍କ ଆସ୍ପୃହା, ଅଭୀପ୍ସା ନୂତନ କୋଠାରେ ରୂପାୟନ ହେଇଯାଉ । କୋଠାଟି ଗୋଟିଏ ଅଷ୍ଟଦଳ ପଦ୍ମ ମଣ୍ଡଳ ଝୋଟି ଉପରେ ପରିକଳ୍ପିତ ହୋଇଥିଲା । ତଳ ଓ ଉପର ମହଲା ମିଶି ଷୋହଳ ଗୋଟି କୋଠରୀ । କଲେଜକୁ ପ୍ରବେଶ କଲାବେଳେ ବାଁ ପଟ କୋଠରୀରେ ସଂଗ୍ରହାଳୟ ଓ ଡାହାଣପଟେ ଅଭ୍ୟର୍ଥନା ପ୍ରକୋଷ୍ଠ । ଷୋହଳରୁ ଦୁଇ ଗଲେ, ଆଉ ରହିଲା ଚଉଦ । ଚଉଦଗୋଟି ଷ୍ଟୁଡ଼ିଓ, ସାଧାରଣ ଭାବେ କୁହାଗଲେ ଶ୍ରେଣୀଗୃହ । ଅଷ୍ଟଦଳ ପଦ୍ମମଣ୍ଡଳର କେଶର ତିନି ମହଲା ହୋଇ ଉପରକୁ ଉଠିଛି । କେଶର ସବା ତଳ ଭାଗଟି ପ୍ରଦର୍ଶନୀ ମଣ୍ଡପ । ପିଲାଏ ନିଜ ନିଜ ଷ୍ଟୁଡ଼ିଓକୁ ପଶିଲାବେଳେ ପ୍ରଦର୍ଶନୀ ମଣ୍ଡପ ଦେଇ ଯିବାକୁ ପଡ଼ିବ ଏବଂ ପ୍ରଦର୍ଶିତ କଳାକୃତି ଆଡ଼େ ଆଖି ଆକୃଷ୍ଟ ହେବ ହିଁ ହେବ । ମଝି ଭାଗଟିରେ ପ୍ରଶାସନ, ଅଧ୍ୟକ୍ଷଙ୍କ ଅଫିସ୍, କଲେଜର ଅଫିସ୍ ଏବଂ ଅଧ୍ୟକ୍ଷଙ୍କ କଳାଭ୍ୟାସ ପାଇଁ ବ୍ୟକ୍ତିଗତ ଷ୍ଟୁଡ଼ିଓ । କେଶର ଶୀର୍ଷରେ ପାଠାଗାର, ଗ୍ରନ୍ଥାଳୟ, କଳା ଇତିହାସ ପଢ଼େଇବା ପାଇଁ ଶ୍ରେଣୀଗୃହ ଓ ସେମିନାର ହଲ୍ । ସମଗ୍ର ପରିକଳ୍ପନାର ପଞ୍ଜର ହେଲା ପଦ୍ମମଣ୍ଡଳ ବା ସରସ୍ୱତୀଙ୍କ ପୀଠ, କେଶରରେ ସହସ୍ରାରର ରୂପାୟନ । କଲେଜର ଚାରୋଟି ଭିତର ଅଗଣାରୁ ପ୍ରଥମ ଦୁଇଟି ବାଟିକା,

Digitized by srujanika@gmail.com

ଲନ୍, ଛୋଟ ଛୋଟ ବୁଦାଳିଆ ଗଛ ଏବଂ ପଛଦୁଇଟି ଅଗଣା ସଭା ସମିତି ଓ ଆଲୋଚନା ପାଇଁ ଉଦ୍ଦିଷ୍ଟ । ସେଥିରୁ ଗୋଟିକରେ କଲେଜର କେଣ୍ଟିନ୍ ।

ମୋର ପରିକଳ୍ପନା ଥିଲା ଏହି ଷ୍ଟୁଡ଼ିଓ ଗୁଡ଼ିକର ବାହାର କାନ୍ଥରେ ଝରକା ରହିବନି । ତାର ମୂଳ କାରଣ ହେଲା, ଛବି ଟଙ୍ଗାଇବା ପାଇଁ ଯେତିକି ପରିଷ୍କାର କାନ୍ଥ (ୱାଲ୍ ସ୍ପେସ୍) ଆବଶ୍ୟକ ପଡ଼ିବ ସେଥିରେ ଝରକା ବାଧକ ହେଇପାରେ । ପୁଣି ଝରକାର ଅବସ୍ଥିତି ଭାସ୍କର୍ଯ୍ୟ ବିଭାଗ ପାଇଁ ଆଦୌ ଅନୁକୂଳ ନୁହେଁ । କାରଣ ଝରକା ଦେଇ ପବନ ଓ ଖରା ଅଧାଗଢ଼ା ଭାସ୍କର୍ଯ୍ୟ ଉପରେ ପଡ଼ିଲେ, ଭାସ୍କର୍ଯ୍ୟଗୁଡ଼ିକ ଶୀଘ୍ର ଶୁଖି ଯିବାର ଭୟ ଥାଏ । ତୃତୀୟ କାରଣଟି ଯାହା ଆପାତତଃ ଗୌଣ ମନେହେଇପାରେ କିନ୍ତୁ ଗୁରୁତ୍ୱପୂର୍ଣ୍ଣ, ତା' ହେଲା ଝରକା ଏକାଗ୍ରତାର ପରିପନ୍ଥୀ । ଝରକାର ଅବସ୍ଥିତି ଏକାଗ୍ରତାର ସହ ଛବି କିମ୍ବା ଭାସ୍କର୍ଯ୍ୟ ଗଢ଼ିବାରେ ପ୍ରତିବନ୍ଧକ ହେବ । ଷ୍ଟୁଡ଼ିଓଗୁଡ଼ିକର ଭିତର ଅଗଣା ପଟକୁ ବଡ଼ ବଡ଼ କବାଟ ରହିବ ଯାହା ଭିତର ଦେଇ ପବନ ଓ ଆଲୁଅ ପଶିପାରିବ । କଲେଜର ଅବରୁଦ୍ଧ ଭାବ କଟିଯିବ । ବାହର ପଟେ ଆମେ ଯେଉଁ ଝରକାବିହୀନ କାନ୍ଥଗୁଡ଼ିଏ ପାଇବୁ ସେଗୁଡ଼ିକରେ ମୋଜାଇକ୍ ମ୍ୟୁରାଲ୍ ପ୍ରସ୍ତୁତ କରାଯାଇ କୋଠାଟିକୁ ଗୋଟିଏ ସ୍ଥାପତ୍ୟ ତ ନୁହେଁ ଗୋଟିଏ ତ୍ରିମାତ୍ରିକ ଭାସ୍କର୍ଯ୍ୟରେ ପରିଣତ କରିଦେବ । ମୂଳ ପ୍ରବେଶ ଦ୍ୱାର ଦେଇ କୋଠାଘର ଭିତରକୁ ପ୍ରବେଶ କରିବା ରାସ୍ତା ଦୁଇଧାରେ 'ଟୋ ୱାଲ୍' ବା ଅଣ୍ଟୋଛ କାନ୍ଥ ରହିବନି । ରାସ୍ତାଟି ଲନ୍ ଉପରୁ ସାମାନ୍ୟ ଉଚ୍ଚା ହେଇ ରହିବ । ମୁଁ ଅନୁମାନ କରିପାରୁଥିଲି, 'ଟୋ ୱାଲ' ରହିଲେ ତା' ଉପରେ ଛାତ୍ରଛାତ୍ରୀ ତଳକୁ ଗୋଡ଼ ଝୁଲେଇ ବସିବେ ଓ ଅଯଥା ଗପସପ କରି ସମୟର ଅପବ୍ୟବହାର କରିବେ । ସେମାନଙ୍କ ବସିବା ପାଇଁ ଓ ପରସ୍ପର ମଧ୍ୟରେ ବାର୍ତ୍ତାଳାପ ପାଇଁ ଲନ୍ ଅଛି ଓ ଅଗଣା ବି ଅଛି ।

ଏତ ଗଲା କୋଠା ପରିକଳ୍ପନାର କଥା । କଲେଜରେ ପ୍ରବେଶ କରିବା ପାଇଁ ମୂଳପଥ (ଏପ୍ରୋଚ୍ ରୋଡ୍) ପକ୍କା ହେବନି । ଗୋଡ଼ିମାଟିର ପାଦଚଲା ରାସ୍ତା ରହିବ । ସେହି ରାସ୍ତାରେ ସ୍କୁଟର, ମଟର ସାଇକେଲ ଚଳେଇ କଲେଜ ଭିତରକୁ ଯିବା ମନା । ପିଲାମାନେ କଲେଜ ଭିତରେ ମଟର ସାଇକେଲ, ସ୍କୁଟର କାନ୍ଥମାନଙ୍କୁ ଆଉଜେଇ ରଖିବାର ବ୍ୟବସ୍ଥା ରହିବ ନାହିଁ । ପାଦରେ ଚାଲି ଚାଲି ସାଦା ସିଧା ଭାବରେ ବିଦ୍ୟାଦାତ୍ରୀଙ୍କ ମନ୍ଦିରରେ ପ୍ରବେଶ କରିବେ । ଯାନବାହନ ହେପାଜତରେ ରଖିବା ପାଇଁ କମ୍ପାଉଣ୍ଡ୍ ୱାଲ୍ ଭିତର କଡ଼େ କଡ଼େ ଶେଡ୍ ତିଆରି ହେବ । ମୂଳ କୋଠାଘରର ତଳଭାଗକୁ ଚନ୍ଦ୍ରବିନ୍ଦୁର ଅଧର ଭଳି କିଛି ୱାର୍କସପ୍ ରହିବ ଯେଉଁଥିରେ ମୋଡେଲିଙ୍ଗ୍, ବ୍ରୋଞ୍ଜ୍ କାଷ୍ଟିଙ୍ଗ୍, ଷ୍ଟୋନ୍ କାରଭିଙ୍ଗ୍ ବା ଏଭଳି ପରିବେଶ ପ୍ରଦୂଷଣ କରିବା ସମ୍ଭାବନା ଥିବା କାର୍ଯ୍ୟମାନ ସଂପାଦନା କରିବାର ସୁବିଧା ରହିବ । ଉପର ମହଲାର ଷ୍ଟୁଡ଼ିଓ ଓ ଛାତଗୁଡ଼ିକରେ ନର୍ଥଲାଇଟ୍ର

Digitized by srujanika@gmail.com

ବ୍ୟବସ୍ଥା ରହିବ । ଭାରତ ଭଳି ଗ୍ରୀଷ୍ମପ୍ରଧାନ ଦେଶରେ ଦିନ ଆଲୁଅ ପର୍ଯ୍ୟାପ୍ତ ଏବଂ ଏହାହିଁ ଚିତ୍ରଅଙ୍କନ କରିବା ପାଇଁ ଏବଂ ଭାସ୍କର୍ଯ୍ୟ ଗଢ଼ିବା ପାଇଁ ଅନୁକୂଳ । ବିଦେଶର ସଂଗ୍ରହାଳୟମାନଙ୍କରେ ଏଭଳି ବ୍ୟବସ୍ଥା ଯୋଗୁଁ କୃତ୍ରିମ ବିଦ୍ୟୁତ ଆଲୋକ ଉପରେ ନିର୍ଭର କରିବାକୁ ପଡ଼େନି । ଅବଶ୍ୟ ନିୟନ୍ତ୍ରିତ ଆଲୋକ ବ୍ୟବସ୍ଥା ଭାସ୍କର୍ଯ୍ୟ ପାଇଁ ବା ଚିତ୍ର ପ୍ରଦର୍ଶନ ପାଇଁ ଆବଶ୍ୟକ କିନ୍ତୁ ଶିଳ୍ପସାଧନା ପାଇଁ ଷ୍ଟୁଡ଼ିଓ ଭିତରେ ଏହାର ଆବଶ୍ୟକତା ଉପଲବ୍ଧ ହୁଏ ନାହିଁ । ଚଣ୍ଡୀଗଡ଼ ଚିତ୍ର ମହାବିଦ୍ୟାଳୟରେ ନର୍ଥ ଲାଇଟ୍‌ର ସୁବିଧା ଉପଲବ୍ଧ ହେଉଥିବା ସହିତ ଷ୍ଟୁଡ଼ିଓଗୁଡ଼ିକର ପ୍ରବେଶ ଦ୍ୱାରଗୁଡ଼ିକ ଲନ୍ ପଟକୁ ଖୋଲୁଥିବାରୁ ଷ୍ଟୁଡ଼ିଓ ସ୍ପେସ୍ ବିସ୍ତାରିତ ହୋଇଯାଇ ଅଧିକ ସୁଯୋଗ ଯୋଗାଇ ଦେଇପାରୁଛି । ଚଣ୍ଡୀଗଡ ଯାଇ ମୁଁ ଏକଥା ଅନୁଧ୍ୟାନ କରିଥିଲି । ବିଦେଶର ବହୁ ସଂଗ୍ରହାଳୟମାନଙ୍କରେ ପ୍ରଦର୍ଶିତ କଳାସାମଗ୍ରୀକୁ ଭଲ ଭାବରେ ଦେଖିବା ପାଇଁ ନର୍ଥଲାଇଟ୍‌ର ବ୍ୟବସ୍ଥା ଅଛି । ଷଷ୍ଠଦଶ ଶତାବ୍ଦୀର ରୀତିବାଦୀ ୟୁରୋପୀୟ ଶିଳ୍ପୀମାନେ କେତେ କରି ନର୍ଥଲାଇଟ୍ ବା ନର୍ଦର୍ନ୍‌ଲାଇଟ୍ ଉପରେ ନିର୍ଭର କରୁଥିଲେ ସେମାନଙ୍କ ଚିତ୍ରରେ ଥିବା ଆକାଶର ବର୍ଣ୍ଣାଳିକୁ ଦେଖିଲେ ସ୍ପଷ୍ଟ ହୋଇଯିବ ।

ଆମ ଓଡ଼ିଆ ସରକାରୀ ସ୍ଥପତିମାନଙ୍କ ଝରକା ପ୍ରତି ଅହେତୁକ ଆକର୍ଷଣ ଯୋଗୁଁ ଏବଂ ସେଗୁଡ଼ିକର ଯଥାଯୋଗ୍ୟ ଉପସ୍ଥିତି ଓ ଉପଯୋଗର ସମ୍ୟକ୍ ଧାରଣା ନଥିବା ଦୁର୍ଭାଗ୍ୟ । କଳା ସାମଗ୍ରୀମାନଙ୍କର ସ୍ୱାସ୍ଥ୍ୟରକ୍ଷା ପାଇଁ ଝରକା ଅନାବଶ୍ୟକ । ଫଳରେ ସେମାନେ ତିନୋଟି ପ୍ରକଳ୍ପର ସର୍ବନାଶ ଘଟାଇଛନ୍ତି । ପ୍ରଥମଟି ହେଲା ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଗ୍ୟାଲେରୀ । ବହୁବର୍ଷ ତଳୁ ନିର୍ମାଣ କରାଯାଇଥିବା କୋଠାଘରଗୁଡ଼ିକରେ ତ ଝରକା ଭର୍ତ୍ତି ହେଇ ରହିଥିଲା ଯାହା ଫଳରେ ଗ୍ୟାଲେରୀ ମଧ୍ୟରେ ପ୍ରଦର୍ଶିତ କଳାକୃତିଗୁଡ଼ିକୁ ଦେଖିଲାବେଳେ ବାହାର ବାରଣ୍ଡାରେ ଆତଜାତ ହେଉଥିବା ଦର୍ଶକମାନେ ଆଖିରେ ବାରମ୍ବାର ପଡ଼ନ୍ତି ଏବଂ ମୂର୍ତ୍ତି ଦର୍ଶନର ଏକାଗ୍ରତା ବ୍ୟାହତ ହୁଏ । ମ୍ୟୁଜିୟମ୍‌ର ଭାସ୍କର୍ଯ୍ୟ ଗ୍ୟାଲେରୀରେ ଗୋଟିଏ ଚାମୁଣ୍ଡା ମୂର୍ତ୍ତି ପ୍ରଦର୍ଶିତ ହୋଇଛି । ଚାମୁଣ୍ଡାର ଦେହ ଗଢ଼ଣରେ ଅଭୂତପୂର୍ବ କାରିଗରୀ । ଶିରାପ୍ରଶିରାଗୁଡ଼ିକ ଏତେ କରି ସୂକ୍ଷ୍ମ ଯେ ତା'ର ଉତ୍କର୍ଷକୁ ଘେନିଲେ ହିଁ ଚାମୁଣ୍ଡା ଭାସ୍କର୍ଯ୍ୟ ଗୋଟିଏ ବିଜ୍ଞାନସମ୍ମତ ଶିରାପ୍ରଶିରା ବହୁଳ ପ୍ରୌଢ଼ା ନାରୀର ଭାସ୍କର୍ଯ୍ୟ ଭଳି ଦେଖାଯିବ । ତା' ନହେଲେ ତାହା ଗୋଟିଏ ପ୍ରେତର ଛାୟା ଭଳି ଲାଗିବ ଏବଂ ସେଥିରୁ ଶୈଳ୍ପିକ ଉତ୍କର୍ଷ ହଟିଯିବ । ପୁରୁଣା ଗ୍ୟାଲେରୀଗୁଡ଼ିକରେ ଝରକା ଏତେ କରି ସମସ୍ୟା ସୃଷ୍ଟି କରୁଥିବାବେଳେ ତା'ର କୌଣସି ନିରାକରଣ ସ୍ୱର୍ଣ୍ଣଜୟନ୍ତୀ ପାଇଁ ତିଆରି ନୂତନ କୋଠାଘରେ ବି ସମ୍ଭବ ହେଇପାରିଲା ନାହିଁ । ଯେଉଁ ଝରକାକୁ ସେଇ ଝରକା । ଦ୍ୱିତୀୟଟି ହେଲା ଭୁବନେଶ୍ୱର ଗଣ୍ଡମୁଣ୍ଡାରେ ହସ୍ତଶିଳ୍ପ ପ୍ରଶିକ୍ଷଣ କେନ୍ଦ୍ରରେ ମୁଖ୍ୟ ବିନ୍ଧାଣି

Digitized by srujanika@gmail.com

(ମାଷ୍ଟର ଆର୍ଟିଷ୍ଟ)ଙ୍କ ପାଇଁ ନିର୍ମିତ ହେଉଥିବା ଘର ଗୁଡ଼ିକରେ ବୈଠକଖାନାର ପରିକଳ୍ପନା ଓ ସେଥିରେ ପୁଣି ଆମ ସାଧାରଣ ଘରମାନଙ୍କରେ ଖଞ୍ଜା ଯାଉଥିବା ଝରକା ଭଳି ଝରକାର ବ୍ୟବସ୍ଥା କରିବା ଫଳରେ ପଟଚିତ୍ରକର ତଳେ ବସି ଅଭ୍ୟାସଗତ ଭାବେ ଚିତ୍ର କରୁଥିବାବେଳେ ଆଲୁଅ ପାଇଲାନି, ତନ୍ତୀ ମଧ୍ୟ ଗାତରେ ଖଞ୍ଜା ଯାଇଥିବା ତନ୍ତ (ପିଟ୍‌ଲୁମ୍)ରେ କାମ କରିବାରେ ଅସୁବିଧା ହେଲା । ଶିଳ୍ପାଭ୍ୟାସ ସହିତ ସ୍ଥପତିମାନଙ୍କର କୌଣସି ସଂପର୍କ ରହି ନ ଥିବାରୁ ଝରକାଗୁଡ଼ିକ କାରିଗରଙ୍କ କାର୍ଯ୍ୟପ୍ରଣାଳୀରେ ଘୋର ବିଶୃଙ୍ଖଳା ସୃଷ୍ଟି କଲେ । ତୃତୀୟଟି ହେଲା ଜୁଆଙ୍ଗମାନଙ୍କ ପାଇଁ ସରକାର ତିଆରି କରିଥିବା ନୂଆ ଆବାସମାନଙ୍କରେ ସ୍ଥପତିମାନେ ଝରକା ଖଞ୍ଜି ଦେବାରୁ ଝରକା ଦେଇ ଭୂତ ପଶିଯିବା ଭୟରେ ସେମାନେ ସେଗୁଡ଼ିକୁ ମାଟିଲେସି ବନ୍ଦ କରିଦେଲେ ।

ଯେହେତୁ କଲେଜଟି ଆମର, ଆମେ ବ୍ୟବହାର କରିବୁ, ତେଣୁ ମୁଁ ସରକାରଙ୍କ ମୁଖ୍ୟସ୍ଥପତିଙ୍କ ସାଙ୍ଗରେ ଆଲୋଚନା କଲି । କଳାଭ୍ୟାସ କରିବା ପାଇଁ ଆମର ଯାହା ଯାହା ଆବଶ୍ୟକ ତାହା ସ୍ଥପତି ମହାଶୟଙ୍କୁ ବୁଝାଇଲି । ସ୍ଥପତି ମୋର ବନ୍ଧୁ । ତାଙ୍କର ସହକାରୀ ପାଢ଼ୀ ବାବୁ ଗୋଟିଏ ଆର୍ଟ୍ କଲେଜର ଆବଶ୍ୟକତା ବୁଝିଲେ, କିନ୍ତୁ ମୁଖ୍ୟ ସ୍ଥପତି ବିଚାରିଲେ ମୁଁ ମୋର ସୀମା ଅତିକ୍ରମ କରି ତାଙ୍କ ଅଧିକାରର ସରହଦ ମଧ୍ୟରେ ଅନଧିକାର ପ୍ରବେଶ କରୁଛି । ମୋର ମୂଳକଳ୍ପନାଟି ବା ପଞ୍ଜରଟି ରହିଲା କିନ୍ତୁ ଯେଉଁ ଉପାଦାନଗୁଡ଼ିକ ସୂକ୍ଷ୍ମାନୁଭବରେ ରସାଣିତ ବା ସ୍ୱର୍ଣକାତର ସେଗୁଡ଼ିକ ପରିବର୍ତ୍ତିତ ହୋଇଗଲା । ଏହି ପରିବର୍ତ୍ତିତ ପ୍ରସଙ୍ଗ ମଧ୍ୟରେ ରହିଲା ଝରକା, ଏପ୍ରୋଚ୍ ରୋଡ୍, ଟୋ ୱାଲ୍, ନର୍ଥ ଲାଇଟ୍ ବ୍ୟବସ୍ଥା ଇତ୍ୟାଦି । ସରକାରୀ ସ୍ତରରେ ଏମିତି ହିଁ ହୁଏ । ସବୁ ସ୍ୱପ୍ନ ସାକାର ହୋଇପାରେ ନାହିଁ ।

ମୋର ଅନେକ ପରିକଳ୍ପନା ପ୍ରତ୍ୟାଖ୍ୟାତ ହେଉଥିବା ସ୍ଥଳେ ସ୍ଥପତି ମହାଶୟ ମୋର ଅନ୍ୟଗୋଟିଏ ବ୍ୟକ୍ତିଗତ ଅନୁରୋଧକୁ ଗ୍ରହଣ କରିନେଲେ । ତାହାହେଲା କଲେଜର ଅଧ୍ୟକ୍ଷ ଜଣେ ଅଭ୍ୟାସରତ ଶିଳ୍ପୀ, ଏଣୁ ସେ ସଦାବେଳେ ଜଣେ ପ୍ରଶାସକ ସାଜି ଟେବୁଲ ପାଖରେ ବସି ଫାଇଲ୍ ଚାଷ କରିବେନି । ସମୟ ସୁଯୋଗ ଉଣ୍ଡି କାନ୍‌ଭାସ୍ ଉପରେ ଚିତ୍ର ଆଙ୍କିବେ । ଏଇଥିପାଇଁ ତାଙ୍କ ଅଫିସ୍‌କୁ ଲାଗି ତାଙ୍କର ଗୋଟିଏ ଷ୍ଟୁଡ଼ିଓ ଦରକାର । ଧନ୍ୟ କହିବା ବନ୍ଧୁତାକୁ । ସେ ଅଧ୍ୟକ୍ଷଙ୍କ ପାଇଁ ଡିଜାଇନ୍ ଭିତରେ ଷ୍ଟୁଡ଼ିଓଟିଏର ବ୍ୟବସ୍ଥା କରିଦେଇଥିଲେ । ଅଲେଖ ଚରଣ ସାହୁ ଅଧ୍ୟକ୍ଷ ଥିବାବେଳେ ଏହି ଷ୍ଟୁଡ଼ିଓଟି ତାଙ୍କ ଅକତିଆରରୁ ଚାଲିଯାଇ ପ୍ରାକ୍ତନ ଛାତ୍ରଙ୍କ କବ୍‌ଜାରେ ରହିଲା । ଶିଳ୍ପୀଙ୍କ ଜୀବନରେ ଏଭଳି ଦୁର୍ଯୋଗ ଆସେ ।

Digitized by srujanika@gmail.com

କଲେଜର ପୁନାଦି ପକେଇବା ସମୟକୁ ରାଜ୍ୟରେ ନିର୍ବାଚନ ହେବ ବୋଲି ଘୋଷଣା ସରିଥିଲା । ଏଣୁ ସରକାର ଚଳାଉଥିବା ମନ୍ତ୍ରୀ ଓ ପଦାଧିକାରୀଗଣ ଉଦ୍‌ଘାଟନ, ଉନ୍ମୋଚନ ଓ ଭିତ୍ତିପ୍ରସ୍ତର ସ୍ଥାପନ ଇତ୍ୟାଦି ଜନହିତକର କର୍ମରୁ ବିରତ ରହିଲେ । ମୁଁ ବିଚାରିଲି ନିଜ କଲେଜର ନିଜ ମନ ମୁତାବକ ପୁନାଦି ପକାଇବାର ଏହାହିଁ ଉପଯୁକ୍ତ ସୁଯୋଗ । ପୁନାଦି ପାଇଁ ମାଟି ଖୋଳୁଥିବା ଜଣେ ସାନ୍ତାଳ ସ୍ତ୍ରୀଲୋକ ରେଖା ହେମ୍ବ୍ରମ୍‌ଙ୍କ ହାତରେ କଲେଜ କୋଠାର ଶୁଭ ଦିଆଗଲା । କଲେଜର ଅଧକ୍ଷ, ଅଧ୍ୟାପକ ଏବଂ ଇଞ୍ଜିନିୟରମାନେ ଏଭଳି ଏକ ନିରୋଳା ଭିତ୍ତିପ୍ରସ୍ତର ଉତ୍ସବକୁ ମନଭରି ଉପଭୋଗ କଲେ । ରେଖା ହେମ୍ବ୍ରବଙ୍କ ନାମାଙ୍କିତ ଫଳକଟି ବହୁଦିନ ଧରି ଅଧାଗଡ଼ା କଲେଜ କାନ୍ଥରେ ଶୋଭା ପାଉଥିଲା ।

ପୁନାଦି ପଡ଼ି ଖମ୍ବସବୁ ଆକାଶକୁ ଚୁମ୍ବିବାର ଉପକ୍ରମ କରୁଥିବାବେଳେ ଏବଂ ପୁନାଦି ଆଣ୍ଠୁଏ ଉଚ୍ଚାଯାଏଁ ଗଢ଼ା ହେଇ ସାରିବା ପରେ ଗୋଟିଏ ବିପଦ କଳାହାଣ୍ଡିଆ ମେଘ ଭଳି ଘନେଇ ଆସିଲା । ଶିଳ୍ପୀ ଯତୀନ ଦାସ କଲେଜ ପ୍ରତି ଅସୂୟପରବଶ ହେଇ ବା କଲେଜର ଅଶୁଭ ମନାସୁଥିବା ହିତଶତ୍ରୁଙ୍କ ଦ୍ୱାରା ପ୍ରଚୋଦିତ ହୋଇ କୋଠାଘର କାମକୁ ଭଣ୍ଡୁର କରିବା ପାଇଁ ଚେଷ୍ଟା କଲେ । ଉପରଠାଉରିଆ ଭାବେ ଲୋକଙ୍କୁ ଭେଳେକେଇବା ପାଇଁ ଏବଂ ଐତିହ୍ୟ ଓ ପରିବେଶର ସୁରକ୍ଷା ପ୍ରତି ତାଙ୍କର ଉଦାର ମନୋଭାବ ପ୍ରଦର୍ଶନ କରିବା ପାଇଁ ଉଦୟଗିରି ଓ ଖଣ୍ଡଗିରି ଭଳି ପ୍ରାଚୀନ କୀର୍ତ୍ତି ନିକଟରେ ଆମ କଲେଜର କୋଠାଘର ନିର୍ମିତ ହୋଇଗଲେ ପ୍ରଳମ୍ବ ଅଶୁଦ୍ଧି ହୋଇଯିବ ବୋଲି ପ୍ରଚାର କଲେ । କେବଳ ପ୍ରଚାର ନୁହେଁ ସରକାରଙ୍କ ସଚିବ ପାହ୍ୟାର କିଛି ଅଫିସର ତଥା ମୁଖ୍ୟଶାସନ ସଚିବ ରମାକାନ୍ତ ମିଶ୍ରଙ୍କୁ ଧରି ଅଧାଗଢ଼ା କଲେଜରେ ଦିନେ ସକାଳୁ ସକାଳୁ ପହଞ୍ଚିଗଲେ । ସେମାନଙ୍କ ସହିତ 'ହଡ୍‌କୋ'ର ଅଧକ୍ଷ ମଧ୍ୟ ଥିଲେ । କୋଠାବାଡ଼ି ନିର୍ମାଣ ପାଇଁ ହଡ୍‌କୋ ଅର୍ଥ ଅନୁଦାନ ଏବଂ ସହାୟତା ଦେଉଥିବା ଏକ ଜାତୀୟ ସଂସ୍ଥା । ଯତୀନ ଏମାନଙ୍କୁ ବୁଝାଇବାରେ ଲାଗିଲେ ଯେ କଲେଜ କୋଠାଟି ଉଦୟଗିରିର ପାହାଡ଼ ତଳେ ଗଢ଼ି ଉଠିଲେ ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ସଂପଦର ସ୍ଥିତି ବିପଦସଂକୁଳ ହୋଇଯିବ ଏଣୁ ଏଠାରୁ ଏହି କଲେଜକୁ ସ୍ଥାନାନ୍ତରିତ କରିବା ନିହାତି ଆବଶ୍ୟକ । ଯତୀନ ଯୁକ୍ତି କରୁଥିଲେ, ଓଡ଼ିଶାର କଳା ମହାବିଦ୍ୟାଳୟ.ସଂଗୀତ ମହାବିଦ୍ୟାଳୟ, ଏକାଡେମୀସମୂହ, ଏବଂ ସଂଗ୍ରହାଳୟ ଏକାଠି ରହିଲେ ଭାବର ଆଦାନ ପ୍ରଦାନ ଘଟି ସର୍ଜନପ୍ରବାହ ଆହୁରି ଋଦ୍ଧିମନ୍ତ ହେବ । ବାସ୍ତବିକ ଯତୀନଙ୍କ ପରିକଳ୍ପନା ଚମତ୍କାର । କିନ୍ତୁ ଏସବୁ ଯୁକ୍ତି ଓ ଘଟାଟୋପ ଭିତରେ ପ୍ରଚ୍ଛନ୍ନ ଭାବରେ ଲୁଚି ରହିଥିଲା ତାଙ୍କର ବ୍ୟକ୍ତିଗତ ସ୍ୱାର୍ଥ - ନିଜ ପାଇଁ ସରକାରୀ ଜମିଟିଏ ହାତେଇବା । ମୁଁ ମନେମନେ ଦୃଢ଼ ହେଲି ଯତୀନ କଲେଜର ଶତ୍ରୁ ପାଲଟି

Digitized by srujanika@gmail.com

ଓଡ଼ିଶାର ସ୍ୱାର୍ଥକୁ ବ୍ୟାହତ କରୁଛନ୍ତି । ଏହି ଅଫିସରିଆ ଦଳ ଭିତରେ ଆମ କଲେଜକୁ ଭଲ ପାଉଥିବା, ଓଡ଼ିଶାର କଳାକୁ ଭଲ ପାଉଥିବା କିଛି ଶୁଭେଚ୍ଛୁ ଥିଲେ । ଏଭିଳିକି ମୁଖ୍ୟ ଶାସନସଚିବ ରମାକାନ୍ତ ମିଶ୍ର, ଡି.ଏନ୍.ପାଢ଼ୀ, ଫଣୀ ଭୂଷଣ ଦାସ ମୋତେ ଅଲଗା ଡାକି ଅଭୟବାଣୀ ଶୁଣେଇ ଦେଲେ ଯେ ଏସବୁ ତୁମିତୋଫାନର କୁପ୍ରଭାବ କଲେଜ ଉପରେ ପଡ଼ିବ ନାହିଁ । ମୁଁ ଆଶ୍ୱସ୍ତି ଅନୁଭବ କଲି । କଲେଜକୁ ଫେରି ହଡ଼କୋର ଅଧକ୍ଷଙ୍କ ନିକଟକୁ ଚେତାବନୀ ଦେଇ ଚିଠି ଖଣ୍ଡେ ଲେଖିଲି । ହଡ଼କୋର ଅଧକ୍ଷ ମନ୍ଦ ଉଦ୍ଦେଶ୍ୟ (ପ୍ରିଟେକ୍ସ୍ଟ) ରଖି ଏଭଳି କାର୍ଯ୍ୟ ନ କରନ୍ତୁ, କଲେଜର ଭବିଷ୍ୟତକୁ ଅନ୍ଧକାର ଭିତରକୁ ଠେଲି ନ ଦିଅନ୍ତୁ ବୋଲି ବାକ୍ୟଟିଏ ଚିଠିରେ ଉଲ୍ଲେଖ ଥିଲା । ପ୍ରିଟେକ୍ସ୍ଟ ଶବ୍ଦଟି ତାଙ୍କୁ ବାଣ ଭଳି ଭେଦିଲା । ସେ ଆମ ବିଭାଗର ନିର୍ଦ୍ଦେଶକ ନନ୍ଦ ମହାଶୟଙ୍କ ମାଧ୍ୟମରେ ଚିଠି ଯୋଗେ ମୋ ଠାରୁ କୈଫିୟତ ମାଗିଲେ । ନିର୍ଦ୍ଦେଶକ ଆମ କଲେଜ ପ୍ରତି ସଦୟ ଥିଲେ ଏବଂ ଚାହୁଁଥିଲେ ଶୀଘ୍ର କୋଠା ଘରଟିଏ ଗଢ଼ିଉଠୁ । ସେ ମୋତେ ତାଙ୍କ ଅଫିସ୍‌କୁ ଡକେଇ ନିଜ ତରଫରୁ ମୋ ପାଇଁ କୈଫିୟତ୍ ର ଚିଠିଟିଏ ଡାକିଦେଲେ । ଆଇ.ଏ.ଏସ୍. ଅଫିସରଙ୍କ ବୁଦ୍ଧିକୁ ତାରିଫ କରିବ । ସେ ମୋ ଚିଠିରେ କହିଲେ ମୁଁ ମୋ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ଡିକ୍‌ଟେସନ୍ ଦେଲି କନ୍‌ଟେକ୍ସ୍ଟ (ପ୍ରସଙ୍ଗରେ) ଯାହାକୁ ସେ ଭୁଲ୍‌ରେ ଲେଖିଦେଲା ପ୍ରିଟେକ୍ସ୍ଟ (ଛଳନାରେ) । ଯତୀନଙ୍କ ପ୍ରତିବନ୍ଧକ ସତ୍ତ୍ୱେ କଲେଜ କୋଠାଘର କାମ ଆଗେଇଲା । ଯତୀନ କିନ୍ତୁ ନିଜ ସ୍ୱାର୍ଥ ହାସଲରେ ଚେଷ୍ଟିତ ରହିଲେ ଓ ବହୁ ବର୍ଷର ଚେଷ୍ଟାପରେ ସେହି ଉଦୟଗିରି ପାହାଡ଼ର ଅପର ପଟେ ରାଜରାସ୍ତାର ଧାରେ ସରକାରଙ୍କଠାରୁ ଏକରେ ଜମି ହାତେଇ ପାରିଲେ । ଆମ କଲେଜରେ ଯତୀନଙ୍କ ଅପଚେଷ୍ଟାର ସମ୍ବାଦ ପହଞ୍ଚିଲା ପରେ ପିଲାଏ ଯତୀନଙ୍କ ବିରୁଦ୍ଧରେ ମାତିଲେ । ଯତୀନଙ୍କୁ ଆକ୍ଷେପ କରି ଆଶାଳୀନ ମନ୍ତବ୍ୟ ଦେଲେ । କାନ୍ଥରେ ପୋଷ୍ଟର୍ ଛାପିଲେ । ଛାତ୍ର ଦିଲ୍ଲୀପ ତ୍ରିପାଠୀ ପ୍ରଜାତନ୍ତ୍ର କାଗଜକୁ ସମ୍ବାଦଟିଏ ପଠେଇଲେ ଯାହା ତା' ପରଦିନ ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ବାହାରିଲା । ବହୁ କଷ୍ଟରେ ଏ ଉତ୍ତେଜନାକୁ ପ୍ରଶମିତ କରିବାକୁ ହେଲା । ପରେ ଜଣାପଡ଼ିଲା ଯେ ନିର୍ମଳ ପାଣିକୁ ଘଣ୍ଟାଚକଟା କରିବାରେ ଆମ କଲେଜର ଜଣେ ଦୁଇଜଣ ଅଧ୍ୟାପକଙ୍କ ମୁଖ୍ୟ ଭୂମିକା ଥିଲା । ସେମାନେ କଲେଜରେ ରହି ମଧ୍ୟ କଲେଜର ସ୍ୱାର୍ଥ ଚାହୁଁ ନଥିଲେ ।

ବିପଦ ଆପାତତଃ ହଟି ଯାଇଥିଲେ ମଧ୍ୟ କାଳେ ମହମ୍ମଦ ଘୋରୀ ଭାରତ ଆକ୍ରମଣ କରିବାକୁ ଆଉଥରେ ଫେରିପାରେ ଏଣୁ ବେଳସୁଁ ତାର ପ୍ରତିକାର କରିବା ଉଦ୍ଦେଶ୍ୟ ନେଇ ଆମ କଲେଜ ନିର୍ମାଣ ଦାୟିତ୍ୱରେ ଥିବା ରାସ୍ତାଘାଟ ଓ କୋଠାବାଡ଼ିର ମୁଖ୍ୟ ଇଞ୍ଜିନିୟରଙ୍କ ଅଫିସରେ ପହଞ୍ଚିଲି । ମୁଖ୍ୟଙ୍କ ଚୌକିରେ ଯିଏ ବସିଥିଲେ, ସିଏ ମୋର

Digitized by srujanika@gmail.com

ପୁରୁଣା ବନ୍ଧୁ, ଆନ୍ତର୍ଜାତିକ ବାଣିଜ୍ୟ ମେଳା ସମୟର କୋଣାର୍କ ମଣ୍ଡପର ମୋର ସହ - ଭିଜୁଏଲାଇଜର୍ ମୁରଲୀଧର ଶତପଥୀ । ବିପଦ ବେଳେ ହିଁ ଭଗବାନ ସହାୟ ହୋଇଥାନ୍ତି ବୋଲି ମୁଁ ନିଜକୁ ପ୍ରବୋଧିଲି । ଧରଣୀ ବନ୍ଧୁହୀନ ନୁହେଁ । ଏକଥା ପୁଣିଥରେ ପ୍ରତିପାଦିତ ହେଲା । ମୁଁ ମୁରଲୀଧର ଶତପଥୀଙ୍କୁ ଏ ଭିତରେ କଲେଜ କୋଠା ନିର୍ମାଣକୁ ନେଇ ଘଟିଯାଇଥିବା ସବୁ କଥା ଜଣେଇଲି । ଶତପଥୀ ମହାଶୟ ଆମର ସମସ୍ୟା ବୁଝିଲେ । ସେ ତାଙ୍କ ଅଫିସ୍‌ର ନିର୍ବାହୀ ଯନ୍ତ୍ରୀଙ୍କୁ ଡକେଇ କଲେଜ କୋଠାର ନିର୍ମାଣ କାମ ଆଗେଇ ନେବା ପାଇଁ କହିଲେ। ଆହୁରି ମଧ୍ୟ ପରିଷ୍କାର କରି ନିର୍ବାହୀ ଯନ୍ତ୍ରୀଙ୍କୁ ପରାମର୍ଶ ଦେଲେ ଯେ ସେମାନେ ଅଯଥା ସଂସ୍କୃତି ବିଭାଗର ବଜେଟ୍‌କୁ ଅପେକ୍ଷା କରିବେନି । ସରକାରୀ ବିଭାଗ, ସରକାରଙ୍କ କଥା, ଏଣୁ ଟଙ୍କା ବୁଡ଼ିଯିବାର ଭୟ ନାହିଁ । ମୁରଲୀଧର ଶତପଥୀଙ୍କ ଏତକ ଅଭୟବାଣୀ ବେଶ୍ କାମ ଦେଲା । କୋଠାଘର କାମ ଆଗେଇ ଚାଲିଲା । ମାତ୍ର ଦୁଇବର୍ଷର ଅବଧି ଭିତରେ ନିର୍ମାଣ କାର୍ଯ୍ୟ ଶେଷ ହେଲା। ମୁଁ ଅବଶ୍ୟ ଏହି ନୂତନ କୋଠାଘରେ ବେଶିଦିନ ରହିବାର ସୁଯୋଗ ପାଇଲିନି । ନୂତନ କୋଠାଟି ଉଦ୍‌ଘାଟିତ ହେଲା ୧୯୯୪ ମସିହାର ଅଗଷ୍ଟ ପାଞ୍ଚ ତାରିଖ ଦିନ । ମୁଁ କଲେଜ ଛାଡ଼ିଲି ସେଇ ଅଗଷ୍ଟମାସ ଶେଷରେ । ମୋର ମନେହେଲା ମୁଁ ଦୁର୍ଦ୍ଦିନର ସାଥି, ଅଭାବ ଅନାଟନର ସାକ୍ଷୀ, ପ୍ରାଚୁର୍ଯ୍ୟ ମୋ କପାଳରେ ଲେଖା ନୁହେଁ ।

ଯୁକ୍ତି ଛଳରେ କୁହାଯାଇପାରେ ମୁଁ କଳ୍ପନା କଲେଜର ହିଁ ଅଧ୍ୟକ୍ଷ ଥିଲି । ସେହି ଭଡ଼ାଘରର କୋଠାବାଡ଼ି, ଗଛପତ୍ର ଏବଂ ପ୍ରତିଟି ଧୂଳିକଣାରେ ଆମ ନିଶ୍ୱାସ, ପ୍ରଶ୍ୱାସ ଆସ୍ପୃହା ଅଭୀପ୍ସା ମିଶିରହିଥିଲା । କଳ୍ପନା କଲେଜରୁ ଉଦୟଗିରି ପାହାଡ଼ତଳ ପଦ୍ମମଣ୍ଡଳ କୋଠାଘରକୁ ଯେତେବେଳେ କଲେଜର ଆସବାବ ପତ୍ର ବୁହା ଚାଲିଲା ଓ ପୁରୁଣା କୋଠାଟିକୁ ସଂପୂର୍ଣ୍ଣ ଖାଲି କରିଦିଆଗଲା, ମନେହେଲା ସତେ ଯିମିତି ମୋ ହୃଦୟ ଭିତରୁ, ପ୍ରାଣର କେଉଁ ଏକ ଅନ୍ତରଙ୍ଗ କୋଣରୁ ମୋର ଅତି ପ୍ରିୟତମ ଅନୁଷ୍ଠାନଟିକୁ କିଏ ଚୋରାଇ ନେଉଛି । ଏହା କେବଳ ଗୋଟିଏ କୋଠାଘରୁ ଅନ୍ୟ ଗୋଟିଏ କୋଠାଘରକୁ ସ୍ଥାନାନ୍ତରୀକରଣ ନୁହେଁ, ଭିଟାମାଟିରୁ ଉଚ୍ଛେଦ ।

ଧୁମ୍‌ଧାମ୍‌ରେ ଉଦ୍‌ଘାଟନ ଉତ୍ସବ ଯାହାକୁ ଆମେ ଗୃହପ୍ରତିଷ୍ଠା ବା ଗୃହ ପ୍ରବେଶ କହୁଥିଲୁ, ତାହା ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ସଂପନ୍ନ ହୋଇଗଲା । ସଂସ୍କୃତି ମନ୍ତ୍ରୀ ଚୈତନ୍ୟ ପ୍ରସାଦ ମାଝି, ସଚିବ ରାଜେନ୍ଦ୍ର କିଶୋର ପଣ୍ଡା, ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି ଓ ଅତିରିକ୍ତ ଶାସନ ସଚିବ କୁଙ୍କୁମ ମହାନ୍ତିଙ୍କ ସହିତ କେନ୍ଦ୍ର ଲଳିତ କଳା ଏକାଡେମୀର ଅଧ୍ୟକ୍ଷ ରାମ ନିବାସ ମିର୍ଦ୍ଧା ମଧ୍ୟ ଉତ୍ସବରେ ଉପସ୍ଥିତ ଥିଲେ । ଏକଥା ଅନ୍ୟଠେ ବିସ୍ତାରିତ ଭାବେ କହିଛି । ଗୃହପ୍ରତିଷ୍ଠା ଉତ୍ସବରେ କଲେଜ ଉଦ୍‌ଘାଟନବେଳର ଅପମାନ ଆଉଥରେ

Digitized by srujanika@gmail.com

ଭୋଗିବାକୁ ପଡ଼ିଲାନି । କାରଣ ଏ ଉତ୍ସବକୁ ମୁଁ ହିଁ ପରିଚାଳନା କରୁଥିଲି । ବିଜୁ ପଟ୍ଟନାୟକ ଗୃହପ୍ରତିଷ୍ଠା ଦିନ ହିଁ ଏହି ମହାବିଦ୍ୟାଳୟଟିକୁ ବିଶ୍ୱବିଦ୍ୟାଳୟରେ ପରିଣତ କରାଯିବ ବୋଲି ଘୋଷଣା କଲେ । କିଛି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ବିଜୁ ପଟ୍ଟନାୟକଙ୍କ ସ୍ୱପ୍ନକୁ ହତାଦର କରି ଟିଚିଙ୍ଗ୍ ବିଶ୍ୱବିଦ୍ୟାଳୟଟିକୁ ଗୋଟିଏ ଅଫିଲିଏଟଡ଼୍ ବିଶ୍ୱବିଦ୍ୟାଳୟରେ ପରିବର୍ତ୍ତନ କରିକଲେ । ମୋର ଏବେବି ପରିଷ୍କାର ଭାବେ ସ୍ମରଣରେ ଅଛି ବିଜୁବାବୁଙ୍କ ଉଦ୍‌ଘାଟନୀ ଭାଷଣ । ସିଏ ଚାହିଁଥିଲେ ଓଡ଼ିଶା ମାଟିରେ ରବୀନ୍ଦ୍ର ନାଥଙ୍କ ଶାନ୍ତିନିକେତନର ରୂପାୟନ ହେଉ । ରେଭେନ୍‌ସା ମହାବିଦ୍ୟାଳୟତ ପୁଣି ବିଶ୍ୱବିଦ୍ୟାଳୟରେ ପରିଣତ ହୋଇପାରିଲା । ଗୁଡ଼ାଏ ଏଣୁ ତେଣୁ କଲେଜ ଯୋଗାଡ଼ କରି ସହନିବନ୍ଧିତ କରିବାର ବାହାସ୍ଫୋଟ ମାରିବାକୁ ହେଲାନି । କିଛି କର୍ମଠ ଓ ଚଲାକ ଚତୁର ବ୍ୟକ୍ତି ଦୈବାତ୍ ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ ଆରୋହଣ କଲେ ମଧ୍ୟ ସେମାନେ ସେମାନଙ୍କ ଦୃଷ୍ଟି ପ୍ରସାରିତ କରିପାରନ୍ତିନି । ଏହି କଲେଜର ଭାଗ୍ୟ ପଥର ତଳେ ନିକ୍ଷେପିତ ହୋଇଗଲା ।

Digitized by srujanika@gmail.com

# ୭୨. ଦିଲ୍ଲୀରେ ସାହିତ୍ୟ ସମାରୋହ

ଓଡ଼ିଶା ସାହିତ୍ୟ ଏକାଡେମୀ ଦିଲ୍ଲୀରେ ଗୋଟିଏ ସାହିତ୍ୟ ଉତ୍ସବ କରିବାକୁ ନିଷ୍ପତ୍ତି କଲେ । ସାହିତ୍ୟ ଏକାଡେମୀର ସଭାପତି ଥାଆନ୍ତି ମନୋରମା ମହାପାତ୍ର ଓ ସଂପାଦକ ଇନ୍ଦୁଭୂଷଣ କର। ଏ ଉତ୍ସବର ସଜାସଜି ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା ଆମ କଲେଜ ଉପରେ ନ୍ୟସ୍ତ କରାଯାଇଥିଲା । ଏକାଡେମୀର ସଂକୁଚିତ ମନୋଭାବ ଯୋଗୁଁ ଉତ୍ସବରେ ଯୋଗଦେବାକୁ ଥିବା ସାହିତ୍ୟିକ ମନୋନୟନକୁ ନେଇ କନ୍ଦଳ ସୃଷ୍ଟି ହେଲା । କିଛି ତଥାକଥିତ ବିଶିଷ୍ଟ ସାହିତ୍ୟିକଙ୍କ ପାଇଁ ଉଡ଼ାଜାହାଜରେ ଗସ୍ତ ସ୍ଥିର ହେଲା । ମଧ୍ୟମଧରଣର ସାହିତ୍ୟିକ ଶୀତତାପ ନିୟନ୍ତ୍ରିତ ଦ୍ୱିତୀୟ ଶ୍ରେଣୀ ଓ ଅଧମ ସାହିତ୍ୟିକମାନେ ସ୍ଲିପର ଯୋଗେ ଦିଲ୍ଲୀ ଯିବା ପାଇଁ ଏକାଡେମୀ ନିଷ୍ପତ୍ତି କରିଥିଲେ । ମନେହେଲା ଭ୍ରମଣ ବ୍ୟବସ୍ଥାକୁ ନେଇ ସାହିତ୍ୟିକମାନଙ୍କର ବର୍ଗୀକରଣ ଅତ୍ୟନ୍ତ ଅସମ୍ମାନଜନକ । ମନୋରମା ମହାପାତ୍ର ମୋତେ ରେଳ ଭ୍ରମଣର ପ୍ରସ୍ତାବ ଦେବାରୁ ମୁଁ ରୋକଠୋକ୍ ଭାବେ ମନା କରିଦେଇଥିଲି । ମୁଁ ଉଡ଼ାଜାହାଜରେ ଯାଇ ଦିଲ୍ଲୀ ପହଞ୍ଚିଥିଲି । ଏଥିପାଇଁ ସାହିତ୍ୟ ଏକାଡେମୀ ମୋତେ ଗସ୍ତଖର୍ଚ୍ଚ ଦେଇ ନଥିଲେ । ମୋର ସହଯୋଗୀ ଶିକ୍ଷୀଦଳ ହାତ ହତିଆର ନେଇ ରେଳ ଯୋଗେ ଦିଲ୍ଲୀ ପହଞ୍ଚିଥିଲେ ।

ଦିଲ୍ଲୀର ମାଭଲଙ୍କର୍ ହଲରେ ଉତ୍ସବର ଆୟୋଜନ କରାଯାଇଥାଏ । ଆୟୋଜନର ଅନେକ ବିସଙ୍ଗତି ମଧ୍ୟରୁ ଗୋଟିଏ ଅଭାବନୀୟ ଘଟଣାର ଏଠି ଉଲ୍ଲେଖ କରୁଛି । ସଂପାଦକ ଇନ୍ଦୁଭୂଷଣ ଉତ୍ସବର ସ୍ମରଣିକା ପାଇଁ ପ୍ରଚ୍ଛଦଟିଏର ଡିଜାଇନ୍ କରିବାକୁ ପାଇଁ ମୋତେ ଅନୁରୋଧ କରିଥିଲେ । ସେ ସ୍ମରଣିକା ଯେଉଁ ସାଇଜ୍‌ରେ ଛାପା ହେବ ବୋଲି କହିଥିଲେ, ତାକୁ ଆଧାର କରି କୋରାପୁଟ ଜୟପୁର ଚିତ୍ରକାରଙ୍କ ଗୋଟିଏ ରେଖାଚିତ୍ରର ଅବଲମ୍ବନରେ ମୁଁ କେବଳ ଡିଜାଇନ୍ କରି ନଥିଲି ତାକୁ ସିଲ୍କ ସ୍କ୍ରୀନ୍‌ରେ ମୁଦ୍ରଣ କରିଦେଇଥିଲି । କିନ୍ତୁ ଇନ୍ଦୁଭୂଷଣ ଭୁବନେଶ୍ୱରରେ ମୁଦ୍ରଣ କରି ଯେଉଁ ସ୍ମରଣିକା ଆଣିଲେ, ତା'ର ସାଇଜ୍ ଯଥେଷ୍ଟ ଛୋଟ ଥିଲା ଏଣୁ ବନ୍ଧେଇ ହେଲାପରେ ସ୍ମରଣିକାଟି ମା' କୋଳରେ ତାହା ଶିଶୁ ସନ୍ତାନ ଭଳି ଦେଖାଗଲା ।

Digitized by srujanika@gmail.com

ଏହି ବିସଙ୍ଗତିଗୁଡ଼ିକ ଏଭଳି ଭାବରେ ହାସ୍ୟୋଦ୍ଦୀପକ ଯେ ସେଥିରୁ ଆଉ ଗୋଟିଏ ପ୍ରସଙ୍ଗର ଉଲ୍ଲେଖ ନକରି ରହିପାରୁ ନାହିଁ । ନିଷ୍ପତ୍ତି ନିଆ ଯାଇଥିଲା ଯେ ଓଡ଼ିଆ ଅସ୍ମିତାକୁ ଦିଲ୍ଲୀ ମହଲରେ ପ୍ରତିଷ୍ଠା କରିବା ପାଇଁ ଓଡ଼ିଆ ଝୋଟିର ବହୁଳ ବ୍ୟବହାର କରାଯିବ । ଆମେ ଓଡ଼ିଶା କ୍ରାଫ୍‌ଟ୍‌ସ୍ କାଉନ୍‌ସିଲ୍ ପକ୍ଷରୁ ଓଡ଼ିଆ ଝୋଟିର ଗୋଟିଏ ମନୋଜ୍ଞ ପ୍ରଦର୍ଶନୀ ମାଭଲଙ୍କର୍ ହଲ୍‌ରେ ଆୟୋଜନ କରିଥିଲୁ ଏବଂ ଏହି ଉପଲକ୍ଷେ ଗୋଟିଏ ପୁସ୍ତିକା ମଧ୍ୟ ପ୍ରକାଶ କରିଥିଲୁ । ପୁସ୍ତିକାରେ ଆସିକା ପାଖ ଘଟୁକରୀ ଗାଁର ଗୋଟିଏ କବାଟ ଝୋଟି, ପୁରୀର କାର୍ତ୍ତିକ ମୁରୁଜ ସାଙ୍ଗକୁ ଜଣେ ହବିଷ୍ୟାଳୀର କବିତା, କବିସୂର୍ଯ୍ୟ ନଗରର ନିଜ ଦେହରେ ଚିତା କୁଟେଇଥିବା ଜଣେ ମହିଳା ଏବଂ ଭୁବନେଶ୍ୱର ଆଖପାଖ ଗାଁର ଘର କାନ୍ଥରେ ଦିଆଯାଇଥିବା ଚିତାର ଫଟୋଗ୍ରାଫ୍ ପ୍ରକାଶ ପାଇଥିଲା । ଦିଲ୍ଲୀରେ ବସବାସ କରି ଏକରକମ ଅଣଓଡ଼ିଆ ହୋଇଯାଇଥିବା ମହିଳାମାନେ ଆମ ଝୋଟି ପ୍ରଦର୍ଶନୀରେ ଯଥେଷ୍ଟ ଆଗ୍ରହ ପ୍ରକାଶ କରିଥିଲେ ।

ଆମର ଝୋଟି ପ୍ରଦର୍ଶନୀରେ ଅନୁପ୍ରାଣିତ ହୋଇ ମନୋରମା ମହାପାତ୍ର ଉତ୍ସବ ଦିନ ସକାଳୁ ସକାଳୁ ଦିଲ୍ଲୀର ଓଡ଼ିଆଣୀଙ୍କୁ ଡାକିଆଣି ମାଭଲଙ୍କର ହଲ୍‌ର ଚଟାଣରେ ପିଠଉରେ ଝୋଟି ପକେଇବା ପାଇଁ ପ୍ରବର୍ତ୍ତାଇଥିଲେ । ରକମ ରକମର ବାନ୍ଧ ଶାଢ଼ି ପିନ୍ଧି ଓ ଗହଣା ଗାଣ୍ଠିରେ ନାଇ ହେଇ ଓଡ଼ିଆଣୀମାନେ ଶୀତତାପ ନିୟନ୍ତ୍ରିତ ଗାଡ଼ିରୁ ଖପାଖପ ଓହ୍ଲେଇ ପଡ଼ି ହାତରେ ପିଠଉ ଧରି ଝୋଟି ଆଙ୍କିବାରେ ଲାଗି ପଡ଼ିଲେ । ମାର୍ବଲ୍ ଚଟାଣ, ଗୋଟିଏ ଆଡ଼େ ଝୋଟି ପଡ଼ି ପଡ଼ି ଗଲାବେଳକୁ ଓଡ଼ିଆଣୀଙ୍କ ଶାଢ଼ି ଆଞ୍ଚଳର ଘୋଷଡ଼ା ଖାଇ ଝୋଟି ଅନ୍ୟଆଡ଼େ ଲିଭି ଗଲା । ମୁଁ ଆଗରୁ ମନୋରମାଙ୍କୁ ସତର୍କ କରି ଦେଇଥିଲି ଯେ ପ୍ଲାଷ୍ଟିକ୍ ରଙ୍ଗ ନହେଲେ ମାର୍ବଲ ଚଟାଣ ଉପରେ ପିଠଉର ଝୋଟି ରହିବନି । ମନୋରମା ନିଜ ଅଜ୍ଞତାରୁ ବିଚାରୁଥିଲେ ଯଦି ଗାଁ ଗହଳ ଗୋବର ଲିପା ଭୂଇଁରେ ଝୋଟି ଉଠୁକୁଛି, ଦିଲ୍ଲୀର ମାଭଲଙ୍କର୍ ହଲ୍‌ରେ କାହିଁକି ସେ କଥା ସମ୍ଭବ ହେବ ନାହିଁ । ମନୋରମା ଶେଷରେ ନିଜ ଭୁଲ ବୁଝିଲେ, ଗ୍ରାମ୍ୟ ସଂସ୍କୃତିକୁ ଆମଦାନି କରିଆଣି ସହରୀ ସଭ୍ୟତାର ଶଙ୍ଖମର୍ମର ବେଦୀ ଉପରେ ଥୋଇଦେଲେ ତାହା କିଭଳି ହାସ୍ୟାସ୍ପଦ ମନେହୁଏ ଶେଷରେ ଆମ କଲେଜ ପିଲା ପ୍ଲାଷ୍ଟିକ୍ ରଙ୍ଗରେ ଝୋଟି ଅଙ୍କନ କରି ମାଭଲଙ୍କର୍ ହଲର ପରିବେଶକୁ ଓଡ଼ିଆ ଅସ୍ମିତାରେ ଭରି ଦେଇଥିଲେ ।

ଗୋଟିଏ ପରେ ଗୋଟିଏ ବିସଙ୍ଗତିର ତାଲିକା ପାଠକଙ୍କ ଆଗରେ ଉପସ୍ଥାପିତ କରି ମୁଁ ସାହିତ୍ୟ ସମାରୋହର ସପ୍ତପୁରୁଷ ଉଦ୍ଧାର କରୁଛି ମନେହେବ । ସଭା ପାଇଁ ଆୟୋଜନ ଜୋର୍‌ସୋର୍‌ରେ ଚାଲିଛି । ଆମ ପିଲାମାନେ ରାତିସାରା ଉଜାଗର ରହି ମଣ୍ଡଣିକାମ କରୁଛନ୍ତି । ଭାରତର ଉପରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମା ସମାରୋହ ଉଦ୍‌ଘାଟନ କରିବା ପାଇଁ ଆସିବେ ।

Digitized by srujanika@gmail.com

ଆମ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ସଭାରେ ସଭାପତିତ୍ୱ କରିବେ । ସଂସ୍କୃତ ମନ୍ତ୍ରୀ ଶରତ କୁମାର କର ଓ ସଚିବ ଅଶୋକ କୁମାର ମିଶ୍ରଙ୍କ ସହିତ ବିଶିଷ୍ଟ କବି ସୀତାକାନ୍ତ ମହାପାତ୍ର ମଞ୍ଚାସୀନ ହେବେ । ଜଣ ଜଣ କରି ଅତିଥିମାନେ ସଭାଗୃହରେ ପ୍ରବେଶ କରୁଛନ୍ତି । ସଂସ୍କୃତି ମନ୍ତ୍ରୀଙ୍କ ଭାଇନା ବିଶିଷ୍ଟ ସାହିତ୍ୟିକ ରଜତ କୁମାର କର ଆସି ପ୍ରଥମ ଧାଡ଼ିରେ ପଡ଼ିଥିବା ସୋଫା ଉପରେ ବସିଥିଲେ । ଆୟୋଜନ ତଦାରଖ କରୁଥିବା ସଂସ୍କୃତି ନିର୍ଦ୍ଦେଶକ ପ୍ରଦ୍ୟୁମ୍ନ କୁମାର ମିଶ୍ର ଇତର ଲୋକଜଣକୁ କହିଲା ଭଳି ରଜତ କରଙ୍କୁ ଭି.ଆଇ.ପି. ଆସନ ଛାଡ଼ି ଅନ୍ୟତ୍ର ବସିବା ପାଇଁ କହିଲେ ତ ନୁହେଁ ଆଦେଶ ଦେଲେ । ତା' ପରେ ଗୋଟିଏ ଭୂକମ୍ପର ଆଲୋଡ଼ନ ସୃଷ୍ଟି ହେଲା । ରଜତ କର ଅପମାନିତ ହେବା ସ୍ୱାଭାବିକ । ସେ ଅଗ୍ନିଶର୍ମା ହେଇ ସଂସ୍କୃତି ନିର୍ଦ୍ଦେଶକଙ୍କ ଉପରେ ଗାଳି ବର୍ଷିଗଲେ। କହିବା ଶୁଣାଯାଉଥିଲା, ''ତୁ ଟା ମୋ ଭାଇର ଗୋଟାଏ ଚାକର। ସାଧାରଣ ନଉକରଟିଏ ହେଇ ତୋର ଏତେ ବହପ, ତୁ ନିର୍ଦ୍ଦେଶକ ହେଇଥା କି ଅନ୍ୟକିଛି ହେଇଥା, ଶାଳୀନତାର ସୀମା ଲଂଘ ନାହିଁ, ମଣିଷ ଚିହ୍ନି କଥା ଭାଷା କର ।'' ରଜତ କର ଖୁବ୍ ଉଚ୍ଚାଗଳାରେ କଥା କହୁଥିଲେ ଏବଂ ପ୍ରଦ୍ୟୁମ୍ନ ମିଶ୍ର କପୋତ ପକ୍ଷୀ ଭଳି କାକୁଡ଼ି ଯାଇ ଖାଲି ଆଜ୍ଞା ଆଜ୍ଞା କରିବା ଶୁଣା ଯାଉଥିଲା । ସଚିବ ଅଶୋକ ମିଶ୍ର ପରିସ୍ଥିତି ସମ୍ଭାଳିବା ପାଇଁ ଦୌଡ଼ି ଆସିଲେ, ତାଙ୍କ ପଛରେ ମନ୍ତ୍ରୀ । ମନ୍ତ୍ରୀ କହୁଥାନ୍ତି, ''ଭାଇନା ହେଲା ତାଙ୍କର ତ ଭୁଲ ହେଇଯାଇଛି, ତମେ ଟିକିଏ ଶାନ୍ତ ରହ ।'' ତା'ପରେ ସେହି ଅଞ୍ଚଳଟି ସାମାନ୍ୟ ଥଣ୍ଡା ପଡ଼ିଲା ।

ମଞ୍ଚସଜ୍ଜା ଶେଷ ହେଇଗଲାଣି । ଜାତି ଜାତିକା ଫୁଲରେ ମଞ୍ଚ ମଣ୍ଡଣି କରି ଦିଆଯାଇଛି । ମଞ୍ଚ ଉପରେ ଅତିଥି ବସିବା ଆସନର ପଛ ଭାଗରେ ବ୍ୟାନରଟିଏ ଖଞ୍ଜା ଯାଇଛି । ସେଥିରେ ଲେଖା ହେଇଥିବା ଗୋଟିଏ ଇଂରାଜୀ ଶବ୍ଦର ବନାନ ଭୁଲ ହେଇଯାଇଛି । "Inauguration" ବା ଉଦ୍‌ଘାଟନ ଶବ୍ଦର 'a' ଆଗରେ ଥିବା 'u' ଟି ବ୍ୟାନର୍ ଶିଳ୍ପୀ ଛାଡ଼ିଯାଇଛି। ଇଂରେଜମାନେ କାହିଁକି ଅକ୍ଷରଟି ସେଠି ଅଧିକା ଲେଖିଛନ୍ତି ତାର କାରଣ ହୁଏତ ବ୍ୟାନର୍ ଶିଳ୍ପୀଙ୍କୁ ଜଣା ନାହିଁ । ମୁଁ ଯେହେତୁ ସାଜସଜ୍ଜା ଦାୟିତ୍ୱରେ ଅଛି ଭୁଲଟି ଆପାତତଃ ମୋର । ନିର୍ଦ୍ଦିଷ୍ଟ ସମୟର ଯଥେଷ୍ଟ ଆଗରୁ ସାହିତ୍ୟ ଏକାଡେମୀର ବସ୍ ଓଡ଼ିଶା ନିବାସରୁ ଓଡ଼ିଆ ଅଧ୍ୟାପକଙ୍କୁ ଆଣି ମାଭଲଙ୍କର୍ ହଲ୍‌ରେ ଛାଡ଼ି ଦେଇଛି । ଅଧ୍ୟାପକମାନେ ଖାଲିଟାରେ ବସି କରନ୍ତେ ବା କ'ଣ । ସେମାନେ ପରୀକ୍ଷା ଖାତା କରେକ୍‌ସନ୍ ମନୋବୃତ୍ତିରେ ମାତି ଯାଇଛନ୍ତି । ଏଠି ଖାତା ତ ନାହିଁ, ସେମାନଙ୍କ ଆଖି ଆଗରେ ଜଳଜଳ ଦେଖାଯାଉଥିବା ବ୍ୟାନରଟିକୁ ସଂଶୋଧନ କରି ଇନାଗୁରେସନ୍‌ରେ ଥିବା ଭୁଲ ବାହାର କରିଦେଇଛନ୍ତି । ସଭା ଗୃହରେ ଗୁଞ୍ଜରଣ । ଅଧିକାଂଶଙ୍କ ଆକ୍ଷେପ ମୂର୍ଖ ବ୍ୟାନର୍ ଶିଳ୍ପୀଙ୍କ ପ୍ରତି । କିଏ କିଏ ମୋ ଆଡ଼କୁ ତାଙ୍କ ଶର ସନ୍ଧାନିବାରେ ବ୍ୟସ୍ତ ।

Digitized by srujanika@gmail.com

ବିନୋଦ ରାଉତରାୟ ଚୁଗୁଲେଇ କରି କହିବା ଶୁଣାଯାଉଛି । ''ଦି'ଦି ଟା'' ପିଏଚ୍. ଡ଼ି ପାଇଲା ପରେ ମଧ୍ୟ ଏମିତିକା ପ୍ରମାଦ''। ମୁଁ ଏସବୁ ଶୁଣୁଛି, କିନ୍ତୁ ପ୍ରତିକ୍ରିୟା ପ୍ରକାଶ କରୁନି । ସାହିତ୍ୟିକ ବନ୍ଧୁ ପ୍ରଫୁଲ୍ଲ ତ୍ରିପାଠୀ କହିବା ଶୁଣାଗଲା, ଇଂରାଜୀ ବନାନ ହଜାରେ ପ୍ରକାର ହେଇପାରିବ । ଇନାଗୁରେସନ୍ ଲେଖା ଭୁଲ୍ ନୁହେଁ । ସିରିଆରେ ଏଭଳି ବନାନ ଲେଖାହେବା ମୁଁ ଜାଣିଛି ।'' ଏ ଭିତରେ ସିକ୍ୟୁରିଟି ର କଳାକୁକୁର ମଞ୍ଚକୁ ଏବଂ ଆଗରେ ବସିଥିବା ଅତିଥିମାନଙ୍କୁ ବହେ ଶୁଂଘି ଫେରିଗଲାଣି । ଉପରାଷ୍ଟ୍ରପତି ଯେ କୌଣସି ମୁହୂର୍ତ୍ତରେ ବିରାଜି ପାରନ୍ତି ।

ସଂସ୍କୃତି ନିର୍ଦ୍ଦେଶକ ବ୍ୟାନରର ଭୁଲକୁ ସଂଶୋଧନ କରିବା ପାଇଁ ମୋତେ କହିଲେ, ''ସମ୍ଭବ ନୁହେଁ'' ମୁଁ ଉତ୍ତର ଫେରାଇଲି । ତା'ପରେ କଥା ସଚିବଙ୍କ କାନକୁ ଗଲା । ସମୟର ସ୍ୱଳ୍ପତା ଦୃଷ୍ଟିରୁ ବ୍ୟାନର୍ ବଦଳେଇ ହେବ ନାହିଁ ବୋଲି ସଫେଇ ଦେଲି । ତା'ପରେ ଆସିଲେ ସଂସ୍କୃତି ବିଭାଗର ସର୍ବମୟ କର୍ତ୍ତା, ଶରତ କୁମାର କର । ସିଏ ଗୋଟିଏ ବାସ୍ତବ କଥାଟି କହିବାକୁ ଚାହିଁଲେ । ତାଙ୍କ ପରାମର୍ଶ ହେଲା ତଳେ ଗୋଟିଏ ତିପେଇ ଚିହ୍ନ ଦେଇ ତା' ଉପରେ ଛାଡ଼ିଯାଇଥିବା 'u' ରେ ଲେଖାଯାଉ, ତା' ହେଲେ ଭୁଲ୍ ସଂଶୋଧନ ହୋଇଯିବ ।

ଏଥର ମୁଁ ବ୍ୟାନର୍ ସଂପର୍କରେ ମୋ ମତାମତ ପରିଷ୍କାର କରିଦେବା ପାଇଁ ଚାହିଁଲି । ଯେଉଁ ମୁଖ୍ୟ ଅତିଥିମାନେ ବ୍ୟାନର୍‌କୁ ପଛ କରି ବସିବେ ସେମାନେ ବ୍ୟାନର୍‌ରେ କ'ଣ ଲେଖାଅଛି ଜମାରୁ ପଢ଼ିବେନି ଏଣୁ ଓଡ଼ିଶାର ମାନ ମହତ୍ତ୍ୱ ତଳେ ପଡ଼ିଯିବାର କୌଣସି ଆଶଙ୍କା ନାହିଁ । ଦ୍ୱିତୀୟତଃ ସଭାଗୃହର ସବୁ ଅତିଥି ତ ଓଡ଼ିଆ ଅଧାପକ ନୁହନ୍ତି ଯେ ଏଠି ବସି ପରୀକ୍ଷାଖାତା ସଂଶୋଧନ କରିବେ । ଅଧିକାଂଶ ନିମନ୍ତ୍ରିତ ଅତିଥି ମୁଖ୍ୟଅତିଥି ଓ ମୁଖ୍ୟବକ୍ତାଙ୍କର ଭାଷଣ ଶୁଣିବେ । ବ୍ୟାନର୍‌ରେ କ'ଣ ଲେଖାଅଛି ପଢ଼ିବାକୁ ତର ପାଇବେନି । ତୃତୀୟତଃ ଦୂରଦର୍ଶନ ସମ୍ବାଦ ପରିବେଷଣ ବେଳେ ବ୍ୟାନରଟି ଏତେ ଛୋଟିଆ ହେଇ ଦେଖାଯିବ ଏବଂ ଏତେ କମ୍ ସମୟ ପାଇଁ ଦେଖାଯିବ ଯେ ଭୁଲ ଭଟକା ଆଖିରେ ପଡ଼ିବ ନାହିଁ । ଚତୁର୍ଥରେ ଆମେ ତିପେଇ ପ୍ରୟୋଗ କରି 'u' ଯଦି ଲେଖିବା ତା' ହେଲେ ବ୍ୟାନରରେ ଭୁଲ୍ ଅଛି ବୋଲି ସମସ୍ତେ ଠଉରେଇନେବେ । ଏହା ଦୃଶ୍ୟ-ଅସଂଗତିରେ ପରିଣତ ହୋଇଯିବ । ଚୋର ଚୋରି କରିଥିବା ଘରେ ନିଜ ଜୋତା ଭୁଲିଗଲେ ଯେଉଁ ପ୍ରମାଦ ଘଟେ ଓ ଶେଷରେ ତାହାହିଁ ତାକୁ ଧରାପକେଇଦିଏ ଏଠି ତାହାହିଁ ଘଟିବ । ପଞ୍ଚମରେ ଏତେ ଆଗରୁ ଅଧାପକମାନଙ୍କୁ ହଲ୍‌ରେ ଭର୍ତ୍ତି ନକରି ଶେଷ ମୁହୂର୍ତ୍ତରେ ସେମାନଙ୍କୁ ଆଣିଥିଲେ ବ୍ୟାନର୍ ଥିବା ଭୁଲ୍ ଧରା ପଡ଼ିନଥାନ୍ତା । ମନ୍ତ୍ରୀ ମହୋଦୟ ମୋ କହିବା କଥାତକ ଭଲଭାବରେ ହୃଦୟଙ୍ଗମ କଲେ ଏବଂ ସାମାନ୍ୟ ହସି ଦେଇ ମୋ ପିଠି ଥାପୁଡ଼େଇ ଦେଲେ ।

Digitized by srujanika@gmail.com

ଉପରାଷ୍ଟ୍ରପତି, ମୁଖ୍ୟମନ୍ତ୍ରୀ ତଥା ଅନ୍ୟାନ୍ୟ ଅତିଥି ଆସିଲେ । ଘଣ୍ଟାଏ ଭିତରେ ଉଦ୍‌ଘାଟନ ଉତ୍ସବ ସାଙ୍ଗ ହେଲା । ଆମେ ତତ୍‌କ୍ଷଣାତ୍ ଭୁଲ୍ ଥିବା ଧାଡ଼ି ପାଖରୁ ବ୍ୟାନର୍‌ଟିକୁ ପଛକଡ଼ିଆ ମାର୍ଡା କରି କଣ୍ଟା ବାଡ଼େଇ ଦେଲୁ । ଭୁଲ୍‌ଜନିତ ସମସ୍ୟାର ସହସା ସମାଧାନ ହେଇଗଲା । ଲଞ୍ଚ୍ ଖିଆ ସରିଲାପରେ ନୂଆ କରି ଦିଲ୍ଲୀରେ ପହଞ୍ଚିଥିବା ସାହିତ୍ୟିକ ଦଳ ଶସ୍ତାରେ ଶାଢ଼ି ଓ ଲୁଗାପଟା କିଣିବା ପାଇଁ ଚାନ୍ଦିନୀଚୌକ ଓ ସରୋଜିନୀ ମାର୍କେଟ୍ ଆଡ଼େ ଖେଦିଗଲେ ।

ସାହିତ୍ୟ ସମାରୋହ କାର୍ଯ୍ୟକ୍ରମର ଅଂଶ ଭାବେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଆଲୋଚନା ପାଇଁ ଗୋଟିଏ ଅଧିବେଶନ ନିର୍ଦ୍ଦିଷ୍ଟ କରାଯାଇଥିଲା । ସେଥିରେ ଯେଉଁମାନେ ଆଲୋଚକ ଥିଲେ ସେମାନେ ହେଲେ ମ୍ୟୁଜିୟମ୍‌ର ସୁପରିଣ୍ଟେଣ୍ଡେଣ୍ଟ୍ ଡକ୍ଟର ହରିଶ୍ଚନ୍ଦ୍ର ଦାସ, ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ, ଡକ୍ଟର ପ୍ରଶାନ୍ତ ରାୟ, ଅଭିଲେଖାଗାରର ଅଧ୍ୟକ୍ଷ ଡକ୍ଟର ମହେଶ ପ୍ରସାଦ ଦାଶ, ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟର ଅଧ୍ୟାପକ ବିନୋଦ ରାଉତରାୟ, ସମାଜର ବ୍ରଜବନ୍ଧୁ ଦାଶ, ଦିଲ୍ଲୀର ଶିଳ୍ପୀ ଯତୀନ ଦାସ ଓ ମୁଁ । ଜାତୀୟ ସଂଗ୍ରହାଳୟର ନିର୍ଦ୍ଦେଶକ ଡକ୍ଟର ରମେଶ ଚନ୍ଦ୍ର ଶର୍ମା ଏହି ଅଧିବେଶନରେ ଅଧ୍ୟକ୍ଷତା କରୁଥିଲେ । ମୁଁ ଭିତ୍ତି ପ୍ରବନ୍ଧ ଉପସ୍ଥାପିତ କରିଥିଲି । ପ୍ରବନ୍ଧ ପାଠ କରିବାକୁ ମୋଟେ ଚାଳିଶ ମିନିଟ୍ ସମୟ ଲାଗିଲା । ଯତୀନଙ୍କ ପାଳି ପଡ଼ିଲାବେଳକୁ ଅଧିକାଂଶ ବକ୍ତା ଓଡ଼ିଶାର କଳା ସଂପର୍କରେ ଅନେକ କଥା କହି ସାରିଥିଲେ। ଯତୀନ ମଞ୍ଚରେ ଠିଆ ହେଲାବେଳକୁ ହତାଶ ଦେଖାଯାଉଥିଲେ । ସିଏ ଏଣେତେଣେ ଉପରଠାଉରିଆ କଥା ସିନା କହନ୍ତି, ଚିତ୍ରକଳା ଗବେଷଣାରେ ତାଙ୍କ ଗହୀରିଆ ପ୍ରବେଶ ନାହିଁ, ଏଣୁ ସେ କ୍ଷୋଭ ପ୍ରକାଶ କରି କହିଲେ, ''ଏଠି ବକ୍ତାମାନେ ତ ଦୀର୍ଘ ପ୍ରବନ୍ଧ ପାଠ କରୁଛନ୍ତି, ମୋର ସେମିତି କିଛି ଠୋସ୍ କହିବା ପାଇଁ ନାହିଁ ।''

Digitized by srujanika@gmail.com

# ୭୩. ନୂତନ ଗୃହ ପ୍ରବେଶ

ଉଦୟଗିରି ପାହାଡ଼ ତଳେ କଲେଜର ନୂଆ କୋଠା ପ୍ରାୟ ସଂପୂର୍ଣ୍ଣ ହେଇ ଆସିଲା କିନ୍ତୁ କୋଠା ଚାରିପଟେ ପାଚେରି ଘେରା ହୋଇ ନଥାଏ । ଏଣେ କେନ୍ଦ୍ର ଲଳିତ କଳା ଏକାଡେମୀରେ ସଚିବ ଭାବେ ଯୋଗଦେବାର ସମ୍ଭାବନାଟିଏ ମନ ଭିତରେ ଉଙ୍କି ମାରୁଥାଏ । ମୋ ମନ ଉଦ୍‌ବେଳିତ ରହୁଥାଏ । ତେଣୁ ନୂଆ କୋଠାକୁ ଉଠି ଯିବା ପାଇଁ ମୁଁ ସ୍ଥିର କଲି । ମୋର ହୃଦ୍‌ବୋଧ ହେଲା ଯେ କଲେଜକୁ ନେଇ ମୋର ଆଉ ଅଧିକା କିଛି କରିବାର ନାହିଁ । ଗୀତଗୋବିନ୍ଦ ଉପରେ ଗବେଷଣା କରିଥିବାରୁ ମୋର ମନେପଡ଼ିଯାଉଥାଏ ଅବତାରବାଦର କଥା । କ'ଣ ଗୋଟିଏ ଉଦ୍ଦେଶ୍ୟ ପୂରଣ ଲକ୍ଷ୍ୟ ନେଇ ଗୋଟିଏ ଅଦୃଶ୍ୟ ଶକ୍ତି ମୋତେ କଲେଜଟିଏ ଗଢ଼ିବାର ଦାୟିତ୍ୱ ଦେଇଥିଲେ । ମୋର ସାଧ୍ୟମତେ ଯାହା କରିବାର କଥା କଲି । ମନେହେଲା ଅନ୍ୟମାନଙ୍କର ଏବେ ତାକୁ ରକ୍ଷଣାବେକ୍ଷଣ କରିବାର ଓ ଆଗକୁ ବଢ଼େଇବାର ବେଳ । ମୋର ସେ ସବୁ କାମରେ ଆଉ ନିର୍ଦ୍ଦିଷ୍ଟ ଭୂମିକା ନାହିଁ । ଯାହା କରିବାକୁ ଚେଷ୍ଟା କରିବି ତାହା ପୁନରାବୃତ୍ତି ହିଁ ହେବ ।

ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି ମଧ୍ୟ ଚାହୁଁଥାନ୍ତି ଯେ କଲେଜ ତାର ନୂଆ କୋଠାଘରକୁ ଶୀଘ୍ର ଯାଉ । ଏଇ ଛୋଟିଆ ଘର ଭିତରେ ଗୋଟିଏ ଡିଗ୍ରୀ କଲେଜ ତାଙ୍କୁ ଆଉ ସୁନ୍ଦର ଦେଖାଯାଉ ନଥାଏ । ନିର୍ଦ୍ଦେଶକ ଏବଂ ମୁଁ ନୂଆ କୋଠାଘର ପରିଦର୍ଶନ କଲୁ । ତା'ର ଯେତିକି ଅଭାବ ଅସୁବିଧା ପ୍ରତି ନିର୍ଦ୍ଦେଶକଙ୍କ ଦୃଷ୍ଟି ଆକର୍ଷଣ କଲି । କୋଠାଘରର ସୁରକ୍ଷା ଦୃଷ୍ଟିରୁ ଅତ୍ୟନ୍ତ ଆବଶ୍ୟକ ଥିଲା ତା'ର ପାଚେରି । ସେତେବେଳକୁ ବିଜୁଳି ମଧ୍ୟ ସଂଯୋଗ ହୋଇ ନଥାଏ । କଲେଜର ପାଇଖାନା ମଧ୍ୟ ଅଚଳ ଅବସ୍ଥାରେ ଥାଏ । ବିମଳେନ୍ଦୁ ମହାନ୍ତି ସମସ୍ତ ଅଭାବ ପୂରଣ କରିବା ପାଇଁ ଦାୟିତ୍ୱ ନେଲେ ।

କଲେଜରେ କେଉଁ ଶ୍ରେଣୀଗୃହ (ଷ୍ଟୁଡ଼ିଓ) କେଉଁ ଅଧ୍ୟାପକଙ୍କ ଦାୟିତ୍ୱରେ ରହିବ, ତା'ର ଗୋଟିଏ ନକ୍‌ସା ମୁଁ କାଗଜ ଉପରେ ଆଙ୍କି ଦେଇ ସହକର୍ମୀମାନଙ୍କୁ ଜଣେଇ ଦେଲି । ବର୍ତ୍ତମାନ ପେଡ଼ିପୁଟୁଳା ବାନ୍ଧି ଆମର ଅତି ପ୍ରିୟ ଆସ୍ଥାନ କଞ୍ଚନା କଲେଜ ଛାଡ଼ିବା ପାଇଁ ସମସ୍ତେ ପ୍ରସ୍ତୁତ ହେଲେ । କଲେଜର ଚୌକିଦାର ଭୁବନାନନ୍ଦ ଦାସ ବଡ଼ ଦୂରଦର୍ଶୀ ।

Digitized by srujanika@gmail.com

ସେ ତା' ମିଠାଦୋକାନକୁ ଆଗତୁରା କଳ୍ପନା ଛକରୁ ଖଣ୍ଡଗିରି ଛକକୁ ଉଠେଇ ନେଇଯାଇଥାଏ । କଳ୍ପନା ଛକର ଆଉଜଣେ ରଙ୍ଗ ଦୋକାନୀ ମଧ୍ୟ ନିଜର ରଙ୍ଗ ଓ କାଗଜ ଦୋକାନକୁ ସ୍ଥାନାନ୍ତର କରିବା ମତଲବରେ ଥାଏ । କଲେଜରେ ମୋର ବ୍ୟକ୍ତିଗତ ଯାହା କାଗଜପତ୍ର ଥିଲା ଯଥା କ୍ରାଫ୍ଟସ୍ କାଉନ୍‌ସିଲ୍‌ର ରେକର୍ଡ଼ପତ୍ର ଥିବା ଆଲମାରି, ଭାରତ ଉତ୍ସବ ବେଳର ଅଲିଆ, ମୋର ତୈଳଚିତ୍ର ଓ ଜଳର ରଙ୍ଗ ଚିତ୍ର ଏବଂ କଲେଜ କାନ୍ଥରେ ପ୍ରଦର୍ଶିତ ରାଜା ରବି ବର୍ମାଙ୍କ ଲିଥୋଗ୍ରାଫ, ରିଟ୍‌ବର୍ଗ୍ ମ୍ୟୁଜିୟମ୍‌ର ପୋଷ୍ଟର୍ ପେକିଙ୍ଗ୍ କରାଯାଇ ଟ୍ରକ୍‌ରେ ଲଦାଗଲା । କଲେଜର କିଛି ବିଶ୍ୱସ୍ତ ପୁରୁଣା ଛାତ୍ର ଏ କାର୍ଯ୍ୟରେ ମୋତେ ସାହାଯ୍ୟ କରୁଥାନ୍ତି । ମୁଁ ସେତେବେଳକୁ କଳ୍ପନା ଫ୍ଲାଟ୍‌ରେ ଥିବା ମୋ ସରକାରୀ ଘର ଛାଡ଼ିଦେଇ ଚନ୍ଦ୍ରଶେଖରପୁର ଫ୍ଲାଟ୍ ଘରକୁ ଚାଲିଯାଇଥାଏ । ଟ୍ରକ୍ ଚନ୍ଦ୍ରଶେଖରପୁର ଅଭିମୁଖେ ଚାଲିଲା, ଏଣେ ସରକାରୀ ଅଫିସ୍‌ର ବିଭିନ୍ନ ବନ୍ଧେଇ, ରେଜିଷ୍ଟର୍, ଫାଇଲ୍, ଟାଇପ୍ ମେସିନ୍ ଇତ୍ୟାଦି ଯାବତୀୟ ସଂପତ୍ତି ଅନ୍ୟ ଟ୍ରକ୍‌ରେ ବୋଝେଇ ହୋଇ ନୂଆ କୋଠା ଅଭିମୁଖେ ଚାଲିଲା ।

ଅତୁଆ ଭିତରେ ରହିଲା କଲେଜର ଆସବାବ ପତ୍ର । ଗ୍ରାଫିକ୍ ବିଭାଗର ଲିଥୋ ଆଉ ଏଚିଙ୍ଗ୍ ମେସିନ୍, ଭାସ୍କର୍ଯ୍ୟ ବିଭାଗର ମୋଡେଲିଙ୍ଗ୍ ଷ୍ଟାଣ୍ଡ୍ ଓ କଲେଜ ବଗିଚାରେ ପ୍ରଦର୍ଶିତ ପଥର ଏବଂ ସିମେଣ୍ଟର ପ୍ରକାଣ୍ଡ ପ୍ରକାଣ୍ଡ ଭାସ୍କର୍ଯ୍ୟ । କଲେଜ ନୂଆ କୋଠାକୁ ଗଲାବେଳକୁ ପ୍ରଥମ ପାଞ୍ଚ ବର୍ଷର ଛାତ୍ରଛାତ୍ରୀ କଲେଜ ଛାଡ଼ି ଚାଲିଗଲେଣି । ସେମାନଙ୍କ ହାତ ତିଆରି ଭାସ୍କର୍ଯ୍ୟ କଳ୍ପନା କଲେଜରୁ ଉଠିଯାଉଥିବା ଖବର ପାଇ କିଛି ଛାତ୍ର ପୁରୁଣା କଲେଜରେ ପହଞ୍ଚିଲେ । କଳ୍ପନା କଲେଜ ଏବେ ଉଜୁଡ଼ି ଯିବ, ଏକଥାରେ ସେମାନଙ୍କ ମନ ମାନୁ ନଥାଏ । ସେମାନଙ୍କୁ ଲାଗୁଥାଏ ସେମାନଙ୍କ ଆଖି ଆଗରେ ଯିମିତି ଗୋଟିଏ ଐତିହ୍ୟ ଭାଙ୍ଗିରୁଜି ଯାଉଛି । ଅବଶ୍ୟ ପରବର୍ତ୍ତୀ ସମୟରେ କଲେଜର ନୂଆ କୋଠାକୁ ଦେଖିଲା ପରେ ସେମାନଙ୍କ ମନରେ ଆତ୍ମପ୍ରତ୍ୟୟ ଜାଗି ଉଠିଲା । ସେମାନେ ପୁଣି ସ୍ୱପ୍ନ ଦେଖିବା ଆରମ୍ଭ କଲେ । ସ୍ୱପ୍ନ ଏକ ସୁନେଲି ଭବିଷ୍ୟତର । ଦଶ ବାର ଦିନ ଯାଏ ପୁରୁଣା ଛାତ୍ରଙ୍କ ଗହଳି ଚହଳି ଲାଗି ରହିଥିଲା । ଆମେ ନୂଆ କୋଠାଘର ସାମନା ପଡ଼ିଆରେ, କଲେଜର ପ୍ରବେଶ ଦ୍ୱାର ଦୁଇପଟେ ସିମେଣ୍ଟ ପିଣ୍ଡି କରି ଭାସ୍କର୍ଯ୍ୟ ଗୁଡ଼ିକୁ ସଜେଇ ଦେଲୁ । ଜୁଲାଇ ମାସ, ମଝି ମଝିରେ ବର୍ଷା ଅସରାଏ ଅସରାଏ ହେଉଥାଏ । ଆମେ କୋଠା ଚାରିପଟେ ଗଛ ଲଗେଇଲୁ, ଇଟାର ଜାଲିବନ୍ଧ ତିଆରି କରି ଗଛଗୁଡ଼ିକୁ ରକ୍ଷା କରିବା ପାଇଁ ଚେଷ୍ଟା କଲୁ । ଛୋଟ ଛୋଟ ନାମଫଳକ ଲେଖି ଷ୍ଟୁଡିଓଗୁଡ଼ିକୁ ଚିହ୍ନଟ କଲୁ । ଚିତ୍ରବୀଥି, ଅଭ୍ୟର୍ଥନା ପ୍ରକୋଷ୍ଠ, ପ୍ରଦର୍ଶନୀ ମଣ୍ଡପ, ସଭା ଅଗଣା ପ୍ରଭୃତିରେ ଫଳକ ଲାଗିଲା । କୋଠାଘର ଧୀରେ ଧୀରେ ସଜେଇ ହେଲା ଭଳି ଦିଶିଲା ।

Digitized by srujanika@gmail.com

ଚାରୋଟି ଅଗଣାର ଚାରିକୋଣ ତଳ ଉପର ହୋଇ ଆଠଟି କୋଣକୁ ମୁଁ ପୃଥିବୀର ପୁରାତନ ସଭ୍ୟତାମାନଙ୍କର ଚିତ୍ର ଆଭାସ ଦେଇ ସଜେଇବା ପାଇଁ ଅନୁରୋଧ କରିବାରୁ ଅଧ୍ୟାପକ ବଳଦେବ ମହାରଥୀ ଓ ମାନସରଞ୍ଜନ ଜେନା ଚିତ୍ର ଆଙ୍କିବାରେ ଲାଗି ପଡ଼ିଲେ । ମିଶର, ଚୀନ, ଜାପାନ, ମଧ୍ୟପ୍ରାଚ୍ୟ, ଭାରତ, ପ୍ରାଗୈତିହାସିକ ଗୁହା ଚିତ୍ର, ପୁଣି ତା' ସାଙ୍ଗରେ ଓଡ଼ିଶାର ସ୍ୱତନ୍ତ୍ର କଳାଶୈଳୀକୁ ଆଧାର କରି ରୂପ ସଂଯୋଜନା କରାଗଲା । ମୋର ଉଦ୍ଦେଶ୍ୟ ଥିଲା, ଯେଉଁ ଛାତ୍ରଛାତ୍ରୀ ନୂଆ କରି କଲେଜରେ ପ୍ରବେଶ କରିବେ ସେମାନଙ୍କ ପାଇଁ ଏହି ଚିତ୍ରଗୁଡ଼ିକ କୌତୂହଳ ସୃଷ୍ଟିକରିବ ଏବଂ ସେଇଠୁ ଆରମ୍ଭ ହେବ କଳା ଇତିହାସର ଜିଜ୍ଞାସା । କଲେଜରେ ପରୀକ୍ଷାବେଳର ଛବି ଚିତ୍ରବୀଥିରେ ସଜେଇ ଦିଆଗଲା ।

ପ୍ରଦର୍ଶନୀ ମଣ୍ଡପରେ ଉଦ୍‌ଘାଟନୀ ସଭା ହେବ ବୋଲି ମୁଁ ନିଷ୍ପତ୍ତି ନେଲି । ଏସବୁ କାର୍ଯ୍ୟ ପାଇଁ ଏବଂ ପିଲାଙ୍କ ଚିତ୍ର ପ୍ରଦର୍ଶନୀ ପାଇଁ ଏ ମଣ୍ଡପଟି ଉଦ୍ଦିଷ୍ଟ । ମୁଁ ଉତ୍ସବର ନାଁ ଦେଇଥିଲି ଗୃହପ୍ରତିଷ୍ଠା । କିଏ ସବୁ ଅତିଥି ହେଇ ଆସିବେ, ତାହା ନେଇ ବିଚାର ବିମର୍ଶ ହେଲା । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତ ମୁଖ୍ୟ ପୁରୋଧା ହେବେ । ତା' ସହିତ ରହିବେ ସେତେବେଳର ସଂସ୍କୃତ ମନ୍ତ୍ରୀ ଚୈତନ୍ୟ ପ୍ରସାଦ ମାଝି, ସଂସ୍କୃତି ସଚିବ ରାଜେନ୍ଦ୍ର କିଶୋର ପଣ୍ଡା, ଅତିରିକ୍ତ ଶାସନସଚିବ କୁଙ୍କୁମ ମହାନ୍ତି ଓ ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି । ଗୃହ ପ୍ରତିଷ୍ଠା ଉତ୍ସବରେ ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଂପୃକ୍ତି ଚାହୁଁଥିଲି ଏବଂ ଉପାଧ୍ୟକ୍ଷ ଆନନ୍ଦ ଦେବ ଏ ଉତ୍ସବରେ ଯୋଗ ଦେବା ପାଇଁ ମୁଁ ତାଙ୍କୁ ନିମନ୍ତ୍ରଣ କରିବାକୁ ଚିନ୍ତାକଲା ବେଳକୁ ଲଳିତ କଳା ଏକାଡେମୀର ଅଧକ୍ଷ ରାମ ନିବାସ ମିର୍ଦ୍ଧା ଏ ଉତ୍ସବରେ ଯୋଗ ଦେବା ପାଇଁ ନିଜଆଡୁ ସମ୍ମତି ଦେଲେ । ଏହାଫଳରେ ରାଜନୈତିକ ବିଷମତାଟିଏ ସୃଷ୍ଟି ହେଲା । ରାମ ନିବାସ କଂଗ୍ରେସର ନେତା ଏବଂ ସେ ଜନତାଦଳର ନେତା ବିଜୁ ପଟ୍ଟନାୟକଙ୍କ ଦ୍ୱାରା କାଳେ ଗ୍ରହଣୀୟ ହେବେନି ବୋଲି ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି ସନ୍ଦେହ ପ୍ରକାଶ କଲେ । କିନ୍ତୁ ବିଜୁ ବାବୁଙ୍କର ଉଦାରତା ଆମ ମନରେ ବିଶ୍ୱାସ ଭରିଦେଲା ।

ଏଥର ନିମନ୍ତ୍ରଣ ପତ୍ର ଛାପିବା ପାଇଁ ଆଉ ବାବୁଲା ସେନାପତିଙ୍କ ଉପରେ ନିର୍ଭର କରିବାକୁ ପଡ଼ିଲାନି । ଆମ କଲେଜର ଗ୍ରାଫିକ୍ ଷ୍ଟୁଡ଼ିଓରେ ପିଲାଙ୍କ ଦ୍ୱାରା ଡିଜାଇନ୍ ହେଇ ସିଲ୍‌କ ସ୍କ୍ରୀନ୍‌ରେ ଛପାଗଲା । ଏହା ବ୍ୟତୀତ କଲେଜ ନୂଆକୋଠା ନିର୍ମାଣ ସଂପର୍କରେ ବିଭିନ୍ନ ତଥ୍ୟ ଏବଂ ତାର ନକ୍‌ସା ତଥା ପ୍ରତି ଷ୍ଟୁଡ଼ିଓର ବ୍ୟବହାରକୁ ନେଇ ସବିଶେଷ ସୂଚନା ମଧ୍ୟ ଉତ୍ସବ ପୁସ୍ତିକାରେ ଦିଆଯାଇଥିଲା । ମୋର ପରିକଳ୍ପନାରେ ନୂଆ କୋଠାକୁ ନେଇ ଯେଉଁ ସବୁ ସ୍ୱପ୍ନ ଓ ଚିନ୍ତା ଥିଲା ତା'ର ସାକାର ରୂପ ଏହି ପୁସ୍ତିକାରେ ଲିପିବଦ୍ଧ ହେଇଥିଲା ।

Digitized by srujanika@gmail.com

ରାମ ନିବାସ ମିର୍ଦ୍ଧା ରାଜ୍ୟପାଳଙ୍କ ଅତିଥି ହୋଇଥିଲେ । ଭୁବନେଶ୍ୱରରେ ତାଙ୍କ କାର୍ଯ୍ୟକ୍ରମକୁ ସଫଳ କରିବା ଦାୟିତ୍ୱରେ ମୁଁ ଥିଲି । ଉଦ୍‌ଘାଟନ ପରଦିନ ସରକାରୀ ଛୁଟି ଥାଏ । ମିର୍ଦ୍ଧା ସାହେବଙ୍କ କାର୍ଯ୍ୟକ୍ରମ ଭିତରେ ଥାଏ ଚିନ୍ତାମଣି ପାଣିଗ୍ରାହୀ ଏବଂ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ ସାକ୍ଷାତ, ରାଜ୍ୟ ବିଧାନ ସଭା ଏବଂ ଶହୀଦନଗରରେ ଥିବା କେନ୍ଦ୍ର ସରକାରଙ୍କ ଓ୍ୱିଭରସ୍ ସର୍ଭିସ୍ ସେଣ୍ଟର୍ ପରିଦର୍ଶନ । ମୁଁ ତାଙ୍କୁ ନେଇ ଚିନ୍ତାମଣି ଓ ଜାନକୀ ବଲ୍ଲଭଙ୍କ ଘରେ ପହଞ୍ଚିଲି । ମିର୍ଦ୍ଧା ସାହେବଙ୍କୁ ଶ୍ରଦ୍ଧା, ଆଦର, ଅଭ୍ୟର୍ଥନା ମିଳିଲା । ତା' ସହିତ ଉଭୟଙ୍କ ଘରେ ମୋର ଯେଭଳି ଖାତିର କରାଗଲା ସେଥିରେ ମିର୍ଦ୍ଧା ସାହେବଙ୍କ ନିକଟରେ ମୋର ଆହୁରି ପ୍ରାଧାନ୍ୟ ବଢ଼ିଗଲା । ମୁଁ ଲଳିତ କଳା ଏକାଡେମୀରେ ସଚିବ ହେବା ପାଇଁ ଚାହୁଁଛି ବୋଲି ଉଭୟେ ଜାଣିଥିଲେ । ଚିନ୍ତାମଣି ପାଣିଗ୍ରାହୀଙ୍କ ସହିତ ମୁଁ ଭୁବନେଶ୍ୱର ଆସିବା ଦିନଠାରୁ ଘନିଷ୍ଠତା, ଏଣୁ ସେ ମୋର ବଡ଼େଇ କରି କହିଲେ । ଜାନକୀ ବଲ୍ଲଭ ମୋତେ ସାମାନ୍ୟ ପରିହାସ କରି କହିଲେ, ''ପାଢ଼ୀ ତମ କଲେଜ ତ ବିଶ୍ୱବିଦ୍ୟାଳୟ ହେଇଯିବ, ତମେ ତ ଏଠି ପ୍ରଫେସର୍ ହେବ ଆଉ ଦିଲ୍ଲୀ ଆଡ଼େ କାହିଁକି ମନ କରୁଛ ?'' ରାମ ନିବାସ ଜାନକୀ ବଲ୍ଲଭଙ୍କ କଥା ଶୁଣି ମୁରୁକି ହସିଲେ, ମୁଁ ଉତ୍ତର ନ ଫେରାଇ ନୀରବ ରହିଲି ।

ବିଧାନ ସଭାର ବାଚସ୍ପତି ଯୁଧିଷ୍ଠିର ଦାସଙ୍କ ସହିତ ମଧ୍ୟ ମୋର ପରିଚୟ ଥାଏ । ସେ ବିଧାନ ସଭା ହତା ଭିତରେ ମିର୍ଦ୍ଧା ସାହେବଙ୍କୁ ଗାର୍ଡ଼ ଅଫ୍ ଅନର୍ ଦିଆଇଥିଲେ । ସେଭଳି ଛୁଟିଦିନ ସତ୍ତ୍ୱେ ଓ୍ୱିଭରସ୍ ସେଣ୍ଟର୍ ମିର୍ଦ୍ଧା ସାହେବଙ୍କ ପାଇଁ ସ୍ୱତନ୍ତ୍ର ଭାବେ ଖୋଲି ଦିଆଗଲା । ସେ କେନ୍ଦ୍ରରେ ବୟନଶିଳ୍ପ ମନ୍ତ୍ରୀ ଥିବାବେଳେ ଏହି ସେଣ୍ଟରଟି ଭୁବନେଶ୍ୱରରେ ଖୋଲାଯାଉ ବୋଲି ସୁପାରିଶ କରିଥିଲେ । ସେଦିନ ସେଣ୍ଟରର ନିର୍ଦ୍ଦେଶକ ତଥା ଅନ୍ୟାନ୍ୟ କର୍ମଚାରୀଙ୍କ କଥାରେ କୃତଜ୍ଞତାର ସ୍ୱର ବାରିହେଇ ପଡୁଥିଲା । ମିର୍ଦ୍ଧା ସାହେବଙ୍କ ଗସ୍ତକ୍ରମ ମୋ' ଯୋଗୁଁ ଆଶାତୀତ ଭାବେ ସଫଳ ହୋଇଥିବାରୁ ସେ ମୋ ପ୍ରତି ଅତ୍ୟନ୍ତ ସଦୟ ଥିଲେ । ହୁଏତ ମନେମନେ ସ୍ଥିର କରିନେଇଥିଲେ ଯେ ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ପାଇଁ ଯୋଗ୍ୟ ବ୍ୟକ୍ତି ।

ନୂଆ କୋଠାରେ କଲେଜ ଆରମ୍ଭ ହେଉ ନ ହେଉଣୁ ଇତିହାସ ପ୍ରଫେସର୍ ଓ ଓଡ଼ିଶା ଇତିହାସ କଂଗ୍ରେସର ଅଧ୍ୟକ୍ଷ କରୁଣା ସାଗର ବେହେରାଙ୍କଠାରୁ ଆମ କଲେଜରେ ଇତିହାସ କଂଗ୍ରେସର ଅଧିବେଶନଟିଏ ଆୟୋଜନ କରିବା ପାଇଁ ଅନୁରୋଧଟିଏ ଆସିଲା । କରୁଣା ସାଗରଙ୍କ ଅଧ୍ୟକ୍ଷତା କାଳରେ ସେ ଇତିହାସ କଂଗ୍ରେସ ପାଇଁ କୌଣସି ହେଲେ ଉଲ୍ଲେଖନୀୟ କାର୍ଯ୍ୟକ୍ରମ କରିପାରି ନଥିବାରୁ ଏହି ଅଧିବେଶନଟି କରେଇ ଦେଇ ତାଙ୍କୁ ଦୈନ୍ୟରୁ ଉଦ୍ଧାର କରିଦେବା ପାଇଁ ସେ ଅନୁନୟ ହୋଇ ମୋତେ କହିଲେ, ମୁଁ ଇତିହାସ

Digitized by srujanika@gmail.com

କଂଗ୍ରେସର ଭୁବନେଶ୍ୱର ଅଧିବେଶନ ପାଇଁ ସ୍ଥାନୀୟ ସଚିବ ମନୋନୀତ ହେଲି ଏବଂ ବିମଳେନ୍ଦୁ ମହାନ୍ତି ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ରହିଲେ ।

ଇତିହାସ କଂଗ୍ରେସର ଇତିହାସରେ ପ୍ରଥମ କରି ଧଉଳିର ଗଜୋତ୍ତମ ଭାସ୍କର୍ଯ୍ୟକୁ ଲୋଗୋ ଭାବେ ବ୍ୟବହାର କରି ମୁଁ ଲେଟର ପ୍ୟାଡ୍ ଇତ୍ୟାଦି ଡିଜାଇନ୍ କଲି ଓ ସିଲ୍କ ସ୍କ୍ରୀନ୍‌ରେ ଛପେଇ ଆଣିଲି । ମୁଖ୍ୟମନ୍ତ୍ରୀ ସାଧାରଣତଃ ଉଦ୍‌ଘାଟନ ଉତ୍ସବର ଅତିଥି ହେବାକୁ ମିଳନ୍ତି ନାହିଁ । କିନ୍ତୁ ଭୁବନେଶ୍ୱର ଅଧିବେଶନକୁ ସେ ଆସିଲେ । ଜଣେ ଜାତୀୟ ସ୍ତରର ଐତିହାସିକଙ୍କୁ ନିମନ୍ତ୍ରିତ କରି ତାଙ୍କୁ ଗସ୍ତଖର୍ଚ୍ଚ ଦେଇ ଅଧିବେଶନକୁ ଆଣିବା ପାଇଁ ଇତିହାସ କଂଗ୍ରେସ ପାଖରେ ଅର୍ଥ ନଥାଏ । ଡକ୍ଟର ସୀତାକାନ୍ତ ମହାପାତ୍ର କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗର ସଚିବ ଥାଆନ୍ତି । ତାଙ୍କୁ ଅନୁରୋଧ କରିବାରୁ ସେ ଜାତୀୟ ସଂଗ୍ରହାଳୟର କିପର୍ ପ୍ରଫେସର ଜି.ଏନ୍ ପନ୍ଥଙ୍କୁ ସରକାରୀ ଖର୍ଚ୍ଚରେ ଭୁବନେଶ୍ୱର ପଠାଇ ଦେଲେ ଏବଂ ଆମ କଲେଜରେ ଅନୁଷ୍ଠିତ ହେଉଥିବା ଇତିହାସ କଂଗ୍ରେସର ଅଧିବେଶନ ପାଇଁ ଯାହା ମନେପଡୁଛି ତିରିଶ ହଜାର ଟଙ୍କାର ଅନୁଦାନ ମଧ୍ୟ ପଠେଇଦେଲେ ।

ଇତିହାସ କଂଗ୍ରେସରେ ଯୋଗଦେବା ପାଇଁ ଆସିଥିବା ଅଧ୍ୟାପକ ଓ ପ୍ରାଧ୍ୟାପକଙ୍କ ରହିବା ବନ୍ଦୋବସ୍ତ ଆମ କଲେଜରେ ହୋଇଥିଲା । ଖଟ, ଶେଯ, ବିଛଣା ଚାଦର, ମାଣ୍ଡି, ତକିଆ, ଦେବୀ ଟେଣ୍ଟ୍ ହାଉସ୍‌ରୁ ଭଡ଼ା ଆଣି ଘର ସଜେଇ ଦିଆଯାଇଥିଲା । କଲେଜରେ କଳ ପାଣିର ବ୍ୟବସ୍ଥା ନଥିବାରୁ ତାଟି ଘେରା ହୋଇ ପାଞ୍ଚଦଶ ଉଠା ପାଇଖାନାର ବ୍ୟବସ୍ଥା ହେଇଥିଲା । କଲେଜ ଭିତରେ ଥିବା କୂଅ ଓ ସରକାରୀ ପାଣିଟାଙ୍କି ଅତିଥି ମାନଙ୍କର ଶୌଚ ଓ ସ୍ନାନକାର୍ଯ୍ୟରେ ସହାୟକ ହୋଇଥିଲା । ପ୍ରାୟ ପଚାଶ ଷାଠିଏ ଅତିଥି ଆମ କଲେଜରେ ଡେରା ପକାଇଥିଲେ । କଲେଜ ଭିତରେ ଖନ୍ଦା ଲାଗି ଖାଇବାର ମଧ୍ୟ ବନ୍ଦୋବସ୍ତ କରାଯାଇଥିଲା । ସକାଳ ଜଳଖିଆ ଖାଇବାକୁ ନେଇ ଜଳଖିଆରେ ପରିବେଷଣ କରାଯାଇଥିବା ସାମ୍ବାରକୁ ବାସି ଡ଼ାଲି ବୋଲି ଅଭିହିତ କରି କିଛି ଅଧ୍ୟାପକ ଆମର ବ୍ୟବସ୍ଥାକୁ ନାପସନ୍ଦ କଲେ । ବୋଧହୁଏ ସେମାନେ ଇଡ଼୍‌ଲି ଓ ସାମ୍ବାରର ମଜା ଘେନି ପାରିଲେନି । ସେମାନଙ୍କୁ ସାମ୍ବାରର ଭାଗମାପ ବୁଝେଇବାକୁ ହେଲା ।

ଇତିହାସ କଂଗ୍ରେସର ଉଦ୍‌ଘାଟନୀ ସଭାରେ ଶୃଙ୍ଖଳା ଓ କଳାତ୍ମକତାର ଘୋର ଅଭାବଥିବା ଆଗରୁ ମୁଁ ଲକ୍ଷ୍ୟ କରିଛି । ଏହି ଅଧିବେଶନରେ ତା'ର ପୁନରାବୃତ୍ତି ନ ହେବା ପାଇଁ ମୁଁ ଚେଷ୍ଟା କରିଛି । ସଭାମଞ୍ଚର ନକ୍ସା ତିଆରି କରି କେଉଁ ଅତିଥି କେଉଁଠି ଆସନ ଗ୍ରହଣ କରିବେ ତା'ର ମଧ୍ୟ ଚିହ୍ନଟ କରିଥିଲି । ଯେଉଁମାନେ ମୁଖ୍ୟମନ୍ତ୍ରୀଙ୍କ ସାନ୍ନିଧ୍ୟ ପାଇପାରିଲେନି ସେମାନେ ଅଭିଯୋଗ ବାଢ଼ିଲେ । ବହୁଲୋକ ମେଳି ହେଲେ ଏଭଳି କଳି ଉପୁଜେ ବୋଲି ସେତେବେଳେ ସବୁକଥାକୁ ଚଳେଇ ନେଇଥିଲି ।

Digitized by srujanika@gmail.com

ଅତିଥିମାନଙ୍କ ମନୋରଞ୍ଜନ ପାଇଁ ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ର ଦ୍ୱାରା ନୃତ୍ୟଗୀତର ମଧ୍ୟ ଆୟୋଜନ କରାଯାଇଥିଲା ଯାହା ଅଧ୍ୟାପକମାନେ ମନଭରି ଉପଭୋଗ କରିଥିଲେ । ମୋଟାମୋଟି ଭାବରେ ଦେଖିବାକୁ ଗଲେ ଭୁବନେଶ୍ୱର ଅଧିବେଶନ ରୁଚିପୂର୍ଣ୍ଣ ଏବଂ ନିଆରା ହୋଇଥିଲା । ଇତିହାସ ଓ କଳା ଇତିହାସ ମଧ୍ୟରେ ଥିବା ନାନ୍ଦନିକତାର ବିଭେଦ ସହଜରେ ଧରା ପଡ଼ିଯାଇଥିଲା । ଇତିହାସର ଅପେକ୍ଷାକୃତ ଶୁଷ୍କ ବାତାବରଣକୁ, ପାଦଟୀକା ଓ ଉଦ୍ଧୃତିର ଅଯଥା ଜଂଜାଳକୁ ହ୍ରାସ କରିଦେଇ କଳା ଇତିହାସର ବର୍ଣ୍ଣବିଭା ଓ ଛନ୍ଦରେ ଅଧିବେଶନକୁ ମୁଁ ଋଦ୍ଧିମନ୍ତ କରିବାକୁ ଚେଷ୍ଟା କରିଥିଲି ।

କଲେଜର ଅଧ୍ୟାପକ ଏବଂ ସଂଗ୍ରହାଳୟର କ୍ୟୁରେଟର୍‌ମାନଙ୍କ ମଧ୍ୟରେ ମାନସିକତାରେ ଯଥେଷ୍ଟ ତାରତମ୍ୟ ଥିବା ନେଇ ମୁଁ ବହୁ ଆଗରୁ ସଚେତନ ଥିଲି । ଦରମାର ତାରତମ୍ୟ ଏହାର ମୁଖ୍ୟ କାରଣ । ଏକଦା କ୍ୟୁରେଟର୍ ଓ କଲେଜ ଅଧ୍ୟାପକ ଏକାଭଳି ଦରମା ପାଉଥିଲେ । ପରେ ଅଧ୍ୟାପକମାନେ ୟୁ.ଜି.ସି. ଦରମା ପାଇଲେ ଆଉ କ୍ୟୁରେଟର୍‌ମାନେ ସଂସ୍କୃତି ବିଭାଗରେ ସିମିତି ଅଲୋଡ଼ା ହୋଇ ପଡ଼ି ରହିଲେ ଏବଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କରୁଣା ସାଗର ବେହେରା, ଅଶୋକ ରଥ ପ୍ରଭୃତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର୍ ପଦବୀ ଛାଡ଼ି ପ୍ରଫେସର୍ ହେବାର ସୁଯୋଗ ପାଇଲେ । ଏଣୁ ଇତିହାସ କଂଗ୍ରେସ ସଂଗ୍ରାହଳୟର କ୍ୟୁରେଟର୍‌ମାନଙ୍କୁ କେବେହେଲେ ଯଥୋଚିତ ସମ୍ମାନ ଦେଇନି । ଆମ ଭିତରୁ ଜଣେ ହେଲେ କେବେ ଇତିହାସ କଂଗ୍ରେସର ସଭାପତି ବା ସଂପାଦକ ହେବା ଦେଖାଯାଇନି, ଆମେ କେବେହେଲେ ମୁଖ୍ୟ ଅତିଥି ହୋଇ ନିମନ୍ତ୍ରିତ ହୋଇନାହୁଁ । ମୁଁ ଗୋଟିଏ କଲେଜର ଅଧ୍ୟକ୍ଷ ହୋଇଥିଲେ ମଧ୍ୟ ଇତିହାସ କଂଗ୍ରେସର କର୍ମକର୍ତ୍ତାଙ୍କ ନିକଟରେ ସଂଗ୍ରହାଳୟର ବ୍ୟକ୍ତି ଭାବରେ ଚିହ୍ନଟ ହେଉଥିଲି । ଏମିତିରେ ଦେଖିବାକୁ ଗଲେ ଗୋଟିଏ କଳା ମହାବିଦ୍ୟାଳୟରେ ଇତିହାସ କଂଗ୍ରେସ ଅନୁଷ୍ଠିତ ହେବାର ବିଶେଷ କାରଣ ନଥିଲା । ମୁଁ ଚାହୁଁଥିଲି ଆମ ନୂଆ କୋଠାରେ ବିଦ୍ୱାନ୍ ମାନଙ୍କର ପାଦ ପଡୁ ଏବଂ ମୁଁ ନୂଆ କୋଠାକୁ ଉତ୍ସବ ମୁଖର କରିଦେଇ ସେଠାରୁ ବିଦାୟ ନିଏ ।

ଇତିହାସ କଂଗ୍ରେସର ଅଧିବେଶନ ଶେଷ ହେଲା । ଭାରତ ସରକାରଙ୍କ ଅନୁଦାନ ଇତିହାସ କଂଗ୍ରେସର ସଂପାଦକ ହରିଶ ପଣ୍ଡାଙ୍କ ନିକଟରେ ପହଞ୍ଚି ସେଇଆଡ଼େ ରହିଲା । ତାହା ଆୟୋଜନର ଖର୍ଚ୍ଚ ମେଣ୍ଟାଇବାରେ ସହାୟକ ହେଲା ନାହିଁ । ସଭାପତି ପ୍ରଫେସର ବେହେରାଙ୍କ ସଭାପତି କାର୍ଯ୍ୟକାଳ ପୂର୍ଣ୍ଣ ହେଲା ପରେ ସେ ନିଧଡ଼କ ହୋଇ ବିଶ୍ୱବିଦ୍ୟାଳୟରେ ବସିଲେ । ଏଣେ ଦେବୀ ଟେଣ୍ଟର ମାଲିକ 'କାଲୁ' ଯାଉଣୁ ଆସୁଣୁ ମୋତେ ତାର ବକେୟା ପଇସା ମାଗିଲା । ମୁଁ ବ୍ୟକ୍ତିଗତ ଭାବେ କିଛି ଋଣ ପରିଶୋଧ କଲି ତଥାପି ପ୍ରାୟ କୋଡ଼ିଏ ପଚିଶ ହଜାର ଟଙ୍କାର ବକେୟା ସେମିତି ମୋ ମୁଣ୍ଡରେ ଝୁଲି

Digitized by srujanika@gmail.com

ରହିଲା । ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀର ସଚିବ ହୋଇ ଦିଲ୍ଲୀ ଚାଲିଗଲା ପରେ 'କାଲୁ' ଆଉ ମୋତେ ଭୁବନେଶ୍ୱର ରାସ୍ତାଘାଟରେ ନପାଇ ହିସାବ ଭୁଲି ଗଲା । ଅବଶ୍ୟ ଆଗରୁ ସରକାରଙ୍କ ବିଭିନ୍ନ ଟେଣ୍ଟବନ୍ଧା କାମ ଯୋଗାଡ଼ କରିଦେଇ ଦେବୀ ଟେଣ୍ଟର ମାଲିକ କାଲୁକୁ ମୁଁ ଲକ୍ଷଲକ୍ଷ ଟଙ୍କାର ମୁନାଫା କରେଇ ଦେଇଥିଲି । ଏଣୁ ସେ ହିସାବ ଭୁଲିଯିବା ଭିତରେ ଏହା ଅନ୍ୟତମ କାରଣ ଥିଲା । ଦିଲ୍ଲୀରେ ଥିଲାବେଳେ କଲେଜର ଅଧ୍ୟକ୍ଷଙ୍କଠାରୁ ଇତିହାସ କଂଗ୍ରେସ ପାଇଁ ଅସ୍ଥାୟୀ ବିଜୁଳିବତୀ ସଂଯୋଗ ବାବଦ ଅଠର ହଜାର ଟଙ୍କା ପଇଠ କରିବା ପାଇଁ ତାଗିଦା ଥାଇ ଚିଠିଟିଏ ମିଳିଲା । ଅବଶ୍ୟ ମୋ ଠିକଣାରେ ଉଲ୍ଲେଖ ଥିଲା ସ୍ଥାନୀୟ ସଂପାଦକ ଓଡ଼ିଶା ଇତିହାସ କଂଗ୍ରେସ । ଚିଠିଟି ପାଇ ମୁଁ ହସିବି ନା କାନ୍ଦିବି ଜାଣିପାରିଲିନି । ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷଙ୍କଠାରୁ ବିଜୁଳି ସଂଯୋଗ ବିଲ୍‌ର ବକେୟା ପଇସା ଆଦାୟ କରାଯାଇପାରେ ବୋଲି ମୋର ବ୍ୟକ୍ତିଗତ ସଚିବଙ୍କ ହାତରେ ଚିଠିଟିଏ ଲେଖେଇ ଦେଇ ନୀରବ ରହିବାକୁ ଶ୍ରେୟ ମଣିଲି ।

Digitized by srujanika@gmail.com

# ୭୪. ଅଲିଭା ସ୍ମୃତିରେ ନିଜ ହାତଗଢ଼ା କଲେଜ

ସବୁକଥାର ପରିସମାପ୍ତି ଅଛି । ସବୁ ଆରମ୍ଭର ଶେଷ ମଧ୍ୟ ଅଛି । କିନ୍ତୁ ଅନୁଷ୍ଠାନଟି ଆରମ୍ଭ ହୋଇଥିଲେ ତା'ର ସାଧାରଣତଃ ଅଭିବୃଦ୍ଧି ବା ବେଳେବେଳେ ଅବକ୍ଷୟ ଘଟେ ସିନା, ତାହା ନିଶ୍ଚିହ୍ନ ହୋଇଯାଏ ନାହିଁ । ଗୋଟିଏ ଶିକ୍ଷାନୁଷ୍ଠାନ ସମ୍ପୂର୍ଣ୍ଣ ବିଲୟ ହୋଇଯିବା ଶୁଣାଯାଇ ନାହିଁ ଅବଶ୍ୟ ସତ୍ୟବାଦୀର ପଞ୍ଚସଖାଙ୍କ ବନ ବିଦ୍ୟାଳୟକୁ ଛାଡ଼ି । କିନ୍ତୁ ଅବକ୍ଷୟ ଯନ୍ତ୍ରଣା ଦିଏ । ଏଭଳି ଦେଖିବାକୁ ଗଲେ କୌଣସି କଥା, ଘଟଣା, ଦୁଃଖ ଅବା ସୁଖର ଅନ୍ତ ମଧ୍ୟ ହୁଏ ନାହିଁ । ଲାଗେ ଦୁଃଖର ଅବସାନ ଘଟିଲା କିନ୍ତୁ ତାହା ସ୍ମୃତି ହୋଇଯାଇ ମଣିଷକୁ ବେଳେବେଳେ ଅସ୍ଥିର କରିଦିଏ । ସୁଖର କଥା ମଧ୍ୟ ସେଭଳି । ଏ ସବୁଥିରେ ବାହ୍ୟ ସଂପୃକ୍ତିର ମାତ୍ରା କମିଆସେ । ଅସଂପୃକ୍ତି ହିଁ ନାନ୍ଦନିକ ବ୍ୟବଧାନରେ ପରିଣତ ହୋଇଯାଇ ସଂପୃକ୍ତିକୁ ଭୋଗିବାର ମାଧ୍ୟମ ହୋଇଯାଏ । ତମେ ଯେ ଦିନେ କେନ୍ଦ୍ରବିନ୍ଦୁରେ ଅବସ୍ଥାପିତ ହୋଇଥିଲ, ତମର ଅଙ୍ଗୁଳି ନିର୍ଦ୍ଦେଶରେ ସବୁ କଥା ଘଟୁଥିଲା, ଏବେ କିନ୍ତୁ ତମେ ପରିଧି ବାହାରେ ଅସଂପୃକ୍ତ ମାନସିକତାରେ କେନ୍ଦ୍ରକୁ ନିରେଖିବାର ବେଳ ଉପସ୍ଥିତ । ମୁଁ କଲେଜ ଛାଡ଼ିବାର ଅଠର ବର୍ଷ ହେଲାଣି, ମନେହେଲା କୌଣସି ଗୋଟିଏ ଶକ୍ତି (ସେ ଶକ୍ତି ନିଜର ଅଭୀପ୍‌ସା ବି ହୋଇପାରେ) ମୋତେ କେନ୍ଦ୍ରବିନ୍ଦୁରୁ ଉଠେଇ ଆଣି ପରିଧି ବାହାରେ ଥୋଇଦେଲା । ମୋ ପରେ ପରେ ତିନିଜଣ ଅଧ୍ୟକ୍ଷ ନିଜ ନିଜ ଢଙ୍ଗରେ କଲେଜଟିକୁ ବାଟ କଢ଼େଇନେଇ କେଉଁଠି ପହଞ୍ଚେଇ ଦେଲେଣି, ତା' ଉପରେ ଟିପଣୀ କରିବା ମୋ ଉଦ୍ଦେଶ୍ୟ ନୁହେଁ । ଏହି ସ୍ମୃତିଗ୍ରନ୍ଥ ଠିକ୍ ବେଠିକ୍‌ର ସମୀକ୍ଷା ନୁହେଁ । କୋଣାର୍କ ମନ୍ଦିରର ଅବକ୍ଷୟିତ ଦୃଶ୍ୟକୁ ଦେଖିଲେ ମନରେ ଯେଭଳି ଭାବାନ୍ତର ଆସେ, ବେଳେବେଳେ ଯେଭଳି କବିତାର ପଙ୍‌କ୍ତିଟିଏ ଉତୁରି ପଡ଼େ, ସେଭଳି ଏ ସ୍ମୃତିଗ୍ରନ୍ଥଟି ଭାବନାର ଉଲ୍ଲାସରେ ଗୁନ୍ଥା ବକ୍ତବ୍ୟ ।

କଲେଜ ସଂପର୍କରେ ଯାହାସବୁ ଶୁଣିବାକୁ ମିଳୁଛି, ମନ କହୁନି ତାହା ମୋ ବେଳର ମହାବିଦ୍ୟାଳୟଟିଏ ବୋଲି । ମୁଁ ଗଢ଼ିଥିବା ଅନ୍ୟଏକ ଅନୁଷ୍ଠାନ ଯାହା ଏହି ଆତ୍ମଜୀବନୀକୁ ଅବଶ୍ୟ ପ୍ରଚୋଦିତ କରିଛି । ମୋ ବେଳର ଅଧିକାଂଶ ଛାତ୍ରଛାତ୍ରୀ, ଯେଉଁମାନେ ଆଜିର ସମାଜରେ ପ୍ରତିଷ୍ଠିତ ଶିଳ୍ପୀ, ସେମାନେ ଖଣ୍ଡଗିରି ଉଦୟଗିରି କଲେଜକୁ ସେମାନଙ୍କ ଆଲମା

Digitized by srujanika@gmail.com

ମେଟର୍ ବୋଲି ସ୍ୱୀକାର କରିବାକୁ ଆଗ୍ରହୀ ନୁହନ୍ତି । ସେମାନଙ୍କ ସ୍ମୃତିରେ କଳ୍ପନା ଛକର ନତୁବା ଟଙ୍କପାଣି ରୋଡ୍‌ର କଲେଜ ହିଁ ଆଜିଯାଏ ବସାବାନ୍ଧି ରହିଛି । ତାକୁ ହିଁ ସେମାନେ ଗଢ଼ିଥିଲେ ମୋ ସାଙ୍ଗରେ ମିଶି, ଅଧ୍ୟାପକମାନଙ୍କ ସଙ୍ଗେ କାନ୍ଧରେ କାନ୍ଧ ମିଳାଇ । ଏହି ଯାତ୍ରା କଳାର ଏକ ଦୀର୍ଘ ଯାତ୍ରା । ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫାରେ ଖୋଦିତ ଭାସ୍କର୍ଯ୍ୟର ଆଦିମ ଉତ୍ସ ପାଖକୁ ଫେରିଯାଇ ଉତ୍ତର-ଆଧୁନିକତାର ରୂପ, ରଙ୍ଗ ଓ ଗନ୍ଧକୁ ଖୋଜିବା ଓ ଘେନିବା ପାଇଁ ଯାତ୍ରା ।

କଲେଜ ପାଖରୁ ବିଦାୟ ନେଇ ହେବନି ବୋଲି ମୁଁ ତଥାକଥିତ ବିଦାୟ ନେଇନି ଯାହାକୁ ଆମେ ଫେଆର୍‌ୱେଲ୍ କହୁ। ମୁଁ କଲେଜରେ ଯୋଗ ଦେବାବେଳେ ମୋତେ ସ୍ୱାଗତ ଜଣାଇବା ପାଇଁ ମଧ୍ୟ କିଏ ନଥିଲେ । ଏବେ କିଏ ମୋତେ ବିଦାୟ ଦେବ ? କାହାଠାରୁ ମୁଁ ବିଦାୟ ନେବି ? ନିଜ ହାତଗଢ଼ା ଅନୁଷ୍ଠାନଠାରୁ ? ମୋ ପାଖରେ ଏହା ବିରାଟ ପ୍ରଶ୍ନବାଚୀ ହୋଇ ରହିଯାଇଛି । ଏହି କଲେଜ ଓଡ଼ିଶାର ସାଂପ୍ରତିକ କଳା ଆନ୍ଦୋଳନର ପ୍ରତୀକ, ଯିମିତି ଖଲ୍ଲିକୋଟ ଆଧୁନିକ କଳା ଉନ୍ମେଷର ସଙ୍କେତ । କଳାର ବହମାନ ଧାରା ଖଣ୍ଡଗିରି ଉଦୟଗିରି ପାହାଡ଼ ତଳର ଚଉହଦି ଡେଇଁ କାହିଁ କେଉଁଆଡ଼େ ଦେଶସାରା ବିଚ୍ଛୁରିତ ହେଇଗଲାଣି । ଦିଲ୍ଲୀ, ବମ୍ବେ, କଲିକତା, ବରୋଦା, ଚେନ୍ନାଇ ସବୁଠି ଯୁବ ଓଡ଼ିଆ ଶିଳ୍ପୀର ପଦଧ୍ୱନୀ ଶୁଣାଯାଉଛି । କଲେଜ ଏକ ପରିତ୍ୟକ୍ତ ଖୋଳପା ଭଳି ଉଦୟଗିରି ପାହାଡ଼ ତଳେ ଚାରି ଏକର ଜାଗା ମାଡ଼ିବସି ମଉନେଇ ଯାଇଛି । ମୋର ପୁରୁଣା ବନ୍ଧୁମାନେ ଗୋଟିଏ ବିନ୍ଦୁରେ ଠିଆ ହେଇ ଧାଇଁବାର ଉପକ୍ରମ କରୁଛନ୍ତି । ସେମାନେ ଦୌଡ଼ିବା ଅନ୍ୟମାନେ ଦେଖୁଛନ୍ତି କିନ୍ତୁ ବିନ୍ଦୁ ସ୍ଥିର । ସେହି ଏକାବିନ୍ଦୁ ଯାହାକୁ ପରିଧି ବାହାରେ ରହି ମୁଁ ମଧ୍ୟ ନିଘା କରିଛି । ମୁଁ ସେମାନଙ୍କ ସାଙ୍ଗରେ ଆଉ ଧାଇଁପାରୁନି । ସେମାନେ ସମସ୍ତେ ବିତ୍ତଶାଳୀ, ଐଶ୍ୱର୍ଯ୍ୟବାନ୍, କ୍ଷମତାସଂପନ୍ନ ପାରିବାର ମଣିଷ । କେବେ କେମିତି ଦେଖାହେଲେ ଔପଚାରିକତାରେ ଅଭାବ ନାହିଁ । ସେମାନେ ବି ସେହି ପୁରୁଣା କଥା ଦୋହରାଉଛନ୍ତି । ଅଧିକାଂଶ ସ୍ୱୀକାର କରୁଛନ୍ତି ସେ ସମୟ କଲେଜ ଗଢ଼ିବାର ଅମୃତ ବେଳା ଥିଲା, ସେ ବେଳା ଆଉ ଫେରିବାର ନୁହେଁ । ବଳଦେବ କହିବା ଶୁଣିଛି, ''ଏବେ ପାଠୀ ସାର୍ ପୁଣି ଅଧକ୍ଷ ହେଇ ଆସିଲେ ମଧ୍ୟ ସିଏ ଆଉ ସେଭଳି କଲେଜ ଚଳେଇ ପାରିବେ ନାହିଁ ।'' କଥାଟି ପ୍ରାୟ ସତ୍ୟ । ଶାନ୍ତିନିକେତନର ପ୍ରଫେସର୍ କେ.ଜି. ସୁବ୍ରମଣିୟନ୍ ବିଜୁ ବାବୁଙ୍କ ଦ୍ୱିତୀୟ ମୁଖ୍ୟମନ୍ତ୍ରିତ୍ୱର ସମୟକୁ ଲକ୍ଷ୍ୟ କରି ଥରେ ଖୁବ୍ ପ୍ରାସଙ୍ଗିକ କଥାଟିଏ କହିଥିଲେ, ''ବିଜୁବାବୁ ଦକ୍ଷ ପାଇଲଟ୍ ନିଶ୍ଚୟ କିନ୍ତୁ ତାଙ୍କର ଡାକୋଟା ବିମାନର ଇଞ୍ଜିନ୍‌ଟି କଳଙ୍କି ଧରିଗଲାଣି ।'' ଆମେ ପ୍ରଫେସର୍ କେ.ଜି.ଙ୍କୁ ମନିଦା' ବୋଲି ସ୍ନେହରେ କହୁ । ଏହି ଅଳ୍ପଦିନ ତଳେ ଅଧକ୍ଷ ଅଲେଖ ବାବୁ ତାଙ୍କୁ ଉଦୟଗିରି କଲେଜ ଦେଖାଇବା

Digitized by srujanika@gmail.com

ପାଇଁ ନେଇଥିଲେ । ସେ କଲେଜରେ ପହଞ୍ଚି ଯାହା ଦେଖିବା କଥା ଦେଖିଲେ, ତା'ର ପୁନରାବୃତ୍ତି ଏଠାରେ ଅନାବଶ୍ୟକ । କିନ୍ତୁ କହିଲେ ଏହା ପାଠୀର କଲେଜ ଭଳି ଲାଗୁନି । ଅଲେଖଙ୍କ ଅଫିସ୍ ରୁମ୍‌ରେ ଥିବା ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ଫଟୋଚିତ୍ର ଓ ପ୍ଲାଷ୍ଟିକ୍ ଫୁଲଦାନୀ ଓ ଫୁଲ ଦେଖି ପଚାରିଲେ, ''ପାଠୀ କ'ଣ ଏହି ଅଫିସରେ ବସୁଥିଲା ।''

ମନିଦା'ଙ୍କ କଥାର ଶ୍ଳେଷ ସେତେବେଳେ କିଏ ବୁଝିଲେକି ନାହିଁ, ମୁଁ କିନ୍ତୁ ଏବେ ବୁଝିପାରୁଛି । ମୁଁ ବି ବୁଝିପାରିଥିଲି ପ୍ରଫେସର୍ ଭବେଶ ସାନ୍ୟାଲ୍‌ଙ୍କ ପ୍ରଶ୍ନ, ''ପ୍ରଫେସର ପାଠୀ ! ଖଲ୍ଲିକୋଟ ଆର୍ଟ୍ କଲେଜ ସଂପର୍କରେ ମୁଁ ଓଡ଼ିଶା ସରକାରଙ୍କୁ ଲେଖିଥିବା ରିପୋର୍ଟ୍ ପଢ଼ି ମଧ୍ୟ ଦମ୍ଭର ସହିତ କହିପାରୁଛ, ତମେ ସେଠାକାର ଛାତ୍ର ବୋଲି ?'' ଅଧ୍ୟକ୍ଷ ଅଲେଖ ଚରଣ ସାହୁ ସତ୍ୟନିଷ୍ଠ ଓ ସାଦାସିଧା ଲୋକ । ତା' ନହେଇଥିଲେ ରଜତ ଜୟନ୍ତୀ ଉପଲକ୍ଷେ ପ୍ରକାଶିତ ସ୍ମରଣିକା - 'ଚିତ୍ର'ର ସଂପାଦକୀୟରେ ସେ ସ୍ୱୀକାର କରିନଥାନ୍ତେ ଯେ ଡକ୍ଟର ପାଠୀ କଲେଜରେ ଯେଉଁ ସବୁ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ତାକୁ ବଜାୟ ରଖିବା ପ୍ରାୟତଃ ଅସମ୍ଭବ । ଏହି ସ୍ୱୀକାରୋକ୍ତି ଉଦାରତାର ଉଦାହରଣ । ଆଉ ଜଣେ ଅଧ୍ୟକ୍ଷ ତ ସବୁଗୁଡ଼ିକ କାର୍ଯ୍ୟକ୍ରମର ଅସାରତା ସଂପର୍କରେ ଯେ କେବଳ ପ୍ରଶ୍ନ କରି ନଥିଲେ ନ୍ୟାୟାଳୟର ଦ୍ୱାରସ୍ଥ ହେଇଥିଲେ । ଉଦୟଗିରି ରାଣୀଗୁମ୍ଫାର ଅଦୂରରେ ହାତୀଗୁମ୍ଫାରେ ଉତ୍‌କୀର୍ଣ୍ଣ ଐର ଖାରବେଳଙ୍କ ଶିଳାଲେଖରେ ସମ୍ରାଟଙ୍କ ତେରୋଟି ବର୍ଷ ରାଜୁତିର ପ୍ରଶସ୍ତି ଆମ ଭଳି ଶିକ୍ଷାର୍ଥୀଙ୍କୁ ଅଗୋଚର । କିନ୍ତୁ ଏହି ଶିଳାଲେଖର ମଧ୍ୟବର୍ତ୍ତୀ ଖୁବ୍ ଅସ୍ପଷ୍ଟ ଧାଡ଼ି ଗୁଡ଼ିକ ହେଲା ଆମ କଲେଜର ଏଗାର ବର୍ଷର ଗୌରବାବହ କାହାଣୀ । ମୁଁ ଇତିହାସର ଛାତ୍ର ବୋଲି ସେହି ଅଲିଖିତ ବା ଅତ୍ୟନ୍ତ ଅସ୍ପଷ୍ଟ ଧାଡ଼ିଗୁଡ଼ିକର ବିଶ୍ଳେଷଣ କରି ଏହି ଗ୍ରନ୍ଥଟି ଲେଖିଛି ।

୧୯୯୫ ମଧ୍ୟଭାଗରେ କଲେଜ ଛାଡ଼ିଲା ପରେ କଲେଜକୁ ଭଲରେ ବା ମନ୍ଦରେ ଆସିବାର ସୁଯୋଗ ପାଇନି । ଅଶରୀରୀ ପ୍ରେତ ଭଳି ମୋ ବଂଧୁ ଓ ସହକର୍ମୀଙ୍କ ଅଜଣାରେ ଥରେ ଦି'ଥର କଲେଜ ଚାରିପଟେ ଘୂରି ଫେରିଯାଇଛି । ଥରେ ମୋ ବନ୍ଧୁ ଏବର୍‌ହାର୍ଡ଼୍ ଫିସର୍‌ଙ୍କୁ ଏହି କଲେଜ ଦେଖେଇବାକୁ ନେଇଥିଲି । କଲେଜର ରଜତ ଜୟନ୍ତୀ ଉତ୍ସବ ପାଳନ ହେବାର ସ୍ଥିର ହେଲା । ପୁରାତନ ଛାତ୍ରଛାତ୍ରୀମାନେ ସଂଘ ଗଢ଼ିଲେ । ରାମହରି ଜେନାଙ୍କ ସରକାରୀ ଗ୍ରାଫିକ୍ ଷ୍ଟୁଡ଼ିଓରେ ଚର୍ଚ୍ଚା ଚାଲୁଥାଏ । ମୁଁ ମଧ୍ୟ ଏହି ଚର୍ଚ୍ଚାରେ ଭାଗନେଇ ମୋର ବକ୍ତବ୍ୟ ରଖିଛି । ତାହା ମୋ ପୁରାତନ ବନ୍ଧୁମାନଙ୍କୁ ବୋଧହୁଏ ରୋଚକ ହେଇନି । ମୋଠାରୁ ସେମାନେ ଦୂରେଇ ଯାଇଛନ୍ତି । ପରିକଳ୍ପନା ସବୁ ନଭଶ୍ଚୁମ୍ବୀ, ଅଧିକାଂଶ ସ୍ୱପ୍ନଭୁକ୍, ଅର୍ଥ ବ୍ୟୟ କରିବା ପାଇଁ ଛାତ୍ରବନ୍ଧୁମାନେ ଅନିଚ୍ଛୁକ । ଛବି ଲକ୍ଷ ଲକ୍ଷ ଟଙ୍କାରେ ବିକ୍ରୀ ହେଲେ ସେହି ଅର୍ଥରେ ସଂଘ ଚାଲିବ । ଦିଲ୍ଲୀ ରବୀନ୍ଦ୍ର ଭବନ ଲନ୍, ଭୁବନେଶ୍ୱରରେ ଲଳିତ

Digitized by srujanika@gmail.com

କଳା କେନ୍ଦ୍ର, ତାରାକାନ୍ତ ପରିଡ଼ାଙ୍କ ମଡ଼ର୍ଣ୍ଣ ଆର୍ଟ୍ ଗ୍ୟାଲେରୀରେ ଘନଘନ ସଭା, ବିଚାର, ବିମର୍ଶ ଆମ କଲେଜର ରଜତ ଜୟନ୍ତୀ ପାଳିତ ହେବ । କୌଣସି କାର୍ଯ୍ୟକ୍ରମ ସ୍ଥିର ହୋଇପାରୁନି । କଥା କଟାକଟି, ମତ ପାର୍ଥକ୍ୟ, ମତ ପାର୍ଥକ୍ୟରୁ ମନାନ୍ତର, ଗୋଟିଏ ଦଳରୁ ଦୁଇ ଦଳ । କିଏ କହିଲା ତାଙ୍କର ପୁରୁଣା ପ୍ରିନ୍‌ସିପାଲ୍‌ଙ୍କୁ ବଢ଼ିଆ ପାଟଟେ ଉପହାର ଦେବ, ଆଉ କିଏ କହିଲା ରୂପାର ଲେଖନୀଟିଏ ଦେବ । ସେ ଦୁହିଙ୍କ ଭିତରେ ପୁଣି କନ୍ଦଳ - ତୁ ରୂପାର ଲେଖନୀ ଆମର ଅନୁମତି ନ ନେଇ ଦେଲୁ, ବୁଢ଼ା ତାକୁ ଗ୍ରହଣ କଲା, ସିଏ ଆଉ ଆମ ପାଟଟି ପାଇବନି । ହଇରେ ଅବିବେକୀ ପିଲାଏ, ପାଟ ସାଙ୍ଗରେ ସୁନାର କୁଣ୍ଡଳ, କଙ୍କଣ ରଖିଥିଲ ନା ଖାଲି ପାଟ ? ଗଂଜାମ ଆଡ଼େ ମାଷ୍ଟ୍ରେଙ୍କୁ ପାଟ ଜଥା ଓ ସୁନା କୁଣ୍ଡଳ ସିଲ ହେବାର ବିଧି ଅଛି । ଗୋଟିଏ କାମ କର, ପାଟକୁ ଯତ୍ନ ସହକାରେ ରଖିଥ, ମାଷ୍ଟ୍ରେଙ୍କ ଶବାଧାର ଉପରେ ଘୋଡ଼େଇ ଦେବ, ଚମତ୍କାର କଥା । ଅବଶ୍ୟ ମୁଁ ଯାହା ଶୁଣିଛି ସବୁ ଉଡ଼ା ଖବର । ମୁଁ ଏସବୁ କଥାରେ ପରତ ଯିବା ପାଇଁ ପ୍ରସ୍ତୁତ ନୁହେଁ । ମୋ ଛାତ୍ରଛାତ୍ରୀମାନେ ମୋ ପ୍ରତି ଏଭଳି ଅବହେଳା କରିବେ ନାହିଁ ।

କ'ଣ ବିଗିଡ଼ିଗଲା କେଜାଣି ମୁଁ ମୋ ଘର ଛାତ ଉପରେ ଖରାକୁ ପିଠିକରି ବସିଛି, ଜଣ ଜଣ କରି ପୁରୁଣା ବନ୍ଧୁମାନେ ଉଭା ହେଲେ, ଯିମିତି ଜଣେ ଆଉ ଜଣକର ଖବର ରଖିନି, କିନ୍ତୁ ସମସ୍ତେ ଭୀମଟାଙ୍ଗିରେ ପହଞ୍ଚୁଛନ୍ତି । ପ୍ରଥମେ ଅଧ୍ୟାପକ ଜୟନ୍ତ ଦାସ, ତାର ଦଶ ମିନିଟ୍ ପରେ ଅଧ୍ୟାପକ ସୁବ୍ରତ ମଲ୍ଲିକ, ତାର ପନ୍ଦର ମିନିଟ୍ ପରେ ସଂଗ୍ରାମ ମହାରଣା । ସମସ୍ତେ ଜଣକ ପରେ ଜଣେ ମତେ ଘେରିଯାଇ ରଜତ ଜୟନ୍ତୀ ଉତ୍ସବରେ ମୋର କର୍ତ୍ତବ୍ୟ ସଂପର୍କରେ ସଚେତନ କରାଇବାରେ ଲାଗିଲେ । ମନେହେଲା ମୁଁ ଯେଭଳି ଅଭିମାନ କରି ବସିଛି ଆଉ ସେମାନେ ମୋର ମାନଭଞ୍ଜନ କରୁଛନ୍ତି । ସବୁବେଳେ ମନେରଖିଲା ଭଳି ବାକ୍ୟଟିଏ ଜୟନ୍ତ କହିଲେ । ମୁଁ କୁଆଡ଼େ ପିତାମହ ଭୀଷ୍ମ । ଏଣୁ ମହାଭାରତରେ ମୋର ଯୋଗଦାନ ଅବଶ୍ୟାମ୍ଭବୀ । ସେମାନେ କୌରବ ପକ୍ଷର ନା ପାଣ୍ଡବ ପକ୍ଷର ତାହା ମୁଁ ସ୍ଥିର କରିପାରୁ ନଥିଲି । ଜୟନ୍ତ ସାହିତ୍ୟିକ ତ ନୁହନ୍ତି ପ୍ରସଙ୍ଗଟିକୁ ଠିକ୍ ଭାବରେ ଉପସ୍ଥାପନ କରିପାରୁ ନଥିଲେ । ସେମାନେ ସମସ୍ତେ ପାଣ୍ଡବପକ୍ଷର ଲୋକ, କୃଷ୍ଣଟିଏର ସନ୍ଧାନରେ ଥିଲେ । ସେମାନଙ୍କ ମନୋଭବ ବିଡ଼ିବା ପାଇଁ ମୋତେ ଅଡୁଆ ହେଲାନି । ମୁଁ ବିଚାରିଲି ରଥ ବାହିବି ଅଥଚ ମୋର ବାହ୍ୟ ସଂପୃକ୍ତି ରହିବ ନାହିଁ । ସୁଦାମା ଡି.ଏନ୍.ରାଓଙ୍କୁ ରଜତ ଜୟନ୍ତୀରେ ସଂପୃକ୍ତ କରିବା ପାଇଁ କହିଲି । ଡି.ଏନ୍.ରାଓଙ୍କ ବିଚାରରେ ମୁଁ କୃଷ୍ଣ ହେଲେ ସିଏ ସୁଦାମା । ସୁଦାମା ସେତେବେଳକୁ ଖଲ୍ଲିକୋଟ କଳା ମହାବିଦ୍ୟାଳୟର ଅଧକ୍ଷ ପଦରୁ ଅବସର ନେଇ ବଡଗଡରେ ବିଳାସମୟ ଜୀବନ ଯାପନ କରୁଥିଲେ । ବି.କେ ମହାବିଦ୍ୟାଳୟର ପୁରାତନ ଅଧ୍ୟାପକ । ନଗଦ ଗୋଟିଏ ଜୟନ୍ତୀ ଉତ୍ସବ ଆୟୋଜନର

Digitized by srujanika@gmail.com

ଅନୁଭୂତି ଅଛି । ଏବେ ବି.କେ.ର ଆମର ପୁରୁଣା ଦଳ ରଜତ ଜୟନ୍ତୀ ଉତ୍ସବ ସହିତ ସଂପୃକ୍ତ ହୋଇଗଲେ । ସ୍ମୃତି ପ୍ରଖର ହେଲେ ତାହା ବାସ୍ତବତାକୁ ଉଜ୍ଜୀବିତ କରି କ୍ରିୟାଶୀଳ କରିଦିଏ ।

ରଜତ ଜୟନ୍ତୀ ଉତ୍ସବରେ ସଂପୃକ୍ତ ଖୋଳପାର ଆସ୍ତରଣ ଭିତରେ କ'ଣ ସବୁ ଘଟୁଛି, ତାର ଗୋଟିଏ ସତ୍ୟନିଷ୍ଠ ଛବି ମୋ ଆଖିଆଗରେ ଆଙ୍କିଦେଇଗଲା। ମୋ ବେଳର ଅନ୍ୟ ଯୋଦ୍ଧାମାନଙ୍କୁ ମୁଁ ଭେଟିପାରିଲିନି । ମନେହେଉଥିଲା ଏ ଭିତରେ ସେମାନେ ପାଣ୍ଡବ ଶିବିରରୁ ଖସିଯାଇ ଦୁର୍ଯ୍ୟୋଧନ ସହିତ ସାଙ୍ଗ ହେଇଯାଇଛନ୍ତି । ବିଚରା ଅଧ୍ୟକ୍ଷ ଅସହାୟ । ସୁଦାମା, ସୁବ୍ରତ ମଲ୍ଲିକ, ଜୟନ୍ତ ଦାସ ଓ ମୁଁ ଆମର ଯାତ୍ରା ଆରମ୍ଭ କରିଦେଲୁ । ଭରସା ଦେବା ପାଇଁ ଆମ ପଛରେ ରହିଲା କଲେଜ ପ୍ରଶାସନ ଓ ଅଧ୍ୟକ୍ଷ ।

ଏଠାରେ ପ୍ରସ୍ତୁତି ବେଳର ଟିକିନିଖି କଥା ବଖାଣିବାର ଅବକାଶ ନାହିଁ । ଉତ୍ସବରେ ସାକ୍ଷୀ ଭଳି ଜଣେ ବା ଦି'ଜଣ କଳା ମହାବିଦ୍ୟାଳୟରର ଅଧ୍ୟକ୍ଷଙ୍କ ସଂପୃକ୍ତି କଳାଶିକ୍ଷା ପରମ୍ପରାକୁ ଋଦ୍ଧିମନ୍ତ କରିବ ଭାବି ଉତ୍ସବକୁ ଅତିଥିଭାବେ ଶାନ୍ତିନିକେତନର ପ୍ରାକ୍ତନ ପ୍ରଫେସର୍ କାଞ୍ଚନ ଚକ୍ରବର୍ତ୍ତୀ ଏବଂ ଖଲ୍ଲିକୋଟ କଳା ବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟକ୍ଷ ଅଜିତ କେଶରୀ ରାୟଙ୍କୁ ନିମନ୍ତ୍ରଣ କରି ସେମାନଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ସ୍ଥିର ହେଲା । ଫୁଲ ଲାଗି ପଟ ନିସ୍ତରିଲା ଭଳି ଏ କଲେଜରର ପ୍ରଥମ ଅଧ୍ୟକ୍ଷ ଭାବେ ମୋ ନାଁ ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ ହେଲା । ମୁଁ ଯଦି ସେ ଦୁଇଜଣଙ୍କ ନାଁ ପ୍ରସ୍ତାବ କରିନ ଥାନ୍ତି ହୁଏତ ମୋର ମଧ୍ୟ ସ୍ଥିତି ନଥାନ୍ତା । ପୁରାତନ ଛାତ୍ର ସଂଘ ପକ୍ଷରୁ ସଭାପତି ଅଦ୍ୱୈତ ପ୍ରସାଦ ଗଡ଼ନାୟକଙ୍କୁ ସମ୍ବର୍ଦ୍ଧନା ପରିସରଭୁକ୍ତ କରିବା ପାଇଁ ପ୍ରସ୍ତାବ ଆସିଲା । ସମଗ୍ର ଛାତ୍ର ସମାଜର ପ୍ରତିନିଧି ଭାବେ ଆମେ ଅଦ୍ୱୈତଙ୍କୁ ଆଦର ସହିତ ଗ୍ରହଣ କରିନେଲୁ । ଜୟନ୍ତ ଆମ ଲେଖା ଓ ଡିଜାଇନ୍ କରା ମାନପତ୍ରକୁ ବ୍ରୋଞ୍ଜ୍‌ରେ ଗଢ଼େଇ ଆଣିଲେ । ଉତ୍ସବର ମୁଖ୍ୟଅତିଥି ମୁଖ୍ୟମନ୍ତ୍ରୀ ମଞ୍ଚରେ ବସିବା ପାଇଁ ଅସ୍ୱୀକାର କରିଦେଇଥିଲେ । ଏଣୁ କଲେଜ କୋଠା ଆଗରେ ଏ ସମସ୍ତ ବିଶିଷ୍ଟ ଶିଳ୍ପୀମାନେ ସମ୍ବର୍ଦ୍ଧିତ ହେଲେ । ଧରିଆଣି, ବାନ୍ଧିଆଣି ମୋତେ ସମ୍ବର୍ଦ୍ଧିତ କରାହେଉଥିଲେ ମଧ୍ୟ କଲେଜ ସହିତ ପୁନଃସଂପୃକ୍ତି ମୋତେ ଆତ୍ମସନ୍ତୋଷ ଆଣିଦେଲା ।

ଉତ୍ସବରେ ଯୋଗ ଦେଇଥିବା ଅନେକ ଛାତ୍ରଛାତ୍ରୀଙ୍କ ସହିତ ଦେଖାହେଲା । ସେମାନଙ୍କ ଦଳରେ ମୋ ବେଳର ଅଧିକାଂଶ ପିଲା ଥିଲେ । ସମସ୍ତଙ୍କ ମନରେ ଓ ପ୍ରାଣରେ ନବ ଉତ୍ସାହ କିନ୍ତୁ ମନର କେଉଁ ଏକ କୋଣରେ ବିଷାଦର କାଳିମା । କଲେଜ ଏବଂ ପୁରାତନ ଛାତ୍ର ସଂଘ ସେମାନଙ୍କ ପୁରାତନ ବନ୍ଧୁମାନଙ୍କୁ କଲେଜକୁ ନିମନ୍ତ୍ରଣ କରିବାକୁ ଭୁଲି ଯାଇଥିଲେ । ସଂଘ ବସ୍ତୁତଃ କିଛି ମୁଷ୍ଟିମେୟ ଛାତ୍ରଙ୍କ ଅକତିଆରରେ ପରିଚାଳିତ ହେଉଥିଲା । ଅଧ୍ୟାପକ ସୁବ୍ରତଙ୍କ ଦ୍ୱୈତ ଭୂମିକା ତାଙ୍କୁ ଅସହାୟ କରି

Digitized by srujanika@gmail.com

ଦେଇଥିଲା । ସେ ସଂଘର ସଂପାଦକ ଓ କଲେଜର ଅଧ୍ୟାପକ ଦାୟିତ୍ୱରେ ରହି ନିଜର ସଠିକ କର୍ତ୍ତବ୍ୟ ସ୍ଥିର କରିପାରୁ ନଥିଲେ । କଲେଜର ସବୁ ଛାତ୍ରଛାତ୍ରୀଙ୍କୁ ଏକଜୁଟ କରି ଗୋଟିଏ ମିଳିତ ପ୍ରଦର୍ଶନୀ ଆୟୋଜନ କରିବାରେ ସଂଘ ଅସମର୍ଥ ହେଲା । ଯେନତେନ ପ୍ରକାରେଣ ଗୋଟିଏ ଚିତ୍ର ପ୍ରଦର୍ଶନୀ 'ଅନ୍‌ସ୍ପୋକେନ୍ ଟ୍ରୁଥ୍'' (ଅକୁହା ସତ୍ୟ) କଲେଜରେ ରାଜ୍ୟପାଳ ଉଦ୍‌ଘାଟନ କଲେ ଓ ସାନ୍ଧ୍ୟ ସଭାରେ କଲେଜର ସମସ୍ତ କର୍ମଚାରୀଙ୍କୁ ସମ୍ବର୍ଦ୍ଧିତ କଲେ । ମୁଁ ସେହି ସଭାରେ ସଭାପତିତ୍ୱ କରୁଥିଲି । ଅଧ୍ୟକ୍ଷ ଅଲେଖ ଚରଣ, ଅଧ୍ୟାପକ ଜୟନ୍ତ ଦାସ ଏବଂ ଛାତ୍ରସଂଘର ସଭାପତି ଅଦ୍ୱୈତ ପ୍ରସାଦ ଗଡ଼ନାୟକ ମଞ୍ଚ ଉପରେ ଉପସ୍ଥିତ ଥିଲେ । ଛାତ୍ରଛାତ୍ରୀମାନେ କହିବା ଶୁଣାଯାଉଥିଲା ''ଆମ ବେଳର ଭାତ ଡାଲ୍‌ମା ଖଟା କାହିଁ । ଏତେବଡ଼ ଉତ୍ସବ ହେଲା ଏକାସାଙ୍ଗରେ ଶିକ୍ଷକ ଛାତ୍ର ଛାତ୍ରୀ ପତ୍ର ପକେଇପାରିଲେନି । ଆମବେଳର ଉଦ୍ଦୀପନା, ପ୍ରାଣପ୍ରାଚୁର୍ଯ୍ୟ ଏବଂ ଆତ୍ମୀୟତା ଏତେଶୀଘ୍ର କୁଆଡ଼େ ହଜିଗଲା ?''

ସଂଘର ଉପସଭାପତି ଜଗନ୍ନାଥ ପଣ୍ଡା ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରରେ ଗୋଟିଏ ଇନ୍‌ଷ୍ଟଲେସନ୍ ଓ ପରଫର୍‌ମେନ୍ସ ଆର୍ଟ୍‌ର ପ୍ରଦର୍ଶନୀ 'ରିନିଉଡ୍ ଇନ୍‌ଟେନ୍‌ସିଟି' କରାଇଲେ । ଏହି ପ୍ରଦର୍ଶନୀରେ ପ୍ରାୟ ଯାହା ସବୁ ପ୍ରଦର୍ଶିତ ହେଲା ମୁଁ କେନ୍ଦ୍ର ଲଳିତ କଳା ଏକାଡେମୀରେ ସଚିବ ଥିବାବେଳେ ବୁଦ୍ଧ ଜୟନ୍ତୀ ପାର୍କରେ ସେସବୁ ଘଟିଥିଲା । ତା'ର ପୁନରାବୃତ୍ତି ଏଠି ସବୁ ହେଲା ଅଥଚ ସୌଜନ୍ୟ ଦୃଷ୍ଟିରୁ ସେକଥା କେଉଁଠାରେ ଉଲ୍ଲେଖ ବି ନଥିଲା । ସୁଦର୍ଶନ ବିଶ୍ୱାଳ ଦେହରେ ନେଳି ରଙ୍ଗ ବୋଳି ହୋଇ ଭୁବନେଶ୍ୱର ରାଜରାସ୍ତାରେ ରିକ୍ସା ଚଳେଇବା ଏହି ପ୍ରଦର୍ଶନୀର ଚମକ୍‌ପ୍ରଦ ଅଂଶ ଥିଲା । ମନେହେଉଥିଲା କିଛି ଛାତ୍ର ନିଜର ପ୍ରୌଢ଼ି ଦେଖେଇବା ପାଇଁ 'ରିନିଉଡ୍ ଇନ୍‌ଟେନ୍‌ସିଟି' ପ୍ରଦର୍ଶନୀର ଆୟୋଜନ କଲେ ସିନା, ରଜତ ଜୟନ୍ତୀ ଅବସରରେ ନା 'ମହାବିଦ୍ୟାଳୟ କଳାଭ୍ୟାସ' ନା ପୁରୁଣା ସ୍ମୃତି 'ରିନିଉ' ହେଇପାରିଲା । ମୁଁ, ପ୍ରଦୋଷ ମିଶ୍ର ଏବଂ ଆଉ କେତେଜଣ ମିଶି ମହାବିଦ୍ୟାଳୟରେ ପ୍ରଫେସର୍ ଗଣେଶ୍ୱର ମିଶ୍ର, କବି ସୌରୀନ୍ଦ୍ର ବାରିକ ଓ କାଞ୍ଚନ ଚକ୍ରବର୍ତ୍ତୀଙ୍କ ଉପସ୍ଥିତିରେ ଝାଡୁଧରି କଲେଜର କ୍ଲାସ୍‌ରୁମ୍ ଝାଡ଼ିଲୁ । ଅବଶ୍ୟ ଏହି କର୍ମରେ ମୋ ବେଳର ପୁରୁଣା ସ୍ମୃତିଟିଏ ଉଙ୍କି ମାରିଲା । ଏତେସବୁ ଅସହଯୋଗ ଓ ଅବ୍ୟବସ୍ଥା ମଧ୍ୟରେ ଉତ୍ସବ ସାଙ୍ଗହେଲା । ଜୟନ୍ତ, ଡି.ଏନ୍. ଓ ମୁଁ ଆମର ପୁରୁଣା ପ୍ରେସ୍ 'ଭୋଳାନାଥ' କୁ ଦଶ ପନ୍ଦରଦିନ ଦଉଡ଼ ଧାପଡ଼ କରି ସ୍ମରଣିକାଟିଏ ଛାପିଲୁ । ସ୍ମରଣିକାକୁ 'ଚିତ୍ର' ନାଁରେ ନାମିତ କଲୁ । କଲେଜରେ କୁଆଡ଼େ ତିରିଶି ପଞ୍ଚତିରିଶ କମ୍ପ୍ୟୁଟର ଥିଲା ଅଥଚ ଆମକୁ ସବୁକଥା ପାଇଁ ଭୋଳାନାଥ ପ୍ରେସ୍ ଉପରେ ହିଁ ନିର୍ଭର କରିବାକୁ ହେଲା । ଯାହାହେଉ ଉତ୍ସବ ପଞ୍ଜୀକୃତ ହେଇ ସ୍ମରଣିକା ପୃଷ୍ଠାରେ ରହିଗଲା । ମୁଁ ପୁଣିଥରେ ପୁରୁଣା

Digitized by srujanika@gmail.com

କଲେଜର ପୁରୁଣା ସ୍ମୃତିକୁ ଘଷିମାଜି ଯଥାସମ୍ଭବ ଚିକ୍କଣ କରିବାରେ ଛୋଟ ସୁଯୋଗଟିଏ ପାଇଲି । ମନେହେଲା ସଂପର୍କଟିଏ ଏତେଶୀଘ୍ର ତୁଟିବାର ନୁହେଁ । ସଂଘର କିଛି କର୍ମକର୍ତ୍ତାଙ୍କ କାର୍ଯ୍ୟକଳାପ ଲାଗିଲା ସଂପୂର୍ଣ୍ଣ ପାଗଳାମୀ । ମୁଖ୍ୟମନ୍ତ୍ରୀ ଆସିଲେ ଗଲେ । କୌଣସି ପ୍ରତିଶ୍ରୁତି ନାହିଁ, କଲେଜ ପାଇଁ ସ୍ୱତନ୍ତ୍ର ଅନୁଦାନ ନାହିଁ । ମୁଖ୍ୟମନ୍ତ୍ରୀ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାଳୟକୁ ଦୁଇକୋଟି ଟଙ୍କାର ଅନୁଦାନ ଦେଇଥିଲେ । ଆମ ବି.କେ. କଲେଜବେଳକୁ ସବୁକଥା ଶବ୍ଦରେ ସମାହିତ ହେଇଗଲା । ଆଧୁନିକ କଳାର ସଂଗ୍ରହାଳୟଟିଏ ରଜତଜୟନ୍ତୀର ସ୍ମୃତି ବହନ କରି ପ୍ରତିଷ୍ଠିତ ହୋଇପାରିଥିଲେ ଛାତ୍ରଛାତ୍ରୀ ତଥା ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କର ବଛାବଛା କଳାକୃତିଗୁଡ଼ିକ ଏଠାରେ ପରବର୍ତ୍ତୀ ପିଢ଼ି ପାଇଁ ସଂଗୃହୀତ ହୋଇ ରହିପାରିଥାନ୍ତି । ଖଲ୍ଲିକୋଟ କଳା ମହାବିଦ୍ୟାଳୟ ଟଙ୍କା ପାଇ ମଧ୍ୟ କିଛି କରିପାରିଲେ ନାହିଁ । ଆପେ ଆପେ ଅବଲୀଳାକ୍ରମେ ହାତରେ ପଡ଼ିଥିବା ସୁଯୋଗଟିଏ ଆମର ହାତଛଡ଼ା ହୋଇଗଲା । ଆପଦ ବିପଦ କାଳରେ ବୃଦ୍ଧଙ୍କ ବଚନ ଗ୍ରହଣୀୟ ବୋଲି ନୀତିଶାସ୍ତ୍ର ଉଲ୍ଲେଖ କରିଥିଲେ ମଧ୍ୟ ଏ ଟୋକା ଦଳକ ଧନ ସଂପତ୍ତିର ପ୍ରାବଲ୍ୟରେ ମଦମତ୍ତ ହୋଇ ବୃଦ୍ଧଙ୍କ ବଚନ ଅସ୍ୱୀକାର କଲେ । କଲେଜର ସ୍ୱର୍ଣ୍ଣଜୟନ୍ତୀ ଉତ୍ସବବେଳକୁ ଆଜିର ଟୋକାଦଳକ ଷାଠିଏ ସତୁରି ବର୍ଷର ବୃଦ୍ଧ ହେଇଯାଇଥିବେ । ହୁଏତ ଏବର ଚିନ୍ତା ବିଭ୍ରାଟ ସେତେବେଳକୁ ନଥିବ । ଚିନ୍ତା ଓ କାର୍ଯ୍ୟରେ ସମନ୍ୱୟ ଆସିଯାଇଥିବ । ବିଚାର ଶାଣିତ ହେଇସାରିଥିବ । ସେତେବେଳେ 'ରିନିଉଡ୍ ଇନ୍‌ଟେନ୍‌ସିଟି' ଆୟୋଜିତ ହେଲେ କଲେଜର ମୁଖ ପୁଣି ଉଜ୍ଜ୍ୱଳ ହୋଇପାରିବ ।

ମୁଁ ତ ଅଶରୀରୀ ହେଇସାରିଥିବି । ହୁଏତ ଦିନେ କଲେଜ ଆଡ଼େ ବୁଲି ଯାଉଯାଉ କଲେଜକୁ ଚିହ୍ନିବାରେ ଅସୁବିଧା ହେବ । କଲେଜ ସାରା ଇନ୍‌ଷ୍ଟଲେସନ୍ ଭର୍ତ୍ତି ହେଇଯାଇଥିବ । କଲେଜ ଆଗରେ ଶୀତ ତାପ ନିୟନ୍ତ୍ରିତ ଗାଡ଼ିର ସଂଖ୍ୟା ଆହୁରି ବଢ଼ିଯାଇଥିବ । କିଏ ଜଣେ ମୋ ବେଳର ଲୋକଟିଏ ମୋତେ ଚିହ୍ନି ପକାଇ ପଚାରିବ, ''ସାର୍ ! ଆପଣ ଅସମୟରେ କୁଆଡ଼େ, କ'ଣ ଖୋଜୁଛନ୍ତି ?'' ମୁଁ କହିବି, ''ମୋ କଲେଜକୁ ।'' ମୁଁ ସନ୍ଦିଗ୍ଧ ମନରେ ପଚାରିବି, ''ତମେ କିଏ, ଏତେ ଦାଢ଼ି ଲମ୍ୱେଇଛ, ଲାଗୁଛ ତ ଦୋଦୋ ଚିହ୍ନାଭଳି ।'' ଶ୍ମଶ୍ରୁଯୁକ୍ତ ଯୁବକଟି ଏଥର ଖୁବ୍ ଆତ୍ମ ପ୍ରତ୍ୟୟର ସହିତ କହିବ, ''ମୁଁ ପରା ଆପଣଙ୍କ ପରମ ଶିଷ୍ୟ, ଯାହା ପାଖରେ ଆପଣଙ୍କ ଲିଖିତ କଳାଶାସ୍ତ୍ର ସମ୍ୱଳିତ ତାଳପତ୍ର ପୋଥି ଜମା ରଖି ଆପଣ ତୀର୍ଥାଟନରେ ବାହାରି ଯାଇଥିଲେ । ଯାହାସବୁ ଦେଖୁଛନ୍ତି ଏମାନେ ମୋ ପୁତ୍ର କନ୍ୟା, ପୌତ୍ର ପ୍ରପୌତ୍ର । ମୁଁ ତ ସରକାରୀ କର୍ମଚାରୀ, ସରକାରୀ ଟେଣ୍ଡର୍ ଧରିପାରେନି । ଏମାନେ ସେ ସବୁ ଜଂଜାଳ ମୁଣ୍ଡେଇ ଥାନ୍ତି । ଏ ସମସ୍ତେ ଆପଣ ଆଶ୍ରମରେ ରଖି ଯାଇଥିବା ତାଳପତ୍ର ପୋଥିରୁ ଉଦ୍ଭୂତ (ସବ୍ କୌପୁନୀକା

Digitized by srujanika@gmail.com

ଓ୍ୱାନ୍ତେ) । ବିଶ୍ୱାସ କରନ୍ତୁ ଏ ଆଶ୍ରମ ଆପଣଙ୍କର, ଥରେ ପାଦ ଦିଅନ୍ତୁ, ଆସନ୍ତୁ ଏ ଆଶ୍ରମରେ ଆପଣଙ୍କ ପରିଚର୍ଯ୍ୟା କରି ନିଜକୁ ଧନ୍ୟ ମନେକରିବି ।''

ମୁଁ କିଛିସମୟ ଗମ୍ଭୀର ହେଇ ନୀରବେଇ ଯିବି । ତା'ପରେ ମୋ ଅଲକ୍ଷରେ ମୋ ମୁହଁରୁ ବାକ୍ୟଟିଏ ସ୍ଫୁରଣ ହୋଇଯିବ ।'' ''ନାଇଁ ତମର ସ୍ନେହଶ୍ରଦ୍ଧା ପାଇଁ ଧନ୍ୟବାଦ ।'' ମନେପଡ଼ିଯିବ କଲେଜ ଗଢ଼ିବାବେଳର ଅନେକ ସ୍ମୃତି - ଅଲିଭା ସ୍ମୃତି । ମୁଁ ଆଉକିଛି କହିବା ପାଇଁ ଉପକ୍ରମ କରି କହିପାରିବି ନାହିଁ । କଣ୍ଠ ବାଷ୍ପରୁଦ୍ଧ ହୋଇଯିବ, ମୋ ସମୟ ସରି ସରି ଆସୁଥିବ, ମୁଁ କହିବି, ''ବାବା, ବେଶ୍ ହେଇଗଲା, ମୁଁ ଫେରିଯାଉଛି । ଦୀର୍ଘଜୀବୀ ହୁଅ, କଲେଜ ଦୀର୍ଘଜୀବୀ ହେଉ ।''

Digitized by srujanika@gmail.com






ବିଭୂତି କାନୁନ୍‌ଗୋ ଚିତ୍ରକଳା ମହାବିଦ୍ୟାଳୟର ଉଦ୍‌ଘାଟନ ଏବଂ ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ ଗୋଟିଏ ମଞ୍ଚରୁ । ମଞ୍ଚରେ କେନ୍ଦ୍ର ଲଳିତକଳା ଏକାଡେମୀର ଅଧ୍ୟକ୍ଷ କେ.କେ. ହେବର୍, ଚିତ୍ରଶିଳ୍ପୀ ଅସିତ୍ ମୁଖାର୍ଜୀ, ସଂସ୍କୃତିସଚିବ ଅଓଧ ନାରାୟଣ ତିୱାରୀ, ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ସଂସ୍କୃତିମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ ଓ ସଂସ୍କୃତି ନିର୍ଦ୍ଦେଶକ ସୁବାସ ପାଣି ।

ଉଦୟଗିରି ପାଦଦେଶରେ ମୋ ସ୍ୱପ୍ନର କଲେଜ- ରେଖାଙ୍କନ ବଳଦେବ ମହାରଥୀ ।

Digitized by srujanika@gmail.com






ଜାନକୀ ବଲ୍ଲଭ ପଟ୍ଟନାୟକ ଜଗନ୍ନାଥଙ୍କ ଆଖି ଅଙ୍କନ କରି କଲେଜର ପ୍ରଥମ ବାର୍ଷିକ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ କରୁଛନ୍ତି ।

ଉଦ୍‌ଘାଟନୀ ମଞ୍ଚରେ ସୁବାସ ପାଣି, ଅଓ୍ୱଧ ନାରାୟଣ ତିଓ୍ୱାରୀ, ଜାନକୀ ବଲ୍ଲଭ ପଟ୍ଟନାୟକ, ଦିନନାଥ ପାଠୀ, ସଂସ୍କୃତି ବିଭାଗର ଉପଶାସନସଚିବ ସୁଧାଂଶୁ ମୋହନ ରାଉତରାୟ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ମନ୍ମଥ ନାଥ ଦାସ ।

Digitized by srujanika@gmail.com





ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବକୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଉଦ୍‌ଘାଟନ କରୁଛନ୍ତି । ମହାବିଦ୍ୟାଳୟର ଛାତ୍ରୀ ରୀନା ପୁଷ୍ଟି ଦ୍ୱାରା ଅଙ୍କିତ ଝୋଟି ଉପରେ ପିତଳ ଲୁଖା

Digitized by srujanika@gmail.com





ଇନ୍ଦିରା ଗାନ୍ଧୀ ସଂଗ୍ରହାଳୟର ଚଟାଣରେ ଅଙ୍କିତ ଝୋଟି ଅବଲୋକନ କରୁଛନ୍ତି । ଝୋଟିଟି ସଂଗ୍ରାମ କର ଏବଂ ଅତସି ବସୁ ଦ୍ୱାରା ଅଙ୍କିତ ।

Digitized by srujanika@gmail.com





ରବୀନ୍ଦ୍ର ମଣ୍ଡପରେ ଗୀତଗୋବିନ୍ଦ ଉତ୍ସବ ପାଇଁ ଝୋଟି ଅଙ୍କନରେ ନିମଗ୍ନ କଲେଜର ଛାତ୍ରଛାତ୍ରୀ

Digitized by srujanika@gmail.com







ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ମନ୍ମଥ ନାଥ ଦାସ, ସଂସ୍କୃତ ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ, ଶ୍ରୀମତୀ ତିଓ୍ୱାରୀ ଓ ଉପଶାସନ ସଚିବ ସୁଧାଂଶୁ ମୋହନ ରାଉତରାୟଙ୍କ କଲେଜ ପରିଦର୍ଶନ ।

Digitized by srujanika@gmail.com








ବାବୁଲା ସେନାପତିଙ୍କ ବେତସ କୁଞ୍ଜରେ କଳା ଓ ପ୍ରକୃତି କର୍ମଶାଳା । ଛାତ୍ରଛାତ୍ରୀ, ଅଧକ୍ଷ, ଅଧାପକ ଏବଂ ଯୋଗ ଦେଇଥିବା ଶିଳ୍ପୀଙ୍କ ଗହଣରେ ପ୍ରଫେସର ରାଧାମୋହନ, ବାବୁଲା ସେନାପତି ଓ ଯତୀନ୍ ଦାସ

Digitized by srujanika@gmail.com





କଳା ଓ ପ୍ରକୃତି କର୍ମଶାଳାରେ ଯୋଗ ଦେଇଥିବା ଶିଳ୍ପୀ **ପ୍ରଥମ ବସିବା ଧାଡ଼ି** - ବିରଜା କୁମାରୀ ସିଂହ, କମଳ କୁମାରୀ ସିଂହ, ବନଜା ଚୌଧୁରୀ। **ଦ୍ୱିତୀୟ ବସିବା ଧାଡ଼ି** - ସତ୍ୟବ୍ରତ ଦାସ, ରାମହରି ଜେନା, ଶିବ ପାଣିଗ୍ରାହୀ, ଦିନନାଥ ପାଠୀ, ରାଧାମୋହନ, ଡି.ଏନ୍.ରାଓ, ଶିଶିର ଚନ୍ଦ୍ର ଚାନ୍ଦ, ଦିବ୍ୟସିଂହ ମଲ୍ଲ, ଲକ୍ଷ୍ମୀନାରାୟଣ ସାହୁ, ଗଗନବିହାରୀ ମହାନ୍ତି **ପ୍ରଥମ ଠିଆ ହେବା ଧାଡ଼ି** - ଭାସ୍କର ବିଶ୍ୱାଳ, ସୂର୍ଯ୍ୟ ନାରାୟଣା, ଦେବରାଜ ସାହୁ, କେ. ଭେଙ୍କଟରାଓ, ବି. ଦଣ୍ଡପାଣି, ଅଭିରାମ ସାହୁ, ଭଗବାନ ସିଂହ, ଦେବେନ୍ଦ୍ର ନାଥ ସାମଲ, ବିପିନ ବିହାରୀ ସାହୁ। **ଦ୍ୱିତୀୟ ଠିଆ ହେବା ଧାଡ଼ି** - ସୁବାସ ଚନ୍ଦ୍ର ନାୟକ, ସୁବାସ ଚନ୍ଦ୍ର ଦାସ, ଏନ୍. ଚନ୍ଦ୍ରଶେଖର ରାଓ, ଫକୀରମୋହନ ମଲ୍ଲିକ, ବାଞ୍ଛାନିଧି ପଟ୍ଟନାୟକ, ଅଚ୍ୟୁତାନନ୍ଦ ବେହେରା, ରବୀନ୍ଦ୍ରନାଥ ବାରିକ।

ଭୁବନେଶ୍ୱର ଠାରେ ସର୍ବଭାରତୀୟ ଚିତ୍ରଶିଳ୍ପୀ ଶିବିରରେ ଅଂଶଗ୍ରହଣ କରିଥିବା ସୁରେଶ ଚୌଧୁରୀ, ରାମହରି ଜେନା, ଆର.ପି. ଡାବରାଲ, ଆନନ୍ଦ ଅଗ୍ରୱାଲ, ଅଶୋକ ମହାନ୍ତି, ଅଜିତ କେଶରୀ ରାୟ, ପ୍ରମୋଦ ମହାନ୍ତି, ବିଦ୍ୟା ଶଙ୍କର ସ୍ଥପତି ଓ ମନ୍‌ଦୀପ ଶାହାଙ୍କ ଗହଣରେ କଲେଜର ଅଧକ୍ଷ ଦିନନାଥ ପାଠୀ ଓ ଅଧାପକ ଶିବ ପାଣିଗ୍ରାହୀ

Digitized by srujanika@gmail.com





ପ୍ରଥମ ଓ ଦ୍ୱିତୀୟ ବର୍ଷର ଛାତ୍ରଙ୍କ ସହ ଅଧ୍ୟକ୍ଷ ଓ ଅନ୍ୟାନ୍ୟ ବରିଷ୍ଠ ଶିଳ୍ପୀ

**ପ୍ରଥମ ଧାଡ଼ି** - ମହେଶ ଆଚାର୍ଯ୍ୟ, ଚିନ୍ତାମଣି ବେହେରା, ସୁବ୍ରତ ମଲ୍ଲିକ, ପ୍ରଦ୍ୟୁମ୍ନ ମହାନ୍ତି, କମଳାକ୍ଷ କାନୁନ୍‌ଗୋ, ସୁଶାନ୍ତ ମହାନ୍ତି, ଅଞ୍ଜନ କୁମାର ସାହୁ । **ଦ୍ୱିତୀୟ ଧାଡ଼ି**- ବିପିନ ବିହାରୀ ସାହୁ, ଫକୀର ମୋହନ ମଲ୍ଲିକ, ଡି.ଏନ୍.ରାଓ, ରମେଶ ମହାନ୍ତି, ଅସିତ ମୁଖାର୍ଜୀ, ଦିନନାଥ ପାଠୀ, ଯତୀନ ଦାସ, ଶିବ ପାଣିଗ୍ରାହୀ, ବାବୁଲା ସେନାପତି, ଚନ୍ଦ୍ର କୁମାର ସାମନ୍ତରାୟ । **ତୃତୀୟ ଧାଡ଼ି**- ରାମହରି ଜେନା, ଲକ୍ଷ୍ମୀକାନ୍ତ ପଟ୍ଟନାୟକ, ଆର୍ତ୍ତବନ୍ଧୁ ରାଉତ, ସଂଗ୍ରାମ କର, ନୃସିଂହ ନାୟକ, ଦେବ ରଥ, ରବି ବନିକ, ଭୃଗୁରାମ ସାହୁ, ଦେବାଶିଷ ରଥ, ଡି. ଭୂଷଣ ରାଓ, ଚନ୍ଦ୍ରଶେଖର ରାଓ ଓ ଦେବରାଜ ସାହୁ । (୧୯୮୫)

ସୁନନ୍ଦା ପାଠୀ ଫାଉଣ୍ଡେସନ ଦ୍ୱାରା ଆୟୋଜିତ ଫ୍ରାନ୍ସର ମିନିମଲ୍ ଆର୍ଟିଷ୍ଟ ଗିଲ୍‌ବର୍ଟ ମେଦମ୍‌ଙ୍କ ଚିତ୍ର ପ୍ରଦର୍ଶନୀ । ଚିତ୍ରରେ କଲେଜର ଛାତ୍ର, ସାମ୍ବାଦିକ ବିଭୂତି ମିଶ୍ର, ଶିଳ୍ପୀ ଚନ୍ଦ୍ରଶେଖର ରାଓ, ରାମହରି ଜେନା, ଆଚାର୍ଯ୍ୟ ଭାବାନନ୍ଦ, ଗିଲ୍‌ବର୍ଟ ଓ ଅଧ୍ୟକ୍ଷ ଦିନନାଥ ପାଠୀ ।

Digitized by srujanika@gmail.com







ପ୍ରଥମ ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତା ଦେବା ପାଇଁ ଶାନ୍ତିନିକେତନ କଳା ଭବନରୁ ଆସିଥିବା ଚିତ୍ରଶିଳ୍ପୀ ଡକ୍ଟର ନିର୍ମଳେନ୍ଦୁ ଦାସଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ।

ପ୍ରଥମ ଓଡ଼ିଶୀ ନୃତ୍ୟୋତ୍ସବ ଅବସରରେ କଲେଜ ପକ୍ଷରୁ ମୁକ୍ତେଶ୍ୱର ମନ୍ଦିର ନିକଟରେ ଆୟୋଜିତ କଳାମେଳାକୁ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥାର ନିର୍ଦ୍ଦେଶକ ଡକ୍ଟର ନାଗରାଜ ରାଓ ଉଦ୍‌ଘାଟନ କରୁଛନ୍ତି । ପାଖରେ ଅଛନ୍ତି ସଂସ୍କୃତି ସଚିବ ଅଓ୍ୱଧ ନାରାୟଣ ତିଓ୍ୱାରୀ ଓ ଅଧ୍ୟକ୍ଷ ଦିନନାଥ ପାଠୀ ।

କଳା ଓ ପ୍ରକୃତି କର୍ମଶାଳା ଅବସରରେ ଅଧ୍ୟକ୍ଷଙ୍କ ସହିତ ଆଲୋଚନା କରୁଛନ୍ତି ପରିବେଶ ବିଭାଗର ବିଶେଷଜ୍ଞ ପ୍ରଫେସର ରାଧାମୋହନ, ଅଧ୍ୟାପକ ବିନୋଦ ରାଉତରାୟ, ଶିଳ୍ପୀ ଯତୀନ ଦାସ ଓ ଓଡ଼ିଶା ଲଳିତ କଳା ଏକାଡେମୀର ସମ୍ପାଦକ ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ ।

Digitized by srujanika@gmail.com



ଆଧୁନିକ ଚିତ୍ରକଳା ଶିକ୍ଷାରେ ପ୍ରଥମ କୁମ୍ଭାର ଚକ ଏବଂ କାଠି କଣ୍ଢେଇ ।
ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ କଲେଜ ପରିସରରେ ଚିତ୍ରମେଳା ଉଦ୍‌ଘାଟନ କରୁଛନ୍ତି । ପାଖରେ ଛାତ୍ରୀ ରଶ୍ମି ପଣ୍ଡା ଓ ଅଧ୍ୟାପକ ଶିବ ପାଣିଗ୍ରାହୀ ।
କଲେଜର ଅସ୍ଥାୟୀ ପ୍ରଦର୍ଶନୀ ମଣ୍ଡପରେ ପ୍ରଫେସର ଭବେଶ ସାନ୍ୟାଲ ।
କୁମ୍ଭାରଚକ ନିକଟରେ ରୁଚିକା ସ୍କୁଲର ଅଧକ୍ଷା ଇନ୍ଦର୍‌ଜିତ୍ ଖୁରାନା, ଛାତ୍ରୀ ବୀଥିକା ମହାନ୍ତି, ରଶ୍ମି ପଣ୍ଡା ଓ ଛାତ୍ର ବିଜୟ ରାଉତ ।

Digitized by srujanika@gmail.com







କଲେଜର ଚିତ୍ରମେଳାରେ ପାରଳାଖେମଣ୍ଡିର ଚିତ୍ରକାର ପ୍ରକାଶ ମହାପାତ୍ର ଓ ସୀମାଞ୍ଚଳ ମହାପାତ୍ର ।

ବରଗଡର ଟେରାକୋଟା ଶିଳ୍ପୀ ଗୌରୀ ରଣା ଓ ଚିକିଟିର ଚିତ୍ରକାର ଆପନ୍ନା ମହାପାତ୍ର ।

ଟେରାକୋଟା ତିଆରି କରିବାର ପ୍ରଣାଳୀ ସମ୍ପର୍କରେ କଲେଜ ଦ୍ୱାରା ପ୍ରକାଶିତ ପୁସ୍ତିକା

Digitized by srujanika@gmail.com









ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାରେ କଲେଜର ପାଠପଢ଼ା ।
ପ୍ରକୃତି କୋଳରେ ଚିତ୍ରାଭ୍ୟାସ ।
କବିତା ଉତ୍ସବ ଆସରରେ ଅତିଥି, କବି ସୁଧାଂଶୁ ମୋହନ ରାଉତରାୟ ଓ କବି ପ୍ରଫୁଲ୍ଲ କୁମାର ତ୍ରିପାଠୀ । ଛାତ୍ରୀ ଅତସୀ ବସୁ ନିଜ କବିତା ପାଠ କରୁଛନ୍ତି ।
ସଂଗୀତ ଉତ୍ସବ ଆସରରେ ଅତିଥି, ରାଜ୍ୟ ସଂଗ୍ରହାଳୟର ଅଧ୍ୟକ୍ଷ ଡକ୍ଟର ହରିଶ୍ଚନ୍ଦ୍ର ଦାସ ଓ ନୃତ୍ୟଗୁରୁ ଦେବ ପ୍ରସାଦ ଦାସ । ଛାତ୍ର ଡି. ଭୂଷଣ ରାଓ ସଂଗୀତ ଗାନ କରୁଛନ୍ତି ।

Digitized by srujanika@gmail.com





ଛାତ୍ରଙ୍କ ଦ୍ୱାରା ଚିତ୍ରମେଳାର ଶୁଭାରମ୍ଭ, ଚିତ୍ରମେଳାରେ ସଂସ୍କୃତି ରାଷ୍ଟ୍ରମନ୍ତ୍ରୀ ଶରତ ରାଉତ, ରାଜ୍ୟପାଳଙ୍କ ସଚିବ ଅଭୟାନନ୍ଦ ରଥ ଓ ଅଧ୍ୟକ୍ଷ ।

ଅଧ୍ୟକ୍ଷଙ୍କ ଦ୍ୱାରା ପରିକଳ୍ପିତ ଏବଂ କଲେଜ ପକ୍ଷରୁ ନିର୍ମିତ ନୂଆଦିଲ୍ଲୀ ଠାରେ ଅନୁଷ୍ଠିତ ହୋଇଥିବା କେନ୍ଦ୍ର ଲଳିତକଳା ଏକାଡେମୀର କଳାମେଳାରେ ବହୁ ଭାଷାଭାଷୀ ପିପିଲି ତୋରଣ ।

Digitized by srujanika@gmail.com








କଲେଜ କର୍ମଶାଳାରେ ବାବୁଲା ସେନାପତି, ବ୍ରହ୍ମେଶ୍ୱର ମନ୍ଦିର ବେଢ଼ାରେ ବିଜୟ କୁମାର ରଥ, ଲାଖଶିଳ୍ପ କର୍ମଶାଳାରେ ଅଧ୍ୟାପକ ଦେବରାଜ ସାହୁ, ବିଭୂତି କାନୁନ୍‌ଗୋଙ୍କ ଶ୍ରାଦ୍ଧସଭାରେ ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ ଓ ସୌରାଚିତ୍ର କର୍ମଶାଳାରେ ରୂପ ଶବର ।

Digitized by srujanika@gmail.com





ଏନ୍.ସି.ଇ.ଆର୍.ଟି.ର ସର୍ବଭାରତୀୟ ଚିତ୍ର ଶିକ୍ଷକ ଶିବିରରେ ପ୍ରଫେସର ଭବେଶ ଚନ୍ଦ୍ର ସାନ୍ୟାଲଙ୍କ ଉଭୟ ପାର୍ଶ୍ୱରେ କଲେଜର ଅଧ୍ୟକ୍ଷ ଦିନନାଥ ପାଠୀ ଏବଂ ଏନ୍.ସି.ଇ.ଆର୍.ଟି.ର ପ୍ରାଧ୍ୟାପକ ଦିଲ୍ଲୀପ ବକ୍ସି ।

ସାନ୍ୟାଲଙ୍କ ଭାଷଣରେ ମୁଗ୍ଧ ଚିତ୍ରଶିଳ୍ପୀ ।

Digitized by srujanika@gmail.com







ପରିଭ୍ରମଣ- ଶାନ୍ତିନିକେତନର ସୁରୁଲ୍ ଟେରାକୋଟା ମନ୍ଦିର ବେଢ଼ାରେ ଛାତ୍ରଛାତ୍ରୀ ।

ଛାତ୍ରଛାତ୍ରୀଙ୍କ ଗହଣରେ ଶାନ୍ତିନିକେତନର ଆମ୍ରକୁଞ୍ଜରେ କଳାଭବନର ଅଧ୍ୟକ୍ଷ ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ ଓ କଲେଜର ଅଧ୍ୟକ୍ଷ ଦିନନାଥ ପାଠୀ ।

ନୂଆଦିଲ୍ଲୀର ସ୍କାଉଟସ୍ ଓ ଗାଇଡସ୍ କେନ୍ଦ୍ର ପରିସରରେ କଲେଜର ଛାତ୍ରଛାତ୍ରୀଙ୍କ ଗହଣରେ ଅଧ୍ୟକ୍ଷ ଦିନନାଥ ପାଠୀ ।

Digitized by srujanika@gmail.com





ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରଠାରେ ଅନୁଷ୍ଠିତ ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀରେ ସବିତା, ସଂଗୀତା, ଦିନନାଥ, ରାଜେନ୍ଦ୍ର ପ୍ରସାଦ ଦାସ, ଜିତେନ୍ଦ୍ର ନାରାୟଣ ଦାସ ଓ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ ।

କଲେଜର ଛାତ୍ରଛାତ୍ରୀ : ପୁଷ୍ପା, ମଞ୍ଜୁ, ଦୁର୍ଗା ପଟ୍ଟନାୟକ, ସନ୍ତୋଷ ମହାପାତ୍ର, ସୁଧାଂଶୁବାଳା, ରବି ବଣିକ, ଶୋଭନ କୁମାର, ସୁଚିତ୍ରା ଦାସ ଓ ସବିତା ।

Digitized by srujanika@gmail.com





କାଏରୋରେ ପ୍ରଫେସର ବଲ୍‌ବୀର ସିଂହ କଟ୍

ତାପଙ୍ଗ ପଥର ଖଣିରେ କାର୍ଯ୍ୟରତ ମହାବିଦ୍ୟାଳୟର ଛାତ୍ର ଅଞ୍ଜନ କୁମାର ସାହୁ ଓ ପଥରକଟାଳି କାରିଗର ।

Digitized by srujanika@gmail.com





ଆନ୍ତର୍ଜାତିକ କଳିଙ୍ଗ ବାଲିଯାତ୍ରା - ପାରାଦ୍ୱୀପ ବନ୍ଦରରେ କଲେଜ ଛାତ୍ରଛାତ୍ରୀଙ୍କ ଦ୍ୱାରା ସଜ୍ଜିତ ବୋଇତ 'ବୋଇତ ବନ୍ଦାଣ' ଉତ୍ସବ ଅପେକ୍ଷାରେ ।
ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ ଅବସରରରେ ବାଲିଦ୍ୱୀପ ଠାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓ ବାଲିର ରାଜ୍ୟପାଳ ଇଦା ବାଗୁସ ଓକା ।

Digitized by srujanika@gmail.com






ପାରାଦ୍ୱୀପ ବନ୍ଦରରେ କଳିଙ୍ଗ ବାଲିଯାତ୍ରାର ଦୁଇଟି ସ୍ମରଣୀୟ ଘଟଣା ।

୧. କଲେଜର ଛାତ୍ରଛାତ୍ରୀଙ୍କ ଦ୍ୱାରା ଅଙ୍କିତ ଝୋଟି ପାହାଡ଼ା ଉପରେ ଚାଲୁଛନ୍ତି ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓ ପର୍ଯ୍ୟଟନ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓ ।

୨. ବୋଇତ ବନ୍ଦାଣ ଉତ୍ସବ ପାଇଁ ନୃତ୍ୟଶିଳ୍ପୀ କୁଙ୍କୁମ ମହାନ୍ତିଙ୍କ ଦ୍ୱାରା ପ୍ରସ୍ତୁତ ବୋଇତ ବନ୍ଦାଣ ନୃତ୍ୟ ।

Digitized by srujanika@gmail.com










ଆନ୍ତର୍ଜାତିକ କଳିଙ୍ଗ ବାଲିଯାତ୍ରା ଉପଲକ୍ଷେ ଓଡ଼ିଶା ପର୍ଯ୍ୟଟନ ବିଭାଗ ପାଇଁ କଲେଜ ପକ୍ଷରୁ ପ୍ରସ୍ତୁତ ତିନୋଟି ପ୍ରଦର୍ଶନୀ ପୁସ୍ତିକା : କଳିଙ୍ଗ ବାଲିଯାତ୍ରା ପରିଚିତି, କଳିଙ୍ଗ ନୃତ୍ୟାୟନ ଓ କଳିଙ୍ଗାୟନ ।

Digitized by srujanika@gmail.com




ସୁଇଡେନ୍‌ରେ ଭାରତ ଉତ୍ସବର ଲୋକପ୍ରିୟ କଳା ପ୍ରଦର୍ଶନୀ ଉପଲକ୍ଷେ ପ୍ରକାଶିତ ପୋଷ୍ଟର ।

Digitized by srujanika@gmail.com





ଷ୍ଟକ୍‌ହୋମ୍ ସହର ରାସ୍ତାରେ ଭାରତ ଉତ୍ସବ ପ୍ରଦର୍ଶନୀର ପଟୁଆରରେ ଭାରତୀୟ ଶିଳ୍ପୀଙ୍କ ଗହଣରେ କଳାପୋଷାକ ପରିହିତ ଅଧ୍ୟକ୍ଷ ଦିନନାଥ ପାଠୀ ।
ଭାରତ ଉତ୍ସବ ପ୍ରଦର୍ଶନୀର ଆତସବାଜୀ ପ୍ରଦର୍ଶନ ଉପଭୋଗ କରୁଛନ୍ତି ଓଡ଼ିଆ ଶିଳ୍ପୀ ରୋହିତ ବସୁ, ଅସୀମ ବସୁ ଓ ସୁଇଡିସ୍ କ୍ୟୁରେଟର୍ ମାର୍ଗାରିଏତା ।

Digitized by srujanika@gmail.com





ଷ୍ଟକହୋମ୍ ସହରର କୁଲ୍‌ଟୁର୍ ହ୍ୟୁସେଟ୍ ଠାରେ ଭାରତୀୟ ଲୋକପ୍ରିୟ କଳା ପ୍ରଦର୍ଶନୀର ଦୁଇଜଣ ସହଯୋଗୀ କ୍ୟୁରେଟର ମାର୍ଗାରିଏତା ଓ ଶିଶିଙ୍କ ଗହଣରେ ପ୍ରଦର୍ଶନୀର କମିଶନର ଦିନନାଥ ପାଠୀ । କୁଲ୍‌ଟୁର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ବୋ' ସିଲିଭାନ୍‌ଙ୍କ ଠାରୁ ବିଦାୟ ନେବା ବେଳାରେ ପ୍ରଦର୍ଶନୀର କମିଶନର ଦିନନାଥ ପାଠୀ ।

Digitized by srujanika@gmail.com



ART
AND
POETRY

B. K. COLLEGE OF ART AND CRAFTS
BHUBANESWAR

3



WORK SHOP
ON
ART AND ENVIRONMENT

ORGANISED
BY
BK COLLEGE OF ART AND CRAFTS
BHUBANESWAR

SPONSORED
BY
DEPARTMENT OF SCIENCE, TECHNOLOGY
AND ENVIRONMENT, GOVT. OF ORISSA

4 thru 8 February 198[illegible]
BHUBANESWAR ORISSA, INDIA

THE PRINCIPAL STAFF AND STUDENTS EXTEND
YOU A CORDIAL INVITATION






FACES
Known and Forgotten

Digitized by srujanika@gmail.com










ଗ୍ରାଫିକ୍ ବିଭାଗର ମୁଖପତ୍ର 'ମୁଦ୍ରା' । ଓଡ଼ିଶାର ଆଧୁନିକ କଳାର ବିକାଶକୁ କେନ୍ଦ୍ରକରି ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଦ୍ୱାରା ଆୟୋଜିତ ଚିତ୍ରକଳା ପ୍ରଦର୍ଶନୀର ପୁସ୍ତିକା । ୧୯୮୬-୮୭ ମସିହାର କଲେଜ ପାଠ୍ୟକ୍ରମ ସମ୍ବଳିତ ପୁସ୍ତିକା ।

Digitized by srujanika@gmail.com







କାଏରୋର ସ୍ଫିଙ୍କସ୍ ଆଗରେ ଅଧକ୍ଷ ଦିନନାଥ ପାଠୀ ।

'ମୁଁ ଗଛକୁ ଭଲପାଏ' ପ୍ରଦର୍ଶନୀ ଉପଲକ୍ଷେ ସୁନନ୍ଦା ପାଠୀ ଫାଉଣ୍ଡେସନ୍ ଦ୍ୱାରା ଆୟୋଜିତ କୁନି କୁନି ପିଲାଙ୍କ ନୃତ୍ୟ ।

କଲେଜର ଡିଜାଇନ୍ ବିଭାଗରେ ଅଧାପକ ବଳଦେବ ମହାରାଥା, ସଂସ୍କୃତି ସଚିବ ରାଜକିଶୋର ଭୁଜବଳ ଓ ନିର୍ଦ୍ଦେଶକ ଅନନ୍ତ ଚରଣ ଦାସ ।

Digitized by srujanika@gmail.com



ଶାନ୍ତିନିକେତନର ସମାବର୍ତ୍ତନ ଉତ୍ସବରେ ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟ ଓ ଭାରତର ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ଠାରୁ ପିଏଚ୍.ଡି ଉପାଧି ପାଇଁ ଛାତିମ୍ ଗଛର ପତ୍ର ଗ୍ରହଣ କରୁଛନ୍ତି କଲେଜର ଅଧ୍ୟକ୍ଷ ଦିନନାଥ ପାଠୀ।

Digitized by srujanika@gmail.com







ଆଧୁନିକ କଳାଶିକ୍ଷାରେ ପ୍ରଥମକରି ଆରମ୍ଭ କରାଯାଇଥିବା ଡୋକ୍ରା କାଷ୍ଟିଙ୍ଗ୍ ଏବଂ ବ୍ରୋଞ୍ଜ କାଷ୍ଟିଙ୍ଗ୍ କର୍ମଶାଳା ପରିଚାଳନା କରୁଛନ୍ତି ଅଧ୍ୟାପକ ଜୟନ୍ତ ଦାସ । ସହଯୋଗ କରୁଛନ୍ତି ଛାତ୍ର ଅଞ୍ଜନ କୁମାର ସାହୁ, ଶୋଭନ କୁମାର, ଆର୍ତ୍ତବନ୍ଧୁ ରାଉତ, ଅଦ୍ୱୈତ ପ୍ରସାଦ ଗଡ଼ନାୟକ ଓ ଅନ୍ୟମାନେ ।

Digitized by srujanika@gmail.com





କେନ୍ଦ୍ର ଲଳିତକଳା ଏକାଡେମୀ ଆନୁକୂଲ୍ୟରେ ଭୁବନେଶ୍ୱର ଠାରେ ଆୟୋଜିତ ଭେଟେରନ୍ ଆର୍ଟିଷ୍ଟସ୍ ଅଫ୍ ଇଣ୍ଡିଆ ଚିତ୍ର ପ୍ରଦର୍ଶନୀରେ ମନ୍ତ୍ରୀ ଚୈତନ୍ୟ ପ୍ରସାଦ ମାଝୀ, ଅଧ୍ୟାପକ ଶିବ ପାଣିଗ୍ରାହୀ ଏବଂ ପ୍ରଦର୍ଶନୀ ଆବାହକ ଅଧକ୍ଷ ଦିନନାଥ ପାଠୀ ।

ସୁନନ୍ଦା ପାଠୀ ଫାଉଣ୍ଡେସନ୍‌ର ଏବିସି ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ମନ୍ତ୍ରୀ ଶରତ କୁମାର କର ଜଣେ ଶିଶୁ ପ୍ରତିଯୋଗୀଙ୍କୁ ପୁରସ୍କୃତ କରୁଛନ୍ତି । ପାଖରେ ଅଛନ୍ତି ଫାଉଣ୍ଡେସନ୍‌ର ଅଧକ୍ଷ ଦିନନାଥ ପାଠୀ ଓ କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ରାମହରି ଜେନା ।

Digitized by srujanika@gmail.com





ଗ୍ରାଫିକ୍ କଳା ବିଭାଗରେ ଯାତ୍ରୀପଟି ଆଧାରରେ କନା ଉପରେ ବ୍ଲକ ଛପେଇ କାମ । ଛାତ୍ର ସଂଗ୍ରାମ କର, ବିନୋଦ କର, ଦିଲ୍ଲୀପ ଦାସ, ସୁଶାନ୍ତ ପଟ୍ଟନାୟକ ଏବଂ ଅମର ଜେନାଙ୍କ ଗହଣରେ ଅଧ୍ୟାପକ ଡି.ଏନ. ରାଓ ଓ ଅଧ୍ୟକ୍ଷ ଦିନନାଥ ପାଠୀ ।

ପ୍ରିମିଟିଭ୍ ଭିଗର୍ ଚିତ୍ର ପ୍ରଦର୍ଶନୀର ଉଦ୍‌ଘାଟନ ପରେ କେନ୍ଦ୍ର ଲଳିତକଳା ଏକାଡେମୀର ସଚିବ ପ୍ରଫେସର ବି.ପି. କମ୍ବୋଜ, ସଂସ୍କୃତି ମନ୍ତ୍ରୀ ଶରତ କୁମାର କର, ଆଞ୍ଚଳିକ କଳା କେନ୍ଦ୍ରର ସଂପାଦକ ବିପିନ ବିହାରୀ ସାହୁ ଓ ପ୍ରଦର୍ଶନୀର ଆବାହକ ଓ କ୍ୟୁରେଟର ଦିନନାଥ ପାଠୀ । ରାଜସ୍ଥାନର ଗୋଟିଏ କଳାକୃତି (କଭାର୍ଡ) ସମ୍ପର୍କରେ ଦିନନାଥ ପାଠୀ ଅତିଥିମାନଙ୍କୁ ବୁଝାଉଛନ୍ତି ।

Digitized by srujanika@gmail.com





ଭାରତ ଉତ୍ସବରେ ଯୋଗଦେବା ପାଇଁ ସୁଇଡ଼େନ୍ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ ବିମାନ ବନ୍ଦର ଠାରେ ଚିତ୍ରଶିଳ୍ପୀ ଅସୀମ ବସୁ ଓ ଅଧ୍ୟକ୍ଷ ଦିନନାଥ ପାଠୀଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇବା ପାଇଁ ଉପସ୍ଥିତ ଅଛନ୍ତି ଛାତ୍ର ପ୍ରତାପ ଜେନା, ବିଜୟ ରାଉତ, ବାଳକୃଷ୍ଣ ନନ୍ଦ ଓ ପ୍ରଦୋଷ ମିଶ୍ର ।

ପ୍ରସିଦ୍ଧ ସିରାମିକ୍ ଶିଳ୍ପୀ ପ୍ରଫେସର କାଳିନ୍ଦୀ ଭେଦନ ଜେନା କଲେଜର ଛାତ ଉପରେ ବିଭୂତି କାନୁନ୍‌ଗୋ ସ୍ମାରକୀ ବକ୍ତୃତା ପ୍ରଦାନ କରୁଛନ୍ତି ।

Digitized by srujanika@gmail.com




*They Speak their hearts*



ART OF THE RURAL ORIYA WOMEN

This exhibition is a highlight of the design development programme of the council.



Crafts Council of Ori

ପ୍ରଥମ ଓଡ଼ିଶୀ ନୃତ୍ୟୋତ୍ସବ ପାଇଁ ମହାବିଦ୍ୟାଳୟରେ ପ୍ରସ୍ତୁତ ହୋଇଥିବା ପୋଷ୍ଟର ଓ ପ୍ରଦର୍ଶନୀ ପୁସ୍ତିକା ।

ଦିଲ୍ଲୀ ଠାରେ ଅନୁଷ୍ଠିତ ଓଡ଼ିଆ ସାହିତ୍ୟ ସମାବେଶ ଉପଲକ୍ଷ୍ୟେ ଅନୁଷ୍ଠିତ ଓଡ଼ିଆ ଝୋଟି ପ୍ରଦର୍ଶନୀ ପାଇଁ ଓଡ଼ିଶା କ୍ରାଫଟସ୍ କାଉନ୍ସିଲ୍‌ର ପ୍ରଦର୍ଶନୀ ପୁସ୍ତିକା ।

Digitized by srujanika@gmail.com








ଭାସ୍କର୍ଯ୍ୟ ବିଭାଗର ମୁଖପତ୍ର ଇମେଜ୍‌ର ପ୍ରଚ୍ଛଦରେ ଛାତ୍ର ଅଦ୍ୱୈତ ଗଡ଼ନାୟକଙ୍କ କନ୍ଦାପଥରରେ ନିର୍ମିତ ଭାସ୍କର୍ଯ୍ୟ ।

ଛାତ୍ର ଜଗନ୍ନାଥ ପଣ୍ଡାଙ୍କ ମୁଗୁନି ପଥରେ ନିର୍ମିତ ଭାସ୍କର୍ଯ୍ୟ

ଆଧୁନିକ କଳା ଶିକ୍ଷାରେ ଛାତ୍ର ଶୋଭନ କୁମାରଙ୍କ ଟେରାକୋଟା ଭାସ୍କର୍ଯ୍ୟ ।

Digitized by srujanika@gmail.com





ନାଲ୍‌କୋ ସହାୟତାରେ ଦାମନଯୋଡ଼ିରେ ଅନୁଷ୍ଠିତ ଚିତ୍ରପ୍ରଦର୍ଶନୀ ଅବସରରେ ଅଧ୍ୟାପକ ଡି.ଏନ୍. ରାଓ, ଛାତ୍ରୀ ମଞ୍ଜୁଲତା ଦାସ, ବିଦ୍ୟୁତ୍‌ଲତା ପାଟଶାଣୀ, ଶିଳ୍ପୀ ରାମହରି ଜେନା, ଛାତ୍ର ବାଳକୃଷ୍ଣ ନନ୍ଦ, ସୁବ୍ରତ କୁମାର ମଲ୍ଲୀକ, ଅଧ୍ୟକ୍ଷ ଦିନନାଥ ପାଠୀ ଓ ଅଧ୍ୟାପକ ପାଣିଗ୍ରାହୀ ।

ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ର ଠାରେ ଅନୁଷ୍ଠିତ ଦିନନାଥ ପାଠୀଙ୍କ ଏକକ ଚିତ୍ରପ୍ରଦର୍ଶନୀ ଗ୍ୟାଲେରୀରେ ଛାତ୍ର ଅଦ୍ୱୈତ ପ୍ରସାଦ ଗଡ଼ନାୟକ, ସଜଳ ପାତ୍ର, ସୁବ୍ରତ କୁମାର ମଲ୍ଲିକ, ଚିତ୍ରଶିଳ୍ପୀ ଚନ୍ଦ୍ର ଶେଖର ରାଓ, ଛାତ୍ରୀ ବିଦ୍ୟୁତ୍‌ଲତା ପାଟଶାଣୀ, ଅଞ୍ଜନ କୁମାର ସାହୁ, ଜ୍ୟୋତି ରଂଜନ ପାଣିଗ୍ରାହୀ ଓ ଚିତ୍ରଶିଳ୍ପୀ କାଶିନାଥ ଜେନା ।

Digitized by srujanika@gmail.com






ଅଷ୍ଟମ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀର ପୁସ୍ତିକା- ପ୍ରଚ୍ଛଦରେ କାଳୀକିଙ୍କର ଦେଙ୍କ ଟେରାକୋଟା ଭାସ୍କର୍ଯ୍ୟ ।

ଭାରତ ଭବନ ବିନାଲରେ ସ୍ଥାନ ପାଇଥିବା ଛାତ୍ର ଆର୍ତ୍ତବନ୍ଧୁ ରାଉତଙ୍କ ପ୍ଲାଷ୍ଟିକ ଭାସ୍କର୍ଯ୍ୟ ।
(ଏଭଳି ପ୍ଲାଷ୍ଟିକ ଭାସ୍କର୍ଯ୍ୟ ଓଡ଼ିଶାରେ ପ୍ରଥମ)

Digitized by srujanika@gmail.com












ସୁନନ୍ଦାର ଚିତ୍ର ଉପରେ ଆଧାରିତ ଇଂରାଜୀ କବିତା ବହି ଅବନ୍ତୀ ଏବଂ ରାଜ୍ୟସ୍ତରୀୟ ଚିତ୍ରକଳା ପ୍ରଦର୍ଶନୀ ପୁସ୍ତିକାର ପ୍ରଚ୍ଛଦ । କବିତା ବହିର ପ୍ରଚ୍ଛଦ ଅଧାପକ ଡି.ଏ. ରାଓଙ୍କ ଦ୍ୱାରା କଲେଜରେ ସିଲ୍କ ସ୍କ୍ରୀନରେ ମୁଦ୍ରିତ ହୋଇଥିଲା ।

କଲେଜର କଳା ଇତିହାସ ବିଭାଗର କଳା ଓ ନାନ୍ଦନିକତାର ମୁଖପତ୍ର 'ଚିତ୍ର' ।

Digitized by srujanika@gmail.com












ସୁନନ୍ଦା ପାଠୀ ଫାଉଣ୍ଡେସନ୍ ଦ୍ୱାର ଆୟୋଜିତ ସର୍ବଭାରତୀୟ ଚିତ୍ର (ଏବିସି ଶୋ) ପ୍ରଦର୍ଶନୀ ଓ 'ଲେଖା' ପ୍ରତିଯୋଗୀତାର ପ୍ରଦର୍ଶନୀ ପୁସ୍ତିକା ।

Digitized by srujanika@gmail.com






କଲେଜ ଦ୍ୱାରା ଆୟୋଜିତ ଖଲ୍ଲିକୋଟ ଚିତ୍ରକଳା ମହାବିଦ୍ୟାୟର ରଜତ ଜୟନ୍ତୀ ଉତ୍ସବ ମଞ୍ଚରେ ଚନ୍ଦ୍ରଶେଖର ରାଓ, ସୌମ୍ୟ ରଞ୍ଜନ ପଟ୍ଟନାୟକ, ରାମହରି ଜେନା ଓ ଅଜିତ୍ କେଶରୀ ରାୟ । ଗ୍ରୀନ୍‌ରୁମ୍‌ରେ ଛାତ୍ରଛାତ୍ରୀ : ଜୟନ୍ତ ପଣ୍ଡା, କବିତା ମହାନ୍ତି, ନିରଦ ନଳୀନି ବେହେରା, ଅତସୀ ବସୁ ଓ ସଜଳ ପାତ୍ର ।

Digitized by srujanika@gmail.com






ଆଦିବାସୀ ଚିତ୍ରକଳା ସେମିନାରରେ ଉପସ୍ଥାପନ କରାଯାଇଥିବା ପ୍ରବନ୍ଧଗୁଡ଼ିକୁ ନେଇ ବହି ।

ଆଦିବାସୀ ଚିତ୍ରକଳା ଏବଂ ତା'ର ସାମ୍ପ୍ରତିକ ପରିପେକ୍ଷୀ ସମ୍ପର୍କରେ ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଦ୍ୱାରା ଆୟୋଜିତ ସର୍ବଭାରତୀୟ ସେମିନାର୍‌ରେ କଲେଜର ଅଧ୍ୟକ୍ଷ ଦିନନାଥ ପାଠୀ ଭିତ୍ତି ପ୍ରବନ୍ଧ ଉପସ୍ଥାପନା କରୁଛନ୍ତି । ମଞ୍ଚରେ କେନ୍ଦ୍ର ଲଳିତକଳା ଏକାଡେମୀର ସଚୀବ ସି.ଏଲ୍. ପରଞ୍ଜୁକୁଟ୍ଟି, ପ୍ରଫେସର ଲକ୍ଷ୍ମଣ କୁମାର ମହାପାତ୍ର, ମନ୍ତ୍ରୀ ପ୍ରସନ୍ନକୁମାର ପାଟଶାଣୀ ଓ ଶାନ୍ତିନିକେତନ କଳାଭବନର ପ୍ରଫେସର କାଞ୍ଚନ ଚକ୍ରବର୍ତ୍ତୀ ।

Digitized by srujanika@gmail.com













ଓଡ଼ିଶା ରିସର୍ଚ୍ଚ ସୋସାଇଟିର ଗବେଷଣାଧର୍ମୀ ପତ୍ରିକା
ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏନ୍‌ର ପ୍ରଦର୍ଶନୀ ପୁସ୍ତିକା ।

Digitized by srujanika@gmail.com









ଓଡ଼ିଶା ପର୍ଯ୍ୟଟନ ବିଭାଗ ପାଇଁ କଲେଜ ତରଫରୁ ପ୍ରସ୍ତୁତ ତିନୋଟି ପୁସ୍ତିକା- ଦିନନାଥ ପାଠୀଙ୍କର ଓଡ଼ିଶାର ଭିତ୍ତିଚିତ୍ର, ବିଜୟ କୁମାର ରଥଙ୍କ ଓଡ଼ିଶାର ମନ୍ଦିର ଓ ହରିଶ୍ଚନ୍ଦ୍ର ଦାସଙ୍କ ଓଡ଼ିଶାର ଆଦିବାସୀ ଐତିହ୍ୟ ।

Digitized by srujanika@gmail.com



# DRAWINGS - 3

B. K. COLLEGE OF ART AND CRAFTS,
BHUBANESWAR



ଚତ୍ରକଳା ବିଭାଗର ମୁଖପତ୍ର 'ଡ୍ରଇଁ'
ଡ୍ରଇଁରେ ସ୍ଥାନିତ ସ୍ୱର୍ଗତ ଅଧ୍ୟାପକ ବ୍ୟୋମକେଶ ମହାନ୍ତିଙ୍କ ଏକ ରେଖାଚିତ୍ର ।

Digitized by srujanika@gmail.com






ପଟଚିତ୍ର କର୍ମଶାଳାର ପ୍ରଦର୍ଶନୀ ପୁସ୍ତିକା ।

ଦିନନାଥ ପାଠୀଙ୍କ ଗବେଷଣା ପୁସ୍ତକ 'ଟ୍ରେଡ଼ିସ୍‌ନାଲ୍ ପେଣ୍ଟିଙ୍ଗସ୍ ଅଫ୍ ଓରିସା' ପୁସ୍ତକର ଉନ୍ମୋଚନ ଉତ୍ସବରେ ପୁସ୍ତକର ସମୀକ୍ଷା କରୁଛନ୍ତି ଛାତ୍ର ଦିଲ୍ଲୀପ କୁମାର ତ୍ରିପାଠୀ । ମଞ୍ଚରେ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେବ, ମନ୍ତ୍ରୀ ଶରତ କୁମାର କର, ପଣ୍ଡିତ ନୀଳମଣି ମିଶ୍ର ଓ ପ୍ରଫେସର କରୁଣା ସାଗର ବେହେରାଙ୍କ ଗହଣରେ ଅଧ୍ୟକ୍ଷ ଦିନନାଥ ପାଠୀ ।

Digitized by srujanika@gmail.com






କେନ୍ଦ୍ର ଲଳିତକଳା ଏକାଡେମୀର ରବୀନ୍ଦ୍ର ଭବନରେ ଅନୁଷ୍ଠିତ ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀକୁ ଉଦ୍‌ଘାଟନ କରୁଛନ୍ତି ମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ, ପାଖରେ ଅଛନ୍ତି ଡକ୍ଟର ସୀତାକାନ୍ତ ମହାପାତ୍ର, ମନ୍ତ୍ରୀ ଶରତ କୁମାର କର, ଅଧ୍ୟାପକ ଶିବ ପାଣିଗ୍ରାହୀ ଓ ଅନ୍ୟମାନେ ।

ଦିଲ୍ଲୀ ଠାରେ ଅନୁଷ୍ଠିତ ଓଡ଼ିଶା ସାହିତ୍ୟ ଏକାଡେମୀର ସାହିତ୍ୟ ସମାରୋହର ଜାତୀୟ ଆଲୋଚନା ଚକ୍ର- ମଞ୍ଚରେ ଡକ୍ଟର ହରିଶ୍ଚନ୍ଦ୍ର ଦାସ, ବିନୋଦ ରାଉତରାୟ, ଯତୀନ ଦାସ, ପ୍ରଫେସର୍ ଆର୍.ସି.ଶର୍ମା, ଡକ୍ଟର ମହେଶ ପ୍ରସାଦ ଦାଶ, ଡକ୍ଟର ପ୍ରଶାନ୍ତ ଚନ୍ଦ୍ର ରାୟ, ପ୍ରଫେସର କରୁଣା ସାଗର ବେହେରା ଓ ଡକ୍ଟର ଦିନନାଥ ପାଠୀ ।

Digitized by srujanika@gmail.com







କେନ୍ଦ୍ରମନ୍ତ୍ରୀ କମଳ ନାଥ ନାଲ୍‌କୋ ଦ୍ୱାର ଆୟୋଜିତ କଲେଜର ଏକ ଚିତ୍ରପ୍ରଦର୍ଶନୀ ଉଦ୍‌ଘାଟନ କରୁଛନ୍ତି । ପାଖରେ ଅଧ୍ୟକ୍ଷ ଦିନନାଥ ପାଠୀ ଓ ଛାତ୍ରୀ କବିତା ମହାନ୍ତି । ଙ୍ଗଇଣ୍ଡର ଡାର୍ଟିଂଗ୍‌ଟନ୍ ଠାରେ ବବିକକ୍ସଙ୍କ ଷ୍ଟୁଡ଼ିଓରେ ଅଧ୍ୟକ୍ଷ ଦିନନାଥ ପାଠୀ ଜୁରିକ୍ ରିଟ୍‌ବର୍ଗ ମ୍ୟୁଜିୟମ୍‌ରେ ଆୟୋଜିତ ଦିନନାଥ ପାଠୀଙ୍କ ଏକକ ଗ୍ରାଫିକ୍‌କଳା ପ୍ରଦର୍ଶନୀରେ ମ୍ୟୁଜିୟମ୍‌ର ନିର୍ଦ୍ଦେଶକ ଡକ୍ଟର ଏବରହାର୍ଡ୍ ଫିସର୍ ଓ ଅନ୍ୟମାନେ ।

Digitized by srujanika@gmail.com





ଗ୍ରାଫିକ୍ କଳା ବିଭାଗରେ ଲିଥୋ ପ୍ରିଣ୍ଟିଙ୍ଗ୍ ମେସିନ୍‌ରେ ଛାତ୍ରଛାତ୍ରୀଙ୍କ ଦ୍ୱାରା ମୁଦ୍ରଣର ଶୁଭାରମ୍ଭ । ଚିତ୍ରରେ ରାଜେଶ ନାୟକ, ଶଶିକାନ୍ତ, ଗୌରହରି, ଲକ୍ଷ୍ମୀକାନ୍ତ ଓ ସମରେନ୍ଦ୍ର ତଥା ଅନ୍ୟମାନେ ।

ଗ୍ରାଫିକ୍ କଳା ବିଭାଗରେ ଛାତ୍ରଛାତ୍ରୀଙ୍କ ଗହଣରେ ଏମ୍.ଏସ୍. ବିଶ୍ୱବିଦ୍ୟାଳୟ ବରୋଦାର ପ୍ରଫେସର୍ ଜ୍ୟୋତି ଭଟ୍ଟ - ଅଧ୍ୟାପକ ଡି ଏନ୍ ରାଓ, ମମତା ସାମନ୍ତରାୟ, ପ୍ରଦୋଷ ମିଶ୍ର, ରାଜୀବ ଲୋଚନ ସାହୁ, ବିରଞ୍ଚି ସେଣ୍ଠ ଓ ଅନ୍ୟମାନେ ।

Digitized by srujanika@gmail.com





ମହାବିଦ୍ୟାଳୟରେ ସୁଇସ୍ ଶିଳ୍ପୀ ଓ ବିଦୁଷୀ ଆଲିସ୍ ବୋନର୍‌ଙ୍କ ଜନ୍ମ ଶତବାର୍ଷିକ ପାଳନ । ଅତିଥି ଭାବେ ଉପସ୍ଥିତ ଅଛନ୍ତି ପଦ୍ମଭୂଷଣ ଗୋପୀନାଥ ମହାନ୍ତି, ଡକ୍ଟର ବେଟିନା ବୟନର, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ ଓ ଭଗବାନ ପଣ୍ଡା ।

ଦିନନାଥ ପାଠୀଙ୍କ ଏକକ ଚିତ୍ର ପ୍ରଦର୍ଶନୀ ଅବଲୋକନ କରୁଛନ୍ତି ମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲୀ, ଅଭୟାନନ୍ଦ ରଥ ଓ ଅନ୍ୟମାନେ ।

Digitized by srujanika@gmail.com






ରିଜିଓନାଲ୍ ରିସର୍ଚ୍ଚ ଲାବୋରେଟୋରିରେ ଅନୁଷ୍ଠିତ ଶିଳ୍ପୀ ଶିବିରରେ ଛାତ୍ର ଅଞ୍ଜନ କୁମାର ସାହୁ, ଜଗନ୍ନାଥ ପଣ୍ଡା, ଏନ୍. ଶୋଭନ କୁମାର, ପ୍ରତାପ ଜେନା, ସୁରେନ୍ଦ୍ର ସାହୁ, ପଦ୍ମନାଭ ଜେନା, ଅଶୋକ ଦାସ, ଅଧ୍ୟାପକ ଗଜେନ୍ଦ୍ର କୁମାର ପାଢ଼ୀ, ସୁବ୍ରତ ମଲ୍ଲୀକ, ଅମ୍ବିକା ମହାପାତ୍ର, ତ୍ରିଲୋଚନ ସାମଲ, ସଜଲ ପାତ୍ର, ଅଶୋକ ସାହୁ, ସମରେନ୍ଦ୍ର ରାଉତରାୟ, ଛାତ୍ରୀ ବିଦ୍ୟୁତ୍‌ଲତା ପାଟଶାଣୀ ଓ ସୁଖଲତା ଦାସ ।

ତୃତୀୟ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀ ମଞ୍ଚରେ ସୁଧାଂଶୁ ମୋହନ ରାଉତରାୟ, ଡକ୍ଟର ସୀତାକାନ୍ତ ମହାପାତ୍ର, ଡକ୍ଟର ମୁରଲୀଧର ଟାଲି, ଡକ୍ଟର ଦିନନାଥ ପାଠୀ ଓ ଗଗନ ବିହାରୀ ମହାନ୍ତି । ଛାତ୍ରୀ ନମିତା ଆଚାର୍ଯ୍ୟ ପୁରସ୍କାର ଗ୍ରହଣ କରିବା ପାଇଁ ଯାଉଛନ୍ତି ।

Digitized by srujanika@gmail.com


A DAY WITH AN ARTIST
SUKHAMOY MITRA
15, 16, 17th March
1988
B. K. COLLEGE OF ART AND CRAFTS BHUBANESWAR-751014



କଲେଜରେ ଅନୁଷ୍ଠିତ 'ଏ ଡେ ଉଇଥ୍ ଏନ୍ ଆର୍ଟିଷ୍ଟସ୍' କାର୍ଯ୍ୟକ୍ରମରେ ଶାନ୍ତିନିକେତର ପ୍ରଫେସର ସୁଖମୟ ମିତ୍ର । ନିମନ୍ତ୍ରଣ ପତ୍ରର ନମୁନା ।

ବାଲିର ବେନ୍ଟୁଆ ବନ୍ଦରରେ ଓଡ଼ିଶା ହସ୍ତତନ୍ତ ବିଭାଗର ନିର୍ଦ୍ଦେଶକ ସଞ୍ଜୟ ପଣ୍ଡାଙ୍କ ସହିତ କଲେଜର ଅଧକ୍ଷ ଦିନନାଥ ପାଠୀ ।

Digitized by srujanika@gmail.com



# ORISSA HISTORY CONGRESS

19th Annual Session

B. K. COLLEGE OF ART AND CRAFTS

TAPOVAN, KHANDAGIRI, BHUBANESWAR - 751030

10th and 11th September 1994

The Orissa History Congress solicits your kind presence at the inaugural session at 10.00 A.M. on 10th September 94

Chief Guest — Sri Biju Patnaik, Honourable Chief Minister, Orissa

Guests of Honour — Prof. M. N. Das, Former Vice Chancellor, Utkal University
Prof. G. N. Pant, Ex. Vice Chancellor, National Museum Institute, New Delhi
Prof. B. C. Ray, Former President, OHC
Prof. Ereswar Bhattacharya, Patna College Arts and Crafts

Keynote Address — Prof. R. S. Sharma, Former Chairman, Indian Council of Historical Research

1st September 94 — Dr. Dinanath Pathy, Organising Secretary [illegible]



କଲେଜରେ ଅନୁଷ୍ଠିତ ଇତିହାସ କଂଗ୍ରେସର ୧୯ତମ ବାର୍ଷିକ ଅଧିବେଶନ, କଲେଜର ଅଧ୍ୟକ୍ଷ ଡକ୍ଟର ଦିନନାଥ ପାଠୀ ଏହି ଅଧିବେଶନର ସଂଗଠନ ସମ୍ପାଦକ ମନୋନୀତ ହୋଇଥିଲେ ।
ନୂତନ କୋଠାଘରର ଗୃହ ପ୍ରତିଷ୍ଠା ଉତ୍ସବ । ମଞ୍ଚରେ ଅତିରିକ୍ତ ଶାସନ ସଚିବ କୁଙ୍କୁମ ମହାନ୍ତି, ସଚିବ ରାଜେନ୍ଦ୍ର ପଣ୍ଡା, ମନ୍ତ୍ରୀ ଚୈତନ୍ୟ ମାଝି, ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, କେନ୍ଦ୍ର ଲଳିତ କଳା ଏକାଡେମୀର ଅଧ୍ୟକ୍ଷ ରାମ ନିବାସ ମିର୍ଦ୍ଧା, ନିର୍ଦ୍ଦେଶକ ବିମଳେନ୍ଦୁ ମହାନ୍ତି ଓ ଅଧ୍ୟକ୍ଷ ଦିନନାଥ ପାଠୀ ।

Digitized by srujanika@gmail.com








ଉଦୟଗିରି ପାହାଡ଼ ପାଦଦେଶରେ ନିର୍ମାଣ କରାଯାଉଥିବା ବେଳର ମହାବିଦ୍ୟାଳୟ ।
ଜଳରଙ୍ଗର ସ୍କେଚ୍ ପ୍ରଦୋଷ କୁମାର ସ୍ୱାଇଁ । କଲେଜର ଭିତ୍ତିପ୍ରସ୍ତର ସାନ୍ତାଳୀ ଶ୍ରମିକ ଶ୍ରୀମତୀ ରେଖା ହେମ୍ବ୍ରମ୍‌ଙ୍କ ଦ୍ୱାରା ସ୍ଥାପନ କରାଯାଇଥିଲା ।

Digitized by srujanika@gmail.com



**GROUND FLOOR PLAN**

1. Reception
2. First year Studio
3. Second year Studio
4. Department of Crafts
5. Department of Sculpture
6. Department of Graphics
7. Department of Graphics
8. Chitra Vithi (Permanent Collections)
9. Chitra Mandapa (Changing Exhibitions)
10. Batika (Sculpture garden)
11. Batika (Sculpture garden)
12. Sabha Agana
13. Sabha Agana



**FIRST FLOOR PLAN**

1. Department of Traditional Arts
2. Department of Painting
3. Department of Painting
4. Department of painting
5. Department of Painting
6. Department of Design
7. Department of Design
8. Department of Traditional Arts
10. Principal's Office
9. Principal's Studio
11. Store
12. Office

ତଳ ମହଲାର ନକ୍ସା- ୧ ଅଭ୍ୟର୍ଥନା, ୨. ପ୍ରଥମ ବାର୍ଷିକ ପିଲାଙ୍କ ଷ୍ଟୁଡ଼ିଓ, ୩. ଦ୍ୱିତୀୟ ବାର୍ଷିକ ପିଲାଙ୍କ ଷ୍ଟୁଡ଼ିଓ, ୪. କାରୁ ଶିଳ୍ପ ବିଭାଗ, ୫. ଭାସ୍କର୍ଯ୍ୟ ବିଭାଗ, ୬-୭. ଗ୍ରାଫିକ୍ କଳା ବିଭାଗ । ୮. ସଂଗ୍ରହାଳୟ, ୯. ପରିବର୍ତ୍ତନଶୀଳ ପ୍ରଦର୍ଶନୀ ମଣ୍ଡପ ୧୦-୧୧ ବାଟିକା (ଭାସ୍କର୍ଯ୍ୟ ଉଦ୍ୟାନ) ୧୨-୧୩. ସଭା ଅଗଣା ।

ପ୍ରଥମ ମହଲାର ନକ୍ସା- ୧. ପାରମ୍ପରିକ ଚିତ୍ରକଳା ବିଭାଗ. ୨-୩-୪-୫, ଚିତ୍ରକଳା ବିଭାଗ, ୬-୭ ଡିଜାଇନ୍ ବିଭାଗ, ୮. ପାରମ୍ପରିକ ଚିତ୍ରକଳା ବିଭାଗ, ୯. ଅଧକ୍ଷଙ୍କ କାର୍ଯ୍ୟାଳୟ,୧୦. ଅଧକ୍ଷଙ୍କ ଷ୍ଟୁଡ଼ିଓ, ୧୧. ଷ୍ଟୋର, ୧୨- କଲେଜ ଅଫିସ୍ ।

Digitized by srujanika@gmail.com



SECOND FLOOR PLAN

1. Library
2. Documentation Center
3. Department of Art History (Seminar Hall)
4. Department Art History

ଦ୍ୱିତୀୟ ମହଲାର ନକ୍ସା- ୧. ଗ୍ରନ୍ଥାଗାର, ୨. ପଞ୍ଜିକରଣ ବିଭାଗ, ୩. କଳା ଇତିହାସ ବିଭାଗ (ସେମିନାର ହଲ୍) ୪. କଳା ଇତିହାସ ବିଭାଗ ।

Digitized by srujanika@gmail.com

# KULTURHUSET

THE STOCKHOLM CITY CULTURAL ADM.
Fine Arts Dept.
BS/YC

1987-10-28
D nr 155/87

Mr D Aurora
Director General
Festival of India

It is a pleasure to certify the great success that the Indian exhibition "Popular Art" has made at Kulturhuset in Stockholm.

The exhibition was opened in August 29th and was inaugurated by the Indian Ambassador in Sweden, Shri B Oza, together with the Mayor of Stockholm.

I would say - and many with me - that this exhibition is one of the richest and most beautifully designed exhibitions ever made in Kulturhuset during those thirteen years it has existed.

Much of this success is depending on Dr Dinanath Pathy, the designer and curator of the exhibition. With his thoroughly preliminary work it was easy to build up the setting after the material had arrived, and his friendly authority created a good working climate for his Indian Staff, who worked together with the Swedish staff.

Dr Pathy's knowledge made also his presentations of the exhbition to a great event for the Swedish newspapers, TV and radio.

Sincerely yours,

Bo Sylvan
Director

SERGELS TORG 3 BOX 7653 103 94 STOCKHOLM 08/14 11 20

ସୁଇଡ଼େନ୍‌ରେ ଅନୁଷ୍ଠିତ ଲୋକପ୍ରିୟ କଳା ପ୍ରଦର୍ଶନୀକୁ ପ୍ରଶଂସା କରି କୁଲ୍‌ଟୁର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ଭାରତ ଉତ୍ସବର ମହାନିର୍ଦ୍ଦେଶକ ଦଲ୍‌ଜିତ୍ ଆରୋରାଙ୍କ ନିକଟକୁ ଲେଖିଥିବା ପତ୍ର ।

Digitized by srujanika@gmail.com





ଓଡ଼ିଆ ଝୋଟି ପରଂପରାରେ,
ଦିନନାଥ ପାଠୀଙ୍କ ଦ୍ୱାରା ପରିକଳ୍ପିତ
କଲେଜର ଲୋଗୋ - ଅଷ୍ଟଦଳ ପଦ୍ମ
ମଣ୍ଡଳ - କଳାର ଅଧିଷ୍ଠାତ୍ରୀ ଦେବୀ
ସରସ୍ୱତୀଙ୍କ ପ୍ରତୀକ ।



Digitized by srujanika@gmail.com

କ୍ଷମତାର କେନ୍ଦ୍ରବିନ୍ଦୁ ହେଲେ ବି କଟକ ପରି ଭୁବନେଶ୍ୱର ଏପର୍ଯ୍ୟନ୍ତ ଏକ କାହାଣୀମୟ ସହର ହୋଇପାରିନାହିଁ । ଗଳ୍ପ ଓ ଉପନ୍ୟାସଗୁଡ଼ିକରେ ଗୋଟିଏ ଜୀବନ୍ତ ପଟ୍ଟଭୂମି ଭାବରେ ଏହା ଚିତ୍ରିତ ହୋଇପାରିନାହିଁ । ସତେ ଯେପରି କବିର କଳ୍ପନା ଏହି ସହରରେ ଶ୍ୱାସରୁଦ୍ଧ ହୋଇପଡ଼ିଛି । ଦିନନାଥ କିନ୍ତୁ ତାଙ୍କର ଆତ୍ମଜୀବନୀରେ ଏହି ଅମଲା ଅଧ୍ୟୁଷିତ, ଆବେଗହୀନ ଛଣାପଡ଼ୁଥିବା ସହରଟିରେ କଳାର ଗୋଟିଏ ଅନୁଷ୍ଠାନ କିପରି ଗଢ଼ିଉଠିଛି ତା'ର ମର୍ମସ୍ପର୍ଶୀ କାହାଣୀ କହିଛନ୍ତି । ଏହି କାହାଣୀର ଚରିତ୍ର ଖାଲି ଚିତ୍ରକର, ଭାସ୍କର ବା କଳାଶିକ୍ଷକ ନୁହଁନ୍ତି : ରାଜାରାଣୀ ମନ୍ଦିର ପାଖର ଭଡ଼ାଘର, କଳ୍ପନାଛକ, ମ୍ୟୁଜିୟମ୍, ଖଣ୍ଡଗିରି ପାଖରେ ଖୋଲା ହୋଇଥିବା ବି.କେ କଲେଜର କୋଠାଘର ବି ଏ କାହାଣୀର ଚରିତ୍ର । ଭୁବନେଶ୍ୱରକୁ କାହାଣୀମୟ କରିବାରେ, କଳାକାରମାନଙ୍କ ସ୍ୱପ୍ନରେ ରଙ୍ଗବୋଳି ଯାଦୁକରୀ ସ୍ପର୍ଶ ଦେବା **'କଲେଜଟିଏ ଗଢ଼ିବାର ବେଳ'**ର ସବୁଠାରୁ ବଡ଼ ସଫଳତା ।

**ଯତୀନ୍ଦ୍ର କୁମାର ନାୟକ**
ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ

ପାଠକକୁ ବେଶ୍ କିଛି ସମୟ ପାଇଁ ସ୍ତବ୍ଧ କରିଦେବାର ଉପାଦାନ ଏଥିରେ ଭରପୂର । ଜଣେ କଳ୍ପନାର କାରିଗର ବାସ୍ତବତାର ଏତେ ଗଭୀରତାକୁ ଯାଇ ପ୍ରତ୍ୟେକ ମୁହୂର୍ତ୍ତ ସହିତ ନିଜ ଜୀବନକୁ କିପରି ଲୟବଦ୍ଧ କରିଦେଇପାରେ - ଏହା ଏକ ନିଚ୍ଛକ ସତ୍ୟ ହୋଇଥିଲେ ବି ବେଳେବେଳେ ବିଶ୍ୱାସ କରିହୁଏନି । **'କଲେଜଟିଏ ଗଢ଼ିବାର ବେଳ'**କୁ କେବଳ ଜଣେ ଶିଳ୍ପୀର ଆବେଗ ପ୍ରବଣ ଆତ୍ମକଥା ଭିତରେ ଆବଦ୍ଧ କରିଦେଲେ ଏହାର ଅନ୍ତଃସ୍ରୋତର ଗଭୀରତାକୁ ସ୍ପର୍ଶ କରିହେବନି । ଏହାର ଉପାଦେୟତାକୁ ଅଙ୍ଗୀକାର କରିନେବା ହିଁ ଜଣେ ନିଃସ୍ୱାର୍ଥପର କଳା ସଂଗଠକ ପାଇଁ ଆନ୍ତରିକ ଅଭିନନ୍ଦନ ହେବ ।

**ରମେଶ ଦାସ**
କବି, ନାଟ୍ୟକାର ଓ ସାହିତ୍ୟ ସମାଲୋଚକ


ISBN 81-7375-150-1

**ଦିବ୍ୟ ପ୍ରକାଶନୀ**, ସାମନ୍ତରାପୁର, ଭୁବନେଶ୍ୱର-୭୫୧୦୦୨

Digitized by srujanika@gmail.com